ଶୂଦ୍ରମୁନି ଶାରଳାଦାସଙ୍କ କୃତ

# ମହାଭାରତ

## ମଧ୍ୟପର୍ବ

मध्यपर्व







ନୂତନ ମୁଦ୍ରଣ

ମୂଲ୍ୟ
ଟ ୧୧-୫୦





ପ୍ରକାଶକ-

ଶ୍ରୀରାଧାରମଣ ପୁସ୍ତକାଳୟ, ଝାଞ୍ଜିଗଡ଼ି, କଟକ-୨

श्रीराधारमण पुस्तकालय, कटक-२

## ମହାଭାରତ ମଧ୍ୟପବର

# ସୂଚିପତ୍ର




| ବିଷୟ | ପୃଷ୍ଠା |
|---|---|
| ମଙ୍ଗଳାଙ୍କ ବନ୍ଦନା | ୨ |
| ଉପକ୍ରମ | ୩ |
| ପାଣ୍ଡବଙ୍କର ଜନ୍ମ | ୬ |
| ଅର୍ଜ୍ଜୁନର ବନବାସ | ୯ |
| ଅର୍ଜ୍ଜୁନର ପାଶୁପତ ଅସ୍ତ୍ର ଓ ଅକ୍ଷୟତୂଣୀର ଲାଭ | ୧୨ |
| କୃଷ୍ଣଙ୍କର ନବଗୁଞ୍ଜର ରୂପ | ୧୬ |
| ଖାଣ୍ଡବବନ ଦାହ | ୨୧ |
| ଇନ୍ଦ୍ର ଅର୍ଜ୍ଜୁନ ଯୁଦ୍ଧ | ୩୨ |
| ଶୋଷକ ଶରଣ | ୩୪ |
| ଇନ୍ଦ୍ର ପରାଜୟ ଓ ଅର୍ଜ୍ଜୁନର ବରଲାଭ | ୩୬ |
| ଖାଣ୍ଡବବନ ଦହନରୁ ଯେଉଁମାନେ ବଞ୍ଚିଲେ ତାଙ୍କର ନାମ | ୩୯ |
| ମନ୍ଦପାଳ ସୂତ | ୪୦ |
| ତାର୍କ୍ଷୀ ଶରଣ | ୪୩ |
| ଖାଣ୍ଡବବନର ପୂର୍ବବୃତ୍ତାନ୍ତ ବର୍ଣ୍ଣନ | ୪୫ |
| ତକ୍ଷାଙ୍କର ଶରଣ ଓ ବୈରାଜ ରାଜା ମିଳନ | ୪୮ |
| ତକ୍ଷାଙ୍ଗନା ପରିଣୟ | ୫୪ |
| ଉଲୁପୀ ବିବାହ | ୫୬ |
| ବଭ୍ରୁବାହନ ଜନ୍ମ | ୫୮ |
| ସହସ୍ରାଜିତ ଶରଣ | ୬୦ |
| ଶତଧନୁ ଶରଣ | ୬୬ |
| କଲ୍ମାସୁର ବଧ | ୭୭ |
| ଲୁମ୍ବକ ବଧ | ୮୫ |
| ଗୋସିଂହ ଦୈତ୍ୟ ବଧ | ୯୩ |
| ସୁଭଦ୍ରା ହରଣ | ୧୦୮ |
| ସୁଭଦ୍ରାପରିଣୟ | ୧୪୮ |
| କୁଣ୍ଡଳୀ ଦୈତ୍ୟ ବଧ | ୧୫୬ |
| କୌରବ ଓ ପାଣ୍ଡବଙ୍କର ହସ୍ତିନା ପ୍ରବେଶ | ୧୬୯ |
| ନାରକାସୁର ବଧ ଓ ପାରିଜାତ ହରଣ | ୧୭୪ |
| ପୁଷ୍ପାଭିଷେକ ଓ କାମାକ୍ଷୀବ୍ରତ ବଧି | ୧୮୯ |
| ସୁଗନ୍ଧିକା ହରଣ ଓ ଅର୍ଜ୍ଜୁନ ଶରରେ ସାଗର ବନ୍ଧନ | ୧୯୨ |
| ମାଳେନ୍ଦ୍ରୀ ହରଣ | ୨୧୧ |
| କୁଦ୍ଧାଳସେନ ବଧ | ୨୩୮ |
| କୁନ୍ତୀ ଓ ଗାନ୍ଧାରୀର ବିବାଦ | ୨୪୮ |
| ଚନ୍ଦ୍ରାବତୀ ହରଣ | ୨୫୨ |
| ବଳରାମଙ୍କର ହସ୍ତିନା ତାଡ଼ନା ଓ ସିଂହଦ୍ୱାର ବନ୍ଧ | ୨୬୬ |
| ସରସ୍ୱତୀ ବର ଓ କଟମ୍ବାସୁର ବୃତ୍ତାନ୍ତ | ୨୮୨ |
| ଚନ୍ଦ୍ରାବତୀ ବିବାହ | ୨୮୬ |
| ସୁରେଖା ହରଣ | ୨୮୯ |
| ପ୍ରଦ୍ୟୁମ୍ନର ବନ୍ଦୀମୋଚନ | ୨୯୪ |
| ସୁରେଖା ବିବାହ | ୩୦୦ |
| କୁଠରାସୁର ବଧ | ୩୦୮ |
| ନାରଦଙ୍କ ଆଦେଶେ ଶ୍ରୀକୃଷ୍ଣଙ୍କ ସହିତ ପାଣ୍ଡବଙ୍କ ଧର୍ମଯଜ୍ଞ କରିବାର ମନ୍ତ୍ରଣା | ୩୧୪ |

| ବିଷୟ | ପୃଷ୍ଠା |
|---|---|
| ଧର୍ମଯଜ୍ଞର ଆୟୋଜନ | ୩୨୦ |
| ରାଜାମାନଙ୍କର ନିମନ୍ତ୍ରଣ | ୩୨୪ |
| ନକୁଳର କୁମ୍ଭମୂଳେ ପୃଥ୍ୱୀଧାରଣ | ୩୨୮ |
| ଧର୍ମଯଜ୍ଞ | ୩୨୯ |
| ଶୋଭାବତୀ ହରଣ | ୩୩୩ |
| ଘୋଡ଼ାସୁର ବରଲାଭ | ୩୫୬ |
| ଘୋଡ଼ାସୁରର ଦିଗ୍‌ବିଜୟ | ୩୬୬ |
| ବୃଦ୍ଧକେଶୀ ସହିତ ଘୋଡ଼ାସୁର ଯୁଦ୍ଧ | ୩୬୮ |
| ଘୋଡ଼ାସୁର ବଧ | ୩୭୨ |
| ଉଷାହରଣ | ୩୭୭ |
| ମୁଡ଼ାସୁରର ବରଲାଭ ଓ ଗଣେଶଙ୍କ ଜନ୍ମ | ୩୮୭ |
| ମୁଡ଼ାସୁରର ସ୍ୱର୍ଗ ଆକ୍ରମଣ | ୩୯୧ |
| ମୁଡ଼ାସୁରର ଏକୋଇଶ ବାର ସ୍ୱର୍ଗ ଆକ୍ରମଣ ଓ ବିନାଶ | ୩୯୪ |
| ନକୁଳ ଶିରେ ପାଟ ବନ୍ଧନ | ୪୦୭ |
| ଶାନ୍ତିପନମଠେ ହରି ଓ ବଳରାମଙ୍କର ବିଦ୍ୟାପଠନ ଏବଂ ଯମପୁରରୁ ଗୁରୁପୁତ୍ର ଆନୟନ | ୪୦୮ |


ମ ଧ୍ୟ ପ ର୍ବ ର ସୂ ଚି ପ ତ୍ର ସ ମା ପ୍ତ



# ମହାଭାରତ

## ମଧ୍ୟପର୍ବ



ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଲାପଂ,
ବ୍ୟାସଂ ନମାମି ଶିରସା ତିଲକଂ ମୁନୀନାଂ ।

ଆଦୌ ଉଦ୍ଧୃତଗର୍ଭପାଣ୍ଡୁଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧେଃ ସ୍ୱୟଂ ଜୃମ୍ଭଣଂ,
ଭୀଷ୍ମଦ୍ରୋଣସୁୟୋଧନାଦି ଦଳନଂ ଏତନ୍ମହାଭାରତଂ ॥

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯତ୍କର୍ଣ୍ଣଧାରୋ ହରିଃ ॥

ଆଦ୍ୟପର୍ବଂ ସଭାପର୍ବଂ ପର୍ବମାରଣ୍ୟକଂ ତଥା ।
ବିରାଟ ପର୍ବଂ ବିଜ୍ଞେୟଂ ଚତୁର୍ଥଂ ତଦନନ୍ତରଂ ।
ଉଦ୍ୟୋଗଂ ପଞ୍ଚମଂ ପର୍ବଂ ଭୀଷ୍ମପର୍ବଂ ତତଃ ପରଂ
ସପ୍ତମଂ ଦ୍ରୋଣପର୍ବଂ ସ୍ୟାତ୍ କର୍ଣ୍ଣପର୍ବଂ ତଥାଷ୍ଟମଂ ।
ନବମଂ ଶଲ୍ୟପର୍ବଂ ସ୍ୟାତ୍ ଗଦାପର୍ବଂ ତତଃପରଂ
ସୌପ୍ତିକଂ ତୁ ତଥା ପ୍ରୋକ୍ତଂ ଗର୍ବନାଶନ ମେବ ଚ ॥

ତ୍ରୟୋଦଶଂ ତୁ ସ୍ତ୍ରୀପର୍ବଂ ସ୍ନାନମୁଦକସ୍ୟ ତୁ
ଶାନ୍ତିପର୍ବଂ ତତଃ ପ୍ରୋକ୍ତଂ ଅଶ୍ୱମେଧିକମେବ ଚ ।

ସ୍ୱର୍ଗାରୋହଣକଂ ଚୈବ ହରିବଂଶଂ ତଥୈବ ଚ
ଇତ୍ୟଷ୍ଟାଦଶପର୍ବାଣାଂ ସଂଖ୍ୟା ଦ୍ୱୈପାୟନେ ଋତା ॥

ହେମନ୍ତେ ପ୍ରଥମେ ମାସି ଶୁକ୍ଲପକ୍ଷେ ତ୍ରୟୋଦଶେ
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ।

ଭାରତ ଶ୍ରୁତମାତ୍ରେଣ ଗଙ୍ଗାସ୍ନାନେନ ମାନବଃ
ବିଷ୍ଣୁ ସ୍ମରଣମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ॥

ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ
ସର୍ବାଣି ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାର କଥାପ୍ରସଙ୍ଗଃ ॥

---

## ମଙ୍ଗଳାଙ୍କ ବନ୍ଦନା

ଜୟ ତୁ ମଙ୍ଗଳା ମାଗୋ ଜୟ ହରଚଣ୍ଡୀ
ତୋତେ ସୁମରିଲେ ମା ଦୁରିତ ଯାଏ ଖଣ୍ଡି ।
ଆତଙ୍କକାଳରେ ସୁମରନ୍ତି ଯେଉଁ ଜନ
ମହାଘୋର ସଙ୍କଟୁ ତୁ ଫିଟାଉ ବନ୍ଧନ ।
ଅଦୃଶ୍ୟକୁ ଦୃଶ୍ୟ ହୁଏ ତୋ ନାମ ଧରିଲେ
ବିପତ୍ତି ନ ଥାଇ ମାଗୋ ତୋତେ ଆଶ୍ରାକଲେ
ତୋହର ଯେ ନାମମାନ ଯେତୁ ସୁମରଇ
କହୁଁ ସଙ୍କଟ ମାଗୋ ବିପତ୍ତି ନ ଥାଇ ।
ଅନାଥକୁ ଦୟା ମାଗୋ ଦୂର କରୁ ଦାରୁ
ସଙ୍କଟ ପଡ଼ିଲେ ମାଗୋ ପ୍ରାଣୀଙ୍କୁ ଉଦ୍ଧରୁ ।
ଯେତେବେଳେ ପ୍ରାଣୀଙ୍କୁ ଗୋ ପଡ଼ୁଥାଏ କଷ୍ଟ
ତୋତେ ସୁମରିଲେ ମାଗୋ ଫିଟଇ ସଙ୍କଟ ।
ଏ ତୋହର ବାରବ୍ରତ ଯେତୁ କରେ ମାତ
ପାଏ ସେତୁ ଧନ ଜନ ଅନେକ ସମ୍ପତ୍ତି ।

ନମୋ ନାରାୟଣୀ ମାଗୋ ଅପର୍ଣ୍ଣା ପାର୍ବତୀ
ଭ୍ରମଣ ଯେ କରୁ ମାଗୋ ଅର୍ଦ୍ଧ ନିଶାଗତ ।
ଚଣ୍ଡୀ ଯେ ଚାମୁଣ୍ଡା ମାଗୋ ଖଟନ୍ତି ଅପାର
ଏମାନଙ୍କୁ ସଙ୍ଗେ ଘେନି ଭ୍ରମଣ ତୋହର ।
ପୟରେ ଅଳତା ଭାଲେ ସିନ୍ଦୂରର ଚିତା
ରଙ୍ଗବସ୍ତ୍ରେ ପାଏ ତୋର ଶ୍ରୀଅଙ୍ଗ ଶୋଭିତା ।
ସିଂହର ପୃଷ୍ଠରେ ମାଗୋ ବିଜେ କରି ଯାଉ
ଯେ ମୁଖେ ପଡ଼ିଲେ ମାଗୋ ନ ବଞ୍ଚନ୍ତି ଆଉ
ନମସ୍ତେ ଶାରଳା ମାଗୋ ଶଙ୍କର ଭବାନୀ
ଦୟାକର ମୋତେ ମାଗୋ ଦନୁଜନାଶିନୀ ।
ଶୃଙ୍ଖଳ ସମୁଦ୍ରେ ମାଗୋ ବୁଡ଼ିଲି ମୋ ଭେଳା
ଦୁସ୍ତର ପଡ଼ିଲି ମାଗୋ ଉଦ୍ଧର ମଙ୍ଗଳା ।
ସଖା ସହୋଦର ମାଗୋ ବନ୍ଧୁବଳ ନାହିଁ
ବିପତ୍ତି କାଳରେ ସାହା ହୁଅ ମହାମାୟୀ ।
ବିନ୍ଧ୍ୟଗିରିବାସୀ ହିମବନ୍ତର ଦୁହିତା
ଏମନ୍ତ ଦ୍ୱାଦଶ ନାମ ବେଦେ ଯେ ବିଧାତା ।

ଝଙ୍କଡ଼େ ରହିଲୁ ନାମ ଶାରଳା ବୋଲାଇ
କାଞ୍ଚିପୁରେ ରହିଲୁ ମଙ୍ଗଳା ଯେ ତୁହି ।
ଲହ ଲହ ଜିହ୍ୱା ମା ସିନ୍ଦୂର ମୁଖ ମଣ୍ଡି
କୋଣାରକେ ରହିଲୁ ଅଭୟା ରାମଚଣ୍ଡୀ ।
ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ
ବାଙ୍କିରେ ରହିଲୁ ମାଗୋ ନାମ ଚର୍ଚ୍ଚିକାଇ ।
ସମ୍ବଲପୁରେ ରହିଲୁ ନାମ ସମଲଈ
ଯାଜପୁରେ ରହିଲୁ ଗୋ ନାମ ବିରଜାଈ ।
ପଶ୍ଚିମେ ରହିଲୁ ମାତ ନାମ ହିଙ୍ଗୁଳାଈ
ଭୁବନେଶ୍ୱରେ ରହିଲୁ ଗଉରୀ ବୋଲାଇ ।
ବାଣପୁରେ ରହିଲୁ ଗୋ ନାମ ଭଗବତୀ
ସକଳ ଆସରେ ତୋତେ କହନ୍ତି ଯେ ସ୍ତୁତି ।
ଉତ୍ତର ଦିଗେ ରହିଲୁ ଚଣ୍ଡୀ ନାମ ବହି
ଏମନ୍ତେ ଦ୍ୱାଦଶ ନାମ ବ୍ରହ୍ମା ଥିଲେ ଦେଇ ।
ଲହ ଲହ ଜିହ୍ୱା ମାଗୋ ଘୋର ଦଶନ ଟି
ନମୋ ଆଦ୍ୟମାତା ତୁହି ବିଜେ ସିଂହପିଠଂ ।
ହାତେ ଯେ ଖପର ମାଗୋ ଶୋହେ ବାମକର
ଶଙ୍ଖ ଚକ୍ର ଗଦା ମାଗୋ ଆୟୁଧ ତୋହର ।
ତ୍ରେତାଯୁଗେ ତୋତେ ମାଗୋ ସୁମରିଲେ ରାମ
ପ୍ରସନ୍ନ ହୋଇଣ ମାତ କଲୁ ପୂର୍ଣ୍ଣକାମ ।
ତୁମ୍ଭର ଆଜ୍ଞାରେ ରାମ ଲଙ୍କା କଲେ ଜୟ
ରାବଣକୁ ମାରି ସୀତା ଆଣି ରାମରାୟ ।
ନମସ୍ତେ ମଙ୍ଗଳା ମାଗୋ ରକ୍ଷାକର ମୋତେ
ମୁହିଁ ଅରକ୍ଷିତ ଜନ ଆଶ୍ରା କଲି ତୋତେ ।
ଯେତେବେଳେ ଯାହା ମାଗୋ କରୁଥିବ ଇଚ୍ଛା
ସେ ପାଦ ସୁମରଣେ ପୂରୁଥିବ ମନୋବାଞ୍ଛା ।
ତୁମ୍ଭର ଚରଣେ ମୋର ହେଉ ମନସ୍ଥିତ
ଶାରଳା ଦାସକୁ ଯେ ହୃଦର ଆଦ୍ୟମାତ ।

---

## ଭଜଣ୍ଟଣ

ଜୟ ତୁ ଦେବୀ ଅନାଦି ଆଦ୍ୟ ସିଦ୍ଧକାୟେ
ତ୍ରିଦଶ ଦେବେ ଖଟନ୍ତି ନିତ୍ୟ ତୋର ପାୟେ
ଚଉଷଠି ଯୋଗିନୀ ନବକୋଟି କାତ୍ୟାୟନୀ
ତୁହି ସିନା ଅଟୁ ମାଗୋ ମହିଷମର୍ଦ୍ଦିନୀ ।
ତୁହି ମାଗୋ କଳିକାଳ ଦର୍ପ ବିଧ୍ୱଂସିନୀ
ଦେବାସୁର ନର ତୋର ଚରଣେ ଦଇନୀ ।

ମୂର୍ଖ ଅପଣ୍ଡିତ ମୁହିଁ ଅଟଇ ଅଜ୍ଞାନୀ
ଏ ସିଦ୍ଧଗ୍ରନ୍ଥକୁ ମୋତେ କହିଲେ ଭବାନୀ ।
ସତ୍ୟ ତ୍ରେତା ଦ୍ୱାପର ଏ କଳିକାଳ ମଧ୍ୟେ
ସଂସାର ଧାରଣା ଅଟୁ ତୁ ଗୋ ସିଦ୍ଧ ସାଧ୍ୟେ
ମୋତେ କି ଗୋଚର ଏହି ଗ୍ରନ୍ଥ ଲେଖିବାରେ
ତୁ ଗୋ ଭବାନୀ ପ୍ରସନ୍ନ ହୋଇଲୁ ମୋଠାରେ
ମନୁଜ ହୋଇ ମୁଁ ସିଦ୍ଧଦେବୀଙ୍କୁ ଦେଖଇ
ନ ଆସିବା ଠାରେ ପଦ ଦେଉଥାନ୍ତି କହି ।
ସେ ଅନାଦି ଦେବୀଙ୍କର ଖଟିଲି ଚରଣେ
ଯାହା ଶୁଣିଲେ ମୁକତ ହେବେ ଜଣେ ଜଣେ
ନାନା ପାତକମାନ ଯେ ହେବ ବିନଶ୍ୟତ
ଅପୂର୍ବକ ଲୋକ ପୂଜ୍ୟ ହୋଇବ ପ୍ରାପତ ।
ଶ୍ରୀସିଦ୍ଧଚଣ୍ଡୀ ଚରଣେ କରଇ ଦଇନୀ
ମୂକତ ଅର୍ଥେ ଶାରଳା ଦାସ ଶୂଦ୍ରମୁନି ।
ବୈବସ୍ୱତ ମନୁ କଲେ ଅଗସ୍ତିଙ୍କ ପୂଜା
ପାଦ୍ୟ ଅର୍ଘ୍ୟ ଦେଇ ପାଦେ ଖଟି ମହାରାଜା ।
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟ
ନବରତ୍ନମାଳା ଦେଲେ ଋଷିଙ୍କର ପାଦେ ।
କହିବା ମୁନି ଏ ମଧ୍ୟପର୍ବ ଦିବ୍ୟବାଣୀ
ଶରୀର ନିର୍ମଳ ହେବ ତବ ମୁଖୁଁ ଶୁଣି ।
ଏବେ କେବଣ ଚରିତ କଲେକ ପାଣ୍ଡବେ
କହ ମୁନି ମୋତେ ତାହା କଥାର ପ୍ରସ୍ତାବେ
ପାପ ପୁରୁଷକୁ ହେଲା ଏକଇ ଯୁବତୀ
ସାଂସାରିକ ଧର୍ମେ ହେଲା ତାଙ୍କର କି ଗତି ।
ସଂକ୍ଷେପି କହିବା ହେଉ ମୁନି ତପୋବନ୍ତ
ପାପାଧିପାପ ମୋହର ହେବ ନାଶ ପ୍ରାପ୍ତ ।
କହନ୍ତି ଅଗସ୍ତିବଇ ତୁ ପଣ୍ଡିତ ଜନ
ସାବଧାନେ ଏ ଭାରତ ଶୁଣ ହେ ସୁଜନ ।
ବଦନ୍ତି ଅଗସ୍ତି ଯେ ପଣ୍ଡିତ ମାର୍ତ୍ତଣ୍ଡ
ଶୁଣ ସାବଧାନେ ଆଦ୍ୟପର୍ବ ମଧ୍ୟଖଣ୍ଡ ।
ହସ୍ତିନା ଈଶାନ ରାଜ ବାରୁଣାର କତ
ସୁନ୍ଦର କରି ନଗର ତୋଳାଇ ରହନ୍ତି ।
ସାତଙ୍କ ନମନ୍ତେ କଲେ ସାତଗୋଟି ପୁର
ଅସ୍ୱର ଧନରାଜ ଭଣ୍ଡାର ଆବର ।
ଭିନ୍ନ ନବରେ ଦ୍ରୌପଦୀ ରଖି ପାଞ୍ଚଭାଇ
ଆପଣା ଆପଣା ପୁରେ ରହିଲେ ସେ ଯାଇ ।

କୁନ୍ତୀଦେବୀ ରହିଲେ ଯେ ଆପଣା ନଗରେ
ପାଣ୍ଡବଇ ଥାନ୍ତି ଦୁର୍ଯ୍ୟୋଧନ ସଙ୍ଗତରେ ।
ମକର ଶୁକ୍ଳପକ୍ଷ ଦଶମୀ ଯେ ତିଥି
ରୋହିଣୀ ନକ୍ଷତ୍ର ପୁଣି ବାର ବୃହସ୍ପତି ।
ତୈତିଳ ନାମେ କରଣ ଇନ୍ଦ୍ର ନାମେ ଯୋଗ
ମକର ସଂକ୍ରାନ୍ତି ଚଉବିଂଶ ଦିନଭୋଗ ।
ସେ ଦିନ ପାଞ୍ଚାଳୀ ଦେବୀ ହେଲେ ରଜୋବତୀ
ପୁଷ୍ପବତୀର ଉତ୍ସବ ନଗରେ କରନ୍ତି ।
ମିଶ୍ରିତ କରାଇ ଚୂନ ସଙ୍ଗରେ ହଳଦୀ
ମାରନ୍ତି ପିଚକା ଧରି ପରିହାସେ ଖେଳି ।
ପ୍ରଥମ ରଜ ଗଣନ୍ତି ଧୌମ୍ୟ ପୁରୋହିତେ
ଗଣନ୍ତି ଯେ ରଜସ୍ବଳ ପାତ ଗ୍ରହପୁତେ ।
ବାର ତିଥି ଋକ୍ଷ ଚନ୍ଦ୍ର କରଣ ରବ୍ୟଂଶ
ସପ୍ତାଙ୍ଗ ଯୋଗ ବିଚାର କରନ୍ତି ବିଶେଷ ।
ଜ୍ୟୋତିଷ ଶାସ୍ତ୍ରମତେ ଶ୍ଳୋକମାନ ପଢ଼ି
ବୁଝାଇ ଅର୍ଥ କହନ୍ତି ବେନକର ଯୋଡ଼ି ।
ଆଦିତ୍ୟବାରେ ହୁଅଇ ଯେବେ ରଜୋବତୀ
ସ୍ବାମୀକୁ ଯେ ଗ୍ରହପୀଡ଼ା ସନ୍ତାନ ନୁହନ୍ତି ।
ସୋମବାରେ ଯେବେ ସ୍ତ୍ରୀ ରଜୋବତୀ
ସେହି ସ୍ତ୍ରୀର ହୁଅଇ ସ୍ବାମୀରେ ପୀରତି ।
ମଙ୍ଗଳବାରେ ହୁଅଇ ଯେବେ ରଜୋବତୀ
ବିଧବା ହୁଅଇ ସ୍ବାମୀ ହୁଏ ବିନଶ୍ୟତି ।
ବୁଧବାରେ ଯେବେ ନାରୀ ହୁଏ ରଜୋବତୀ
ସ୍ବାମୀରେ ଭକତି ହୁଏ ସଉଭାଗ୍ୟବତୀ ।
ଗୁରୁବାରେ ରଜୋବତୀ ହୁଏ ଯେବେ ନାରୀ
ଧନ ସନ୍ତାନ ବହୁତ ହୁଅଇ ତାହାରି ।
ଶୁକ୍ରବାରେ ରଜୋବତୀ ହୁଏ ଯେବେ ନାରୀ
ବହୁତ ପୁତ୍ର ହୁଅଇ ନୁହେ ଅନାଗ୍ରସୀ ।
ଯେବେ ଜାଣ ରଜୋବତୀ ହୁଏ ଶନିବାରେ
ପୁତ୍ର ପୁତ୍ରୀ ନ ଉପୁଜେ ସେ ସ୍ତ୍ରୀର ଗର୍ଭରେ ।
ରଜସ୍ବଳେ ବାର ଶୁଭାଶୁଭ ଏ ପ୍ରକାରେ
ଧୌମ୍ୟ ସୋହିତେ ବୁଝାଇ କହନ୍ତି ସଭାରେ
ବାର ତିଥିଗୋଟି ଜାଣ ହୋଇଛି ପତନ
କହିଲେ ଯେ ତିଥିଚକ୍ର ପାତ ଗ୍ରହପୁତ ।
ପ୍ରତିପଦ ଦିନ ଯେବେ ରଜୋବତୀ ହୋଇ
ଅତି ମହାପାପୀ ତାକୁ ଛୁଇଁ ନ ଯୋଗାଇ ।

ଦ୍ବିତୀୟା ଦିନ ହୋଇବ ଯେବେ ରଜୋବତୀ
ଏକା ସ୍ବାମୀରେ ତା ଦିନ ଯାଇ ପୁଷ୍ପବତୀ ।
ତୃତୀୟା ଦିନ ହୋଇବ ଯେବେ ରଜୋବତୀ
ଯୁବତୀ ହୋଇ ପାଇ ସେ ଅନେକ ସମ୍ପତ୍ତି ।
ଚତୁର୍ଥୀ ଦିନ ହୋଇବ ଯେବେ ରଜୋବତୀ
ସେ ସ୍ତ୍ରୀର ଅଙ୍ଗ ଛୁଇଁଲେ ଦୋଷ ଅପ୍ରମିତ ।
ପଞ୍ଚମୀ ଦିନ ହୋଇଲେ ରଜୋବତୀ ନାରୀ
ଶତଶ୍ରୀ ସ୍ତ୍ରୀ ପ୍ରତ୍ୟକ୍ଷେ ସେ ବଢ଼ଇ ତା ଶିରୀ ।
ଷଷ୍ଠୀଦିନ ଯେବେ ରଜଗ୍ରାହିଣୀ ହୁଅଇ
ଦୁର୍ଭଗା କଳହୀ ହୋଇ ଯେ ସ୍ତ୍ରୀ ରହଇ ।
ସପ୍ତମୀରେ ଯେଉଁ ନାରୀ ହୁଏ ପୁଷ୍ପବତୀ
ପୁତ୍ର ଦୁହିତା ଉପୁଜେ ସୁଭଗା ଯୁବତୀ ।
ରଜୋବତୀ ହେଲେ ନାରୀ ଅଷ୍ଟମ ଦିବସ
ଧନ ହାନି ହୁଏ ପୁଣି ଲଭେ ବହୁ କ୍ଳେଶ ।
ନବମୀରେ ରଜୋବତୀ ହୁଏ ଯେବେ ନାରୀ
ବିଧବା ହୁଅଇ ସ୍ବାମୀ ମରଇ ତାହାରି ।
ଦଶମୀ ଦିନ ହୁଅଇ ଯେବେ ରଜୋବତୀ
ପୁତ୍ର ଦୁହିତା ଉପୁଜେ ବଢ଼ଇ ସମ୍ପତ୍ତି ।
ଯେଉଁ ସ୍ତ୍ରୀ ରଜୋବତୀ ହୁଏ ଏକାଦଶୀ
ସ୍ବାମୀ ନାଶଯାଇ ହୁଏ ସେ ଅଘରବାସୀ ।
ଦ୍ବାଦଶୀ ଦିନ ହୋଇବ ଯେବେ ରଜୋବତୀ
ସେ ସ୍ତ୍ରୀ ଛୁଇଁଲେ ମହାପାପୀ ହେବ ସତ ।
ତ୍ରୟୋଦଶୀ ଦିନ ଯେବେ ହୋଇ ରଜୋବତୀ
ନିଜ ସ୍ବାମୀ ସଙ୍ଗେ ସ୍ତ୍ରୀ ସୁଖରେ ରହନ୍ତି ।
ଚତୁର୍ଦ୍ଦଶୀ ଦିନ ରଜୋବତୀ ହୁଏ ଯେବେ
ବହୁତ ପାତକୀ ହୋଇ ମରେ ସବୁଟନ୍ତେ ।
ରଜୋବତୀ ହୁଏ ଯେବେ ଅମାବାସ୍ୟା ଦିନ
ତାକୁ ସେନ ଧରି କଲେ ହେବ ନିଃସନ୍ତାନ
ପୂର୍ଣ୍ଣମୀରେ ଯେବେ ସ୍ତ୍ରୀ ହୁଏ ରଜୋବତୀ
ଗ୍ରହଣ ଖଣ୍ଡିଆ ହୁଏ ତାହାର ସନ୍ତତି
କାମଦେବ କହିଲେ ଏ ରଜସ୍ବଳ କଥା
ଦଶମୀରେ ହୋଇଲା ଏ ନର୍ଦ୍ଦୋଷୀ ବନିତା ।
ପୁଣିହିଁ ନକ୍ଷତ୍ର ତତ୍ତ୍ୱ ପାତିଲେ ପଣ୍ଡିତେ
ଯେ ନକ୍ଷତ୍ରେ ଯେଉଁ ଫଳ ହୋଇବ ଯେମନ୍ତେ
କୃତ୍ତିକା ରୋହିଣୀ ଆର୍ଦ୍ରା ଉତ୍ତର ଫାଲ୍‌ଗୁନୀ
ମଘା ହସ୍ତା ମୂଳା ଅନୁରାଧା ଜ୍ୟେଷ୍ଠା ସେନ

ପୂର୍ବଭାଦ୍ର ଉତ୍ତ, ଭାଦ୍ର ପୂର୍ବାଷାଢ଼ା ସେହ
ଧନିଷ୍ଠା ଶତଭିଷା ସେ ମୃଗଶିର ପୁଣି ।
ଏତେ ନକ୍ଷତ୍ରେ ହୋଇବ ଯେବେ ରଜୋବତୀ
ଧନ ପୁତ୍ରବତୀ ହେବ ପତିରେ ଭକତ ।
ପୁନର୍ବସୁ ପୁଷ୍ୟା ଅଶ୍ଳେଷା କନ୍ୟା ଆଉର
ଚିତ୍ରା ସ୍ୱାତି ବିଶାଖା ଯେ ଅନୁରାଧା ଅପର ।
ଉତ୍ତରାଷାଢ଼ା ଶ୍ରବଣା ଅଭିଜିତ ସେହ
ଅଧିକା କହନ୍ତି ଏହି ନକ୍ଷତ୍ର ଯେ ତିନ ।
ଅଶ୍ୱିନୀ ଦ୍ୱିଜା ରେବତୀ ତିନ ଯେ ନକ୍ଷତ୍ର
ବେଶ୍ୟା ବୋଲି କହନ୍ତି ଜାଣି ରଜତନ୍ତ୍ର ।
ଧୌମ୍ୟ ପୁରୋହିତେ ଏହା ବିସ୍ତରି କହନ୍ତି
ନକ୍ଷତ୍ରର ଶୁଭାଶୁଭ ଫଳ ଏଥେ ସ୍ଥିତ ।
ଏ ନକ୍ଷତ୍ର ଜନ୍ମରେ ଯେ ନାହିଁ ପାପକର୍ମ
ରୋହିଣୀନକ୍ଷତ୍ର ହେଲେ ପାଇବ ଏ ଧର୍ମ ।
ଯୋଗତନ୍ତ୍ରମାନ ଚିହ୍ନି ପାଉଁଲେ ପଣ୍ଡିତେ
ବିସ୍ତରିଲେ ସେ ସମସ୍ତ ଗୁଣ ଶୁଭଅର୍ଥେ ।
ବିଷ୍କୁମ୍ଭ ଯେ ଆୟୁଷ୍ମାନ ସୌଭାଗ୍ୟ ଶୋଭନ
ବ୍ୟତିପାତ ହରଷଣ ପରିଘ ଯେ ବୃଦ୍ଧି ।
ବହୁସ୍ୱର ଏ ଯୋଗରେ ହେଲେ ରଜୋବତୀ
ଧନ ଧାନ୍ୟ ଉପୁଜାଇ ହୁଏ ଭାଗ୍ୟବତୀ
ପ୍ରୀତି ଅତିଗଣ୍ଡ ଧୃତି ଶୂଳ ଇନ୍ଦ୍ର ଯୋଗ
ଭୋଗିଷ୍ଠା ହୁଏ ପୁତ୍ରବତୀ ଖୋଜେ ରତିଭୋଗ ।
ଶୁକ୍ଳ ଇନ୍ଦ୍ର ବରୀୟାନ ଶିବ ଗଇ ଧୃତି
ସନ୍ତାନବାନ ହୁଅଇ ହେଲେ ରଜୋବତୀ ।
ଶୁଭ ବୃଦ୍ଧି ସିଦ୍ଧ ସାଧ୍ୟ ଅମୃତ ଏ ଯୋଗେ
ରଜୋବତୀ ହେଲେ ନାରୀ ରହେ ସୁଖଭୋଗେ
ଗଣ୍ଡ ଅତିଗଣ୍ଡ ଶୂଳ ସୁକର୍ମା ବ୍ୟାଘାତ
ରଜୋବତୀ ହେଲେ ଜରେ ସର୍ବଂଶ ନିପାତ ।
ଉଲ୍ଲଙ୍ଘି ସକଳ ଦୋଷ ଏ ଯୁବତୀ
ଶୁଭ ବୋଲି ବାମଦେବ ପଣ୍ଡିତ କହନ୍ତି ।
କରଣ ତନ୍ତ୍ରକୁ ପ୍ରାନ୍ତ କହନ୍ତି ପଣ୍ଡିତେ
ଯେଉଁ କରଣରେ ଯେଉଁ ଫଳ ହୁଏ ଯେତେ
ବବ ବାଳବ କୌଳବ ତୈତିଳ ବାଣିଜ୍ୟ
ଏ ଯୋଗରେ ରଜୋବତୀ ହେଲେ ପାଇ ରାଜ୍ୟ
ବିଷ୍ଟି ଶକୁନି କିଂସ୍ତୁଘ୍ନ ଆଉ ଗର ନାଗ
ଚତୁଷ୍ପଦ କରଣ ଏ ଷଷ୍ଠେ ପାପଯୋଗ ।

ପୁଣ୍ୟ ଉପୁଜନ୍ତି ବୋଲି ସପତାଙ୍ଗ ବୃଷ୍ଟି
ସ୍ୱେଚ୍ଛା କରନ୍ତେ କହିଲେ ବୃଷ୍ଟି ସବୁ ପାଞ୍ଚି ।
ଗୁରୁ ଏକାଦଶେ ଚନ୍ଦ୍ର ବୃଷ ରାଶି ସ୍ଥିତ
ଗଉଷା ଦଶମେ ସପ୍ତମରେ ଭୃଗୁସୁତ ।
ତୃତୀୟରେ କୁଜ ରାହୁ ବୁଧ ଯେ ନବମ
ସରବ ଶୁକ୍ର ମିଥୁନ ଲଗନ ଉତ୍ତମ ।
ବିସ୍ତାରଣ ଅନୁକୂଳ ତେଲେ ଗ୍ରହପୁଣେ
ଉତ୍ସବ ଉଧାନମାନ କଲେ ଦାନ ସାଗେ ।
ପ୍ରଥମ ଦିନେ ଛୁଇଁଲେ ଚଣ୍ଡାଳର ସରି
ଯେତେବେଳେ ଛୁଇଁ ତେତେବେଳେ ସ୍ନାନ କରି
ଦ୍ୱିତୀୟ ଦିନ ଛୁଇଁଲେ ଅଶୁଚି ଯୁବତୀ
ସମ୍ମୁଖର ଯାଏ ପିତୃ ଜଳହିଁ ନ ପାନ୍ତି ।
ରଜୋବତୀକୁ ଛୁଇଁଲେ ତୃତୀୟ ଦିବସେ
ଅବଶ୍ୟ ମଙ୍ଗଳ ସେହି ଲଙ୍ଘଭଗ୍ନ ଦୋଷେ ।
ଚତୁର୍ଥ ଦିବସେ ଯେବେ ଛୁଏଁ ରଜୋବତୀ
ଅବଶ୍ୟ ତା ପିତୃଲୋକେ ଅନ୍ନହିଁ ନ ପାନ୍ତି ।
ପଞ୍ଚମ ଦିନରେ ଯାଇ କରିବ ଯେ ସ୍ନାନ
ପାକଶାଳେ ପଶି ସେହି କରିବ ରନ୍ଧନ ।
ପବିତ୍ର ମୃତ୍ତିକା ଷଷ୍ଠ ଦିବସରେ ଲେପି
ଦେବାଳୟେ ପଶି ସ୍ନାନ କରିବ ଯଦ୍ୟପି ।
ସପ୍ତମ ଦିବସ ଯେ ଯିବ ସ୍ୱାମୀ ପାଶ
ଏତେ ଜ୍ଞାନ ଥିଲେ ତାର ହରେ ସର୍ବ ଦୋଷ
ଯାହା ବର୍ଣ୍ଣିଲି ଲିଖିଲେ ଶାସ୍ତ୍ରରେ ପୁରାଣେ
ଦେଖିଲି ମୁଁ ଗୋସାମଣୀ ଆଜ୍ଞା ପରମାଣେ ।
ବିସ୍ତର କଲେ ଏଥିରେ ଏତେ ଦୋଷ ଅଛି
ଅଳ୍ପରେ କାର୍ଯ୍ୟ କଲେ ଧର୍ମ ନାହିଁ କିଛି ।
ଜାଣନ୍ତି ଦର୍ଲ୍ଲଭ ଏ ଯେ ସାଂସାରିକ କର୍ମେ
ହେତୁ କର୍ମାଣି କହିବ ଏ ମାନବ ଜନ୍ମେ ।
କହ୍ଲତରେ ଆଜ୍ଞା ଦେଲେ ଜଗତର ମାତା
ଶାରଳା ଦାସ କହଇ ରଜଶୁନ୍ଦ ବାର୍ତ୍ତା ।
ନ ପଢ଼ିଲି ଅକ୍ଷରେ ମୁଁ ନୁହେ ଶାସ୍ତ୍ରବାଦୀ
ନ ବସିଲି ପଣ୍ଡିତଙ୍କ ସଙ୍ଗେ ମୁଁ ସମ୍ବାଦ ।
ବୃନ୍ଦାବନବାସୀ ହୋଇ ନ ପାଇ ବିପ୍ରଗୋଷ୍ଠୀ
ଅଜ୍ଞମତ ମୋହର ବାଲ୍ୟ ବୁଦ୍ଧିଗୋଷ୍ଠୀ ।
ପଣ୍ଡିତ ଜନଙ୍କୁ ମୁହିଁ କରଇ ବିନତି
ମୂକନ୍ତ ମାଗଇ କରି ନାରାୟଣ ଲୟ ।

ବାମଦେବ ପଣ୍ଡିତେ ଯା କହେ ଶାସ୍ତ୍ରଯୋଗେ
ପଣ୍ଡୁସୁତ ଧର୍ମପୁତ୍ର ଯୁଧିଷ୍ଠିରଙ୍କ ଆଗେ ।

---

## ପାଣ୍ଡବଙ୍କର ନିୟମ

ବୋଲନ୍ତି ଅଗସ୍ତି ଶୁଣ ମନୁ ନରପତି
ନଇତପେ କହିଗଲେ ରଜଶୁଦ୍ଧ ଗାନ୍ତି ।
ଫାଲଗୁନ କୃଷ୍ଣପକ୍ଷ ଦ୍ୱିତୀୟାର ତିଥି
ପଣ୍ଡିତ ବାସର ମଘାନକ୍ଷତ୍ର ଯୁକତି ।
ଦ୍ରୌପଦୀ ଶୁଦ୍ଧଅଙ୍ଗ ସପ୍ତମ ଦିବସେ
ପୁଷ୍ପବନ୍ତୀ ବନ୍ଦାପନା ଉତ୍ସବ ଉଲ୍ଲାସେ ।
ବଳପେ ପଞ୍ଚପାଣ୍ଡବେ ଏକଇ ଆସ୍ଥାନେ
ଦ୍ରୌପଦୀ ଅର୍ଘ୍ୟ ଆଣିଦେଲେ ସନ୍ନିଧାନେ ।
ପ୍ରଥମରେ ଅର୍ଘ୍ୟଦେଲେ ଧୌମ୍ୟ ପୁରୋହିତେ
ଦ୍ୱିତୀୟରେ ଗାନ୍ଧାରୀଙ୍କୁ ଦେଲେ ସେ ତୁରିତେ
ଯୁଧିଷ୍ଠି ବୋଇଲେ ଅନୁଚିତ ଉପେକ୍ଷ
ଯାଜ୍ଞସେନୀ ଦ୍ରୌପଦୀର ମୁଖଚନ୍ଦ୍ର ଦେଖ ।
ଗାନ୍ଧାରୀ ବୋଇଲେ ମୋର ବହୁକାଳ ବ୍ରତ
ତାହା ଉପେକ୍ଷିଲେ ଧର୍ମ ନୋହିବ ପ୍ରାପତ ।
ଏଥକୁ କଟାକ୍ଷ ବାକ୍ୟ ନ କର ତୁ କିଛି
ଦିବ୍ୟଚକ୍ଷୁ ଯୋଗେ ମୁହିଁ ସବୁ ଦେଖିଅଛି ।
ତପରେ ଶୁଣିଲେ ମୋତେ ସବୁ ହୁଏ ଦୃଶ୍ୟ
ଏମନ୍ତେ ବସୁଅଛଇ ଭୁବନ ବିବଶ ।
ଏତେକ ବୋଲି ଗାନ୍ଧାରୀ ହସ୍ତେ ଅର୍ଘ୍ୟ ନେଇ
ପ୍ରଥମେ ଯୁଧିଷ୍ଠି ଭୀମ ତୃତୀୟେ ଫାଲଗୁନ ।
ଚତୁର୍ଥେ ନକୁଳ ସହଦେବ ବେନିଭାଇ
ଶେଷରେ ଦ୍ରୌପଦୀ ଦେବୀ ଶିରେ ଅର୍ଘ୍ୟଦେଇ
ଜୟ ଶବଦ ମଙ୍ଗଳ ଶୁଭଧ୍ୱନି ତୋଳି
ସୁଲକ୍ଷଣୀ କନ୍ୟାମାନେ ଦିଅନ୍ତି ହୁଳହୁଳି ।
ବ୍ରାହ୍ମଣମାନେ କରନ୍ତି ତହିଁ ବେଦଧ୍ୱନି
ହୁଳହୁଳି ଦିଅନ୍ତି ଯେ ଅଷ୍ଟାଅ ଭାମିନୀ ।
ହୋଇଲା କୋଟି ସୁବର୍ଣ୍ଣ କୋଟି ରତ୍ନଦାନ
କୋଟିଏ ଦାନ ହୋଇଲା ସୁରଙ୍ଗ ବସନ ।
କୋଟିଏକ ଧେନୁ ଦେଲେ ବସ୍ତ୍ରାଭ ସହିତେ
ପୁଷ୍ପଉତ୍ସବ ଆହୁତି ଦେଲେ ଯେ ତୁରିତେ ।
ସେହି ଘୃତକୁ ସମସ୍ତେ କଲେକ ପ୍ରାଶନ
ଦେବତାମାନେ ସୁଖରେ ଭୁଞ୍ଜନ୍ତି ସମ୍ପୂର୍ଣ୍ଣ ।

ଚଳିଗଲେ ସ୍ତ୍ରୀମାନେ ବନ୍ଦାପନା ସାରି
ତହୁଁ ଋଷି ବିପ୍ରମାନେ ବେଦ ଯେ ଉଚ୍ଚାରି ।
ସୁନ୍ଦ ଉପସୁନ୍ଦ ପ୍ରାପତ ହେଉ ତୋତେ ମାତ
ଯା ବାଞ୍ଛା କରିବୁ ତୋତେ ହେଉ ସମ୍ପତ ।
ଉତ୍ସବ ସାରିଣ ଗଲେ ଯେ ଯାହାର ସ୍ଥାନେ
ନିତ୍ୟକର୍ମ ମଣୋହି ଯେ କଲେ ପାଞ୍ଚଜଣେ ।
ଦ୍ରୌପଦୀ ମଣୋହି କଲେ ପାଣ୍ଡବଙ୍କ ମେଳେ
ଆପଣା ମନ୍ଦିରେ ଶୟନ କଲେ ନିଶାକାଳେ ।
ପରଦିନ ପ୍ରଭାତରେ ମିଳିଲେ ନାରଦ
ପଞ୍ଚ ପାଣ୍ଡବଙ୍କୁ କଲେ ବହୁ ଆଶୀର୍ବାଦ ।
ଯୁଧିଷ୍ଠି ତାହାଙ୍କୁ କଲେ ବହୁତ ଆଦର
ଗନ୍ଧ ପୁଷ୍ପଧୂପ ଦୀପେ ପୂଜିଲେ ପୟର ।
ଏକାନ୍ତେ ନାରଦ ତାଙ୍କୁ କହିଲେ ଏମନ୍ତ
ପାଞ୍ଚଭାଇ ବସି କର ଗୋଟିଏ ଶପଥ ।
ଯେମନ୍ତ ଭେଦ ନ ହୁଏ ଭାଇରେ ଭାଇରେ
ପାଞ୍ଚଭାଇ କ୍ରୀଡ଼ାକର ଦ୍ରୌପଦୀ ସଙ୍ଗରେ ।
ଏହା କହି ମନଯାନେ ଗଲେ ମହାମୁନି
ଯୁଧିଷ୍ଠି ମୁନିଙ୍କ କଥା ମନେ ମନେ ଗୁଣି ।
ଏକାନ୍ତ ହୋଇ ବସିଲେ ପାଞ୍ଚଗୋଟି ଭାଇ
ଯୁଧିଷ୍ଠିର ପଚାରିଲେ ସେ ଗୁରୁଙ୍କି ଚାହିଁ ।
ବାବୁ ପାଞ୍ଚାପର୍ଶ ଯେବେ ହୁଅନ୍ତି ଯୁବତୀ
ତୁଲି ନ ଯୋଗାଇ ସାତଦିନ ସାତରାତି ।
ରଜସ୍ୱଳା ଉପରେ ତା ସଙ୍ଗ ନ କଲେ
ସେ ଶୋଣିତ ପିତୃଲୋକ ପିଅନ୍ତି ଭଲେ ।
ଏମନ୍ତ ବଚନ ଅଛି ଶାସ୍ତ୍ରର ସଂଯୋଗେ
ଦ୍ରୌପଦୀ କଥା କରିବା ଏବେ କେଉଁଭାଗେ
ଶୁଣିଲ ତ ଯାହା କହିଗଲେ ସେ ନାରଦ
ବିଚାର କର ନୋହିବ ଯେମନ୍ତେ ଘର ଭେଦ
କରଯୋଡ଼ି ଯୋଡ଼ି ତହିଁ ବୋଲେ ଫାଲଗୁନି
ତୁମ୍ଭେ ବଡ଼ଙ୍କର ହେବ ଆଜର ରଜନୀ ।
ଭୀମସେନ ଠାକୁରଙ୍କ ପାଳି କାଲି ରାତି
ମୋର ପାଳି ତାର ପରଦିନ ହେ ନୃପତି ।
ତାର ପର ରାତି ହେବ ନକୁଳର ଜାଣ
ତାର ପରଦିନ ସହଦେବଙ୍କ ପ୍ରମାଣ ।
ଯେ ଦିନ ଯେ ଜନ ଥିବ ପାଞ୍ଚାଳୀର ପୁରେ
ଆନ ଜନ ଯେବେ ଯିବ ତାର ପସ୍ତାଡରେ ।

ଦ୍ୱାଦଶ ବରଷ ସେହୁ ପଶିବ ଅରଣ୍ୟେ
ଏପରି ନିୟମ କଲେ ଭର୍ତ୍ତା ପାଣ୍ଡୁଜଣେ ।
ଏତେ ବୋଲି ସ୍ୱରଙ୍କେ ଯେ ଗଲେ ଆସ୍ଥାନକୁ
ଯୁଧିଷ୍ଠିର ବିଜେକଲେ ଦ୍ରୌପଦୀ ପୁରକୁ ।
ପ୍ରାତଃଶଯ୍ୟା ତ୍ୟଜି ଗଲେ ଦେବ ଧର୍ମସୁତ
ସ୍ନାନ ନିତ୍ୟକର୍ମ ଆଦି ସାରିଣ ତୁରିତ ।
ବିଜୟ ଧର୍ମନନ୍ଦନ ଦିବ୍ୟସିଂହାସନେ
ସ୍ୱରଗର ଯାଇଁ ବିଜେ କଲେ ସନ୍ନିଧାନେ ।
ଦ୍ରୌପଦୀ ଦେବୀ ଏମନ୍ତ ମନେ ବିଚାରିଲେ
ଅଗ୍ନିରେ ପଶିଣ ସେହୁ ସ୍ନାହାନ କରିଲେ ।
ଏକର ଉଚ୍ଛିଷ୍ଟ ଆନେ କଦାପି ନ ଦେବ
ତେବେ ଯାଇଁ ସତୀ ମଧ୍ୟେ ଗଣିତା ହୋଇବ
ଏମନ୍ତ ବିଚାରି ଦେବୀ ମନରେ ଯେ କରି
ପ୍ରତିଦିନ ଦେବୀ ଅଙ୍ଗ ଅଗ୍ନିରେ ପଖାଳି ।
ନୂତନ କାୟା ଅଗ୍ନିରୁ ବାହାରି କରନ୍ତି
ତେବେ ସେ ସ୍ୱାମୀମାନଙ୍କୁ ଅଙ୍ଗ ସମର୍ପନ୍ତି ।
ପ୍ରଥମ ଦିବସ ଯୁଧିଷ୍ଠିରଙ୍କୁ ଅଙ୍ଗ ଦେଲେ
ରଜନୀ ଶେଷରେ ଯାଇ ଅଗ୍ନିରେ ପଶିଲେ ।
ସେହି ଅଙ୍ଗଖୋଟି ଦେବୀ ସମର୍ପି ଅଗ୍ନିରେ
ନୂତନ ଶରୀର ତହୁଁ ପୁଣି ଜାତ କଲେ ।
ଦ୍ୱିତୀୟ ଦିବସରେ ବିଜେ କଲେ ଭୀମସେନ
ପାଞ୍ଚାଳୀର ସଙ୍ଗେ କଲେ କେଳି ବିନୋଦନ
ସେ ସବେ ଭୀମଙ୍କୁ ଅଙ୍ଗ ସମର୍ପିଲେ ନାରୀ
ରଜନୀ ଶେଷେ ଅଗ୍ନିରେ ପଶିଲେ ପାଞ୍ଚାଳୀ
ତୃତୀୟ ଦିବସରେ ବିଜେ କଲେ ଫାଲଗୁନ
ଅନେକ ପ୍ରୀତି ତା ସଙ୍ଗେ କଲେ ଯାଜ୍ଞସେନୀ
ଆତ୍ମମାନଙ୍କର ତୁଲେ ବାହ୍ୟ ଅଙ୍ଗ ସଙ୍ଗ
ଅର୍ଜ୍ଜୁନଙ୍କୁ ପ୍ରୀତିପଣେ ସମର୍ପଇ ଅଙ୍ଗ ।
ରଜନୀ ଶେଷେ ଉଠିଲେ ତହୁଁ ମହାମାୟୀ
ଅଗ୍ନିରେ ସେହି ଶରୀର ନେଇ ସମର୍ପଇ ।
ନୂତନ କାୟା ଅଗ୍ନିରୁ ସେହୁ ଜାତ କଲେ
ନକୁଳ ଚତୁର୍ଥଦିନ ସବେ ବିଜେ କଲେ ।
ରତିରଙ୍ଗେ ଦେବୀ ସବେ କରିଲେ ଯାପନ
ପ୍ରଭାତେ ହୋଇଲେ ଶୁଦ୍ଧ ଅଗ୍ନି ସଂଯୋଗେଣ
ପଞ୍ଚମ ଦିବସେ ବିଜେକଲେ ସହଦେବ
ଦ୍ରୌପଦୀଙ୍କ ସଙ୍ଗେ ସେହୁ କଲେ ବହୁ ଭାବ

ରତିରଙ୍ଗ ସାରି ସହଦେବ ପ୍ରଭାତରେ
ନିତ୍ୟକର୍ମ କରି ବିଜେ କଲେ ଆସ୍ଥାନରେ ।
ଦ୍ରୌପଦୀ ଉଠିଣ ପୁଣି ଅଗ୍ନିରେ ପଶିଲେ
ନବତନ କାୟେ ଦେବୀ ଅଗ୍ନିରୁ ଜନ୍ମିଲେ ।
ଅନ୍ୟ ସ୍ତ୍ରୀମାନେ ଜଳେ କରିଥାନ୍ତି ସ୍ନାନ
ଦ୍ରୌପଦୀ ହୁଅନ୍ତି ମାତ୍ର ଅଗ୍ନିରେ ପବନ ।
ସତୀଙ୍କ ମଧ୍ୟେ ସେ ଯେଣୁ ଅଟନ୍ତି ପ୍ରଧାନ
ତେଣୁକରି ଏହାଙ୍କର ଯଶ ଗାଅଜଣ ।
କାହାକୁ କାହା ଉଚ୍ଛିଷ୍ଟ ସେହୁ ନ ଦିଅନ୍ତି
ନୂତନ ଶରୀର ଧରି ଦେହ ସମର୍ପନ୍ତି ।
ଏମନ୍ତ ତିରିଶ ଦିବସରେ ସେ ପୁଣ ପୁଣି
ପାଳିବାରରେ କରନ୍ତି ବିଜେ ପାଞ୍ଚଜଣ ।
ଏରୂପେ ଅଗ୍ନିରେ ନିତ୍ୟ ଅଙ୍ଗ ପଖାଳନ୍ତି
ନୂତନ ଶରୀର ପାଞ୍ଚ ପତିଙ୍କି ଦିଅନ୍ତି ।
ଅନ୍ତଃପୁର ମଧ୍ୟରେ ଯେ ଦ୍ରୌପଦୀ ରହନ୍ତି
ଆନନ୍ଦର କେହି ତାଙ୍କ ଅନ୍ତକ ନ ଯାନ୍ତି ।
ଦୋହଦ ଅଗ୍ନିରେ ସ୍ନାନ କଲେ ଯାଜ୍ଞସେନୀ
ପାଞ୍ଚଙ୍କ ମନ ହରଷ କରଇ ମାନିନୀ ।
ତେବେ ସେ ତୁଅଇଁ ଯାଇଁ ଯୁଧିଷ୍ଠିରଙ୍କ କାୟ
ସତୀର ମହିମା ଦେଖ ଆହେ ମନୁରାୟ ।
ମାସକେ ଦ୍ରୌପଦୀ ପାଦାପ୍ରର୍ଣ୍ଣୀ ହୁଏ ସତୀ
ପାଞ୍ଚଙ୍କୁ ଦିଅଇ ଶୁଦ୍ଧଅଙ୍ଗ ପାଞ୍ଚଗତି ।
ପୁଣି ସେ କାୟା ଦହନ କରେ ଅଗ୍ନିକୁଣ୍ଡେ
ଅଗ୍ନିରୁ ଯେ ଉପୁଜଇ ପୁଣି ଆନ ପିଣ୍ଡେ ।
ତେବେ ଯାଇଁ ଯୁଧିଷ୍ଠିରଙ୍କି ଦିଏ ଅଙ୍ଗଭୋଗ
ଏସନ ମହିମା ଦେବୀ ଅପର୍ଣ୍ଣାର ଅଙ୍ଗ ।
ମନୁ ପୁଚ୍ଛା କଲେ ଆହେ ଅଗସ୍ତି ମହାତ୍ମା
ଦ୍ରୌପଦୀର କହିଲ ତ ଅସଂଖ୍ୟ ମହିମା ।
ମାସକରେ ଦେବୀ ଦଗ୍ଧ କଲେ ନିଜକାୟେ
ଅଗ୍ନିରୁ ନବଶରୀର ପୁଣି ଜାତ ହୁଏ ।
ସନ୍ତାପଣଙ୍କୁ ତ ବଡ଼ ଦୁର୍ଲ୍ଲଭ ଏ କଥା
ସତ୍ୟଯୁଗେ ଶୁଣାନାହିଁ ଏସନ ବାରତା ।
ବଦନ୍ତି ଅଗସ୍ତି ମୁନି ଶୁଣ ମନୁରାୟ
ପ୍ରତ୍ୟକ୍ଷରେ ନିରଞ୍ଜନ ଧର୍ମର ତନୟ ।
ଯୁଧିଷ୍ଠିର ଦେବଙ୍କୁ ଅଙ୍ଗଭୋଗ ସେ ଦିଅଇ
ଆଉମାନେ ଗମନ୍ତି ତ ତାଙ୍କ ଜ୍ଞାନ ନାହିଁ ।

ତାହାଙ୍କୁହିଁ ଅଙ୍ଗଭୋଗ ଦଅଇ ପାଞ୍ଚାଳୀ
କେମନ୍ତେ ଏ ଦେହ ଦେବ ଯୁଧିଷ୍ଠିଙ୍କି ଭଳ
ସୁରଜଣ ଲଭନ୍ତ ତ ହୋଇ ଜ୍ଞାନଭ୍ରଷ୍ଟ
ଯୁଧିଷ୍ଠିଙ୍କ ଦେବ କେହ୍ନେ ଏହାଙ୍କ ଉଚ୍ଛିଷ୍ଟ ।
ଏତେକ ଈଶ୍ୱର ଦେବୀ ଦଗ୍‌ଧ କରେ ଅଙ୍ଗ
ନବଦେହ ଯୁଧିଷ୍ଠିଙ୍କି କରାଏ ଯେ ଭୋଗ ।
ସୁଦ୍ଧସ୍ନାନ ଏହାଙ୍କର ଅଟଇ ଯେ ଅଗ୍ନି
ଜଳସ୍ନାନ ପ୍ରାୟେ ତାହା ମଣେ ଯାଜ୍ଞସେନୀ ।
ମାସେ ପାଞ୍ଚବେଳ ଦେହ କରଇ ଦହନ
ପାଞ୍ଚଥର ହୋଇ ତାର ଦେହ ନବତନ ।
ଶୁଣି ପରମ ଆନନ୍ଦ ହେଲେ ଯୁଗପତ
ଅନେକ ପୂଜା କଲେ ସେ ପଣ୍ଡିତ ଅଗସ୍ତି ।
ସାଧୁ ମହାତମା କୃଷ୍ଣ ବଞ୍ଜ ଭାଗ୍ୟବନ୍ତା
ତୋହର ମାର୍ଜନା ସିନା ହୋଇଲା ଏ କଥା
ଶୁଣିବ ମଧ୍ୟପର୍ବର ପବନ ଏ ବାଣୀ
ଶରୀର ନର୍ମଳ ହେବ ଜଡ ମୂର୍ଖ ଶୁଣି ।
କହନ୍ତି ଅଗସ୍ତି ଘଟଋଷିଙ୍କର ବାଳ
ମନୁ କଲ୍ପାନ୍ତରେ ଯାହା ତେଜ ଅନର୍ଗଳ ।
ଭୀମସେନର ଅଟଇ ଦୁଷ୍ଟ ଯେ ପ୍ରକୃତି
ଆହାରେ ସଂଗ୍ରାମେ ନାହିଁ ଶୃଙ୍ଗାରେ ତୃପତ ।
ନତ୍ୟେ ସେ ବଳେ କରଇ ଦ୍ରୌପଦୀ ପୁରକୁ
ଭାବେ ଯେ ପାଞ୍ଚାଳୀଦେବୀ ଇଚ୍ଛାଏ ତାହାକୁ ।
ଦେବ କାଳ ସଂଯୋଗ ଯେ କନ୍ଥ ନ ଈଶ୍ୱର
ଅନୁକ୍ଷଣ ଦ୍ରୌପଦୀଙ୍କୁ ବଳାତ୍କାର କର ।
ସୁନ୍ଦରୀ ଅପର୍ଣ୍ଣା ସେହୁ ଅତି ଅସହଣୀ
ଭୀମସେନ ଦେଖି ଭୟ କରେ ଠାକୁରାଣୀ ।
ଯେତେବେଳେ ବୃକୋଦର ପ୍ରତାପେ ଆସଇ
ଭୟେ ଯାଜ୍ଞସେନୀ ଯାଇଁ ଅଗ୍ନିରେ ପଶଇ
ଭୀମସେନ ତାହାଙ୍କର ପୁରଯାକ ଲୋଡ଼ି
ନ ପାଇ ବରସେ ବୀର ଆସଇ ବାହୁଡ଼ି ।
ଯୁଧିଷ୍ଠି ନକୁଳ ବୀର ପାର୍ଥ ସହଦେବ
ସମସ୍ତ ପୁର ଲୋଡ଼ଇ ଯେ ସୁର ପାଣ୍ଡବ ।
କେବଣ ସ୍ଥାନେ ନ ପାଇ ସତୀ ଯାଜ୍ଞସେନୀ
ଅଗ୍ନିଙ୍କ ସ୍ତୁତି ରୋଦନ କରଇ ଯାବନ୍ତ ।
ଏହୁ ଅନନ୍ତରୁ ଜାତ ହୋଇଲା ସୋ ଦେବୀ
ପାଞ୍ଚଙ୍କ ଆର୍ଦ୍ଧୋଳ ସତ୍ୟ ହେଲା ପରାଭବୀ ।

ଅନେକ ବିଳାପ ତାର ଦେଖି ଧନଞ୍ଜୟ
ଅଗ୍ନିରୁ ବିକାଶ କଲେ ଦ୍ରୌପଦୀର କାୟ ।
ଅଣାଇ ହୁଅନ୍ତେ କିଛୁ କାଳ ଏ ପ୍ରକାରେ
ଶୁଣନ୍ତେ ସେ ଋଷିପାଠ ଯୁଧିଷ୍ଠି ପଛୁରେ ।
ଦ୍ରୌପଦୀ ବୋଇଲେ ମୁଁ ଯେ ହୋଇଲି ବିମୁଖ
ଏହା ଭୀମସେନ ଦେଲା ମୋତେ ମହାଦୁଃଖ
ଅଗ୍ନିରେ ପଶିଲି ମୁହିଁ ଭୀମସେନ ଡରେ
ଏହା ଆର୍ଦ୍ଧୋଳ କେ ସହେ ସ୍ତ୍ରୀ ସାମାନ୍ୟ ସ୍ତ୍ରୀରେ
ଶତଶୃଙ୍ଗ ଗିରି ଯାଇ ପାଦ ଲାଗି ତୃଣା
ମୁହିଁ ତ ଅବଳା ସ୍ତ୍ରୀର ସ୍ତ୍ରୀ ମାତ୍ର ସିନା ।
ସ୍ତ୍ରୀଙ୍କର ଋତୁବ୍ରତ କ୍ଷଣ ଅଙ୍ଗ ଅନ୍ତେ
ପୁରୁଷ ନ ହୁଏ ସହ୍ରାସନ ପଞ୍ଚଯନ୍ତେ ।
ମାସକେ ଯେ ଜନଦେବ ଯୋଗସ୍ୱାମୀଠାରେ
ଥରେକେ ସିନା ବଢ଼ବତ୍ ଥାଇ ଏ ଶରୀରେ ।
ଅମିତ ସହବାସରେ ଆୟୁ ହୁଏ ହାନ
ତାହା ଯେ ଭୀମ ନ ବୁଝି ଆସଇ ଅଜ୍ଞାନୀ ।
ଯୁଧିଷ୍ଠି ବୋଇଲେ ଏବେ ନିୟମ ଆମ୍ଭର
ମାସକରେ ପାଞ୍ଚଗୋଟି ସିନା ପାଞ୍ଚଙ୍କର ।
ଯାହାର ପାଳି ଅଟଇ ଯେବଣହିଁ ଦିନ
ଦ୍ୱାରେ ସଡ଼ଙ୍ଗ ଖୋଞ୍ଚଣ ପଶିବ ରଜନ ।
ଯେବା ଜ୍ଞାନଭ୍ରଷ୍ଟ ହୋଇ ପଶିବ ଭିତରେ
ସଡ଼ଙ୍କ ଦେଖି ବାହୁଡ଼ି ଆସିବ ସତ୍ୱରେ ।
ଏଥର ଏକାନ୍ତ ଯେବେ ଆରେକ ଦେଖିବ
ଦ୍ୱାଦଶ ବରଷଯାଏ ବନରେ ପଶିବ ।
ଏଥୁ ଆନ ଭାବେ କେହୁ ନ ଯିବ ତା ପୁରେ
ଗଲେ ବୋଲେହା ହୋଇବ ମାତାଙ୍କପଦୁରେ
ପାଞ୍ଚସହିଁ ଯେ ମୃନ ଆମ୍ଭ ପାଞ୍ଚଙ୍କର
ମାସକ ମଧ୍ୟରେ ଏହି ନିୟମ ଆମ୍ଭର ।
ଏସନ ନିୟମ ପୁଣି କଲେ ପାଞ୍ଚବୀରେ
ପାଞ୍ଚେହେଁ ହାତ ଭରିଲେ ଜଳର ଭିତରେ ।
ଆରବେଳେ ଦ୍ରୌପଦୀର ପାଶକୁ ଯେ ଯିବ
ଦ୍ୱାଦଶବରଷ ବନବାସ ଯେ କରିବ ।
ଏସନକ ନିୟମକୁ କରି ପାଞ୍ଚଭ୍ରାତେ
ଆରଦିନେ ନ ଗଲେ ତା ପୁରେ କଦାଚତେ
ଏମନ୍ତ ନିୟମ ପୁଣି କରଇ ପାଞ୍ଚାଳୀ
ଅଗ୍ନିଙ୍କ ସାକ୍ଷୀ ରଖିଲେ ନ ଲଙ୍ଘିବ ପାଳି ।

ମାସକେ ପାଳ ପଡ଼ଇ ଜାଣ ପାଣ୍ଡବନେ
ବୃଦ୍ଧଜର ପାଳଥାନ୍ତି ପାଞ୍ଚେ ଏକମନେ ।
ଏସନକ ନୟମରେ ରହି ପାଣ୍ଡୁଭ୍ରାତେ
ଏହିମତ ଗଲା ପାଞ୍ଚ ବରଷ ପର୍ଯ୍ୟନ୍ତେ ।
ଜୟ ତୁ ଶାରଦା ମାଗୋ ଜୟ ସମଚଣ୍ଡୀ
ସିନ୍ଦୂରେ ମଥାକୁ ତୋର ଦେଇଥାଉ ମଣ୍ଡି ।
ଲୁଚୁହଳ ହାଥ ଖଣ୍ଡି ଖାଏ ତୋତେ ଶୋଷ
ଜଗତ ଜନନୀ ତୁଗୋ ମହେଶ ବଲ୍ଲଭ ।
ତୋର ପାଦତଳେ ସେବ ଶ୍ରୀ ଶାରଳା ଦାସ
ଲେଖଇ ଭାରତ ମଧ୍ୟପର୍ବର ରହସ୍ୟ ।

---

## ଅର୍ଜ୍ଜୁନର ବନବାସ

ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ବଇଶାଖ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥି ।
ରବିବାର ଯେ ରେବତୀ ନକ୍ଷତ୍ର ସେ ଦିନ
ଯୁଧିଷ୍ଠିର ବିଜେ କଲେ ଦ୍ରୌପଦୀ ଭବନ ।
ବୈଶ୍ୱାନର ଦେବ ଏତେ ବ୍ରାହ୍ମଣେକ ହୋଇ
ଅର୍ଜ୍ଜୁନର ସନ୍ନିଧିରେ ପ୍ରବେଶିଲେ ଯାଇ ।
ବେଦଧ୍ୱନି କରଣ ସେ ବୋଇଲେ କପଟି
ମୋର ଧେନୁକୁ ହରାଇ ଆଣ ତୁ ଯୁଧିଷ୍ଠି ।
ଏହିକ୍ଷଣି ଧାଡ଼ିକାରେ ଘିଲୁ ଅରଜୁନ
ଛାଡ଼ ନିଃଶ୍ୱାସେ ଆଣିବୁ ମୋର ସନ୍ନିଧାନ ।
ଯୁଧିଷ୍ଠି ରୁ ନ ଆଣିବୁ ଯେବେ ମୋର ଜତ
ଏହିକ୍ଷଣି ବିନାଶ ମୁଁ କରିବି ସବୁନ୍ତ ।
ଦ୍ରୌପଦୀ ପୁର ସହିତ ପାଣ୍ଡବ କୌରବେ
ମୋହର ବୋଲେ ଏକ୍ଷଣି ଦଗ୍ଧ ହୋଇଯିବେ
ଅନ୍ତଃପୁରେ ଅଛନ୍ତି ସେ ବୋଇଲେ ଅର୍ଜ୍ଜୁନ
କେମନ୍ତେ ମୁହିଁ ଯିବଇଁ କହ ହେ ବ୍ରାହ୍ମଣ ।
ନ କାର୍ଯ୍ୟ ଅଛି ତୁମ୍ଭର କହ ମୋର ଆଗେ
ସେ କାର୍ଯ୍ୟ ସାଧି କରିବି ପ୍ରାଣପଣେ ବେଗେ
ବ୍ରାହ୍ମଣ ବୋଇଲା ମୋର ଘରେ ପଶି ଚୋର
ଅହାର ନଷ୍ଟକେ ବଳେ ଘୋଳୁପଲ ମୋର ।
ରକ୍ଷି ତୁ ପାରିବୁ ଯେବେ ରକ୍ଷା କର ଯାଇ
ନୋହିଲେ ରାଜାକୁ ଆଣ ମୋ ପାଖକୁ ଧାଇ
ଗୁହାରି କରିବି ସେହି ରାଜା ଆଗେ ବେଗେ
ଚୋରଙ୍କୁ ଧରି ସେ ଶାସ୍ତି ଦେବ ମୋର ଆଗେ
ନ ଆଣିଲେ ପୁରଯାକ କରିବ ଦହନ
ବ୍ରାହ୍ମଣର ବଚନ ଯେ ଅନଳ ସମାନ ।
ଅତି ନିଷ୍ଠୁର ବଚନ ବ୍ରାହ୍ମଣର ଶୁଣି
ଅର୍ଜ୍ଜୁନ ବକ୍ଷରେ ଅସ୍ତ୍ରଘର ଚହିଁ ପୁଣି ।
ଅସ୍ତ୍ର ନ ଆଣିଲେ ଚୋର ଧରିବି କେମନ୍ତେ
ପୂର୍ବରୁ ନିୟମ ଆମ୍ଭେ କରିଛୁ ସମସ୍ତେ ।
ଗଲେ ତ ବାର ବରଷ ବନରେ ରହିବ
ଯେବେ ମୁହିଁ ଯୁଧିଷ୍ଠିରଙ୍କ ପୁରକୁ ନ ଯିବ ।
ମଧୁପିଙ୍ଗଳ ବ୍ରାହ୍ମଣ ଅଟେ ବଡ଼ତେଜ
ଶାପ ଦେଲେ ବଂଶଯାକ ହୋଇବେ ଭସ୍ମଯ୍ୟ
ମୁହିଁ ଏକା ଜଣେ ସିନା ବନବାସ ଯିବି
ବ୍ରାହ୍ମଣକୁ ତୁଷ୍ଟାଇ ମୁଁ ଭିତରେ ପଶିବି ।
ଯୁଧିଷ୍ଠିର ଦ୍ରୌପଦୀଙ୍କ କଥାବାର୍ତ୍ତାବେଳେ
ପ୍ରବେଶ ହେଲ କପଟି ଯାଇ ସେହିକାଳେ ।
ତାହାଙ୍କୁ ଦେଖିଣ ପୁଚ୍ଛା କରିଲେ ଯୁଧିଷ୍ଠି
ଏମନ୍ତ କୃତ୍ୟ କେମନ୍ତେ କଲୁ ରେ କପଟି ।
ଶାମର ଭୟେ କଲଇଁ ସିନା ଏତେ କୃତ୍ୟ
ତୁ ବନେ ପଶିଲୁ ଛାଇ ଲଙ୍ଘିଣ ଶପଥ ।
ବାବୁ ରେ ଅପାର ଦୋଷ ଏକାନ୍ତ ଭଞ୍ଜିଲେ
ଯେ ପାପ ହୁଏ ଅପୂଜାଲିଙ୍ଗ ଭଗ୍ନ କଲେ ।
ଲିଙ୍ଗଭଗ୍ନ କଲେ ବ୍ରହ୍ମହତ୍ୟା ଦୋଷ ହୋଇ
ପର ଏକାନ୍ତ ଭଞ୍ଜିଲେ ଏତେ ଦୋଷ ପାଇ ।
ଅର୍ଜ୍ଜୁନ ବୋଇଲେ ଆନ ନ ଧରନ୍ତୁ ମନେ
ଯାହା ମୁହିଁ କହୁଅଛି ଶୁଣ ସାବଧାନେ ।
ବେଗ ହୋଇ ବାହାରକୁ ବିଜୟ କରିବା
ବ୍ରାହ୍ମଣେକ ଆସିଅଛି ତା କଥା ବୁଝିବା ।
ଗାଈ ତାର ଚୋରଜନ ନେଇଛନ୍ତି ଚୋରେ
ମୁହିଁ ରଖିଥାନ୍ତି ଅସ୍ତ୍ର ଅଛି ଏହି ପୁରେ ।
ତେଣୁ ମୁହିଁ ଅଇଲଇଁ ଅସ୍ତ୍ର ନେବାପାଇଁ
ବ୍ରାହ୍ମଣର ଗୁହାରି ମୁଁ ତୁମ୍ଭଙ୍କୁ ଜଣାଇ ।
ନ ଆସିଲେ ବିପ୍ରଶାପେ ପୋଡ଼ିଯାନ୍ତା ପୁର
ମୁଁ ପଛେ ବନକୁ ଯିବି ନାହିଁ ମୋର ଡର ।
ବିପ୍ର ବୋଇଲ ରାଜାଙ୍କୁ ବେଗେ ନ ଆଣିଲେ
ପୁର ତୋହର ଦହନ ହେବ ପିଠ କଲେ ।
ନିଷ୍ଠୁର ବାକ୍ୟ କହିଲା ଯେତେ ଦ୍ୱିଜବର
ତେଣୁ ମୋ ଦେବ ଅଇଲି ମୁଁ ଭିତର ପୁର ।

ଆବର ବଣେଷେ ହାରେ ସନ୍ଦେହ ତ ନାହିଁ
ବନ୍ଧୁରଲ ଯାଞ୍ଚସେନୀ ପୂରେ ନାହିଁ କେହି ।
ଯୁଧିଷ୍ଠି ବୋଇଲେ ମୋର ପାଣ୍ଡୋଇ ଯେ ଥିଲା
ଜାଣିଲି କୁକୁର ତାକୁ ସେନ ପଳାଇଲା ।
ଏତେ ବୋଲି ଶାପ ଦେଲେ ଧର୍ମର ସନ୍ତତି
ଆରେ ଆରେ ଶ୍ୱାନ ତୁହି ଅଟୁ ମନ୍ଦଜାତି ।
ଆରେ ରେ ଅଜ୍ଞାନୀ ମୋତେ ଦେଲୁ ତୁହି ଲାଜ
ଅପର ଦେଖିଲା ପୃଥ୍ୱୀ ମୋର ହୀନାଚାର୍ଯ୍ୟ ।
ତୋହର ରମଣ ଲୋକେ ଦେଖନ୍ତୁ ସଂସାରେ
ବାଣ୍ଡ ହାଟ ବାଟେ ନୀଡ଼ା କର ସବୁଠାରେ
ମାର ମାର ବୋଲିକରି ସକଳେ କହିବେ
ପାଣ୍ଡବଙ୍କ ଶାପ ଏହୁ ବୋଲି ବଖାଣିବେ ।
ଏତେ ବୋଲି ପାର୍ଥ ସଙ୍ଗେ ବାହାରହୋଇଲେ
କେଉଁଠାରେ ବ୍ରାହ୍ମଣଙ୍କୁ ଖୋଜି ନ ପାଇଲେ
ମାୟାବୀ ବ୍ରାହ୍ମଣ ସେହୁ ହେଲା ଅନ୍ତର୍ଦ୍ଧାନ
ଲେଉଡ଼ି ନ ପାଇଲେ ତାଙ୍କୁ ପଣ୍ଡୁର ନନ୍ଦନ ।
ଅର୍ଜୁନ ବୋଇଲେ ଆମ୍ଭେ କଲଇ ନିୟମ
ତେଣୁ ଆମ୍ଭଙ୍କୁ କଷଣ ଦେଲେ ଦେବ ଧର୍ମ ।
କଷଣରୁ ପାରହୋଇ ପାରନ୍ତି ଯେ ପ୍ରାଣୀ
ସର୍ବସିଦ୍ଧି ହେଲା ତାଙ୍କୁ ପ୍ରତ୍ୟକ୍ଷ ବଖାଣି ।
ମୁହିଁ ଏବେ ଘୋରବନେ ଯାଉଅଛି ଭ୍ରମି
ସୁଚାରେ ଏ ରାଜ୍ୟ କରେ କରଥିବା ସ୍ୱାମୀ ।
ଯୁଧିଷ୍ଠି ବୋଇଲେ ବାବୁ କହିଲ ଏ କଥା
ଅଳପ କଥାକୁ ପୁଣ ବହୁତ ବ୍ୟବସ୍ଥା ।
ଏ କଥାକୁ ଚିନ୍ତା ବାବୁ ନ କର ତୁ ମନେ
ନରକେ ପଡ଼ନ୍ତି ପ୍ରାଣୀ ସତ୍ୟର ଲଙ୍ଘନେ ।
ଦ୍ରୌପଦୀ ଦେବୀ ବଚନ ହେଲେ ତାହା ଶୁଣି
ମୋତେ ଛାଡ଼ି କାହିଁପାଇଁ ଯିବ ପ୍ରାଣମଣି ।
ତୁହି ସିନା ମହାଲକ୍ଷ ବାନ୍ଧିଲୁ ଯୁକତେ
ଆପେ ବନ୍ଧା ହୋଇ ଦେଲୁ ଏହାଙ୍କୁ ତୁ ମୋତେ
ମୁହିଁ ତୋର ବଲ୍ଲଭୀ ତୁ ମୋର ପ୍ରାଣନାଥ
କ୍ଷଣେ ନ ଦେଖିଲେ ମୋତେ ଲାଗେ ଯୁଗବତ
କଷ୍ଟେ ସତ୍ୟ ରକ୍ଷି ତୁହି ବନବାସେ ଗଲେ
ମୋତେ ପ୍ରାଣନାଥ ସଙ୍ଗେ ନେଇଯାଅ ଭଲେ
ତ୍ରେତାଯୁଗେ ରାମଚନ୍ଦ୍ର ହେଲେ ବନଗାମୀ
ସୀତାଙ୍କୁ ସଙ୍ଗତେ ନେଲେ ରଘୁକୁଳ ସ୍ୱାମୀ ।

ପରମସାଧ୍ୱୀ ଖଟିଲା ରାମଚନ୍ଦ୍ରଙ୍କୁହିଁ
ପତ୍ନୀ ସଙ୍ଗେ ଥିଲେ କିଛି କ୍ଲେଶ ନ ବାଧଇ ।
ପତିର ସଙ୍ଗତେ ପତ୍ନୀ ଥିବାର ଯେ ଧର୍ମ
ନାନା ଶୁଭ ଯୋଗ ହୋଇ ନ ବାଧେ ଅକର୍ମ
ମୁହିଁ ଆନମାନଙ୍କୁ ନ ଜାଣେ ଫାଲଗୁନ
ତୁମ୍ଭଲକ୍ଷି ମୋତେ ଜାତ କଲେ ବ୍ୟାସମୁନ ।
ସତ୍ୟଯୁଗେ ବନବାସ ନଳରଜା କଲେ
ସେ ପୁଣି ଦମୟନ୍ତୀକୁ ସେନଗଲେ ଭୁଲେ
ଧରମଙ୍କୁ ଇଚ୍ଛା ଯେବେ କର ଫାଲଗୁନ
ମୋତେ ସଙ୍ଗତରେ ନିଅ ଆହେ ପ୍ରାଣମଣି ।
ଯୁଧିଷ୍ଠିର ବୋଇଲେ ଗୋ ଶୁଣ ତୁ ସୁଦନ୍ତି
ସତେ କି ଅର୍ଜୁନ ବନେ ଯିବ କଲୁ ଭ୍ରାନ୍ତି ।
ଅର୍ଜୁନ ବଦନ ତୁହିଁ ବୋଇଲେକି ଧର୍ମ
ସେ ମହାତ୍ମା ବାକ୍ୟ ସିନା କଲ୍ ତୁ ଏ କର୍ମ
କଷଣ ଦେଲା ମାୟାବୀ ସେହି ଦ୍ୱିଜବର
କାମାତୁରେ ନ ପଶିଛୁ ତୁ ଭିତର ପୁର ।
ସ୍ୱାମୀର ବଚନ ଶୁଣି ବୋଲଇ ଫାଲ୍‌ଗୁନ
କରପଦ ଯୋଡ଼ି କରେ ବିନୟେ ବଚନ ।
ପାବେ ପଡ଼ି ବୋଲେ ତୁମ୍ଭେ ଶୁଣ ଧର୍ମରାୟ
ସତ୍ୟରେ ସଂସାର ସିନା ହୋଇଛି ଉଦୟ ।
ସତ୍ୟ ପ୍ରାଣୀଙ୍କୁ କି ନୁହେଁ ଯମ କବାଟରେ
ଆପଣାର କର୍ମକୃତ୍ୟ ଲଙ୍ଘିବ କେମନ୍ତେ ।
ଦ୍ରୌପଦୀଙ୍କୁ ଉଚାରଇ ସୁହିଁ ଫାଲଗୁନ
କହିଲ ଯେବଣ କଥା ତୁମ୍ଭେ ଯାଜ୍ଞସେନୀ ।
ସୀତାଦେବୀ ଗଲେ ପୂର୍ବେ ଶ୍ରୀରାମଙ୍କ ତୁଲେ
କାଳେ ପ୍ରମାଦ ପଡ଼ିଲା ରକ୍ଷି ନ ପାରିଲେ ।
ତୁମ୍ଭେମାନେ ମନେ କେହି ନ ଦୁଃଖ କରସ
କଷ୍ଟ ପ୍ରାୟେ ମଣେ ମୁଁ ଦ୍ୱାଦଶ ବରଷ ।
ବହୁତ ଦୂରକୁ ମୁଁ ଯେ କାହିଁପାଇଁ ଯିବ
ଏହି ନିକଟ ବନରେ ମୁଁ ବାସ କରିବ ।
ମୋତେ ତ ପ୍ରମାଦ କିଛି ନାହିଁ ଘୋରବନେ
ସୁଖେ ଥିବ ଜଗନ୍ନାଥ ଦେବ ପରସନ୍ନେ ।
ମୋହର କଥାକୁ କିଛି ନ କର ଯେ ଚିନ୍ତା
ଅର୍ଜୁନଙ୍କୁ କୋଳକରି ଧରି କୁନ୍ତୀମାତା ।
ବୋଲେ ମୁଁ ଅପବ ଯେନଯାଇ ତୋର ପାର୍ଥ
ତୋତେ ନ ଦେଖି ମୋହର ଜୀବନ ଅସାର୍ଥ

ତୁମ୍ଭ ସେ କୁଳମଣ୍ଡନ ବାବୁ ବନ୍ତିନାକୁ
ଜଗନ୍ନାଥ ଦେବଙ୍କର ଅଟ ବାବୁ ବୁକୁ ।
ତୋ ମୁଖ ନ ଦେଖି ବାରବରଷ ପର୍ଯ୍ୟନ୍ତ
ମୁହିଁ ଏତେକାଳ ଦେହ ଧରିବି କେମନ୍ତ ।
କହୁ କହୁ କୁନ୍ତୀଦେବୀ ପଡ଼ିଲେକ ଢଳି
ଦ୍ରୌପଦୀ ଦେବୀ ଧଇଲେ ତୋଳକରି ତେଳି
ଚେତାପାଇ କୁନ୍ତୀ ବୋଲେ କେଣେଗଲୁ ପଣ୍ଡୁ
ସ୍ୱାମୀବିନା ପ୍ରାଣ କପାଁ ନ ଗଲା ମୋ ପିଣ୍ଡୁ ।
ଭର୍ତ୍ତାର ବିହୁନେ ବର୍ତ୍ତି ରହିଲ ଯେ ନାରୀ
ଅନେକ ଦୁଃଖ ଲଭଇ ହୁଅଇ ଦୋଷୀ ।
ସ୍ୱାମୀଙ୍କୁ ଛାଡ଼ିଣ ମୁହିଁ ହେଲି ବଡ଼ଦୁଃଖୀ
ଏ ଶରୀର ଧଇଲି ମୁଁ ସହଦେବେ ଦେଖି ।
କରପଦ ଯୋଡ଼ି ତାଙ୍କୁ ଆଶ୍ୱସଇ ପାର୍ଥ
କପାଁ ଅସାଷ୍ଟମ ତୁମ୍ଭେ ହୁଅ ଆଗୋ ମାତ ।
ଦୁଃଖକୁ ସୁମର କପା ହେଉଛ ବିମୁଖ
ମୁହିଁ ବନବାସକୁ ଗୋ ମଣେ ବଡ଼ ସୁଖ ।
ଧର୍ମଙ୍କର ପାଦତଳେ ଅର୍ଜୁନ ପ୍ରଣମି
ମୁଁ ବନକୁ ଯିବି ଆଜ୍ଞା ହେଉ ଦେବ ସ୍ୱାମି ।
ଉଠି ବେଗେ କୋଳ କଲେ ତାହାଙ୍କୁ ଯୁଧିଷ୍ଠି
ବାବୁ ନିୟମ ପଡ଼ିଲା ତୋଠାରେ କପଟି ।
ସର୍ବ୍ୟପି ତୁ ବନବାସେ ଯିବୁ ସତ୍ୟସାଠ
ବରଷେକ ପାଇଁ ଗଲେ ଦୋଷ ନାହିଁ କିଛି ।
ଅର୍ଜୁନ ବୋଇଲେ ସ୍ୱାମି ବୁଝିବା ଯୁକତେ
ଯାଉଅଛି ବନବାସେ ଆଜ୍ଞା ହେଉ ମୋତେ ।
ଅର୍ଜୁନକୁ କୋଳେ ଧରି ବୋଲେ ବୃକୋଦର
ଦ୍ୱାଦଶ ବରଷେ ବନୁ ହୋଇବୁ ବାହାର ।
ସଂକଳ୍ପ କରି କୋଟିଏ ତୀର୍ଥ ବାବୁ କରି
ନିୟମ ମେଣ୍ଟାଇ ବାବୁ ଆସିବୁ ତୁ ଫେରି ।
ଆବର ନକୁଳ ସହଦେବ ବେନଭାଇ
ଅର୍ଜୁନ ପାଦେ ବନ୍ଦନ୍ତେ ପ୍ରଣମିତ ହୋଇ ।
ଭୀଷ୍ମ ଦ୍ରୋଣ ବିଦୁର ଯେ ଶଲ୍ୟ ଭୂରିଶ୍ରବା
କର୍ଣ୍ଣ ଶକୁନି ଆବର ଯେତେ ରାଜଦେବା ।
ଅର୍ଜୁନର ବନବାସ ବାରତା ସେ ଶୁଣି
ଆଶ୍ୱାସନା କରନ୍ତି ଯେ ଜଣେ ଜଣେ ପୁଣି ।
ଭୀଷ୍ମ ଦ୍ରୋଣ ଶୁଣିକରି କଲେ ବଡ଼ ଚିନ୍ତା
ଧୃତରାଷ୍ଟ୍ର ଗାନ୍ଧାରୀର ମନେ ବଡ଼ ବ୍ୟଥା ।

ବିଦୁର ଶଲ୍ୟ ଏ ଦୁହେଁ ଶୁଣିଣ ବଚନ
ବାବୁ କେସନେ ବନକୁ ଯିବୁ ପଣ୍ଡୁବାଳ ।
ବିଦୁର ବୋଇଲେ ବନେ କି ନିମନ୍ତେ ଯିବୁ
ମହାଘୋର ଦୁଃଖ କହ କେମନ୍ତେ ସହିବୁ ।
ଅର୍ଜୁନ ବୋଇଲେ ଦେବ ଶୁଣ ମୋର ବାଣୀ
ବ୍ରାହ୍ମଣେକ ଆସି ମୋତେ ଭେଟିଲେକ ପୁଣି ।
ବୋଇଲେକ ଯୁଧିଷ୍ଠିକୁ ଆଣ ତୋର ଘଇ
ଏହିକ୍ଷଣି ଯିବି ମୁହିଁ ବାରତା ଜଣାଇ ।
ଯୁଧିଷ୍ଠି ଦେବକୁ ତୁମ୍ଭ ବେଗେ ନ ଆଣିଲେ
ପୁର ଦହନ ହୋଇବ ମୁହିଁ କୋପ କଲେ ।
ଏମନ୍ତ ବାରତା ଶୁଣି ଆଶ୍ଚର୍ଯ୍ୟ ହୋଇଲି
ଧାଇଁକାରେ ଅନ୍ତଃପୁରେ ମୁଁ ଯାଇ ପଶିଲି ।
ଯୁଧିଷ୍ଠିର ଦେବ ବସେ ଦ୍ରୌପଦୀର ମେଳେ
କେନକନ କ୍ରୀଡ଼ାକୁ ମୁଁ ଦେଖିଲଇଁ ତୋଳେ
ଯୁଧିଷ୍ଠିଙ୍କ କୋଳେ ଦେବୀ ଦ୍ରୁପଦୀ ଥାଇ
ସେକାଳେ ଆମ୍ଭର ଗୁପ୍ତବୁଦ୍ଧି ମହାମାଇ ।
ଗୁପ୍ତର କ୍ରୀଡ଼ାକୁ ମୁହିଁ ଦେଖିଲଇଁ ତୋଳେ
ବିକୃତ ପଞ୍ଚମନରେ ଉସଇଗ୍ନ ହେଲେ ।
ପରର ଏକାନ୍ତ ଯେଉଁ ପ୍ରାଣୀ ଭଗ୍ନକରି
ଲଭଇ ପାତକ ଲିଙ୍ଗଭଗ୍ନ ଦୋଷ ସରି ।
ଏତେକ ପାତକ ଦେବ ଅରଜିଲି ମୁହିଁ
ଖଣ୍ଡିବ ଏ ସର୍ବ ପାପ ନାନାତୀର୍ଥେ ଯାଇ ।
ବିଦୁର ପୁଚ୍ଛିଲେ ମନ୍ତ୍ରୀ ସହଦେବେ ସ୍ୱହିଁ
ସେହି ବ୍ରାହ୍ମଣକୁ ବାବୁ ଜାଣୁ କରେ ତୁମ୍ଭ ।
ଅର୍ଜୁନକୁ ପଠାଇ ଦେଇ କେଣେ ଗଲା
କହ ବାବୁ ସହଦେବ ବାର୍ତ୍ତିକ ଅଇଲା ।
କରତଳକୁ ଚାହିଁଣ କହେ ମହାମନ୍ତ୍ରୀ
ଅଗ୍ନି ଦେବତା ଅଇଲେ ଧରି ବିପ୍ରମୂର୍ତ୍ତି ।
ବୈଶ୍ୱାନର ଦେବତାର ନିଦୁକୁଦୁ ବ୍ୟାଧି
ଅର୍ଜୁନ ବନକୁ ଗଲେ ପାଇବ ଔଷଧି ।
ତେଣୁ ସେ ଗୋପନ ରୂପ ଧରି ହୁତାଶନ
ଆସିଲେ ତା ଜାଣି ନ ପାରିଲେ ଅରଜୁନ ।
ଅଗ୍ନି ଦେବତା ନିମନ୍ତେ ପାର୍ଥ ବନବାସ
ଯଜ୍ଞେ ଘୃତ ଖାଇ ଖାଇ ଅଗ୍ନି ଅସନ୍ତୋଷ ।
ମନ୍ଦଅଗ୍ନି ହୋଇଅଛି ସେ ସତ୍ୟଯୁଗରୁଁ
କୌରବେ ଆଶ୍ଚର୍ଯ୍ୟ ଶୁଣି ସହଦେବ ଠାରୁଁ ।

ଏସନ ବସ୍ତୁର ଅଛୁ ଅଗ୍ନି ଦେବତାର
କହୁ ନ ବସ୍ତୁର ଦେବ ଯାନ୍ତୁ ବନଘୋର ।
ସନ୍ଦେଶ କହିଲ ସେହୁ ମନ୍ତ୍ରୀ ଚୂଡ଼ାମଣି
ଅଗ୍ନି ଦେବତାର ବ୍ୟାଧି ଖଣ୍ଡିବେ ଫାଲ୍‌ଗୁନ
ଦୁର୍ଯ୍ୟୋଧନ ରାଜା ଧରି ଅର୍ଜୁନଙ୍କୁ କୋଳେ
ବୋଲେ ବାବୁ ମୋ କଲ୍ୟାଣ ହେଉଛତକାଳେ
ଅତି ଗହନ ବନକୁ ନ ଯିବୁଟି ପାର୍ଥ
ଦେଖାଉର ମୁଖୁ ବାଣ୍ଡା ପାଉଥିବୁ ସତ୍ୟ ।
ବଇଶାଖ କୃଷ୍ଣ ଚତୁର୍ଦ୍ଦଶୀ ସୋମବାର
ଅଶ୍ୱିନୀ ନକ୍ଷତ୍ର ମେଷରାଶି ସେ ଦିନର ।
ସତାଇଶ ଦଣ୍ଡ ଅଶ୍ୱିନୀ ନକ୍ଷତ୍ର ଥିଲା
ଗୁରୁର ବେଳାରେ ସେ ଯେ ବାହାରହୋଇଲା
ସୋମବାର ଅଶ୍ୱିନୀକୁ ଅମୃତ ଅଟଇ
ମାହେନ୍ଦ୍ର ବେଳାରେ ଯାତ୍ରା ସର୍ବ ଶୁଭ ଥାଇ
ମାତା ଗୁରୁ ସୋଦରଙ୍କୁ ନମସ୍କାର କରି
ଦୁର୍ଯ୍ୟୋଧନ ମୁଖ ଚୁମ୍ବି ପୁଣି ସେ ଭଆରି ।
ସ୍ୱାମି ତୁମ୍ଭେ ମହାଶ୍ରେଷ୍ଠ ମହା ଭାଗ୍ୟବନ୍ତ
ଯଦ୍ୟପି ଯୁଧିଷ୍ଠି ବଡ଼ ପାତ୍ର ତୁ ସମସ୍ତ ।
ସ୍ୱାମି ମୁହିଁ ଯାଉଅଛୁ ଗହନ ବନକୁ
ଭାଇଙ୍କର କଥା ବେଦ ଲାଗଇ ତୁମ୍ଭଙ୍କୁ ।
ସ୍ୱାମୀ କୋପ କରିବେଟି ବେଦ ଭୀମସେନ
ନ ଧରିବୁ ମୁଁ ଆସିବା ଯାଏ ତୁ ସେମାନ ।
ଭାଇଙ୍କୁ ମନ୍ଦ ଚିନ୍ତିବୁ ଯେବେ ଅନମିରେ
ସମସ୍ତେ ନାଶଯିବେଟି ମୋହର କୋପରେ ।
ଏମନ୍ତ ଭଆରି ଗଲୁ ବାହାରି ଫାଲ୍‌ଗୁନ
ଦ୍ୱିଜମାନେ କରନ୍ତି ଯେ ମୁଖେ ବେଦଧ୍ୱନି ।
ତୂଣୀର ଚରଣ ଧରି ଧନଞ୍ଜୟ କହେ
ଦ୍ରୌପଦୀଙ୍କୁ ଦୟା କରଥିବଟି ଗୋ ମାଧ୍ୱେ ।
ଅନେକ ତପସ୍ୱୀ ହୋଇ ଅର୍ଜୁନ ବୋଲଇ
ପାତକ ଧ୍ୱଂସି ଆସିବ କାଲସ୍ୱାପ୍ନ ମୁହିଁ ।
ସଭୁଙ୍କୁ ବନ୍ଦିଲେ ବହେ ବାସବର ସୁତ
ଜଣେ ଜଣେ ବାହୁଡ଼ାଇ ସମ୍ବୋଧିଣ ପାର୍ଥ ।
ନଗର ଛାଡ଼ି ଅର୍ଜୁନ ପଶିଲ କାନନେ
ପଞ୍ଚାକୁଳ ବାହୁଡ଼ିଲେ ପଣ୍ଡୁର ନନ୍ଦନେ ।
ହସ୍ତ ନା ନଗରେ ଆସି ପ୍ରବେଶ ସକଳ
ଅର୍ଜୁନଙ୍କୁ ନ ଦେଖିଣ ମନରେ ବିକଳ ।

ମହାଘୋର ବନସ୍ତରେ ପଶିଲା ଫାଲ୍‌ଗୁନ
କ୍ରୀଡ଼ା କରଇ କିରାତରୂପ ବନେ ଘେନ ।
ମଥାରେ ମୟୂରଝାଲି କଣ୍ଠେ ଗୁଞ୍ଜମାଳ
ଚୌପି ଚନ୍ଦନର ଛଟା ଅଙ୍ଗରେ ସମ୍ଭାଳ ।
ଡାମଣା କାଠର ଧନୁ କଣ୍ଟାବାଂଶ ଗୁଣ
ଫିରଇ ନାରାଚ ଶୋହେ କନ୍ଧେ ବେଣକୋଣ
ପରଶୁ କୁଠାର ଶୋହେ ବେଣ କୋଣ ଝାଲି
ଏସନ ସ୍ୱରୂପେ ସେହୁ ବନେ କରେ କେଳି ।
କିରାତରୂପେ ବନରେ ବଢେ ସବ୍ୟସାଚି
ମାରଇ ଜୀବ ନାରାଚ ଧନୁରୁ ଆମଞ୍ଚି ।
ଭାର୍ଗବ ନାମରେ ତୀର୍ଥ ନଦୀ ଯେ ଗୋଟିଏ
ଭୈରବୀ ଗଙ୍ଗାରୁ ସେହୁ ଉତ୍ତରେ ବହେ ।
ତୀର୍ଥସ୍ଥାନ ବୋଲି ତୀର୍ଥ ରହି ଫାଲଗୁନ
ଜାଣିଲ ପବିତ୍ର ଭୂମି ଦେଖି ମାସ ତିନ ।
ଜୟ ତୁ ଜାହ୍ନବୀ ମାଗୋ ପରମା ସାଧ୍ୱୀ
ଭଗୀରଥ ଆଣିଲ ଗୋ ତୋତେ କେତେ ସେବି
ମହାଦେବଙ୍କ ମଉଳ ଜଟାରେ ତୁ ଖେଳୁ
ବାହାର ହେଲୁ ବିଷ୍ଣୁଙ୍କ ପାଦନଖରୁ ।
ତୋହର ମହିମା ମାଗୋ ଦେବେ ଅଗୋଚର
ଶୁଦ୍ରମୁନି ଏ ଶାରଳା ଦାସ ତୋ କୋଙ୍କର ।

---

## ଅର୍ଜୁନଙ୍କର ପାଶୁପତ ଅସ୍ତ୍ର ଓ ଅକ୍ଷୟ ତୂଣୀର ଲାଭ

ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ଏ ମହାଭାରତ ମଧ୍ୟପର୍ବର ଯେ ଖ୍ୟାତ ।
ଜଇଷ୍ଠା କୃଷ୍ଣ ଦ୍ୱାଦଶୀ ତିଥି ଶୁକ୍ରବାର
ଶ୍ରବଣା ନକ୍ଷତ୍ର ଅର୍ଜୁନଙ୍କୁ ସପ୍ତଶ୍ରର ।
ସେ ଦିନ ଅର୍ଜୁନ ବଜେ କାଶୀନଦୀ ତୀରେ
ପଶିଲ ହରି ଉଦ୍ୟାନ ନର୍ଦ୍ଦର କନ୍ଦରେ ।
ସେଦିନ କୈଳାସୁ ବାଜ ହର ଯେ ପାର୍ବତୀ
ବିହରନ୍ତି ବନେ କ୍ରୀଡ଼ା ରଙ୍ଗେ ପଶୁପତି ।
ପ୍ରତ୍ୟକ୍ଷେ ତ ବିଶ୍ୱନାଥ ତପୋଧନ ରୂପ
ପିଙ୍ଗଳ ଜଟା ରୋମ ଲ ପିଙ୍ଗଳ ସ୍ୱରୂପ ।
ପିନ୍ଧିଛନ୍ତି କଷାବାସ ବିଜଗତମାତ
ତପୋଧନ ରୂପେ ବଜେ ପ୍ରଭୁ ବିଶ୍ୱନାଥ ।

ତପସ୍ୟରେ ପଶୁର ପ୍ରଭ ଚମ୍ପାମୁଦ୍ରା ଭଙ୍ଗେ
ଉନମତ୍ତ ହୋଇ କ୍ରୀଡ଼ା କରନ୍ତି ସେ ବନେ ।
ଏସନକ ଶବରଙ୍କୁ ଧରି ଦେବସ୍ୱାମୀ
ଉମା ସହିତେ ଭ୍ରମନ୍ତି ହୋଇ ବନଗାମୀ ।
ଭାଗୀରଥୀ ତୀରେ ଯାଇ ଦେଖନ୍ତି ଧୂର୍ଜ୍ଜଟି
ଘଣୀର ବଟର ତଳେ ପାଣ୍ଡବ ଓର୍ପଟି ।
ପାର୍ବତୀ ଜାନୁରେ ସ୍ୱାମୀ ସୀମସ୍ଥାନ ଦେଇ
ଦକ୍ଷିଣକୁ ଶିର କରି ଶୋଇଲେ ଗୋସାଇଁ ।
ଜେଷ ଉଦାଶ ମାରନ୍ତି ବେଶ ଶିରୁ ଭୂମି
ସ୍ୱପ୍ନପାଇ ସ୍ୱାମୀଙ୍କି ସେ ଲାଗିଲେକ ଚୁମ୍ବି ।
ଘଣ୍ଟା ଗୋଟିଏ ସଙ୍ଗରେ ଥିଲେ ପୁଣି ଆଣି
ଭାଗୀରଥୀ ତୀରେ ସେହି ପିଉଥିଲେ ପାଣି ।
ଥିଲେ ଯେ ପାର୍ଥ ଶିଆଳୀ ଲତା ପାଶ ତଳେ
ଦକ୍ଷିଣ ଘାଟରେ ଭାଗୀରଥୀ ଉପକୂଳେ ।
ଘଣ୍ଟା ପାଣି ଖାଇଯାନ୍ତେ ଦେଖି ବୀର ପାର୍ଥ
ଅପୂର୍ବ ଜୀବ ଦେଖିଣ ହୋଇ ଧନୁହସ୍ତ ।
ଦକ୍ଷିଣ ଭୁଜରେ ବାଛି ନାରାଚେକ ଯୋଖି
ଘଣ୍ଟାକୁ ଲକ୍ଷ୍ୟ କରି ବିନ୍ଧିଲେ ଫାଲ୍‌ଗୁନ ।
ପାଣି ଖାଇ ଘଣ୍ଟା ପୁଣି ଯାଆନ୍ତେ ଲେଉଟି
ଶରଘାତେ ଘଣ୍ଟା ବାମ ଅଙ୍ଗ ଗଲା ଫୁଟି ।
ଶର ଲାଗିଛି ପଳାଇ ଗଲା ଘଣ୍ଟାଜୀବ
ପଡ଼ିଲା ହର ସମ୍ମୁଖରେ ହୋଇ ଘୋର ରବ ।
ପାର୍ବତୀ ବୋଇଲେ ଦେଖ ଦେଖ ହେ ଧୂର୍ଜ୍ଜଟି
କେ ମାରିଲା ଏ ଘଣ୍ଟାକୁ ଶର ଅଛି ଫୁଟି ।
ପ୍ରାଣ ହାରିଣ ପଡ଼ିଛି ଦେଖ ଉଠ ଉଠ
କେ ଘଣ୍ଟା ମାରିଲା ଦେଖ ନ କରିଣ ମଠ ।
ଧାଇଁବାରେ କୋଳୁ ଉଠିଗଲେ ବିଶ୍ୱନାଥ
ଘଣ୍ଟାକୁ ଦେଖିଣ ସ୍ୱାମୀ ହେଲେ କୋପଚିତ୍ତ ।
କେ ମୋହର ଏ ଘଣ୍ଟାକୁ ପ୍ରାଣେ ନାଶକଲା
ଅକ୍ଲେଶେ ଶିରୀ ସମ୍ପଦ କାହାର ସରିଲା ।
ଯଦ୍ୟପି ମୁଁହି ଦେଖିବି ଏକ୍ଷଣି ନୟନେ
ମାରି ପକାଇବ ଦେବ ଯିବ ଯମସ୍ଥାନେ ।
ଘଣ୍ଟା ମାରିଣ ଅର୍ଜ୍ଜୁନ ଆସୁଅଛି ଧାଇଁ
ଈଶ୍ୱର ଯେ କୋପକଲେ ଅର୍ଜ୍ଜୁନଙ୍କୁ ଚାହିଁ ।
ଆରେ ରେ ତାପସ ବୋଲି ଡାକେ ସଦାଶିବ
ମାରିଲୁ କିପାଇଁ ଅନମିତ୍ତେ ଘଣ୍ଟାଜୀବ ।

ତପସ୍ୟାର ବୁଦ୍ଧି ତୋର ନାଶଯିବା କାଳେ
ପ୍ରତିଜ୍ଞା କରି ଅର୍ଜ୍ଜୁନେ ଚାହିଁଲେ ସୁଭଦେ ।
ବୃକ୍ଷ ଡାଳ ଏକ ଦେବ ଯୋଜଣ ବୁଲାଇ
ଅର୍ଜ୍ଜୁନର ଉପରକୁ ଆସୁଛନ୍ତି ଧାଇଁ ।
ନାସିକାରେ ହସ୍ତ ଦେଇ ଅର୍ଜ୍ଜୁନଙ୍କୁ ଚପି
ଅଜାଉଣେ ବାତୁଳ କି ହୋଇଲୁ ତପସ୍ୱୀ ।
ମ ଇଲ କଥା ପକ୍ଷୁ କର୍ଯାଁ ତପୋଧନ
ସୁନ୍ଦରୀ ସ୍ତ୍ରୀ ଧିକ ଯେବେ ଘୃଡ଼ ପଳା ବନ ।
ଯେତେକ ସନ୍ତାପ ମୋ'ତେ କଲୁଣି ଅଙ୍ଗକେ
ସବୁକା ବୁଦ୍ଧିକ ବୁଝ ତଳୁ ଏକ୍ଷଣାକେ ।
ତୋହର ମଳେ କାହାର କହୁଛି ନ ଯିବ
ପାର୍ବତୀ ସ୍ଥାପୁ ଏ ସ୍ତ୍ରୀ ଯା ବଧବା ହୋଇବ ।
ଏହାର ବଚନ ମୁଁ ଯେ ନ ପାରିବ ସହି
କେତେକ ହିଂସା ବୁଦ୍ଧି କରୁଛୁ ମୋ ଚାହିଁ ।
ଅପାର ପ୍ରତିଜ୍ଞା ଦର୍ପ ଅର୍ଜ୍ଜୁନର ଶୁଣି
ସନ୍ନିଧିରେ ବଚାଳିଲେ ଦେବ ଶୂଳପାଣି ।"
ହତ୍ୟା ନ ଯୋଜିବ କିଜ ପକ୍ଷରେ ଅର୍ଜ୍ଜୁନ
ସାମାନ୍ୟ ଯେଉ ସମରେ କରିବ ନିଧନ ।
ତୁରେ ତପୋଧନ କେ'ଣି ଅଟୁ ନରମାକ୍ଷୀ
ତୋତେ ନିଧନ କଲେ କେ ପାରିବଟି ରକ୍ଷି ।
ଏରୂପେ କହିଣ ତହୁଁ ବାସବର ସୂନୁ
ସଦାଶିବଙ୍କର ଦେହେ ଲଗାଇଲା ଧନୁ ।
ଦକ୍ଷିଣ ଭୁଜରେ ତାଙ୍କୁ ଅନ୍ତରୀକ୍ଷେ ତୋଳି
ଧନୁ ଧରିଣ ବୁଲାନ୍ତେ ବୁଲନ୍ତି କପାଳୀ ।
ଯେହ୍ନେ କୁଲାଳ ବୁଲାଇ ଏଏ ଚକ୍ରଧର
ସଦାଶିବଙ୍କୁ ବୁଲାଏ ପାର୍ଥ ସେହ୍ନପର ।
ମୁଖରୁ ରୁଧିର ବହି ପଡ଼େ ବିଶ୍ୱନାଥ
ପରମଯୋଗୀ ପୁରୁଷ ଘୃଡ଼ କୋପଚିତ୍ତ ।
ବୋଇଲେ କପଟ ବର ମାଗ ହେଲି ତୃପ୍ତ
ଶୁଣିଣ ଆଶ୍ଚର୍ଯ୍ୟ ପାର୍ଥ ଛୁଡ଼ାଇଲା ଧାତ ।
ଧନୁ ଦେହରୁ କାଢ଼ିଣ ପକାଇଲା ଭୂମି
ବର ମାଗ ବୋଲନ୍ତେ ଯେ ବିଶ୍ୱନାଥ ସ୍ୱାମୀ
ବରଦେବା କଥା ଶୁଣି ପାର୍ଥ ଭାବେ ମନେ
ବନଚର ହୋଇ ବର ଯାଚଇ କେସନେ ।
ବ୍ରହ୍ମା ବିଷ୍ଣୁ ବିନୁ ବର ଯାଚେ କେହ୍ନେ ସେ ଯେ
ବିଶ୍ୱନାଥ ଅଟନ୍ତି ବା ଏହି ବେଶ ଛଳେ ।

ପାର୍ବତୀ ଘେନ ଭ୍ରମନ୍ତି ଏ ବନ ବୀଥିରେ
ଗଣ୍ଡା ଗୋଟିଏ ଯେ ପୋଷିଥାନ୍ତି ଶୂଳଧରେ
ମନେ ବସ୍ତୁର ଅର୍ଜୁନ ବିସ୍ମୟ ହୋଇଲେ
ବର ଯାଚିବାର ଦେଖି ଦେବୀ ଟାହି କଲେ ।
କରତାଳ ମାରି ଉଚ୍ଚେ ହସିଲେ ପାର୍ବତୀ
ସଂଗ୍ରାମରେ ହାରି କରି ଦେଲେ ପଶୁପତି ।
ସଂଗ୍ରାମ କରଣ ଦେବ ହେଲେ ଅପରାଧୀ
ମାଡ଼ଖାଇ ସ୍ୱାମୀ ବର ଦେଲେ ଜସ ସିଦ୍ଧି ।
ଈଶ୍ୱର ବୋଇଲେ ସାଧୁ ସାଧୁରେ ଶବର
ମୋତେ ଜିଣିବାର ଶକ୍ତି ହୋଇବା ତୋହର
ଯାହା ମାଗିବୁ ମୁଁ ତାହା ଦେବଇଁ ଅବଶ୍ୟ
ଶବ୍ଦ ଛାପଣେ ଅର୍ଜିଲୁ ତୁମ୍ଭ ବଡ଼ ଯଶ ।
ପୁଣ ପୁଣ ଯାଚନ୍ତି ଯେ ବର ଦେବରାଜ
ଶୁଣିଣ ବାସବ ତହିଁ ହୋଇଲେ ଆଶ୍ଚର୍ଯ୍ୟ ।
ଛଳନା କରିଣ ତାଙ୍କୁ ପଚାରଇ ପାର୍ଥ
ନ ଜାଣେ ମୁଁ ତୁମ୍ଭେ କିଏ କହିବା ଯଥାର୍ଥ
ତୁମ୍ଭେ କିଏ ବର ମୁହିଁ ମାଗିବି କେସନେ
ରୂପ ବର୍ଣ୍ଣ ଚିହ୍ନ କିଛି ନ ଦେଖି ନୟନେ ।
ପାର୍ବତୀ ବୋଇଲେ ତୁରେ ଶୁଣ ଧନଞ୍ଜୟ
ସ୍ୱରୂପେ ଭେଟିଲୁ ତୁ ତ୍ରିଦଶ ଦେବରାୟ ।
ବନକ୍ରୀଡ଼ା କରୁ ଆମ୍ଭେ ଶଙ୍କର ପାର୍ବତୀ
ସୁଲକ୍ଷଣେ ଭେଟିଲୁ ତୁ ଦେବ ପଶୁପତି ।
ଶୁଣିଣ ଅର୍ଜୁନ ଧନୁ ଶରକୁ ପକାଇ
ସଦାନନ୍ଦ ଚରଣରେ ଦଣ୍ଡବତ ହୋଇ ।
ସ୍ୱାମୀ ମୁଁ ଅଜ୍ଞମା ହେଲି ଶବର ବୋଲିହା
ଅପରାଧୀ ହେଲି ବର ମାଗିବି ମୁଁ କାହା ।
ପାର୍ବତୀ ବୋଇଲେ ତୁହ୍ମ ନ ଭଳ ଏମନ୍ତ
ଶବ୍ଦ ଛାପଣେ ତୋଷିଲୁ ସଦାଶିବ ନାଥ ।
ସଂଗ୍ରାମବତ୍ସଳ ଏ ଯେ ସଦା ମତ୍ତଭୋଳ
ମାଡ଼ ଖାଇଣ ପ୍ରସନ୍ନ ହୁଅନ୍ତି ସୁଭଳ ।
ଆରେ ଧନଞ୍ଜୟ ମୁହିଁ କହୁଅଛି ଶୁଣ
ଏ ମହାପୁରୁଷଙ୍କର ଏକ ବିବରଣ ।
ବୈତରଣୀ କୂଳେ ଶିବ ନାମରେ ନଗରୀ
ଶିବଦାସ ବୋଲି ବିପ୍ର ଏକ କୃଷିକାରୀ ।
କର୍ମଳ ବୋଲି ତାହାର ତନୟ ଗୋଟିଏ
ବାଳକାଳୁ ରଖଇ ସେ ଗୋଧନ ପାଳଏ ।

ସେ ନଗରରେ ଅଛନ୍ତି ମଣ୍ଡଳେଶ ଲିଙ୍ଗ
ଅପୂଜା ଦେବତା ତାଙ୍କୁ ନାହିଁ ଭୋଗାଭୋଗ
ସେ ପୁତ୍ର ତହିଁ ଗୋଧନ ରଖଇ ଯେ ଏକା
ସେ ଲିଙ୍ଗ ଉପରେ ନିତ୍ୟେ ଲଦୁଥାଇ ଢେଲା
ଏମନ୍ତ ଢେଲା ଲଦନ୍ତେ ଲିଙ୍ଗର ଉପରେ
ଖାତ ନ କରଇ ଏକା ଥାଇ ସମକ୍ଷରେ ।
କୃଷ୍ଣମାସ ଅମାବଇ ତହିଁ ରବିବାର
ଧନିଷ୍ଠା ନକ୍ଷତ୍ର କୁମ୍ଭ ଚନ୍ଦ୍ର ମିତ୍ର ଚାର ।
ନାଗ ନାମେ କରଣ ଯେ ସାଧ୍ୟ ନାମେ ଯୋଗ
କୁମ୍ଭ ସଂକ୍ରାନ୍ତିର ଚଉବଂଶ ଦିନ ଭୋଗ ।
ସେଦିନ ସେହି ବାଳକ ଥିଲା କୃଷିକ୍ଷେତ୍ରେ
ଭୁଞ୍ଜି ବସିଲା ସେ ଦିନ ପିତାର ସଙ୍ଗତେ ।
ଥୋକାଏକ ଅନ୍ନ ଭୁଞ୍ଜିସାରି ସେ ବାଳୁତ
ମନରେ ପଡ଼ିଲା ସେହି ଗୁଡ଼ଲିଙ୍କ ଘାତ ।
ଢେଲା କେତେଖଣ୍ଡି ତାର ଅଣ୍ଟିରେ ପୂରଇ
ଉଚ୍ଛିଷ୍ଟ ହାତରେ ସେସେ ଆସୁଅଛି ଧାଇଁ ।
ଲିଙ୍ଗ ସନ୍ନିଧିରେ ଯାଇଁ ହୋଇଲା ପ୍ରବେଶ
ଢେଲାମାନ ଜାଡ଼ି ଲଦେ ନେଇ ବାଳଶିଷ୍ୟ
ଈଶ୍ୱର ଚରିତ ତୁ ହେ ଶୁଣ ବୀରପାର୍ଥ
ସେ ଲିଙ୍ଗେ ଯାଇ ପ୍ରବେଶ ହୋଇ ଶୂଳବନ୍ତ
ପାଞ୍ଚବଦନ ତାଙ୍କର ପନ୍ଦର ନୟନ
ସେ ବାଳୁତକୁ ପ୍ରସନ୍ନ ହେଲେ ତ୍ରିଲୋଚନ ।
ବର ମାଗ ବର ମାଗ ବୋଲି ପଶୁପତି
ଲକ୍ଷ୍ୟମନେ ମୋହଠାରେ କଲୁ ତୁ ଭକତି ।
ସେ ବାଳ ବୋଇଲା ମୋତେ ପ୍ରସନ୍ନ ହୋଇବା
ହେ ପ୍ରଭୁ ମୋତେ ତ ଭୂଇଁ ଖଣ୍ଡିଏକ ଦେବା
ସେ ବାଳଶିଶୁ ତ କିଛି ନ ଜାଣଇ ଆନ
ମାଗିଲା ଭୋଳେ ଦେ କୃଷି କର୍ମର ବିଧାନ ।
ଶୁଣ ଆହେ ଅରଜୁନ ବଦୟନ୍ତି ଉମା
ଯାହା ମାଗିଲା ପ୍ରତ୍ୟକ୍ଷେ ଦେଲେ ମହାତମା ।
ବାଳୁତ ପୁନ ମାଗିଲା ଯାହା ପୁରଃସର
ତେଣୁ ଅନନ୍ତ ବ୍ରାହ୍ମଣେ ସିନା ହୃମ୍ପିକାଶ ।
ସେ ବ୍ରାହ୍ମଣର ହୋଇଲେ ଯେତେକ ସନ୍ତତି
ବେଦମନ୍ତ୍ର ଗୁଡ଼ ସେହି କୁଳରେ ବଞ୍ଚନ୍ତି ।
ପାର୍ବତୀ ବୋଇଲେ ତୁ ହୋ ଅରଜୁନ ଶୁଣ
ନତ ଢେଲାମାରି ବୃତ୍ତି ଅର୍ଜିଲା ବ୍ରାହ୍ମଣ ।

ଏମନ୍ତେ ପୃଚ୍ଛି ପ୍ରସନ୍ନ ହୋଇଲେ ମହାତ୍ମା
ଭକତ ଜନ ବତ୍ସଳ ପୁରୁଷ ଉତ୍ତମା ।
ତୁ ମାନବ ସଙ୍ଗେ ସର ନୋହୁ ଅରଜନ
ଅନେକ ବର ତୋତେଟି ଦେବେ ତ୍ରିଲୋଚନ
ଗଉରୀଙ୍କ ବଚନରେ ଅର୍ଜୁନ ପ୍ରଣମି
ମୂର୍ଚ୍ଛି ଅପରାଧୀ ଜାଣି କୃପାକର ସ୍ୱାମୀ ।
ପାର୍ବତୀ ବୋଇଲେ ସ୍ୱାମୀ ଦେବ ଯେତେବର
ଅକ୍ଷତେ ତା ପ୍ରାପତ ନୋହିବ ନର ।
ନଗ୍ରଜଳେ ଯାଇ ସ୍ନାନ କରି କାଶୀବାସୀ
ଅର୍ଜୁନକୁ ବର ଦିଅ ଶୁଚି ହୋଇ ଆସି ।
ପାର୍ବତୀ ବଚନେ ହର ସ୍ନାନ କରିଗଲେ
ପାର୍ବତୀ ଯେ ଅର୍ଜୁନକୁ ପଚାରିଲେ ।
କି ବର ମାଗବୁ ସଦାନନ୍ଦ ଦେବତାଙ୍କୁ
ସ୍ୱରୂପ ବଚନ ବାବୁ କହିବା ଆମ୍ଭଙ୍କୁ ।
ଅର୍ଜୁନ ବୋଇଲେ ମାଗୋ ମୁଁ ଅତ ଅଜ୍ଞାନ
ମାଗିବାକୁ ସଙ୍କୋଚିତ ଯେଣୁ ଭକ୍ତିହୀନ ।
ପାର୍ବତୀ ବୋଇଲେ ଭୋଳାନାଥ ମହେଶ୍ୱର
ଏତିକ୍ଷଣି ଦେବେ ତୋତେ ଅଲୋକିତ ବର
ବାବୁ କି ପୃଥ୍ୱୀକୁ ବଧ କଲେ ଯେଉଁକାଳେ
ଷାଠିଏ ସହସ୍ର ବର୍ଷ ପୂର୍ଣ୍ଣିଲେ ତା କୁଳେ ।
ହର ହର ଚନ୍ଦ୍ର ସୂର୍ଯ୍ୟ ଗ୍ରହମାନ ବହି
ଶସ୍ତ୍ର ଗୋଟିଏ ହୋଇଲେ ତପସ୍ୟା ସେନ ।
ସେହି ଶସ୍ତ୍ର ସେନ ଦେବ ମାରିଲେ ତ୍ରିପୁର
ନାମ ବାବୁ ତାଙ୍କ ସେହି ପାଶୁପତ ଶର ।
ସେ ଶର ତୋହର ହାତେ ଥିବ ଯେତେବେଳେ
ସଂଗ୍ରାମେ ସମ ନୋହିବେ ତୋତେ ଦିଗପାଳେ
ସ୍ନାନ ସାରିଣ ଅଇଲେ ଦେବ ଶୂଳପାଣି
ବର ମାଗ ହେ ଅର୍ଜୁନ ପଣ୍ଡୁକୁଳମଣି ।
ବାସବୀ ବୋଇଲା ଦେବ ମାଗଇ ମୁଁ ଜସ
ତାହା କ ଦେବ ଶମ୍ଭୁ ହେ ମୋତେ ବିଶ୍ୱବାସ
ଈଶ୍ୱର ବୋଇଲେ ତୋର ଯେ ଅଟୁ ଅସାଧ
ମାଗରେ ପାଣ୍ଡବ ଦେବ ତୋର ହେବ ସିଦ୍ଧ
ଅର୍ଜୁନ ବୋଇଲେ ଦେବ ଯେ ଶରେ ତ୍ରିପୁର
ମାରିଲ ସେ ପାଶୁପତ ଦେବ ବିଶ୍ୱେଶ୍ୱର ।
ଶୁଣିଣ ହରଷ କଲେ ସଦାନନ୍ଦ ମତ
ପାଶୁପତ ଶର ଆଣି ଦେଲେ ପଶୁପତ ।

ଈଶ୍ୱର ବୋଇଲେ ଗିରିସୁତା ମୁଖ ଚାହିଁ
ତୁମ୍ଭେ ନ କହିଲେ ତାର ଏତେ ଜ୍ଞାନ କାହିଁ
ପାର୍ବତୀ ବୋଇଲେ ପାର୍ଥ ଅଟେ ମହାବଳ
ଦିବ୍ୟାସ୍ତ୍ର ନାରାୟଣ ସେ ଅଟଇ ସବଳ ।
ଶିବ ହାସନ୍ତି ସ୍ତ୍ରୀ ଯୋଗୁଁ ହେଲା ଆମ୍ଭ ହତ
ଦିଆଇବ ଏହା ଅସ୍ତ୍ର ପାର୍ଥକୁ ସମ୍ପ୍ରତ ।
ଦିଆଇବ ଏହାର ମୁଁ ତୂଣୀର ଅକ୍ଷୟ
ଏହାକୁ କରିବ ମୂର୍ତ୍ତି ଜଗତେ ଅଜେୟ ।
ଈଶ୍ୱର ବୋଇଲେ ଶୁଣ ଅଗୋ ଦେବ ଉମା
ଆମ୍ଭର ପୁତ୍ର ହୋଇଲା ପାର୍ଥ ମହାତମା ।
ତୁମ୍ଭେ ଯେ ପ୍ରସନ୍ନ ହୁଅ ଏହି ଅର୍ଜୁନକୁ
କରୁ ବର ତୁମ୍ଭେ ଏବେ ଦିଅ ଯେ ଏହାକୁ
ପାର୍ବତୀ ବୋଇଲେ ବର ମାଗ ଫାଲଗୁନ
ଶିବ ବୋଇଲେ ଯୋ ହିମବନ୍ତର ଦୁଲଣୀ ।
ତୁ ଯୋ ସ୍ନାନ କରି ଆସ କାଶୀନଗ୍ର ନୀର
ଶୁଚିତ ହୋଇଣ ଦିଅ ଅର୍ଜୁନକୁ ବର ।
ସ୍ୱାମୀର ବଚନେ ଦେବୀ ଗଲେ ସ୍ନାନ କରି
ଅର୍ଜୁନ ମୁଖକୁ ଚାହିଁ ଈଶ୍ୱର ଉଆରି ।
କି ବର ମାଗିବୁ ତୁହି କହରେ ଅର୍ଜୁନ
ଅର୍ଜୁନ ବୋଇଲେ ଦେବ ମୋର ଜସ ଜ୍ଞାନ
ସଦାଶିବ ବୋଇଲେ ରେ ଶୁଣ ପାର୍ଥବୀର
ସତ୍ୟଯୁଗେ ମହାମାୟା ଦୁର୍ଗା ଅବତାର
ସହସ୍ରେକ ଭୁଜ ପଞ୍ଚାଶତ ଧନୁ ସେନ
ଅନୁକ୍ଷଣ ବନ୍ଧିଲେ ସେ ଦିବସ ରଜନୀ ।
ଅକ୍ଷୟ ତୂଣୀର ଦେଲ ଅଙ୍ଗେ କଲେ ଜାତ
ସ୍ୱର୍ଗି ଦିବସ ବନ୍ଧିଲେ ନ ସରଇ ଅସ୍ତ୍ର ।
ମହିଷାସୁର ସହସ୍ର ବର୍ଷେ ନାଶ ଗଲା
ସେହି ତୂଣୀରୁ ଗୋଟିଏ ଅସ୍ତ୍ର ନ ସରିଲା ।
ଈଶ୍ୱର ବୋଇଲେ ଏହା ଅର୍ଜୁନର ଆଗ
ପାର୍ବତୀ ଦେବୀଙ୍କି ତୁହି ସେ ତୂଣୀର ମାଗ ।
ଏରୂପେ ଶିବ ପାର୍ଥକୁ ଦେଲେକ ଶିଖାଇ
ଏହିକାଳେ ମହାସତୀ ଆସିଲେ ତାଧାଇ ।
ପାର୍ବତୀ ବୋଇଲେ ବର ମାଗ ହୋ ଅର୍ଜୁନ
ଯେ ତୋହର ମନୋବାଞ୍ଛା ପ୍ରାପ୍ତ ହେବ ପୁଣ
କରପତ ଯୋଡ଼ି ବର ମାଗେ ଫାଲଗୁନ
ପ୍ରସନ୍ନେ ଦେବ ଅକ୍ଷୟ ତୂଣୀର ଯେ ଦେଲ ।

ପାର୍ବତୀଦେବୀ ବୋଇଲେ ପାର୍ଥ କଥା ଶୁଣି
ଏହାଙ୍କୁ କହିଲେ ଏହି ଭେଦ ଶୂଳପାଣି ।
ବାମଦେବ ବୋଇଲେ ସେ ଅଟେ ବଡ଼ଜ୍ଞାତା
ସମସ୍ତ ଜାଣେ କ୍ଷତ୍ରିୟ ମହାବଳବନ୍ତା ।
ମୁହିଁ ନ କହିଲ ସତ୍ୟ ମୋର ନାହିଁ ଦୋଷ
ଆମ୍ଭଠାରେ ଅକର୍ମିତେ କପାଁ କର ରୋଷ ।
ପାର୍ବତୀ ବୋଇଲେ ଦେବ ମନ୍ଦକୃତ୍ୟ ଭଲ
ପରକୁ ତ ଆପଣାର ପଣ ଦେଖାଇଲ ।
ଅର୍ଜ୍ଜୁନଙ୍କୁ କହିଦେଲେ ଯେବେ ନ ପୂଛର
କ୍ଷମେ ଈଶ୍ୱର ପାର୍ଥଙ୍କୁ ନୋହିବେ ସଙ୍ଖ ।
ଅକ୍ଷୟ ତୂଣୀର ଦେଲେ ଜଗତଜନନୀ
ସାନନ୍ଦେ ଦେଲେ ପାର୍ଥଙ୍କୁ ନିଜ ହସ୍ତେ ଘେନ
ବାବ୍ ସମସ୍ତ ଦେବତା ଅସ୍ତ୍ର ଅଛେଁ ଅଛି
ତ୍ରୈଲୋକ୍ୟ ଜୟେ ସମର୍ଥ ହେଲୁ ସବ୍ୟସାଚି
ଅର୍ଜ୍ଜୁନ ବୋଇଲେ ମାଗୋ ଶସ୍ତ୍ର ସମ୍ଭାଳିବ
ଯେ କଦା କରିବ ତାକୁ ବିନାଶ କରିବ ।
ଯଦ୍ୟପି ଜୀବନେ ତାକୁ ନ ମାରିବ ମୁହିଁ
ଅନଳ କାଳ ମରିବ ସତ୍ୟ ମୋର ଏହି ।
ମୃତସଞ୍ଜୀବନୀ ମନ୍ତ୍ରେ ପଣ୍ଡା ଜୀଆଇଲେ
ତୁ ଆମ୍ଭର ପୁତ୍ର ସବ୍ୟସାଚି ନାମ ହେଲେ ।
ଏସନକ ବର ଦେଇ ଦେବ ତ୍ରିଲୋଚନ
ଶଙ୍କର ଗିରିଜା ତହୁଁ ହେଲେ ଅନ୍ତର୍ଦ୍ଧାନ ।
ବସେ ସଦାଶିବ ଯାଇଁ କୈଳାସ ଭୁବନେ
ବାସବର ନନ୍ଦନ ଯେ ବିହରଇ ବନେ ।
ଜୟ ଜୟ ସଦାନନ୍ଦ ପରମ ପୁରୁଷ
ଜୟ ଜୟ ସଦାନନ୍ଦ ଜୟ କୃତ୍ତିବାସ ।
ଭୋଳା ମହେଶ୍ୱର ତୁହି ତୋହର ଚରଣ
ଭଜ ଶ୍ରୀ ଶାରଳା ଦାସ ପଶିଲା ଶରଣ ।

---

## ଶ୍ରୀକୃଷ୍ଣଙ୍କ ନବଗୁଞ୍ଜର ରୂପ

ପାର୍ଥ ବନବାସ ବାର୍ତ୍ତା ପାଇ ଚକ୍ରପାଣି
ଦ୍ୱାରକାରୁ ହସ୍ତିନାକୁ ବିଜେ ଯଦୁମଣି ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଚୈତ୍ରମାସ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥି ।
ଶତଭିଷା ନକ୍ଷତ୍ର ଯେ କୁମ୍ଭେ ବିଜେ ଶଶୀ
ପଞ୍ଚୁକ ତହିଁ ଦାରୁଣାବନ୍ତ ବିଜେ ଆସି ।

ଆସ୍ଥାନରେ ବସେ କରିଛନ୍ତି ପଣ୍ଡୁସୁତ
ପ୍ରବେଶିଲେ ଆସି ତହିଁ ଶଙ୍ଖଚକ୍ର ହସ୍ତ ।
ଗରୁଡ଼ ପୃଷ୍ଠୁ ଓହ୍ଲାଇ ପ୍ରଭୁ ନାରାୟଣ
ଭୂମିରେ ଶୋଇଲେ ଧରି ଧର୍ମଙ୍କ ଚରଣ ।
କଲ୍ୟାଣ କରି ତୋଳନ୍ତି ହସ୍ତେ ଧର୍ମପୁତ୍ର
ଆରେ ନକୁଳ ତୁ ଆସି ତୋଳ ପଦ୍ମନେତ୍ର
ମାଦ୍ରୀର ନନ୍ଦନ ପାଦେ ପ୍ରଣିପାତ କରି
କୋଳ କରିଣ ଧରିଲେ ତାଙ୍କ ଦେବ ହରି
ଆସ୍ଥାନ ତ୍ୟାଗ କରିଣ ଧର୍ମରାଜ ସୁତ
ସତ୍ୱର ପାଦତଳେ କଲେ ପ୍ରଣିପାତ ।
କଲ୍ୟାଣ ବାଞ୍ଛା କରନ୍ତି ପକ୍ଷୀରାଜ ବୀର
ଏକାଙ୍ଗ କ୍ଷତ୍ରିୟ ହୁଅ ଧର୍ମର କୁମର ।
ଗରୁଡ଼ଙ୍କ କଲ୍ୟାଣେ ଯେ ଆନନ୍ଦ ନୃବର
କୃଷ୍ଣଙ୍କ ସେବନେ ବସେ ଆସ୍ଥାନ ଉପର ।
ମାଦ୍ରୀସୁତ ସହଦେବ ପଣ୍ଡିତାଳ ଭଲେ
ଦେବ ଦେବ ହରି ତାଙ୍କ ଉଠି ତୋଳିକଲେ
ପଞ୍ଚଭ୍ରାତା ସେହି ଏଥେ ସେନା ସେନାପତି
ରଥୀ ମହାରଥୀ ଆଦି ସମସ୍ତେ ଅଛନ୍ତି ।
ପର ମହାବୀର ପୁଣ ରଣଜିତ ପୁତ୍ରେ
ବଳୀ ମହାବଳୀ ଏଥେ ଅଛନ୍ତି ସମସ୍ତେ ।
ଆସ୍ଥାନରେ ବସେ ଭଣି ଦେବ ଚକ୍ରଧର
ଯୁଧିଷ୍ଠିର ମୁଖ ଚାହିଁ କରନ୍ତି ଉତ୍ତର ।
ଦେବ ସମସ୍ତେ ଅଛନ୍ତି ନାହିଁ ବୀର ପାର୍ଥ
ଶୁଣି ମଉନ ହୋଇଲେ ଧର୍ମ ରାଜସୁତ ।
ଶୋକେ ଗଦଗଦ ହୋଇ ତହୁଁ କୁନ୍ତୀଦେବୀ
ବାବୁ ଅର୍ଜ୍ଜୁନ ଗଲା ଯେ ବନବାସ ସେବି ।
କୁନ୍ତୀ ଦେବୀଙ୍କ ମୁଖରୁ ଏସନକ ଶୁଣି
ମନେ ଉଚ୍ଚାଟ ପାଇଲେ ଦେବ ଜମ୍ଭୁପାଣି ।
ପଚାରନ୍ତି ଯୁଧିଷ୍ଠିରେ ପ୍ରଭୁ ଯଦୁମଣି
କି ମର୍ଥେ ବନକୁ ଗଲା ବୀର ଫାଲଗୁନ ।
ଗୋବିନ୍ଦ ପଚାରନ୍ତେ ଯେ ଯୁଧିଷ୍ଠି ବୋଲନ୍ତି
ପଚାରନ୍ତୁ ଏହା ସହଦେବ ଯେ ମନ୍ତ୍ରୀଙ୍କି ।
ଯୁଧିଷ୍ଠିର ବଚନରେ ଦେବ ଚକ୍ରପାଣି
ଅନ୍ତରେ ବୋଇଲେ ମନ୍ତ୍ରୀ ସହଦେବଙ୍କୁ ଘେନି ।
ଏକାନ୍ତେ ଗୋବିନ୍ଦ ପୁଚ୍ଛା କଲେ ସେ ମନ୍ତ୍ରୀଙ୍କୁ
କେବଣ ଚରିତ ବାବୁ ଜାଣ ତୁ ଆମ୍ଭଙ୍କୁ ।

କହେ ମନ୍ତ୍ରୀବର କହ ଅଛଇ କି ଅର୍ଥ
ସଙ୍ଗରେ ତ ନ ଦେଖିଲୁ ବୀରବର ପାର୍ଥ ।
ଠାକୁରଙ୍କୁ ପଚାରିଲୁ ନ କହିଲେ ମୋତେ
ତେଣୁ ସହଦେବ ମୁହିଁ ପଚାରୁଛି ତୋତେ ।
କୃଷ୍ଣଙ୍କର ବଚନାର ଶୁଣି ମନ୍ତ୍ରିବର
କରପଦ୍ମ ଯୋଡ଼ି ଧୀରେ କରଇ ଉତ୍ତର ।
ଗୁପତ ନ କର କହେ ମନ୍ତ୍ରୀ ଚୂଡ଼ାମଣି
ସାବଧାନେ ଶୁଣ ତୁମ୍ଭେ ଶଙ୍ଖ ଚକ୍ରପାଣି ।
ଆମ୍ଭେ ପାଞ୍ଚଭାଇ ବସି ନିୟମ ଯେ କଲୁ
ଅଗ୍ନିକୁ ସାକ୍ଷୀ କରଣ ଏମନ୍ତ ବୋଇଲୁ ।
ଦ୍ରୌପଦୀ ଗୃହକୁ ଯିବା ପାଳି ଯେ ହୋଇବ
ଅନ୍ୟ ଯେ ଦେଖିବ ବାରବର୍ଷ ବନେ ଯିବ ।
ଦଇବ ଯୋଗେ ଯୁଧିଷ୍ଠି ଠାକୁରଙ୍କ ସଙ୍ଗେ
ଦ୍ରୌପଦୀ ବିଜୟ କରିଥିଲେ ନିଦ୍ରା ରଙ୍ଗେ ।
କପଟେ ଅଗ୍ନିଦେବତା ଏମନ୍ତ ସମୟେ
ବ୍ରାହ୍ମଣ ରୂପ ଧରିଣ ଦ୍ୱାରେ ଆସି ହୁଏ ।
ପାର୍ଥଙ୍କୁ କହିଲେ କହ ଯୁଧିଷ୍ଠିଙ୍କୁ ଯାଇ
ବ୍ରାହ୍ମଣ ଜଣେ ଅଛନ୍ତି ଦ୍ୱାରେ ଉଭା ହୋଇ ।
ଏମନ୍ତ ବୋଲଣ ତୁମ୍ଭେ ତାଙ୍କୁ ବେଗେ ଆସ
ଗୁପତ କଥାଏ ଆମ୍ଭେ କହିବୁ ବିଶ୍ୱାସ ।
ଯେବେ ବିଳମ୍ବ କରିବୁ ତୁ ହୋ ବୀର ପାର୍ଥ
ଭସ୍ମ କରିବ ନଗର ହୋଇବ ଧୂମାନ୍ତ ।
ସେ ମାୟା ନ ଜାଣି ପାର୍ଥ ଭିତରକୁ ଗଲେ
ଯୁଧିଷ୍ଠିର ଦ୍ରୌପଦୀଙ୍କ ଏକାନ୍ତେ ଦେଖିଲେ ।
ଅଗ୍ନିଦେବତା ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ
ସତ୍ୟ ପାଳଣ ବନକୁ ଗଲେକ ଅର୍ଜୁନ ।
ଅନେକ ବନ ବୁଲି ସେ ବହୁ ତୀର୍ଥ କରି
ବର ଉଦ୍ୟାନ ବନରେ ଜିଣି କିପୁରାରି ।
ପାଶୁପତ ଯେ ଅକ୍ଷୟ ତୂଣୀରକୁ ପୁଣ
ପ୍ରସନ୍ନେ ତାହାଙ୍କୁ ଦେଲେ ଉମା ବଲ୍ଲଭନ
ପୂଜା କଲେ ତାଙ୍କୁ ହର ପାର୍ବତୀ ଏ ବେନ
ସବ୍ୟସାଚୀ ନାମ ଦେଲେ ତୋଷମନେ ପୁଣି ।
ଈଶ୍ୱର ଦେବତା ପାଶୁପତ ଦେଲେ ଶର
ପାର୍ବତୀ ଦେଲେ ଯେ ବେନି ଅକ୍ଷୟ ତୂଣୀର
ବର ଦେଇ ହରଗୌରୀ ଗଲେ କପିଳାସ
କାଶୀ ନଗର ପଶ୍ଚିମେ ପାର୍ଥ କଲେ ବାସ ।

ବସ୍ତ୍ର ପ୍ରସାଦ ବୋଲି ଯେ ନଗ୍ରାଏ ଅଛଇ
ରହିଥିଲେ ଧନଞ୍ଜୟ ବୀର ଯାଇଁ ତହିଁ ।
ଯୋଗୀବନେ ବୁଲୁଛନ୍ତି ପାଳି ସତ୍ୟବ୍ରତ
ଏବେ ବିଜେ ମଣିଭଦ୍ରା ପର୍ବତ ପର୍ବତ ।
ତୌବଂଶ ନାମ ଅଗୁରୁ ବୃକ୍ଷ ଅଛି ଯହିଁ
ମହତ ଶିଳା ଉପରେ ବିଜୟ ଗୋସାଇଁ ।
ବୀରବର ଦିବସ ଯେ ମହାଗୁଣ କରି
ଅଗୁରୁ ବୃକ୍ଷରେ ବାନ୍ଧି ଆଉ ଆଡ଼ି ଧରି ।
ଆଢ଼େଇ ଲଗାଇଛନ୍ତି ନେଇ ବେଣୁ ବୃକ୍ଷେ
ଗୁଣ ବସି ମାଜୁଛନ୍ତି ସେଠାରେ ପ୍ରତ୍ୟକ୍ଷେ ।
ତହିଁରେ ନିମଗ୍ନ ହୋଇ ପାର୍ଥ ବୀର ଅଛି
ସାବଧାନ ହୋଇ ତୁମ୍ଭେ ଶୁଣିବା ଶ୍ରୀବତ୍ସ ।
ଦ୍ୱାଦଶବର୍ଷ ଷଡ଼ମାସ ହେଲା ତେର ଦିନ
ଆଜକୁ ତ ବନବାସ କଲେକ ଅର୍ଜୁନ ।
ହସିଣ ଶ୍ରୀହରି ମନ ମଧ୍ୟେ ବିଚାରିଲେ
ଦରହସିତ ବଦନେ ଆନନ୍ଦେ ପୁଚ୍ଛିଲେ ।
ମୋ ମନେ ସଂଶୟ ଜାତ ହେଲା ମନ୍ତ୍ରୀବର
କି କାର୍ଯ୍ୟେ କପଟ କଲେ ଦେବ ବୈଶ୍ୱାନର
ମନ୍ତ୍ରୀ ବୋଇଲେ ସେ ଶ୍ୱେତରାଜା ଯଜ୍ଞକାଳେ
ଶତେ ବରଷ ଅଗ୍ନିରେ ସେ ଆହୁତି ଦେଲେ
ଲୋଭରେ ଖାଇଲେ ଘୃତ ସେ ଯଜ୍ଞେ ବହୁତ
ଲିହୁବୁହୁ ବ୍ୟାଧିମନ୍ତ ହେଲେ ବୀତିହୋତ୍ର ।
ଦେବତାଙ୍କୁ ମେଳାଇ ସେ ସ୍ୱାହାଦେବୀ ପତି
ମାଗିଲେ ଖାଣ୍ଡବ ବନ ଇନ୍ଦ୍ର କଲେ ନାସ୍ତି ।
ସର ଗୁପ୍ତ ବନବାସ କଲେକ ଅର୍ଜୁନ
ବ୍ରାହ୍ମଣ ରୂପ ଧରିଣ ମାଗିବେ ସେ ଦାନ ।
ତେଣୁ ସେ ବିବାଦ ପିତା ସଙ୍ଗେ ଆଚରିବେ
ଅଗ୍ନିଦେବତାଙ୍କୁ ତହିଁ ମହୌଷଧି ଦେବେ
ଶୁଣି ଉଠିଲେ ଆସ୍ଥାନ ତେଜି ଦେବରାୟ
ଯୁଧିଷ୍ଠି ଦେବଙ୍କ ପାଦେ କରିଣ ବିନୟ ।
ଆଜ୍ଞା ଦେଇ ଦେବ ମୁହିଁ ଯିବି ଦ୍ୱାରବତୀ
ଯେବେ ମୋର ସଖା ନାହିଁ ଫାଲଗୁନି ଏଥି
ଯୁଧିଷ୍ଠି ବୋଲେ ମଣୋହି ସାର ବେଗକରି
ତଦନ୍ତେ ବିଦାୟ କଲେ ଦେବ ଚକ୍ରଧାରୀ ।
ପୁଣିହିଁ ବୋଇଲେ ଦେବ ଆକଟ ଯେ ଅଛି
ରହି ନ ପାରିବ ଆଉ ବୋଲନ୍ତି ଶ୍ରୀବତ୍ସ ।

ଯୁଧିଷ୍ଠି ବୋଇଲେ ତୁ ହୋ ଯାଇଁ ଚକ୍ରଧାରୀ
ଫେରାଇ ଆଣ ପାର୍ଥଙ୍କୁ ଆଶ୍ୱାସନା କରି ।
ତୁ ଦେବଦେବ ସଂସାର ଜନ ହିତକାରୀ
ମୁହିଁ ତୋତେ କିସ କଥା ବୋଲିବି ତ ଆଉ
ଗତକଥା ତୋତେ କହି ଥିବଟି ବିଶ୍ୱାସି
ଶୁଭଯୋଗେ ଭେଟ ତୁମ୍ଭେ ପାର୍ଥ ଯେବେ ଆସି
ବନସ୍ଥ ଭାବ ବହୁଣ ବୋଲନ୍ତି ଅଚ୍ୟୁତ
ଆସିବା ପାଇଁ ମୁହିଁ ଯେ ବୋଲିବି ବହୁତ ।
ପ୍ରତିଜ୍ଞା ସାର୍ଥକ ପାଇବତ ସେ କିରୀଟୀ
ନ ପୁଣ ଆସଇ ସେହୁ ବନରୁ ଲେଉଟି ।
ଧର୍ମସୁତ କହିଲେକ ବଳେ କରି ହରି
ମୁହିଁ ଅରକ୍ଷିତ ମୋତେ ଥିବୁ ଦୟା କରି ।
ଗୋବିନ୍ଦ ବୋଇଲେ ମୁହିଁ ଅଟେ ତୁମ୍ଭ ଭୃତ୍ୟ
ଯହିଁକି ଅବଧାନ ମୁଁ ତହିଁକି ଆଗତ ।
ଏତେ ବୋଲି ଦେବ ପାଦେ ପ୍ରଣିପାତ କଲେ
ଭୀମସେନ ନକୁଳଙ୍କୁ ତୋଷେ କୋଳ କଲେ
ପଞ୍ଚଶ୍ରେଷ୍ଠ ପାଣ୍ଡବଙ୍କୁ ନ ଦେଲେ ଯୋଡ଼ାଇ
ଗରୁଡ଼ ଚଢ଼ି ବଜଯେ କମଳାର ସାଇଁ ।
ଆଜ୍ଞା ଦେଲେ ହରି ଆହେ ବିନତା କୁମର
ମଣିଭଦ୍ରା ପର୍ବତକୁ ବେଗେ ବିଜେ କର ।
ସତୁରିସହସ୍ର ଯୁଣ ପଥ ଅନ୍ତ ହୁର
ତନ ନିଃଶ୍ୱାସେ ମିଳିଲେ ତହିଁ ପକ୍ଷୀବର ।
ଯେଉଁରୂପେ କହିଥିଲା ମନ୍ତ୍ରୀ ଚୂଡ଼ାମଣି
ପ୍ରତ୍ୟକ୍ଷ କରି ଦେଖିଲେ ତହିଁ ଚକ୍ରପାଣି ।
ଧନ୍ୟ ତୁ ହେ ସହଦେବ ବୋଲନ୍ତି ଶ୍ରୀଧର
ଦେଖିଲା ପ୍ରାଏ କହିଲୁ ମୋତେ ମନ୍ତ୍ରୀବର ।
ବିସ୍ମୟ କରନ୍ତି ମନେ ମନେ ପଦ୍ମନାଭ
ଚିହ୍ନି ପାରିବ କି ଆଜ ପାଇବାର ପାର୍ଥ ।
ଗରୁଡ଼ଙ୍କୁ ଦେବ ଶୂନ୍ୟମାର୍ଗରେ ଛଡ଼ାଇ
ଅର୍ଜୁନ ନିକଟେ ତହିଁ ବିଜେ କଲେ ଯାଇ ।
ନଟବର ମୂରତି ଏକ ଧରି ଚକ୍ରଧର
କି ଅବା କାହିଁ ବା ସେହି ରୂପ ପଟାନ୍ତର ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଏକା ଶରୀରେ ଧରିଲେ ଦେବ ନବମୂର୍ତ୍ତି ।
ହସ୍ତୀର ଶରୀର ତୁରଙ୍ଗମ ଏକପାଦ
ମୟୂର ଏକପାଦ ଯେ ବ୍ୟାଘ୍ର ଏକପାଦ ।

ମୟୂରର କଣ୍ଠ ଅହିପୁଚ୍ଛ ସିଂହକଟୀ
ବୃଷଭର ଚୂଳ କୁକ୍କୁଟର ଅଣ୍ଡ ଗୋଟି ।
ହସ୍ତରେ ପଦ୍ମ ଫୁଲେକ ଗଳେ ରତ୍ନହାର
ବିଜେ କଲେ ଯାଇଁ ଦେବ ଅର୍ଜୁନ ଆଗର ।
ଗୁଣ ମାନୁଅଛି ବସି ପାଣ୍ଡବ ଅର୍ଜୁନ
ଉଭ୍ରାନ୍ତି ନୃତ୍ୟ କରିବା ପ୍ରାପ୍ତ ନ ସମ୍ପୂର୍ଣ ।
ଖର ଖରି ଶବ୍ଦ ହୁଏ ପାଦେ ପଦ ବାଜ
ଶବଦ ଶୁଭଇ ଯେହ୍ନେ ମେଘ କି ଗରଜ ।
ତହିଁକି ତ ଲକ୍ଷ୍ୟ ନ କରଇ ପାଇ ପାର୍ଥ
ଯେସନେକ ବ୍ରହ୍ମଜ୍ଞାନୀ ବ୍ରହ୍ମରେ ଯୁକତ ।
ସେ ଯେଥିର ନ ଜାଣଇ ରାଜା ବିଜେ କଲେ
ଦୃଷ୍ଟି ନ ଦିଅଇ ସୁଦ୍ଧା ଘୋର ଶବଦରେ ।
ଯେହ୍ନେମ ତ ଗୁଣେ ଅଛି ପାର୍ଥ ଦୃଷ୍ଟି ମନ
ମାୟା ସ୍ୱରୂପକୁ ତେଣୁ ନ ବୁଝେ ଅର୍ଜୁନ ।
ଯେତେବେ ଲେଉଟି ହୁଅନ୍ତି କମଳାର ସାଇଁ
ଲତା ଭିତରେ ପଶନ୍ତି ପୁଣି ଦେବ ଯାଇଁ ।
ନୃତ୍ୟକରି ମାରନ୍ତି ସେ ପଦେ ଆଉଟସ
ହଲନ୍ତେ ଶ୍ରୀମୁଖ କବା ଝୁଲନ୍ତି ତାସ ।
ଉଭ୍ରାନ୍ତି ଯେ ଉଲୁଟନ୍ତି ଭୂମିରେ ଲେଟନ୍ତି
ଚଉଷଠି ତାଳେ ନୃତ୍ୟରଙ୍ଗ ସେ କରନ୍ତି ।
ଏସନ ନୃତ୍ୟ କରନ୍ତେ ପ୍ରଭୁ ବାସୁଦେବ
ଗୁଣ ଗୁଢ଼ ଦୃଷ୍ଟି ତହିଁ ଦେଲକ ପାଣ୍ଡବ ।
ଦେଖି ଧନଞ୍ଜୟ ଦିବ୍ୟ ଅପୂର୍ବ ମୂରତି
ଏକଦେହେ ନବରୂପ ଏକ ଏକ କାନ୍ତି ।
ଦେଖିଣ ମଧ୍ୟପାଣ୍ଡବ ଚକିତ ହୁଅଇ
ମନେ ବିସ୍ମରଇ ଏ ତ ଅପୂର୍ବ ଅଟଇ ।
ଏକ ଦେହରେ ଅଛଇ ନବଗୋଟି ରୂପ
ପୃଥିବୀରେ ନ ଦେଖିଲି ଏମନ୍ତ ସ୍ୱରୂପ ।
ମୋହର କି ନ ଦେଖିଲା ନାହିଁ କିଛି ବର୍ଣ୍ଣି
ବୁଲି ଅଛଇ ମୁହିଁ ଯେ ଅନେକ ଅରଣ୍ୟ ।
ଶତଶୃଙ୍ଗ ପରବତ ବାରୁଣା ନଗର
ବଡ଼ କୁମ୍ଭକୁ ପର୍ବତ ନଇମିଷ ଗିରି ।
କାମ୍ୟକ ନାମେ ପର୍ବତ ଗିରି ରଇବତ
ମନ୍ଦର ହର ଅରଣ୍ୟ ତୁରଙ୍ଗ ପର୍ବତ ।
ସାକ୍ଷ ନାମେ ବନଗିରି କାଳଞ୍ଜନ ଶୈଳ
ବଦର ନାମେ ଯେ ନଗ ମହେନ୍ଦ୍ର ଅଚଳ ।

ଚୌଷଠିଲିଙ୍ଗ ସେବନ ତହିଁ ବସେ ତ୍ରିପୁରାରି
କୈଳାସ ପର୍ବତ ଶ୍ୱେତ ସ୍ୱର୍ଣ୍ଣମୟ ଗିରି ।
ମେରୁର ପଶ୍ଚିମ ଦିଗ ବୃନ୍ଦାବନ ଯେ ବନ
କାଳ ବୃନ୍ଦାବନ ଶୁଦ୍ଧ ନାଗାନ୍ତ ଅରଣ୍ୟ ।
ବାରଙ୍ଗ ପର୍ବତ ପୁଣି କୁଣ୍ଡଳୀ କାନନ
କୋଳାହଳଲତା ଲୋକାଲୋକ ନାମେ ବନ
ଭରତ ନାମେ ପର୍ବତ ମନୋହର ଗିରି
ମଳୟ ନାମେ ପର୍ବତ ଚନ୍ଦ୍ରନାମେ ଶୈଳ ।
ଅନ୍ୟମାନେ ଅଛନ୍ତି ତ ଯହିଁ ବାସ କରି
କୁଳ ପର୍ବତ ମୁହିଁ ସେ କନ୍ଦର ଗିରି ।
ଗନ୍ଧମାଦନ ଯେ ପୁରନ୍ଦର ହସ୍ତିମୁଖ
ବନ ପର୍ବତ ଆବର ଷୋଳ ଗିରି ଶିଖ
ଏରୂପେ ଅଠର ଲକ୍ଷ ଅଟଇ ଯେ ଗିରି
ଏତେକ ପର୍ବତ ମୁହିଁ ଆସେ କୁଳକରି ।
ଏତେ ପର୍ବତ ଲତାରେ ଜୀବଜନ୍ତୁ ଯେତେ
ସକଳ ଜୀବଙ୍କୁଁ ଦେଖିଅଛୁ ଦୃଷ୍ଟି ପଥେ ।
ଏମନ୍ତ ସ୍ୱରୂପ ଜୀବ ଦେଖି ନାହିଁ ମୁହିଁ
ମାୟାରୂପ ପରମେଶ ଦିଶୁଅଛୁ ଏହି ।
ମାୟାସ୍ୱରୂପେ ବସେ କା କମଳାର କାନ୍ତ
ମୋତେ ଲକ୍ଷଣ ଦେବାକୁ ଆସେ ପଦ୍ମନେତ୍ର ।
ଶୋଇବ ମୁଁ ଏହା ପାଦତଳେ ଗଡ଼ିଯାଇ
ଆନ ଜୀବ ହୋଇଥିଲେ ନଷ୍ଟେଁ ଯିବ ଜଳ ।
ଏତେ ବଚନ ମଧ୍ୟମପାଣ୍ଡବ ଅର୍ଜ୍ଜୁନ
ଗଡ଼ିଯାଇ ଶୋଇଲା ସେ ଶ୍ରୀହରି ଚରଣ ।
ପାଦତଳେ ପଡ଼ି ସ୍ତୁତି କରେ ସାରବର
ଜୟ ତୁ ଅନାଦି ଦେବ ଜୟ ନମସ୍କାର ।
ତୁ ଦେବ ଦିବ୍ୟ ମୂରତି ରୂପ ଧରିପାରୁ
ଅନାଦି ଅବତାର ତୁ ବାଞ୍ଛା କଳ୍ପତରୁ ।
ତୋହର ଆଜ୍ଞାରୁ ଏ ଯେ ଚତୁର୍ଦ୍ଦଶପୁରି
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ତୋର ପରିବାର ।
ଚରାଚର ଜୀବଜନ୍ତୁ ସର୍ବେ ତୋର ଭୃତ୍ୟ
ଜୀବ ଅଜୀବରେ ତୁହି ପୂରିଚ ସମସ୍ତ ।
ତୋହର ବଶ୍ୟରେ ଦେବ ଚରାଚର ନାଥ
ଅନାହତ ପୁରୁଷ ତୁ ଅଣାକାର ନ୍ୟାସ ।
ଯାହାର ମାୟାରେ ଭୁଲିଗଲେ ତ୍ରିଲୋଚନ
ମୁଁ ଛାର ମାନବ ମୋତେ କର୍ପା ତୋ ଲକ୍ଷଣ

ସ୍ତୁତି ଶୁଣି ଉଠାଇଲେ ଦେବ ନାରାୟଣ
ନଗୀନ ମୂରତି ଶ୍ୟାମ ଜିଣି ନବଘନ ।
କଟିତଟେ ଶୋଭାପାଏ ପାଟ ପୀତାମ୍ବର
ପଦ୍ମଦଳ ଲୋଚନ ଯେ ଅରୁଣ ଅଧର ।
ଶ୍ରୀବତ୍ସ ଲକ୍ଷଣ ବକ୍ଷେ କଉସ୍ତୁଭ ମଣି
ଏମନ୍ତ ସ୍ୱରୂପରେ ଯେ ବସେ ଚକ୍ରପାଣି ।
ଏ ସ୍ୱରୂପଗୋଟି ଯହୁଁ ଅର୍ଜ୍ଜୁନ ଦେଖିଲେ
କରପଦ୍ମ ଯୋଡ଼ି ତହୁଁ ବିନୟେ ଭାଷିଲେ ।
ପୁଣ ପୁଣ ସ୍ତୁତି ସେହୁ କରଇ ବଖାଣ
ଦେଖିଣ ତାଙ୍କୁ ହରଷ ହେଲେ ନାରାୟଣ ।
ମକର କୁଣ୍ଡଳ ବା ସୂର୍ଯ୍ୟ ଶତକର
ନବରତ୍ନ ପଦକ ଯେ ନାନା ମଣିହାର ।
ସପତଶାଖା ମୁକୁଟ ଶିରେ ଶୋଭାବନ
କରେ ଶଙ୍ଖ ଚକ୍ର ଶୋଭେ ଜଗତମୋହନ ।
ଦେଖି ଧନଞ୍ଜୟ ପୁଣି ଶୋଏ ଗଡ଼ିଯାଇ
କୋଳରେ ଧରିଣ ଦେବଦିବ୍ୟ ବାକ୍ୟ ବୋଲି
ଅର୍ଜ୍ଜୁନଙ୍କୁ ବେନି ମରକତ ଶିଳାପରେ
ବସି ପଚାରନ୍ତି ଧୀରେ ଧୀରେ ଚକ୍ରଧରେ ।
ଧନ୍ୟ ଧନ୍ୟ ଧନଞ୍ଜୟ ଚହ୍ନିଲୁ ତୁ ମୋତେ
ତୁ ମୋହର ପ୍ରାଣରୁ ଯେ ଅଟୁ ପଞ୍ଚଭୂତେ ।
ତେଣୁ ସିନା ତୁ ଏ ରୂପ ଚହ୍ନିଲୁ ମୋହର
ଏତେବୋଲି ଦେବ ପୁଣି ବଲେ ତାଙ୍କୁ କୋଳ
ବୋଲନ୍ତି ଯେ ଅର୍ଜ୍ଜୁନଙ୍କୁ ସ୍ୱାମୀ ପୀତବାସ
କି କାର୍ଯ୍ୟେ ତୁ ଧନଞ୍ଜୟ କଲୁ ବନବାସ ।
ସହଦେବଙ୍କୁ ପୁଣି ସେ କରନ୍ତି ପ୍ରଶଂସା
ଦେଖିଲା ପ୍ରାୟ ମୋତେ ସେ କହିଲା ଭବିଷ୍ୟ
ଯେଉଁ ସ୍ୱରୂପେ ତୋତେ ମୁଁ ଦେଖେଇଲି ଭର
ସେ ସ୍ୱରୂପ କହିଲା ମୋ ଆଗେ ମନ୍ତ୍ରୀବର ।
ଧନ୍ୟ ଆରେ ସହଦେବ ମନ୍ତ୍ରୀ ଅଟୁ ତୁହି
ତୋର ଥାନ୍ତେ ମୋର ସଖା ବନକୁ ଆସଇ
ଏସନ ପ୍ରଶଂସା ସହଦେବ କଲେ ହରି
ଅର୍ଜ୍ଜୁନହିଁ ମନେ ତାଙ୍କୁ ପ୍ରଶଂସାହିଁ କରି ।
ଶ୍ରୀହରି ଯେ ପସ୍ତାବନ୍ତେ ହସିଲେ ଅର୍ଜ୍ଜୁନ
ସାବଧାନ ହୋଇ ତୁମ୍ଭେ ଶୁଣ ଭଗବାନ ।
ଦ୍ରୁପଦସୁତା ଦେବୀଙ୍କର ଉତ୍ତର କଥା
ଯାହା କି ସେ କୈବର୍ତ୍ତକ ଥିଲେକ ସମ୍ଭାଷ

ଏକଇ ରମଣ ଯେବେ ଆରେକ ଦେଖଇ
ଦ୍ୱାଦଶ ବରଷ ସେହି ବନବାସ ଯାଇ ।
ଏକଦିନ କାହିଁ ଏକ ବ୍ରାହ୍ମଣ ଯେ ଆସି
ବହୁତ କହିଲେ ମୋତେ ଦ୍ୱାରେ ଯେ ପ୍ରବେଶି
ଏହିକ୍ଷଣି ମୋ ପାଶକୁ ଯୁଧିଷ୍ଠିରଙ୍କୁ ଆଣ
ନୋହିଲେ ସମସ୍ତ ଭସ୍ମିବ ମୋ କ୍ରୋଧେଣ
ଗୁପତ କଥାଏ ଅଛି ତାଙ୍କୁ ମୁଁ କହିବ
ବେଗେ ଘେନଆସ ଯାଇ ପାଣ୍ଡବ ବାସବ ।
ତାହାଙ୍କର ଆଜ୍ଞାରେ ମୁଁ ଭିତରକୁ ଗଲି
ଯୁଧିଷ୍ଠି ପାଞ୍ଚାଳଙ୍କର ଏକାନ୍ତ ଦେଖିଲି ।
ଲେଉଟି ଦୁଆରେ ଆସି ହୁଅନ୍ତେ ସଭର
ସେଠାରୁ ବ୍ରାହ୍ମଣ କେଣେ ହୋଇଲେ ଅନ୍ତର
ସେ ନ୍ୟାୟରୁ ବନବାସ ହୋଇଛି ମୋହର
ବନେ କଷଣ ବହୁତ ହେଲା ଦାମୋଦର ।
ଅର୍ଜ୍ଜୁନ ମୁଖୁଁ ଶୁଣିଣ ତୋଷ ଭଗବାନ
ମନ୍ତ୍ରୀ କହିଥିଲେ ତାଙ୍କୁ ଯେତେକ ବିଧାନ ।
ଆଜ୍ଞା ଦେଲେ ତାଙ୍କୁ ଶୁଣି କମଳାର ପତି
ଚଲ ଏବେ ଯିବା ବାବୁ ପୁର ଦ୍ୱାରବତୀ ।
ଅର୍ଜ୍ଜୁନ ବୋଇଲେ ପୁଣି ଯୋଡ଼ି କରପଦ୍ମ
ଅରଣ୍ୟକୁ ଅଇଲି ମୁଁ ସତ୍ୟେ ପଦ୍ମନେତ୍ର ।
ସବେ ସ୍ୱରବର୍ଷ ଷଡ଼ମାସ ତେଇଦିନ
ଏତେକ ଦିନ ସେବଣ ରହିଲି ଅରଣ୍ୟ ।
ସାତବର୍ଷ ପାଞ୍ଚମାସ ଷୋଳଦିନ ଗଲେ
କରବ ଦର୍ଶନ ତୋତେ ଦ୍ୱାରକା ପୁରେ ।
ଶ୍ରୀହରି ଅର୍ଜ୍ଜୁନ ଦୁହେଁ କରନ୍ତେ ବିଚାର
କହନ୍ତି ଯେ ମନ୍ଦ ମନ୍ଦ ହାସ୍ୟେ ଚକ୍ରଧର ।
ଆଜ ଚଇତ୍ର କୃଷ୍ଣପକ୍ଷର ତ୍ରୟୋଦଶୀ
ମହାବାରୁଣୀ ଯୋଗ ଯେ ଗଙ୍ଗାରେ ପଡ଼ିଛି ।
ଯେବେ ଆଜ ଥାଆନ୍ତେ ଆମ୍ଭେ ଦ୍ୱାରକା ପୁରେ
ସ୍ନାନ କରିଥାନ୍ତେ ପାପନାଶିନୀର ନୀରେ ।
ଅର୍ଜ୍ଜୁନ ବୋଇଲେ ହରି ସେହି ସୁରେଶ୍ୱରୀ
ଆସିବେ ଏଠାରେ ସ୍ନାନ କର ଚକ୍ରଧାରୀ ।
ହସି ପୁଣି ପଚାରନ୍ତି କମଳାର ପତି
କେଉଁରୂପେ ଏଥେ ଆସିବେ ଧବଳା ମୂରତି ।
ଅର୍ଜ୍ଜୁନ ବୋଇଲେ ଯାର ପାଦରୁ ସମ୍ଭୂତ
ତାହାକୁ ଏହି କଥା କି ଅଟେ ବିପରୀତ ।

ଶ୍ରୀହରି ବୋଇଲେ ସେହି ଅଛନ୍ତି ତ ଦୂରେ
ଭଗୀରଥ ଆଣିଥିଲେ ବହିଲେ ପୃଥ୍ୱୀରେ ।
ଆନ କେ ତାହାକୁ ଏଥେ ଆଣିବ ଅର୍ଜ୍ଜୁନ
ଏହା ଶୁଣି ବୋଇଲେ ଯେ ପଣ୍ଡୁର ନନ୍ଦନ ।
ସେ ଦେବ ଏବେ ତୁମ୍ଭର ଆଜ୍ଞା ପରମାଣେ
ଆସିବେ ସେ ଗଙ୍ଗାଦେବୀ କର ଅବଧାନେ ।
ଶୁଣିଣ ହସନ୍ତି ସେ ଯେ କମଳାର ବର
ଭଗୀରଥ ପ୍ରାପ୍ୟ ଧର୍ମ ଥିବ ହୋ ଯାହାର ।
ତପସ୍ୟା ବଳରେ ତାଙ୍କୁ ଆଣିଲେ ସେ ସ୍ୱୟ
ତୁମ୍ଭେ ବା ଆଣି ପାରିବ ତାହା ଧନଞ୍ଜୟ ।
ଶୁଣି ସାରବର ଆଜ୍ଞା ପ୍ରଭୁଙ୍କର ଘେନ
ଧନୁରେ ନାରାଚ ଏକ ବସାଇଲେ ଆଣି ।
ଅରକ୍ଷ ବୋଲି ପିଶାଚ ଥିଲା ଏକ ଜଣ
ଧନୁର୍ବେଦ ତାହାଠାରୁ ପଢ଼ିଲେ ଅର୍ଜ୍ଜୁନ ।
ସେ ପୁଣି ଜଳ ତରଙ୍ଗ ବୋଲି ଏକଶର
ଅର୍ଜ୍ଜୁନକୁ ଅନୁଗ୍ରହେ ଦେଇଥିଲା ବର ।
ମନ୍ତ୍ର ସୁମରି ବିନ୍ଧିଲେ ତାହା ବୀରମଣି
ବୋଇଲେ ଘେନ ଆସିବୁ ବରୁଣର ରାଣୀ ।
ସେ ଅଘନାଶିନୀ ଦେବୀ କରନ୍ତୁ ବିଜୟେ
ତୁମ୍ଭେ ତାଙ୍କ ଆଗେ ଥିବ ପଛେ ଥିବେ ମାୟେ ।
ଆଜ୍ଞାରେ ନାରାଚ ତହୁଁ ଚଳିଲା ତକ୍ଷଣ
ନିଃଶ୍ୱାସକେ ଗଲା ତିନ ସହସ୍ର ଯୋଜନ ।
ଦେବୀର ସମ୍ମୁଖରେ ମିଳି କରଯୋଡ଼ି କହି
ହରି ଅର୍ଜ୍ଜୁନ ପେଷିଲେ ମୋତେ ମହାମାଈ ।
ତୁମ୍ଭଙ୍କୁ ନେବାକୁ ମାତ କର ଅବଧାନ
ମଣିଭଦ୍ରା ପରବତେ ଅଛେ ଦୁଇଜଣ ।
ଶୁଣି ମାତା ଶରବାଣୀ ହୃଦେ କଲେ ଲୟ
ଜାଣିଲେ ଯେ ଶ୍ରଦ୍ଧା କରିଛନ୍ତି ଦେବରାୟ ।
ହରି ଅର୍ଜ୍ଜୁନ ଅଛନ୍ତି ବସି ଏକସ୍ଥାନ
ନ ଗଲେ ତ ବଳେ ଘେନଯିବେ ଏହିବାଣ ।
ଏତେକ ଭାବିର ମନେ ଧବଳାଙ୍ଗୀ ମୂର୍ତ୍ତି
ଆପଣା ମନ ମଧ୍ୟରେ ଲଭିଲେ ଉପତି ।
ତୁମ୍ଭେ ଆଗହୋଇ ବାଟ କଢ଼ା ଆହେ ବାଣ
ତୁମ୍ଭ ପଛେ ପଛେ ଜାଣ ଆମ୍ଭର ପ୍ରୟାଣ ।
ଆଜ୍ଞାରେ ତ୍ୱରିତ ହୋଇ ଗଲା ସେହି ଶର
ଏସନ ବଚନ ଶୋଭ କହା ଅଛିବର ।

ସଙ୍ଗମ ସୁଗନ୍ଧ ଲତା ଛଦା ହେମଲତା
ତାହାର ମଧ୍ୟରେ ବସେ ଜଗତର ମାତା ।
ପାତାଳ ଭେଦ କରିଣ ବସେ ଭଲେ ସହୁଁ
ମଣିଭଦ୍ରା ପର୍ବତରେ ପ୍ରବେଶିଲେ ତହୁଁ ।
ଶ୍ୱେତକଳ୍ପ ନାମେ ଅଛି ଏକ ବୃକ୍ଷବର
ସେ କୋଟମଧ୍ୟନ୍ତୁ ସିନ୍ଧୁ ହୋଇଲା ତାହାର ।
କୃଷ୍ଣ ଅର୍ଜ୍ଜୁନ ଏ ଦୁହେଁ ଦେଖନ୍ତି ଉପର
ଶରପଞ୍ଜେ ବସେ କରିଅଛି ମାହେଶ୍ୱରୀ ।
ଗୋବିନ୍ଦର ପାଦପଦ୍ମେ କଲେକ ଭକତି
ଅନ୍ତର୍ଗତେ ତାହା ଜାଣି ପାରିଲେ ଶ୍ରୀପତି ।
ଶର ତତକ୍ଷଣେ ପୁଣ ଜଳରୂପ ହୋଇ
ବହିଲେ ତୂଣୀରେ ଗୋପେ ବାସବୀ ତାନେଇ
ଗଙ୍ଗାର ଚରଣ ତଳେ ପଡ଼ିଲେକ ପାର୍ଥ
ପାଦେ ପଡ଼ି କଲେ କୋଟିଏକ ଦଣ୍ଡବତ ।
ଆନନ୍ଦମନ ହୋଇଲେ ଶଙ୍ଖ ଚକ୍ରଧର
ପାର୍ଥଙ୍କୁ ଘେନି ସଙ୍ଗରେ ପଶିଲେ ଜଳର ।
ସ୍ନାନ ସାରିଲେ ଶ୍ରୀହରି ତାହାଙ୍କର କୂଳେ
ସନ୍ଧ୍ୟା ତରପଣ କରି ଦେବେ ଜଳଦେଲେ ।
ତରଙ୍ଗିଣୀ ବୋଲି ଗଙ୍ଗା ନାମ ସେ ବହନ୍ତି
ଦେବାଙ୍କ ପାଦ ବାନ୍ଧିଲେ ଶିରରେ ଶ୍ରୀପତି ।
ବୋଇଲେ ସୁରଭି ତୁମ୍ଭେ ଆମ୍ଭ ଆଜ୍ଞା ଶୁଣ
ମହାବାରୁଣୀ ପଡ଼ିବ ଜାଣ ଯେଉଁ ବନ ।
ସତ୍ୟ ତ୍ରେତା ଦ୍ୱାପର ଏ କଳିଯୁଗ ସ୍ଥିର
ଏଣୁ ଶର ଆଗେ ଥିବ ଅଗ୍ନିରୂପ ଧରି ।
ମ୍ଲେଚ୍ଛଜନ ମୁକ୍ତ ହେବେ ତୋହର ନିମନ୍ତେ
ଅବଶ୍ୟ ବନେ କରିବ ଦେଖା ଶରପଥେ ।
ଶୁଣି ମାହେଶ୍ୱରୀ ବନେ ସାବଧାନେ ପୁଣି
ପାଦରେ ପ୍ରଣାମ କଲେ ଆସି ସୁଲକ୍ଷଣୀ ।
ଯେ ପ୍ରଭୁ କୃଷ୍ଣର ଆଜ୍ଞା ହେଲା ଯେଉଁରୂପେ
ପାଳିବି ଆଜ୍ଞା ତୁମ୍ଭର ମୁଣ୍ଡି କଲେ କଲେ ।
ପଦ୍ମପାଦେ ପଡ଼ି ଦେଖା କରିଲେ ବିଜୟେ
ଆପଣା ଗୃହେ ପ୍ରବେଶ ଆସି ଦେଖା ହୁଏ ।
ଜୟ ତୁ ଜନପାବନୀ ଜହ୍ନୁ ଋଷିସୁତା
ଜଗତର ମାତା ହେମବନ୍ତର ଦୁହିତା ।
ତୋହର ପଦକୁ ମାର ପଡ଼ୁ ମୋର ଶିରେ
ଶାରଳା ଦାସଙ୍କୁ ଭକ୍ତ୍ୟ କର ତୋ ପଦ୍ମରେ ।

---

## ଖାଣ୍ଡବବନ ଦାହ

ଏଥୁଅନନ୍ତରେ ମନୁ ଶୁଣ ରସ ବାଣୀ
ବୋଲନ୍ତି ଯେ ଅର୍ଜ୍ଜୁନଙ୍କୁ ସ୍ୱାମୀ ଚକ୍ରପାଣି ।
ତୁମ୍ଭ ବନକୁ ଅଇଲୁ ଯେବେ ଫାଲଗୁନ
ଶଙ୍ଖ ମୁଖେ ଘାଇ ଦେଇ ହେଲୁ ବନଗାମୀ ।
ଅର୍ଜ୍ଜୁନ ବୋଇଲେ ଦେବ ଏ ବଡ଼ ଦୁର୍ଲ୍ଲଭ
କଉତୁକେ ଜିଣିଲି ମୁଁ ଦେବ ସଦାଶିବ ।
ତୋଷେ ମୋତେ ଶସ୍ତ୍ର ଦେଲେ ଶଙ୍କର ପାର୍ବତୀ
ହସ୍ତିନାରେ ଥିଲେ କାହିଁ ଏମାନ ପାଆନ୍ତି ।
ଗୋବିନ୍ଦ ବୋଇଲେ ତୁ ଯେ ନିଶ୍ଚିନ୍ତ ହୋଇଲୁ
ଆସ୍ତଙ୍କୁ ପାଶୋରି ମନୁ କେମନ୍ତେ ମୂର୍ଚ୍ଛିଲୁ ।
ଏହା ଶୁଣିଣ ବୋଇଲା ବୀର ସବ୍ୟସାଚୀ
ସତ୍ୟ ଲଙ୍ଘିଲେ ପ୍ରାଣୀର ମୁକ୍ତି କାହିଁ ଅଛି ।
ସତ୍ୟ ଯାହା କଲି ତାହା ଲଙ୍ଘିବି କେମନ୍ତେ
ବିଶେଷେ ପ୍ରଜାହଇଁ ମୁଁ ଧର୍ମ ପାଦଗତେ ।
କୃଷ୍ଣ ଅର୍ଜ୍ଜୁନ ହୁଅନ୍ତେ କଥାବାର୍ତ୍ତା ବେନି
ବ୍ରାହ୍ମଣ ଜଣେ ଆସଇ ଦମ୍ଭାପାଣୀ ଘେନି ।
ଲୁଦୁବୁଦୁ ଶରୀରେ ତା ଦେହ ଶେଉଳିଆ
ମହାଯୋଗୀ ବଢ଼ିଅଛି ସକୃତ ଯେ ଗ୍ରୀହା ।
ଖଣ୍ଡେଦୂରେ ଆସି ବସ୍ତ୍ର ବସେ ଲେଚ ହୋଇ
ଅଶକତ ଅଙ୍ଗଯାକ ସ୍ଥିର ନ ପାରଇ ।
ବଦସ ଛତା ଖଣ୍ଡଏ କାଖରେ ଡାମୁଣ୍ଡ
ଧୋତି ମଳନ ଉପସ ପଇତାଟି ଲେସ୍ଥ ।
ଦ୍ୱାଦଶ ଚିତା ହୃଦରେ ଶ୍ରୀବତ୍ସଲାଞ୍ଛନ
ଦୁର୍ବଳ ଦରିଦ୍ର ଅତି ଅସକତେ କ୍ଷୀଣ ।
ଗିରି ଉପରକୁ ବିପ୍ର ନ ପାରଇ ଉଠି
ପାଞ୍ଚପାହଣ୍ଡ ଯାଇ ସେ ବସେ ପୁଣି ଫୁଟି ।
ହରି ଅର୍ଜ୍ଜୁନ ଏ ଦୁହେଁ କଥା ହେଉଥିଲେ
ଅଶକତ ବିପ୍ର ଦେଖି ଲେଉଟି ଚାହିଁଲେ ।
ଅର୍ଜ୍ଜୁନ ବୋଇଲେ ହରି ଦ୍ୱାପର ଯୁଗରେ
ଏଡ଼େ ଦରିଦ୍ର ତ ଦେଖି ନାହିଁ ମର୍ତ୍ତ୍ୟପୁରେ ।
ଦେହ ଅଶକତେ ବିପ୍ର ନ ପାରଇ ଚାଲି
ପ୍ରବଳ ବେଗରେ ଦେହ ପଡ଼ୁଅଛି ଢଳି ।
ଏ ମହା କଷ୍ଟ ଅଛଇ ବ୍ରାହ୍ମଣ ଜନକୁ
କିସ ଦ୍ରବ୍ୟ ଦେବା ଏଣୁ ଦରିଦ୍ର ବିପ୍ରକୁ ।

ଏକାଳେ ନର ପ୍ରସାଦ ଇଚ୍ଛା ସେ ସମୟରେ
ବେଦଧ୍ୱନି ଦ୍ୱିଜବର କଲା ଉଚ୍ଚସ୍ୱରେ ।
ତାହା ଶୁଣି ଅର୍ଜୁନ ଯେ ବୋଲଇ ସୁଧୀରେ
କେଉଣ ନଗର ତୁମ୍ଭ ଅଟ ଦ୍ୱିଜବରେ ।
ବେଦ ଅଧ୍ୟୟନ କର କେଉଣ କାରଣ
କିସ ମନୋରଥ ତବ କର ହେ ବଖାଣ ।
ଏସନ ବୋଲନ୍ତେ ଚତୁରେ ବାସବର ବାଳେ
ଏ ବଚନ ଶୁଣି ବିପ୍ର ବୋଲଇ ବଚନେ ।
ବୋଲଇ ଦ୍ୱିଜ କ୍ଷତ୍ରିୟ କୁ ପରମ ଯୋଗୀ
ମୁହିଁ ଦରିଦ୍ର ଆବର ହେଲି ବଡ଼ରୋଗୀ ।
ଦରିଦ୍ରରେ ଦାନ ଦାନ୍ତୁ ଅନନ୍ତ ପୁଣ୍ୟ
ଅପୂଜା ଦେବତା ପୂଜା କରଇ ଯେ ଜନ ।
କ୍ଷୁଧାର୍ଥୀକୁ ଅନ୍ନ ଦିଏ ତୃଷାର୍ତ୍ତୀକୁ ଜଳ
ରୋଗୀକୁ ଔଷଧ ଯେହୁ ଦିଏ ସଦାକାଳ ।
ଶିରଚ୍ଛେଦନ କାଳେ ଯେ ପ୍ରାଣୀ ରକ୍ଷାକର
ଅପ୍ରତିଷ୍ଠା ବାପୀ କୂପ ତଡ଼ାଗ ପୋଖରୀ ।
ଏମାନଙ୍କୁ ଯେଉଁଜନ କରଇ ପ୍ରତିଷ୍ଠା
ସୁଦ୍ଧଜନ ସନମାନେ ଥାଇ ଯାର ନିଷ୍ଠା ।
ଅନାଥ ଲୋକଙ୍କୁ ଯେହୁ ସମ୍ଭାଳି ରଖଇ
ପର ଦୁଃଖରେ ଦୁଃଖିତ ଯେହୁ ପୁଣ୍ୟଦେହୀ ।
ଅମୂର୍ତ୍ତି ମୂର୍ତ୍ତି କରଇ ଯେଉଁ ଭାଗ୍ୟବନ୍ତ
ପ୍ରତ୍ୟକ୍ଷେ ଜାଣ ମହାତ୍ମା ସେ ଧର୍ମ ଦେବତା ।
ବଚନ ଅମୃତ ଯେହୁ କହେ ସର୍ବକାଳେ
ଏମନ ସ୍ଥାପିଲେ ଧର୍ମ ରକ୍ଷା ହୁଏ କୁଳେ ।
ତୁମ୍ଭ ଦୁହିଁଙ୍କୁ ଯେ ମୁହିଁ ନ ପାରିଲି ଚହ୍ନି
ଏକମୂର୍ତ୍ତି ଏକଦେହ ଦିଶୁଅଛ କେନ ।
ମୁଁ ଦରିଦ୍ର ବିପ୍ର ପୁଣ ଅଟେ ବଡ଼ ଦୁଃଖୀ
ମୋତେ ରକ୍ଷାକଲେ ଧର୍ମ ଯଶ ଯିବ ରହି ।
ଅର୍ଜୁନ ବୋଇଲେ ଅଶଙ୍କିତ ଦ୍ୱିଜବର
ଆମ୍ଭେ ବେନିଭ୍ରାତା ପୁଣି ଅଟୁ ବନଚର ।
ବ୍ରାହ୍ମଣ ବୋଲେ ଦରିଦ୍ର ଜନ ମୁହିଁ ବୋଲି
ଧନ ବସ୍ତ୍ର କିଛୁ ମୁହିଁ ମାଗି ନ ଅଇଲି ।
ରୋଗର ପ୍ରବଳେ ମୋର ଅସକତ କାୟ
ଏତେକ ଭଲରେ ଅଛୁ ଜୀବନ ଉପାୟ ।
ବଡ଼ଲୋକ ପୁତ୍ର ମୁହିଁ ଅଟେ ବଡ ଜାଣ
ଗୁରୁ ବେଦରେ ମୁହିଁ ଯେ ନର୍ଜିତ ବ୍ରାହ୍ମଣ ।

ବାଳେ ଶୁଣିବନ୍ତ ମୁହିଁ ମନ୍ଦେ ଶ୍ରୁତିମନ୍ତ
ମେଧାଣ ନ ଗଲା ମୋର କର୍ମର ଲିଖିତ ।
ଶୋକଭର ହୋଇ ବିପ୍ର କରେ ବେଦଧ୍ୱନି
ପାର୍ଥବୋଲେ ଦେହଅରେ ତୋର ବେଦ ଶୁଣି
କି ମାଗିବ ବେଗେ ମାଗ କିନା ହୋ ପଣ୍ଡାଏ
ଯେଉଣେ ନିର୍ମଳ ହୋଇବ ଏ ତୋହର କାୟେ
ଶଙ୍ଖ କମଣ୍ଡଳୁ କାଢ଼ି ପୁରାଇଣ ପାଣି
ପାର୍ଥର ହସ୍ତରେ ବିପ୍ର ନେଇ ଦେଲା ପୁଣି ।
ସଙ୍କଳ୍ପ କର ମୁଖରେ ବାକ୍ୟ ଉଚ୍ଚାରି
ଅସଙ୍କଳ୍ପେ ଦାନ ଜାଣ ଅର୍ଦ୍ଧେ ପୁଣ୍ୟ ହାରି ।
ଡାହାଣାବର୍ତ୍ତିକ ଶଙ୍ଖେ ଜଳନ୍ତନ ଭରି
ପୁଷ୍ପ ଚନ୍ଦନ ତୁଳସୀ କୁଶ ମନ୍ତ୍ରବାରି ।
ଦ୍ୱିଜବର ଦେଲା ନେଇ ଅର୍ଜୁନ ହସ୍ତରେ
ବେଦମନ୍ତ୍ର ସଙ୍କଳ୍ପ ପଢ଼ନ୍ତି ଉଚ୍ଚରେ ।
ଦାନ ଦିଅନ୍ତି ଉପରେ ହସ୍ତେ ସବ୍ୟସାଚି
ତଳହସ୍ତ ପାତିଅଛି ଦ୍ୱିଜ ହୋଇ ଶୁଚି ।
ଉଚ୍ଚାରି ଉଭୟ ନାମ ଗୋତ୍ର ବେଦଜନ
ବିପ୍ରହସ୍ତେ ଜଳ ଦେଲେ ପାଣ୍ଡବ ଅର୍ଜୁନ ।
ସ୍ୱସ୍ତିକାପୁ ଗାୟତ୍ରୀ ଯେ ପଢ଼ି ଦ୍ୱିଜବର
ବ୍ରାହ୍ମଣ ସାକ୍ଷୀ କରଇ ବନ୍ଦିଦିଗପାଳ ।
ସତ୍ୟ ସତ୍ୟ ଉଚ୍ଚାରି ଯେ ବୋଇଲା ପାଣ୍ଡବ
ଏ ମୋର ଦୃଢ଼ ବଚନ ମାଗ ବିପ୍ରଦେବ ।
ବ୍ରାହ୍ମଣ ସାକ୍ଷୀ କରଇ ଚନ୍ଦ୍ର ସୂର୍ଯ୍ୟ ସୃଷ୍ଟି
ସନକାଦି ଦଶ ବିଶ୍ୱଦେବାଙ୍କୁ ଅନାଇଁ ।
ସତାଇଶ ନକ୍ଷତ୍ର ଯେ ଆବର ପବନ
ଅଷ୍ଟଭାର ପୁରୁଷ ଯେ ଦେବତା ବରୁଣ ।
ଗୋବିନ୍ଦଙ୍କ ମୁଖ ଦୃଷ୍ଟି ଦାନ ଏବେ ଦେବା
ମୁହିଁ ଦାନ ମାଗୁଅଛି ସାକ୍ଷୀ ହୋଇଥିବା ।
ଗୋବିନ୍ଦ ବୋଇଲେ ଆମ୍ଭେ ହୋଇଲୁଁ ଯେ ସାକ୍ଷୀ
ମାଗ କିନା ଦ୍ୱିଜବର ସାକ୍ଷୀରେ କି ଅଛି ।
ବ୍ରାହ୍ମଣ ବୋଇଲା ଶୁଣ କ୍ଷତ୍ରିୟ ରାଜନ
ଖାଣ୍ଡବ ବନକୁ ତୁମ୍ଭ ଦେବୁ ମୋତେ ଦାନ ।
ମୋହର ଶରୀରେ ହେଲା ଲୂଦୁବୁଦୁ ବ୍ୟାଧି
ଖାଣ୍ଡବ ବନ ପଶିଣ ଖାଇବି ଔଷଧି ।
ଅର୍ଜୁନ ବୋଇଲେ ଏହୁ ଔଷଧ ଗୁରୁକୁ
ଏତେ ଜଣ ସାକ୍ଷୀ ରଖି ମାଗିଲ ଆମ୍ଭଙ୍କୁ ।

ଦରିଦ୍ର ଅବସ୍ଥା ଯେତେବେଳେ ପାନ୍ତି ପ୍ରାଣୀ
ଦାରିଦ୍ର୍ୟ ଶକତ ସେ ତ କେବେହେଁ ନ ଜାଣି
ଦରିଦ୍ର ଅବସ୍ଥା ପାଇଅଛ ଦ୍ୱିଜମଣି
ଅଦରିଦ୍ର ସମ୍ପଦ ମୁଁ ଦିଅନ୍ତି ଏକ୍ଷଣି ।
ନସ୍ତୁର ବଚନ ଶୁଣି ଅର୍ଜୁନ ଉନ୍ମୁଖ
ଚାହିଁଲ ସେ ପୁଣି ନାରାୟଣଙ୍କର ମୁଖ ।
ଦେଖିଲଟିକି ଶ୍ରେ ସ୍ୱାମି ଭକ୍ତର ଚରିତ
ଏ ଘୋର କଥାକୁ ପୁଣି ଏଡ଼େ ଦୃଢ଼ବ୍ରତ ।
ଜଗନ୍ନାଥ ବୋଲିଲେ ତୁ ଶୁଣ ଫାଲଗୁନ
ଏ ବ୍ରାହ୍ମଣ ଅଟଇ ଯେ କାଳାନଳ ବହ୍ନି ।
ଗୋବିନ୍ଦଙ୍କ ଶ୍ରୀମୁଖରୁ ଏସନକ ଶୁଣି
କରପତ୍ର ଯୋଡ଼ିକରି କହେ ଫାଲଗୁନ ।
ଏ ଅଗ୍ନି ଦେବ କେମନ୍ତେ ଜାଣିଲ ଗୋସାଇଁ
ଏଥିର ତତ୍ତ୍ୱ ମୋତେ କହିବା ବୁଝାଇ ।
ଶ୍ରୀହରି ବୋଇଲେ ସହଦେବ ଯେ କହିଲା
ଏ ଅଗ୍ନି ସଭାକୁ ତୋର ବନବାସ ହେଲା ।
ଏହି ଅଗ୍ନି ଦେବତା ଏ ମାୟାରୂପ ହୋଇ
ଯୁଧିଷ୍ଠିରଙ୍କୁ ଆଣ ବୋଲି କହାଇଲେ ଯାଇ ।
ମାୟା ନ ଜାଣି ତୁ ଅନ୍ତଃପୁରେ ପଶିଲେଣ
ଏଣେ ଏ ଅଗ୍ନି ଦେବତା ହେଲେ ଅନ୍ତର୍ଦ୍ଧାନ ।
ସତ୍ୟବାଦୀ ପୁରୁଷ ତୁ ବନକୁ ଆଇଲୁ
ଲଜ୍ଜାବନ୍ତପଣେ ବାରୁ ବନରେ ଭ୍ରମିଲୁ ।
ଗୋବିନ୍ଦଙ୍କ ମୁଖ ଚାହିଁ ଅର୍ଜୁନ ବୋଲଇ
ଅଗ୍ନିଦେବଙ୍କ ଏ ବ୍ୟାଧି ହେଲା କାହିଁପାଇଁ ।
ଏହା ସଅପିଣ ମୋତେ କହ ଜନାର୍ଦ୍ଦନ
ତେବେ ମୋହର ପ୍ରତ୍ୟୟ ହୋଇବଟି ଜାଣ
ଅର୍ଜୁନଙ୍କୁ ଚାହିଁ ଦେବ ଶ୍ରୀହରି କହନ୍ତି
ଶ୍ରୀରଙ୍ଗ ଅଧରେ ମନ୍ଦ ମନ୍ଦ ଯେ ହସନ୍ତି ।
ଉଦନାମେ ସମ୍ବାଦରେ ପୂର୍ବେ ସତ୍ୟଯୁଗେ
ଅପାର ଘୃତ ଖାଇଲା ଶ୍ୱେତରାଜା ଯଜ୍ଞେ ।
ଘୃତ ଖାଇ ଖାଇ ପୁଣି ହେଲା ମନ୍ଦଅଗ୍ନି
ଲୁବୁବୁବୁ ବ୍ୟାଧି ହୃଦଗଲା ଯୁଗ ଜନ୍ମ ।
ଗୋବିନ୍ଦଙ୍କ ବଚନରେ ପ୍ରଣମିଲା ପାର୍ଥ
ଅଟ କି ମହାତ୍ମା ତୁମ୍ଭେ ଅଗ୍ନି ଭଗବତ ।
ବୋଲଇ ଯେ ଦ୍ୱିଜବର ଆମ୍ଭେ ଅଗ୍ନି ଅଟୁ
ଆରତ ଖଣ୍ଡିବା ପାଇଁ ବନେ ତୋତେ ଭେଟୁ

ଅର୍ଜୁନ ବୋଇଲେ ଅଟ ତୁ ପରମ ଯୋଗୀ
କେବଣ ପାତକେ ତୁମ୍ଭେ ହେଲ ବଡ଼ ରୋଗୀ
ଶୁଣନ୍ତି ପାର୍ଥ କହନ୍ତି ଦେବ ବୈଶ୍ୱାନର
ସତ୍ୟଯୁଗେ ଶ୍ୱେତ ବୋଲି ଏକ ନୃପବର ।
ଦେବଯଜ୍ଞ କରିବାକୁ କଲା ସଂକଳପ
ସେ ଯଜ୍ଞ ଭଲେ ଖଣ୍ଡନ ହୁଏ ମହାପାପ ।
ପିତାମହ ନିକଟକୁ ଗଲା ଆପ ବେଗେ
ବନସ୍ତି ଭାବରେ ଜଣେ ପୁରୋହିତ ମାଗେ ।
ହେ ବିଧାତା ମୋତେ ତୁମ୍ଭେ ପ୍ରସନ୍ନ ହୋଇବ
ଦେବଯଜ୍ଞ କରିବ ମୁଁ ପୁରୋହିତ ଦେବ ।
ବଶିଷ୍ଠ ଯେ ଥିଲେ ପିତାମହଙ୍କ ସମ୍ମୁଖେ
ପୁରୋହିତ ହୁଅ ଶ୍ୱେତରାଜାର ଯଜ୍ଞରେ ।
ବଶିଷ୍ଠ ଆଇଲେ ଶ୍ୱେତ ରାଜାକୁ ଯେ ସେନ
ଆମ୍ଭେ ବରଣ କରିବୁ କାଳାନଳ ଅଗ୍ନି ।
ଆବର୍ତ୍ତିକ ସମ୍ଭରିକ ମୋ ସ୍ରୁବ ପ୍ରୋକ୍ଷଣୀ
କୁଣ୍ଡେ ବରଷିବେ ଘୃତ ବସ୍ତ୍ରୀଶୁଣ୍ଡ ଜାଣି ।
ଘୃତ ବରଷିବେ ସେହି ବର୍ଷାଧାର ପରି
ଯଜ୍ଞେ ଯାଗନ୍ଧନ ଆମ୍ଭେ ହୋଇଲୁ ତୋହର ।
ବଶିଷ୍ଠଙ୍କ ଏ ବଚନେ ଗଲ ରାଜଦେବା
ଘୃତ ସମୁଦ୍ରକୁ ବାଇବର୍ଷ କଲା ସେବା ।
ପ୍ରସନ୍ନ ହୋଇ ବୋଇଲେ ତାକୁ ରତ୍ନାକର
ମାଗ ଶ୍ୱେତରାଜା ଯେତେ କାର୍ଯ୍ୟ ଅଛି ତୋର
ହେ ଦେବ ରତ୍ନାକର ମୁଁ କରିବଇଁ ଯାଗ
ପୁରୋହିତ ବଶିଷ୍ଠ ଯେ ଦେବେ ବହୁଭାଗ ।
ଯଜ୍ଞ ମୋର ଚଉବଂଶ ବରଷ ପର୍ଯ୍ୟନ୍ତେ
ବଶିଷ୍ଠଙ୍କ ପ୍ରୋକ୍ଷଣୀକୁ ଘୃତ ଦେବୁ ମୋତେ
ଘୃତ ସମୁଦ୍ର ବୋଇଲା ଯେତେକ ଅଛଇ
ବଶିଷ୍ଠଙ୍କୁ ଘୃତ ମୁହିଁ ନିଷ୍ଠେ ଦେବଇଁ ।
ଘୃତ ସମୁଦ୍ରକୁ ରାଜା ସମ୍ମତ କରାଇ
ବଶିଷ୍ଠ ପରୋହିତଙ୍କୁ ବରିଲେକ ଯାଇଁ ।
ସ୍ୱର୍ଗ ପଙ୍ଗାଡ଼ ବୁଲେ ଭୂମି ଚରିଲେ ଲଙ୍ଗଳେ
କୃଷ୍ଣତିଳ ନେଇ ତାର ଉପରେ ବୁଣିଲେ ।
କାର୍ତ୍ତିକ ଅନ୍ତେ ଯେ ମାର୍ଗଶିର ପରବେଶ
ଝଡ଼ ପଡ଼ିଲା ମକର ତଳହିଁ ଅଶେଷ ।
ଯାଗଶାଳ ତୋଳାଇଲେ ତହିଁ ନୃପବର
ହୋମର ନିମନ୍ତେ କୁଣ୍ଡ ଖୋଳାଇ ଆଦର ।

ଜଟୀ ଦଟୀ ବଟୀ ବୃକ୍ଷ ଆବର କର୍ପଟୀ
ଏ ଗୃହ ବୃକ୍ଷରେ ଦ୍ୱାର କଲେ ସୁରଗୋଷ୍ଠି ।
ବାମଦେବ ଜବାଲିକ ସୁମନ୍ତ ଗୌତମ
ସ୍ୱରଦ୍ୱାରେ ହୋଇଲେ ଏ ସ୍ୱରହେଁ ବରଣ
ବ୍ରହ୍ମା ବରଣ ହୋଇଲେ ଶୁକଦେବ ବ୍ରାହ୍ମଣ
ଅଗସ୍ତ୍ୟ ହୋଇଲେ ଭରଦ୍ୱାଜ ତପୋଧନ ।
ପରେହତ ବଶିଷ୍ଠ ଯେ ଯାଜ୍ଞିକ ହୋଇଲେ
ନିଦଣ୍ଡ ଯେମନ ଯାଗକୁଣ୍ଡ ନବାଣ୍ଡଲେ ।
ମକର ମାସ ଯେ କୃଷ୍ଣପକ୍ଷ ଷଷ୍ଠୀ ତିଥି
ଅର୍କବାର ଛନ୍ଦାଭନ୍ୟା ସେ ଦିନ ପାହାନ୍ତ ।
ବାଣିଜ୍ୟ ନାମେ କରଣ ଧୃତିନାମେ ଯୋଗ
ମକର ସଙ୍କ୍ରାନ୍ତିର ତିନଦିନ ଭୋଗ ।
ଅଶ୍ଳେଷା ନକ୍ଷତ୍ରରାଶି ଶ୍ରେଷ୍ଠ ନୃପତିର
ସାଧକ ତାର ବୃହସ୍ପତି ଚନ୍ଦ୍ର ଯେ ଆକର ।
ବାର ତିଥି କରଣ ଯେ ନକ୍ଷତ୍ର ସୁଯୋଗେ
ବସିଲେ ମାହେନ୍ଦ୍ର ବେଳା ଦେଖି ଶୁଭଯୋଗେ
ପୂର୍ଣ୍ଣକୁମ୍ଭ ସ୍ଥାପିଲେ ଯେ ବେଦମନ୍ତ୍ର ପଢ଼ି
ଅଗ୍ନି ଆରୋପଣ କଲେ ଧରଣୀ ଉଦ୍ଧାର ।
ମେଷକନ୍ତ ସାଇ ପ୍ରୋକ୍ଷଣୀ କଲେ ମହାଋଷି
ଘୃତ ସମୁଦ୍ରରୁ ଆଣି କୁଣ୍ଡରେ ବରଷି ।
ବରତନ୍ତ୍ର ହସ୍ତୀଶୁଣ୍ଢ ପ୍ରମାଣେ ସେ ଧାର
ଅବିଶ୍ରାମେ ଦ୍ୱାଦଶ ଅବ୍ଦ ଯେ ପ୍ରହର ।
ଆମ୍ଭେ ବ୍ରାହ୍ମଣ ଦରିଦ୍ର ଅଟେ ଅମ୍ଭ ଜାତି
ଘୃତ ଖାଇଣ ହୋଇଲୁ ଅନେକ ତୃପତ ।
ଏମନ୍ତ ଚୌବିଂଶ ବର୍ଷ ପର୍ଯ୍ୟନ୍ତେ ଗଲା
ଆବର୍ତ୍ତିକ ସମ୍ବର୍ତ୍ତିକ ଘୃତ ବରଷିଲା ।
ନେଇ ଭକ୍ଷଣ ଖାଇଲୁ ଅନେକ ଯେ ଘୃତ
ପାଚନକର ନ ପାରିଲୁ ଯେ ହେଲା ଦହନ ।
ମନ୍ଦଅଗ୍ନି ଲଦବୁଦ୍ଧ ବ୍ୟାଧିବନ୍ତ ହେଲୁ
ଅତି କ୍ଳେଶରେ ଶରୀର ଯୋଟି ନାଶକଲୁ ।
ବାସବ ଦେବଙ୍କୁ ବାଞ୍ଛୁ ମାଗିଲୁ ଔଷଧି
ସ୍ୱର୍ଗକର ନ ହେଲା ଯା ମୋତେ ଜନ୍ମଦେଖି ।
ବ୍ରହ୍ମା ରୁଦ୍ରଆଦି ଦେବେ ବୋଇଲେ ମୋଠାରେଁ
କହନ୍ତି ବଚନ ନ କଲ ସୁରସାଇଁ ।
ଦେବ ଦାନବ ସବୁର ଘରେ ଆମ୍ଭେ ଥାଉ
ଯେ ଯାହା ଭକ୍ଷଇ ଆମ୍ଭେ ସେ ସମସ୍ତ ବହୁଁ ।

ଆମ୍ଭେ ଯେତେବେଳେ ହୋଇଗଲୁ ତେଜହୀନ
ଲମ୍ବୁବୁଦ୍ଧୁ ହେଲେ ସର୍ବେ ବ୍ରହ୍ମାଣ୍ଡ ଯେ ତିନ
ଆମ୍ଭର ବ୍ୟାଧି ଛଡ଼ାଇ ଦେଲେ ଧନଞ୍ଜୟ
ବାହୁଡ଼ ଫସାଉଯାକ ହେବେ ତେଜୋମୟ ।
ଜଣେ ରଖିଲେ ଫସାଉଯାକ ହେବ ରକ୍ଷା
ତାକୁ ଯାବତ ଚନ୍ଦ୍ରାର୍କେ ରକ୍ଷିବ ତୋ ପକ୍ଷା
ସତ୍ୟ ସତାଇଶ ଲକ୍ଷ ଅଠେଇଶ ସହସ୍ର
ପାରକର ନ ପାରିଲୁ ପ୍ଳୀହା ରୋଗ ଲେଶ ।
ତ୍ରେତା ବାରଲକ୍ଷ ଛୟ ନବେ ସହସ୍ର ବର୍ଷେ
ଦ୍ୱାପର ଯେ ଆଠଲକ୍ଷ ଚୌଷଠି ସହସ୍ର ।
ପାରକର ନ ପାରିଲୁ ପ୍ଳୀହା ମନ୍ଦଅଗ୍ନି
ଉଦ୍ଧାର ଅର୍ଜୁନ ମୁହିଁ ତିନିଯୁଗ ରୋଗୀ ।
ଆମ୍ଭ ଆୟୁ ଦେଇ ବର୍ତ୍ତିଥାଅ ତୁ ଅର୍ଜୁନ
ଏମନ୍ତ ଅଗ୍ନିଦେବର ବହୁତ କାର୍ପଣ୍ୟ ।
ଏତେ କହି ଅଗ୍ନିଦେବ କରଇ କାରୁଣ୍ୟ
ଉଦ୍ଧର ହେ ସବ୍ୟସାଚୀ ବଳିଭଦ୍ର ବ୍ରାହ୍ମଣ ।
ଅର୍ଜୁନ ବୋଇଲେ ଶୁଣ ସ୍ୱାମୀ ବୈଶ୍ୱାନର
ଖାଣ୍ଡବ ବନଯାଏ କି ଯିବା ବଜେକର ।
ଗୋବିନ୍ଦ ବୋଇଲେ ଆମ୍ଭେ ଗଲେ ଭୁସ୍ତଭୂଲେ
ଇନ୍ଦ୍ର ଅପଖ୍ୟାତି ଦେବ ଆମ୍ଭଙ୍କୁ ଦେଖିଲେ
ଯେ ତୋହର ତାତ ପୁଣି ତୁ ତାହାର ପୁଅ
କରିବ ଯେ ଉପରୋଧ ତୋତେ ପ୍ରଭୁହୁତ ।
କୋପ କରିବ ଆମ୍ଭଙ୍କୁ ଦେଖି ସୁରପତି
ତୋତେ ନ ବୋଲିବ ଦେବ ଆମ୍ଭଙ୍କୁ ଅଖ୍ୟାତି
ଭଲ ଆମ୍ଭେ ତୋତେ ନେଇ ଅଇଲୁ ଏଠାକୁ
ଅଗ୍ନିଦେବତା କହାଇ କରେ ଯେ କୃଷ୍ଣଙ୍କୁ ।
ବେଳୁଂବେଳ ପଶିଲୁ ତୁ କଳହ କଥାରେ
ବଦାପି ହେଲୁ ସୀତାଂଶୁଧର ଯେ ଈଶ୍ୱରେ ।
ଖାଣ୍ଡବବନ ଦହନେ ଇନ୍ଦ୍ର ନ ସହିବ
ଇନ୍ଦ୍ର ସଙ୍ଗେ ନଷ୍ଟେ ତୋର ବିବାଦ ହୋଇବ
ଏତେବେଳେ କୃଷ୍ଣ ଖଗପୃଷ୍ଠେ କଲେ ବିଜେ
ଦ୍ୱାରକା ପୁରକୁ ଚଳିଗଲେ ଦେବରାଜେ ।
ଅର୍ଜୁନ ବୋଇଲେ ସ୍ୱାମୀ ଶୁଣ ବୈଶ୍ୱାନର
ବନ ଦହନେ କୋପିବ ନଷ୍ଟେ ସୁନାସୀର ।
ଅଗ୍ନି ବୋଇଲେ ସମ୍ପଦ ଯେଣ ହେବ ବାପା
ଅପାର ରଣ କରିବ ଆସି ଜମ୍ଭଦେଖି ।

ଅର୍ଜ୍ଜୁନ ବୋଲେ କେମନ୍ତେ କରିବିଁ ମୁହିଁ
ସୁରନାଥ ଜିଣିବାକୁ ମୋର ଶସ୍ତ୍ର ନାହିଁ ।
ଅଗ୍ନି ବୋଇଲେ ବାବୁ ତୁ ଚିନ୍ତୁଥାଅ ଏଥି
ତ୍ରଇଲୋକ୍ୟ ଜିଣିବାକୁ ଦେବି ଦେବଶସ୍ତ୍ର ।
ଅର୍ଜ୍ଜୁନଙ୍କୁ ସମ୍ବୋଧିଣ କହିଗଲେ ବହ୍ନି
ପାତାଳ ବୈକୁଣ୍ଠେ ବିଜେ ସେହିକ୍ଷଣ ଘେନି
ନାଗସୁଣ ବୋଇଲେ ହେ ଶୁଣ ବୈଶ୍ୱାନର
ଆଜଯାଏ ତୋର ବ୍ୟାଧି ତୋଇନାହିଁ ପର
ଅଗ୍ନିବୋଇଲେତୋଯୋଗେଖଣ୍ଡିବତୋ ବ୍ୟାଧି
ନାଗସୁଣ ଶର ଦେବ ଶର ନଜଲେପା ।
ନନ୍ଦଘୋଷ ରଥ ଦେବ ଗାଣ୍ଡିବ ଯେ ଧନୁ
ଏତେକ ଦେଲେ ତରିବି ମୁଁ ବିପାକ କର୍ମ
ଶୁଣି ସାନନ୍ଦ ହୋଇଲେ ଦେବ ଯେ ଅନାଦି
ଆମ୍ଭେ ଏହାଦେଲେଯେବେଛୁଟିବ ତୋ ବ୍ୟାଧି
ଏଣେ ମୁଁ ମୁକତ ହେବି ଶୁଣ ହେ ଅନନ୍ତ
ମୋତେ ଦୟାକର ଦାସବତ୍ସଳ ଅଚ୍ୟୁତ ।
ତାହା ଶୁଣିଣ ସନ୍ତୋଷ ହେଲେ ଯୋଗେଶ୍ୱର
ଶସ୍ତ୍ରମାନ ଆଣିଦେଲେ ବେଗେ ଦାମୋଦର
ଘେନିଣ ଅଗ୍ନିଦେବତା ବୈକୁଣ୍ଠୁ ବାହାର
ପାତାଳ ପୁରକୁ ଗଲେ ଉଦ୍‌ବେଗ ମନର ।
ବାସୁକି ଭୁବନେ ଯାଇ ହୋଇଲେ ପ୍ରବେଶ
ଦେଖି ନାଗରାଜା ହେଲେ ଅନେକ ସନ୍ତୋଷ
ଆହେଅଗ୍ନିଦେବତା ତୋଦେହେହେଲା ବ୍ୟାଧି
ଏଥୁ ଛାଡ଼ିବାକୁ କିପାଁ ନ କରୁ ଔଷଧି ।
ମୁହିଁ ଉପାୟ କରୁଛି ଏବେ ହୋ ଅନନ୍ତ
ନାଗପାଶ ଶର ଆଣି ଦେବୁ ମୋର ହସ୍ତ ।
ତୋହର ଯେ ଅମୃତାସ୍ତ୍ର ଦେବୁ ତୁ ଆବର
ତୋଷେ ନାଗରାଜା ଆଣି ଦେଲେ ବେନିଶର
ରଥେ ଥୋଇଲେ ସେ ବେନିଶର କାଳାନଳ
ପଛାକୁ ଯାଇଁ ଭେଟିଲେ ଆଦିତ୍ୟ ମଣ୍ଡଳ ।
ଆଦିତ୍ୟ ଦେବ ତାହାଙ୍କୁ ବଚନେ ସମ୍ଭାଷି
ଆରୋଗ୍ୟ ହେବାକୁ ବାବୁ କରୁଅଛ ବୁଦ୍ଧି ।
ସେ ବୋଇଲେ ସୂର୍ଯ୍ୟାବର୍ତ୍ତ ଦେବ ଦିନକର
ପ୍ରସନ୍ନ ହୋଇ ଅଗ୍ନିକି ଦେଲେ ଦିବାକର ।
ଚନ୍ଦ୍ରଠାରୁ ହେମଶର ଚନ୍ଦ୍ରବଳୀ ଗଦା
ତ୍ରୈଲୋକ୍ୟେ ଅର୍ଜ୍ଜୁନ ହେବ ବଚନରେ ସିଦ୍ଧା

ବ୍ରହ୍ମାଙ୍କ ଭୁବନେ ଯାଇ ପ୍ରବେଶ ହୋଇଲେ
ବ୍ରହ୍ମାଙ୍କ ବ୍ରହ୍ମଶକ୍ତି ପତଙ୍କୁ ମାଗିଲେ ।
ଅଗ୍ନିର ବଚନ କେତ୍ତୁ ପେଷି ତ୍ରୈଲୋକ୍ୟେ
ବ୍ରହ୍ମଶିର ବ୍ରହ୍ମଶକ୍ତି ଦେଲେ ବ୍ରହ୍ମା ଲୋକ୍ୟେ ।
ଶସ୍ତ୍ରମାନ ଧରି ନନ୍ଦଘୋଷରେ ଥୁଇ
ଭେଟିଲେ ଅମରାବତୀ ପୁରେ ଶଚୀସାଇଁ ।
ଇନ୍ଦ୍ରବୋଇଲେ ତୁ ଅଗ୍ନି ଅତି ବେଳ କଲୁ
ଛଅଯୁଗ ହେଲା ପାର କରି ନ ପାରିଲୁ ।
ଯେବେଦେବଇନ୍ଦ୍ର ତୋହର ଦୟା ମୋତେଥିଲେ
ଖଣ୍ଡିବ ବ୍ୟାଧି ଅସ୍ତ୍ରୁ ବଜ୍ରଶକ୍ତି ଦେଲେ ।
ଇନ୍ଦ୍ର ଅସ୍ତ୍ର ତୋହର ଯେ ମେଘସ୍ତ୍ର ଆବର
ପୁଷ୍କଳଖମାନ ମୋତେ ଦେବୁ ପୁରନ୍ଦର ।
ଅଗ୍ନିବଚନେ ସାନନ୍ଦ ଦେବ ସୁରପତି
ଦେଲେ ଇନ୍ଦ୍ରାସ୍ତ୍ର ମେଘାସ୍ତ୍ର ଆଣି ବଜ୍ରଶକ୍ତି ।
ପୁଷ୍କଳ ଖମାନେ ସୁରସାଇଁ ତା ପୁରିଲ
ଘେନି ଅଗ୍ନିଦେବ ତାହା ବାହାର ଆସିଲ ।
ଅଶ୍ୱିଦେବାଙ୍କୁ ମାଗିଲେ ଅମୋଘ ଯେ ଶକ୍ତି
ସାନନ୍ଦେ ତାହାଙ୍କୁ ଦେଲେ ସେ ବ୍ରହ୍ମଯନ୍ତ
ସନକାଦି ଦେବଠାରୁ ମାଗି ମନବାଣ
ନନ୍ଦିଘୋଷ ରଥେ ତାହା ଥୋଇଲେ ନେଇଣ
ଯମଦେବଙ୍କୁ ମାଗିଲେ କାଳଦଣ୍ଡ ପାଶ
ମୋ ଦେହ ଆରୋଗ୍ୟ ହେଲେ ଦେବିତୁମ୍ଭପାଶ
କାଳଚକ୍ର କାଳପାଶ ଦେଲେ ନାଶକର
ଅଗ୍ନିଦେବତା ଥୋଇଲେ ରଥର ଉପର ।
ପବନଙ୍କୁ ମାଗିଲେ ଯେ ପବନାସ୍ତ୍ର ତାର
ଆବର ମାଗିଲେ ତାଙ୍କୁ ଅଭୟ ମୁଦ୍‌ଗର ।
ମରୁତ ଦେବତା ଆଣି ଦେଲେ ଶସ୍ତ୍ର ବେନି
ତଳହସ୍ତ କର ତାହା ବୈଶ୍ୱାନର ଘେନି ।
ବୃହସ୍ପତିଙ୍କୁ ମାଗିଲେ ଶୀବନ୍ୟାସ ଶର
ତୋଷେ ଦେବଗୁରୁ ଆଣି ଦେଲେ ଅଗ୍ନିକର
ମାଗିଲେ ଗଣଦେବଙ୍କୁ ଗଦା ବଜ୍ରାବଳୀ
ଅଗ୍ନିଦେବଙ୍କୁସନ୍ତୋଷେଦେଲେ ସେହୁ ତୋଳି
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ତାଙ୍କୁ ମାଗିଲେ ଅର୍ଦ୍ଧାଭବାଣ ବଜ୍ରଶର ।
ବହ୍ନି ଦେବତାଙ୍କୁ ତାହା ଦେଲେ ମେଘମାନେ
ରଥରେ ଅଗ୍ନି ଥୋଇଲେ ନେଇ ତୋଷମନେ

କୁବେର ଦେବତାଙ୍କର ପୁରେ ସେ ପଶିଲେ
ରତ୍ନାବଳ ଗଦା ଅଜଗବକୁ ମାଗିଲେ ।
ରତ୍ନମଣି ମୁକୁଟ ଯେ ଲଲାଟ ଭୂଷଣ
କର୍ଣ୍ଣଭୂଷଣ ମାଗିଲେ ପୁଣି ହୁତାଶନ ।
ବାହୁଟୀ ତାଡ଼ ତୋଡ଼ର ରତ୍ନ ଜଗଦ୍‌ବଳା
ହୃଦସ୍ଥ ଭୂଷଣ ପୁଣି କଣ୍ଠ ରତ୍ନମାଳା ।
କଟିମେଖଳା ନୂପୁର ଏ ଯୋଗାଡ଼ମାନ
ଅଗ୍ନିଙ୍କ ଦେଲେ କୁବେର ହୋଇ ତୋଷମନ ।
ଈଶ୍ୱରଙ୍କୁ ମାଗିଲେ ଯେ ଯାଇ ଶୂଳଶକ୍ତି
ପାଶୁପତ ଅଗ୍ନି ଶର ଖଟ୍ୱାଙ୍ଗ ସୁଜ୍ୟୋତି ।
ପିନାକ ଶାରଙ୍ଗ ଏହି ଦୁଇଗୋଟି ଧନୁ
ମାଗନ୍ତେ ଈଶ୍ୱର ଦେଲେ ନେଲେ ତା କୃଶାନୁ
ବରୁଣ ଦେବତାପୁରେ ପଶିଲେ ଅନଳ
ଶଙ୍ଖ ଶ୍ୱେତ ଘୋଷୀର ଯେ ଅଶ୍ୱ କାମପାଳ ।
ଆବର ଯେ ଜଳଧର ଶସ୍ତ୍ର ଜଳପାଶ
ଦେହ ଭଲହେଲେ ଆଣିଦେବ ତୁମ୍ଭ ପାଶ ।
ଅଗ୍ନିଦେବତାଙ୍କ ଦେହ ଆରୋଗ୍ୟ ନିମନ୍ତେ
କଳପି ଅଶ୍ୱଙ୍କୁ ଆଣି ଦେଲେ ଜଗନ୍ନାଥେ ।
ଶସ୍ତ୍ର ଭେଦ ନୁହେ ଯେଉଁ ଅଶ୍ୱଙ୍କର କାୟେ
କାମରୂପୀ ଅଟନ୍ତି ସେ ପୁଣି ହଇହୟେ ।
ନିମିଷେ ଭ୍ରମି ପାରନ୍ତି ସକଳ ଭୁବନ
ମହାପ୍ରଳୟେ ନୁହନ୍ତି ସେ ପୁଣି ନିଧନ ।
ପୃଥ୍ୱୀ ଯେକାଳେ ପ୍ରଳୟ ଜଳେ ବୁଡ଼ିଯାଇ
ସେକାଳେ ସେହି ଅଶ୍ୱଙ୍କୁ ଢ଼ବସେ ହୁଅଇ ।
ବରୁଣଙ୍କୁ ମାଗି ତାହା ଆଣି ବୈଶ୍ୱାନରେ
ଯୋଚଲେ ସେ ନନ୍ଦିଘୋଷଦେବଙ୍କ ରଥରେ
ରତ୍ନାକର ପୃଷ୍ଠ ଅଗ୍ନି ବାହାର ହୋଇଲେ
ପଦ୍ମଜାସ୍ତ୍ର ହିମବନ୍ତ ରାଜାଙ୍କୁ ମାଗିଲେ ।
ଅଗ୍ନିଦେବତା ଶରୀର ଆରୋଗ୍ୟ ନିମନ୍ତେ
ମାଗନ୍ତେଦେବେଯେଶରଦେଲେତୋଷଚିତ୍ତେ
ଦୁର୍ଗାଙ୍କୁ ମାଗିଲେ ଅଗ୍ନି ଅଭେଦ୍ୟ କବଚ
ଯେବଣ କବଚ ଥିଲେ ଶସ୍ତ୍ର ନ ଭେଦନ୍ତି ।
ଆର୍ଦ୍ରାବଳୀ ଧନୁ ଦେଲେ ଚଣ୍ଡକୁଣ୍ଡଳମା
ସ୍ତମ୍ଭନ ମୋହନ ବିଦ୍ୟା ଦେଲେ ପୁଣ ଆଣି ।
ନନ୍ଦିଘୋଷ ରଥରେ ସେ ସବୁ ଶସ୍ତ୍ର ଥୋଇ
ଦେବ ପ୍ରସାଦେ ପାର୍ଥର ପାଶକୁ ସେ ଯାଇ ।

ବୋଲେ ଏ ଶସ୍ତ୍ର ମୁଁ ମାଗି ଆଣିଲିରେ ପାର୍ଥ
ଏ ଦେବ ଶସ୍ତ୍ର ସକଳ ତୋତେ ହେଉ ପ୍ରାପ୍ତ
ଅଗ୍ନିଙ୍କ ଚରଣତଳେ କରି ପ୍ରଣିପାତ
ଅଗ୍ନି ପାର୍ଥ ଆରୋହିଲେ ନନ୍ଦିଘୋଷ ରଥ ।
ଅଗ୍ନି ସାରଥି ଅର୍ଜୁନ ହୋଇଲେକ ରଥୀ
ଖାଣ୍ଡବବନ ସନ୍ନିଧେ ମିଳିଲେ ଝଟତି ।
ପାଦଗସ୍ଥା ବୋଲି ବହୁଯାଏ ନଦୀ ଗୋଟି
ଖାଣ୍ଡବବନ ଭେଦି ସେ ମେଖଳାରେ ଫୁଟି ।
ସେ ନଦୀ ଗୋଟି ଭେଦଣ ଖାଣ୍ଡବ ବନକୁ
ସାଗରେ କୁମ୍ଭ ବୁଡ଼ାଇ ସେ ପାଣି ନେବାକୁ
ସୁବର୍ଣ୍ଣ ପାଚେରୀ ପୁଣ ଚୌବିଂଶ ଉତ୍ସର୍ଗ
ସୁକୋମଳ ଶିଳାମାନେ ଲଗିଛନ୍ତି ସ୍ୱର୍ଗ ।
ପାଚେରୀ ସ୍ୱରକଣ୍ଠରେ ବୃକ୍ଷେଟି ଜଗନ୍ତି
ରତ୍ନ କଳସମାନ ତା ଉପରେ ବସନ୍ତି ।
ଝଲକନ୍ତି ମାଣିକ୍ୟ ଯେ ମଣି ମୁକ୍ତାହାର
ବାଳ ଆଦିତ୍ୟ ଜିଣି ତା ତେଜ ପରଖର ।
ସହସ୍ରେକ ନବଶତ ଯୋଜନ ସେ ତୋଟା
ସ୍ୱରକାଠି ବିସ୍ତାର ଯେ ଏକ ବୃକ୍ଷଗୋଟା ।
ଆଶୀ ଅର୍ବୁଦ ତୋଟାଳ ତାହାକୁ ଖଟନ୍ତି
ବୃକ୍ଷକେ ଜଣେ ଲେଖାଏଁ ପାଣି ଦେଉଥାନ୍ତି
ଅର୍ଜୁନଙ୍କୁ ଘେନି ଅଗ୍ନିଦେବତା ଚଳନ୍ତି
ରଥ ଚଢ଼ାଇ ଉତ୍ତର କୋଣ ଯେ ଜଗତି ।
ଦେଖନ୍ତି ତୋଟା ସୁସଞ୍ଚ କୁଲ ଚଳକତ
ପୁଷ୍ପ ତେଜେ ରବି ଦବା ପରାୟେ ଦିଶନ୍ତି ।
ବୃକ୍ଷଙ୍କର ମୂଳକୁ ସେ ନପାକ୍ଷଣ କର
ଗୃହି ଗୃହି ଦଣ୍ଡି ଚତ୍ତୁ ଉତ୍ସର୍ଗ ଚଉଁସା ।
ସୁବର୍ଣ୍ଣରେ ବନ୍ଧା ହୋଇଅଛି ସ୍ୱରକତ
ପୁଷ୍ପଙ୍କର ତେଜେ ତହିଁ ନାହିଁ ଦିବାସତ ।
ଅନବରତେ ବହଇ ମଳୟ ସମୀର
ମଉଷଧି ତେଜଲଗି ଜାଣେ ଯେ ଅମର ।
କନକ ବନ ପରାୟେ ପୁଷ୍ପେ ବିକାଶନ୍ତି
ଦିପାଣିଲା ସ୍ୱର୍ଣ୍ଣପର ଜନ୍ତୁ ଏ ଦିଶନ୍ତି ।
ଏସନ ମହିମାବନ୍ତ ସେ ଖାଣ୍ଡବ ତୋଟା
ଶତେ ଯୋଜନ ଉତ୍ସର୍ଗ ଏକା ବନଗୋଟା ।
ବସ୍ତୁରଇ ଫାଲଗୁନ ଅପଣା ହୃଦ୍‌ଗତେ
ଆକାଶ ସମ୍ଭବ ଏହା ନାଶିବ କେମନ୍ତେ ।

କରପତ୍ର ଯୋଡ଼ି ବୋଲେ ବୀର ଫାଲଗୁନ
କେବଣ ମହୌଷଧିରେ କୁଟିବ ମନ୍ଦାଗ୍ନି ।
ଚହ୍ଲାଇ ଦନ୍ତ ଆଣଇ ମୁହିଁ ତାହା କାଟି
ଭକ୍ଷିଣ ଆରୋଗ୍ୟ କର କୁଶଳ ଦେହ ଗୋଟି ।
ଅଗ୍ନି ବୋଇଲେ ତୋହର ସଂକଳ୍ପର ବେଳେ
ତୋଟାଯାକ ମାଗିଛୁ ମୁଁ ସାକ୍ଷୀ ଦିଗପାଳେ ।
ବାବୁ ବୃକ୍ଷଫଳ ଜୀବଜନ୍ତୁ ଯେ ତତେଇ
ସବୁଙ୍କୁହିଁ ଭକ୍ଷିବ ମୁଁ ଜଗିଥିବୁ ତୁହି ।
ତେବେ ସେ ତୃପତ ମୁହିଁ ହୋଇବି ଅର୍ଜୁନ
ଭକ୍ଷିବି ଔଷଧି ପାଇଁ ଖାଣ୍ଡବ ବିପିନ ।
ତୁ ଭାରତମଲ୍ଲ ମୋତେ ହୋଇଲୁ ପ୍ରସନ୍ନ
ପାଷାଣ ରେଖ ସମାନ ତୋହର ବଚନ ।
ଅର୍ଜୁନ ବୋଇଲା ଶୁଣି ଭକ୍ଷ ବୈଶ୍ୱାନର
ଅଗ୍ନି ବୋଇଲେ ନାରାଚ କର ଶେଷ ତୋର
ଖାଣ୍ଡବ ବନ ଦହନ ହୋଇ ତେଜ ଯେନ
ନାରାଚ କରି ପେଷିଲେ ମୋତେ ଫାଲଗୁନ ।
ଅର୍ଜୁନ ନାରାଚ କରି ବସାଇଲେ ଲକ୍ଷେ
ଭସିଲ ସେ ବୈଶ୍ୱାନର ଅଗ୍ନି ଶର ରୂପେ ।
ଅଗ୍ନି ବୋଇଲେ ବାବୁ ହେ ଯାଉଅଛୁ ମୁହିଁ
ମେଘ ବରଷନ୍ତି ନାହିଁ ଇନ୍ଦ୍ର ଆଜ୍ଞା ପାଇ ।
ଆନକୁ ଭୟ ନାହିଁ ମୋହର କଦାଚିତେ
ଜଳନ୍ତି ସେ ଆମ୍ଭ ବପୁ ଭାଙ୍ଗଇ ଯୁକତେ ।
ତାହା ଦୂରକର ଏକା ଥିବୁ ତୁହି ରଖି
ସୁଖେ ପଶି ମହୌଷଧି ପାଇବି ମୁଁ ଭକ୍ଷି ।
ପକ୍ଷୀ ଜନ୍ତୁମାନେ ଜଳ ଯାଆନ୍ତେ ଗଗନେ
ତାହାଙ୍କୁ ନାରାଚ ତୁହି ବିନ୍ଧିବୁ ଯେସନେ ।
ବାବୁରେ ପିମ୍ପୁଡ଼ି ମାତ୍ର ନ ଯିବ ଉବୁରି
ତେବେ ସିନା ହେଲା ଧର୍ମ ହୋଇବ ତୋହର
ଏତେକ ବୁଝି କରାଇ ଦେବ ବୈଶ୍ୱାନର
ଜଗତରେ ଥାଇ ପାର୍ଥ ବନ୍ଦେ ଗୋପବର ।
ତୋଟା ମଧ୍ୟେ ପଡ଼ି ଅଗ୍ନିଦେବ ଯାଏ ଖେପି
ବ୍ୟାପିଲା ସେ କାଳାନଳ ହୋଇ ବହ୍ନିରୂପୀ ।
ଅନେକ କାଳର ପତ୍ର ଅଛି ତହିଁ ପଡ଼ି
ଯେ ସବୁ ଜଳ ଉଠଇ ଅଗ୍ନି ତେଜ ବଢ଼ି ।
ବିକାଶିଲା କାଳାନଳ ତେଜ ମହାମୂର୍ତ୍ତି
ତୋଟାରେ ଦେଖିଣ ମାତ୍ର ପଡ଼ିଲେ ଝଟତ ।

ବାମ୍ଫିକୁ ପାଣି ପୂରଇ ଅଣି ରହସତେ
ଘକାଇଲେ ଅନଳରେ ନେଇ ସେ ବଳଷ୍ଟେ
ଅଗ୍ନି ତାଳଦେଲେ ରଖ ରଖ ସବ୍ୟସାଚ
ତୋର ଉପରୋଧ କଲେ ମୋତେ କେହ୍ନ ରଖି
ଦଶସହସ୍ର ଅର୍ବୁଦ ଅନନ୍ତ ତୋଟାଳ
ଶୁଣି ଜଣକେ ଦ୍ୱିଶତ ବାନ୍ଧ କୁନ୍ତୀବାଳ ।
ପଢ଼ିବା ମାତ୍ରେ ନାରାଚ ଧାଡିକାରେ ଭେଦ
ତୋଟାଳଙ୍କ ବେଳକୁ ଉପକାଇଲା ଛେଦ ।
ହୀରାମଣି କୁଣ୍ଡଳ ଯେ ବିକାଶଇ କାୟେ
ଦଶନ୍ତି ତୋଟାଳମାନେ ମୃତ୍ୟୁବୃକ୍ଷ ପ୍ରାୟେ ।
ଅଗ୍ନିରେ ପଡ଼ିଲେ ଦେବଗଣେ ମୁହିଁମାତ୍ର
ପଳାଇ ନ ପାରି ସର୍ବେ ମଲେ ତହିଁ ପୋଡ଼ି
ଯେବା ପଳାଇ ଯିବାକୁ କେଉଁଇ ବଳକେ
ଅଗ୍ନିରେ ପଡ଼ଇ ଯେଣ୍ଡୁ ପାର୍ଥ ଶରଜାଳେ ।
ତହିଁରେ ତୋଟାଳ ଦଶଅର୍ବୁଦ ପ୍ରମାଣ
ଜଣେ ନ ବଞ୍ଚିଲେ ସର୍ବେ ହୋଇଲେ ନିଧନ
ତୋଟାରୁ ଯେ ଧୂମରାଶି ଉଠିଲା ଗଗନେ
ଗନ୍ଧ ଆମୋଦ ହୁଏଇ ଆକାଶ ଭୁବନେ ।
ନାରଦ ଯେ ବିଜେ କଲେ ତୋଟା ସନ୍ନିଧାନେ
ଦେଖିଲେ ଜଟେଣ୍ଟି ପରେ ପାଣ୍ଡବ ଅର୍ଜୁନେ ।
ନାରଦଙ୍କୁ ଦେଖି ପାର୍ଥ ଆସନରୁ ଉଠି
ପ୍ରଣାମ କରି ଚରଣେ ଶୋଇଲା କପାଟି ।
ନାରଦ ବୋଇଲେ ଶୁଣ ବାସବର ବାଳ
ଜାଣ କରୁଛୁ ଆକାଶ ସମ୍ପଦର ସ୍ଥଳ ।
ଇନ୍ଦ୍ରଦେବତାର ଅଟେ ଏ ଖାଣ୍ଡବ ବନ
ଅନେକ ଔଷଧି ଏଥେ ହେଉଛି ଦହନ ।
ଅର୍ଜୁନ ବୋଇଲେ ଏଥେ ନୁହଇ ମୁଁ ଦୋଷୀ
ଲୋକପାଳ ହୋଇ ଅଗ୍ନିଦେବ ଯାଏ ନାଶି ।
ଏତେକ ବଚନେ ଗଲେ ସେ କଳହପ୍ରିୟ
ଅମରପୁରେ ଭେଟିଲେ ସୁରପୁର ରାୟ ।
କିକଣ ଦେବ ଯେ ବସିଅଛନ୍ତି ଆସ୍ଥାନେ
ବିଦ୍ୟାଧରୀ ଖଟିଛନ୍ତି ତାଙ୍କ ସନ୍ନିଧାନେ ।
ଏସନ ସମୟେ ସର୍ବ ଆମୋଦର ଗନ୍ଧ
ଆସ୍ଥାନେ ଥାଇ ଦେଖିଲେ ଦେବ ସୁରଇନ୍ଦ୍ର ।
ଆମୋଦଇ କି ଅପୂର୍ବ ଗନ୍ଧ ଏ ଆକାଶେ
ଶରୀର ତ ପଲ୍ଲବିତ ହେଉଛି ସୁବାସେ ।

ନାରଦ ବୋଇଲେ ଶୁଣ ଆହେ ସୁନାସୀର
ଖାଣ୍ଡବ ବନ ଆଜରେ ନାଶଗଲା ତୋର ।
ଅଗ୍ନି ଦହନ କରନ୍ତି ତୋହର ମଧୁବନ
ଶୁଣି କୋପାନଳ ହେଲା ସହସ୍ର ଲୋଚନ ।
ଆସନୁ ଉଠିଗଲା ବୋଲେ ସୁରଗଣ
ଧାଅଁରେ ନନ୍ଦନେ ମୋର ଶୀଘ୍ରବଳ ସାଜ ।
ବିଦ୍ୟାଧରଙ୍କୁ ହକାରି ବୋଲେ ସୁରଦେବା
ଧାଇଁଯାଇଁ ଅନଳକୁ ବେଗକରି ଲିଭା ।
ତୋହର ମୋହର ଦଶସହସ୍ର ଅର୍ବୁଦ
ତାହାଙ୍କର ଥାନ୍ତେ କପାଁ ଅଗ୍ନିର ଏ ବାଦ ।
ଧାଅଁରେ ବିଚିତ୍ରସେନ ଅଙ୍ଗାର ପର୍ଣ୍ଣଗ
ତୋହାଳଙ୍କୁ ସେ ଅଗ୍ନିରେ ପଳାଇବ ଆଗ ।
ବାସବର ଆଜ୍ଞାପାଇ ଭୟାରେ ଧାଅନ୍ତି
ଯାଇ ମଧୁବନ ତୋହା ସନ୍ନିଧେ ମିଳନ୍ତି ।
ବାହନ ତେଜିଣ କଷଣ ସମସ୍ତ କୁମାରେ
ଅନେକ ନାଗର ଅସ୍ତ୍ର ଧରିଛନ୍ତି କରେ ।
ଚଳନ୍ତି ସେ ବିଦ୍ୟାଧର ସୁରନାଥ ପ୍ରାୟେ
ବିରାଜଇ ଅଳଙ୍କାର ବସ୍ତ୍ର ତାଙ୍କ କାୟେ ।
ଚଉଷଠି କୋଟି ଜାଣ ବାସବ କୁମର
ସମସ୍ତେ ଧାଅନ୍ତି ଚିତ୍ରସେନ ସଙ୍ଗତର ।
ଗନ୍ଧର୍ବ ବିଦ୍ୟାଧରଙ୍କୁ କ ଅବା ପ୍ରଶଂସି
କାମଦେବର ସଦୃଶ ରୂପରେ ସେ ବଶି ।
ସୁବେଶ ହୋଇ ଅନେକ ଅଳଙ୍କାର କାୟେ
ଦିଶନ୍ତି ବିଦ୍ୟାଧରେ ସୁରନାଥ ପ୍ରାୟେ ।
ଅଶୀପଦ୍ମ ଗନ୍ଧର୍ବଙ୍କୁ ଘେନି ଜୟସେନ
ଗୁରୁଦଳକୁ ଧାଇଁଲେ ଦିଗପାଳ ନନ୍ଦନ ।
ଓଷଧି ଭଷି ବସ୍ତାର ସେ ଅନନ୍ତ ରେଖା
ବ୍ରହ୍ମାଣ୍ଡ ପୂରିଅଛଇ ଅଗ୍ନି ତେଜ ଶିଖା ।
ଗଙ୍ଗାକୂଳ ଦେଇ ଧାଇଁ ଗଲେକ କୁମରେ
ଦକ୍ଷିଣଦିଗ ଦ୍ୱାରରେ ପଶିଲେ ତୋହାରେ ।
ରତ୍ନକୁମ୍ଭେ ପାଣି ବେଗେ ପୂରାଇ ବଳସ୍ତେ
ପକାନ୍ତି ଅଗ୍ନିରେ ନେଇ ତାହା ଅନେକସ୍ତେ ।
ଦେଖ ହୋ ଅର୍ଜ୍ଜୁନ ବୋଲି ଡାକେ ବୈଶ୍ୱାନର
ଅର୍ଜ୍ଜୁନ ଥାଇ ଶୁଣିଲା ଜଗତ ଉପର ।
ଯବନାସ୍ତ୍ର ପେଷିଲେକ ସାର ଫାଲ୍ଗୁନ
ଉଡ଼ିଗଲେ ବିଦ୍ୟାଧରେ ଯୋଜନ ଯେ ଶତ ।

ପୁରନ୍ଦର ଦେବତାଙ୍କୁ ନାରଦ କହିଲେ
ତୋହର ସମସ୍ତ ସୁତ ତହିଁ ନାଶଗଲେ ।
ସୁଖେ ପୋଡ଼ଇ ଖାଣ୍ଡବ ବନ ହୁତାଶନ
ଶୁଣି ମହାକୋପରେ ଦେବ ମଘବାନ ।
ମେଘଙ୍କୁ ଗଳଣ ଆଜ୍ଞା ଦେଲେକ ବାସବ
ବେଗ ହୋଇ ତୁମ୍ଭେମାନେ ଯାଅ ଯା ଖାଣ୍ଡବ
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଖାଣ୍ଡବ ବନରେ ସ୍ୱରମେଘେ ଢାଳ ନୀର ।
ଆଜ୍ଞା ପରମାଣେ ମେଘ ଉଠିଲେ ଗରଜ
ସମୁଦ୍ରରୁ ପାଣି ତୋଳି ସ୍ୱରମେଘେ ଝଞ୍ଜି ।
ଘେରିଲେ ଖାଣ୍ଡବବନ ତୋହା ଚଉକତି
ଗର୍ଜ୍ଜନ ନାଦ କରିଣ ମେଘେ ବରଷନ୍ତି ।
ଅଗ୍ନିଦେବ ଡାକ ଦେଲେ ଶୁଣ ସବ୍ୟସାଚି
ମେଘ ବୃଷ୍ଟି ଦଳେ କାର୍ଯ୍ୟ ନୋହିଲାକ କିଛି
ଅଗ୍ନିର ବଚନ ଶୁଣି ବୀର ଫାଲ୍ଗୁନ
ବେଗେ ପେଷେ ମନବେଗ ଶର କରେ ଘେନ
ଅନୁକ୍ଷଣେ ବାଣ ବର୍ଷେ ଯେସନ୍ତେ ଜଳଧାର
ଖାଣ୍ଡବ ବନ ଉପରେ କଲା ଶରପୀଡ଼ା ।
ଊଣିଶୀସହସ୍ର ଯୋଜନ ସେ ଖାଣ୍ଡବ ବନ
ତହିଁ ଶରପୀଡ଼ା ଶରେ କଲାକ ଅର୍ଜ୍ଜୁନ ।
ବେଳଚାଳ ବହଳରେ ପଡ଼ିଲେକ ଶର
ବରଷନ୍ତି ମେଘମାଳ ହୋଇଣ ପ୍ରଖର ।
ଊଣିଶ ସହସ୍ର ଯୋଜନ ଅଟଇ ସେ ବନ
ବରଷନ୍ତି ମେଘେ କରି ଘୋର ଗରଜନ ।
ଏକତ୍ର ହୋଇ ବ୍ୟାପିଲେ ସେ ଗଗନ ମାର୍ଗ
ପଚିଶ ଯୋଜନ ଶର ଧୀଡ଼ାର ଉତ୍ସର୍ଗ
ଅଗ୍ନିଙ୍କର ତେଜଲାଗି ସର୍ବ ବନ ଶଇ
ପାତେଣି ତହିଁକି ସେତୁ ହେଲା ପଡ଼ଖାଇ ।
ତୋହାର ପାତେଣି ହେଲା ତହିଁ ପୁଣି ବାଡ଼
ଯାକ ଜନ୍ତୁମାନେ କେହି ନୋହିଲେ ବାହାର
ବ୍ୟାଘ୍ର ଭାଲୁ ହସ୍ତୀ ଘୋଡ଼ା ଗଣ୍ଡା ଯେ ଶାଢ଼ୁ
କେହି ବାହାରି ନ ଗଲେ ଭକ୍ଷିଲା ଅନଳ ।
ବାଦୁଡ଼ିଆ ହରିଣ ଯେ ମୃଗଆଦି କରି
କୁକୁର ଗଧ ଭଲ୍ଲୁକ ଯେ ଗନ୍ଧମୂଷା ।
ବଗଡ଼ ଓଟ ସମ୍ବର କଟାଶ ବଳଆ
ଶାଳଆପତନ ଶଶା କୋକ ଯେ ବଲୁଆ ।

ନେପାଳୀମୂଷା ମର୍କଟ କୁମ୍ଭାଟୁଆ ଆଉ
ମୂଷିକ ସର୍ପ ମାର୍ଜାର ବନଗୋରୁ ଗୋଧି ।
ପକ୍ଷୀଜନ୍ତୁ ଏ ଅନେକ ଭଣି ସାପ ଛୁଆ
ଅସାରଜନଆ ଗୋବଗ କୁଆ ପାଣିକୁଆ ।
କନକରେଖା କଷଗ ପାଣ୍ଡବ ଚଢ଼ାଇ
ଧାନଗ୍ରେଇଆ ଭୂଇଁଆ ଯେ କୋଠଲଖାଇ ।
ଗୃଣ୍ଡସ ମୟୂର ଗଜହଂସ ଭଦଲଆ
ଆଦର ଯେ ଗଜବଣୀ ପକ୍ଷୀ ଭରଡଆ ।
ସାରସ କଙ୍କ କପୋତ ଡେଣ୍ଡିସ ଯେ ପକ୍ଷୀ
ପାଣିକୁଆ ଦଳଫିମ୍ପି ହେମାଞ୍ଚଳ ପକ୍ଷୀ ।
ବଳିହଣା କାଠହଣା ହରଡ଼ ଚଢ଼ାଇ
ଗୁଞ୍ଜିର ବଡ଼ଆକାଙ୍କ ଡକୁଆ ଟଣ୍ଡାଳି ।
କୋକୁଆ କୁକୁଡା ବକ ମ ଛରଙ୍କ ଝିଙ୍କ
ବାଦୁଡ଼ି ସଇତଟିଆ ପକ୍ଷୀ ଶିଣ୍ଡିବକ ।
ବଳଗାବସନ୍ତ ଗୁହ୍ମକାଳକା ବାଇଆ
ପାଟଖିଲିଆ ନାରଙ୍ଗୀ ପକ୍ଷୀ କାକଭୂଆ ।
ଗଙ୍ଗାଇ ଡୁକାଇ ଆଦି ଯେତେ ପଶୁପକ୍ଷୀ
ସମସ୍ତଙ୍କୁ ହୁତାଶନ ଯାଉଛନ୍ତି ଭକ୍ଷି ।
ପକ୍ଷିଟଟା ଗୋଟାଏ ଯେ ବାହାରଟେ ଗଲା
ଅଗ୍ନି ଡାକଦେଲା ଧନଞ୍ଜୟ ଗଲା ଗଲା ।
ସେ ପକ୍ଷୀ ଗୋଟିକ ଶର ବାନ୍ଧିଲା ଫାଲ୍ଗୁନି
ପକାଇଲା ଜଳେ ଯହିଁ କାଳାନଳ ବହ୍ନି ।
ଅନୁକ୍ଷଣେ ଶର ଧରି ବାନ୍ଧଇ ଅର୍ଜୁନ
ତଥାପି ମନରେ ତୋଷ ନାହିଁ ହୁତାଶନ ।
ସାହଉବା ବରଷିଲେ ଧର ମେଘମାନେ
ନ ପଡ଼ିଲା ବିନ୍ଦୁଏକ ଜଳ ସେ ଉଦ୍ୟାନେ ।
ସମୁଦ୍ର ପୃଥିବୀ ଏକ ହୋଇଲା ଜଳରେ
ଫିଟି ରହିଲେକ ମେଘମାନେ ଗଗନରେ ।
ଯେତେକ ବୃକ୍ଷ ଦହନ ହୋଇଲେ ସମସ୍ତେ
କାହୁଡ଼ି ମେଘେ କହିଲେ ଇନ୍ଦ୍ରର ଅଗ୍ରତେ ।
ସ୍ୱାମି ଅଗ୍ନିଦେବତାର ଦୋଷ ନାହିଁ କିଛି
ଆଜିକ ଖାଣ୍ଡବବନ ତୋର ଦହୁଅଛି ।
ଆମ୍ଭେମାନେ ଜଳବୃଷ୍ଟି କଲୁ ଯେତେବେଳେ
ତୋଟାଯାକ ଶରପୀଡ଼ା କଲା ସେତେବେଳେ
ସ୍ୱାମି ବେବେ ଅଗୋଚର ତାହାର ମହିମା
ନବାଣ୍ଟି ସେହି ନାରାୟଣ ସଦାଶିବ ବ୍ରହ୍ମା ।

ଇନ୍ଦ୍ର ବୋଲେ ମୂର୍ଖ ନୋହେ ଏହାଙ୍କ ବଇଶ
ଖାଣ୍ଡବବନ ମୋହର ସର୍ବ ଉପକାରୀ ।
ଏତେକ ବୋଲିଣ ଭଣ ଦେବ ପୁରନ୍ଦର
ଐରାବତ ପୃଷ୍ଠେ ବିଜେ କଲେ ବଜ୍ରହସ୍ତ ।
ଅମରଗଣଙ୍କୁ ଘେନି ସେ ସହସ୍ରଲୋଚନ
ମାରିବ ଯେବେ ସେ ହେବେ ବଗଧାନ ତନ
ଅନେକ ଔଷଧ ଅଗ୍ନିଦେବ ପାନକରି
ମନ୍ଦଅଗ୍ନି ଲୁଦବୁଦ ଗଲା ତାହାଙ୍କରି ।
ଅନୁକ୍ଷଣେ ଅନଳର ସହସ୍ରେକ ମୁଖ
ଅଗ୍ନିଶିଖା ଲାଗୁଅଛି ଯୋଜନ ବିଲକ୍ଷ ।
ଆକାଶକୁ ବୋଲି ଶରମୀଡ଼ା ଲାଗିଥିଲା
ମହା ଅନଳ ଜ୍ୱାଳାରେ ଉଚ୍ଛନ୍ନ ହୋଇଲା ।
ତିନିଲକ୍ଷ ଯୋଜନକୁ ଲାଗେ ଅଗ୍ନିତେଜ
ଉପରେ ଯାଇ ନ ପାରିଲେ ପାଶେ ଦେବରାଜ
ଅର୍ଜୁନ ଭଜେ କରଛି ଦକ୍ଷଣ ଜଗଣ
ଆକାଶେ ଥାଇ ଦେଖିଲେ ତାଙ୍କୁ ସ୍ୱତପଣ୍ଡ ।
ବାସବ ପୁଚ୍ଛେ ସକଳେ ଉଡ଼ ଯାଇଥିଲେ
ଔଷଧି ସହନ ବାଜ ଚେତନା ପାଇଲେ ।
ପିତାର ସନ୍ନିଧେ ଯାଇ ହୋଇଲେ ପ୍ରବେଶ
ବୋଇଲେ ଅର୍ଜୁନ ଏତା ତୋଟା ଉନ୍ନ ନାଶ
ବାସବ ବୋଇଲେ ତାହା ଜାଣି ନ ପାରିଲି
ଅର୍ଜୁନ ବାଆ ଜାଣଇ ମୋର ତୋଟା ବୋଲି
କେକୁ ମଭାତେକୁ ତନ୍ତ୍ରକରୀ ବୃହସ୍ପତିବା
ଏ କଥା ଶୁଣି ଶଚୀ ଆଜ୍ଞା ଦେଲେକ ମଘବା ।
ତୋ ପିତା ତୋଟା ଦହନ କରୁଛି କପାଇଁ
ଅର୍ଜୁନ ଅଗ୍ରତେ କହ ଏମନ୍ତେ ରେ ଯାଇ ।
ଇନ୍ଦ୍ର ବଚନେ ଚଳିଲେ ବିଦ୍ୟାଧର ସ୍ୱର
ଦକ୍ଷିଣ ଖଣ୍ଡକୁ ଯାଇ ପାର୍ଥକୁ ଉଆର ।
ବାବୁ କପାଇଁ ଦହନ କରୁଛୁ ଖାଣ୍ଡବ
ଆଗେ ବଜେ କରିଛନ୍ତି ତୋ ପିତା ବାସବ ।
ଅଗ୍ନି ଦେବତା ଅଟଇ ଅଶାନ୍ତ ଅତୃପ୍ତି
କୁ ଆଉ ହୋଇଯା ଆମ୍ଭ ଲିଖଇ ଝଟତେ ।
ବୋଲନ୍ତି ଫାଲ୍ଗୁନ ଶୁଣ ଯାନ୍ତୁ ପୁରନ୍ଦରେ
କପଟେ ମଗିଲା ଅଗ୍ନି ଏ ବନକୁ ମୋତେ ।
ଏଥିପାଇଁ ନ ଦେଲୁ ଆଜ ସୁରରାଜ
କଥାହିଁ ଉତ୍ତର କଲୁ ନ ହୋଇବ କାର୍ଯ୍ୟ ।

ବିଦ୍ୟାଧରେ ବୋଇଲେ ତୁ ଇନ୍ଦ୍ରେ ବିବାଦ
ପୁତ୍ର ହୋଇ ନାଶ କରୁ ପିତାର ସମ୍ପଦ ।
ଯଦ୍ୟପି କୋପ କରିବେ ତୋତେ ଦେବରାଜ
ଅର୍ଜ୍ଜୁନ ତୋ ପ୍ରାଣତ୍ୟାଗ ହୋଇଥିବ ଆଜ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ କହୁଛ ଅସତ
ମୋର ଦୋଷ ନାହିଁ ଅନଳପଣେ ନାଶଯିବ ।
ମୁହିଁ ନ ଛାଡ଼େ ପିତାର ତୁମ୍ଭେ ହୁଅ କସ
ସତ୍ୟବାକ୍ୟ ପାଳନ ମୁଁ କରିବ ଅବଶ୍ୟ ।
ଅଗ୍ନି ଯେ ମାଗିଲେ ମୁହିଁ ନ ପାରଇ ରଖି
ଏଥିକୁ ତ ବେଦ ଧର୍ମ ହୋଇଛନ୍ତି ସାକ୍ଷୀ ।
ଶୁଣି ମହାକୋପ କଲେ ବାସବକୁମରେ
ମାନବ ହୋଇ ତୁ କହୁ ଏଡ଼େକ ଦର୍ପରେ ।
କୋପେଣ ସରେ ଯେ କରେ ପଞ୍ଚଶ ବୃଷଇ
ଅର୍ଜ୍ଜୁନର ନିକଟକୁ ବେଗେ ଗଲେ ଧାଇଁ ।
ଦେଖି ହସିଲେ ପାଣ୍ଡବସାଇ ଫାଲଗୁନ
କୋପେଣ ବାନ୍ଧିଲେ ପାର୍ଥ ଲଘୁଶର ସେନ ।
କାଳାନ୍ତକ ଶର ପାଟେ ହୁଡ଼ଗଲେ ଖାଇ
ଗୃଣ୍ଡକୁମରେ ପଡ଼ିଲେ ସେଠାରେ ଘୁମାଇ ।
ବାସବଙ୍କ ଅଗ୍ରତେ ଯେ ନାରଦ କହିଲେ
ଅର୍ଜ୍ଜୁନଙ୍କେ ଯେ ତୋ ପୁତ୍ର ଯୁଦ୍ଧେ ନାଶ ଗଲେ
ଶୁଣି ବିଷାଦ ପାଇଲେ ଦେବ ଆଖଣ୍ଡଳ
ଆଜ ସେହୁ ପାମରର ପୂରିଲବ କାଳ ।
ଟିପାଇ ଚଳାଇ ଦେଲେ ଐରାବତ ଗଜ
ମିଳିଲେ ଅର୍ଜ୍ଜୁନ ପାଶେ ଯାଇଁ ଦେବରାଜ ।
ଉହ୍ଲାଇଲ ନନ୍ଦଘୋଷ ରଥୁ ଧନଞ୍ଜୟ
ବାସବ ଚରଣ ତଳେ କଲାକ ବିନୟ ।
ବାସବ ବୋଇଲେ ହେଉ ତୋର ବାଞ୍ଛା ସିଦ୍ଧି
ସୁଖେ ରାଜ୍ୟ ଭୋଗକର ଶତ୍ରୁଗଣ ସାଧି ।
ବାବୁ ସତ୍ୟଯୁଗେ ବସ୍ତ୍ରୁ ପାଇ ପଣ୍ଡବ
ସବୁର ଜୀବଙ୍କ ରୂପ ଧରି ଆଦିଦେବ ।
ଆକାଶ ଗଙ୍ଗାକୂଳେ ଏ ତୋଟା ମଧୁବନ
ଏଥେ ରୋପିଲେ ଅନେକ ବୃକ୍ଷ ଭଗବାନ ।
ତୁ ଏହା ଦହନ କରୁଅଛୁ ଅନର୍ଥରେ
ଏ ଦଶ ଦେବତା କୋପ କରିବେଟି ତୋତେ
ଆକାଶ ଗଙ୍ଗାକୂଳରେ ଏ ଖାଣ୍ଡବ ବନ
ଦେବତାମାନଙ୍କର ଏ ଅଟେ ଗୁପ୍ତସ୍ଥାନ ।

ଅର୍ଜ୍ଜୁନ ବୋଇଲେ ଶୁଣ ଦେବ ସୁରଈଶ
ଅଗ୍ନିଦେବ କରାଇଲେ ମୋତେ ବନବାସ ।
କପଟେ ମାଗିଲେ ତାକୁ ବିପ୍ରରୂପ ହୋଇ
ନ ଜାଣିବା ପଣେ ତ ତ ସତ୍ୟକଲି ମୁହିଁ ।
ମୁହିଁ ଜଳ ଦେଇ କହେ ଘେନିଲେ ସେ ଦାନ
ସତ୍ୟ କରାଇ ବୋଇଲେ ଦେବ ଇନ୍ଦ୍ରବନ ।
ଖାଣ୍ଡବ ବନ ମାଗିଲେ ମୁଁ ଯେ ସତ୍ୟକଲି
ଅଗ୍ନିର ଚରିତ ଦେଖି ଆଶ୍ଚର୍ଯ୍ୟ ହୋଇଲି ।
ବାସବ ବୋଇଲେ ତୁମ୍ଭ ସତ୍ୟକଲୁ ଦାନ
ଖାଣ୍ଡବବନକୁ ସିନା ମାଗିଲା ଅନଳ ।
ବ୍ରାହ୍ମଣ ହୋଇ ଅଟଇ ସେହି ବଡ଼ଲୋଭୀ
ଲୋକେ ଘୃତ ଖାଇ ହେଲା ବ୍ୟାଧି ପରିଭବୀ ।
ବାସବ ବୋଲନ୍ତି ସେହୁ ଭୋଜନେ ଅତୃପ୍ତି
ପୃଥ୍ୱୀଯାକ ଖାଇଲେ ସେ ନ ହୁଅଇ ଶାନ୍ତି ।
ବାବୁ ଧର୍ମଅର୍ଥେ ଶ୍ୱେତରାଜା ଯାଗ କଲା
ଘୃତ ସମୁଦ୍ରରୁ ଘୃତଯାକ ବରଷିଲା ।
ଦୁଇଲକ୍ଷ ଯୋଜନ ଯେ ଓସାର ଦି ଲକ୍ଷ
କୁଣ୍ଡର ଗଭୀର ଲକ୍ଷେ ଯୋଜନ ପ୍ରତ୍ୟକ୍ଷ ।
ମେଘକୁ ପ୍ରୋକ୍ଷଣୀ କରି ବଶିଷ୍ଠ ବସିଲା
ଲୋକେ ଏ ଚଣ୍ଡାଳ ଅଗ୍ନି ସମସ୍ତ ଭକ୍ଷିଲା ।
କେତେ ଘୃତ ସମୁଦ୍ରକୁ ଭକ୍ଷିଲା ଏ ଲୋଭୀ
ମନ୍ଦ ଅଗ୍ନି ହୋଇଲା ଯେ ହେଲା ପରିଭବୀ ।
ମୋତେ ମାଗିଲା ଏ ଆସି ଅମର ଔଷଧି
ରାଗେ ମୁଁ ଦେଇଲି ତୋର ନ ତୁଟଇ ବ
ବ୍ରହ୍ମାଙ୍କୁ କହି ଆଣିଲା ମୋହର ଅର୍ଥିକ
ତଥାପି ଔଷଧି ମୁହିଁ ନ ଦେଲି ଲୋଭୀକ ।
ବାବୁ ତ୍ରେତାଯୁଗେ ଡାକିଆଣି ଈଶ୍ୱରଙ୍କୁ
ସେ କହିଲେ ଔଷଧି ମୁଁ ନ ଦେଲି ତାହାଙ୍କ
ଦ୍ୱାପର ଯୁଗେ ଆଦିତ୍ୟ ଦେବଙ୍କୁ ଆଣିଲା
ତାହାଙ୍କ ବାକ୍ୟେ ନ ଦେଲି ଯେ ବହୁତ
ଚନ୍ଦ୍ର କୁବେର ବରୁଣ ବୃହସ୍ପତି ସୁର
ଲଜଜାଇ ଗଲେ ତାକୁ ସମସ୍ତେ ବାହୁଡ଼ ।
ବାବୁ ଏତେକାଳେ ଆସି ପାଇଲା ଭରସା
ତୋତେ ବନ ଦାନ ମାଗି ପୂରିଲା ଆଶା
ବାସବ ଅର୍ଜ୍ଜୁନ କଥା ହୁଅନ୍ତେ ଯେ ତହିଁ
ଯୋଗୀମାନେ ସବାନ୍ତେ ଯେ କୋଳାହଳ

ଅଗ୍ନି ଉଚ୍ଚେ ଡାକଦେଲା ଶୁଣ ସବ୍ୟସାଚି
ପକ୍ଷୀ ପଳାଇଲେ ସତ୍ୟ ଭଗ୍ନ ହେଉଅଛି ।
କୀଟ ପତଙ୍ଗ ଗୋଟିଏ ହୋଇଲେ ଅନ୍ତର
ଦାନ କଲା ଧର୍ମନାଶ ଯିବଟି ତୋହର ।
ତୁ ଯେ ପାର୍ଥ ଅଟୁ ଏହି ଭାରତର ମଲ୍ଲ
ପାଷାଣର ରେଖା ପ୍ରାୟ ଏ ତୋହର ବୋଲ
ଅଗ୍ନିଦେବତା ବଚନୟ ବାକ୍ୟ ପା ' ଶୁଣି
ବାନ୍ଧିଲା ନାରାଚ ଧରି ବୀର ଚୂଡ଼ାମଣି ।
ଅନେକ ପକ୍ଷୀ ପଳାଇ ଶୂନ୍ୟେ ଯାଉଥିଲେ
ଶରଘାତେ ସେ ସମସ୍ତେ ଅଗ୍ନିରେ ପଡ଼ିଲେ ।
ଇନ୍ଦ୍ର ବୋଇଲେ ତୁ ଦେଲୁ ଖାଇଲା ତ ଅଗ୍ନି
ସଂକଳ୍ପ ପୂରିଲା ଏବେ ଯାଅ ଫାଲଗୁନ ।
ମୁହିଁ ଲଗାଇବି ଏହି ଖାଣ୍ଡବ କାନନ
ବାରଶତ ଯେ ଜନ ତ ହେଲାଣି ଦହନ ।
ଅର୍ଜୁନ ବୋଲେ ସାକ୍ଷାତେ ଦେଖିଲତ ତାତ
ଚଢ଼ାଇ ଏକ ଗଳାକୁ ବୋଲଇ କେମନ୍ତ ।
ଅମରାଧିନାଥ ତୋର ପାଦେ ମୋର ସେବା
କଥା ନ ରହିବ ତାତ ବାହୁଡ଼ିଣ ଯିବା ।
ଐରାବତ ଗଜପୃଷ୍ଠୁଁ ଉତୁରି ବାସବ
ଅର୍ଜୁନର ହାତ ଧରି ପଶିଲେ ଖାଣ୍ଡବ ।
ବାବୁ ଯେ ପଦାର୍ଥମାନ ହେଉଛି ଦହନ
ତାହା ଦେଖାଇ ଚହ୍ଲାଇ ଦେବାରେ ଅର୍ଜୁନ ।
ଖାଣ୍ଡବ ବନେ ପଶିଲେ ଅମରାଧିନାଥ
ଅର୍ଜୁନଙ୍କୁ ଦେଖାଇଲେ ଔଷଧି ସମସ୍ତ ।
ତ୍ରେତାଯୁଗେ ହେଲା ରାମ ରାବଣ ସମର
ଲକ୍ଷ୍ମଣଙ୍କୁ ବ୍ରହ୍ମଶକ୍ତି ମାଇଲା ଅସୁର ।
ପଚାଶ ଯୂଥପତି ଯେ ପଞ୍ଚାଶତ ସେନା
ଅଠରପଦ୍ମ ବାନର ପଡ଼ିଲେ ଗଣନା ।
ପର୍ବତଗୁଡ଼ିଏ ଏଥିରୁ ନେଲା ହନୁମନ୍ତ
ଘଷନ୍ତେ ପର୍ବ ସମସ୍ତେ ହୋଇଲେ ଜୀବନ୍ତ ।
ବିଷଲ୍ୟ କରଣୀ ଜାଣ ଏହି ବୃକ୍ଷଗୋଟି
ଏହା ମୂଳୁ ହନୁମାନ ନେଲା ପାଣି ଫୁଟି ।
କମଣ୍ଡଳୁ ପାଣି ଭରି ସିଞ୍ଚିଲା ଝଟତ
ପଚାଶ କୋଟି ସଇନ୍ୟ ଚେତନ ଯେ ବର୍ତ୍ତି ।
ଆରେକ ବୃକ୍ଷହିଁ ତୋତେ ଦେବାକ ଚହ୍ଲାଇ
ମୃତସଞ୍ଜୀବନୀ ବୋଲି ଏହା ନାମ ହୋଇ ।

ହନୁମାନ ଏଥୁ ପୁଷ୍ପ ଗୋଟିଏ ଯେ ନେଲା
ସବୁରି ନାସିକାରେ ଏ ପୁଷ୍ପ ଶୁଙ୍ଘାଇଲା ।
ସେହିରୂପେ ଅଛି ଅମଳାନ ପୁଷ୍ପଗୋଟି
ଏହି ପୁଷ୍ପ ବାସନାରେ ସମସ୍ତେହେଁ ଉଠି ।
ଆରେକ ବୃକ୍ଷ ଦେଖ ଏ ସାମାନ୍ୟ ଦିଶଇ
ଏ ପାଣି ପିଇଲେ ଧଳାକେଶ କଳା ହୋଇ ।
ଏ ବୃକ୍ଷ ରୋଗନାଶକ ନାମ ମଉଷଧି
ଏ ପାଣି ପିଇଲେ ଖଣ୍ଡେ ଦେହୁ ସର୍ବବ୍ୟାଧି ।
ଯୁଗମୋହନ ବୋଲି ଏ ବୃକ୍ଷ ନାମଗୋଟି
ସ୍ନାନକରି ପିଇଲେଟି ଏଥୁ ପାଣି ଫୁଟି ।
ଶରୀରୁ ନୋହିବ ତାର ରେତ ବିଗଳିତ
ଦିନେ ପାନକରି ଗୃହଯୁଗ ଯାଏ ବର୍ତ୍ତି ।
ଏ ବୃକ୍ଷର ନାମ ବାବୁ ଅଟଇ ଉଦ୍ୟାନ
ଏ ଫଳ ଭକ୍ଷିବ ତ୍ରୁଳ ସଙ୍କସନ୍ତ ଦିନ ।
କାମଦେବ ପ୍ରାୟ ତାର ଉପୁଜଇ ସୁତ
ଅପୁନିକ ଦୋଷ ନାଶଯିବ ଯୁଗ ସାତ ।
କ୍ଲେଶ ବିନାଶନ ବୋଲି ଏହି ବୃକ୍ଷ ଗୋଟି
ଦେହଯାକ ବୋଳଦେବ ଏହା ମୂଳ କାଟି ।
ତୁଟିବ ଗଳିତ କୁଷ୍ଠବ୍ୟାଧି ଯେ ଏହାରେ
ଗର୍ଭକଷ୍ଟ ନ ରହିବ ଏ ବୃକ୍ଷ ଯୋଗରେ ।
କନକବନ୍ଦ୍ୟ ବୋଲଣ ଯେ ବୃକ୍ଷର ନାମ
ପତ୍ର ଭକ୍ଷିଲେ ଅକ୍ଷୟ ତୃଷାପ୍ୟାର ଦିନ ।
ମନ୍ତ୍ର ଏକ ପତ୍ରସନ୍ତେ ତା ଶରୀର ଥାଇ
ପଚାଶ ବରଷ ପ୍ରାୟ ସେ ଜନ ଦିଶଇ ।
ବାବୁରେ ମୋହିନୀ ନାମେ ଅଛି ଏକଲତା
କପାଳରେ କରିବ ଯେ ଏହା କ୍ଷୀର ଛିଟା ।
ଗଗନ ସୁନ୍ଦର ସେହି ରୂପଲନ୍ତେ ମୋହଇ
ଦେବ ଦାନବ ତାହାକୁ ଦେଖି ମୋହ ଯାଇ
ବାବୁ ରତ୍ତ ଧାରଣାଟି ଏହି ବୃକ୍ଷଗୋଟି
ପିକଡ଼ ଖଣ୍ଡିଏ ଏଥୁ ବାନ୍ଧିବ ଯେ କଟି ।
ସହସ୍ର ଯୁବତୀ ସଙ୍ଗେ ଦିନେ ବିଳସିବ
ସେ ପୁରୁଷ ରତ୍ନହିଁ ଛଳେ ବିନ୍ଦୁ ନ ଖସିବ ।
ଦେଖାନ୍ତି ଅର୍ଜୁନ ହସ୍ତ ଧରି ଆଖଣ୍ଡଳ
ଦେବତା ତପ କରନ୍ତି ସେ ବୃକ୍ଷର ତଳ ।
ସିଦ୍ଧକଳ୍ପ ବୋଲି ଏହି ବୃକ୍ଷ ନାମଗୋଟି
ତ୍ରୁଳ ସଙ୍କରନ୍ତିଁ ଦିନ ଏଥୁ ପାଣି ଫୁଟି ।

ପିଇଲେ ବହୁରୂ ଯାଏ ନ ଲାଗଇ କ୍ଷୁଧା
ଶୋକ ଶୋଷ ମଳମୂତ୍ର ନାହିଁ ବ୍ୟାଧି ବାଧା ।
ନାଶ କରାଇଲୁ ବାବୁ ତୁହି ଏହି ବନ
ଦେବଙ୍କର କୋପ ତୋତେ ହୋଇବ ଅର୍ଜୁନ
ବାବୁ ଯେ ପଦାର୍ଥମାନ ଦହନ ହୋଇଲା
ଅଗ୍ନି ଦେବତାର ମନ୍ଦଅଗ୍ନି ପାର ଗଲା ।
ତୁ ଏଥୁ ଅନ୍ତର ହୁଅ ଆରେ ଫାଲଗୁନ
ମୁହିଁ ଲଭାଇବି ଏହି କାଳାନଳ ବହ୍ନି ।
ବାବୁ ଅଶୀଲକ୍ଷ ଏଥେ ଅଛଇ ଚନ୍ଦନ
ଷାଠିଏ ଶତ ଅଛି ବାବୁ ଅଗରୁ ଚନ୍ଦନ ।
କସ୍ତୁରୀ ଯୁଆଦି ଆଦି ଭୂଷଣ ଏ ସର୍ବ
ଗଣନା ହୋଇ ଅଛଇ ଜାଣ ଦଶଖର୍ବ ।
ବାସବ ବଚନ ଶୁଣି ଅର୍ଜୁନ ପ୍ରଣମି
କହିର ଶୁଣେ କ କମ୍ପୁରସ ବାଣୀ ସ୍ୱାମି ।
ମୋହର ବୋଲେ ଯେ କଷ୍ଟନୋହିବାକକାର୍ଯ୍ୟ
ଅଗ୍ନିଦେବତାଙ୍କୁ ତୁମ୍ଭେ ବୋଧ ଦେବରାଜ ।
ଅର୍ଜୁନକୁ ଘେନ ତହୁଁ ଗଲେ ମଘବାନ
ଦେଖିଲେ ଅଗ୍ନିର ତେଜ ବେଳୁବେଳ ଆନ
ଅନେକ ଔଷଧ ବୃକ୍ଷ ବହୁଦ୍ରବ୍ୟ ଖାଇ
ବୈଶ୍ୱାନର ଦେବତା ଯେ ପଡୁଛନ୍ତି ଧାଇଁ ।
ଅଗ୍ନିତେଜ ଅନ୍ତରଲେ ସହ୍ସ୍ରେ ସେ ଦେଖିଲେ
ଇନ୍ଦ୍ର ଦେବତା ପ୍ରଣାମ କରଣ ଶୋଇଲେ ।
ଜୟ ତୁ ଜୟ ତୁ ଦେବ କାଳାନଳ ଅଗ୍ନି
ଜୟ ତୁ ଜୟ ତୁ ଦେବ ମହା ପିଙ୍ଗଳାଗ୍ନି ।
ଜୟ ତୁ ଜୟ ତୁ ଦେବ କ୍ଷଣ ବିଶ୍ୱବ୍ୟାପୀ
ଜୟ ତୁ ଜୟ ତୁ ଦେବ କ୍ଷଣ କ୍ଷଣକୋପୀ ।
ଜୟ ତୁ ଜୟ ତୁ ଦେବ ଦହନ ପ୍ରବଳ
ଜୟ ତୁ ଜୟ ତୁ ଦେବ ମହାକାଳାନଳ ।
ଜୟ ତୁ ଜୟ ତୁ ଦେବ ଅଶାନ୍ତ ଅତୃପ୍ତି
ଜୟ ତୁ ଜୟ ତୁ ଦେବ ବିଶ୍ୱ ତେଜୋମୂର୍ତ୍ତି
ଜୟ ତୁ ଜୟ ତୁ ଦେବ ସର୍ବଦର୍ପ ଧ୍ୱଂସୁ
ଜୟ ତୁ ଜୟ ତୁ ଦେବ ସର୍ବ କରୁ ପାଂଶୁ ।
ଦେବ ଦାନବ ମାନବ ଆଦି ଅଛ ଧର
ତୋହର ସୃଷ୍ଟିରେ ଦେବ ସକଳ ଆକାର ।
ଆଦିହୁଁ ଜଳ ସ୍ଥାପିତ ଅଟୁ ଆଦି ତୁହି
ସେ ତୋତେ ସ୍ଥାପଇ ହିତ ତୁହି ତାହାଙ୍କୁହିଁ ।
ଦକ୍ଷର ଯଜ୍ଞେ ଦେଖିଲେ ସହ୍ସ୍ରେ ତୋର ମୂର୍ତ୍ତି
ତହିଁରେ ସ୍ୱାହା ସ୍ୱଧା ତୋତେ ଦେଲେ ପ୍ରଜାପତି
ଏମନ୍ତେ ପାର ନ ଗଲା ତୋତେ ଯଜ୍ଞକାଳେ
ଉମାର ଧ୍ୱଂସନେ ତୋତେ ଶିବ କୋପ କଲେ
କୋପେ ପ୍ରଜାପତି ତୋତେଦେଲେ ଅଭିଶାପ
ଯାଅ ତୁହି ସର୍ବଖାର ହୋଇଥାଅ ଗୋପ୍ୟ ।
ବଚନ ଅନଳ ତୁହି ତୋର ମହାତେଜ
ଅଖାଦ୍ୟ ଖାଦ୍ୟକୁ ତୁହି କରୁ ଯେ ଭକ୍ଷ୍ୟ ।
ବୈଶ୍ୱାନର ନାଥ ତୁହି ଅଭୟ ହୋଇବା
ସମସ୍ତ ଦ୍ରବ୍ୟ ଭକ୍ଷଣ କରୁ ତୁହି ସ୍ୱଗ ।
ଶୁଭ କ ଅଶୁଭ ସର୍ବ ମଙ୍ଗଳହିଁ ତୁହି
ସଂହାରକାଳେ ସଂସାର ପାରୁ ଏକା ଦହି ।
ଆଦି ତୁ ଅନାଦି ମହାପ୍ରଳୟ ପୁରୁଷ
ସକଳ ବସ୍ତୁ ସକଳ ଭୂତେ ତୋର ବାସ ।
ଜୟ ତୁ ଜୟ ତୁ ଦେବ ସର୍ବପୂରେ ପଶୁ
ପାପିମାନଙ୍କର ପାପ କରପାରୁ ପାଂଶୁ ।
ଦେବ ଦାନବ ମାନବ ଜନ ଆଦିକର
ସମସ୍ତ ଦେବ ତୋହର ଉଚ୍ଛିଷ୍ଟ ଆହାରୀ ।
ପରଂବ୍ରହ୍ମ ପୁରୁଷ ତୁ ଚନ୍ଦ୍ର ସୂର୍ଯ୍ୟଆଦି
କେ ବର୍ଣ୍ଣି ପାରିବ ହୋଇ ତୋର ପ୍ରତିବାଦୀ ।
ଆହାର ପାଇ ଦ୍ୱିଗୁଣ ବଢ଼େ ତୋର ଜ୍ୟୋତି
ଅନବରତେ ଭୋଜନେ ତୋର ଅତୃପତି ।
ସ୍ୱାହାର ବଲ୍ଲଭ ତୁହି ସ୍ୱଧା ପ୍ରାଣଗୁରୁ
ବଦନ୍ତି ଶାରଳା ଦାସ ଅଗ୍ନି ଦୟା କରୁ ।

---

### ଇନ୍ଦ୍ର ଅର୍ଜୁନ ଯୁଦ୍ଧ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଆଖଣ୍ଡଳ କଲେ ସହ୍ସ୍ରେ ଏସନକ ସ୍ତୁତି ।
ପ୍ରଣାମ କର ଶୋଇଲେ ଅଗ୍ନି ପାଦତଳ
କେବେହେଁ ନୋହିଲା ଶାନ୍ତ ସେହି କାଳାନଳ
ଦ୍ୱିଗୁଣ ବ୍ୟାପିଲା ମହା ମଉଷଧି ପାନେ
ଭୟ ପାଇ ଘୁଞ୍ଚିଗଲେ ଦେବ ମଘବାନେ ।
ଦେଖି ମହାକୋପ କଲେ କଶ୍ୟପ ନନ୍ଦନ
ବ୍ରହ୍ମଦେବତ ପୁରୁଷ ହୋଇ ତୁ ଅଜ୍ଞାନ ।
ମୋହର ବନସ୍ତୁ ଯେବେ ନ ଘେନିଲୁ ଚତେ
ଆଉ କାହା ବୋଲେ ତୃପ୍ତି ହୋଇବୁ ଜଗତେ

ମୋହର ଶାପ ପ୍ରତ୍ୟକ୍ଷେ ଫଳ୍ଲ କନା ତୋତେ
ଦଶଦ୍ୱ୍ରପଣେ ତୋହର ଦିନ ଯାଉ ନତ୍ୟେ ।
ଏତେବୋଲି ବାହୁଡ଼ିଲେ ଦେବ ପୁରନ୍ଦର
ଅର୍ଜ୍ଜୁନର ମୁଖ ଚାହିଁ ହେଲେ କୋପଭର ।
ଅଗ୍ନି ଘୁର ବଳେ କି ମୋ ତୋଷ୍ଠା ହୁଏ ଧ୍ୱଂସି
ଛନ୍ନଯୁଗ ହେଲା ବ୍ୟାଧି ରହିଅଛି ବସି ।
ତୁହି ଯେ ଯଥାର୍ଥ ଅଟୁ ମୋହର ବଇରି
ତୁ ଯେ ନାଶକରୁ ମୋର ଆକାଶରଶିରି ।
ଏହିକ୍ଷଣି ତୁହି ଏଥୁ ଆଡ଼ହୋଇ ଗଲେ
କ୍ଷଣକେ ଅଗ୍ନି ଲିଭନ୍ତା ମେଘ ବରଷିଲେ ।
ତୋହର ମୁଖକୁ ଚାହିଁ ସରିଲା ମୋ ବୁଦ୍ଧି
କହୁଁ କହୁଁ ମହାକୋପ କଲା ଜମ୍ଭଭେଦୀ ।
ପୁନି ଜାତହୋଇ ଦୁଷ୍ଟ ମୂର୍ଖହିଁ ହୋଇଲେ
ପାତକ ନ ଲାଗଇ ସେ ପୁନି ବଧକଲେ ।
ବାସବର ବଚନରେ ବୋଲେ ଧନଞ୍ଜୟ
ବୁଦ୍ଧି ହରାଇଲୁ ତାତ ଆଉ କି ଉପାୟ ।
ଶୁଣି କୋପାନଳ ମୂର୍ତ୍ତି ଦେବ ଆଖଣ୍ଡଳ
ଆଜ ରେ ପାଣ୍ଡବା ତୋର ପୂରିଲାଟି କାଳ ।
ହସ୍ତରେ ଯେ ଥିଲା ତାର ବଜ୍ର ମୁଦୁଗର
ରାଗେଣ ନେଇ ପିଟିଲା ଅର୍ଜ୍ଜୁନ ଉପର ।
ଶକ୍ରୁପଣ ଯେବେ ତୁହି କଲୁ ଫାଲଗୁନ
ତୋତେ ନାଶକରି ପଛେ ଲିଭାଇବି ଅଗ୍ନି ।
ଅଗ୍ନି ଦେଇଥିଲେ ପାର୍ଥେ ଯେ ବଜ୍ର ବିଭୂତି
ବାସବର ମୁଦ୍‌ଗର ଦେହେ ପଡ଼ିଗଲା ତୁଟି ।
କୋପେ ପ୍ରଜ୍ୱଳିତ ହେଲେ ଅମରାଧିନାଥ
ଅଜଗବ ଧନୁ ଇନ୍ଦ୍ର ଧରି ନିଜ ହାତ ।
ଲକ୍ଷେ ନାରାଚ ବାସବ ଏକାଠି ପୁରାଇ
ଅର୍ଜ୍ଜୁନର ଉପରକୁ ବିନ୍ଧିଲେ ନଠାଇ ।
ଅନୁକ୍ଷଣେ ବାଣ ପଡ଼େ ଅର୍ଜ୍ଜୁନ ଉପର
ବଜ୍ର ଅଙ୍ଗେ ସେ ନାରାଚ ବାଜି ହେଲେ ଚୂର
ଅର୍ଜ୍ଜୁନର ନାମ ଧରି ଡାକେ ବୈଶ୍ୱାନର
ବାବୁରେ ସର୍ପେ ପଳାଇ ପଶିଲେ ବିବର ।
ଇନ୍ଦ୍ର ସଙ୍ଗତେ ସମର କରନ୍ତି ଫାଲ୍‌ଗୁନ
ଭୂମିକି ନାରାଚ ଫିଙ୍ଗିଦେଲେ ଲକ୍ଷ ତିନି ।
ସର୍ପ ମଣ୍ଡୁକୀ ବିବରେ ଯେତେ ପଶୁଥିଲେ
ଅର୍ଜ୍ଜୁନର ଶରଘାତେ ସମସ୍ତେ ଛିଣ୍ଡିଲେ ।

ମାଇଲେ ଯେ ଅନବାର ଶର ପୁରନ୍ଦର
ଅର୍ଜ୍ଜୁନ ବୋଇଲା ତାତ ନ କର ସମର ।
ତୋଷ୍ଠା ତୋର ଭକ୍ଷିଲାଣି ଆଉର କି ଅଛି
ପିତା ପୁତ୍ରେ କି ସମର ଯାଅ ତୁମ୍ଭେ ଘୁଞ୍ଚି ।
ବାସବ ବୋଇଲେ ଆରେ ତୋତେନାଶକଲେ
ଖାଣ୍ଡବ ବନର ଦୁଃଖ ସରିବ ତୁ ମଲେ ।
ଆକର୍ଷି ଧନୁ ଧଇଲେ ପୁଣି ପୁରନ୍ଦର
କୋପେ ଅର୍ଜ୍ଜୁନ ଧଇଲେ ମମ୍ମୋହନ ଶର ।
ଅର୍ଜ୍ଜୁନ ସାକ୍ଷୀ କରଇ ଦିଗ୍‌ପାଳମାନଙ୍କୁ.
ପିତା ବଧଦୋଷ ଆଉ ନ ଦେବ ଯେ ମୁକୁ
ସାକ୍ଷୀ ଦେଇକରି ସେହି ପଣ୍ଡୁ ରାଜବଳା
ଧଇଲା ଗାଣ୍ଡିବ ଧନୁ ତେଜ ଅନର୍ଗଳା ।
ମୋହନା ଶର ଦେଇଣ ଅଛନ୍ତି ଯେ ଅଗ୍ନି
ଆକର୍ଷି ଧଇଲା ତାହା ବୀର ଫାଲଗୁନ ।
ବାସବର ସଙ୍ଗତରେ ଗନ୍ଧର୍ବେ ଯେ ଥିଲେ
ସମୋହନ ଶରଘାତେ ସର୍ବେ ନିମଜ୍ଜିଲେ ।
ପଡ଼ିଲେ ଗନ୍ଧର୍ବବଳ ଗଙ୍ଗାକୂଳେ ମାଡ଼ି
ବାସବ ଦେବ ବିନ୍ଧିଲେ ଉପରୋଧ ଛାଡ଼ି ।
କୃତାନ୍ତକ ଶର ଘେନି ଦେବ ସୁରରାୟେ
ବିଶ୍ୱରୂପ ଭେଦକଲେ ଅର୍ଜ୍ଜୁନର କାୟେ ।
କଳାମେଘ ପ୍ରାୟେ ଦେଖାଗଲେ ସସ୍ରଯୋନି
ବ୍ରହ୍ମାଣ୍ଡ ଅନ୍ଧାର ହେଲ ସେହିରୂପ ଘେନି ।
ଦେଖି ମନେ ବିଚାରଇ ବୀର ଅରଜୁନ
ସାଧୁ ସାଧୁ ବାସବ ହୋ ମହିମା ତୋ ଧନ୍ୟ
କାଳାନଳ ପ୍ରାୟେ ହେଲା ଶମ୍ଭୁଙ୍କର ଜ୍ୟୋତି
ବ୍ରହ୍ମାଣ୍ଡ ଅନ୍ଧାର କଲା କୃତାନ୍ତକ ମୂର୍ତ୍ତି ।
ବିନ୍ଧିଲେକ ସୂର୍ଯ୍ୟାବର୍ତ୍ତ ଶର ସବ୍ୟସାଚୀ
ବାସବର ଶରସବୁ ପକାଇଲେ ଲେଚି ।
ସାଧୁ ଧନଞ୍ଜୟ ସାଧୁ ମହିମା ତୋହର
ବିକାଶିଲା ତୋର ଏହି ଯଶ ତିନିପୁର ।
ବାସବ ଦେବତା ତହିଁ ହସିଲେ ତା ଦେଖି
ପୃଥ୍ୱୀଭେଦ ଶର ସନ୍ଧି ଉପ୍ରୋଧ ଉପେକ୍ଷି ।
ଏକଶରେ ଭେଦିଲାକ ସପତ ଭୁବନ
ରହିବାକୁ ଏକା ତହିଁ ସମର୍ଥ ଅର୍ଜ୍ଜୁନ ।
କୋପେ ପେଷଇ ନାରାଚ ଇନ୍ଦ୍ରର ନନ୍ଦନ
ପାଶୁପତ ନାରାଚ ଯେ ଈଶ୍ୱର ସମାନ ।

ତଳଇ ନାଗର ତେଜେ ବିଜୁଳିକ ଜିଣି
ଛେଦିଲା ବାସବ ଶସ୍ତ୍ରମାନ ବୀରମଣି ।
ତାହା ଦେଖି ପ୍ରଜ୍ୱଳିତ ହୋଇଲେ ମଘବା
ନିର୍ଘାତ ବାଣ ମାଇଲେ ଉପମା କି ଦେବା ।
କ୍ଷଣେକ ବିଶ୍ରାମ ନାହିଁ ଦୁହିଙ୍କ ସମର
ପିତା ପୁତ୍ରଙ୍କର ହେଲା ଯୁଦ୍ଧ ମହାଘୋର ।
ବାସବ ଦେଖିଲେ ଯହୁଁ ଯୁଦ୍ଧ ଅବିଶ୍ରାମ
ଅଙ୍ଗୁ ନିପଣ୍ଡ ଗଳିତ ହେଲା ମହାଘର୍ମ ।
ପିତାର ସମର ଦେଖି ଅଙ୍ଗାରପର୍ଣ୍ଣଗ
ଶତେକ ସହସ୍ର ବିଳ ଧନୁ ଧରି ଆଗ ।
ଆରେ ରେ ପାଣ୍ଡବା ବୋଲି ଉଚ୍ଚସ୍ୱରେ ଡାକି
ପାର୍ଥ ମଲା ଦିଗପାଳମାନେ ହୁଅ ସାକ୍ଷୀ
ସହସ୍ର ନାଗର ତେଜ ଅନର୍ଗଳ ଜାଣି
ଅର୍ଜ୍ଜୁନକୁ ନିରୋଧିଲା ସେ କୁମରମଣି ।
ନାଗର ପୁତ୍ରନ୍ତେ ତାହା ଦେଖି ସବ୍ୟସାଚି
ଆକାଶ ସମ୍ପଦ ହାରି ଆବର କି ବାଞ୍ଛି ।
ପାଶୁପତ ଶର ଯାହା ଈଶ୍ୱରଙ୍କ ଦେଲା
ଅନ୍ଧକ ତ୍ରିପୁର ଯେଉଁ ଶରେ ନାଶଗଲା ।
ସେହି ପାଶୁପତ ଶର ପେଷଇ ଫାଲ୍‌ଗୁନ
ଅଙ୍ଗାରପର୍ଣ୍ଣଗ ରଣେ ଅଚେତନ ପୁଣି ।
ଅଙ୍ଗାରପର୍ଣ୍ଣଗ ରଣେ ପଡ଼ିବାର ଶୁଣି
ମହାନାଗ ଆବେଷ୍ଟିଣ ବିଜେ ବଜ୍ରପାଣି ।
ଅର୍ଜ୍ଜୁନକୁ ପେଷଇ ଯେ ଶର ମଘବାନ
କରପତ୍ର ଯୋଡ଼ି ଆଗେ ବୋଲେ ଜୟସେନ
ହେ ସ୍ୱାମି ଅର୍ଜ୍ଜୁନଠାରେ ନ କର ସେନେହ
ଅଗ୍ନିର ନିମନ୍ତେ ପାର୍ଥ ଛାଡ଼ିଲାଣି ମୋହ
କ୍ଷଣେକ ସଂଗ୍ରାମ ଛାଡ଼ିଯାଅ ଦେବ ବୁଝି
ଜୟସେନ ଆବୋରିଲା ରଣେ ସବ୍ୟସାଚି ।
ବୈଶ୍ୱାନର ଡାକଦେଲେ ଶୁଣ ଫାଲଗୁନ
ମଣିନାଗ ପଳାଉଛି ବଂଶ ତାର ଘେନ
ଶୁଣି ନାରଚ ବିନ୍ଧିଲା ବୀରବର ପାର୍ଥ
ଛେଦିଲନ୍ତେ ଅଗ୍ନିରେ ନାଗ ପଡ଼ିଲେ ସମସ୍ତ ।
ଉରଗ ନାଗର ପୁତ୍ର ଅଟେ ମଣିନାଗ
ମଣିନାଗ ପୁତ୍ର ନାମ ଅଟେ ମହାନାଗ ।
ମହାନାଗ ପୁତ୍ର ନାମ ଶାର୍ଦ୍ଦୂଳ ଉରଗ
ଶାର୍ଦ୍ଦୂଳ ପୁତ୍ର ତନୟ ଚନ୍ଦ୍ର ନାମେ ନାଗ ।
ଏହାର ନନ୍ଦନ ଅଟେ କଳଙ୍ଗ ଉରଗ
ଏ କଳଙ୍ଗ ଉରଗର ପୁତ୍ର କାଳନାଗ ।
କାଳନାଗର ନନ୍ଦନ ଅଟେ ଆର୍ଦ୍ରାବଳୀ
ଆର୍ଦ୍ରାବଳୀର ନନ୍ଦନ ଅଟେ କୃତବଳୀ ।
ଉରଗ ବଂଶ ଗରୁଡ଼ ଭୟେ ପଳାଇଲେ
ଖାଣ୍ଡବବନ ଆଶ୍ରୟ କରିଣ ରହିଲେ ।
ଦହନକାଳେ ପଳାଉଥିଲେ ଶୂନ୍ୟେ ଉଡ଼ି
ଅର୍ଜ୍ଜୁନର ଶରଘାତେ ଅଗ୍ନି ମଧ୍ୟେ ପଡ଼ି ।
ଶୋଷକ କାଳସର୍ପ ଯେ କୁଳକର ପୁତ୍ର
ଉଡ଼ିଲା ସେ ଅର୍ଜ୍ଜୁନର ଦେଖି ଶରପତ୍ର ।
ଆଉ ସର୍ପମାନେ ଶରେ ପଡ଼ିଲେକ ଛୁଡ଼ି
ଶୋଷକ ସର୍ପ ସମୁଦ୍ର ମଧ୍ୟେ ଯାଇ ପଡ଼ି ।
ସେ କାଳସର୍ପ ଯମୁନା ଧାରେ ଧାରେ ଗଲା
ହସ୍ତିନା ରାଜ୍ୟେ ବାରୁଣାବନ୍ତରେ ରହିଲା ।
ଜୟ ଭୁ ଶାରଳା ମାଗୋ ସିଂହ ତୋ ବାହନ
ଦୁର୍ଗାରୂପେ କଲ ମାତ ମହିଷ ନିଧନ ।
କାଳିକା ରୂପରେ କଲୁ ରକ୍ତବୀର୍ଯ୍ୟ କ୍ଷୟ
ଚଣ୍ଡୀରୂପେ କଲୁ ମାତ ଚଣ୍ଡମୁଣ୍ଡ ଜୟ ।
ଶାକମ୍ଭରୀରୂପେ କଲୁ ଘୋର ଦୈତ୍ୟ ବଧ
କାତ୍ୟାୟିନୀ ରୂପେ କଲୁ ଅସୁରଙ୍କୁ ସାଧ ।
ଶୁମ୍ଭ ନିଶୁମ୍ଭ ଅସୁର ମାଇଲୁ ଗୋ ମାୟେ
ଶାରଳା ଦାସ ସେବଇ ନିତ୍ୟେ ତୋରପାୟେ

---

## ଶୋଷକ ଶରଣ

ମନୁ ପତ୍ୱରନ୍ତ ଶୁଣ ଅଗସ୍ତି ମୁନି ହେ
ଏଠାରେ ପଡ଼ିଲ ମୁହିଁ ବିଷମ ସନ୍ଦେହେ ।
ଶୋଷକ କାଳସର୍ପ ଯେ ଗଲାକ ପଳାଇ
ବଂଶ ତାର ନାଶକଲା ଏକା ହୋଇ ଯାଇ ।
କାହିଁ ରହିଲା କେ ତାକୁ ରଖିଲା ତା କହ
ନ ଦହିଲା କିଆଁ କାଳାନଳ ଧନଞ୍ଜୟ ।
ଅର୍ଜ୍ଜୁନ ନାରଚ ତାକୁ ଛାଡ଼ିଲା କେମନ୍ତେ
ଏ ବଡ଼ ସଂଶୟ ଜାତ ହେଲା ମୋର ଚିତ୍ତେ
ମାତ୍ର ଉଡ଼ିଗଲେ ଅଗ୍ନି ଡାକଇ ପାର୍ଥଙ୍କୁ
ଛାଡ଼ ନ ଦିଏ ଅର୍ଜ୍ଜୁନ ମିଶା ପିମ୍ପୁଡ଼ିକୁ ।
ଶୋଷକ ପଳାଇଗଲା ଏ ବଡ଼ ବିଚିତ୍ର
ବିସ୍ତାରି କହ ହେ ମୁନି ଏଥିର ଚରିତ ।

ବଦନ୍ତି ଅଗସ୍ତି ଶୁଣ ମନୁ ଜ୍ଞାନବନ୍ତ
ବାରୁଣୀ ବନରେ ଦିନେ କର୍ଣ୍ଣ ବଳବନ୍ତ ।
ବୁଲି ଆସିଥିଲା ତହିଁ ଯାଉଥିଲା ଫେରି
ଶୁଣ ଯୁଗଟିଏ ବେନି ଶ୍ରବଣକୁ ଡେରି ।
ଅନ୍ତରାଳ ହୋଇ ବୁଲୁଥିଲା ସେହି ଅହି
ଶରଣ ପଶିଲା କର୍ଣ୍ଣ ପାଦତଳେ ଯାଇ ।
ସେ ସର୍ପ ବୋଇଲା ରଖ ତାତ ଆହେ କର୍ଣ୍ଣ
କ୍ଷତ୍ରିୟବର ଦେଖିଣ ପଶିଲି ଶରଣ ।
ଅଗ୍ନି ଦହନ କରୁଛି ଖାଣ୍ଡବବନକୁ
ମାରି ପକାଉଛି ପାର୍ଥ ସମସ୍ତ ଜୀବଙ୍କୁ ।
ଚଢ଼ିଲେଣି ମୋର ବଂଶଯାକ ଦହନରେ
ଶର ପବନଘାତରେ ଉଡ଼ିଲି ଶୂନ୍ୟରେ ।
ନ ପୁଣ ଜାଣଇ ସେହି ବୈଶ୍ୱାନର ଅଗ୍ନି
ଏକ୍ଷଣି ନାଶିବ ମତେ ପାଣ୍ଡବ ଫାଲ୍‌ଗୁନି ।
ପାରୁ ଯେବେ ରାଧେୟ ହେ ମୋତେ ରକ୍ଷା କର
ଦାନଶୂର ବୀରଶୂର ବୋଲି ମୁଁ ତୋହର ।
ଶରଣ ପଶିଲି ତୁହି ରକ୍ଷାକର ମୋତେ
କେହି ରଖି ନ ପାରିଲେ ଏ ତିନି ଜଗତେ ।
ମୋର ମାତାର ଭଗିନୀ ଅଟେ ବସୁମତୀ
ଶତଭାର ସ୍ୱର୍ଣ୍ଣ ତୋତେ ଦେଅଇ ସେ ନିତି ।
ତେଣୁ ଭରସା କଲଇଁ ତୋତେ ଆରେ ବାବୁ
ନାଗବଂଶ ଥିଲେ ତୁହି ସ୍ୱର୍ଣ୍ଣ ପାଉଥିବୁ ।
ସମୟରେ କରିବି ମୁଁ ତୋର ଉପକାର
ଏମନ୍ତ କହି ଶୋଷକ ପଡ଼ିଲା ପୟର ।
କର୍ଣ୍ଣ ବୋଇଲା ତୁ ସର୍ପ ନ ହୁଅ କାତର
ରହିଥାଅ ସୁଖେ ମୋର ରଥର ମଧ୍ୟର ।
ଅର୍ଜୁନ କୋପକୁ ଆମ୍ଭେ କରାଇବା ଶାନ୍ତ
ରହିଥା ରଥରେ ମୋର ନ କର ତୁ ଚିନ୍ତ ।
ଯେବେ ଅର୍ଜୁନ ଆମ୍ଭର ବୋଲି ନ ମାନିବ
ଆମ୍ଭର ନାଗତେ ତାର ପ୍ରାଣ ନ ରହିବ ।
କହୁଁକହୁଁ କର୍ଣ୍ଣର ରଥେ ରହିଲା ଶୋଷକ
ଗୁଡ଼ିଦେଲା ସେହିକାଳେ ସର୍ପକୁ ପାବକ ।
ହସ୍ତିନାକୁ କର୍ଣ୍ଣ ଯାଇ ଦୁର୍ଯ୍ୟୋଧନ ଆଗେ
କହିଲା ମଇଁ ଶୁଣ ଦୁଃଶାସନ ସଙ୍ଗେ ।
କପଟରେ ଅର୍ଜୁନକୁ କରାଇଲା ସତ୍ୟ
ଲହୁବୁହୁ ବ୍ୟାଧି ନାଶ ହୋଇବା ନିମିତ୍ତ ।

ଇନ୍ଦ୍ରର ଖାଣ୍ଡବ ବନ ମାଗିଲା ପାର୍ଥକୁ
ପାର୍ଥ ସେହି ବନ ଦେଲା ଖାଇବାକୁ ତାକୁ ।
ରାଗରେ ଖାଣ୍ଡବବନ ପୋଡ଼ଇ ଅନଳ
ପୂର୍ବେ ଦେଇ ନ ଥିବାରୁ ଦେବ ଆଖଣ୍ଡଳ ।
ଯେତେ ଜୀବଜନ୍ତୁ ରହିଥିଲେ ସେହି ବନେ
ଅର୍ଜୁନ ତାହାଙ୍କୁ ଛେଦି ପକାଉଛି ବାଣେ ।
ଜଣେ ନ ଛାଡ଼ଇ ସର୍ବେ ପଡ଼ନ୍ତି ଅନଳେ
ଦେବତା ଗନ୍ଧର୍ବ ଯକ୍ଷ ନାଗ ଅସ୍ତ୍ରବଳେ ।
ରଥ ଧନୁ ଶସ୍ତ୍ର ସବୁ ଆଣି ହୁତାଶନ
ଦେଇଛନ୍ତି ଅର୍ଜୁନକୁ ହେ କୁରୁରାଜନ ।
ମଘବା ସଙ୍ଗେ ସମର ହୋଇ ଅର୍ଜୁନର
ପଳାଇ ଆସି ଏ ସର୍ପ କହେ ମୋ ଆଗର ।
ଭୟରେ ଶରଣ ଆସି ମାଗିଲାକ ମୋତେ
ମୁଁ ଏହାକୁ ରଖିଅଛି ଦେଖ ମୋର ରଥେ ।
ଶୁଣିଣ ହରଷ ହେଲା ରାଜା ଦୁର୍ଯ୍ୟୋଧନ
ବୋଲନ୍ତି ଅଗସ୍ତି ଶୁଣ ହେ ମନୁ ରାଜନ ।
ଯେତେବେଳେ ଫାଲଗୁନ ମାଇଲାକ ଶର
କାଟି ପକାଇଲା ସବୁ ସର୍ପଙ୍କର ଶିର ।
ପବନାଶର ତାହାଙ୍କୁ ଆଣଇ ଉଡ଼ାଇ
ଅନଳ ମଧ୍ୟରେ ନେଇ ଦିଅଇ ପକାଇ ।
ସେହି ଶର ପବନର ଘାତେ ଏ ଶୋଷକ
ଉଡ଼ିଲା ଉଇଁସି ଦେଇ ଶୂନ୍ୟପୁରଯାକ ।
ଉଡ଼ି ଉଡ଼ି ପଡ଼ିଲା ସେ ସମୁଦ୍ର ମଧ୍ୟରେ
ପୁତ୍ରକୁ କୁଳିକ ନାଗ ଧଇଲା କୋଳରେ ।
ପଚାରିଲେ ସେ ପୁତ୍ରକୁ ସଚେତ କରାଇ
ଆରେ ପୁତ୍ର ଏଥେଁ ଆସି ପଡ଼ିଲୁ କିପାଇଁ ।
ଶୋଷକ ବୋଇଲା ତାତ ତୋର ବଂଶଯାକ
ଅର୍ଜୁନର ବାଣେ ମଲେ ଭକ୍ଷିଲା ପାବକ ।
ମୁହିଁ ଶର ପବନରେ ଉଡ଼ି ଉଡ଼ି ଆସି
ପଡ଼ିଲି ସମୁଦ୍ର ମଧ୍ୟେ ଆମ୍ଭେ ନୋହୁ ଦୋଷୀ
ଚଉଦ ବ୍ରହ୍ମାଣ୍ଡ ବୁଲେ ଅର୍ଜୁନର ଶର
କେମନ୍ତେ ରହିବ ପ୍ରାଣ କୁହ ହେ ପିଅର ।
ସର୍ବଙ୍କ ପୁରୁଷ ଅଗ୍ନି କହିଦେବ ତାକୁ
ଏହିକ୍ଷଣି ବାଣେ ନେଇ ଦେବ ଅନଳକୁ ।
କୁଳିକ ବୋଇଲା ପୁତ୍ର ନ ହୁଅ କାତର
ପୂର୍ବରୁ ଅନଳ ମିତ୍ର ଅଟଇ ମୋହର

ଖଗବର ଭୟରୁ ସେ ରଖିଥିଲା ତୋତେ
ତୁ ମୋହର ପୁତ୍ର ବୋଲି ଜାଣଇ ସେ ତୋତେ
କଦାପି ସେ ନ ଜହ୍ନବ ଅର୍ଜ୍ଜୁନ ଆଗରେ
ପଣ ତୁ ଶରଣ ଯାଇ କର୍ଣ୍ଣର ପୟରେ ।
ଅର୍ଜ୍ଜୁନ ମୋହର ବଂଶ କଲାକ ନପାତ
କର୍ଣ୍ଣର ପାଶକୁ ପୁତ୍ର ଯାଅ ଯା ତୁରିତ ।
ଭାରତ ଯୁଦ୍ଧରେ ତୁହି ଶରରୂପେ ଯିବୁ
ନନ୍ଦିଘୋଷ ରଥ ସହ ପାର୍ଥକୁ ଗିଳିବୁ ।
ତେବେ ନାଗବଂଶ ବାବୁ କରିବୁ ଉଦ୍ଧାର
କର୍ଣ୍ଣ ସଙ୍ଗେ ଅର୍ଜ୍ଜୁନର ହୋଇବ ସମର ।
ମହାବଳବନ୍ତ କର୍ଣ୍ଣ ପେଷିବ ସେକାଳେ
ତୁହି ବଳବନ୍ତ ହେବୁ ତାର ମନ୍ତ୍ରବଳେ ।
ପିତାର ବାକ୍ୟେ ଶୋଷକ ସମ୍ପ୍ରତି ଅଇଲା
ଯମୁନାନଦୀର କୂଳେ ଯାଇ ଉତୁରିଲା ।
କର୍ଣ୍ଣର ପାଦରେ ଯାଇ ପଶିଲା ଶରଣ
ଏ କାରଣୁ ଛାଡ଼ିଦେଲା ତାକୁ ହୁତାଶନ ।
ଜୟ ତୁ ଜୟ ତୁ ମା ଗୋ ଶ୍ରୀଚଣ୍ଡୀ ଶାରଳା
ତୁହି ଯାହାକୁ ପ୍ରସନ୍ନ ହେଉ ଗୋ ମଙ୍ଗଳା ।
ତାହାର ଦୁଃଖ କ୍ଷଣକେ ହୋଇଯାଏ ଦୂର
ଶୂଦ୍ରମୁନି ଏ ଶାରଳା ଦାସ ତୋ ପୟର ।

---

## ଇନ୍ଦ୍ରର ପରାଜୟ ଓ ଅର୍ଜ୍ଜୁନର ବରଲାଭ

ଅଗସ୍ତିଙ୍କି ବୈବସ୍ୱତ ମନୁ କହେ ସେବା
ପିତା ପୁତ୍ର ଦୁହିଙ୍କର ସଂଗ୍ରାମ କଥିବା ।
ଶୁଣିବାକୁ ହୋଇଲେକେ ବଡ଼ଇ ଦୁର୍ଲ୍ଲଭ
କର୍ଣ୍ଣକୁ ଲାଗୁଛି ସ୍ୱାଦୁ ଆବର ସୁଲଭ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ମହାଭାରତର ମଧ୍ୟପର୍ବ ଗର୍ଭ ସ୍ଥିତ ।
ଶୁଣନ୍ତେ ଅତି ସୁସ୍ୱାଦୁ ସୁଧାପାନ ଜାଣି
ତୃଷାତୁର ଛୁଟଇ ଯେହ୍ନେ ସୁଶୀତଳ ପାଣି ।
ନିର୍ଘାତ ବାଣ ମାଇଲେ ଯହୁଁ ବଜ୍ରପାଣି
ତିନିପୁର କମ୍ପିଲା ସେ ବାଣ ଶବ୍ଦ ଶୁଣି ।
ଅଗ୍ନିଦେବତା ଡାକିଲେ ନ କର ତୁ ଭ୍ରାନ୍ତ
ବଜ୍ର ପରଶୁ ଘେନଣ କାଠ ତୁ ବକୋତ ।
ହେମଶର ପେଷ ତୁହି ନିର୍ଘାତ ଉପରେ
ଅଗ୍ନିଙ୍କ ବାକ୍ୟେ ମାଇଲେ ପାର୍ଥ ହେମଶରେ
ହେମଶରେ ସେ ନିର୍ଘାତ ଶର ନାଶ ଗଲା
ସାଧୁ ସାଧୁ ଅର୍ଜ୍ଜୁନ ଏ ଶବଦ ଶୁଭିଲା ।
ଇନ୍ଦ୍ର ଦେବତା ମାଇଲେ ବେଗେ ବଜ୍ରସୂଚୀ
ବଜ୍ର ପରଶୁ ଘେନଣ ଅର୍ଜ୍ଜୁନ ତା ନାଶି ।
ଇନ୍ଦ୍ର ପ୍ରହାର କଲେକ ପୁଣି ବଜ୍ରଶକ୍ତି
ଅମୋଘ ଶକତି ଘେନ ଅର୍ଜ୍ଜୁନ ନପାନ୍ତି ।
ପଞ୍ଚାଶର ପେଷିଲେ ପୁଣି ଜମ୍ଭଭେଦୀ
ବଜ୍ରଶରେ ଧନଞ୍ଜୟ ଶୀର ତାହା ଛେଦ ।
ସଂଗ୍ରାମେ ବିମୁଖ ପାଇ ବୀରବର ପାର୍ଥ
ମନଭେଦୀ ନାରାଚକୁ ଧଇଲେକ ହସ୍ତ ।
ଗୁଣେ ବସାଇ ଉଆର ତାଙ୍କୁ ଧନଞ୍ଜୟ
ବୋଲେ ଅଟଇ ପିତା ମୋ ଏହି ଦେବରାୟ
ରୋମକେ ନାରାଚ ହୋଇ ପଡ଼ିବୁ ତା ଦେହେ
ପ୍ରାଣେ ନ ମାରିବୁ ସେହି ପଡ଼ିଥିବ ମୋହେ
ଅର୍ଜ୍ଜୁନ ଆଜ୍ଞାରେ ଗଲା ଶର ମନଭେଦୀ
ଇନ୍ଦ୍ର ଦେବତା ଶରୀରେ ରୋମେ ରୋମେ ଭେଦି
ଯେସନେ ଭୟରେ ସର୍ପ ପଶଇ ବିବରେ
ଭେଦିଲେ ନାରାଚେ ତେହ୍ନେ ବାସବ ଶରୀରେ
ରୁଧିରରେ ଜର ଜର ହେଲା ଇନ୍ଦ୍ରକାୟ
ଐରାବତ ପୃଷ୍ଠେ ଢଳିପଡ଼େ ଦେବରାୟ ।
ଏଣେ ଜଗତୀ ଉପରେ ବିଜେ ଫାଲଗୁନ
ଖାଣ୍ଡବବନ ଦହନ ସୁଖେ କରେ ଅଗ୍ନି ।
ସହସ୍ରେ ନବ ଯୋଜନ ସେ ଖାଣ୍ଡବ ବନ
ତିନିରାତ୍ର ତିନିଦିନ କଲେକ ଦହନ ।
ଖାଣ୍ଡବବନ ସମସ୍ତ ଦହନ ହୋଇଲା
ତିନିବଂଶପୂର୍ଣ୍ଣଯାଏ ଅନଳ ଦହିଲା ।
ସମସ୍ତ ପାଦପରସ ପିଇ ବୈଶ୍ୱାନର
ଖଣ୍ଡିଲେକ ମହାବ୍ୟାଧି ଆରୋଗ୍ୟ ଶରୀର ।
ଇଚ୍ଛାରେ ଅନଳ ଯହୁଁ ଭକ୍ଷି ମହୌଷଧି
ହେଲେ ନିଷ୍କଳଙ୍କ ଗଲା ଲୁଦୁବୁଦୁ ବ୍ୟାଧି ।
ଭୁଞ୍ଜି ତୃପ୍ତହେଲେ କଲେ ଉଦରକୁ ପୁଷ୍ଟ
ଧଇଲେ ସେ ଶାନ୍ତରୂପ ଛାଡ଼ି ମତିଭ୍ରଷ୍ଟ ।
ସଂକଛି କର ବସନ ଖଣ୍ଡିଏ ସେ ପିନ୍ଧି
ଲମ୍ବିତ କରଣ ଶିରେ ଜଟା ଏକ ବାନ୍ଧି ।

ଜନ୍ଦେ ପଇତା ଲୋହିତ ବର୍ଣ୍ଣ ଦିଶେ ଜ୍ୟୋତ
ଅତ୍ୟନ୍ତ ସୁନ୍ଦର ଦିଶେ ତାଙ୍କ ବର୍ଣ୍ଣ କାନ୍ତି ।
ମିଷ୍ଟ ଭୋଜନେ ଯେସନେ ବ୍ରାହ୍ମଣ ତୃପତ
ଆଶ୍ୱାସି କହନ୍ତ ବସି ଅର୍ଜୁନର କତ ।
ମହାଔଷଧି ଅକ୍ଷତ ଘେନଣ ହସ୍ତରେ
ଦୂର୍ବାକ୍ଷତ ଦେଲେ ନେଇ ପାର୍ଥ ଲଲାଟରେ ।
ସୁବର୍ଣ୍ଣର ଫରୁଆ ଯେ ଅଷ୍ଟରତ୍ନେ ଖଚ
ସମ୍ଭାଳ ଫାଲ୍‌ଗୁନ ଏତେ ତୋର କାର୍ଯ୍ୟଅଚ୍ଛ
ପାରିଜାତକ ପନେ ସେ ଶୁଭ ଅନୁକୂଳେ
ଏହି ଔଷଧି ଅକ୍ଷତ ଘେନବୁ କପାଳେ ।
ଜଳେ ଅନଳେ ନୋହିବ ତୋର ପରାଜୟ
ତ୍ରଇଲୋକ୍ୟ ଜିଣିବୁ ତୁ ଆରେ ଧନଞ୍ଜୟ ।
ସ୍ତମ୍ଭନ ମୋହନ ବିଦ୍ୟା ବଶ ଉଚାଟନ
ଗୁଟିକା ଅଞ୍ଜନ ଆଦି ଧାରଣ ବିଧାନ ।
ପୁଣି ଅର୍ଜୁନକୁ ଦେଲେ ଏକ ମହୌଷଧି
ଏହାର ଭସ୍ମ ଲେପିଲେ ଯିବ ନାନାବ୍ୟାଧି ।
ଦେଲେ ପୁଣି ମଉଷଧି ଦହନ ବିଭୂତି
ଅଙ୍ଗେ ଥିଲେ ନ ଭେଦିବ ବଜ୍ରଶର ଶକ୍ତି ।
ମହାମନ୍ତ୍ର ପଢ଼ି ଆପେ କଲେକ ଆଶିଷ
ତ୍ରଇଲୋକ୍ୟ ବାବୁ ତୋତେ ପ୍ରାପ୍ତ ହେଉ ଯଶ
ଯାବତ ଅସାଧ୍ୟ ମନ୍ତ୍ର ସାଧ୍ୟ ହୋଇ ତୋର
କର୍ଣ୍ଣରେ ଅଜପା ମନ୍ତ୍ର କହିଲେ ଆଦର ।
ନାରାଚ ପେଷିବୁ ବାବୁ ଏ ମନ୍ତ୍ରକୁ ପଢ଼ି
ଏକବାଣ ପେଷିଲେ ସେ ହେବ ଶର ଗୃର ।
ଅରୁଣକିରଣ ନାମେ ମଣି ଏକ ଘେନ
ଅର୍ଜୁନର କରେ ଦେଲେ ବୈଶ୍ୱାନର ବହ୍ନି ।
ଏ ମଣି ଥିଲେ ବାବୁ ରେ ନ ପୀଡ଼ଇ ବ୍ୟାଧି
ହରଇ ବିପତ୍ତି ବାବୁ ପ୍ରସରଇ ବୁଦ୍ଧି ।
ଯାହା ବାଞ୍ଛା କରିବୁ ସେ ହୋଇବ ପ୍ରାପତ
ଯାବତ ଚନ୍ଦ୍ରାର୍କେ ସିଦ୍ଧି ହୋଇବ ସମସ୍ତ ।
ଯେତେବେଳେ ସଂଗ୍ରାମକୁ ଯିବୁ ଆରେ ବାବୁ
ତୋର ଦକ୍ଷିଣ ଖମ୍ଭରେ ଆମ୍ଭେ ରହିଥିବୁ ।
ଯେତେ ଧନୁଶର ଆଣିଦେଲ ମୁହିଁ ମାଗି
ବାଞ୍ଛା ସିଦ୍ଧହେଲା ବାବୁ ନିଅ ତାହା ବେଗି ।
ଖାଣ୍ଡବ ବନ ଦହିଲେ ଅଗ୍ନି କରି ବାଦ
ସ୍ୱର୍ଗେ ସେହି ହରିନେଲେ ଇନ୍ଦ୍ରଙ୍କ ସମ୍ପଦ ।

ତିନିଯୁଗ ଯାଏ ମନ୍ଦଅଗ୍ନି ହୋଇଥିଲି
ଅର୍ଜୁନ ପ୍ରସାଦେ ଅଗ୍ନି ତେଜୋବନ୍ତ ହେଲି
ପୁଣି ସୁପ୍ରସନ୍ନ ହୋଇ ବୋଇଲେ ହୁତାଶ
ତିନିଯୁଗର ମୋ ବ୍ୟାଧି କଲୁ ତୁ ନିଃଶେଷ ।
ଯେସନେକ ନିଷ୍କଳଙ୍କ ହେଲି ମୋର କାୟ
କଳଙ୍କ ନ ଲାଗୁ ତୋର ବଂଶେ ଧନଞ୍ଜୟ ।
ଏ ସକଳ ବ୍ରହ୍ମାଣ୍ଡର ମୁହିଁ ଅଟେ ମୂଳ
ମୁହିଁ ଦହନ କରଇ ଦୁରିତ ସକଳ ।
ନିଷ୍କଳଙ୍କ ହେଲି ବାବୁ ତୋର ପରସାଦେ
ମୋହର କଲ୍ୟାଣେ ବାବୁ ନ ପଡ଼ ପ୍ରମାଦେ ।
ଜଳ ଅନଳ ଝଡ଼ରେ ନ ଛୁଟୁ ତୋ କାୟ
ସଂଗ୍ରାମରେ ପାଇବୁ ତୁ ସର୍ବଠାରେ ଜୟ ।
ବୈବସ୍ୱତ ମନୁ ତହୁଁ ମୁନିଙ୍କୁ ପୁଚ୍ଛିଲେ
ଇନ୍ଦ୍ରଦେବ ମୋହେ ପଡ଼ି କେଉଁଆଡ଼େ ଗଲେ
ଅଗସ୍ତି କହନ୍ତି ଶୁଣ ଏଥିର ଚରିତ
ଯାହା ଶୁଣନ୍ତେ କଳୁଷ ନ ରହଇ ଗାତ୍ର ।
ପିତା ପୁତ୍ର ଦୁହିଁଙ୍କର ଯୁଦ୍ଧ ଶଚୀ ଶୁଣି
ବୃଷ୍ଟିଙ୍କ ବିମାନେ ବିଜେକଲେ ଗୋସାମଣୀ ।
ଇନ୍ଦ୍ରଙ୍କୁ ସଚେତ କରି ପଚାରନ୍ତି ବାଣୀ
ତୁମ୍ଭେ ଚହ୍ନି ନ ପାରିଲ ପୁତ୍ର ଫାଲଗୁନ ।
ସ୍ୱାମି ଅର୍ଜୁନକୁ କୋପକଲ ଦେବରାୟ
ଅଗ୍ନିଦେବ ଭିଆଇଲେ ଏସନ ଉପାୟ ।
ଶାସ୍ତ୍ରମତେ ପରାଜୟ ହୋଇଲ ତୁମ୍ଭଙ୍କୁ
ଭଲ ପ୍ରମାଦ ଚିନ୍ତିଲ ତୁମ୍ଭେ ଅର୍ଜୁନକୁ ।
ଖାଣ୍ଡବ ବନର ଲାଗି ଚିନ୍ତା ସେ ନ କର
କରିବ ଏରୂପ ତୋଟା ପାର୍ଥ ପୁନର୍ବା ।
ଅର୍ଜୁନକୁ ଶଚୀଦେବୀ କୋଳରେ ବସାଇ
ବହୁତ କଲ୍ୟାଣ ତାକୁ କଲେ ମହାଦେଈ ।
କପାଁ ତୁରେ ଫାଲଗୁନ ଏଡ଼େ କଥା କଲୁ
ଅନଳେ କେତେ ପଦାର୍ଥ ଧ୍ୱଂସ କରିଦେଲୁ ।
ଅର୍ଜୁନ ବୋଇଲେ ମାତ ମୋର ଦୋଷ ନାହିଁ
କପଟେ ଅଗ୍ନିଦେବତା ସତ୍ୟ ସେ କରାଇ ।
ଅଗ୍ନି ଛନ୍ଦ ମାୟା ମୁହିଁ ଜାଣି ନ ପାରିଲି
ଦୁର୍ଭିକ୍ଷ ବ୍ରାହ୍ମଣ ପ୍ରାୟ ମଣି ସତ୍ୟ କଲି ।
କଲେ ହୋଇଲୁକ ଆସି ଏସନକ କୃତ୍ୟ
ନ ଜାଣି ଦ୍ୱନ୍ଦ୍ୱ କଲେ ମୋ ତୁଲେ ପୁରୁହୂତ

ଶଚୀ ବୋଲେ ଅରଜୁନ କେମନ୍ତେ ଯେ ହେବ
ଏବେ ପୁତ୍ରମାନେ ମୋର ନାଶ ଗଲେ ସର୍ବ
୯ଥିକୁ ଉପାୟ ତୁମ୍ଭ କର ଗୋ ବିଭଷ୍ଣ
ତୁ ବିଶ୍ୱ ଆତ୍ମଙ୍କୁ ବିଷ୍ଣୁ ଦୈବତ ସାକ୍ଷାତ ।
ତୋହର ବୁଦ୍ଧିରେ ବାବୁ ସମସ୍ତେ ଜୀଇଁବେ
ପାଇଲେ ଯେ ଯାହା ଦୋଷ ଏତେ ପରାଭବେ
ଯହୁଁ ବହୁତ ବିନୟ ହେଲେ ଠାକୁରାଣୀ
ଶୁଣି ଦୟା କଲେ ତାଙ୍କୁ ବୀର ଫାଲଗୁନ ।
ଅମୃତାଶରକୁ ଅଗ୍ନି ତାଙ୍କୁ ଦେଇଥିଲେ
ତତକ୍ଷଣେ ସେ ଶର ପାର୍ଥ ଗୁଣେ ବସାଇଲେ ।
ମନ୍ତ୍ର ପଢ଼ି ଅରଜୁନ ବୋଲେ ବାଣ ଯିବୁ
ଇନ୍ଦ୍ରର ପୁତ୍ରକୁ ତୁମ୍ଭ ଜୀବଦାନ ଦେବୁ ।
ଯହୁଁ ପେଷିଲେ ଅମୃତାଶର ଅରଜୁନ
ସଚେତ ହୋଇ ସମସ୍ତେ ବସିଲେକ ପୁଣ ।
ପୁତ୍ରମାନେ ସମସ୍ତେହେଁ ସଚେତ ହୋଇଲେ
ଯାଇଣ ଇନ୍ଦ୍ର ରାଜାର ସନ୍ନିଧେ ବସିଲେ ।
ଇନ୍ଦ୍ରରାଜା ନନ୍ଦନତା ସର୍ବଦେବେ ଶୁଣି
ପ୍ରବେଶ ହୋଇ ଆଶିଷ ସର୍ବେ କଲେ ପୁଣି ।
ତୋଟାଭଗ୍ନ ଦେଖି·ସର୍ବେ ବ୍ୟାକୁଳ ହୋଇଲେ
କ କର୍ମ କଲୁ ପାର୍ଥକୁ ସମସ୍ତେ ବୋଇଲେ
ପାର୍ଥ ବୋଲେ ତୁମ୍ଭେ କପାଁ ହେଉଛ ବିକଳ
ସର୍ବ ଦେବେ ତୁମ୍ଭେ ଏବେ କହୁନ୍ହିଁ ନ ଭଳ
ଏତେ କହି ପାର୍ଥ ଅଗ୍ନି ଦେବ ମୁଖ ଚାହିଁ
କେଉଁ ବିଧିର କରିବି କହ ଦେବସାଇଁ ।
ଅଗ୍ନି ଦେବତା ବୋଇଲେ ମୋତେ କ ପଚୁଚ
ଯେମନ୍ତ ପାର ତେମନ୍ତ ଦେବକାର୍ଯ୍ୟ କର ।
ଅଗ୍ନିଙ୍କଠାରୁ ଏସନ ବଚନ ଶୁଣିଣ
ଦେବତାଙ୍କ ଆଦେଶ ସେ କଲେକ ପାଳନ
ବିନ୍ଧିଲେ ଅମୃତାଶର ପୁଣି ସବ୍ୟସାଚୀ
ସମସ୍ତ ବୃକ୍ଷମାନ ଯେ ଯାହାଠାରେ ସଞ୍ଚି ।
ପୂର୍ବପରି ବୃକ୍ଷମାନେ ମେଲିଲେକ ଶାଖା
ଫଳପୁଷ୍ପମାନ କେହୁ କରିପାରେ ଲେଖା ।
ଦେଖିକରି ସର୍ବଦେବେ ଆନନ୍ଦ ହୋଇଲେ
ଧନ୍ୟ ଧନ୍ୟ ଅରଜୁନ ବୋଲିଣ ବୋଇଲେ
ଅର୍ଜୁନକୁ କୋଳକରି ଧରି ପୁରନ୍ଦର
ବହୁତ ଆନନ୍ଦ ସେହୁ ହେଲେ ବଜ୍ରଧର ।

ଆବର ଶଚୀଦେବୀ ଯେ ବହୁତ ଆନନ୍ଦ
ମୁଖ ବିକାଶଇ ଜବା ପୂର୍ଣ୍ଣିମାର ଚନ୍ଦ
ଅର୍ଜୁନ ମୁଖକୁ ଚାହିଁ ସହସ୍ରଲୋଚନ
ବର ମାଗ ବାବୁ ମୁହିଁ ହୋଇଲି ପ୍ରସନ୍ନ ।
ଅର୍ଜୁନ ବୋଇଲେ ତାତ ଯେବେ ଦେବବର
ଅଗ୍ନି ଦେଇଛନ୍ତି ମୋତେ ଯେତେ ଦେବଶର
ସେ ମୋତେ ପ୍ରାପତ ହେଉ ମନ୍ତ୍ର ସହିତରେ
କୃଷ୍ଣ ସଙ୍ଗେ ପ୍ରୀତି ମୋର ଥାଉ ନିରନ୍ତରେ ।
ତଥାସ୍ତୁ ହେଉ ବୋଇଲେ ସହସ୍ରଲୋଚନ
ସ୍ୱରଗକୁ ଯିବାପାଇଁ ଉଦବେଗ ମନ ।
ପୁଷ୍ପକ ବିମାନେ ନେଇ ଇନ୍ଦ୍ରକୁ ବସାଇ
ଅମର ବା'ରସ୍ୱତରେ ବିଜେ ଦେବୀ ଯାଇ ।
ଆବର ଅର୍ଜୁନେ ବର ଦେଇ ହୁତାଶନ
ଚହୁଁ ଚହୁଁ କେଣେ ହୋଇଗଲେ ଅନ୍ତର୍ଦ୍ଧାନ
ଅର୍ଜୁନ ସେଠାରୁ ଶସ୍ତ୍ରମାନ ଘେନିଗଲେ
ସେ ଦେବଶରକୁ ନେଇ କୈଳାସେ ଥୋଇଲେ
ନନ୍ଦିଘୋଷ ରଥ ଶ୍ୱେତ ଅଶ୍ୱଙ୍କ ସହିତ
ସେ ସମସ୍ତ ସମ୍ଭାଳିଲେ ଜଗତର ମାତ ।
ଗଉରୀଙ୍କ ପାଦତଳେ ପଡ଼ି ଧନଞ୍ଜୟ
ସୁମରିଲେ ଦେବୁ ମାତ ଶସ୍ତ୍ର ରଥ ହୟ ।
ଲୟ ବୋଧନ ଏ ମନ୍ତ୍ର ଦେଲେକ ପାର୍ବତୀ
ଲୋଡ଼ାବେଳେ ମନ୍ତ୍ର ପଢ଼ି ସୁମରିବୁ ଧାତି ।
ହିକ୍ଷୟ ପିନାକ ଧନୁ କରେ ଘେନି ଅସ୍ତ୍ର
ତୂଣୀରେକ ଘେନି ତହୁଁ ଚଳେ ସବ୍ୟସାଚୀ ।
ତପୋଧନ ରୂପଦେଖି ଗଲା ଫାଲଗୁନ
ଶିରେ ବାନ୍ଧିଲେ ପିଙ୍ଗଳ ଜଟାଗୋଟି ଭିନ ।
ବିଭୂତି ଭୂଷଣ ମୁଦ୍ରା ସ୍ଫଟିକର କଣ୍ଠେ
ତାମ୍ର ବସନ ଆରୋପି ଶରୀର ଉଦ୍ୟାନେ ।
ପ୍ରବାଳ ଡୋର ଗୋଟିଏ ଭିଡ଼ିଦେଇ କଟି
ଗଣ୍ଡସ୍ଥଳରେ ଉରଗ କାଛଟା କର୍ପଟି ।
ଏସନକ ସ୍ୱରୂପ ଯେ ରୁଦ୍ରରୂପ ଚିହ୍ନ
ଯତ୍ୟରକ୍ଷା ଅର୍ଥେ ପାର୍ଥ ବୁଲେ ଘୋର ବନ ।
ଅନେକ ସାନନ୍ଦ ବୀର ମନରେ ହରଷ
ଯେତେକ ଗହନ ବନ ତେତେକ ସନ୍ତୋଷ ।
ଏମନ୍ତେ ପାର୍ଥ ଅନେକ ତୀର୍ଥ ଭ୍ରମି ଭ୍ରମି
ବହୁତ ଗିରି କନ୍ଦର କାନନକୁ ଗମି ।

ଏମନ୍ତ ଯେ ବନବାସ ଦ୍ୱାଦଶ ବରଷ
ତହିଁ ଶୁଭେ ଗଲା [illegible]ବର୍ଷ ସାତମାସ ।
ଶ୍ରୀଚଣ୍ଡୀ ଶାରଳାଙ୍କର ଚରଣେ ଦଇମା
ଦୟାକର ଯାହା ମୋତେ କହେ ଯାଜ୍ଞସେମା ।
ତାହା ଶୁଣି ମୁହିଁ ଗ୍ରନ୍ଥେ କରଇ ଲିଖନ
ନୋହିବାକୁ କଥା ଲଜ୍ଜା ନାହିଁ ମୋର ମନ
ଶାରଳା ଦାସକୁ ପାଦେ ରଖ ଜଗନ୍ନାଥେ
ଜନ୍ମେ ଜନ୍ମେ ଶରଣ ମୁଁ ତୁମ୍ଭ ପାଦଗତେ ।

---

## ଖାଣ୍ଡବବନ ଦହନରୁ ଯେଉଁ ମାନେ ବଞ୍ଚିଲେ ସେମାନଙ୍କର ନାମ

କରପତ୍ର ଯୋଡ଼ି ପୁଚ୍ଛେ ବୈବସ୍ୱତ ମନୁ
ପାଦ୍ୟ ଅର୍ଘ୍ୟଦେଇ ପୂଜାକରି ଘଟସୂନୁ ।
ଶୁଣିଲି ମହାତ୍ମା ହେଲା ଖାଣ୍ଡବ ଦହନ
ମହାପାତକ ମୋହର ହୋଇଲା ଖଣ୍ଡନ ।
ସବୁ ପୋଡ଼ିଗଲେ କା କେ ରହିଲେ ଉବୁରି
ସେ କଥା ମୁନି ମୋ ଆଗେ କହ ହେ ବିସ୍ତାରି
ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
ଶୋଷକ କାଳସର୍ପ ଯେ କୁଳକ କୁମର ।
କର୍ଣ୍ଣରେ ଶରଣ ପଶି ସେ ରକ୍ଷା ପାଇଲା
ମିତ୍ରପୁତ୍ର ବୋଲି ତାକୁ ଅଗ୍ନି ଛାଡ଼ିଦେଲା ।
ତାରକ୍ଷୀ ନାମରେ ଥିଲା ଗୋଟିଏ ଚଢ଼ାଇ
ସେହି ଶରଣ ପଶିଲା ଗର୍ଭବତୀ ହୋଇ ।
ରଖିଲେ ସେ ଚଢ଼ାଇକୁ ଅଗ୍ନି ଦୟାବନ୍ତ
ସେ ପୁଣି ପ୍ରାଣ ପାଇଲା ଅଗ୍ନିପାଶେ ଥାଇ ।
ଚକ୍ରବାକ ଅଗ୍ନିରେ ଯେ ଶରଣ ପଶିଲା
ଦୟାକର ଅଗ୍ନି ତାର ଶରଣ ରଖିଲା ।
ତାମ୍ରଚୂଡ଼ ନାମେ ଥିଲା ଚଢ଼େଇ ଗୋଟିଏ
ଶ୍ରୀରାମଙ୍କ ମୁକୁଟ ତା ଶିରପରେ ଥାଏ ।
ଦେଖି ତାହାକୁ ଛାଡ଼ିଲେ ଧନଞ୍ଜୟ ବୀର
ଆଦର ଦୟାହିଁ ତାକୁ କଲେକ ଅପାର ।
ବସ୍ତୁ ପ୍ରସାଦ ନାମରେ ଚଢ଼ାଇ ଗୋଟିଏ
ଶ୍ରଦ୍ଧାରେ ପାର୍ଥ ତାହାକୁ ଆଡ଼କରି ଦିଏ ।
ବସ୍ତୁପ୍ରସାଦ ନାମେ ଯେ ବସ୍ତୁ ବୃକ୍ଷ ଥିଲା
ଅଗ୍ନିଦେବତା ତାହାକୁ ତା ଘରେ ରଖିଲା ।
ରଖିଲେକ ପାଳଧୂଆ ଗଛ ବୈଶ୍ୱାନର
ତାଠାରେ ଶ୍ରଦ୍ଧା ଥିବାରୁ ଅଗ୍ନିଦେବଙ୍କର ।
ବସ୍ତୁ ପ୍ରସାଦ ବୋଲି ଯେ ଏକ ଅଶ୍ୱ ଥିଲା
ଅଗ୍ନିଦେବତା ତାହାକୁ ଶ୍ରଦ୍ଧାରେ ରଖିଲା ।
ନୀଳକଣ୍ଠ ଚଢ଼ାଇକୁ ପାର୍ଥ ରକ୍ଷା କଲେ
ତା ଶରୀରେ ଯହୁଁ ରୁଦ୍ରଚିହ୍ନକୁ ଦେଖିଲେ ।
ପୁଷ୍ପଙ୍କ ମଧ୍ୟରେ ରକ୍ଷା ପାଇଲା ବକୁଳ
ଦେବେ ସ୍ତୁତି କଲେ ଯହୁଁ ରଖିଲେ ଅନଳ ।
ଜବାକୁସୁମ ଆଦିତ୍ୟ ଦେବ ମାଗି ନେଲେ
ତେଣୁ ତାହାକୁ ଅନଳ ଦେବତା ରଖିଲେ ।
ତଗର ପୁଷ୍ପକୁ ମାଗି ନେଲେ ପିତୃଗଣ
ମୟ ଦାନବ ମାଗିଲା ପାର୍ଥକୁ ଶରଣ ।
ତାହାକୁ ରଖିଲେ ଅଗ୍ନି ପାଣ୍ଡବଙ୍କ ହିତେ
ସାରଙ୍ଗପକ୍ଷୀ ଯେ ଗୃଧ୍ରପୁତ୍ରଙ୍କ ସହିତେ ।
ବଞ୍ଚିଲେ ଖାଣ୍ଡବବନୁ ରଖିଲେ ଅନଳ
ଯହୁଁ ସ୍ତୁତି କଲେ ତାଙ୍କୁ ଋଷି ମନ୍ଦପାଳ ।
ଶୋଷକ ସର୍ପ ତାରକ୍ଷୀ ତାମ୍ରଚୂଡ଼ ପକ୍ଷୀ
ବସ୍ତୁପ୍ରସାଦ ଚଢ଼ାଇ ଅଶ୍ୱ ବୃକ୍ଷ ଲେଖି ।
ସାରଙ୍ଗୀ ତା ଗୃଧ୍ରପୁତ୍ର ପକ୍ଷୀ ନୀଳକଣ୍ଠ
ମୟ ଦାନବ ବକୁଳ ଜବା ଯେ ତଗର ।
ଏହି ପନ୍ଦର ପଦାର୍ଥ ମାତ୍ର ରକ୍ଷା ହେଲା
ଆଉ ସବୁ ଗତେ ଅଗ୍ନିଦେବତା ଦହିଲା ।
ଯେତେବେଳେ ବର ଦେଇ ଗଲେକ ବାସବ
ଅର୍ଜ୍ଜୁନଙ୍କ ପାଦେ ପଡ଼ି ମୟ ଯେ ଦାନବ ।
ବୋଇଲା ଶିଳ୍ପଶାସ୍ତ୍ର ପଢ଼ାଅଛି ମୋର
ଲୋଡ଼ା ହେଲେ ଗଢ଼ିଦେବି ତୁମ୍ଭର ନଗର ।
ତୁମ୍ଭେ ମୋତେ ଜୀବଦାନ ଦେଲ ହେ ଅର୍ଜ୍ଜୁନ
ଦେବଦତ୍ତ ନାମେ ଶଙ୍ଖ ଦେଉଛି ମୁଁ ଘେନ ।
ଏ ଶଙ୍ଖ ଶବଦ ଶୁଣି ଶତ୍ରୁ ଯିବେ କ୍ଷୟ
ତାହାଙ୍କର ହୃଦେ ଜାତ ହେବ ମହାଭୟ ।
ବରୁଣର ଶଙ୍ଖ ସେହି ଦେଇଥିଲେ ମୋତେ
ତୁମ୍ଭଙ୍କୁ ଏ ଶଙ୍ଖ ମୁହିଁ ଦେଲଇଁ ସୁଚିତେ ।
ଆନନ୍ଦ ମନରେ ନେଲେ ସେ ଶଙ୍ଖ ଅର୍ଜ୍ଜୁନ
ଫୁଙ୍କନ୍ତେ ତହିଁରୁ ଜାତ ହେଲା ମହାସ୍ୱନ ।
ମୟକୁ ଚାହିଁ ଅର୍ଜ୍ଜୁନ କହିଲେ ସନ୍ତୋଷେ
ଲୋଡ଼ିବା ମାତ୍ରେ ଆସିବ ତୁମ୍ଭେ ଆମ୍ଭ ପାଶେ

ଏହିପର ଥିବ କୁମ୍ଭ ଆସୁର ପୀରତି
ମସ୍ତ ତନ୍ତୁଁ ଗଲା ତାଙ୍କୁ କରଣ ବିନତ ।
ଶ୍ରୀଚଣ୍ଡୀ ଶାରଳା ଦେବୀ ପାଦେ ମୋର ସେବା
ଶାରଳା ଦାସଙ୍କୁ ଗତି ମୁକତି ଯେ ଦେବା ।
ବନ୍ଦଇ ଶ୍ରୀଦୁର୍ଗା ମାଗୋ ଦୁର୍ଗତି ତାରିଣୀ
ଦୁଷ୍ଟଜନଙ୍କୁ ଖର୍ପରେ ପକାଉ ତୁ ହାଣି ।
ସୁଜନ ଜନମାନଙ୍କୁ ସୁଗତି ତୁ ଦେଉ
ସର୍ବଦା ପ୍ରାଣୀଙ୍କୁ ମାଗୋ ଦୟା କରିଥାଉ ।
ମହିଷାସୁରଙ୍କୁ ମାଗୋ ମାଇଲୁ ଯେ ବେଳେ
ତୋରହସ୍ତେତେତେବେଳେଥିଲାଯେ ତ୍ରିଶୂଳେ ।
ସଂସାର ଜନଙ୍କ ହିତେ ରହିଲୁ ଉଲଗ୍ନେ
ସିଂହ ପୃଷ୍ଠେ ଉଭାହେଲୁ ବସ୍ତ୍ର ନାହିଁ ଅଙ୍ଗେ ।
ଚଣ୍ଡ ମୁଣ୍ଡ ଅସୁରଙ୍କୁ ମାୟାରୂପେ ଭଣ୍ଡି
ଭକ୍ଷିଲୁ ତା ମାଂସଖଣ୍ଡ ନାମ ବହି ଚଣ୍ଡୀ ।
ରକ୍ତବୀର୍ଯ୍ୟ ରୁଧିର ଶୋଷିଲୁ ଗୋ ମାଏ
ନିରକ୍ତ ହୋଇ ଦନୁଜବର ଗଲା କ୍ଷୟେ ।
ଏମନ୍ତ କରି ରକ୍ତବୀର୍ଯ୍ୟକୁ ବିନାଶ
ଶିବେ ଈଶ୍ୱରଙ୍କୁ ମୋହି ରସେ କଲୁ ବଶ ।
ମୁହିଁ ଯେ ଶାରଳା ଦାସ ଅରକ୍ଷିତ ଜନ
ଜନ୍ମେ ଜନ୍ମେ ତୋ ଚରଣ କରଇ ବନ୍ଦନ ।

---

## ମନ୍ଦପାଳ ସ୍ତୁତି

ଏଥିଅନ୍ତେ ସେ ବଳଙ୍କ ଦେଶ ମନୁରାଜା
ଅଗସ୍ତି ଚରଣ ତଳେ କଲେ ଦିବ୍ୟପୂଜା ।
ସାବଧାନ ହୋଇ ତୁମ୍ଭେ ଶୁଣିମା ଗୋସାଇଁ
ଆବର କଥାଏ ମୁହିଁ ତୁମ୍ଭରେ ଜଣାଇ ।
ଖାଣ୍ଡବବନ ଦହନ ଶୁଣିଲି ଶ୍ରବଣେ
ପାପହରକୁ ମୋହର ଖଣ୍ଡିଲି ତକ୍ଷଣେ ।
ସାରଙ୍ଗୀ ତା ଶିଶୁପୁତ୍ର ବସିଲେ କେମନ୍ତେ
କିପାଁ ତାଙ୍କୁ ନ ଭକ୍ଷିଲେ ବଳେ ବୀତିହୋତ୍ରେ
ତାହାଙ୍କୁ ରଖିଲେ ଦେବୀ କେଉଁ ଉପାୟରେ
ପକ୍ଷୀହୋଇ ମନୁଷ୍ୟ ଯେ କେମନ୍ତେ ଜାତକରେ
ଏଥିର ଚରିତ କହ ଶୁଣେ ଦିବ୍ୟକଥା
ଅଗସ୍ତି କହିଲେ ଶୁଣ ଏଥିର ବ୍ୟବସ୍ଥା ।

ମନ୍ଦପାଳ ବୋଲି ଋଷି ବଡ଼ତପୀ ସେହି
ଊର୍ଦ୍ଧ୍ୱରେତା ହୋଇ ନିତ୍ୟ ଜପ କରୁଥାଇ ।
ଅପୁତ୍ରକ ହୋଇ ଋଷି ଶରୀର ଛାଡ଼ିଲା
ପିତୃଲୋକଙ୍କର ପାଶେ ଯାଇଣ ବସିଲା ।
ତପବଳେ ମହାଋଷି ପାଇଲାକ ଧର୍ମ
ଭରସା ନ ପାଇ ତାକୁ ଛାଡ଼ିଦେଲା ଯମ ।
ଋଷି ବୋଇଲେ କଠୋର ତପ ମୁହିଁ ସାଧେ
ତେଣୁ ପାଇଲି ଉତ୍ତମ ଫଳ ହେ ବିବୁଧେ ।
ଯମଦେବ ବୋଇଲେ ହୋ ଶୁଣ ମନ୍ଦପାଳ
ମାନବ ଦେହରେ ଜାତ ହୋଇ ଉଦ୍ଧତଳ ।
ଅବଶ୍ୟ ପାଳିବ ସେହି ଜାଣ ବେଦବାକ୍ୟ
ଉପୁଜାଇବ ସେ ଯାଗ କରି ପୁତ୍ର ଏକ ।
ଅପୁତ୍ରକ ଜନ ପାଏ ଯମ ଅଧିକାର
ଉତ୍ତମ ଲୋକରେ ବାସ ନ ହୁଅଇ ତାର ।
ଯମଦେବତା ମୁଖରୁ ଏସନକ ଶୁଣି
ବଡ଼ଚିନ୍ତା ପାଇଲେ ସେ ମନ୍ଦପାଳ ମୁନି ।
ଋଷି ଚିନ୍ତାତୁର ହେବା ଦେଖି ଦେବଗଣେ
ବୋଲନ୍ତି ଶୁଣ ହୋ ମନ୍ଦପାଳ ମହାମୁନେ ।
ଏବେ ତୁମ୍ଭେ ମର୍ତ୍ତ୍ୟପୁରେ ଯାଅସି ହେ ବେଗେ
କୌଣସି ଜୀବଠୁଁ ପୁତ୍ର ଜାତ କର ଏବେ ।
ଶୁଣି ମନ୍ଦପାଳଋଷି ଅଇଲେକ ବେଗେ
ଭୂରତେ ମିଳିଲେ ଯାଇ ମର୍ତ୍ତ୍ୟପୁର ଭାଗେ ।
ମୁନି ଭାଳେ ପୁତ୍ର ହେବ କେବଣହିଁ ବାଗେ
ଏତେକ ବିଚାରି ସେହୁ ବସି ଯୋଗମାର୍ଗେ ।
ତହୁଁ ମର୍ତ୍ତ୍ୟପୁରେ ଆସି ମିଳିଲେ ବହନ
ସ୍ୱର୍ଗ ଗଙ୍ଗାକୂଳେ ଦେଖେ ସେ ଖାଣ୍ଡବ ବନ ।
ତହିଁମଧ୍ୟେ ମୁନି ବେଗେ ପଶିଲେକ ଯାଇ
ଦେଖିଲେ ସାରଙ୍ଗୀପକ୍ଷୀ ବସିଣ ଅଛଇ ।
ତାହାର ଦିବ୍ୟରୂପକୁ ଦେଖି ମୁନିବର
ମୁନିରୂପ ଛାଡ଼ି ହେଲେ ପକ୍ଷୀର ଶରୀର ।
ସାରଙ୍ଗୀ ପକ୍ଷୀର ସଙ୍ଗେ ମନ୍ଦପାଳ ମୁନି
କାମରୂପେ କ୍ରୀଡ଼ା କଲେ ସେହି ତପୋଧନୀ ।
ରମଣ କେଳି କୌତୁକ କଲେ ତାର ତୁଲେ
ତାର ତହୁଁ ଶିଶୁପୁତ୍ର ଉପୁଜିଲେ ଭଲେ ।
ମନୁଷ୍ୟ ଶରୀର ତାଙ୍କ ଅଙ୍ଗେ ପକ୍ଷ ହୋଇ
ପିତାର ଗୁଣରେ ସେହି ନରରୂପ ପାଇ ।

ମାତାଗୁଣ ଯେନ ତାଙ୍କ ପକ୍ଷ ଅଛୁ ଅଙ୍ଗେ
ଶୁଣ ତୁମ୍ଭେ ମନୁରାଜ୍ୟେ ଏ କଥା ସୁବାଗେ ।
ବୈବସ୍ୱତ ପଚାରିଲେ ମୁନି ମୁଖ ଚାହିଁ
ପକ୍ଷୀ ଜରିପୁତ୍ର କିସ କଲେ ତପୀସାଇଁ ।
ରାଜା ପଚାରନ୍ତେ ତହିଁ କହେ ମୁନିବର
ଏକମନେ ଶୁଣ ଆହେ ମନୁ ନୃପବର ।
ସେ ଜରିପୁତ୍ରଙ୍କୁ ମାତା ନିକଟରେ ଥୋଇ
ସ୍ୱରଗ ଭୁବନେ ମୁନି ପ୍ରବେଶିଲେ ଯାଇ ।
ଅଗସ୍ତି ବୋଲନ୍ତି ବନ ଦହନ ହୁଅନ୍ତେ
ବ୍ୟାକୁଳ ହେଲା ସାରଙ୍ଗୀ ପୁତ୍ରଙ୍କ ନିମନ୍ତେ ।
ବିକଳେ ସେ ପୁତ୍ରଙ୍କର ପାଶେ ଅଛି ରହି
କେମନ୍ତେ ବା ଛାଡ଼ିଯିବ ବାଳକ ତ ଏହି ।
ଯୋଗବଳେ ମନ୍ଦପାଳ ତା ଜାଣି ଘେନଇ
ନିଶ୍ଚୟ ପୁତ୍ରଙ୍କୁ ମୋର ଅନଳ ଦହଇ ।
ଆଶ୍ରମରେ ଥାଇ ସ୍ତୁତି କଲେ ମନ୍ଦପାଳ
ହାହା କରି ହାହା କରି ବିଶାଳ ଅନଳ ।
ହେ ଅଗ୍ନି ତୁ ସର୍ବଜନ ଭକ୍ଷ ସର୍ବମୁଖ୍ୟ
ହେ ବୈଶ୍ୱାନର ଦେବତା ମୋ ପୁତ୍ରକୁ ରଖ
ହେ ହୁତାଶନ ତୁ ସର୍ବପ୍ରାଣୀ ହୃଦେ ଥାଉ
ବିବୁଧଙ୍କ ମଧ୍ୟେ ତୁହି ଶ୍ରେଷ୍ଠ ଯେ ବୋଲାଉ ।
ଜ୍ଞାନରେ ତୁ ଦେବ ହେଉ ଅଷ୍ଟ ପରକାର
ତୁହି କୋପ କଲେ ଧ୍ୱଂସ ହୁଅଇ ସଂସାର ।
ତୁହି କ୍ଷମା କଲେ ମହାଉତ୍ତମ ହୁଅଇ
ବିସର୍ଗ ଆଦାନ ଗତି ତୁ ସିନା କରଇ ।
ତୁ ସିନା ଧାତା ବିଧାତା ଅଟୁ ପ୍ରଜାପତି
ଏସନକ ସ୍ତୁତି ଶୁଣି ଅଗ୍ନି ତୋଷମତି ।
ବୋଇଲେ ପାବକ ମନ୍ଦପାଳ ବର ମାଗ
କହେ ମନ୍ଦପାଳ ହୁଅ ତୁ ପ୍ରସନ୍ନ ଆଗ ।
ଖାଣ୍ଡବ ବନେ ଅଛନ୍ତି ମୋର ଚାରି ପୁତ୍ର
ତୁ ତାହାଙ୍କୁ ନ ଦହିବୁ ଆହେ ବୀତିହୋତ୍ର
ଶୁଣି ତାହା ବୈଶ୍ୱାନର କଲେ ସନମତି
ଛାଡ଼ିଯିବ ନ ଦହିବ ତୋ ପୁତ୍ର ଯୁବତୀ ।
ଏମନ୍ତେ ଖାଣ୍ଡବ ବନ ଦହି ଆସେ ଅଗ୍ନି
ପକ୍ଷୀଏ ଶୋକ କରନ୍ତି କରି ଘୋରଧ୍ୱନି ।
ଜରିପୁତ୍ରଙ୍କ ଜନନୀ ନାମ ଯେ ଜରିତା
ବିଳାପ କରି ବୋଲଇ ପାଇ ଘୋରଚିନ୍ତା ।

ବାବୁରେ ଅଗ୍ନି ସକଳ ଦହି ଆସୁଅଛି
ଶୋକେ ସନ୍ତାପିତ ହୋଇ ସେ ପକ୍ଷୀ କହୁଛି
ପୁତ୍ରଙ୍କ ମରଣେ ମୋର ଜୀବନ ଅସାର
କେମନ୍ତେ ଏ ପୋଏ ମୋର ଏଥୁ ହେବେ ପାର
ଏହାଙ୍କୁ ଘେନି ଏଠାରୁ ଯାଆନ୍ତି ପଳାଇ
ନେବାକୁ ମୋର ଶରୀରେ ପରାକ୍ରମ ନାହିଁ ।
ଛାଡ଼ି କେମନ୍ତେ ଯିବି ମୁଁ ହୃଦେ ଗୁରୁଚିନ୍ତା
ବ୍ୟାକୁଳେ ପୁତ୍ରଙ୍କ ଆଗେ କହଇ ଯେ ମାତା
ବାବୁରେ ତୁମ୍ଭଙ୍କୁ ଛାଡ଼ି ଯିବଇଁ ମୁଁ କାହିଁ
ତୁମ୍ଭର ଶୋକେ ହୃଦୟ ପକାଇବ ଦହି ।
ତୁମ୍ଭଙ୍କୁ କୋଳରେ ଧରି ପଛକେ ମରିବି
ତୁମ୍ଭଙ୍କୁ ଅଗ୍ନିରେ ଦେଇ ଯାଇ ନ ପାରିବି ।
ବାବୁ ତୁମ୍ଭ ପିତା ବଡ଼ ନିର୍ଦ୍ଦୟରେ ପୁତ୍ରେ
ଛାଡ଼ିଗଲା ତାକୁ ଶୋକ ନ ଲାଗେ କାହିଁତେ ।
ପୁତ୍ରଙ୍କ ଶୋକ ଆକୁଳେ ସାରଙ୍ଗୀ ଜରିତା
ପୁତ୍ରଙ୍କର ନାମ ଧରି କରେ ଗୁରୁଚିନ୍ତା ।
ଶିରଶିଖ ସ୍ତମ୍ଭଶିଖ ଦ୍ରୋଣ ଚିତ୍ରଶିଖ
ଏମନ୍ତ ବୋଲି ଜରିତା ଡାକଇ ଅନେକ ।
ତୁମ୍ଭ ପିତା ମନ୍ଦପାଳ ଗଲେ ଏଥି ଥୋଇ
ଆମ୍ଭର କର୍ମରେ ଏହା ଥିଲା ଲେଖା ହୋଇ
ଜରିପୁତ୍ରେ ବୋଇଲେକ ଶୁଣ ଗୋ ଜନନୀ
ଛାଡ଼ିଯାଅ ଆମ୍ଭଙ୍କୁ ତୁ ଆସୁଅଛି ଅଗ୍ନି ।
ତୋର ଥିଲେ ଆମ୍ଭ କୁଳ ନୋହିବ ଯେ ନାଶ
ଜରିତା ବୋଇଲା ବାବୁ ମୂଷାଗାତେ ପଶ ।
ଅଗ୍ନିଭୟ ନୋହୁ ମୁଖେ ଧୂଳି ମୁଁ ଦିଅଇ
ପୁତ୍ରମାନେ ବୋଇଲେ ଯେ ମାତାଙ୍କୁ ଅନାଇଁ
ମାଗୋ ମୂଷା ଭକ୍ଷିବ ତ ବିବରେ ପଶନ୍ତେ
ମୃତକ ହୋଇବୁ ସିନା ଦହନ ଦହନ୍ତେ ।
ବୋଲଇ ଜନନୀ ଶୁଣ ଆରେ ଜରିବତ୍ସ
ମୂଷାକୁ ସଞ୍ଚାଣ ନେଲା ଦେଖିଲି ପ୍ରତ୍ୟକ୍ଷ ।
ମୁଁ ଏହା ଦେଖିଛି ତୁମ୍ଭେ ଭୟ ଯେ ନ କର
ଶୀଘ୍ର ଯାଇ ପଶ ବାବୁ ବିବର ଭିତର ।
ପୁତ୍ରେ ବୋଇଲେ ଶୁଣସି ତୁହି ଆଗୋ ମାଏ
ଗୋଟିଏ ମୂଷା ମଲେ କି ଆରେକ ନ ଥାଏ
ଭୁଞ୍ଜିବୁ ନାହିଁକି ଆମ୍ଭେ କର୍ମ ଫଳାଫଳ
ବିବରେ ମୂଷା ଉପରେ ଭକ୍ଷିବ ଅନଳ ।

ତୁମ୍ଭେ ବେଗେ ଯାଅ ମାତା ତୋର ଭର୍ତ୍ତା ପାଶ
ଆମ୍ଭେ ଶିଶୁହେଁ ଅଗ୍ନିରେ ହୋଇବୁ ନା ଧ୍ୱଂସ
ପାବକ ଭକ୍ଷିବେ ଯେବେ ଆମ୍ଭର ଏ ଗାତ୍ର
ସ୍ୱର୍ଗରେ ବସିବୁ ଆମ୍ଭେ ସହସ୍ରେକ ରାତ୍ର ।
ଜରିତା ସେଠାରେ ଥିଲା ଅଗ୍ନି ଅଛି ଯହିଁ
ବିକଳେ ଭାଳଇ ବସି ପୁତ୍ରମୁଖ ଚାହିଁ ।
ସେ ମରବେ ବୋଲି ଅଗ୍ନି ନ ଚାହେଁ ତାହାଙ୍କୁ
ପକ୍ଷୀଏ ବୋଲନ୍ତି ବଡ଼ଭାଇ ଯେ ଦ୍ରୋଣଙ୍କୁ ।
ତୁମ୍ଭେ ବଡ଼ଭାଇ କର ଆମ୍ଭଙ୍କୁ ଯେ ପାର
ଦାବୁ ଜ୍ୟେଷ୍ଠଭାଇ ଅଟେ ଜ୍ୟେଷ୍ଠ ଶ୍ରେଷ୍ଠ ସାର
କନିଷ୍ଠ ଭାଇମାନଙ୍କ କଷ୍ଟ ସେ ଫେଡ଼ଇ
ଦ୍ରୋଣ କରଯୋଡ଼ି ସ୍ତୁତି ଅଗ୍ନିକି କରଇ ।
ଶିର ଶିଖ ଭାଇ ଆଦି କଲେ ଅଗ୍ନିସ୍ତୁତି
ଜୟ ଜୟ ବୈଶ୍ୱାନର ପ୍ରଚଣ୍ଡ ମୂରତି ।
ସକଳ ଭକ୍ଷ ନ ଆସ ତୁମ୍ଭେ ଆମ୍ଭ ପାଖ
ଆମ୍ଭେ ଶିଶୁହେଁ ବାଳକ ଆମ୍ଭଙ୍କୁ ତୁ ରଖ ।
ତୁମ୍ଭ ବିନା ପିତା ମାତା ଆମ୍ଭର କେ ନାହିଁ
ପକ୍ଷଡେଣା ହୋଇନାହିଁ ଯିବୁ ଆମ୍ଭେ କାହିଁ ।
ଆନ ରକ୍ଷାକାରୀ ନାହିଁ ଶରଣ ଆମ୍ଭର
ତୋ ବିନୁ ଆମ୍ଭର କେହି ନାହିଁ ପ୍ରତିକାର ।
ତୋ ବିନୁ ଆମ୍ଭର କେହି ନାହିଁ ଜୀବଦାତା
ତୁହି ସେ ଅଗ୍ନି ସକଳ ଜନ ରକ୍ଷାକର୍ତ୍ତା ।
ତୋହର ଚରଣେ ଆମ୍ଭେ ପଶିଲୁଁ ଶରଣ
ଆମ୍ଭଙ୍କୁ ରଖି ଏଠାରୁ କର ତୁ ପ୍ରୟାଣ ।
ହେ ଅଗ୍ନି ସକଳ ଜନ କରୁ ତୁ ଉଦ୍ଧାର
ଆମ୍ଭମାନଙ୍କୁ ତୁ ବେଳେ ଏଥୁ ପାରିକର ।
ତୁ ଅଗ୍ନି ବିଷ ଅମୃତ ଆଦି କରୁ ପାନ
ତୁହି ତୁଷ୍ଟି ପୁଷ୍ଟି କର ପାଳୁ ପ୍ରଜାଜନ ।
ତୋହର ମହିମା ଅନ୍ତ କେ କରି ପାରଇ
ଦେବତାଏ ସ୍ତୁତି ତୋତେ କରନ୍ତି ଗୋସାଇଁ
ଚକ୍ଷୁ ପିଙ୍ଗଳ ଲୋହିତ ବର୍ଣ୍ଣହିଁ ତୋହର
ଯେସନେ ସୂକ୍ଷ୍ମେ ରହଇ ଆମ୍ଭର ଶରୀର ।
ତେସନେ କରି ହେବ ତୁ ଆମ୍ଭଙ୍କୁ ସମ୍ଭାଳି
ଆମ୍ଭେ ତୋହର ଶରଣ ବାରେ ପ୍ରତିପାଳ ।
ସନ୍ତୋଷେ ବୋଇଲେ ତାଙ୍କୁ ଦେବ ହୁତାଶନ
ତୁମ୍ଭର ସ୍ତୁତିରେ ମୁହିଁ ହୋଇଲି ପ୍ରସନ୍ନ ।
ଭୟ ନ କରଣ ତୁମ୍ଭେ ଥାଅ ନିଜ ଘରେ
ତୁମ୍ଭ ପିତା ବୋଲିଛନ୍ତି ସ୍ତୁତି ବଚନରେ ।
ଏବେ ତୁମ୍ଭ ସ୍ତୁତି ତହୁଁ ଅଧିକ ହୋଇଲା
ଏତେ ବୋଲି ଅଗ୍ନି ତହୁଁ ଆଡ଼ ହୋଇଗଲା
ଶୁଣ ହେ.ରାଜନ ତୁମ୍ଭେ ଏଥୁ ଅନନ୍ତରେ
ପାଞ୍ଚ ପକ୍ଷୀ ନ ଭକ୍ଷିଲା ମୁନିଙ୍କ ସ୍ତୁତିରେ ।
ମନ୍ଦପାଳ ଋଷି ସେହି ପୁତ୍ରଙ୍କର ଶୋକେ
ନିଜ ଭାର୍ଯ୍ୟା ଲଳିତାକୁ ବୋଲେ ଦୃଢ଼ବାକ୍ୟେ
କେଉଁପରି ଉବୁରିବେ ମୋର ପୁତ୍ର ଚାରି
ପୁତ୍ରଙ୍କ ଶୋକେ ବୋଇଲେ ଲଳିତା ସୁନ୍ଦରୀ ।
ତୁମ୍ଭେ ପୂର୍ବେ ସ୍ତୁତି କରିଅଛ ମନ୍ଦପାଳ
ପ୍ରସନ୍ନେ ତୁମ୍ଭଙ୍କୁ ବର ଦେଇଛି ଅନଳ ।
ଶୋକେ ମନ୍ଦପାଳ ବୋଲେ ଭାଳି ହୃଦଗତେ
ହେ ଧର୍ମ ମୋ ପୁତ୍ର କଥା ଲାଗଇ ନା ତୋତେ
ମୋ ପ୍ରାୟୁ ସଂସାରେ ମନ୍ଦ ନାହିଁ ଆନ ପ୍ରାଣୀ
କାଳକୁମରକୁ ଛାଡ଼ି ଅଇଲି ନ. ଜାଣି ।
ଅଗ୍ନିଦେବତା ସେ ସ୍ଥାନ ଛାଡ଼ି ତହୁଁ ଗଲା
ଜରିତା ମାତା ଯାଇ ତା ପୁତ୍ରକୁ ଦେଖିଲା ।
ପୁତ୍ରେ ଅଛନ୍ତି ଅଗ୍ନିରେ ନୋହି ଦଗ୍ଧ ତନୁ
ତନୟ ଦେଖି ଛାଡ଼ିଲା ଦୁଃଖ ପଞ୍ଚମନୁ ।
ମନ୍ଦପାଳ ଋଷି ତାହା ଦେଖିଲାକ ଯାଇ
ପୁତ୍ର ଭାରିଯାଙ୍କୁ ଦେଖି ସନ୍ତୋଷ ହୁଅଇ ।
ଜରିତାକୁ ଚାହିଁ ବୋଲେ ଋଷି ମନ୍ଦପାଳ
ବେଗେ ଚାରିପୁତ୍ର ଆଣି ଦିଅ ମୋ ର କୋଳ
ଏହାଙ୍କୁ ଅଗ୍ନିରୁ ମୁହିଁ ରଖିଲି ପ୍ରତ୍ୟକ୍ଷେ
ଦିଅ ଆଣି ଲଗାଇବି ମୋ ପୁତ୍ରଙ୍କୁ ବକ୍ଷେ ।
ପୁତ୍ର ନ ଥିବାରୁ ନିନ୍ଦା ପାଇଲି ମୁଁ ସ୍ୱର୍ଗେ
ଜରିତା ବୋଇଲେ ତୁମ୍ଭେ ପିତା କେଉଁବାଟେ
ତୋହର ଏ ପୁତ୍ରଙ୍କରେ କିସ ଅଛି କହ
ଛାଡ଼ିଗଲ ନାରୀପାଶେ ଆହେ ପୁଣ୍ୟଦେହ ।
ଲଳିତା ଭାରିଯା ତୋର ଅଟେ ଧର୍ମ ଅଙ୍ଗ
ତାହାକୁ ଭଜିଲୁ ସ୍ୱାମୀ ଛାଡ଼ି ପୁତ୍ର ସଙ୍ଗ ।
ଋଷିବୋଲେ ସ୍ତ୍ରୀ ଜାତିରେ ବିଶ୍ୱାସହିଁ ନାହିଁ
ହିଂସାଭାବ କଥା ତୁହି କହିଲୁ କପାଇଁ ।
ଅଗ୍ନିରୁ ମୁକତ କଲି ମୁହିଁ ପୁତ୍ର ଚାରି
ପୁତ୍ରଙ୍କୁ ମୁଁ ବଞ୍ଚାଇଲି ଅଗ୍ନି ତୋଷକରି ।

ସାବତ ହିଂସା ଭାବକୁ ବହିଲୁ କେମନ୍ତେ
ଏବେ ବେଗେ ଗୃହପୁତ ଆଣିଦିଅ ମୋତେ ।
ପୁତ୍ରଙ୍କୁ କୋଳରେ ଧରି ମନ୍ଦପାଳ ଋଷି
ମୁଖରେ ଚୁମ୍ବନ ଦେଇ ବଚନ ପ୍ରକାଶି ।
ଆରେ ପୁତ୍ରେ ଅଟ ତୁମ୍ଭେ ସ୍ୱଗୁଣ ନାଶେଷ
ତୁମ୍ଭ ଧର୍ମେ ଦାବୁ ତୁମ୍ଭେ ନ ଗଲ ତ ନାଶ ।
ଏସନକ ବୋଲି ତହୁଁ ମନ୍ଦପାଳ ଋଷି
ମୁଖରେ ଚୁମ୍ବନ ଦେଇ ବଚନ ଆଶ୍ୱାସି ।
ହେ ପୁତ୍ରେ ଅଟରେ ତୁମ୍ଭେ ଗୁଣରେ ବିବେକ
ତୁମ୍ଭଙ୍କୁ କେ ପଟାନ୍ତର ନାହିଁ ନଇଲୋକ ।
ଏସନକ କହି ସେହି ମନ୍ଦପାଳ ମୁନି
ସ୍ୱର୍ଗ ଭୁବନକୁ ଗଲ ଭାରିଯାକୁ ଘେନି ।
ତୁଳସୀ ବଲ୍ଲଭର ଶ୍ରୀଚରଣରେ ଆଶ
ନିରକ୍ଷ ଜନ ଅଟଇ ମୁଁ ଶାରଳା ଦାସ ।
ଦୟାରେ କହଇ ଯାହା ଶ୍ରୀଚଣ୍ଡୀ ଶାରଳା
ମୋହର କଣ୍ଠରେ ସେହି ପଦ କରେ ଖେଳା
ମୁହିଁ ତାହାହିଁ ଲେଖଇ ନାହିଁ ମୋର ଦୋଷ
ଭଲ ମନ୍ଦ ନ ବାଛିବ ସୁଜ୍ଞାମାନ ବିଦୁଷ ।

## ତାରାକ୍ଷୀ ଶରଣ

ଅଗସ୍ତିଙ୍କୁ ବୈବସ୍ୱତ ମନୁ ପୁଚ୍ଛା କଲ
ତାରକ୍ଷୀ ପକ୍ଷୀ କେମନ୍ତେ ଶରଣ ପଶିଲ ।
ଏଡ଼େ ବଡ଼ ପ୍ରମଦରୁ କେମନ୍ତେ ସେ ବର୍ତ୍ତି
ଏକେ ତ ପକ୍ଷୀ ହି ଶିଶୁ ଥିଲ ଗର୍ଭବତୀ ।
ଏହି ତାରକ୍ଷୀ ପକ୍ଷୀର ପାଶେ ପତି ନାହିଁ
ପୁତ ଦୁହିତା ତାହାର ନ ଥିଲେ ତ କେହି ।
ଏଥିର ଚରିତ ମୋତେ କହ ମୁନିବର
ତେବେ ଯେ ମନରୁ ଭ୍ରାନ୍ତି ଫିଟିବ ମୋହର
ଶୁଣିଣ ଅଗସ୍ତି ମୁନି ଅଳପ ହସିଲେ
ବହୁତ ପ୍ରଶଂସା ତାଙ୍କୁ ମନେ ମନେ କଲେ ।
ଆନନ୍ଦ ମନେ କହନ୍ତି ଯେ ଅଗସ୍ତି ମୁନି
ସାବଧାନ ହୋଇ ଶୁଣ ନୃପ ଚୂଡ଼ାମଣି ।
ତାରକ୍ଷୀ ଚରିତ କର ଶ୍ରବଣରେ ପାନ
ତୋହର ନାନା ପାତକ ହୋଇବ ଦହନ ।
ପୂର୍ବେ ଯେ ତାରକ୍ଷୀ ପକ୍ଷୀ ଥିଲ ବଡ଼କ୍ଷମ
ଶାପପାଇ ମର୍ତ୍ତ୍ୟପୁରେ ଲଭିଲ ଜନମ ।
ସ୍ୱର୍ଗର ଗନ୍ଧର୍ବ ସେହି ପକ୍ଷୀରୂପେ ଆସି
ଗୁପତ ହୋଇ ଖାଣ୍ଡବ ବନେ ଥିଲ ବସି ।
ଏହା ଶୁଣି ବୈବସ୍ୱତ ମନୁ ପଚାରଇ
ଏଥିର ଚରିତ ମୋତେ କହିବା ବୁଝାଇ ।
କହନ୍ତି ଅଗସ୍ତି ମୁନି ସନ୍ତୋଷ ଚିତ୍ତରେ
ତାରକ୍ଷୀର ପୂର୍ବକଥା କହିବା ସଧୀରେ ।
ତିଳୋତ୍ତମା ନାମେ ଥିଲ ଏକ ଅପସରୀ
ବହୁତ ବିଶ୍ୱାସ ତାକୁ କଲେ ବଜ୍ରଧାରୀ ।
ନୃତ୍ୟ ନବରଙ୍ଗ ରସେ ସେହି ପ୍ରତିଦିନ
ହରଣ କରଇ ଇନ୍ଦ୍ର ଦେବଙ୍କର ମନ ।
ଏହିପରି ଗଲ ପୁଣି କେତେକାଳବହି
ତିଳୋତ୍ତମା ଖଟିଆଇ ଇନ୍ଦ୍ର ପାଶେ ରହି ।
ଏକଦିନେ ରାତ୍ରକାଳେ ବୈଶାଖ ମାସରେ
ନିର୍ମଳ ଚନ୍ଦ୍ର ଉଦୟ ଶୁକଳ ପକ୍ଷରେ ।
ମଳୟ ପବନ ଧୀରେ ବହେ ଗନ୍ଧ ଘେନି
ଏମନ୍ତବେଳେ ଆସ୍ଥାନେ ସେ ସହସ୍ରଯୋନି
ତିଳୋତ୍ତମା ସୁନ୍ଦରୀକୁ ଆଣିବା ନିମନ୍ତେ
ବୃଦ୍ଧଶ୍ରବା ଗନ୍ଧର୍ବକୁ ପେଷିଲେ ଗୁପତେ ।
ଇନ୍ଦ୍ରର ଆଜ୍ଞାରେ ସେହି ଗନ୍ଧର୍ବ ଚଳିଲ
ତିଳୋତ୍ତମା ଅପସରା ପାଶରେ ମିଳିଲ ।
ଇନ୍ଦ୍ରର ଆଜ୍ଞା ତାହାକୁ କହିଲ ବୁଝାଇ
ବୃଦ୍ଧଶ୍ରବା ବୋଇଲ ତୁ ଆସ ବେଗ ହୋଇ
ଇନ୍ଦ୍ରର ଆଜ୍ଞା ଶୁଣିଲ ଯହୁଁ ସେହି ବାଳୀ
ବେଶଭୂଷା ହୋଇ ବେଗ ହୋଇ ଯାଇ ଚଳି
ବୃଦ୍ଧଶ୍ରବା ତାକୁ ଘେନି ଯାଉଁଯାଉଁ ବାଟେ
ବିହ୍ୱଳ ହେଲ ତା ମନ କାମର ଉଚାଟେ ।
ଏକେତ ଗନ୍ଧର୍ବୀ ପୁଣି ହି ଶିଶୁ ସୁନ୍ଦର
ବେଶ ଭୂଷଣ ସେ ପୁଣ ଘେନିଛି ଅପାର ।
ତିଳୋତ୍ତମା ରୂପ ଦେଖି ତା ଚିତ୍ତ ଟଳିଲ
ଗୃହ ଗଉରବ ତହିଁ କିଛି ନ ମାନିଲ ।
ଇନ୍ଦ୍ରକୁ ଭୟ ତାହାର ନୋହିଲ ମନରେ
ତିଳୋତ୍ତମାକୁ ସେ ବଳେ ଧଇଲ କୋଳରେ
ତିଳୋତ୍ତମା ବୋଇଲ ତୁ ଛାଡ଼ କିନା ମୋତେ
ଇନ୍ଦ୍ର ଶୁଣିଲେ ତ କୋପ କରିବଟି ତୋତେ
ଉଛୁର ହୋଇଲେ ଚଳି ହେବେ ସୁରଗଣ
ଛାଡ଼ ମୋତେ ବୃଦ୍ଧଶ୍ରବା ତଳିବା ବହନ ।

ମଦନରେ ଉନମତ୍ତ ହୋଇ ବୃଦ୍ଧଶ୍ରବା
ବୋଇଲା ସୁନ୍ଦରି ଚଳ ଆମ୍ଭେ ବନେ ଯିବା
ମଦନାତୁରେ ନ ମଣେ କଷ୍ଟ ବୃଦ୍ଧଶ୍ରବା
ବଳେ ହରିବାକୁ ମନେ ବଡ଼ ତାର ଅବା ।
ତା କଥାରେ ସନମତ ନ କଲା ସୁନ୍ଦରୀ
ବେଳୁବେଳ ବୃଦ୍ଧଶ୍ରବା ମଦନେ ଆତୁର ।
ବୋଇଲା ସୁନ୍ଦରୀ ମୋତେ ତୁ ନିରାଶ କଲୁ
ପକ୍ଷୀଜନ୍ତୁ ପ୍ରାୟେ ତୁହି ଫୁରୁଫୁରୁ ହେଲୁ ।
ଏତେକ ନିରାଶ ସଖି କଲୁ ଯେବେ ମୋତେ
ଘେନ ଅଭିଶାପ ମୁହିଁ ଦେଉଅଛି ତୋତେ ।
ପକ୍ଷୀଜନ୍ତୁ ହୋଇ ତୁହି ମର୍ତ୍ତ୍ୟ ହୁଅ ଜାତ
ଦ୍ୱାପରଯୁଗ ଅନ୍ତେ ତୁ ହୋଇବୁ ମୁକତ ।
ତାରକ୍ଷୀପକ୍ଷୀ ହୋଇବ ତୋର ନାମ ଜାଣ
ମୋହର କଥା କଦାପି ନ ହୋଇବ ଆନ ।
ଖାଣ୍ଡବ ବନେ ତୁ ପକ୍ଷୀରୂପ ଧରିଥିବୁ
ଯୁଗଶେଷ କାଳେ ନିଜ ତନୁକୁ ଧରିବୁ ।
ଏହି ଅଭିଶାପ ଯହୁଁ ଦେଲାକ ଗନ୍ଧର୍ବ
ଦଇବ ଲିଖନ କେହୁ ଅନ୍ୟଥା କରିବ ।
ଗନ୍ଧର୍ବ ସେଠାରୁ ତାକୁ ବେଗେ ଘେନିଗଲା
ତିଳୋତ୍ତମାକୁ ଇନ୍ଦ୍ରର ସନ୍ନିଧିରେ ଦେଲା ।
ଅପସରୀକୁ ଅନାଇଁ ଇନ୍ଦ୍ର ପଚାରଇ
ଏତେକ ଉତ୍ତର ତୁହି କଲୁ କାହିଁପାଇଁ ।
ତିଳୋତ୍ତମା କହିଲା ସେ ସମସ୍ତ ଚରିତ
ଶୁଣିଣ ବହୁତ କ୍ରୋଧ କଲେ ସୁରନାଥ ।
ବୋଇଲେ ଏଡ଼େ ଅନ୍ୟାୟ ତୁହି ଆଚରିଲୁ
ତିଳୋତ୍ତମାକୁ ତୁ ବାଟେ ବଳେ ହରୁଥିଲୁ ।
ଧର୍ମକୁ ସେ ନ ଲଙ୍ଘିଲା ତୋତେ କଲା ନାହିଁ
ବିନାଦୋଷେ ଶାପ ଦେଲୁ ଏହାକୁ କିପାଇଁ ।
ଏବେ ଆମ୍ଭ ଶାପ ତୋତେ ହେଉ ପରାପତ
ତୁହି ଯାଇଁ ମର୍ତ୍ତ୍ୟ ହୁଅ ପକ୍ଷୀରୂପେ ଜାତ ।
ସେହି ଖାଣ୍ଡବବନରେ ଦୁହେଁ ରହିଥିବ
ଯୁଗଶେଷ ହେଲେ ଯାଇ ମୁକତି ପାଇବ ।
ବୃଦ୍ଧଶ୍ରବା ହୋଇବ ଯେ ନୀଳକଣ୍ଠ ପକ୍ଷୀ
ତୋହର ନାମ ହୋଇବ ପକ୍ଷୀ ଯେ ତାରକ୍ଷୀ
ଦମ୍ଭକର ବନେ ଦୁହେଁ ଶାପ ଯେ ଲଭିଲେ
ଖାଣ୍ଡବ ବନରେ ପକ୍ଷୀ ପକ୍ଷିଣୀ ହୋଇଲେ ।

ଶୁଣିଣ ସେ ବୃଦ୍ଧଶ୍ରବା ବିକଳ ହୋଇଲା
ତିଳୋତ୍ତମାକୁ ଘେନିଣ ଖାଣ୍ଡବକୁ ଗଲା ।
ପକ୍ଷୀରୂପ ଧରି ଦୁହେଁ ରହିଲେକ ତହିଁ
ଏହିରୂପେ ତହିଁ କେତେକାଳ ଗଲା ବହି ।
ବୃଦ୍ଧଶ୍ରବା ଗନ୍ଧର୍ବ ଯେ କଷ୍ଟରେ ଗୋଦଇ
କଷ୍ଟ ଫେଡ଼ କଷ୍ଟ ଫେଡ଼ ଇନ୍ଦ୍ରଙ୍କୁ ଡାକଇ ।
ତାରକ୍ଷୀ ସର୍ବଦା ଧର୍ମ ଧର୍ମ ସୁମରଇ
ତାହା ତୁଣ୍ଡୁ ଧର୍ମବିନା ଆନ ନ ଆସଇ ।
ଶୁଣିଲ ହେ ମନୁରାଜ ପଚାରିଲ ଯାହା
ଏ ଉତ୍ତରେ ଯାହା ହେଲା ଶୁଣ ଏବେ ତାହା ।
ଯେକାଳେ ଅଗ୍ନି ଖାଣ୍ଡବ ବନକୁ ଦହିଲେ
ପ୍ରଚଣ୍ଡ ହୋଇ ସେ ଶିଖା ଊର୍ଦ୍ଧ୍ୱକୁ ଟେକିଲେ
ଏମନ୍ତେ ଅଗ୍ନି ଆସି ତା ବସାର ନିକଟେ
ତହୁଁ ଅଧିକ ପ୍ରଚଣ୍ଡ ହୋଇ ଜଳି ଉଠେ ।
ଦେଖିଲେ ଅଗ୍ନିର ତେଜ ଯହୁଁ ପକ୍ଷୀ ବେନି
ବୁଝିଲେ ପକ୍ଷୀଦମ୍ପତି ତାହା ପରିମାଣି ।
ଇନ୍ଦ୍ରର ନିରାଶେ ଯେହୁ ଅଗ୍ନି ହଇବତେ
ଅର୍ଜ୍ଜୁନକୁ ସତ୍ୟକରି ମାଗିଲେ ଗୁପତେ ।
ତେଣୁକରି ଅଗ୍ନି ହୋଇଛନ୍ତି ତେଜୋବନ୍ତ
ନିଶ୍ଚେ ଖାଣ୍ଡବ ବନକୁ କରିବେ ଧୂମାନ୍ତ ।
ଏତେ ବିଚାରି ସେ ଦୁହେଁ ଗଗନେ ଉଡ଼ିଲେ
କଷ୍ଟଫେଡ଼ କଷ୍ଟଫେଡ଼ ବୋଲିଣ ବୋଇଲେ
ତାରକ୍ଷୀ ପକ୍ଷୀ ଯେ ଧର୍ମ ଧର୍ମ ସୁମରଇ
ଏ ଶବଦ ଅର୍ଜ୍ଜୁନର କର୍ଣ୍ଣରେ ସମ୍ଭାଇ ।
ଅଗ୍ନି ଡାକଦେଲେ ପକ୍ଷୀ ଉଡ଼ିବାର ଦେଖି
ଶବ୍ଦ ଶୁଣ ସବ୍ୟସାଚି ଯାଉଅଛି ପକ୍ଷୀ ।
ଏହାଙ୍କର ଶବଦକୁ ଅର୍ଜ୍ଜୁନ ଶୁଣିଲେ
ମନଭେଦୀ ପେଷି ତାଙ୍କୁ ଶୂନ୍ୟରୁ ଆଣିଲେ ।
ତାରକ୍ଷୀ ପକ୍ଷୀର ଗର୍ଭବାସ ହେବା ଦେଖି
ମନେ ମନେ ଅର୍ଜ୍ଜୁନ ତ ହେଲା ବଡ଼ଦୁଃଖୀ ।
ଆବର ଡାକୁଅଛି ସେ ଧର୍ମନାମ ଧରି
ଆରପକ୍ଷୀ ଡାକେ କଷ୍ଟ ଫେଡ଼ ବୋଲିକରି
ଏ କଥା ଭଲ ତାହାଙ୍କୁ ଅର୍ଜ୍ଜୁନ ରଖିଲା
ତାଙ୍କଠାରେ ଅଗ୍ନିଙ୍କର ତେଜ ନ ଲାଗିଲା ।
ପକ୍ଷୀ ପକ୍ଷିଣୀ ସେ ଦୁହେଁ ପାର୍ଥକୁ ଦେଖିଲେ
ଅନେକ ପ୍ରକାରେ ତାଙ୍କୁ ସ୍ତୁତି ବଖାଣିଲେ ।

ଅର୍ଜୁନ ତାହାଙ୍କ ସ୍ତୁତିବାକ୍ୟେ ଶାନ୍ତ ହେଲେ
ତେଡ଼େ ପ୍ରମାଦରୁ ପକ୍ଷୀ ପକ୍ଷିଣୀ ରହିଲେ ।
ତୁ ଯେ ପଚ୍ଚରିଲୁ ମୋତେ ମନୁ ମହାରାଜ
ଏସନ ଅଟେ ତାରକ୍ଷୀ ପକ୍ଷୀର ଶରଣ ।
ଶୁଣି ମନୁ ମହାରାଜା ଆନନ୍ଦ ହୋଇଲେ
ମୁନିବରଙ୍କୁ ବହୁତ ବିନୟେ କହିଲେ ।
ତୁମ୍ଭର ପ୍ରସାଦେ ଏହା ଶୁଣିଲି ଶ୍ରବଣେ
ମହାପାତକ ସକଳ ହରିଲାଇଁ ଏଣେ ।
ନମସ୍ତେ ଶାରଳା ମାଗୋ ତୁ ସିଂହବାହିନୀ
ସିଦ୍ଧସ୍ଥାନେ ବାସ କରିଅଛୁ ଗୋସାମଣି ।
କାତି ଖପରକୁ ଧରିଥାଉ ତୁହି କରେ
ସିଂହବାହିନୀ ତୁ ମାତ ଭ୍ରମୁ ତିନିପୁରେ ।
ଛାଗଳ ମହିଷ ବୋଦା ଆଦି ତୁହି ଖାଉ
ରୁଧିର ଆହାରେ ଖୋଳମତି ହେଉଥାଉ ।
ଦିନେ ମାନ ଭୋଗ ତୋର ପଡ଼ିଆ ନୁହଇ
ଜନ୍ମେ ଜନ୍ମେ ମୁହିଁ ତୋର ସେବକ ଅଟଇ
ମୁହିଁ ଯେ ଶାରଳା ଦାସ ଅଟଇ ନରେଖ
ତୁ ଜଗତମାତା ତୋର ପାଦତଳେ ରଖ ।

---

## ଖାଣ୍ଡବ ବନର ପୂର୍ବ ବୃତ୍ତାନ୍ତ

ଏଥୁ ଅନନ୍ତରେ ପୁଣି ମନୁ ମହାରାଜା
ଅଗସ୍ତି ମୁନିଙ୍କ ପାଦେ କରି ଦିବ୍ୟ ପୂଜା ।
ବୋଇଲେ ଶ୍ରେ ମୁନି କଥାଏକ ପଚାରଇ
ଖାଣ୍ଡବ ବନ ସେ ନାମ ହୋଇଲା କପାଇଁ ।
କି ଅଶୁଭ ବେଳାରେ ସେ ହୋଇଲା ସ୍ଥାପନ
ଅନଳରେ ପୋଡ଼ିଗଲା ତେଡ଼େବଡ଼ ବନ ।
ବ୍ରହ୍ମା ଇନ୍ଦ୍ର ବୃହସ୍ପତି ଗ୍ରହ ତାରା ଯହିଁ
ଅନୁକୂଳ ଯେନଥିଲେ ପୋଡ଼ିଗଲା ସେହି ।
ଏଥିରେ ସଂଶୟ ମୁନି ଲାଗଇ ତ ମୋତେ
ବିସ୍ତାରି କହନ୍ତୁ ତାହା ମୋହର ଅଗ୍ରତେ ।
ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ତିନିଯୁଗର ଏ କଥା ଶୁଣ ଦିବ୍ୟମତି ।
ସତ୍ୟଯୁଗେ ବ୍ରହ୍ମା ବୃହସ୍ପତିଏ ବସିଲେ
ନାନା କଥାମାନ ତହିଁ କୁହାକୁହି ହେଲେ ।
ଇନ୍ଦ୍ର ଦେବତା ବୋଇଲେ ବ୍ରହ୍ମା ମୁଖ ଚୁହିଁ
କଥାଏକ ପଚାରିବି ଶୁଣିମା ଗୋସାଇଁ ।
ତୋଟା ଗୋଟିଏ ରୋପିବାପାଇଁ ହୁଏ ମନ
ଏଥିରେ ଯେ ଶୁଭଦିନ ଅନୁକୂଳ ଯେନ ।
ବ୍ରହ୍ମା ବୋଇଲେ ତୁ ବୃହସ୍ପତିଙ୍କୁ ପଚାର
ସେ ଦିଅନ୍ତୁ ଅନୁକୂଳ ବୁଝି ଦିନବାର ।
ଇନ୍ଦ୍ର ବୋଇଲେ ଯେ ବୃହସ୍ପତିଙ୍କୁ ଅନାଇଁ
ବୁଝ ଅନୁକୂଳ ଦିନ ଶୁଭ ଦେବାପାଇଁ ।
ଲକ୍ଷେକ ଗ୍ରନ୍ଥ ଅଛଇ ଜଉତିଷ ଶାସ୍ତ୍ର
ବୃହସ୍ପତି ଅନୁକୂଳ ଖୋଜିଲେ ବିଶେଷ ।
ଖୋଜିଲେ ଉତ୍ତମ ଯୋଗ ଲଗ୍ନ ବୃହସ୍ପତି
ନାଡ଼ୀ ନକ୍ଷତ୍ର କରଣ ଯୋଗ ବାର ତିଥି ।
ଇନ୍ଦ୍ରଙ୍କୁ ବୋଇଲେ ହେଲା ହେଲା ଅନୁକୂଳ
ବ୍ରହ୍ମାଙ୍କୁ ଯେନଣ ବେଗେ ଶୁଭ ଦେବା ଗୁଲ ।
ଆକାଶ ଗଙ୍ଗାର କୂଳେ ତୋଟା ଆରମ୍ଭ ଲେ
ଧାର୍ଯ୍ୟ ପ୍ରତି ମାପି ଶୁଭ ଅନୁକୂଳ ଦେଲେ ।
ଜଗନ୍ନାଥ ପ୍ରଭୁଙ୍କର ନାମକୁ ଉଚ୍ଚାରି
ଶୁଭ ଅନୁକୂଳେ ତାହା ମନରେ ସୁମରି ।
ପ୍ରଥମେ ସେ ବିଷ୍ଣୁ ବୃକ୍ଷ ସ୍ଥାପିଲେକ ନେଇ
ଆପେ ହସ୍ତେ ଇନ୍ଦ୍ରରାଜା ଖାତେତ ଖୋଳାଇ
ଆପେ ଇନ୍ଦ୍ର ବିଷ୍ଣୁ ବୃକ୍ଷ କଲେକ ସ୍ଥାପିତ
ମୂଳରେ ମୃତ୍ତିକା ଦେଇ ସ୍ଥାପେ ପୁରୁହୂତ ।
ବୃକ୍ଷ ସ୍ଥାପି ଇନ୍ଦ୍ର ବ୍ରହ୍ମା ବୃହସ୍ପତି ତିନି
ବଇକୁଣ୍ଠ ଭୁବନକୁ ଗଲେ ଅର୍ଘ୍ୟ ଘେନି ।
ବିଷ୍ଣୁ ପାଦେ ଅର୍ଘ୍ୟ ଦେଇଁ ବୋଲନ୍ତି ବାସବ
ଖଣ୍ଡନ ନୋହିବ ମୋର ତୋଟା ଦେବଦେବ
ଅଖଣ୍ଡ କରି ସେ ଯେଣୁ ଲଗାଇଲା ବୃକ୍ଷ
ଖାଣ୍ଡବ ବନ ତା ନାମ ଦେଲେ ସହସ୍ରାକ୍ଷ ।
ଅମର ଔଷଧି ଆଦି ନାନା ଦ୍ରବ୍ୟମାନ
ଲଗାଇଲେ ସେ ତୋଟାରେ ସହସ୍ରଲୋଚନ
ସ୍ତମ୍ଭନ ମୋହନ ବୈଶ୍ୟ ଉଚାଟନ ବୃକ୍ଷ
ଲଗାଇଲେ ସେ ଖାଣ୍ଡବ ବନେ ସହସ୍ରାକ୍ଷ ।
ନାନାବୃକ୍ଷମାନ ଆଣି ତହିଁରେ ରୋପିଲେ
ଆକାଶ ଗଙ୍ଗାରୁ ପାଣି ତହିଁ ଭିଡ଼ାଇଲେ ।
ନାନାଦି ବୃକ୍ଷର ଫଳ ସେ ବନେ ଫଳିଲା
ଦେଖି ଇନ୍ଦ୍ରରାଜା ମନେ ହରଷ ହୋଇଲା ।
ଶୁଣ ଆହେ ମନୁରାଏ ଖାଣ୍ଡବ ଚରିତ
ଏହିରୂପେ ଗଲା ତିନିଯୁଗ ପରିଯନ୍ତ ।

ବସନ୍ତ ବାତ ସେ ବନେ ନିରତେ ବହଇ
ନିରନ୍ତର ସେ ତୋଟାରେ କୋକିଳ ଭାଷଇ

ତହିଁରେ ଯେତେକ ଜୀବ ସର୍ବେ ଉନମତ୍ତ
ଶୁକ ଶାରୀଏ ରବନ୍ତି ନାହିଁ କିଛି ଚିନ୍ତା ।

ଶୁଖିଲା ପତ୍ର ଯେତେକ ଭୂମିରେ ପଡ଼ଇ
ପବନର ଘାତେ ତହୁଁ ସବୁ ଉଡ଼ିଯାଇ ।

ନ କରନ୍ତି ପଶୁ ପକ୍ଷୀ ତହିଁ ମୂତ୍ର ମଳ
କରୁଥାନ୍ତି ସର୍ବଦା ସେ ବନେ କୋଳାହଳ

ଇନ୍ଦ୍ରର ତୋଟାକୁ ଦେବା କିସ ପଟାନ୍ତର
ତିନି ଭୁବନରେ ନାହିଁ ଉପମା ତାହାର ।

ସହସ୍ର ଗନ୍ଧର୍ବ ସେହି ତୋଟା ରଖିଥାନ୍ତି
ଶୁଣିଲୁ ତୋଟା ମହିମା ମନୁ ମହୀପତି ।

ତୋଟା ଦେଖି ସୁରପତି ମନ ଉଲ୍ଲସଇ
ରକ୍ଷ ଗନ୍ଧର୍ବଙ୍କୁ ଶାଢ଼ୀ ପ୍ରସାଦ ଦିଅଇ ।

ବସନ୍ତ କାଳରେ ନିତ୍ୟ ଇନ୍ଦ୍ର ବିଳସଇ
ଇଚ୍ଛାହେଲେ ସେ ଅମାରାବତୀକି ଗମଇ ।

ଶୁଣି ମନୁରାଜା ବଡ଼ ସନ୍ତୋଷ ହୋଇଲା
ଅଗସ୍ତ୍ୟ ମୁନିଙ୍କ ବେନି ପାଦପୂଜା କଲା ।

ବୋଇଲା କଥାଏ ପଚାରିବି ଆଉ ମୁହିଁ
ତାହା ଶୁଣି ମନେ ମୋର ସଂଶୟ ଲାଗଇ ।

ଶୁଣିବାକୁ ଅସମ୍ଭବ ଏ ବଡ ବଚନ
ଏହା ଶୁଣି ମନକୁ ମୋ ଲାଗେ ଆଚମ୍ବିତ ।

ଯେ ତୋଟାର ଅନୁକୂଳ ଦେବଗୁରୁ ଦେଲେ
ଆବର ଇନ୍ଦ୍ର ସ୍ୱହସ୍ତେ ବୃକ୍ଷ ଆରୋପିଲେ ।

ସେ ତୋଟା ଅନଳେ କିପାଁ ହୋଇଲା ଦହନ
ଏ କଥା କହିବା ହେଉ ଆହେ ତପୋଧନ ।

ମନୁ ପଚାରନ୍ତେ ମୁନି ଅଗସ୍ତି ହସିଲେ
ଏ ସଂଶୟ କଥା ଶୁଣି ପୁରାଣ ଫେଇଲେ ।

କହନ୍ତି ଯେ ପୁରାଣକୁ ଚାହିଁ ମୁନିବର
ମହାଭାରତ ମହିମା ଅତି ଅଗୋଚର ।

ଯେତେକ ଦୃଶ୍ୟ ହୋଇଲା ତୋତେ ସିନା କହି
ଅଦୃଷ୍ଟି ଯେ ଅଗୋଚର ଜାଣିବ ତା କାହିଁ ।

କହନ୍ତି ଯେ ଯୋଗଲଗ୍ନେ ବସି ତପୋବନ୍ତ
ଶୁଦ୍ଧଚିତ୍ତ ହୋଇ ଶୁଣ ଆହେ ରଘୁନାଥ ।

ତୁହି ଯେ ପଚାରି ପାରୁ ଏହି ସନ୍ଧିମାନ
ଏହା ପୁଛିବାକୁ ଶକ୍ୟ ନୋହିବେଟି ଆନ ।

ଯହୁଁ ତୋହର ଚରିତ ନିର୍ମଳ ଜାଣିଲୁ
ଯୋଗଲଗ୍ନ କରି କହି କଥା ବଖାଣିଲୁ ।

ଖାଣ୍ଡବବନ ଦହନ ଅନନ୍ତରେ ପୁଣ
ଇନ୍ଦ୍ର ଡାକି ବ୍ରହ୍ମା ବୃହସ୍ପତି ଦୁଇଜଣ ।

ଅମର ଆସ୍ଥାନେ ବ୍ରହ୍ମା ବୃହସ୍ପତି ବସି
ଡାକନ୍ତେ ବସିଲେ ଇନ୍ଦ୍ର ରାଜା ହସି ହସି ।

ଦେବତାମାନେ ସମସ୍ତେ ସଭାରେ ବସିଲେ
ଇନ୍ଦ୍ର ବ୍ରହ୍ମା ବୃହସ୍ପତି ଦୁହିଙ୍କୁ ପୁଚ୍ଛିଲେ ।

ବୋଇଲେ ହେ ଦେବଗୁରୁ ବୃହସ୍ପତି ଶୁଣ
ପଚାରିଲେ ନ ଧରିବ ମନେ ଅବଗୁଣ ।

ତୁମ୍ଭେ ବୃହସ୍ପତି ନିଜେ ଅନୁକୂଳ ଦେଲ
ଜଗତର ପିତା ନିଜେ ଅର୍ଘ୍ୟଦାନ କଲ ।

ମୁହିଁ ନିଜେ ଇନ୍ଦ୍ର ତହିଁ ବୃକ୍ଷକୁ ପୋତିଲି
ଏଡ଼େ ଅନୁକୂଳ ତୋଟା କିପାଁ ଗଲା ଜଳି ।

ମୋହର ବିଚାରେ ଏଥି ଅଗ୍ନିର ସେ ଦୋଷ
ଆବର ଅର୍ଜୁନ ଏହି ତୋଟା କଲା ନାଶ ।

ମୋହର ବଇରୀ ଅଗ୍ନି ଅର୍ଜୁନ ହୋଇଲେ
ତୋଟା ଜାଳି ମୋର ମନ ବିହ୍ୱଳିତ କଲେ ।

କିପାଁ ଏଡ଼େ ଯୋଗରେ ସେ ତୋଟା ଗଲା ନାଶ
ଏତେ ଅନୁକୂଳେ କିପାଁ ତୋଟା ହେଲା ଧ୍ୱଂସ

ଏଥିର ତଦନ୍ତ କହ ବୁଝାଇଣ ମୋତେ
ତେବେ ତା ପାସୋର ଯିବ ନ ରହିବ ଚିତ୍ତେ ।

ଶୁଣି ବ୍ରହ୍ମା ବୃହସ୍ପତି ବସିଣ ଭାଳିଲେ
ବ୍ରହ୍ମା ମୁଖ ଚାହିଁ ଗୁରୁ ବଚନ ଭାଷିଲେ ।

ଅଗ୍ନି ଅର୍ଜୁନର ଏଥି କିଛି ନାହିଁ ଦୋଷ
ଏଥିର ପୂର୍ବର ଅଛି ବିଶେଷ ଭବିଷ୍ୟ ।

ଲକ୍ଷେକ ଜ୍ୟୋତିଷ ଗ୍ରନ୍ଥ ଶାସ୍ତ୍ରମୁଁ ଖୋଜିଲି
ତହିଁର ଅଶୁଭ କିଛି ଦେଖି ନ ପାରିଲି ।

ବୃହସ୍ପତି ବୋଲନ୍ତି ଏ ଗୋଚର ନୋହିଲା
କିମର୍ଥେ ଖାଣ୍ଡବ ବନ ଦହନ ହୋଇଲା ।

ପୁଣିହିଁ ସେ ବୃହସ୍ପତି କହନ୍ତି ଏସନ
କଥାଏ କହିବୁ ଶୁଣ ହୋଇ ସାବଧାନ ।

କଇଳାସ ପର୍ବତକୁ ଚାଲ ସର୍ବେ ଯିବା
ପାର୍ବତୀଙ୍କି ଏହି କଥା ଯାଇ ପଚାରିବା ।

ତେବେ ଯେ ଆମ୍ଭ ମନରୁ ଫିଟିଯିବ ଭ୍ରାନ୍ତି
ଲକ୍ଷେକ ଜ୍ୟୋତିଷ ଗ୍ରନ୍ଥ ଦେବୀ ପଢ଼ିଛନ୍ତି ।

ତାହାଙ୍କୁ ପୁଚ୍ଛିଲେ କଥା ସନ୍ଧ ସେ କହିବେ
ସେହି ଯେ ଆମ୍ଭମାନଙ୍କ ଚିତ୍ତକୁ ବୋଧିବେ ।
ବୃହସ୍ପତି କହୁଁ ଧାତା ଇନ୍ଦ୍ର ଯେ ହସିଲେ
ଯିବାବୋଲି ସେହିକ୍ଷଣି ଅନୁମତି ଦେଲେ ।
ବ୍ରହ୍ମା ବୃହସ୍ପତି ହଂସ ବାହନେ ବସିଲେ
ଐରାବତ ହସ୍ତୀ ପୃଷ୍ଠେ ଇନ୍ଦ୍ର ବିଜେକଲେ ।
ତିନିଜଣ କଇଳାସ ପୁରକୁ ଚଳନ୍ତି
ଶଙ୍କରଙ୍କ ପୁରଦ୍ୱାରେ ମିଳଲେ ଝଟତି ।
ଅଛନ୍ତି ଦକ୍ଷିଣ ଦ୍ୱାରେ ହରଙ୍କ ନନ୍ଦନ
ଗଣେଶ କଲେ ବ୍ରହ୍ମାଙ୍କ ଚରଣ ବନ୍ଦନ ।
ଭିତରକୁ ଯାଅ କହି ବାଟ ଛାଡ଼ିଦେଲେ
ସେହି ତିନିଜଣ ଯାଇ ଭିତରେ ପଶିଲେ ।
ପ୍ରଥମେ ଭେଟିଲେ ଯାଇ ଗିରିରାଜ ସୁତା
ଦେଖି ବାହନ ତେଜିଲେ ସର୍ବଜନ ପିତା ।
ବ୍ରହ୍ମାଙ୍କୁ ଦେଖିଣ ଦେବୀ ଆସନ ତେଜିଲେ
ନମସ୍କାର କରି ତାଙ୍କ ଚରଣେ ନମିଲେ ।
ବିଧିରେ କଲ୍ୟାଣ ତାଙ୍କୁ କଲେ ବେଦବର
ବୃହସ୍ପତି ପ୍ରଣମିଲେ ଦେବୀଙ୍କ ପୟର ।
ଇନ୍ଦ୍ରହିଁ ଚରଣତଳେ କଲେ ପ୍ରଣିପାତ
ଦେବୀ ପଚାରନ୍ତି ମୋତେ କହ ଲୋକତାତ ।
କାହିଁପାଇଁ ଆସିଅଛ ସଙ୍ଗେ ଇନ୍ଦ୍ର ଘେନ
ଆବର ସଙ୍ଗତେ ଛନ୍ତି ସୁରଗୁରୁ ପୁଣି ।
ଗୁରୁ ବୋଇଲେ ଅଇଲୁ ଆମ୍ଭେ ଯହିଁ ପାଇଁ
ତାହା ପଚାରୁଛୁ କୁହ ସଂଶୟ ଫିଟାଇ ।
କି ପଚାରିବ ପଚାର ବୋଲନ୍ତି ଗଉରୀ
ଜାଣିଥିଲେ କହିବା ନା ଆମ୍ଭେ ତା ବିଚାର ।
ଇନ୍ଦ୍ରବୃହସ୍ପତି ବ୍ରହ୍ମ ତିନିହେଁ ପୁଚ୍ଛିଲେ
ସାବଧାନେ ହୈମବତୀ ଶୁଣ ଗୋ ବୋଇଲେ
ଲକ୍ଷେ ଜଉତିଷ ଗ୍ରନ୍ଥ ଶାସ୍ତ୍ର ମୁଁ ଦେଖିଲି
ଶୁଭ ଲଗ୍ନେ ଖାଣ୍ଡବର ଅନୁକୂଳ ଦେଲି ।
ଇନ୍ଦ୍ର ଯେ ପୋତିଲେ ବୃକ୍ଷ ବ୍ରହ୍ମା ଅର୍ଘ୍ୟଦେଲେ
ତୋଟାଯାକ ପୋଡ଼ିଗଲା କିପାଇଁ ଅନଳେ
ଏଥିପାଇଁ ଇନ୍ଦ୍ର ରାଜା କଟାଳ କରନ୍ତି
ଫିଟିଯିବ ତୁମ୍ଭ ବୋଲେ ତାଙ୍କ ମନୁ ଭ୍ରାନ୍ତି ।
ଶୁଣିଣ ପାର୍ବତୀ ଦେବୀ ଅକପ ହସିଲେ
ଲକ୍ଷେ ଗ୍ରନ୍ଥ ଜଉତିଷ ଶାସ୍ତ୍ର ସେ ଖୋଜିଲେ ।

ଖାଣ୍ଡବବନ ଅଶୁଭ ଲଗ୍ନ ସେ ନ ଦେଖି
ପାର୍ବତୀ ଦେବୀ ମନରେ ସଂଶୟକୁ ରଖି ।
ଖାଣ୍ଡବବନ ଜଳିବା କଥା ଅଗୋଚର
ଏହା ତୁମ୍ଭେ ଯାଇଁ ବିଶ୍ୱନାଥଙ୍କୁ ପଚାର ।
ପଚାରିଲେ କହିବେ ସେ ଏଥିର ବୃତ୍ତାନ୍ତ
ତାଙ୍କ ଗର୍ଭେ ଅଛି ଲକ୍ଷେ ଜଉତିଷ ଗ୍ରନ୍ଥ ।
ଏହାଶୁଣି ବୃହସ୍ପତି ଇନ୍ଦ୍ର ଉଠିଗଲେ
ବ୍ରହ୍ମାଙ୍କ ସଙ୍ଗେ ଈଶ୍ୱର ଛାମୁରେ ମିଳିଲେ ।
ଅଛନ୍ତି ପରମ ଆତ୍ମା ଲୟେ ବିଶ୍ୱନାଥ
ଏହାଙ୍କ ଆସିବା କଥା ଜାଣି ସେ ତୁରିତ ।
ଯୋଗ-ଲୟ ତ୍ୟାଗକରି ଦେବ ପଞ୍ଚାନନ
ବ୍ରହ୍ମାଙ୍କୁ ଦେଖି ସେ କଲେ ଯଥାବିଧି ମାନ୍ୟ
ଇନ୍ଦ୍ର ଈଶ୍ୱରଙ୍କ ପାଦେ କଲେ ନମସ୍କାର
ବସ କହିଣ ଆସନ ଦେଲେ ଦିଗମ୍ବର ।
ବସିଲେକ ଗଉରବ ପାଇ ତିନିଜଣ
ବିଶ୍ୱନାଥ ପଚାରନ୍ତି ଆସିବା କାରଣ ।
ଆମ୍ଭଙ୍କୁ ବା ସଙ୍ଖୋଳିବା ପାଇଁ ଅଇଲ କି
ନୋହିଲେ ତୁମ୍ଭର କିଛି କଥା ଅଛଇ କି ।
ପଚାରନ୍ତି ବୃହସ୍ପତି ଆହେ ତ୍ରିଲୋଚନ
କଥା ଏକ ପଚାରିବୁଁ କର ଅବଧାନ ।
ବୃକ୍ଷ ଥାପିଥିଲୁ ଆମ୍ଭେ ଶୁଭ ଅନୁକୂଳେ
କିପାଇଁ ସେହି ଦହନ ହୋଇଲା ସମୂଳେ ।
ପାର୍ବତୀଙ୍କୁ ପଚାରିଲୁ ତାଙ୍କୁ ଅଗୋଚର
ସେ ବୋଇଲେ ତୁମ୍ଭେ ଯାଇ ଶିବଙ୍କୁ ପଚାର
ଈଶ୍ୱରଙ୍କ ଗର୍ଭେ ଲକ୍ଷେ ଗ୍ରନ୍ଥ ଜଉତିଷ
ତାହା ଦେଖିଲେ ଫିଟିବ ଏଥିର ସନ୍ଦେଶ ।
ତେଣୁ ଆମ୍ଭେମାନେ ଆସି ପଚାରୁ ତୁମ୍ଭଙ୍କୁ
ସଂଶୟ ଫିଟାଇ ଦେବ କହିବା ଆମ୍ଭଙ୍କୁ ।
ଈଶ୍ୱର ବୋଇଲେ ତୁମ୍ଭେ କ୍ଷଣେ ହୁଅ ସ୍ଥିର
ଧ୍ୟାନରେ ବସିଲେ ଏହା କହି ଦିଗମ୍ବର ।
ଗର୍ଭକୁ ଚାହିଁ ସେ ଖୋଜି ଖୋଜି ଠାବ କଲେ
ଇନ୍ଦ୍ର ବ୍ରହ୍ମା ବୃହସ୍ପତି ତିନିଙ୍କୁ କହିଲେ ।
ଖାଣ୍ଡବବନ ଯେ ହେତୁ ହୋଇଲା ଦହନ
ତାହାର କାରଣ ଶୁଣ ହୋଇ ସାବଧାନ ।
କାମକଳା ପଦ୍ଧତି ଜାଣନ୍ତି ଚନ୍ଦ୍ରମା
ତେଣୁ ତାଙ୍କୁ ଦକ୍ଷ ଦେଲେ ସତାଇଶ କନ୍ୟା

ସେହି ଋକ୍ଷଙ୍କର ଅଟେ ସତାଇଶ ନାମ
ଏକକୁ ଅଢ଼ାଇ ଦିନ ଶ୍ରେଷ୍ଠ ଜାଣିମ ।
ଉତ୍ତରଭଦ୍ର କନ୍ୟାର ଘରେ ଚନ୍ଦ୍ର ଥିଲେ
ଉତ୍ତକାଳ ସାର ତହୁଁ ବାହାର ହୋଇଲେ ।
ଉତ୍ତରଭାଦ୍ରବ ସ୍ତନ ଅଟଇ ଦ୍ୱିବଳ
ରେବତୀ କନ୍ୟାର ସ୍ତନ ଅଟଇ ସବଳ ।
ତା ଉପରେ ଚନ୍ଦ୍ରଙ୍କର ନୟନ ପଡ଼ିଲା
ଚନ୍ଦ୍ରଙ୍କ ହୃଦରେ କାମ ଅନଳ ଜଳିଲା ।
ଉତ୍ତରଭାଦ୍ରର ପୃଷ୍ଠ ବାହାର ସମୟେ
ରେବତୀର ସ୍ତନେ ଦୃଷ୍ଟି ଚନ୍ଦ୍ରଙ୍କର ଥାଏ ।
ଏ ସମୟରେ ଖାଣ୍ଡବ ଅନୁକୂଳ ହେଲା
ସେ ହେତୁ ଖାଣ୍ଡବବନ ଭକ୍ଷିଲା ଅନଳ ।
ଚନ୍ଦ୍ର କାମଦୋଷୁ ବନ ଗଲା ବେଦବର
ପାର୍ଥଠାରେ ତୁମ୍ଭେ ଇନ୍ଦ୍ର କପାଁ ଦୁଃଖ କର ।
ଅଗ୍ନି ଦେବଙ୍କ ଦୁର୍ଦ୍ଦଶା ଗଲା ପାର ହୋଇ
ଏଥିରେ ଅର୍ଜ୍ଜୁନର ଯେ କିଛି ଦୋଷ ନାହିଁ ।
ଇନ୍ଦ୍ର ବୃହସ୍ପତି ବ୍ରହ୍ମା ତହୁଁ ଗଲେ ଉଠ
ଆନନ୍ଦ ହେଲେ ମନର ଭ୍ରାନ୍ତି ଗଲା ଫିଟି ।
ବାସବ ଅର୍ଜ୍ଜୁନଠାରେ ଦୁଃଖ କରୁଥିଲେ
ଈଶ୍ୱରଙ୍କଠାରୁ ଶୁଣି ତାହା ପାଶୋରିଲେ ।
ଶୁଣି ତାହା ଶଚୀବର ଆନନ୍ଦ ହୋଇଲା
ବ୍ରହ୍ମା ବୃହସ୍ପତି ଘେନି ସ୍ୱର୍ଗପୁରେ ଗଲା ।
ଶୁଣିଲୁଟି କି ହୋ ଏହା ମନୁ ମହାରଥା
ଖାଣ୍ଡବବନ ଦହନ ପୂର୍ବର ବାରତା ।
ଶ୍ରୀଚଣ୍ଡୀ ଶାରଳା ଦେବୀ ଚରଣେ ମୋ ଆଶ
ଅରକ୍ଷିତ ଶୂଦ୍ରମୁନି ଶ୍ରୀ ଶାରଳାଦାସ ।
ମୂର୍ଖ ଅପଣ୍ଡିତ ବିଦ୍ୟା ନ ଜାଣଇ କିଛି
ଆଜନ୍ମହୁଁ ଧର୍ମଶାସ୍ତ୍ର କିଛି ନ ପଢ଼ିଛି ।
ଶ୍ରୀଚଣ୍ଡୀ ଶାରଳା ପାଦେ ଅରକ୍ଷ ନମଇଁ
ଦୟା କରିବାରୁ ଭୁଞ୍ଜି ସିନା ମହାମାୟୀ ।
ତୋହର କୃପାରୁ ଦୃଶ୍ୟ ହୋଇଲା ଏ ସବ
ଶ୍ରୀମହାଭାରତ ଶାସ୍ତ୍ର ଅଟେ ଅସମ୍ଭବ ।
ଅକଳିତ ସମୁଦ୍ର ଏ କଳିତ ନୁହଇ
ତୋର ଦୟାକୁ ଭରସା କରଅଛି ମୁହିଁ ।
ହୀନ ଅରକ୍ଷିତ ଅଟେ ମୁଁ ଶାରଳା ଦାସ
ତୋର ପାଦପଦ୍ମ ବିନୁ ନାହିଁ ଆନ ଆଶ ।

## ଚନ୍ଦ୍ରାଙ୍କର ଶରଣ
## ବୈରାଜ ରଜା ମିଳନ

ପୁଚ୍ଛାକଲେ ବୈବସ୍ୱତ ହେ ମୁନି ଅଗସ୍ତି
ବନରେ ଅର୍ଜ୍ଜୁନ ତହୁଁ ଗଲେ କେଉଁ କତି ।
ଅଗସ୍ତି ବୋଇଲେ ଶୁଣ ମନୁ ନୃପବର
ଭ୍ରମିଲେ ପାର୍ଥ ବହୁତ ପର୍ବତ ଡଙ୍ଗର ।
କାଶୀ କଉଶିକ ତୁଙ୍ଗଭଦ୍ରା ଯେ କାବେରୀ
ନର୍ମ୍ମଦା ଆବର ସରସ୍ୱତୀ ଗୋଦାବରୀ ।
ଗମଘାଟ କୃଷ୍ଣବେଣୀ ମଣିକର୍ଣ୍ଣିକାଦି
ଯମୁନା ଆବର ଋଷିକୁଲ୍ୟା ଗଙ୍ଗାନଦୀ ।
ସରଯୂପୁଷ୍କର ପଞ୍ଚନଦ ଗୟାତୀର୍ଥ
ଏମନ୍ତ ଅନେକ ତୀର୍ଥ ବୁଲି କୁନ୍ତୀସୁତ ।
ପାଦଶ୍ରମ ପାଇ ବୀର ବିଚାରଇ ମନେ
ଥୋକାଏ ଦିନ ବିଶ୍ରାମ କରିବା କାନନେ ।
ଏମନ୍ତ ବିଚାରି କଲା ସେଠାରୁ ପ୍ରୟାଣ
ଏକାମ୍ର କାନନେ ଯାଇ ମିଳିଲା ଅର୍ଜ୍ଜୁନ ।
ମହାସୁସ୍ଥ ହୋଇ ତହିଁ ଫଳମୂଳ ଖାଇ
ହସ୍ତିନା ପାସୋର ବୀର ରହିଲାକ ତହିଁ ।
ତିନମାସ କଟାଇଲା ରହି ମହାବୀର
ଅଗସ୍ତି ବୋଇଲେ ଶୁଣ ଆହେ ନୃପବର ।
ଫାଲ୍‌ଗୁନ ଶୁକ୍ଳ ଚଉଠ ତିଥି ଶନିବାର
ପୂର୍ବଭାଦ୍ର ନକ୍ଷତ୍ର ଯେ ଅଟେ ସେ ଦିନର ।
ବାଣିଜ୍ୟ ନାମେ କରଣ ଶୁଭ ନାମେ ଯୋଗ
କୁମ୍ଭସଂକ୍ରାନ୍ତି କୋଡ଼ିଏ ଦିନଯାଏ ଭୋଗ ।
ପିମ୍ପଳ ବୃକ୍ଷର ମୂଳେ ବସିଛି ଅର୍ଜ୍ଜୁନ
ଆଗରେ ଥୋଇ ଅକ୍ଷୟ ତୋଣ ଶରମାନ ।
ଏସନ ସମୟେ ଦେଖେ ଏକଇ ପୁରୁଷେ
କେଶ ବାସ ଅସମ୍ଭାଳେ ପଳାଉଛି ତ୍ରାସେ ।
ଗହନ କାନନେ ଯାଉଥିଲା ହେଇ ଧାପ
ଅର୍ଜ୍ଜୁନକୁ ଦେଖି ଆସେ ତାହାର ସମୀପ ।
କ୍ଷତ୍ରିୟ ବୃତ୍ତି ତାହାର ଦେଖିଲା ଯେ ଯହୁଁ
ଶରଣ ଶରଣ ବୋଲି ଉଚ୍ଚାରିଲା ତହୁଁ ।
ଏହା ଶୁଣି ପଚାରିଲେ ମନୁ ନରରାୟ
ହେ ମୁନି ଲାଗିଲା ଏଥେଁ ବଡ଼ହିଁ ସଂଶୟ ।
କାହୁଁ ଅଦ୍ଭୁତେ ଆଇଲା ସେ ବନେ ପୁରୁଷ
କେବଣ ମହାତ୍ମା କଲା ତା ଉପରେ ରୋଷ ।

ଏହା ସଂକ୍ଷେପି କହିବା ହେଉ ମହାମୁନି
ଶୁଣ ହୋ ମନୁ ବଦନ୍ତି ମୁନି ମହାଜ୍ଞାନୀ ।
ଯଶୋବତୀ ନାମେ ଥିଲା ଏକଇ ନଗରୀ
ଉତ୍ତର ପାଖେ ଜମ୍ବାଳ ନାମେ ଅଛି ଗିରି ।
ବହଇ ଚନ୍ଦ୍ରାଙ୍ଗୀ ନଦୀ ଉତ୍ତର ମୂରତି
ଚନ୍ଦ୍ରାଙ୍କୁର ବୋଲି ତହିଁ ଥିଲା ନରପତି ।
ଅଯୁତେକ ଘର ତହିଁ ବସଇ ପାଟଣା
ଅଛନ୍ତି ସୁସଞ୍ଚ ସେହି ପୁରକୁ ଘଟଣା ।
ଅର୍ବୁଦେକ ହସ୍ତୀ ଅଶ୍ୱ ଶତେକ ଅର୍ବୁଦ
ଦ୍ୱାବିଂଶତି ଅକ୍ଷୌହିଣୀ ବଳ ରଥବୃନ୍ଦ ।
ହିଙ୍ଗୁଳା ଲକ୍ଷ୍ମୀ ନାମରେ ତାର ମହାଦେଈ
ଲମ୍ଭିତା ସେ ଚନ୍ଦ୍ରାଙ୍ଗଦା ନାମେ କନ୍ୟା ଦୁଇ
ଚନ୍ଦ୍ରଧ୍ୱଜ ନାମେ ତାର ଏକଇ କୁମର
ମୃଗୟା ବିନୋଦେ ସେହି ହୋଇଲା ବାହାର
ବାରକୋଟି ଅଶ୍ୱ ଭୁଲେ ରାଜାର ନନ୍ଦନ
ସାତକ୍ଷଉଣୀ ପଦାତି ଘେନି ଭ୍ରମେ ବନ ।
ଗହନ ଅଟବୀ ମଧ୍ୟେ ପଶିଲା ସେ ଯାଇ
ଦଇବର ଯୋଗେ ରାଜପଥ ବଣା ହୋଇ ।
ପଞ୍ଚଦଶ ଯୋଜନ ସେ ଅରଣ୍ୟରେ ଗଲା
ପରମହଂସ ନାମକ ଗ୍ରାମରେ ମିଳିଲା ।
ପରଭୃତ ନନ୍ଦ ନାମେ ଏକଇ ଶଇଳ
ବହଇ ପିପ୍ପଳା ନାମେ ନଦୀ ପରିମଳ ।
ବାରଲକ୍ଷ ଘର ସେହି ରାଜ୍ୟରେ ବସଇ
ସେହି ନଗରେ ବୈରାଜ ନାମେ ନରସାଇଁ ।
ବିମ୍ବମାଳୀ ନାମେ ଅଛି ତାହାର ଦୁହିତା
ପିତା ଘରେ ଥାଇ ଅବିବାହି ସେ ବନିତା ।
ଦାସୀଗଣଙ୍କୁ ସଙ୍ଗରେ ଘେନି ସେ କୁମାରୀ
ପିପ୍ପଳା ନଦୀରେ ସ୍ନାନ କରଇ ସୁନ୍ଦରୀ ।
ଏମନ୍ତ ବେଳେ ମିଳିଲା ତହିଁ ଚନ୍ଦ୍ରଧ୍ୱଜ
ପଚାରଇ ସୁନ୍ଦରୀକି ଏ କେବଣ ରାଜ୍ୟ ।
କାହାର ଦୁହିତା ତୁମ୍ଭେ କାହାର ଗୋ ନାରୀ
ବିଭା ନୋହିଥିଲେ ମୋତେ ବର ଗୋ ସୁନ୍ଦରୀ
ମୁହିଁ ଚନ୍ଦ୍ରଧ୍ୱଜ ଚନ୍ଦ୍ରାଙ୍କୁରର କୁମର
ଯଶୋବତୀ ନଗରୀରେ ଅଟେ ମୋର ଘର ।
ଇଚ୍ଛା ହେଲେ ଆସି ଅଶ୍ୱେ ବସରେ ତରୁଣୀ
ଶୁଣି ଅପସରି ଯାଏ ବୈରାଜ ଦୁଲଣୀ ।

ସ୍ୱେଚ୍ଛତା ନାମ୍ନେ ନ ଦାସୀ କରଇ ଉତ୍ତର
ଶୁଣ ଆହେ ଚନ୍ଦ୍ରଧ୍ୱଜ ଆମ୍ଭର ବିସ୍ତର ।
ଯାହା ପଚାରିଲ ତୁମ୍ଭେ ଏ ଦେଶର ନାମ
ପରମହଂସ ନାମରେ ବିଦିତ ଏ ଗ୍ରାମ ।
ବାରଲକ୍ଷ ଘର ଏହି ରାଜ୍ୟରେ ପରଜା
ବୈରାଜ ନାମେ ଅଟଇ ଏ ପୁରର ରଜା ।
ତାହାର ଦୁହିତା ଏହା ନାମ ବିମ୍ବମାଳୀ
ସ୍ନାନ କରିବାକୁ ଏଥେଁ ଆସିଅଛି ବାଳୀ ।
ତୁମ୍ଭେ ଯେବେ ଏହାଠାରେ ବଳାଇଲ ମନ
ରାଜାକୁ ମାଗ ସେ କରୁ କନ୍ୟାକୁ ପ୍ରଦାନ ।
ପିତାଦତ୍ତ କନ୍ୟା ବିନା ରାଜଦତ୍ତ ଭୂଇଁ
କେମନ୍ତେ କରିବ ସ୍ନାନଘାଟେ ଜେମାଦେଈ
ସେ କନ୍ୟାକୁ ଚନ୍ଦ୍ରଧ୍ୱଜ ମୁରୁଛି ନ ପାରି
ଦାସୀଙ୍କ ମଧ୍ୟେ ପଶିଲା ଘୋଡ଼ାରୁ ଉତୁରି ।
ଧଇଲା ଯାଇଁ ସେ ବିମ୍ବମାଳୀ କନ୍ୟା ଭୁଜ
ଅଶ୍ୱ ଉପରେ ବସାଇ ଗଲା ନିଜ ରାଜ୍ୟ ।
ସଙ୍ଗେ ସଙ୍ଗେ ଗୋଡ଼ାଇଲେ ତାର ଆଟପେଟେ
ଯଶୋବତୀ ପୁରେ ଯାଇ ମିଳିଲେ ତୁରିତେ ।
ପୁତ୍ରକୁ ଦେଖିଣ ପୁଚ୍ଛା କଲେ ନରପତି
କାହୁଁ ତୁ ଆଣିଲୁ ଅବିବାହିତା ଯୁବତୀ ।
ଅଧର୍ମ କଲୁରେ ବାବୁ ବୋଲେ ଦଣ୍ଡଧାରୀ
କାହା ଦୁହିତା ଆଣିଲୁ କାହୁଁ ଚୋରି କରି ।
କୁମର ବୋଇଲା ତାତ ବରିଲାକ ମୋତେ
ଶୁଣି ନୃପତି ରହିଲେ ଆନନ୍ଦିତ ଚିତ୍ତେ ।
କନ୍ୟାକୁ ନେଇ ଥୋଇଲା ନିଜ ଅନ୍ତଃପୁରେ
ସେମାନେ ଗଲେକ ତହୁଁ ସେ ଯାହା ନଗରେ
କନ୍ୟା ଯହୁଁ ହରିନେଲା ଚନ୍ଦ୍ରଧ୍ୱଜ ବୀର
ବିଷାଦ ଲଭି ଦାସୀଏ ଗଲେ ନିଜପୁର ।
ରାଜାର ନିଅବକାଶେ ମିଳିଲେ ସେ ବେଗେ
କରଯୋଡ଼ି ଜଣାଇଲେ ବୈରାଜର ଆଗେ ।
ଆହେ ଦେବ ରାଜେଶ୍ୱର ଶୁଣିମା ଗୁହାରି
ସ୍ନାନ ଅର୍ଥେ ଯାଇଥିଲେ ତୁମ୍ଭର କୁମାରୀ ।
ଜଳେ ପଶି ଆପଣାର ଅଙ୍ଗ ପଖାଳନ୍ତେ
ଚନ୍ଦ୍ରାଙ୍କୁର ରାଜପୁତ୍ର ମିଳିଲା ତୁରିତେ ।
ଚନ୍ଦ୍ରଧ୍ୱଜ ନାମ ଦେବ ଅଟଇ ତାହାର
ବଳେ ଧରି ଘେନି ଗଲା ତୋହର କୁମାରୀ ।

ଶୁଣି ସେ ରାଜନ କୋପେ ହୋଇଣ ପ୍ରଚଣ୍ଡ
ମନ୍ତ୍ରୀକି ବୋଇଲା ସାଜ ବେଗେ ସମଦଣ୍ଡ ।
ତତକ୍ଷଣେ ସଜ ହେଲେ ସେନା ସେନାପତି
ରଥ ଗଜ ଅଶ୍ୱ ସଜ ହୋଇଲେ ପଦାତି ।
ବର ଗଜ ଜଣି ତିନ ଅୟୁତ ଯେ ହସ୍ତୀ
ଦୁଇ ସହସ୍ର ଅଇଲେ ସଜହୋଇ ରଥୀ ।
ସାତ କୋଟି ଅଶ୍ୱ ପଞ୍ଚାଶତ କୋଟି ବଳ
ସୈନ୍ୟ ସାଜନ୍ତେ ମେଦିନୀ ହେଲା ଟଳମଳ ।
ଏକାଦଶ ବୃନ୍ଦ ସେହୁ ସାଜିଲାକ ଉଟ
ସମ୍ଭାଳି ଥିଲା ବୈରାଜ ଏତେକ ଯେ ଥାଟ ।
ଲକ୍ଷେକ ଶଙ୍ଖ ତା ଆଗେ ସ୍ଫୁରେ ଘନ ଘନ
ରଥୀମାନେ ଆରୋହିଲେ ଯେ ଯାହାର ଯାନ
ସେନାପତିଯାକ ତାର ହେଲେ ଆଗୁଆଣି
ପାଦଭରେ ଟଳ ଟଳ ହୁଅଇ ଧରଣୀ ।
ଢୋଲ ଦମା ଟମକ ଯେ ବାଜଇ ନିଶାଣ
ହସ୍ତୀଙ୍କର ଗରଜନ ଘୋଡ଼ା ହ୍ରେଷା ସ୍ୱନ ।
ପଦାତିଙ୍କ ମୁଖରବ ଧନୁର ଟଙ୍କାର
ଗଜ ଅଶ୍ୱ ଘଣ୍ଟା ଶବ୍ଦ ଶୁଭଇ ଅପାର ।
ଦେଖି ବଇରାଜ ରାଜା ଛାଡ଼ିଲାକ ଚିନ୍ତା
ଆପେ ସଜ ହୋଇ ଆସେ ମହାବଳବନ୍ତା ।
ବର୍ତ୍ତୁଳ ମୁକୁତା ମାଳା ଗଳେ ଶତସରି
ନାନା ବର୍ଣ୍ଣର ପଦକ ହୃଦୟରେ ଭରି ।
ଅନର୍ଗଳ ତୋଡ଼ର ସେ ବାନ୍ଧିଲାକ ପାଦେ
ଚରଣ ଶୋଭା ପାଇଲା ନୂପୁର ନିନାଦେ ।
କଟିରେ କଟୀମେଖଳା ବାମେ ଯମଦାଢ଼
ବେନି କାନ୍ଧରେ ବାହୁଟି ସୁବର୍ଣ୍ଣର ତାଡ଼ ।
ଶିର ଖଞ୍ଜିଲା ମୁକୁଟ ରତ୍ନ ମଣିମୟ
ଲଲାଟେ ସୁବର୍ଣ୍ଣ ଚିତା ପିନ୍ଧି ନରରାୟ ।
କର୍ଣ୍ଣ କୁଣ୍ଡଳ ଝଟକ ବିଜୁଳିକି ଜିଣି
ଲଲାଟରେ ପ୍ରକାଶନ୍ତ ହୀରା ରତ୍ନମଣି ।
କେଶରେ କୁସୁମ ଦେଇ ବାନ୍ଧିଲାକ ଜୁଡ଼ା
ପୟରେ ଖଞ୍ଜିଲା ରତ୍ନ ଚମ ଯୋତା ଯୋଡ଼ା
କପାଳେ ଘେନି ଚନ୍ଦନ ଗୋରଚନା ଚିତା
ନୟନ ତେଜ ପ୍ରତ୍ୟକ୍ଷେ ସୌଦାମିନୀ ଲତା ।
ଭାଡ଼ ଫୁଲଇ ହରଷେ ଗୁଲଇ ରାଜନ
ସାରଥି ତାହାର ସାଜ ଆଣିଦେଲା ଯାନ ।

ହରଷେ ସେ ରଥେ ବିଜେକଲା ମହାରାଜ
ବାମକରେ ଧନୁ ତାର ଦକ୍ଷିଣେ ନାରାଜ ।
ସୈନ୍ୟ ଘେନି ସମାରୋହେ ଚଳଇ ରାଜନ
ଆଗରେ ପଛରେ ଅଛି ରାଜାର ଗହଣ ।
ମୀନମାସ କୃଷ୍ଣପକ୍ଷ ଦଶମୀର ତିଥି
ବିଷ୍ଟି କରଣ ଯେ ସିଦ୍ଧି ଯୋଗ ସେଥିପ୍ରତି ।
ମୂଳା ଋକ୍ଷ ଧନୁ ଚନ୍ଦ୍ର ଠାରେ ସେହି ଦିନ
ଯାତ୍ରା କଲା ଯୋଗିନୀର ମୁଖେ ସେ ରାଜନ ।
ସୈନ୍ୟର ଗହଳେ ତିଳେ ମାତ୍ର ଠାବ ନାହିଁ
ଧୂଳିରେ ଅଦୃଶ୍ୟ ହେଲେ ଗ୍ରହାଦେଖା ସାଇଁ
ଟମକ ନିଶାଣ ବାଜେ ଖାରଭୂର ଭେରୀ
ପାଦରେ ବନ କନ୍ଦର ହେଉଅଛି ଚୂର ।
ଅତିହିଁ ସମାରୋହରେ ଚଳେ ଥାଟ ଗୋଟି
ପ୍ରହରକ ମଧ୍ୟେ ଗିରି ଜମ୍ଭାଳକୁ ଭେଟି ।
ମୁଖରବ ଶବଦରେ କମ୍ପଇ ବ୍ରହ୍ମାଣ୍ଡ
ଚନ୍ଦ୍ରାଙ୍ଗୀ ନଦୀର ତୀରେ ମିଳେ ସମଦଣ୍ଡ ।
ଶୁଣ ଆହେ ବୈବସ୍ୱତ ମନୁ ନରସାଇଁ
ଚନ୍ଦ୍ରାଙ୍କୁର ଆଗେ ଚର ଜଣାଇଲେ ଯାଇ
ଆହେ ସ୍ୱାମୀ ପରଦେଶୀ ରାଜା ବଇରାଜ
ତୋର ପୁରକୁ ବାହିଲା ତାର ଥାଟ ଆଜ ।
ଚନ୍ଦ୍ରାଙ୍ଗୀ ନଦୀର କୂଳେ ଆସିଣ ରହିଲା
ସମ୍ଭାଳି ରାଜ୍ୟ ତୋହର ଚର ଜଣାଇଲା ।
ନ ପୁଣ ରାଜ୍ୟରେ ତୋର ପଶଇ ଧସାଇ
ବିଳମ୍ବ ନ କରି ଉଠ ବେଗେ ନରସାଇଁ ।
ଏତେକ କହି ସେ ଚର ପଛଘୁଞ୍ଚା ଦେଲା ।
ଶୁଣି ରାଜନ ନୟନ ତରାଟି ରହିଲା ।
ପେଶୁର ଗାରିମା କରେ ବାହୁସର ଆଗେ
ଅଧରେ ସେ ଦାନ୍ତ ରୁପି ବୋଇଲାକ ରାଗେ
ବାହାସ୍ଫୋଟ ମାରି ପୁଣି ଉଠି କହେ ବେଗେ
ମଣ୍ଡୁକି ରହଇ କରେ କାଳସର୍ପ ସଙ୍ଗେ ।
ତର୍ଜନ ଗର୍ଜନ କରି ଉଠିଲା ରାଜନ
ମନ୍ତ୍ରୀକି ବୋଇଲା ସାଜ ସାଜ ମୋରସୈନ
ଆପେ ହେଲା ସଂଗ୍ରାମକୁ ସଜ ନୃପବର
ଶିରେ ଜରିଲଗା ପାଗ ସୀମନ୍ତ ଆବର ।
କରେ କଙ୍କଣ ବାହୁଟି ସ୍ୱର୍ଣ୍ଣ ଜଗଦ୍ବଳା
ହୃଦୟର ଆଭରଣ ମୁକୁତାରମାଳା ।

ଶ୍ରବଣେ କୁଣ୍ଡଳ ବାମକରେ ଶରାସନ
ଡାହାଣ କରେ ନାରାଚ ଦଶଇ ଶୋଭନ ।
ଅନର୍ଗଳ ତୋଡ଼ର ଯେ ବାନ୍ଧିଲାକ ପାଦେ
ଶୋଭା ପାଇଲା ଚରଣ ନୂପୁର ନାନାଦେ ।
ଦାଢ଼ି ମୋଡ଼ି ରାଜା ରଥେ ବସିଲାକ ଯାଇଁ
ଚନ୍ଦ୍ରଧ୍ୱଜ ବାହାରିଲା ବେଗେ ସଜ ହୋଇ ।
କପାଳେ ତିଳକ ଘେନ ଶିରେ ପାଗ ବାନ୍ଧି
ସରୁସ୍ଥରୁଂକ ଛେଣି ଯେ ବୀରବେଶେ ପିନ୍ଧି ।
ଚରଣେ ନୂପୁର ଘେନ ରୁଣୁଝୁଣୁ ବାଜେ
ହୃଦରେ ପଦକ ରତ୍ନ ମଣିହାର ସାଜେ ।
ପୀତବସନ ପକାଇ କରିଣ ହୋସରା
ବାହୁଟି କଟିଟି ମୁଦି ଛଦ ଜଗଦ୍ବଳା ।
ଛାଡ଼ ତୋଡ଼ର ଯେ ଯମଦାଢ଼ ବାମଭାଗେ
କସ୍ତୁରୀ ଲେପନ କରିଅଛଇ ସର୍ବାଙ୍ଗେ ।
ଘେନ କଣ୍ଠରେ ସୁବର୍ଣ୍ଣ ନୋଳ ଶୋଭାବନ
କସ୍ତୁରୀ ଉପରେ କରି ଚନ୍ଦନ ଲେପନ ।
ଡାହାଣେ ନାରାଚ ବାମକରେ ଶରାସନ
ସାରଥି ସାଜି ଆଣିଲା ଏକ ଦିବ୍ୟଯାନ ।
ତାହାର ଉପରେ ଯାଇଁ ଆରୋହିଲା ବୀର
ପ୍ରବେଶ ହୋଇଲା ସେହି ପିତାର ଗୁମ୍ଭର ।
ତାଙ୍କୁ ଦେଖିଣ ହରଷ ହୋଇଲେକ ରାୟ
ଦିଶଇ କୁମର ମୀନକେତନ ପରାୟ ।
ସଜ ହୋଇଣ ଅଇଲେ ଅଯୁତେକ ରଥୀ
ଦ୍ୱାବିଂଶତ ଅକ୍ଷୌହିଣୀ ଅଇଲେ ପଦାତି
ଅର୍ବୁଦେକ ଗଜ ସତଷଠି କୋଟି ଅଶ୍ୱ
ଢୋଲ ଝମକ ନିଶାଣ ବାଜେ ବାଜଘୋଷ ।
ସୈନ୍ୟଙ୍କର ସମାରୋହ କହି ନ ସରଇ
ଅନୁକୂଳ କଲା ଜୟଶଙ୍ଖଙ୍କୁ ବଜାଇ ।
ଥାଟ ସୈନ୍ୟ ଘେନ ବଇରଜ ନଉସାଇଁ
ନଗରେ ପଶିଣ କୋପେ ଆସଇ ଧସାଇ ।
ହାଟ ପେଣୁଆଦି ଘୋଷ ପାଟଣା ଉଜାଡ଼ି
ବଣ ବଣିଜାର ଆଦି ଲୋକଙ୍କୁ ଘଉଡ଼ି ।
ଘରେ ଘରେ ପଶି କଲେ ଦ୍ରବ୍ୟମାନ ଜୁର
ବୃଷମାନଙ୍କୁ କଟାଇ ପୋଡ଼ି ଦେଲେ ଘର ।
ଏକାଳେ ନଗରୁ ଆସି ଚନ୍ଦ୍ରାଙ୍କୁର ବୀର
ଥାଟ ଘେନ ଆଗେ ଭେଟ ପଡ଼ିଲା ତାହାର ।

କ୍ଷୁଭିଲେକ ମାର ମାର ଧ୍ୱନି ଦୁଇକୁଳେ
ଏକୁ ଆରେକ ସମର ଆବୋରିଲେ ବଳେ ।
ଗଜେଗଜ ରଥେରଥ ଯୋଦ୍ଧା ସଙ୍ଗେ ଯୋଦ୍ଧା
ପଦାତି ପଦାତି ଦେଲେ ମଗ୍ନମର ବାଧା
ଲାଗିଲେକ ହଣାହଣି ରଣେ ଦୁଇଦଳ
ଦେଖି ମହାକୋପ କଲା ବୈରଜ ଭୂପାଳ ।
ଭେଟରେ ପଡ଼ିଲା ତାର ଆସି ଚନ୍ଦ୍ରଧ୍ୱଜ
ହୁଁକାରେ ସପତ ଶର ବିନ୍ଧିଲା ବୈରଜ ।
ଝଙ୍କାରି ହୁଙ୍କାରି ଲକ୍ଷ୍ମୀ ସୁତ ସେହି ଶର
ବାରଣ ବାଣ ବିନ୍ଧିଲା ପୁଣି ତାକୁ ବୀର ।
ଦଶବାଣେ ଛେଦିଲା ତା ନୃପତି ବୈରଜ
ତ୍ରିଂଶ ବାଣ ମାଇଲା ପୁଣି ଚନ୍ଦ୍ରଧ୍ୱଜ ।
ପାଞ୍ଚବାଣେ ବଇରଜ ସେ ଶର ନିବାରି
ଚନ୍ଦ୍ରଧ୍ୱଜ ସଙ୍ଗେ ଯୁଦ୍ଧ କଲା ଦଣ୍ଡଯାଏ ।
ଚନ୍ଦ୍ରାଙ୍କୁର ରାଜା ବାମକରେ ଧନୁ ଧରି
ନାରାଚ ବନ୍ଧେ ଆକର୍ଷି ଘୋରନାଦ କରି ।
ବୈରଜ ସୈନ୍ୟ ଧାଇଁଲେ ସମରେ ଗରଜି
ସମର କରଇ ରାଜା ଥାଇ ତାଙ୍କ ମଝି ।
ଦଶ ନାରାଚ ବିନ୍ଧିଲା ଚନ୍ଦ୍ରାଙ୍କୁର ବୀର
ଛେଦିଲା ଦଶସହସ୍ର ସେନାଙ୍କର ଶିର ।
ପଡ଼ିଲେକ ଦ୍ୱାବିଂଶତି ଅକ୍ଷୌହିଣୀ ବଳ
ତିରିଶ ସହସ୍ର ଅଶ୍ୱ ଗଜ ଯେ ଆବର ।
କୋପ କଲା ଦେଖି ତାହା ବୀର ବଇରାଜ
ବାଛି ବାଛି ବିନ୍ଧିଲେକ ଶତେକ ନାରାଜ ।
ଚନ୍ଦ୍ରାଙ୍କୁର ସୈନ୍ୟ ହୋଇଗଲେ ନାରଖାର
ଦେବହୂବେଳ ଅପ୍ରମିତ ହୋଇଲା ସମର ।
ତନଅଯୁତ ନାରାଚ କୋପେ ସେ ପୂରଇ
ଚନ୍ଦ୍ରଧ୍ୱଜ ଉପରକୁ ମାଇଲା ନଠାଇ ।
ପଡ଼ିଲା ନାରାଚ ଘାତପାଇ ବୀରମଣି
ଅଶ୍ୱ ସାରଥି ତାହାର ପଡ଼ିଲେ ଧରଣୀ ।
ଘାଏ ଅସାଷ୍ଟମ ହୋଇ ଧର୍ମର ନନ୍ଦନ
ଧାତକାରେ ରାଜା ତାକୁ କଲେକ ବନ୍ଧନ ।
ଚନ୍ଦ୍ରଧ୍ୱଜକୁ ଧରି ସେ କ୍ରୋଧରେ ଧାଇଁଲା
ନାରାଚ ସନ୍ଧାନ କରି ଘୋରରଣ କଲା ।
ଦେଖି ତାଙ୍କୁ ଓଗାଳିଲା ଚନ୍ଦ୍ରାଙ୍କୁର ବୀର
ବେନି ନୃପତି ସମର କରନ୍ତି ଅପାର ।

ଅଣୀବାଣ କୋପଚତ୍ତେ ଚନ୍ଦ୍ରାଙ୍କୁର ପେଷି
ଚାଳିଶ ନାରାଚେ ତାହା ବଇରାଜ ନାଶି ।
କେ ଶତ କେ ସହସ୍ରେକ ଅର୍ବୁଦ କେ ଲକ୍ଷ
ସମରେ ଅଟନ୍ତି ବଇରାଜ ସମକକ୍ଷ ।
ଅଟନ୍ତି ସେ ମହାଧନୁର୍ଦ୍ଧର ଦେନ କ୍ଷତ୍ରୀ
ଏକ ଶରକେ ଆରେକ ମାରି ନିବାରନ୍ତି ।
ଏହି ରୂପେ ନବଘଡ଼ି ଯାଏ ହେଲା ରଣ
ଚନ୍ଦ୍ରାଙ୍କୁର ବିନ୍ଧିଲା ଯେ ତିନଶତ ବାଣ ।
ଆଘାତ ପାଇ ସେ ରାଜା କୋପ ଗୁରୁତର ।
ଭେଦିଲା ସେ ଯାଇ ବଇରାଜର ଶରୀର ।
ଶତେକ ନାରାଚ ସେହି ଧନୁରେ ପୂରାଇ
ରଥ ଉପରକୁ ବୀର ବିନ୍ଧିଲା ନଠାଇ ।
ସ ରଥିକୁ ଶତ ଚାରିଅଶ୍ୱେ ଚାରିଶତ
ଧନୁ ଯେନ ତାକୁ ସେହୁ ବିନ୍ଧିଲା ଅୟୁତ ।
ହୁଙ୍କାରି ନାରାଚ ରାଜା ବନ୍ଧେ କୋପକରି
ପକାଇଲା ଚନ୍ଦ୍ରାଙ୍କୁର ରଥକୁ ବିଦାରି ।
ଧନୁ ସହିତ ପଡ଼ିଲା ହୟ ଯେ ସାରଥି
ଭୂମିରେ ଉଭା ହୋଇଲା ସେ ରାଜା ବିରଥୀ ।
ଖଡ଼ଗ ଫଳାକୁ ଯେନ ଧାଇଁଗଲା ବେଗେ ।
ତାହାକୁ ସେ ବଇରାଜ ଛେଦିଲାକ ଆଗେ ।
ହତଆୟୁଧ ହୋଇଣ ପଳାଇଲା ବୀର
ପଛେ ଗୋଡ଼ାଇଲା ବଇରାଜ ନୃପବର ।
କେଶ ବାସ ଅସମ୍ଭାଳେ ଧାମଇଁ ନୃପତି
ପଛକୁ ନ ଚାହିଁ ସେହି ପଳାଏ ଝଟତି ।
ଅନେକ ବନ କନ୍ଦର ଗଲା ପାର ହୋଇ
ଏକାମ୍ର ବନେ ପ୍ରବେଶ ହୋଇଲା ସେ ଯାଇଁ ।
ଝାଳରେ ବୁଡ଼ି ଅଛଇ ରାଜାର ଶରୀର
ଖରତର ହୋଇ ବହେ ନିଶ୍ୱାସ ତାହାର ।
ବଦନ୍ତି ଅଗସ୍ତିମୁନି ଶୁଣ ନରରାୟ
ଭେଟିଲା ସେ ବନେ ଯାଇଁ ରାଜା ଧନଞ୍ଜୟ ।
ସ୍ୱଭାବେ ଅର୍ଜ୍ଜୁନ ଧରିଛନ୍ତି ରୁଦ୍ରବେଶ
ଜଟକରି ଶିରେ ବାନ୍ଧିଅଛି ନିଜ କେଶ ।
କପାଳେ ବିଭୂତି କର୍ଣ୍ଣେ ତମ୍ବାର କୁଣ୍ଡଳ
ହୃଦରେ ରୁଦ୍ରାକ୍ଷ ସଙ୍ଗେ ସ୍ଫଟିକର ମାଳ ।
କକ୍ଷା କୌପିନ କସୁରିରେଖ ଯମଦାଢ଼
କଟିରେ ଅଛଇ ସୂନ୍ଦହୋଇ ଏକ ଭିଡ଼ ।

ପିଠିରେ ପଡ଼ି ଅଛଇ ଅକ୍ଷୟ ତୂଣୀର
ଗାଣ୍ଡୀବ ନାମେ ସେ ଧନୁ ଅଛି ବାମକରେ ।
ଦକ୍ଷିଣ ଭୁଜରେ ତାର ଟିଣାହଳ କୁଠାର
ଦେଖି ମନେ ବିଚାରଇ ଚନ୍ଦ୍ରାଙ୍କୁର ବୀର ।
କେବଣ ମହାତ୍ମା ଏହି ତପିବେଶ ଯେନ
ଆବର ବିଶେଷ ଶୋଭେ ଧନୁଶର ବେନ !
ଏ ରୂପକୁ ପଟାନ୍ତର ତିନିପୁରେ ନାହିଁ
ନିର୍ଦ୍ଧୂମ ଅନଳ ପ୍ରାୟେ ନୟନ ତେଜହିଁ ।
ନିଶ୍ଚେ ଏ ପରଶୁରାମ ଧେନୁକ ନନ୍ଦନ
ମୋହର କଷ୍ଟ ଫେଡିବ ଏହି ଆଜଦିନ ।
ଏତେ ବିଚାରି ଯେ ବୀର ନିକଟକୁ ଗଲା
ହେ ସ୍ୱାମି ଶରଣ ବୋଲି ଦଣ୍ଡବତ କଲା ।
କର ଧରି ପାର୍ଥ ତାକୁ ବସାଇଲା କତି
ତୁରିତେ ମିଳିଲା ଯାଇଁ ବୈରାଜ ନୃପତି ।
ଅର୍ଜ୍ଜୁନକୁ ବୋଇଲା ଏ ମୋହର ବଇରୀ
ଛାଡ଼ିଦିଅ ଏହାକୁ ମୁଁ ପକାଇବି ମାରି ।
ଏହାର ରକତେ ମୁହିଁ କରିବି ତର୍ପଣ
ତେବେ ସିନା ରହିବ ଯେ କ୍ଷତ୍ରିୟଙ୍କ ପଣ ।
ଅର୍ଜ୍ଜୁନ ବୋଇଲେ ରହ ରହ ମହାତମା
ଏହାର ତୋହର ଦ୍ୱନ୍ଦ୍ୱ କପାଇଁ ଜାଣିମା ।
ଏ ତୋର କପାଇଁ ଦୋଷୀ କପାଁ ତୋର ରାଗ
ବସ ହେ ନୃପତି କୋପକରି ପରିତ୍ୟାଗ ।
ଭୂହି ଯେ ବୋଇଲୁ ଛାଡ଼ି ମାରିବି ଏହାକୁ
ପୁଣି ଭୟେ ଅଇଲା ଏ ବୀର ମୋ ପାଶକୁ ।
ଶରଣ ଉଦ୍ଧାରଣ ମୁଁ ଅଟଇ ଯୁଗତେ
କ୍ଷତ୍ରିୟ ହୋଇ ଶରଣ ଛାଡ଼ିବି କେମନ୍ତେ ।
ଶୁଣି ମହାକୋପ କଲା ବୈରାଜ ନୃବର
ଜାଣିଲି ଯୋଗିଆ କାଳ ପୂରିଲାଣି ତୋର ।
ଏତେ ବୋଲି ବୀର ବେଗେ ଧନୁ ଆମଞ୍ଚିଲା
ଅର୍ଜ୍ଜୁନର ଉପରକୁ ନାରାଚ ବିନ୍ଧିଲା ।
କୋଡ଼ିଏ ବାଣ ମାଇଲା ସେହି କୋପଭରେ
ଅର୍ଜ୍ଜୁନ ତା ନିବାରିଲେ କଉତ ପ୍ରକାରେ ।
ନାରାଚ ବିଫଳ ଦେଖି ପୁଣି ସେ ବିନ୍ଧଇ
ଅର୍ଜ୍ଜୁନ ଡାକ ଦିଅଇ ରହ ରହ ଭାଇ ।
ଅକାରଣେ ମରିବୁ ତୁ କହ କି ନିମନ୍ତେ
ସାମାନ୍ୟ ଜନ ପରାୟେ ନ ମଣ ତୁ ମୋତେ ।

ଏ ମର୍ତ୍ତ୍ୟପୁରେ ଅଛନ୍ତି ଯେତେ ଶସ୍ତ୍ରଧାରୀ
ମୋର ମୁଖ ଦେଖି ଧନୁ ନ ପାରନ୍ତି ଧରି ।
ତୁ ଅବା ନ ଜାଣି ଯେବେ କରିବୁ ସମର
କାର୍ଯ୍ୟ ନ ପାଇବୁ ନଷ୍ଟେ ଯିବୁ ଯମପୁର ।
ଶୁଣି କୋପଭର ହୋଇ ରାଜା ବଇରାଜ
ବେଢ଼ିଲେକ ଯାଇ ଘେନି ରଥ ଅଶ୍ୱ ଗଜ ।
ତିରିଶ ସହସ୍ର ରାଜା ସଙ୍ଗେ ମତ୍ତହସ୍ତୀ
ସତୁରି ଅର୍ବୁଦ ଅଶ୍ୱ ବହୁତର ରଥୀ ।
ଏକାଦଶ ବୃନ୍ଦ ଓଟଚଢ଼ାଳୀର ତାର
ଏକାବନ କୋଟି ବଳ ପଦାତି ଆବର ।
ଏତେ ସୈନ୍ୟ ଘେନି ରାଜା ପାର୍ଥଙ୍କୁ ବେଢ଼ିଲା
ନାରାଚମାନ ଅର୍ଜୁନ ଉପରେ ବର୍ଷିଲା ।
କଳ୍ପରେ ନାଶେ ବଡ଼ବାଗ୍ନିର ସେ ନାତି
ନାରାଚ ପେଷନ୍ତି ସେହି ବେଢ଼ି ଚଉକତି ।
କେ ଶତେ କେ ସହସ୍ରେ କେବା ଲକ୍ଷେକଅଯୁତେ
କେ ଶାବଳ ବାଙ୍କିଆ କେ ବିନ୍ଧଇ ଭୂରତେ ।
କେହୁ ଦଶବଂଶ କେହୁ ବାଣ ମାରେ ଗୁରି
କେବଣ ଯୋଦ୍ଧା ବିନ୍ଧଇ ନାରାଚ ସତୁରି ।
କେ ପାଞ୍ଚ ପଚାଶବାଣ ବିନ୍ଧେ ଗର୍ଜି ଉଠି
କେ ପନ୍ଦର କେ ଏଗାର କେ ସତୁରି ଷାଠି ।
କୋପେ ବାସବୀ କରୁଷ ବାଣ ଏକ ପେଷି
ସମସ୍ତଙ୍କ ଶରକୁ ସେ ପକାଇଲା ନାଶି ।
ଏ ବିଧି ସମର ହେଲା ବେନିଦଣ୍ଡ ଯାଏ
ଶସ୍ତ୍ର ସଂହରି ଅର୍ଜୁନ ବିଚାରେ ହୃଦୟେ ।
ହେଳାଯୁଦ୍ଧ କରିବାରେ ନାହିଁ ପ୍ରୟୋଜନ
ଏତେ ବୋଲି ପାର୍ବତୀଙ୍କୁ ସୁମରେ ଅର୍ଜୁନ ।
କଇଳାସେ ଥାଇ ତାହା ଜାଣିଲେ ଚଣ୍ଡୀ
ମନଭେଦୀ ଶର ଦେଲେ ଅର୍ଜୁନ ତା ଧରି ।
ଧନୁରେ ବସାଇ ତାକୁ ଡଆରଇ ବୀର
ମୁହିଁ ନ ଜାଣଇ ଏ ଯେ କେଉଁ ନୃପବର ।
ସୈନ୍ୟ ସଙ୍ଗେ ମୋହକର ପକାଅ ତୁ ଯାଇ
ଏତେ ବୋଲି ନାରାଚକୁ ପେଷିଦେଲା ସେହି
ସେ ନାରାଚ ଗୋଟି ତହୁଁ ବେଗେ ଚଳିଗଲା
ବଇରାଜ ରାଜାକୁ ସେ ବାନ୍ଧି ନେଇଲା ।
ବୈରାଜ ନୃପତି ମନ୍ତ୍ରୀ ନାମ ଧୀରମତି
ଅର୍ଜୁନଙ୍କୁ ଚାହିଁ ସେହି କଲା ବହୁ ସ୍ତୁତି ।

କାର୍ପଣ୍ୟ ହୋଇ ଶୋଇଲା ତାହାଙ୍କର ପଦେ
ଉଠ ଉଠ ବୋଇଲେକ ତାକୁ ଧନଞ୍ଜୟେ ।
ଆହେ ମହାତମା ଉଠି କହ ହୋ ଆଗର
କେବଣ ଦେଶର ଅଟେ ଏହୁ ଦଣ୍ଡଧର ।
କି ନିମନ୍ତେ ଏହାଙ୍କର ହୋଇଲା ଅପ୍ରୀତି
କର ଯୋଡ଼ିଣ କହଇ ମନ୍ତ୍ରୀ ଧୀରମତି ।
ବୈରାଜ ରାଜା ପରମହଂସେ ଏହା ଘର
ଯଶୋବନ୍ତପୁର ରାଜା ଏହି ଚନ୍ଦ୍ରାଙ୍କୁର ।
ବଇରାଜ ଦୁହିତାକୁ ଏହାର କୁମର
ବଳେ ଧରି ଆଣିବାରୁ ବଇରାଜ ବୀର ।
କ୍ରୋଧଭରେ ଥାଟ ଘେନି ମିଳିଲା ତା ଦେଶେ
ଅନେକ ସମର କଲେ ଦୁଇବୀର ରୋଷେ ।
ପୁନ ଚନ୍ଦ୍ରଧ୍ୱଜକୁ ସେ ରଣେ ବନ୍ଦୀକଲା
ଯୁଦ୍ଧ ହାରି ଚନ୍ଦ୍ରାଙ୍କୁର ଭୟେ ପଳାଇଲା ।
ଏଥେ ଆସି ତୋର ପାଦେ ପଶିଲା ଶରଣ
କୋପେ ଗୋଡ଼ାଇଣ ଥିଲା ଏହୁ ନରଗଣ ।
ତୋହର ସଙ୍ଗତେ ଦେବ ଅପ୍ରୀତି ହୋଇଲା
ତେତେ ଜିଣି ନ ପାରି ସେ ବନ୍ଧନେ ପଡ଼ିଲା
ସ୍ୱାମୀ ମୁଁ ଏହାର ମନ୍ତ୍ରୀ କହିଲି ତୁମ୍ଭରେ
ଦୋଷ କ୍ଷମାକର ବୋଲି ପଡ଼ିଲା ପଦ୍ମରେ ।
ତାହା ଶୁଣିଣ ଅର୍ଜୁନ ହୋଇଲେ ପ୍ରସନ୍ନ
କଲେ ରାଜା ବୈରାଜର ବନ୍ଧନ ମୋଚନ ।
ଜୀବନ୍ୟାସ ଶର ବେଗେ ପେଷିଣ ପାର୍ଥ
ଜୀଆଇଲେ ତାର ସୈନ୍ୟ ଅଶ୍ୱ ଗଜ ରଥ ।
ଅର୍ଜୁନ ଯେ ପଚାରନ୍ତି ବୈରାଜକୁ ଚାହିଁ
ଦେଖିବା ତୋ ଦୁହିତାକୁ ଆଣ ନରସାଇଁ ।
ନୃପତି ବୋଇଲା ଦେବ ମୋହର କୁମାରୀ
ସ୍ନାନ ନଦୀ ତହୁଁ ଚନ୍ଦ୍ରଧ୍ୱଜ ବୀର ନେଲା ହରି ।
ରଖିଅଛି ତାକୁ ନେଇ ନିଜ ଅନ୍ତଃପୁରେ
ସେ ବନୁ ଅଛଇ କନ୍ୟା ତାହାର ମନ୍ଦିରେ ।
ବନ୍ଦୀରେ ରଖିଛି ମୁହିଁ ବୀର ଚନ୍ଦ୍ରଧ୍ୱଜ
ଆଜ୍ଞାଦେଲେ ଆଣିଦେବି କହିଲା ବୈରାଜ ।
ପାର୍ଥ ବୋଇଲେକ ତୁମ୍ଭେ ଆଣ ସେ ଦୁହିଙ୍କି
ତତକ୍ଷଣେ ବଇରାଜ ଚାହିଁଲା ମନ୍ତ୍ରୀକି
ରାଜା ସନମତ ଜାଣିଲେକ ମନ୍ତ୍ରୀବର
ମିଳଇ ସେ ଚନ୍ଦ୍ରାଙ୍କୁର ରାଜାର ମନ୍ଦିର ।

କହିଲା ଏ ସବୁ କଥା ତାର ମନ୍ତ୍ରୀ ଆଗେ
ବନ୍ଧନ ମୁକତ କର ଚନ୍ଦ୍ରଧ୍ୱଜ ବେଗେ ।
ଅନ୍ତଃପୁରୁ ବମ୍ବମାଳୀ କନ୍ୟାକୁ ଆଣିଲେ
ରଥରେ ବସାଇ ଦୁଇମନ୍ତ୍ରୀ ଘେନି ଗଲେ ।
ଅର୍ଜୁନଙ୍କ ଆଗେ ନେଇ ଥୋଇଲେ କୁମାରୀ
ସେ ଦୁଇ ରାଜାଙ୍କୁ ଚାହିଁ ଅର୍ଜୁନ ପଚୁର
ଆହେ ବଇରାଜ ନୃପ ଶୁଣ ମୋର ବାଣୀ
ଚନ୍ଦ୍ରଧ୍ୱଜେ ବରାକର ତୋହର ଦୁଲଣୀ ।
ଶୁଣି ନୃପତି ଚାହିଁରେ ସନମତ କଲା
ତୋ'ହର ମନକୁ ଯେବେ ଏହା ଯୋଗାଇଲା
ଶୁଣ ଆହେ ମନୁରାଜେ ଅଗସ୍ତି କହିଲେ
ଚନ୍ଦ୍ରଧ୍ୱଜ ବମ୍ବମାଳୀ ବରା କରାଇଲେ ।
ଜୟ ତୁ ଶାରଳା ମାଗୋ ଅଟୁ ମହାମାୟୀ
ସମ୍ବଲପୁରେ ବୋଲାଉ ତୁହି ସମଲାଈ ।
ଗହନ ବନସ୍ତେ ତୋର ନାମ ବିଙ୍ଗୁଳାଈ
ଚର୍ଚ୍ଚିକା ନଗରେ ତୋର ନାମ ଚର୍ଚ୍ଚିକାଈ ।
ଗ୍ରାମେ ଗ୍ରାମେ ବୋଲାଉ ତୁ ରୂପାଈ ସୁନାଈ
କୋଟରେ ଯେ ବରୁଣାଈ ଚଣ୍ଡୀ ଜାଗୁଳାଈ ।
ଜନ୍ମେ ଜନ୍ମେ ମୁହିଁ ତୋର ପାଦତଳେ ଦାସ
ଅପଣ୍ଡିତ ଶୂଦ୍ରମୁନି ଏ ଶାରଳା ଦାସ ।

---

## ଚନ୍ଦ୍ରାଙ୍ଗଦା ପରିଣୟ

ଏଥୁ ଅନନ୍ତରେ ମନୁ ବୈବସ୍ୱତ ରାଜା
ଧୂପ ଦୀପ ଦେଇ କଲେ ମୁନିପାଦ ପୂଜା ।
କହେ ମୁନି କହ ଏଠାରୁ ହେଲା କେଉଁ ରସ
ପାର୍ଥର ଏ ବନବାସ ଅପୂର୍ବ ରହସ୍ୟ ।
ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
ସେଠାବରେ ଶେଷ ହେଲା ଯହିଁ ସ୍ୱୟମ୍ବର ।
ଅନେକ ସାନନ୍ଦ ହୋଇ ତହୁଁ ବୈରାଜା
ଅର୍ଜୁନ ଚରଣେ କଲେ ପୁଣ ପୁଣ ପୂଜା ।
କହେ ସ୍ୱାମି କେ ତୁମ୍ଭେ ଏହା କହିବା ବିଚାର
ମାନବ ଦୃଷ୍ଟିରେ ଆମ୍ଭେ ଚିହ୍ନି ତ ନ ପାରୁ
ହରହର କିବା ସ୍ୱାମୀ ଅଟ ପୁରନ୍ଦର
କିବା ଯମଦଗ୍ନି ସୁତ ବୀର ପର୍ଶୁଧର ।
କିବା ଧର୍ମ ରାଜେ କରଅଛ ଅଦଭୁତ
ଆମ୍ଭଙ୍କୁ ଯେ ସାବଧାନ କହିବା ନିମନ୍ତେ ।

ହସି ତାହାଙ୍କୁ କହଇ ପାଣ୍ଡବ ସୁନ୍ଦର
ସାବଧାନ ହୋଇ ଶୁଣ ତେବେ ନୃପବର ।
ନୁହଇ ମୁଁ ହରହର ଇନ୍ଦ୍ର ମୋର ତାତ
ମୋହର ତ ଅଜାଗୁରୁ ରେଣୁକାର ସୁତ ।
ପଣ୍ଡୁର ନନ୍ଦନ ମୋର ନାମ ଫାଲଗୁନ
ମାତା ନାମ କୁନ୍ତୀ କୋନ୍ତଭୋଜର ନନ୍ଦନା ।
ଶୁଣି ଚରଣେ ପଡ଼ିଲେ ବେନି ନରମଣି
ଉଠି ବଇରାଜ ରାଜା ମାଗଇ ମେଲାଣି ।
ଅଇଲି ମୁଁ ବହୁଦିନ ହେଲା ରାଜ୍ୟ ଛାଡ଼ି
ଆଜ୍ଞା ହୋଇଲେ ମୁଁ ଯିବି ଥାଟକୁ ସଜାଡ଼ି ।
ଶୁଣ ଆହେ ମନୁରାଜା କହନ୍ତି ଅଗସ୍ତି
ମେଲାଣି ଘେନି ଚଳିଲା ବୈରାଜ ନୃପତି ।
ଏଥୁଅନନ୍ତରେ ରାଜା ତିନାଙ୍କୁର ବୀର
କରଯୋଡ଼ି ଉଭାହୋଇ ଅର୍ଜୁନ ଆଗର ।
ପାନ୍ଦ ମନ୍ତ୍ରୀ ଘେନି ସଙ୍ଗେ ପାର୍ଥ ପାଦେଖଟି
ପୁନବଧୂ ସହିତରେ ଭୂମିପରେ ଲୋଟି ।
ଉଠ ବୋଇଲେ ବିଚିତ୍ରବୀର୍ଯ୍ୟଙ୍କର ନାତି
ଆଜ୍ଞା ପ୍ରମାଣେ ତୁରିତେ ଉଠିଲା ନୃପତି ।
ସ୍ତୁତି କଲା ଶିରେ ବେନି କରକୁ ନିବେଶି
ସ୍ୱାମୀ ମହୀ ଉଦ୍ଧାରଣ ଅର୍ଥେ ବନବାସୀ ।
ସ୍ୱାମୀ ଅଙ୍ଗାରପର୍ଣ୍ଣଗ ଜିଣିଲୁ ବନସ୍ତେ
ସ୍ୱାମୀ ଲାଖ ବିନ୍ଧିଲୁ ତୁ ରାଜାଙ୍କ ଅଗ୍ରତେ ।
ସ୍ୱାମୀ ଲକ୍ଷେ ରାଜା ଜିଣି ଆଣିଲୁ ଦ୍ରୌପଦୀ
ସ୍ୱାମୀ ହରିଲୁ ଅଗ୍ନିଙ୍କ ଲୁଦୁବୁଦୁ ବ୍ୟାଧି ।
ସ୍ୱାମୀ ତୁ ଇନ୍ଦ୍ରଙ୍କୁ ଜିଣି ପାଇଅଛୁ ବର
ସ୍ୱାମୀ ତୁ କିରାତରୂପେ ଜିଣିଲୁ ଶଙ୍କର ।
ସ୍ୱାମୀ ତୋତେ ବର ଦେଲେ ହର ଉମା ଯାଚି
ପୁନ କଲେ ତୋର ନାମ ଦେଇ ସବ୍ୟସାଚୀ ।
ସ୍ୱାମୀ ତୋହର ମହିମା ଅଟଇ ଅପାର
ସ୍ୱାମୀ ଶରଣଜନଙ୍କୁ କର ତୁ ଉଦ୍ଧାର ।
ବିରଥ ହତ ଆୟୁଧେ ନ ମାରୁ ସମରେ
ଶ୍ରୀହରିର ସଖା ମୋତେ ଦୟାକର ବାରେ ।
ଏମନ୍ତେ ଅନେକ ସ୍ତୁତି କଲା ନୃପମଣି
ପ୍ରସନ୍ନ ହେଲେ ଗାଣ୍ଡିବପାଣି ତାହା ଶୁଣି ।
ହସି ଅର୍ଜୁନ ବୋଲନ୍ତି ଏ ସତ୍ୟ ବଚନ
ମାଗ ହେ ନୃପତି ଯାହା ହୁଏ ତୋର ମନ ।

ଅର୍ଜ୍ଜୁନ ପ୍ରସନ୍ନ ହେବା ଜାଣି ନୃପବର
କପାଳେ କର ନବେଶି କରଇ ଉତ୍ତର ।
ସ୍ୱାମୀ ସେବେଛି ମୋହର ଘେନିଲେକ ସେବା
ମୋହର ରାଜ୍ୟକୁ ଏବେ ବିଜୟ କରିବା ।
ଦୁହିତା ଗୋଟିଏ ମୋର ଅଛି ଅବିବାହୀ
ତାକୁ ପ୍ରଦାନ କରିବି ମୁହିଁ ତୁମ୍ଭଙ୍କୁହିଁ ।
ଆଉର ବିଶେଷେ ଜାଣ ମୋର ପୁରଜନ
ବିସ୍ମୟ କୃଷ୍ଣଙ୍କୁ ନେଣେ କରିବେ ଦର୍ଶନ ।
ଶୁଣିଣ ହରଷ ହୋଇ ପଣ୍ଡୁର କୁମର
ତୁରିତେ ଆସନ ଛାଡ଼ି ହୋଇଲେ ବାହାର ।
ଅର୍ଜ୍ଜୁନଙ୍କୁ ଆଗେ ଘେନି ଚଳଇ ନୃପତି
ଯାଇ ଆପଣା ନଗର ନିକଟେ ମିଳନ୍ତି ।
ରାଜାର ସେ ଅଙ୍ଗବଳ ପଳାଇ ସମସ୍ତେ
ଭୟେ ଲୁଚି ରହିଥିଲେ ଜମ୍ବାଳ ପର୍ବତେ ।
ରାଜାର ଆସିବା ଜାଣି ସମସ୍ତେ ଅଇଲେ
ସମାଗେହେ ରାଜା ଯାଇ ନଗରେ ପଶିଲେ ।
ଅର୍ଜ୍ଜୁନଙ୍କୁ ରଖିଲା ସେ ସ୍ୱର୍ଣ୍ଣମୟ ପୁରେ
ବସାଇଲା ଗଜଦନ୍ତ ପଲଙ୍କ ଉପରେ ।
ଜ୍ୟୋତିଷଙ୍କୁ ଡକାଇ ବୋଇଲା ରାଜନ
ବିଚାରିଣ ଧର ବିଭା ଲଗ୍ନ ଶୁଭଦିନ ।
ଜ୍ୟୋତିଷେ ବୋଇଲେ ଦେବ ଆଜ ସୋମବାର
ଆସନ୍ତା ରବିବାରକୁ ବିଭାଘର କର ।
ଯୋଗାଇଲା ଏକାଦଶୀ ଦିନ ବିଗ୍ରହକୁ
ଫାଲଗୁନ ଶୁକ୍ଳପକ୍ଷ ଯୋଗ ଏ ବିଭାକୁ ।
ନକ୍ଷତ୍ର ମୃଗଶିରା ମିଥୁନ ଘରେ ଶଶୀ
ବାଣିଜ୍ୟ କରଣ ସୌଭାଗ୍ୟ ଯୋଗ ପ୍ରକାଶୀ ।
ତାରବଳ ଚନ୍ଦ୍ରବଳ ବୁଝିଲେ ଆଉର
ଛାଡ଼ି କାଢ଼ି ଗ୍ରହ କୋଠି ଭାଟି ଦିନବାର ।
ପ୍ରଶଳାକାଦି ନାଗନାଡ଼ି ସେ ବୁଝିଲେ
ଏହିଦିନ ଛାଡ଼ି ବିଭା କର ହୋ ବୋଇଲେ ।
ଶୁଣିଣ ନୃପତି କଲା ଉଦବେଗ ମନ
ମନ୍ତ୍ରୀକି ଗୁହାରି ବୋଇଲା ଏମନ୍ତ ବଚନ ।
ନଗର ପୁର ସମସ୍ତ ତୁରିତେ ମଣ୍ଡାଇ
ବିଭାଘରର ଯୋଗାଡ଼ମାନ କର ଯାଇ ।
ଡ଼ ମଣ୍ଡପ ମଣ୍ଡାଇ ଦେଉଳ ଜଗତି
ନ୍ତି ପନ୍ତି ସୁବର୍ଣ୍ଣର କଳଶ ବସାନ୍ତି ।

ବିଚିତ୍ର ଚିତ୍ରଗଳମାନ ଭିତ୍ତେ ଘର ଘର
ଚିତ୍ର ଲେଖନ୍ତି କରନ୍ତି ସମସ୍ତଙ୍କ ଘର ।
ସ୍ଫଟିକ ପାବଚ୍ଛମାନ ବାନ୍ଧି ଦ୍ୱାରେ ଦ୍ୱାରେ
ସାଧୁତ ଜନ ବାଣିଜ୍ୟ କର ବଣିଜାରେ ।
ଦାଣ୍ଡ ପହଁରାଇ ପାଣି କର୍ପୂର ସେ ସିଞ୍ଚି
ଚନ୍ଦନ ନେଇ ସୁବାସ ପୁଷ୍ପମାନ ବିଞ୍ଚି ।
ନଗ ପୁର ଝଲମଲ ଦେଖନ୍ତି ରାଜନ
ସାଧୁ ସାଧୁ ମନ୍ତ୍ରୀଙ୍କି ସେ ବୋଲନ୍ତି ବଚନ ।
ଏମନ୍ତ ମନ୍ଦିରେ ଯହୁଁ ଦିନ ଦିନ ଗଲା
ସମସ୍ତ ଯୋଗାଡ଼ ବସ୍ତୁ ବର୍ଦ୍ଧି ସବୁ ହେଲା ।
ମଙ୍ଗଳ ବେଳାକୁ ଧରି ଅନେକ ଯୁବତୀ
ଗ୍ରାମଦେବତାଙ୍କୁ ଶୁଭେ ମଙ୍ଗଳାଣ ଯାନ୍ତି ।
କେତେ ଦୂର୍ବାକ୍ଷତ କେତେ ଧୂପ ଦୀପ ଘେନି
ଶୁଭ ଗୀତ ଗାଇ ଦାଣ୍ଡେ ବୁଲନ୍ତି କାମିନୀ ।
ବୁଲନ୍ତି ସେ ପଞ୍ଚମନ ରାଜଦାଣ୍ଡ ବାଟେ
ବେଳୁବେଳ ଶୋଭାଦିଶି ଦିଶିଲା ନିଷ୍ଟେ ।
ଦେବତାଙ୍କୁ ମଙ୍ଗଳ ସେ ନିଜପୁରେ ଆସି
ଦାଣ୍ଡେ ବୁଲନ୍ତି ମଙ୍ଗଳ ଗୀତ ଭାଷି ଭାଷି ।
ସୁବର୍ଣ୍ଣର କଟୋରେ କୁଙ୍କୁମ ଆଣନ୍ତି
ଅର୍ଜ୍ଜୁନଙ୍କ ଅଙ୍ଗେ ନେଇ ହଳଦୀ ବୋଳନ୍ତି ।
ନାନାବିଧ ଅଳଙ୍କାରେ କରନ୍ତି ମଣ୍ଡନ
ଏହି ବିଧିରେ କନ୍ୟାଙ୍କୁ କରନ୍ତି ଭୂଷଣ ।
ରଜନୀ ଭୁଅନ୍ତେ ପୁଣ ଯୁବତୀଏ ଆସି
କାଖେ ଘେନି ଶତମୁଖ ସୁବର୍ଣ୍ଣ କଳସୀ ।
ଦାଣ୍ଡେ ବୁଲନ୍ତି ମଙ୍ଗଳ ଗୀତ ପୁଣି ଗାଇ
ଦ୍ୱାରେ ଦ୍ୱାରେ ବୁଲି ପାଣି ମାଗନ୍ତି ସେ ଯାଇ
ଘରେଥିବା ଲୋକେ ଜାଣି ବୋଲନ୍ତିତ ବାଳୀ
ଅଇଲେଣି ଦ୍ୱାରେ ଦ୍ୱାରେ ବୁଲି ପାଣି ତୋଳି
ଅବିଥ ଯୁବତୀମାନେ ଶୁଚିମନ୍ତ ହୋଇ
ପବିତ୍ର ଜଳ ଆଣି ଦିଅନ୍ତି ବଢ଼ାଇ ।
ଏମନ୍ତ ଯୁବତୀମାନେ ଜଳ ଆଣି ଦେଲେ
ରାଜାର ମୁଦୁସୁଳିଏ ତାହା ଘେନିଗଲେ ।
ଯାତକୁମ୍ଭେ ସଜ୍ଜି ଶୁଭେ ପଶିଲାକ ପାଣି
ବାଦ୍ୟତୁଡ଼ି ଆସନ୍ତି ତହିଁ ସକଳ ତରୁଣୀ ।
ଛଯାକ ବୁଲି ସହୁଁ ସେ ପାଣି ଆଣନ୍ତି
ତେଣୁ ତାକୁ ଗ୍ରହପାଣି ଲୋକେ ସେ ବୋଲନ୍ତି

ସୁବର୍ଣ୍ଣ ପିଢ଼ାରେ ନେଇ କନ୍ୟାକୁ ବସାଇ
ଗନ୍ଧ ଔଷଧ ସୁଗନ୍ଧ କେଶରେ ଲଗାଇ ।
ସେହି ଶ୍ୱେତପାଣି ଘେନ ଅଭିଷେକ କଲେ
ତହିଁ ଉତ୍ତାରୁ ସେ ପୁଣି ଅଁଳା ବୋଲିଲେ
ସୁବାସିତ ଜଳେ ସ୍ନାନ କରାଇଲେ ପୁଣି
କେଶ ପୋଛିଦେଲେ ସରୁ ନବବସ୍ତ୍ର ଆଣି ।
ବର କନ୍ୟାଙ୍କୁ ପୋଛିଲେ ଝୀନବସ୍ତ୍ର ଘେନ
ବର କନ୍ୟା ଦେହୁ ପାଣି ଛଡ଼ାଇ କାମିନୀ ।
ଦେବାଙ୍ଗ ପଟମ୍ବ ନେଇ ବରକୁ ପିନ୍ଧାଇ
ସରୁ ରଙ୍ଗପାଟେ କନ୍ୟା ସର୍ବାଙ୍ଗ ଘୋଡ଼ାଇ
ପଞ୍ଚଗ୍ରାସୀ କରାନ୍ତି ଯେ ଆଣି ଶ୍ୱେତଭାତ
ଏମନ୍ତ ସମୟେ ଆସି ହୋଇଲା ପ୍ରଭାତ ।
ପୁଚ୍ଛନ୍ତି ଜଉତିଷଙ୍କୁ ଶୁହିଁ ନରସାଇଁ
ଜାଣି କହିଦେବ ଅନୁକୂଳ ବେଳ ସେହି ।
ମଣ୍ଡାଇ ଶୁଦ୍ଧା ମଣ୍ଡପ ବେଗେ ଦଣ୍ଡଧାରୀ
ଖଞ୍ଜି ହୀରା ମାଳା ଗଜଦନ୍ତ ପୀଢ଼ା ପାରି ।
ବରବେଶ ହୋଇ ବିଜେ ପାଣ୍ଡବ ସୁନ୍ଦର
ଯାଇ ସେ ବସିଲେ ଶୁଭେ ବେଦୀର ଉପର ।
ଏମନ୍ତ ବେଳେ ଆସଇ ରାଜାର ଦୁହିତା
ହୁଳହୁଳି ଦିଅନ୍ତି ଯେ ଅନେକ ବନିତା ।
ବେଦୀ ଉପରେ ବସିଛି ପଣ୍ଡୁ ରାଜାଶିଷ୍ୟ
ତାଙ୍କ ଉପରେ ଉହାଡ଼ କଲେ ବନବାସ ।
ଅଞ୍ଚଳେ ଲବଣ ଗୁଣ୍ଡ କନ୍ୟା ଧରିଥିଲା
ଅର୍ଜ୍ଜୁନର ଉପରକୁ ବିଞ୍ଚି ଫିଙ୍ଗିଦେଲା ।
ହରଷେ ଯୁବତୀମାନେ ଗାଇଲେ ମଙ୍ଗଳ
କହନ୍ତି ଅଗସ୍ତି ଶୁଣ ମନୁ ମହୀପାଳ ।
ସୁଜାଣେଶ୍ୱର ନାମରେ ରାଜା ପୁରୋହିତ
ବିପ୍ର ନିମନ୍ତ୍ରେ ବେଦୀରେ ବସିଲା ଭୂରିତ ।
ବାକ୍ୟ କରାନ୍ତି ଯେ ବସି ଅର୍ଜ୍ଜୁନ ଆଗରେ
ବସାଇଲେ ଅର୍ଜ୍ଜୁନକୁ ନେଇ ସେ ବସ୍ତ୍ରରେ ।
ଅଣାଇଥିଲା ଯେ ରାଜା ଅଞ୍ଜୁଠରୁ ପାଣି
ବରପାଦ ଧୋଇଦେଲା ଚିତ୍ରଧ୍ୱଜ ପୁଣି ।
ପ୍ରଥମ ବରଣ ପାଞ୍ଚ ଦେଲେକ ପିନ୍ଧାଇ
ବୋଇଲେ କନ୍ୟାକୁ ଆଣ ବସନ ପିନ୍ଧାଇ
ସେହି ବସ୍ତ୍ରକୁ ପିନ୍ଧଣ ରାଜାର ଦୁଲଣୀ
ବେଦୀ ଉପରେ ବସିଲା ଯାଇ ସୁଲକ୍ଷଣୀ ।

ମହାବାକ୍ୟ ଉଚ୍ଚାରଣ କଲେ ପୁରୋହିତ
କୁଶରେ ବାନ୍ଧିଲା ବର କନ୍ୟାଙ୍କର ହସ୍ତ ।
ଯୁବତୀଗଣ ମିଳଣ କରନ୍ତି ମଙ୍ଗଳ
ଶଙ୍ଖେ କୁଶପାଣି ତୋଳି ବୋଲେ ମହୀପାଳ
ସ୍ୱାମୀ ଆଜୁଁ ସେ ମବଂଶେ ପଶିଲା ଶରଣ
ବନ୍ଧୁତାପଣକୁ ମୁହିଁ ନୁହଇ ଭଜନ ।
ଯଉତୁକ ଦେଲା ଚିତ୍ରାଙ୍ଗଦା ନାମେ ଦାସୀ
ଧନ ରତ୍ନ ଆଦି ଦେଇ ଅର୍ଜ୍ଜୁନକୁ ତୋଷି
ଲାଜ ହୋମ ଶେଷକଲେ ପୁଣି ସେହି ରାତ
ବରକନ୍ୟା ମଧୁଶଯ୍ୟା ପୁରକୁ ଗମନ୍ତି ।
ରଜନୀ ପ୍ରଭାତୁ ବେଗେ ନିତ୍ୟକର୍ମ ସାରି
ଆସ୍ଥାନ ମଣ୍ଡପେ ବିଜେ କଲେ ଦଣ୍ଡଧାରୀ ।
ଦିବସରେ ଆସ୍ଥାନରେ ବସନ୍ତି ଅର୍ଜ୍ଜୁନ
ରାତ୍ରେ ଘରଣୀ ସଙ୍ଗରେ କଟାନ୍ତି ସେ ଦିନ
ଅର୍ଜ୍ଜୁନ ରହିଲା ତହିଁ ଷାଠିଏ ଦିବସ
ଅର୍ଜ୍ଜୁନର ବୀର୍ଯ୍ୟେ କଳୀ ହେଲା ଗର୍ଭବାସ
ଦିନେ ସେ ରାଜାର ପାଶେ କହଇ ଅର୍ଜ୍ଜୁନ
ସାବଧାନ ହୋଇ ଏବେ ଶୁଣ ହୋ ରାଜନ
ସମ୍ଭାଳଥାଅ ଦୁହିତା ଗୋଟିକି ତୁମ୍ଭର ।
ମୁହିଁ ଯାଉଅଛି ଏବେ ଅରଣ୍ୟ ଭିତର ।
ତାହା ଶୁଣନ୍ତେ ବିରସ କଲା ରାଜା, ମତି
କି କାରଣେ ବନେ ଯିବ ବୋଲଇ ନୃପତି
ସେବା କରିବାକୁ ମୁଁ କି ନୋହିଲି ରାଜନ
କ୍ଷମାକର ମୋତେ ଅପରାଧକୁ ନ ଘେନ
କିବା ଅପରାଧ କଲା ମୋହର କୁମାରୀ
ମୁହିଁ ଶରଣରେ ବାବୁ ପଦ୍ମରେ ତୋହର ।
ତୁ ତାହାର ନାଥ ଦୋଷ କରିବୁ ନା କ୍ଷମି
ତୁ କ୍ଷତ୍ରିବର ସେ ତ ଅଳଅଳ ଜେମା
ଅର୍ଜ୍ଜୁନର ପ୍ରତିବାକ୍ୟ ଶୁଣ ହେ ରାଜନ
ଦ୍ୱାଦଶ ବରଷ ହେଲା ଅଇଲି ମୁଁ ବନ ।
ଦୋଷ ନାହିଁ ତୁମ୍ଭର କି ତୁମ୍ଭ ଝିଅଙ୍କର
ସତ୍ୟ ଲଙ୍ଘି ନ ପାରିବ ଆହେ ନୃପବର
ଦ୍ୱାଦଶ ବରଷ ଶେଷ କରିବଇଁ ବନେ
ତୋହର ଦୁହିତା ଥାଉ ତୋହର ଭୁବନେ
ସନ୍ତୋଷ ହୋଇଲା ରାଜା ତହାଙ୍କର ଶୁଣି
ଚିତ୍ରାଙ୍ଗଦାକୁ ଯେ ରହେ ବୋଧି ଶାଠିମଣି

କେଶବ ସୁମରି ପାର୍ଥ ପାଦ ବଢ଼ାଇଲ
ଗହନ ଅରଣ୍ୟେ ପଶି ରଥ ବାହିଗଲ ।
ଝଙ୍କଡ଼ପୁରେ ତୋ ଘର ଜୟ ତୁ ଶାରଳା
ତୁହି ସର୍ବମଙ୍ଗଳା ତୁ ବୋଲଉ ହିଙ୍ଗୁଳା ।
ତୁହି ଘଟେ ଆସି ମୋତେ କହୁ ଯେ ସ୍ୱପନେ
ମୁହିଁ ତାହା ଲେଖଇ ଗୋ ପତ୍ରରେ ଲେଖନେ
ଜନ୍ମେ ଜନ୍ମେ ମୁହିଁ ତୋର ଅଟଇ ଶରଣ
ଶାରଳା ଦାସ ସେବଇ ତୋହର ଚରଣ ।

---

## ଉଲୁପୀ ବିବାହ

ବଦନ୍ତି ଅଗସ୍ତି ଆହେ ଶୁଣ ନୃପବର
ବନଶୋଭା ଦେଖି ଦେଖି ଯାଏ ଧନୁର୍ଦ୍ଧର ।
ଜମ୍ବୁ ଜମ୍ବୀର ଜେଉଟ ଜମ୍ବୀଳ କରଞ୍ଜ
ପଜାଙ୍ଗ ଜୟନ୍ତ ଯଷ୍ଟିମଧୁ ପୁଞ୍ଜ ପୁଞ୍ଜ ।
କରମଙ୍ଗା କୁରୁବେଲ୍ଲ କେରଣ୍ଡା କଇଥ
ଶାଳ ପିଆଶାଳ ତାଳ ତମାଳ ବହୁତ ।
ନାରଙ୍ଗ ନଡ଼ିଆ ନିମ୍ବ ବୃକ୍ଷ ଆଦି ଦେଖେ
ପଶୁପକ୍ଷୀ ଖେଳୁଛନ୍ତି ତହିଁ ଅତିସୁଖେ ।
ଏମନ୍ତେ ବନସ୍ତ ଶୋଭା ଦେଖିଦେଖି ଗଲ
ସରଯୂ ନଦୀର କୂଳେ ପ୍ରବେଶ ହୋଇଲ ।
ପୁଣ ବୃନ୍ଦଆ ମୂଳରେ ଧନୁ ତୋଣି ଥୋଇ
ନଦୀଜଳେ ପଶି ବୀର ସ୍ନାନ କଲ ଯାଇ ।
ଉଲୁପୀ ନାମରେ ଏକ ନାଗକନ୍ୟା ଆସି
ଅର୍ଜୁନ ବୁଡ଼ିବ ବେଳେ ଜଳ ମଧ୍ୟେ ପଶି ।
ଅର୍ଜୁନକୁ ଘେନ ବାଳୀ ଜଳେ ଜଳେ ଗଲ
ଆପଣାର ପୁରେ ଯାଇ ପ୍ରବେଶ ହୋଇଲ ।
ମଣିମୟ ପୁର ତହିଁ ରତନ ମନ୍ଦିର
ଆଚମ୍ବିତ ହେଲ ପୁର ଦେଖି ମହାବୀର ।
ମନେ ବିଚାରିଲ ମୁହିଁ କରୁଥିଲି ସ୍ନାନ
କେମନ୍ତେ ପାଇଲି ଏବେ ଏ ଦିବ୍ୟଭୁବନ ।
ଧନୁ ତୂଣୀରକୁ ରଖିଅଛି ନଦୀକୂଳେ
ସ୍ନାନ କରୁଥିଲି ପଶି ମୁଁ ସରଯୂଜଳେ ।
କେମନ୍ତେ ଅଇଲି କିଏ ଆଣିଲକ ଏଥେ
ଏମନ୍ତେ ଭାଳୁଁ କନ୍ୟାକୁ ଦେଖେ ନେତ୍ରପଥେ
ନବଯଉବନୀ ସେ ଯେ ପରମା ସୁନ୍ଦରୀ
ଆପେ ଲକ୍ଷ୍ମୀଠାକୁରାଣୀ ନୋହିବେକ ସରି ।

ସୁନ୍ଦର ଅଙ୍ଗକୁ ତାର ନାହିଁ ପଟାନ୍ତର
କଟାକ୍ଷ ସେ ସୁନ୍ଦରୀର କାମ ପଞ୍ଚଶର ।
ହସିବା ଚାହିଁବା ତାର ଯୋଗୀ ଯୋଗ ଭଙ୍ଗେ
ଉଭା ହୋଇଅଛି ବାଳୀ ଅର୍ଜୁନର ଆଗେ ।
ପାର୍ଥ ବୋଇଲେ ସୁନ୍ଦରୀ ଏ କାହାର ପୁର
କାହାର କୁମାରୀ ତୁମ୍ଭେ କେ ତୁମ୍ଭ ପିଅର ।
ସ୍ନାନ କରୁଥିଲି ମୁହିଁ ଅଇଲି କେମନ୍ତେ
ଜାଣିଥିଲେ ସୁନ୍ଦରୀ ଗୋ କହ ତାହା ମୋତେ
ଉଲୁପୀ କହଇ ପୁରଗୋଟି ଯେ ମୋହର
ମୁହିଁ ଅଟେ ନାଗକନ୍ୟା ଆହେ ବୀରବର ।
ଉଲୁକ ବିଦ୍ୟାର ବଳେ ଆଣିଲି ତୁମ୍ଭଙ୍କୁ
ତୁମ୍ଭେ ଜାଣି ନ ପାରିଲ ଅଇଲ ଏଠାକୁ ।
ମୋହର ନାମ ଉଲୁପୀ ମୁହିଁ ଅବିବାହୀ
ତୁମ୍ଭଙ୍କୁ ମୁଁ ଜଳମଧ୍ୟେ ଆଣିଲି ବୁଡ଼ାଇ ।
ଅର୍ଜୁନ ବୋଇଲେ ଆଣିଅଛ କି ନିମନ୍ତେ
କି କାର୍ଯ୍ୟ କରିବି ତାହା କହ ମୋ ଅଗ୍ରତେ
ଉଲୁପୀ କହିଲ ବୀର ରୂପ ଦେଖି ତୋର
କାମ ବିଶିଖେ ମୋହର ଶରୀର ଅସ୍ଥିର ।
ତେଣୁ ଆଣିଛି ତୁମ୍ଭଙ୍କୁ ମୋହର ଭୁବନେ
ମୋତେ ବିଭାହୋଇ ଏଥେ ରହ କିଛିଦିନେ ।
ପୁଣି ଘୋର ଅରଣ୍ୟକୁ ଯାଉ କିନା ନାଥ
ତା କଥାରେ ସନମତ କଲେ ବୀରପାର୍ଥ ।
ବିଭାହୋଇ ରହିଲେକ ତାହାର ମନ୍ଦିରେ
ଶିଖିଲେ ଉଲୁକବିଦ୍ୟା ରହି ତାର ପୁରେ ।
ଅଞ୍ଜନ ଗୁଟିକା ଆଦି ଧାରଣ ଯେତେକ
ଶିଖିଲେ ନାଗାନ୍ତ ବିଦ୍ୟା ତା ଠାରୁ ଅନେକ
ଦିନାକେତେ ତାର ପୁରେ ରହି ଧନଞ୍ଜୟ
ବୋଇଲେ ଗୋ ସଖି ଦିବ ଆଜ୍ଞା ମୋତେ ଦଅ
ଉଲୁପୀ କହିଲି ତୁମ୍ଭେ ଯାଉଅଛ ନାଥ
ତୁମ୍ଭର ବିହନେ ମୁହିଁ ହୋଇବି ଅନାଥ ।
ଜାତିରେ କ୍ଷତ୍ରିୟ ତୁମ୍ଭେ ଅଟ ଶସ୍ତ୍ରଧାରୀ
ଏ ଜୀବନ ବିନା ନାଥ କ୍ଷଣିକ ତୋହର ।
କେମନ୍ତେ ଜାଣିବି ତାହା କହ ପ୍ରାଣେଶ୍ୱର
ଜାଣିଲେ ବିନା ଅନଳେ ଦହିବ ଶରୀର ।
ଅର୍ଜୁନ ବୋଇଲେ ମୋର ପ୍ରତିରୂପ ରଖ
ଦୁଃଖ ହରୁଥିବ ସଖି ଦେଖି ତାର ମୁଖ ।

ଯେଉଁଦିନ ଦଶିବ ସେ ରୂପଗୋଟି କଳା
ସେ ଦିନ ମୋହର ମୃତ୍ୟୁ ଜାଣିବୁରେ ବାଳା
ଏହା କହି ପ୍ରତିମୂର୍ତ୍ତି ରଖି ତାହା ପୁରେ
ଉଲୁକ ବିଦ୍ୟାର ବଳେ ପଶିଲେ ଜଳରେ ।
ମିଳିଲେ ସରଯୂକୂଳେ ବୁଡ଼ ବୁଡ଼ ଆସି
ସ୍ନାନ ତରପଣ ଶେଷ କଲେ ଜଳେ ପଶି ।
ପିତୃ ତରପଣ ସାରି କୂଳରେ ମିଳିଲେ
ଫଳମୂଳ ଖାଇ ଦେହ ସୁସ୍ଥ କରାଇଲେ ।
ଧନୁଶର ଘେନି ବନ ଭ୍ରମି ସେ ଆସନ୍ତି
ରାମନାମ ସୁମରଣ କରନ୍ତେ ଦିଅନ୍ତି ।
ଦଶମାସ ତହିଁ ରହି ପଣ୍ଡୁର କୁମର
ପୁଣି ସେହି କାନନକୁ ଉପେକ୍ଷିଲା ବୀର ।
ଯାଉଁ ଯାଉଁ ପଥେ ଏକ ପର୍ବତ ଦେଖିଲେ
ସେହି ପର୍ବତ ଉପରେ ପୁଣ ସେ ରହିଲେ ।
ମଣିଭଦ୍ରା ନାମ ଜାଣ ଅଟଇ ତାହାର
ତହିଁରେ ସୁଖେ ରହିଲେ ପାଣ୍ଡବ ସୁନ୍ଦର ।
ତୁଳସୀର ବଲ୍ଲଭ ଶ୍ରୀ ଚରଣରେ ଆଶ
ବଦନ୍ତି ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।

---

## ବଭ୍ରୁବାହନ ଜନ୍ମ

ଏମନ୍ତ ଶୁଣି ବଲଙ୍କ ଦେଶ ମହାରାଜା
ଅଗସ୍ତି ମୁନି ଚରଣେ କଲେ ଦିବ୍ୟପୂଜା ।
ଆହେ ମୁନି ସାବଧାନ ହୋଇଣ ଶୁଣିମା
ଚିତ୍ରାଙ୍ଗଦା କନ୍ୟା ଯେହୁ ଚିତ୍ରାଙ୍କୁର ଜେମା ।
ଅର୍ଜ୍ଜୁନ ବୀର୍ଯ୍ୟେ ସେ ହୋଇଥିଲା ଗର୍ଭବନ୍ତି
ପୁତ୍ର କି ଦୁହିତା ତାର ହେଲା ଉତପତ୍ତି ।
ଏହା ସଂକ୍ଷେପି କହିବା ହେଉ ମୁନିବର
ବଦନ୍ତି ଅଗସ୍ତି ଶୁଣ ଆହେ ଦଣ୍ଡଧର ।
ଯେତେବେଳେ ପାର୍ଥ କହି ଗଲା ଘୋରବନ
ଚିତ୍ରାଙ୍ଗଦା ବୋଇଲା ସେ ଶୁଖାଇ ବଦନ ।
ଦେଖୁଛ ହେ ନାଥ ମୋର ଗର୍ଭର ଲକ୍ଷଣ
କି ନାମ ଦେବ ତାହାର ହୋଇଲେ ନନ୍ଦନ
ପାର୍ଥ ବୋଇଲେ ଶ୍ୱେତାଶ୍ୱବାହନ ମୋ ନାମ
ବାଛି ନାମ ଦେବୁ ଥିବ ତା ଶେଷେ ବାହନ
ଏମନ୍ତେ ବୋଧି ଅର୍ଜ୍ଜୁନ ଅରଣ୍ୟକୁ ଗଲା
ଦୁହିତା ଘୋଟକ ରାଜା ନିଜପୁରେ ନେଲା ।
ଶତେକ ଦାସୀ ଖଟିଲେ ପାଦରେ ତାହାର
ଗର୍ଭର ଲକ୍ଷଣ ତାର ଦେଖି ନୃପବର ।
ନିଶ୍ଚିନ୍ତରେ ଅନ୍ତଃପୁରେ ରଖିଲେ କୁମାରୀ
ଦିନକୁଦିନ ନାରୀର ହେଲା ଗର୍ଭଭାରୀ ।
କୁମ୍ଭମାସେ ଚିତ୍ରାଙ୍ଗଦା ହେଲା ଗର୍ଭବାସ
ବସ୍ତୁ ଶେଷକୁ ହୋଇଲା ପୂର୍ଣ୍ଣ ଦଶମାସ ।
ମାର୍ଗଶିର ମାସ ଶୁକ୍ଳପକ୍ଷ ବୁଧବାର
ପୂର୍ଣ୍ଣିମା ତିଥି ରୋହିଣୀ ନକ୍ଷତ୍ର ଆବର ।
ବୃଷଚନ୍ଦ୍ର ସାଧ୍ୟ ଯୋଗ କରଣ ଯେ ବବ
ଚିତ୍ରାଙ୍ଗଦା ବାଳୀ କଲା ସେ ଦିନ ପ୍ରସବ ।
ପାଦରେ ଖଟିଅଛନ୍ତି ଶତ ଦାସ ସିମା
ପୁତ୍ର ଜାତ କି ବିଷ୍ଣୁ କିଣି ଚକ୍ରପାଣି ।
ମକରଧ୍ୱଜ ପ୍ରାୟେକ ଦିଶଇ ନନ୍ଦନ
ନାଭିକି ଛେଦି ତୁରିତେ କରାଇଲେ ସ୍ନାନ ।
ଅନୁଡ଼ି ଲଗାଇ ବେଗେ ଧାତ୍ରୀଏ ସେକନ୍ତି
ତୁଳା ବୁଡ଼ାଇ କ୍ଷୀର ତା ମୁଖରେ ଦିଅନ୍ତି ।
ବସାଇଲେ ସେ ବାଳକ ସଚେତ କରାଇ
ଶାସ୍ତ୍ରବିଧିମତେ ତାକୁ ଗଣ୍ଡୁଷେ ଖୁଆଇ ।
ପଞ୍ଚୁଆତି ଷଷ୍ଠୀପୂଜା ଉଠିଆରି ଗଲା
ଚିତ୍ରାଙ୍କୁର ଏକବଂଶ ଦିନେ ବିଜେକଲା ।
ଦୋଳିରେ ସେ ଦୁହିତାର ପୁତ୍ରକୁ ଦେଖିଲା
ଆପେ କି ଅର୍ଜ୍ଜୁନ ପୁତ୍ର ରୂପେ ଉପୁଜିଲା ।
ପରମଆନନ୍ଦ ଜାତ ହେଲା ରାଜା ଚିତ୍ତେ
ବହୁତ ଧନ ବଧାଇ ଦେଲା ସେ ତୁରିତେ ।
କୁମାରୀର ମୁଖ ଚାହିଁ ପଚାରଇ ରାଜେ
କି ନାମ ପୁତ୍ରକୁ ତୋର ଦେବୁଟି ଗୋ ମାଏ
ଚିତ୍ରାଙ୍ଗଦା ବୋଇଲେକ ଶୁଣିବା ହେ ତାତ
ଏହି ଶ୍ୱେତାଶ୍ୱବାହନ ଅର୍ଜ୍ଜୁନର ସୁତ ।
ତାହାର କୁମର ଏହି ଅଟେ ବିଦ୍ୟମାନ
ଏଣୁ ଯେ ବଭ୍ରୁବାହନ ଦିଅ ଏହା ନାମ ।
ସ୍ୱଭାବେ ବୃଷ ରାଶିରେ ଜନମ ହୋଇଲା
ବଭ୍ରୁବାହନ ନାମଟି ଏହାକୁ ଶୋଭିଲା ।
ଶୁଣିଣ ଅତି ସନ୍ତୋଷ ହୋଇଲା ନୃପତି
ବଭ୍ରୁବାହନ ବୋଲିଣ ସମସ୍ତେ ଡାକନ୍ତି ।
ଦିନକୁଦିନ ବଢ଼ଇ ଯେଣୁ ସେ ବାଳୁତ
କାଳେ ଯେ ଅନେକ ବିଦ୍ୟା ହୋଇଲା ପ୍ରାପ୍ତ

ଶସ୍ତ ଶାସ୍ତ୍ର ଅଧ୍ୟାରେ ସେ ହୋଇଲା ଅଦ୍ୱାନ
ଯାହାର ପିଅର ଅଟେ ବ.ସକନନ୍ଦନ ।
କେ କହି ପାରିବ ଅବା ତାର ଯନି ବୃତ୍ତି
ଅଗୋଚର ଅସଂଖ୍ୟ ଏ ଶ୍ରୀମହାଭାରତ ।
ଗଙ୍ଗାକୂଳ ବେଣୁମାନ ଗଣି କ ପାରିବା
ନଭକା ଯାନେ କ ଅବା ସାଗର ନଶିବା ।
ଆକାଶକୁ ଲଗାଇଲେ ନିଶୁଣି କ ପାଇ
ଶ୍ରୀହରିହର ମହିମା ଗୋଚର ନୁହଇ ।
କେବଳ କରୁଣା କଲେ ଝଙ୍କଡବାସିନୀ
ସେ ଦେବୀ କହି ଦିଅନ୍ତି ପୂର୍ବ ଭାବ ଘେନ ।
ତେଣୁ ଠିକ ଠିକ କଥା କହଇ ବଖାଣି
ଶାରଳାଦାସ ସେବକ ଦୁର୍ଗା ମହାମାଈ ।
କହଇ ବାମନ ଦେବ କଶ୍ୟପକୁମର
ଦେବଙ୍କ ଛଳେ ଜନ୍ମିଲୁ ଅଦିତି ଉଦର ।
ବାମନ ନାମେ ତୋହର ଖର୍ବ କଳେବରେ
ଧୋତି ଛତା ନବଗୁଣ ପଇତା କନ୍ଧରେ
ଦେବଙ୍କ ହିତେ ଯାହାକୁ ଗଲୁ ଦାନ ମାଗି
ଧ୍ୟାନେ ଚିନ୍ତି ନ ପାରନ୍ତି ତୋ ରୂପକୁ ଯୋଗୀ
ହସ୍ତେ ତୋର କୁଶକଣ୍ଠି ତମ୍ବାପାଣି ସାର
ସାମ ଗାନ କଲ ବଳିରାଜ ସିଂହଦ୍ୱାର ।
ଉଚ୍ଚାରିଲ ଗହ ଗହ ନାଦେ ବେଦଧ୍ୱନି
ଯଶୋବନ୍ତୀ ପୁରେ କମ୍ପମାନ ପଦ୍ମସେନ ।
ବଳିରାଜା ଥିଲା ନିଜ ଆସ୍ଥାନରେ ବସି
ବାମନ ରୂପକୁ ଦେଖି କଣ୍ଠରେ ହସି ।
ଏ କି ହରିହର ବ୍ରହ୍ମା ବହ୍ନି ସୁରପତି
ଏ ମର୍ତ୍ତ୍ୟ ଭୁବନେ ଦେଖି ନାହିଁ ଏ ମୂରତି ।
ଅନେକ ପୁଣ୍ୟଥିଲେ ଯେ ଦେବା ଆମ୍ଭେ ଦାନ
ଅଲଭ୍ୟରେ ମିଳିବ ତା ବଇକୁଣ୍ଠ ସ୍ଥାନ ।
ମାଗ ମାଗ ବ୍ରାହ୍ମଣ ହୋ ଯେ ତୋହର ଇଚ୍ଛା
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯହିଁ ତୋର ବାଞ୍ଛା ।
ଡାହାଣାବର୍ତ୍ତ ଶଙ୍ଖରେ କୁଶ ଜଳ ଭରି
ଉପର ହସ୍ତରେ ଦିଏ ରାଜା ସତ୍ୟକରି ।
ଦାନ ଦେଲାବେଳେ ତାକୁ ନିବାରିଲା ଶୁକ୍ର
ଭୃଗୁର କୋପରେ ହେଲା ତା ନୟନ ବକ୍ର ।
ଦିଗପାଳଙ୍କୁ ଆପଣା ସାକ୍ଷୀ ଯେ କରଇ
ବୋଇଲୁ ଭୁ ଦାନଦେବୁ ତିନି ପାଦ ଭୂଇଁ ।

ବଳି ବୋଲେ ଏ କେବଣ ବୁଦ୍ଧି ହେ ତୁମ୍ଭର
ଧନ ଭଣ୍ଡାର ତୁଡ଼ଣ ମଗ ଏବେ ସ୍ଥିର ।
ଆପଣ ବୋଇଲ ମୁହିଁ ନୁହଇ ତ ଲୋଭୀ
ଅଳପକେ ବହୁ ଦାନ କେମନ୍ତେ ମାଗିବି ।
ବଳି ବୋଲେ ବଡ଼ୁ ତୋର ଚରଣ ଯୁଗଳେ
ତକ୍ଷଣେ ବଢ଼ିଲା ନବଦ୍ୱୀପ ପରିଯନ୍ତେ ।
ଦେଖି ବଳି ରାଜାର ଯେ ଉଡ଼ିଲା ସାହସ
ପାଦକେ ପୃଥିବୀ ଆଉ ପାଦରେ ଆକାଶ ।
ବଳି ବୋଇଲା ତୋହର ଆଉପାଦ କାହିଁ
ନାଭିରୁ ପାଦେକ ଜାତ କଲ ହେ ଗୋସାଇଁ ।
ଦେଖିଣ ତା ବଳିରାଜା ପାତିଲାକ ମାଥ
ଛେଦିଲ ସକଳ ପାପ ହରି ଜଗନ୍ନାଥ ।
ଆଦ୍ୟ ସତ୍ୟ ଯୁଗରେ ଯେ ଦେବୀ ସୁରେଶ୍ୱରୀ
ଅଭିଷେକ ଅର୍ଥେ ବ୍ରହ୍ମା କମଣ୍ଡଳେ ଭରି ।
ଯେଉଁ ପାଦପଦ୍ମ ହେଲା ନାଭିରୁ ବାହାର
ସେ ପାଦପଦ୍ମେ ଢାଳିଲେ ନେଇ ବେଦବର ।
ଦକ୍ଷିଣ ପାଦ ଅଙ୍ଗୁଷ୍ଠ ଯହିଁ ଅର୍ଦ୍ଧକୋଣେ
ନ ତନ୍ତ୍ର ଗଙ୍ଗା ରହିଲା ତିଳାର୍ଦ୍ଧ ପ୍ରମାଣେ ।
ମନେ ଲଜ୍ଜା ପାଇଲା ତା ଦେଖି ଲୋକନାଥ
ବହ୍ମ ମୂରତି ଧରିଛନ୍ତି ଜଗନ୍ନାଥ ।
ମୁକତ ହୋଇଲା ବଳି ତୁମ୍ଭ ପାଦ ଲାଗି
ଈଶ୍ୱରଙ୍କ ଶିରେ ବିଜେ କଲେ ଧବଳାଙ୍ଗୀ ।
ସେ ମାନଙ୍କ ଚରଣରେ ଶରଣ ମୋ ନିତ୍ୟ
ଶାରଳାଦାସ କହିଲା ସର୍ବଜନ ହିତେ ।
ଚିତ୍ରୋତ୍ପଳା ନଦୀର ଉତ୍ତର ଯେ ଠଣା
ଝଙ୍କଡପୁର ନାମରେ ବସଇ ପାଟଣା ।
କନକପୁର ପାଟଣା ଘର ପର୍ଶୁରାମ
ତାର ଅନୁଜ ଶାରଳା ଦାସ ମୋର ନାମ ।
କୃଷ୍ଣ ଦର୍ଶନ ନିମନ୍ତେ ଥାଏ ମନେ ଭାବି
ଗୋପପୁରେ ନନ୍ଦଘରେ ଯେତ୍ତେ ଜନ୍ମ ଲଭି ।
ଏମନ୍ତ ତର୍କରେ କଟିଦିନ ଗଲା ବହି
ପିତା ଶାପେ ମହାମାୟୀ ବିଜେ କଲେ ତହିଁ ।
ବାତୁଳୀ ତପନ୍ତେ ଗୋପସୁତ ଘେନି ହରି
ଜାଣି କେଶବ ତାହାଙ୍କୁ ଏକାଳେ ତିଆରି ।
ଜନ୍ମ ଲଭି ସଜିଲୁ ଗୋ ବଳ ମହାମାୟେ
କନକ ପୁର ପାଟଣା କର ଗୋ ବିଜୟେ ।

ବିଷ୍ଣୁର ବଚନେ ଚିତ୍ତଁ ବିଜେ ତତକ୍ଷଣେ
ରହିଲେ ଅର୍କକ୍ଷେତ୍ରର ଦକ୍ଷିଣ ଯେ କୋଣେ ।
ନର୍ମଦା ଯେ କୃପାଜଳମୟ ସରସ୍ୱତୀ
ଗିରିଜା ଅଂଶେ ଶ୍ରୀଚଣ୍ଡୀ ଶାରଳା ମୂରତି ।
ସେ ମୋତେ ପ୍ରସନ୍ନ ହୋଇ କହିଲେ ଏ ଗ୍ରନ୍ଥେ
ମୁହିଁ ତାହା ଲେଖିଲଇଁ ସର୍ବଜନ ହିତେ ।
ହେ ସାଧୁଜନେ ମୋହର ନ ଘେନିବ ଦୋଷ
ଜାତିରେ ମୁଁ ଶୂଦ୍ର ବୁଦ୍ଧି ମୋହର ବା କିସ ।
ଶରଣ ଶ୍ରୀଶାରଳା ଯେ ପରମ ବୈଷ୍ଣବୀ
ତାର ନିଜ ପୁତ୍ର ମୁହିଁ ଜନ୍ମେ ଜନ୍ମେ ସେବି ।

## ସହସ୍ରାଜିତ ଶରଣ

ଏଥୁଉତ୍ତାରେ ପୁଣି ସେ ମନୁ ମହାଗଣ
ଅଗସ୍ତିଙ୍କ ଚରଣରେ ପଡ଼ି ପୁଣ ପୁଣ ।
ଖାଣ୍ଡବବନ ଚରିତ ଶୁଣିଲି ଗୋସାଇଁ
ତୁମ୍ଭର ପ୍ରସାଦେ ମୋର ପାପଛେଦିବାଇଁ ।
କଥା ଏକ ପରୁଶିବି ପଡ଼ିଲା ମୋ ମନେ
କୋପ ନ କର ଶୁଣିମା ହେଉ ସାବଧାନେ ।
ସ୍ୟମନ୍ତକ ମଣି ଯୋଗେ ସେ ପ୍ରସେନଜିତ
ବନସ୍ତରେ ତାକୁ ଏକ ସିଂହ କଲା ହତ ।
ଶତଧନୁ ବୋଲେ ଶତ୍ରାଜିତକୁ ମାଇଲା
ସହସ୍ରାଜିତ କେମନ୍ତେ ଏଥୁ ପଳାଇଲା ।
ଶତଧନୁ କେଉଁପର ଗଲାକ ପଳାଇ
ସୁଦର୍ଶନ ଚକ୍ର ସହିଁ ନରତେ ଭ୍ରମଇ ।
ଏହା ସଂକ୍ଷେପି କହିବା ହେଉ ମୁନିବର
ତେବେ ସେ ଭ୍ରାନ୍ତି ଫିଟିବ ମନରୁ ମୋହର ।
ବହୁତ ପ୍ରଣାମ ମୁନି ଚରଣେ କରଇ
କୃତକୃତ୍ୟ ହୋଇ ତାଙ୍କ ସମ୍ମୁଖରେ ବସାଇ ।
ରାଜାର ବିନୟ ଦେଖି କୁମ୍ଭଋଷି ସୁତ
ବୋଇଲେ ଶୁଣ ହେ ଧୀରେ ମନୁ ମହାରଥ ।
ଶ୍ରୀମହାଭାରତ ମଧ୍ୟପର୍ବର ବାରତା
ବଦନ୍ତି ଅଗସ୍ତି ଶୁଣ ମନୁ ମହାଜ୍ଞାତା ।
ଯେତେବେଳେ ଶତ୍ରାଜିତ ହୋଇଲା ବିନାଶ
ବାରତା ପାଇଣ କୋପ କଲେ ପୀତବାସ ।
ସହସ୍ରାଜିତ ଅକ୍ରୂର ଗଲେ କହି କାହିଁ
ତା ବୁଦ୍ଧିରେ ଶତ୍ରାଜିତ ସିନା କ୍ଷୟ ଯାଇ ।
ଆଗ ସହସ୍ରାଜିତକୁ କରିବି ମୁଁ କ୍ଷୟ
ପଛେ ଯାଇଁ ଛେଦିବଇଁ ଶତଧନୁ କାୟ ।
ଏସନ ବାରତା ପାଇ ସେ ସହସ୍ରାଜିତ
ବୋଲେ ମୋତେ ରଖିବାକୁ ନାହିଁ ହିତଗତ
କାହିଁ ପଶିବି କାହାକୁ କହିବଇଁ ଯାଇଁ
କେ ମୋତେ ରଖିବ ଅବା ପ୍ରାଣ ଦାନ ଦେଇ
ଏମନ୍ତେ ସହସ୍ରାଜିତ ବ୍ୟାକୁଳିତ ମତି
ପଞ୍ଚଭୂତ ଆତ୍ମାରେ ସେ କରେ ବଡ଼ ଭ୍ରାନ୍ତି ।
ଏମନ୍ତେ ବିଚାରୁ ରାତ୍ର ହୋଇଲା ପ୍ରହରେ
ଅକ୍ରୂରର ସନ୍ନିଧିକି ଚଳିଗଲା ଖରେ ।
ବୋଇଲା ଶ୍ରୀକୃଷ୍ଣ କୋପ କରିଛନ୍ତି ମୋତେ
ମୋ ଶିର ଛେଦିବେ ଚକ୍ର ପେଷି ଜଗନ୍ନାଥେ
ଅକ୍ରୂର ବୋଇଲା ତୋତେ ନ ପାରଇ ରଖି
ଚକ୍ଷୁରେ ଶ୍ରୀ ଜଗନ୍ନାଥ କୋପ ଅଛୁ ଦେଖି ।
ପୁଣିହିଁ ଅକ୍ରୂର ମନେ ମନେ ବିଚାରଇ
ଏହାର ଏଥିରେ କିଛିମାତ୍ର ଦୋଷ ନାହିଁ ।
ଶ୍ୱଶୁର ଛଳେ ଯେ କ୍ରୋଧ କରିଛନ୍ତି ହରି
ଅବଶ୍ୟ ଏହାକୁ ରାତ୍ରେ ପକାଇବେ ମାରି ।
ଏହି ରାତ୍ରେ ତୁହି ଏଥୁ ଯାଅ ଯା ପଳାଇ
ଦ୍ୱାରକା ମଧ୍ୟରେ ତେତେ ରକ୍ଷା ନେ ନାହିଁ ।
ସେଠାରୁ ସହସ୍ରାଜିତ ପଳାଇଲା ଡରେ
ପଳାଇ ପଶିଲା ଯାଇ ଉଦ୍ଧବ ମନ୍ଦିରେ ।
ଅତି ବ୍ୟାକୁଳିତ ତାର ମନ ଛଳ ଛଳ
ରଖି ପାରିବୁ କି ଆର ବାରେ ଏ ଜୀବନ ।
ଉଦ୍ଧବ ପଚାରେ ଭୟ କାହାକୁ ତୋହର
ମୋହର ଶରଣ ବୋଲି କହୁ ବାରମ୍ବାର ।
ବୋଇଲଇ ସହସ୍ରାଜିତ ଜଗନ୍ନାଥ ଡରେ
କେହି ରଖି ନ ପାରିଲେ ମୋତେ ଏହି ପୁରେ
ଉଦ୍ଧବ ପଚାରେ ତୁହି କଲୁ କେଉଁ ଦୋଷ
କାହିଁକି ତୋଠାରେ କୋପ କଲେ ପୀତବାସ
କହଇ ସହସ୍ରାଜିତ ଉଦ୍ଧବ ହେ ଶୁଣ
ମଣି ଲୋଭେ ଶତଧନୁ ପାଇ ଅବଗୁଣ ।
ଶତ୍ରାଜିତକୁ ଗୁପତେ ମାରି ମଣି ନେଲା
ଅକ୍ରୂର ହାତରେ ମଣିଦେଇ କେଣେ ଗଲା ।
ଏଣୁ ଗୋବିନ୍ଦ ମୋଠାରେ କରିଛନ୍ତି ରୋଷ
ବୋଇଲେ ତୋ ଯୋଗୁଁ ଗଲା ଶତ୍ରାଜିତ ନାଶ

ମଣି ଲୁଚାଇ ଗଲକ ତୁମ୍ଭ ଲୁଚାଇଲୁ
ଏତେ ଅପବାଦ ତୁମ୍ଭ ହୃଦରେ ବହିଲୁ ।
ଏଣୁ କ୍ରୋଧ ଘେନି ଚିତ୍ତେ ଦେବ ନାରାୟଣ
ଚନ୍ଦ ଘେନି ଖୋଜୁଛନ୍ତି ନେବେ ମୋର ପ୍ରାଣ
ଏ ସଙ୍କଟ୍ ରକ୍ଷାକର ପାରିବୁ କି ମୋତେ
ଏ ଅପଯଶ ନୁହଇ ମୁଁ ଦୋଷୀ କଦାଚିତେ ।
ଉଦ୍ଧବ ବୋଇଲା ତୋତେ ଏଥେ କେ ରଖିବ
କରନ୍ତି ତୋ ଉପରେ କ୍ରୋଧ ବାସୁଦେବ ।
ଯାର କୋପ କଲେ ସପ୍ତବ୍ରହ୍ମାଣ୍ଡ କମ୍ପଇ
ତୋତେ ରଖିବାକୁ ମୋର ସାହସ ବା କାହିଁ
ପ୍ରାଣ ଘେନି ଏଥୁ ତୁମ୍ଭ ଯାଅ ଯା ପଳାଇ
ଦ୍ୱାରକାରେ ସମ୍ଭାଳିବା ଲୋକ କେହି ନାହିଁ ।
ଲୁଚାଇ ରଖିବ ତୋତେ କିଏ ଅବା କାହିଁ
ଯେଉଁ ଜଗନ୍ନାଥ ଗର୍ଭେ ବ୍ରହ୍ମାଣ୍ଡ ଅଛଇ ।
ଏକ୍ଷଣି ଏଠାରୁ ବେଗେ କର ତୁ ଗମନ
ଜାଣିଲେ କରିବେ କୋପ ମୋତେ ଜନାର୍ଦ୍ଦନ
ଉଦ୍ଧବ ମୁଖରୁ ଶୁଣି ଏ ନିରାଶ ବାଣୀ
ଦ୍ୱାରକାପୁରୁଁ ବାହାର ହେଲା ଶୀରମଣି ।
ତେତେବେଳେ ସାତଘଡ଼ି ରଜନୀ ହୋଇଛି
କେଣିକି ଯିବି ମୁଁ ମନେ ମନେ ଭାଳୁଅଛି ।
ବୋଇଲା ବାରୁଣାବନ୍ତେ ଯିବଇଁ ପଳାଇ
ଯୁଧିଷ୍ଠି ପାଦେ ଶରଣ ପଶିବି ମୁଁ ଯାଇ ।
ବିଚାରି ସହସ୍ରାଜିତ ଧାଏଁ ଅତି ବେଗେ
ଖାଲି ଠିକର ସେ ସବୁ ମଣି ସମଭାଗେ ।
ଦୁଇଘଡ଼ି ଭିତରେ ସେ କେତେବାଟ ଗଲା
ବାରୁଣାବନ୍ତ ଭୁବନ ମଧ୍ୟରେ ମିଳିଲା ।
ଯୁଧିଷ୍ଠିଙ୍କ ସିଂହଦ୍ୱାରେ ହୋଇଲା ପ୍ରବେଶ
ଖରତର ହୋଇ ତାର ବହଇ ନିଃଶ୍ୱାସ ।
ଶରଣ ଶରଣ ବୋଲି ଡାକେ ଉଚ୍ଚସ୍ୱରେ
ଭିତରପୁରେ ଶୁଣିଲେ ଯୁଧିଷ୍ଠି ଠାକୁରେ ।
ଶରଣ ଶରଣ ବୋଲି ଡାକେ କେଉଁ ଜନ
ଦେଖ ସହଦେବ ବୋଲି ବୋଲନ୍ତି ରାଜନ ।
ଯୁଧିଷ୍ଠି ଡାକନ୍ତେ ସହଦେବ ଯେ ଶୁଣିଲା
ହସ୍ତେ ବାଡ଼ିଖଣ୍ଡେ ଘେନି ବାହାରି ହୋଇଲା ।
ସିଂହଦ୍ୱାରେ ଆସି ଉଚେ ଡାକିଲା କୁମାର
ଶରଣ ଶରଣ ବୋଲି ଡାକେ କେଉଁ ନର ।

ଶୁଣିଣ ସହସ୍ରାଜିତ ମିଳିଲା ଛାମୁରେ
ଚହ୍ନିଲା ସେ ସହଦେବ ତାକୁ ଅନ୍ଧକାରେ ।
ତାର ହସ୍ତ ଧରି ତାକୁ ଭିତରକୁ ନେଲେ
ଯୁଧିଷ୍ଠିର ଛାମୁରେ ସେ ପ୍ରବେଶ ହୋଇଲେ ।
ବୋଇଲେ ଯେ ସାବଧାନ ହୋଇବା ଗୋସାଇଁ
ଶରଣ ବୋଲି ସହସ୍ରାଜିତ ଫୁକାରଇ ।
ଯୁଧିଷ୍ଠି ଦେଖି ସହସ୍ରାଜିତ ଶୀରବର
ବାରମ୍ବାର ତାଙ୍କ ପାଦେ କଲା ନମସ୍କାର ।
ଯୁଧିଷ୍ଠି ବୋଇଲେ ତାକୁ ଉଠ ଉଠ ବାବୁ
ନିର୍ଭୟ ହୋଇଣ ତୁମ୍ଭ କହମୋତେ ସବୁ ।
ଉଠିଣ ସହସ୍ରାଜିତ ଯୋଡ଼ି ବେନିକର
ବୋଲେ ରଖି ପାରିବ କି ଧର୍ମର କୁମର ।
ଯୁଧିଷ୍ଠି ବୋଇଲେ କହୁ ତୁ କାହାକୁ ଭୟ
ପଳାଇ ଆସି ମାଗୁଛୁ ଆମ୍ଭଙ୍କୁ ଅଭୟ ।
ଯୁଧିଷ୍ଠି ଦେବ ଛାମୁରେ ସତ୍ରାଜିତ କହେ
ସାବଧାନେ ଶୁଣ ତୁମ୍ଭେ କୁନ୍ତୀଙ୍କ ତନୟେ ।
ସ୍ୟମନ୍ତକ ମଣିହେତୁ ସତ୍ରାଜିତ ମଲା
ଗତରାତେ ଶତଧନୁ ତାହାକୁ ମାଇଲା ।
ତାହା ଶୁଣି ସତ୍ୟଭାମା ବହୁକ୍ରୋଧ କଲେ
ଶ୍ୱଶୁରଙ୍କ ଛଳ ହରି ହୃଦରେ ଧରିଲେ ।
ଶତଧନୁକୁ ଖୋଜନ୍ତି ହରି ଚକ୍ରଧାରୀ
ଖୋଜି କାହିଁ ନ ପାଇଲେ ଦ୍ୱାରକାନଗରୀ ।
ବୋଲନ୍ତି ସହସ୍ରାଜିତ ତାର ସାନଭାଇ
ସତ୍ରାଜିତକୁ ମାଇଲା ମଣି ନେବାପାଇଁ ।
ଅକ୍ରୂର ଗୋଚରେ ମଣି ଶତଧନୁ ଦେଲେ
ମଣିଦେବା କଥା ହରି କିଛି ନ ଜାଣିଲେ ।
ସହସ୍ରାଜିତ ଅଟଇ ଶତଧନୁ ଭାଇ
ତାହାର ବୁଦ୍ଧିରେ ସତ୍ରାଜିତ ନାଶଯାଇ ।
ମୋ ଉପରେ ସେହି ଦୋଷ ଦେଇ ନାରାୟଣ
ଚନ୍ଦରେ ଅବଶ୍ୟ ମୋତେ କରିବେ ଛେଦନ ।
କହିଁ ସେ ସହସ୍ରାଜିତ ଖୋଜୁଛନ୍ତି ହରି
ଛାମୁରେ ପଡ଼ିଲେ ଚନ୍ଦେ ପକାନ୍ତେଣ ମାରି ।
ଅକ୍ରୂର ଉଦ୍ଧବ ପଦେ ପଶିଲି ଶରଣ
ସେହି ମୋତେ ରକ୍ଷା କରି ନ ପାରିଲେ ଜାଣ ।
ବୋଇଲେ ଏଥୁ ବନସ୍ତେ ପଶ ଯାଇ ବେଗେ
ରଖିବେ ଅବା ପାଣ୍ଡବେ କହ ତାଙ୍କ ଆଗେ ।

ଅସମ୍ଭାଳେ ଦ୍ୱାରକାରୁ ବାହାର ହେଲଇଁ
ଦୁଇଘଡ଼ି ଭିତରେ ମୁଁ ଏଥେ ଅଇଲଇଁ ।
ସତ୍ୟବନ୍ତ ପୁରୁଷ ତୁ ଅଟୁ ହୋ ଯୁଧିଷ୍ଠିର
ଏ ଘୋର କଷଣୁ ମୋତେ ରକ୍ଷି ପାରିବୁ ଟି ।
ବହୁତ ବଚନେ କହେ ସେ ସହସ୍ରାଜିତ
ଛଳ ଛଳ ଚକ୍ଷୁ ତାର ବ୍ୟାକୁଳିତ ଚିତ୍ତ ।
ଯୁଧିଷ୍ଠିର ବୋଇଲେ ଶୁଣ ତୁ ସହସ୍ରାଜିତ
ତୋତେ କୋପ କରିଛନ୍ତି ପ୍ରଭୁ ଜଗନ୍ନାଥ ।
ତାଙ୍କ ଦୋରେହାକୁ ଆମ୍ଭେ ରଖିବୁ ବା କାହିଁ
ଜାଣିଲେ କୋପ କରିବେ ମୋତେ ଚକ୍ରପାଣି ।
ଶ୍ରୀକୃଷ୍ଣ କ୍ରୋଧ ଆମ୍ଭର ନୁହଇଟି ଭଲ
ସର୍ବଦା ଶରଣ ଆମ୍ଭେ ତାହାଙ୍କ ପୟର ।
ସମସ୍ତଙ୍କ ଆଶ୍ରୟ ସେ ସମସ୍ତେ ଅଟନ୍ତି
ପାଣ୍ଡବେ ଶ୍ରୀକୃଷ୍ଣ ଆଶ୍ରେ ସମସ୍ତେ ଜାଣନ୍ତି ।
ତିନିପୁର ମଧ୍ୟେ ଏହା ସବୁଦ ଶୁଭଇ
ତାଙ୍କଠାରେ ଅପରାଧ ମୋର ନ ଯୋଗାଇ ।
ଯା ସତ୍ରାଜିତ ମୁଁ ରକ୍ଷି ନୁହେ ସମରଥ
ଯାହାକୁ କରିଅଛନ୍ତି କ୍ରୋଧ ଜଗନ୍ନାଥ ।
ଶୁଣିଣ ସେ ସତ୍ରାଜିତ କମ୍ପେ ଥରହର
ଜାଣିଲେ ଚକ୍ରେ ଛେଦିବେ ମୋତେ ଦାମୋଦର
କି ବୁଦ୍ଧି କରିବି ବୋଲି ଗଜଇ ବଚନେ
କେ ମୋତେ ଶରଣ ଦେବ ଏ ପୃଥିବୀ ତଳେ
ତାହାର ବଚନ ଦେଖି ଧର୍ମଙ୍କ ନନ୍ଦନ
ପଞ୍ଚଭୂତ ଆତ୍ମାରେ ସେ ବିଚାର କରିଣ ।
ଏକାନ୍ତକୁ ଯାଇ ସହଦେବଙ୍କୁ ପୁଚ୍ଛନ୍ତି
ତତକ୍ଷଣେ ମନ୍ତ୍ରୀବର କରକୁ ଯୁଡ଼ନ୍ତି ।
କରଯୋଡ଼ି ଜଣାନ୍ତି ଯେ ଯୁଧିଷ୍ଠିର ଗୁମ୍ଭର
ମଣିଭଦ୍ରାରେ ଅଛନ୍ତି ଅର୍ଜୁନ ଠାକୁର ।
ତାଙ୍କ ପାଦେ ସେବା ଏହା ପଶିବ ଶରଣ
ତେବେ ଏହାକୁ ରଖିବେ ପ୍ରଭୁ ନାରାୟଣ ।
ଗୁପତ ହୋଇ ଏଠାରୁ ଏ ପଳାଇ ଯାଉ
ଶ୍ରୀହରି ଦୋରେହା ବୋଲି ଅର୍ଜୁନେ ନ କହୁ
ଚିହ୍ନା ନ ଦେଇ ଯେବେ ଏ ପଶିବ ଶରଣ
ତେବେ ରକ୍ଷା ହୋଇପାରେ ଏହାର ପରାଣ ।
ଚିହ୍ନ ଥାଉଲେ ଏହାକୁ ରଖନ୍ତା କେ ନାହିଁ
ଚକ୍ର ପେଷିଣ ଛେଦିବେ ପ୍ରଭୁ ଚକ୍ରପାଣି ।

ସହଦେବ ମୁଖୁଁ ଶୁଣି ସେ ସହସ୍ରାଜିତ
ବୋଲଇ କେଉଁଆଡ଼ରେ ଅଛଇ ପର୍ବତ ।
ସହଦେବ ବୋଲେ ଯାଅ ତୁ କଟକ ଦେଶେ
ମଣିଭଦ୍ରା ପର୍ବତର ଦକ୍ଷିଣ ପାର୍ଶ୍ୱେ ।
କନକ ରୂପରେ ବସିଅଛନ୍ତି ଅର୍ଜୁନ
ସେ ଗିରି ଶିଖରେ ସିଂହ କରଇ ଗର୍ଜନ ।
ସହଦେବ କହନ୍ତେ ସେ କର ଯୋଡ଼ି ଦଶ
ଶୁଣିଣ ସହସ୍ରାଜିତ ମନରେ ହରଷ ।
ଯୁଧିଷ୍ଠିରେ ନମସ୍କାର କରିଣ ଚଳଇ
ପବନହୁଁ ବେଗକରି ପଦଣ୍ଡ ବଢ଼ାଇ ।
ଗ୍ରନ ଅତାଇ ପ୍ରହରେ ସେଠାରୁ ବାହାର
ପ୍ରାଣର ବଚନେ ସେହୁ ଚଳେ ଖରତର ।
ବାରଣାବନ୍ତ ସେ ଚକ୍ଷୁଁ ଗଲା ଖର ହୋଇ
ପଞ୍ଚଭୂତ ଆତ୍ମାରେ ସେ ହରିଙ୍କୁ ଡରଇ ।
ଏହିମତେ ପଞ୍ଚଦଶ ଯୋଜନ ସେ ଗଲା
ଅଗମ୍ୟ ବନସ୍ତ ମଧ୍ୟେ ଯାଇଣ ପଶିଲା ।
ଯାଉଅଛି ବୀର ପୁଣି ପଛକୁ ନ ଚାହିଁ
ସିଂହ ବ୍ୟାଘ୍ର ଭଲ୍ଲୁକଙ୍କୁ ତାର ଭୟ ନାହିଁ ।
ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ସତ୍ରାଜିତ କରିତ ଯା ପୁଚ୍ଛିଲ ନୃପତି ।
ଏକମନ ହୋଇ ତୁହୋ ଶୁଣ ମନୁରାୟ
ଶୁଣନ୍ତେ ପାତକ ତୋର ହୋଇଯିବ କ୍ଷୟ ।
ମନୁ ପଗୁରନ୍ତେ ଦେବ ଶୁଣିମା ଗୋସାଇଁ
ଏଥିର ଉତ୍ତରେ କସ ଚରିତ ସେ ହୋଇ ।
ଅଗସ୍ତି ବୋଇଲେ ତୁହୋ ଶୁଣ ନୃପବରେ
ସତ୍ରାଜିତ ପଳାଇଲା ଅଜ୍ଞାନ ଭାବରେ ।
କରେ ଚକ୍ର ଧରି ତାକୁ ଖୋଜେ ଦାମୋଦର
ନ ଦେଖିଲେ ଚିହ୍ନବର୍ତ୍ତି ସହସ୍ରାଜିତର ।
ବହୁତ କ୍ରୋଧ କରି ସେ କମଳାର ସାଇଁ
ଶତ୍ରାଜିତ ମୃତଦେହ ଦହନ କରାଇ ।
ଦ୍ୱାଦଶ ଦିବସ ଏହିମତେ ବହିଗଲା
ଶତ୍ରାଜିତ ହତ୍ୟାବଧି ସମସ୍ତ ସରିଲା ।
ଶୁଣ ତୁହୋ ମନୁରାଜା କହେ ମୁନିବର
ପ୍ରାଣ ବଚନେ ପଳାଏ ସତ୍ରାଜିତ ବୀର ।
ପଳାଇ ଯାଉଛି ସେହି ପ୍ରାଣର ବଚନେ
ବନଚର ରୂପଧରି ଯାଏ ସର୍ବକାଳେ ।

ମୃଗୟା କରଣ ଏକ ଶବର ଆସଇ
ସତ୍ରାଜିତକୁ ଦେଖି ଦୂରୁ ଓଗାଳଇ ।
କେଉଁର କି ତସ୍କର ତୁମ୍ଭ ପଳାଉଛ ଗହନେ
ଜଣାଯାଏ ଡର ଥିଲାପରି ତୋର ଗାତ୍ରେ ।
ସତ୍ରାଜିତ କହେ ମୋର ବିରୋଧ ନ କର
ପଞ୍ଚଭୂତ ଆତ୍ମାରେ ମୋ ଭୟ ଯେ ଅପାର ।
ଗୁଡ଼ ଗୁଡ଼ ପଥ ତୁମ୍ଭ ନ ରହିବ କ୍ଷଣ
ଦଇବ ପ୍ରତ୍ୟକ୍ଷ ମୋତେ ଉପେକ୍ଷ ହୋ ପୁଣ ।
ଶବର ବୋଲେ କାହାକୁ ତୁମ୍ଭେ ଭୟ କର
ସତ୍ରାଜିତ ବୋଲେ ମୋର ଜଗନ୍ନାଥେ ଡର
ବଡ କ୍ରୋଧ ମୋତେ କରିଛନ୍ତି ଭଗବାନ
ଭେଟିଲେ ଚକ୍ରେ ମୋ ଶିର ଛେଦିବେ ବହନ
କାହିଁପାଇଁ ଶବର ତୁ ଓଗାଳୁଛୁ ଏଥେଁ
ରକ୍ଷାକର ପାରିବୁ କି ଏ ଭୟରୁ ମୋତେ ।
ଶବର ବୋଇଲା ସେ ତ ଜଗତ ଗୋସାଇଁ
ତାହାଙ୍କଦୋରେହା ତୋତେରଖନ୍ତା କେନାହିଁ
ସେ ଅଶେଷ ବ୍ରହ୍ମାଣ୍ଡର ଅଟନ୍ତି ଠାକୁର
ତାଙ୍କ କେଉଁ କଥା ଅବା ଅଟେ ଅଗୋଚର ।
ତାଙ୍କଠାରେ ଅପରାଧୀ ହେଲୁ ତୁ କମର୍ଥେ
ସତ୍ରାଜିତ ବୋଲେ କହିବ କି ତୋତେ ।
ବାଟ ଗୁଣ୍ଡିଦିଅ ବାବୁ ଯିବଇଁ ମୁଁ ବେଗେ
ନ ପୁଣ ଚକ୍ର ପଡ଼ଇ ଆସି ଏଥି ଲାଗେ ।
ଭୟରେ ଶରୀର ତାର କମ୍ପେ ଥରହର
ପବନ ଆଘାତେ ଯେସନେ ପତ୍ରେ ଝର ଝର ।
ସତ୍ରାଜିତର ଭୟ ଶବର ଜାଣିଲା
ଜଗନ୍ନାଥଙ୍କ ଭୟରେ ଆଡ଼ ହୋଇଗଲା ।
ସେଠାରୁ ଯେହ୍ନେ ମନର ଉଦବେଗେ ଗଲା
କୃତକେଶୀ ରାଜାଙ୍କୁ ସେ ବାଟରେ ଭେଟିଲା ।
ବୋଇଲା ସତ୍ରାଜିତ ଶୁଣ ନରପତେ
ଶରଣ ସମ୍ଭାଳ ରଖି ପାରିବୁ କି ମୋତେ ।
ଆବର ବୋଇଲା ରାଜା ଅଟ ଶକ୍ତ୍ୟବାନ
ଦୟାକର ରଖି ପାରିବ କି ମୋ ଜୀବନ ।
କୃତକେଶୀ ବୋଇଲେ ତୁ କାହାର ଭୟରେ
ଶରଣ ପଶୁଛୁ ଆସି ଏ ସମେ ମୋଠାରେ ।
କେବଣ ଦେଶରେ ତୁମ୍ଭ କରିଥିଲୁ ବାସ
କାହାର କି ଦୋଷ କଲୁ କଲା ସେହୁ ରୋଷ ·

କହଇ ସତ୍ରାଜିତ ଦ୍ୱାରକା ମୋ ଘର
ସତ୍ରାଜିତ ଜଗନ୍ନାଥ ଦେବଙ୍କ ଶ୍ୱଶୁର ।
ସତ୍ୟଭାମା ଦେବୀଙ୍କର ଅଟଇ ସେ ପିତା
ଅନାଧୃଷ୍ଟ ଶତଧନୁ ତାହାର ନିହନ୍ତା ।
ସତ୍ରାଜିତକୁ ସେ କୁଟି ଶତଧନୁ ମାରି
ସ୍ୟମନ୍ତକ ନାମେ ମଣି ନେଲା ଚୋରିକରି ।
ଅକ୍ରୂର ହସ୍ତରେ ଦେଇ ଗଲା ସେ ପଳାଇ
ସତ୍ରାଜିତ ମୋ ନାମ ମୁଁ ତାହାର ଭାଇ ।
ଗୋବିନ୍ଦ ମୋଠାରେ ଦ୍ୱେଷ କଲେ ବିନାଦୋଷେ
ବୋଇଲେ ଶ୍ୱଶୁର ମଲା ତାର ପରାମର୍ଶେ ।
ଚକ୍ରେ ଛେଦିବଇଁ କାଲି ମୁଁ ତାହାର ଶିର
ତେଣୁ ଭୟେ ପଳାଉଛି ଆହେ ନୃପବର ।
ଉଦ୍ଧବ ଅକ୍ରୂରକୁ ମୁଁ କହିଲଇଁ ଯାଇଁ
ଭୟରୁ ମୋତେ ସମ୍ଭାଳି ରଖିବାର ପାଇଁ ।
ଶ୍ରୀହରିଙ୍କ ଡରେ ବେନି ଜଣେ ନାସ୍ତି କଲେ
ଦ୍ୱାରକାରୁ ପଳାଇଲି ପ୍ରାଣର ବିକଳେ ।
ଯୁଧିଷ୍ଠିରଙ୍କ ପାଦେ ଯାଇଁ ପଶିଲି ଶରଣ
ସେହୁ ନାସ୍ତି କଲେ ମୋତେ ଶ୍ରୀହରି ଭୟେଣ ।
ତୁ ଯେବେ ସମ୍ଭାଳି ରଖିପାରୁ ରାଜା କହ
ନୋହିଲେ କନକସ୍ତ୍ରେ ଲୁଚି ରଖିବଇଁ ଦେହ ।
ସତ୍ରାଜିତ ବାକ୍ୟେ କୃତକେଶୀ ଯେ ହସିଲେ
ପଞ୍ଚଭୂତ ଆତ୍ମାରେ ଶ୍ରୀହରିଙ୍କି ଡରିଲେ ।
କୃତକେଶୀ ବୋଲେ ଶୁଣ ହେ ସତ୍ରାଜିତ
ତୋତେ ରକ୍ଷିବାକୁ ମୁହିଁ ନୁହଇ ସମର୍ଥ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ରଖନ୍ତା କେ ନାହିଁ
ଯେଣୁ ସୁଦର୍ଶନ ଚକ୍ର ନିଯୁରେ ଭ୍ରମଇଁ ।
ଦୀନଜନବାନ୍ଧବ ସେ ଅନାଥର ନାଥ
ଦୁଃଖୀଜନଙ୍କ ନିମନ୍ତେ ଶଙ୍ଖ ଚକ୍ରହସ୍ତ ।
ଆର୍ତ୍ତଭଞ୍ଜନ ନାଥ ନାମ ଜନାର୍ଦ୍ଦନ
ଆରତ ଜନ ଡାକନ୍ତେ ରଖନ୍ତି ତକ୍ଷଣ ।
ଅଚ୍ଛିଦ୍ର ପୁରୁଷ ତାର ଛିଦ୍ରାଚ୍ଛିଦ୍ର ନାହିଁ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡେ ଯା ତେଜ ପ୍ରକାଶଇ ।
ନାହିଁ ରୂପ ରେଖ ପୁଣି ସବୁଠାରେ ଥାଇ
ଆତ୍ମାରୂପେ ସର୍ବଜନ ହୃଦେ ପ୍ରକାଶଇ ।
ଦଶିଂପାକ ଶରୀରରେ ପେତେଲ ବସ୍ତ୍ର ର
ଶଙ୍ଖ ଚକ୍ର ଚତୁର୍ଭୁଜେ ବିଜେ ଚକ୍ରଧର ।

ବେଦ ବେଦାନ୍ତେ ଯାହାର ନାମକୁ ବଖାଣି
ମୁନିମାନେ ନିରନ୍ତର ଯାର ନାମ ଗୁଣି ।
ଶୂଦ୍ରମୁନି ମୁଁ ଶାରଳା ଦାସ ଅରକ୍ଷିତ
ପ୍ରତିଦିନ ଭଜୁଥାଇ ପ୍ରଭୁ ଜଗନ୍ନାଥ ।
ସହସାଜିତକୁ କୃତକେଶୀ ଯେ କହଇ
ଶ୍ରୀହରିଙ୍କ କେଉଁ ସ୍ଥାନ ଅଜ୍ଞାତ ଅଟଇ ।
ସେହି ପ୍ରଭୁ ଶତ୍ରୁକୁ ମୁଁ ରଖି ନ ପାରଇ
ପଳାଅ ସହସ୍ରାଜିତ କ୍ଷଣେହେଁ ନ ରହ ।
ତକଣେ ସହସାଜିତ ପଳାଇଣ ଗଲା
କୃତକେଶୀ ତାକୁ ଯହୁଁ ରଖି ନ ପାରିଲା ।
ଷଦନହିଁ ବେଗରେ ସେ ଧାଏଁ ଖରତର
ଖାଲ ଠିକଇ ତାହାକୁ ନୁହଇ ଗୋଚର ।
ଷଣ୍ଢକେ ଜଗନ୍ନାଥେ ସେହୁ ଭୟ କରି
ପଳାଇ ଯାଏ ପଛକୁ ସେ ମୁଖ ନ କରି ।
ଏମନ୍ତେ ସେ ଏକାଦଶ କୋଶ ବହିଗଲା
ବିଷ୍ଣୁକେଶରୀ ନଗରୀ ଭିତରେ ପଶିଲା ।
ସେ ଦେଶର ରାଜା ନାମ ବିଷ୍ଣୁକର ଦାସ
ଆସଇ ଅନାଇ ବିଜେ କରି ନର ଈଶ ।
ସହସ୍ରାଜିତ ଯିବାର ଦେଖଇ ନୟନେ
ଧାଇଁଯାଇଁ ତାକୁ ବାଟ ଓଗାଳି ବହନେ ।
ବୋଇଲା କାହିଁର ଗୃହର ଯାଉଛୁ କାହିଁକି
କାହାର ଭୟରେ ତୁହି ପଳାଉ ଏକାକୀ ।
ବୋଲଇ ସହସ୍ରାଜିତ ଶୁଣ ମହାରାୟ
ମରଣରୁ ପାରିବୁ କି ରଖି ମୋର କାୟ ।
ପ୍ରାଣର ଭୟରୁ ମୁହିଁ ଯାଉଛି ପଳାଇ
ରଖି ପାରିବୁ କି ତୋହ ବଳେ ନରସାଇଁ ।
ଏହା ଶୁଣି ବିଷ୍ଣୁକର କହଇ ଗୁପତେ
କେଉଁ ଶତ୍ରୁ ଗୋଡ଼ାଇଛି କହ ମୋ ଅଗ୍ରତେ
ତାହାକୁ ନାଶି ତୋହର ପ୍ରାଣ ରଖିବଇଁ
ଏଥକୁ ତୁ କିଛି ଧାତ ନ କର ହେ ଭାଇ ।
ଏଥିରେ ସହସ୍ରାଜିତ ଭରସା ପାଇଲା
ନିସ୍ତବ୍ଧ ହୋଇ ତହିଁ ଦଣ୍ଡେକ ରହିଲା ।
କ୍ଷଣେ ତୁନି ହୋଇ ପୁଣି କହଇ ବଚନ
ଶତ୍ରୁ ବୋଲି ଯାହା ମୋତେ ପରୁଛୁ ରାଜନ ।
ଏଥର ଚରିତ କହେ ଶୁଣ ନରସାଇଁ
କୃଷ୍ଣ ବଂଶରେ ଜଣେ ମୁଁ ଯାଦବ ଅଟଇ ।

ମଥୁରା ନଗର ରାଜା ଜାଣ ଉଗ୍ରସେନ
ଯାଦବେ ଅମ୍ଭେ ତା ପାଦେ ଖଟୁ ପ୍ରତିଦିନ ।
ଦ୍ୱାରକାରେ ରହିଲୁ ଯେ ଜରାସନ୍ଧ ଡରେ
ସୁଦର୍ଶନ ଚକ୍ର ତହିଁ ଭ୍ରମେ ନିରନ୍ତରେ ।
ମାଛି ପଡ଼ିଲେକ ଯହିଁ ନବଖଣ୍ଡ ହୁଏଁ
ଶତ୍ରୁ ହୋଇ ସେ ନଗରେ ପଶିବ ବା କିଏ ।
ଶତଧନୁ ନାମେ ଜାଣ ଏକଇ ଯାଦବ
ମଣିର ନିମନ୍ତେ ନେଲା ସତ୍ରାଜିତ ଜୀବ ।
ଜଗନ୍ନାଥଙ୍କ ଶ୍ୱଶୁର ଅଟେ ସତ୍ରାଜିତ
ସତ୍ୟଭାମା ଦେବଙ୍କର ଅଟଇ ସେ ତାତ ।
ଏହା ଶୁଣି ନାରାୟଣ ବଡ କୋପ କଲେ
ଶତଧନୁକୁ ମାରିବା ଉପାୟ ପାଞ୍ଚିଲେ ।
ଗତରାତ୍ରେ ଶତଧନୁ ଉପାୟ ରଚିଲା
ସ୍ୟମନ୍ତକ ମଣି ନେଇ ଅକ୍ରୂରକୁ ଦେଲା ।
ମଣିଦେଇ ସେଠାବରୁ ଖସିକି ପଳାଇ
ପୁରଯାକ ଖୋଜୁଛନ୍ତି କମଳାର ସାଇଁ ।
ବୋଇଲେ ସହସ୍ରାଜିତ ବଗ୍ରରେ ଏ ମଲା
ଏଣୁ ନରହରି ମୋହଠାରେ କୋପ କଲା ।
ତହୁଁ ଘେନି ଖୋଜୁଛନ୍ତି ଦ୍ୱାରକା ନଗରୀ
ଦେଖିଥିଲେ ମୋତେ ବଧ କରିଥାନ୍ତେ ହରି ।
ପ୍ରାଣ ଘେନି ସେଠାବରୁ ଆସିଛି ପଳାଇ
କେଉଁଠାରେ ପଶି ମୁଁ ପ୍ରାଣ ରଖିବଇଁ ।
କେହି ମୋହର ଶରଣ ରଖି ନ ପାରିଲେ
ସୁଦରଶନ ଚକ୍ରକୁ ସର୍ବେ ଭୟ କଲେ ।
ବନସ୍ତ ଭିତରେ ମୁହିଁ ଲୁଚିବଇଁ ଯାଇ
ଯେଉଁଠାରେ ଶ୍ରୀହରିଙ୍କ ତେଜ ଲାଗେ ନାହିଁ ।
ଏହା ଶୁଣି ବିଷ୍ଣୁକର ହସେ ଧୀର ଧୀର
ବୋଇଲା ଅପୂର୍ବ କଥା କହିଲୁ ତୁ ବୀର ।
ଯେଉଁ ଜଗନ୍ନାଥ ଚନ୍ନପୁର ଅଧିକାରୀ
ଜଳେ ସ୍ଥଳେ ସର୍ବଭୂତେ ଅଛନ୍ତି ଯେପରି ।
ସପତ ବ୍ରହ୍ମାଣ୍ଡ ଅଛି ଗର୍ଭରେ ଯାହାର
ତୁହି ଲୁଚିଲେ କି ତାଙ୍କୁ ହେବ ଅଗୋଚର ।
ତାହାର ବିପକ୍ଷ ଯେଣୁ ତୁହି ହୋଇଅଛୁ
ତୋତେ କେ ରଖିବ ତୁହି ଶରଣ ମାଗୁଛୁ ।
କେଉଁ ସ୍ଥାନ ତାହାର ବା ଅଟଇ ଅଦୃଶ୍ୟ
ଜାଣିଲେ କରିବେ ନଷ୍ଟେ ମୋର ପ୍ରାଣ ନାଶ

ଦୁଷ୍ଟ ନାଶିବୁ ପୁଣି ମୁହିଁ ହେବ ହତ
ତୋତେ ରକ୍ଷି ପାରିବାକୁ ନୁହଇ ସମର୍ଥ ।
ଭକତବତ୍ସଳ ସେହୁ କମଳାରମଣ
ତାଙ୍କଠାରେ ଦୋଷୀ ହୋଇ ହରାଇବ ପ୍ରାଣ ।
ଏମନ୍ତ ବଚନ ଚଉ ବଷ୍ଟୁକର ସାପ୍ୟ
ଶ୍ରୀଜଗନ୍ନାଥଙ୍କୁ କଲା ମନେ ବଡ ଭୟ ।
ବଷ୍ଟୁକର ରାଜାର ଏ ନିଷ୍ଠୁର ବଚନ
ଶୁଣିଣ ସହସ୍ରାଜିତ ମନେ ଛଇଛନ୍ନ ।
ପଛକୁ ନ ଚାହିଁ ତହୁଁ ବେଗେ ପଳାଇଲା
ଭୟେ ଘୋର ଅରଣ୍ୟରେ ଯାଇଣ ପଶିଲା ।
ଯହିଁ ସୂର୍ଯ୍ୟ ଚନ୍ଦ୍ରଙ୍କର ନାହିଁ ଆତଯାତ
ସେହି ବନସ୍ତେ ମିଳିଲା ସେ ସହସ୍ରାଜିତ ।
ତହୁଁ ସେ ଚଉଦିଗକୁ ଚାହିଇଁ ନିରେଖି
ପାଣ୍ଡୁର ନନ୍ଦନକୁ ମୁଁ କେଉଁଠାରେ ଦେଖି
ଯେଣିକି ଚାହେଁ ସେ ତାକୁ ଦିଶେ ତମମୟେ
ଚଉଦିଗେ ଚାହିଁ ମନ ଛଇଛନ୍ନ ହୁଏ ।
ମନ ଉଦବେଗରେ ସେ ନ ପାରଇ ରହି
ପୁଣି ପାଞ୍ଚକ୍ରୋଶ ପଥ ଗଲା ସେହି ବାହି ।
ମଣିଭଦ୍ରା ପର୍ବତ ନିକଟେ ମିଳିଲା
ଏହି ସେ ପର୍ବତ ହେବ ମନେ ବିଚାରିଲା ।
ଯେତେମତେ କହିଥିଲା ମନ୍ତ୍ରୀ ଚୂଡ଼ାମଣି
ଜାଣିଲା ସର୍ବ ଶକୁନ ସେହି ପରମାଣି ।
ପର୍ବତ ଗୋଟି ଦିଶଇ ଯେ ଧବଳମୟ
ଚନ୍ଦ୍ର ଦିଶୁଅଛି ତହିଁ ଦିବସ ପରାୟ ।
ଆବର ଅଷ୍ଟରତନ ମଣି ବିରାଜନ୍ତି
ନାନାବର୍ଣ୍ଣ ପକ୍ଷୀଗଣ କ୍ରୀଡ଼ା କରୁଛନ୍ତି ।
ସାରି ଶୁକ କୋକିଳଙ୍କ ରବ ଘନଘନ
ଅବସନ୍ତରେ ବସନ୍ତ ବହେ ଅବଛିନ୍ନ ।
ଚମ୍ପାଅଳା ନାଗେଶ୍ୱର ମଲ୍ଲୀ ଜାଈ ଯୂଈ
ଅଗୁରୁ ଚନ୍ଦନ ବୃକ୍ଷ ପନ୍ତି ପନ୍ତି ଥାଇ ।
ପର୍ବତେ ସିଂହ ଶାର୍ଦ୍ଦୂଳ ହସ୍ତୀ ପଲ ପଲ
ଗଣ୍ଡା ଗବୟ ବୁଲନ୍ତି ହୋଇ ମାଳ ମାଳ ।
ଶ୍ୱେତ ନକୁଳମାନେ ଯେ ଖେଦି ଖେଦିହୋଇ
ସେ ପର୍ବତ ଉପରେ ସୁଖେ ଛନ୍ତି ଶୋଇ ।
ରବ ଦିଅନ୍ତି ମୟୂରମାନେ ଘନ ଘନ
ଗଗନେ ଉଦିତ ହେବା ଦେଖି ମେଘମାନ ।

ଶଶା ମୂଷା କାହିଁ ଅବା କରୁଛନ୍ତି ଖେଳ
ଖୁରଣ୍ଟି ଯୂଆଦମାନେ ଛନ୍ତି ପଲ ପଲ ।
ପୁଷ୍ପରେ ଭ୍ରମରଗଣ କରୁଛନ୍ତି କେଳି
ଚୂତ ଡାଳରେ କୋକିଳ କୁହୁରବ କରି ।
ଋକ୍ଷ କପିପଲ କାହିଁ ବୃକ୍ଷେ ବସିଛନ୍ତି
ନାନା ପତ୍ର ଫଳ ମୂଳ ସୁଖେଣ ଭକ୍ଷନ୍ତି ।
ତହିଁ ଆମ୍ବ ପଣସ ଯେ ପାଚିଣ ଝଡ଼ନ୍ତି
ଯେଣୁ ମନୁଷ୍ୟ ନାହାନ୍ତି ତା ଜୀବେ ଭକ୍ଷନ୍ତି ।
ଏମାନ ଦେଖି ସହସ୍ରାଜିତ ବିଚାରିଲା
ପର୍ବତର ଉତ୍ତରଭାଗକୁ ଚାହିଁଲା ।
ବିଚାରେ କେବଣଠାରେ ଅଛନ୍ତି ଅର୍ଜୁନ
ଶିରରେ ମୟୂର ଝାଲି କବଚ ବେଶେଣ ।
କଣ୍ଟାବାଉଁଶ ନିର୍ମିତ ଧନୁ କରେ ଧରି
ପଇତା ଛନ୍ଦେ ଗାଣ୍ଡୀବ ଧନୁଗୋଟି ଭରି ।
କାହିଁ ରହିଅଛି ସେହି ପାଣ୍ଡବ ଅର୍ଜୁନ
ଶରଣ ପଶିଲେ ମୋର ରଖିବ ଜୀବନ ।
ବୀରମୂର୍ତ୍ତି ଧରି ପାର୍ଥ ପୂର୍ବମୁଖ ହୋଇ
ବସିଅଛନ୍ତି ପର୍ବତେ ନିଃଶଙ୍କ ସେ ହୋଇ ।
ଶବର ପ୍ରାପ୍ତ ହୋଇଛି ସେ ସହସ୍ରାଜିତ
ହୃଦପଦ୍ମ ମଧ୍ୟେ ସେହି ବାଞ୍ଛଇ କଥାତ ।
ପର୍ବତ ତଳେ ଥାଇ ଡାକଇ ଉଚ୍ଚରେ
କେବଣ ମହାତ୍ମା ଅଛ ପର୍ବତ ଉପରେ ।
ଶରଣ ରଖ ବୋଲିଣ ଯହୁଁ ସେ ଡାକଇ
ପର୍ବତର ଶିଖେ ଥାଇ ଅର୍ଜୁନ ଶୁଣଇ ।
ବେଳଚ୍ଚର ଡାକିଲାକ ସେ ସହସ୍ରାଜିତ
ଶବଦକୁ ଲକ୍ଷ୍ୟ କଲା ପାଣ୍ଡୁରାଜା ସୁତ ।
ବୋଇଲା ଶରଣ ବୋଲି ଡାକୁଅଛି କେହୁ
ମୋହର ସମ୍ମୁଖରେ ଆସି ଉଭା କିପାଁ ନୋହୁ ।
ଶୁଣିଣ ସହସ୍ରାଜିତ ଭରସା ପାଇଲା
ପର୍ବତର ଉପରକୁ ତୁରିତେ ଉଠିଲା ।
ଶବରରୂପ ଧରିଛି ସେ ସହସ୍ରାଜିତ
ଚିହ୍ନି ନ ପାରିଲା ତେଣୁ ତାକୁ ବୀରପାର୍ଥ ।
ଶ୍ରୀହରିଙ୍କ ବନ୍ଧୁ ବୋଲି ପାର୍ଥ ନ ଜାଣନ୍ତି
ବନର ଶବର ପ୍ରାପ୍ତ ତାକୁ ମଣିଛନ୍ତି ।
ଆସ ଆସ ବୋଲି ଯହୁଁ ଡାକିଲା ବିବସ୍ତ୍ର
କରଯୋଡ଼ି ବୋଲେ ରଖ ରଖ କୁନ୍ତୀବତ୍ସ ।

ଅର୍ଜ୍ଜୁନର ଚରଣରେ ନମଇଁ ସେ ପୁଣି
ତୋ ପାଦେ ଶରଣ ଗଲି ରଖ ବୀରମଣି ।
ଉଠ ଉଠ ବୋଲି ତାକୁ ଅର୍ଜ୍ଜୁନ ତୋଳିଲେ
ଆଶ୍ୱାସନା କରି ନେଇ ପାଖେ ବସାଇଲେ ।
ଶରଣ ପଞ୍ଜର ବାନା ଅଟଇ ଯାହାର
ରଖିଲେ ପ୍ରତିଜ୍ଞା କରି ତାକୁ ବୀରବର ।
ଅନ୍ଧାର ଗର୍ତ୍ତରେ ପଥ ବାରି ନ ପାରିଲେ
କରଗତ ପ୍ରାପ୍ତ ମଣି ସେ ଶରଣ ରଖିଲେ ।
ପଚାରିଲେ ଅର୍ଜ୍ଜୁନ ତୁ କାହାର ଭୟରେ
ଶରଣ ପଶିଲୁ ଆସି ମୋହର ପୟରେ ।
ନିର୍ଭୟରେ ସ୍ଥିର ହୋଇ ରହ ତୁମ୍ଭେ ଏଥେ
ପାଇଲୁଣି ତୁ ବହୁତ କଷ୍ଟ ବନପଥେ ।
ରଜନୀ ପାହିଲେ ଭଲ ମନ୍ଦ ବିଚାରିବା
କଥାର ଯେ ସତ ତାହା ପଚାରି ବୁଝିବା ।
ଜଗନ୍ନାଥ ପ୍ରଭୁଙ୍କୁ ଯେ ମନରେ ସୁମରି
ରଖିଲେ ପାଖରେ ତାକୁ ଅତି ଯତ୍ନ କରି ।
ନିର୍ଭୟ ହୋଇଣ ତହିଁ ରହେ ସତ୍ରାଜିତ
ପଞ୍ଚଭୂତେ ଭୟଙ୍କର ପ୍ରଭୁ ଜଗନ୍ନାଥ ।
ଯେଣୁ ଦ୍ୱିତୀ ନାରାୟଣ ଅଟେ ଫାଲଗୁନ
ସହସ୍ରାଜିତ ସପକ୍ଷ ହେଲେ ବୀରମଣି ।
ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ସହସ୍ରାଜିତ ଶରଣ ପଶିଲା ସେ ରାତି ।
ଏକମନ ହୋଇ ତାହା ଶୁଣ ମହାଶୟ
ପାପଭାର ତୋ ଦେହରୁ ହୋଇଯିବ କ୍ଷୟ ।
ମନୁ ପଚାରଇ ଧୀରେ ଶୁଣିମା ଗୋସାଇଁ
ଏଥିଉତ୍ତାରୁ କି କଲେ ପ୍ରଭୁ ଯଦୁସାଇଁ ।
ଅଗସ୍ତି ବୋଲନ୍ତି ଶୁଣ ଆହେ ନୃପବର
ଦ୍ୱାରକା ପୁରରେ ଚକ୍ର ଧରି ଚକ୍ରଧର ।
ଖୋଜିଣ ସହସ୍ରାଜିତ ଚିହ୍ନି ନ ପାଇଲେ
ଦଶଦିନେ ଶ୍ୱଶୁରଙ୍କ କ୍ରିୟା ଶେଷ କଲେ ।
ପଳାଇବା କଥା ହରି ନ ପାରିଲେ ଜାଣି
ଅକ୍ରୂର ବୋଲେ ନିର୍ଦ୍ଦୋଷ ଅଟଇ ସେ ପ୍ରାଣୀ
ଅକାରଣେ କୋପ ପ୍ରଭୁ ତାହାରେ ନ କର
ଅକ୍ରୂର ବଚନେ କୋପ ତେଜିଲେ ଶ୍ରୀଧର ।
ଶବର ବେଶେ ସହସ୍ରାଜିତ ଯେ ରହିଲା
ଅର୍ଜ୍ଜୁନର ପାଖେ ଦଶଦିନ ବହିଗଲା ।

ଦିନେ ସେ ଅର୍ଜ୍ଜୁନ ଡାକି ବୋଲେ ହେ ଶବର
କାହିଁ ତୋର ଘର ତୁମ୍ଭ କାହାର କୁମର ।
କାହାର ଭୟରେ ତୁମ୍ଭ ପଶିଲୁ ଶରଣ
କାହାର ତୁ ଦୋଷୀ ହେଲୁ କହ କି କାରଣ
ବୋଲଇ ସହସ୍ରାଜିତ ଯୋଡ଼ି ବେନିକର
ମୋ ନାମ ସହସ୍ରାଜିତ ଦ୍ୱାରକାରେ ଘର ।
ବିନାଦୋଷେ କୋପ ମୋତେ କଲେ ନରହରି
ଅନାଧୃଷ୍ଟ ଶତଧନୁ ଘେନି ଯେ ମୋହରି ।
ଶତ୍ରାଜିତକୁ କପଟେ ମାରି ପକାଇଲେ
ସ୍ୟମନ୍ତକ ମଣି ତାଙ୍କ ଘରୁ ଚୋରି କଲେ ।
ଜାଣି ତାହା ଚକ୍ରଧର ମହାକୋପ କଲେ
ଅନାଧୃଷ୍ଟକୁ କ୍ରୋଧରେ ମାରି ପକାଇଲେ ।
ମଣି ଘେନି ଶତଧନୁ ତହୁଁ ପଳାଇଲା
ଅକ୍ରୂର ହସ୍ତରେ ମଣି ଦେଇ ସେ ଲୁଚିଲା ।
ସହସ୍ରାଜିତ ବିଚାରେ ହେଲା ଏତେ କୃତ୍ୟ
ଏମନ୍ତ କହିଣ କୋପ କଲେ ଜଗନ୍ନାଥ ।
ବୋଇଲେ ଚକ୍ରେ ଛେଦିବି କାଲି ତା'ର ଶିର
ତେଣୁ ଭୟେ ପଳାଇ ମୁଁ ଆଇଲି ହେ ବୀର
ଅର୍ଜ୍ଜୁନ ବୋଇଲେ ତୁମ୍ଭ ନୋହୁ ଏଥେ ଦୋଷୀ
ତେଣୁ ନ ମାଇଲେ ପ୍ରଭୁ ତୋତେ ଚକ୍ରପେଷି
ଦଶଦିନ ହେଲା ତୁମ୍ଭ ରହିଲୁଣି ଏଥି
କୋପ ଯେବେ କରିଥାନ୍ତେ ପ୍ରଭୁ ଜଗନ୍ନାଥ ।
ଅବଶ୍ୟ ଚକ୍ରେ ତୋହର ଛେଦିଥାନ୍ତେ ଶିର
କାହିଁ ଲୁଚି ରହିଥାନ୍ତୁ ବ୍ରହ୍ମାଣ୍ଡ ଭିତର ।
ଖୋଜି ଖୋଜି ଚକ୍ର ତୋତେ ପକାନ୍ତାଣି ମାରି
କେହି ନ ରଖନ୍ତେ ତୋତେ ସେ ଚକ୍ରକୁ ଡରି
ଏବେ ତୁମ୍ଭ ଦ୍ୱାରକାକୁ ଯାଅ ନିର୍ଭୟରେ
ସହସ୍ରାଜିତ ପ୍ରଣମି ଅର୍ଜ୍ଜୁନ ପୟରେ ।
ଦ୍ୱାରକାପୁରେ ରହିଲା ନିଶ୍ଚିନ୍ତରେ ଯାଇ
ଲୋକେ ବୋଇଲେ ତୋଠାରେ ଆଉ କୋପ ନାହିଁ
ଗୋବିନ୍ଦ ଲୀଳା ଚରିତ ଏ ଅମୃତ ବାଣୀ
ସନ୍ତୋଷ ମନେ ଶ୍ରବଣ କରି ସନ୍ତପ୍ରାଣୀ ।
ତୁମ୍ଭେ ଯେଣୁ ବଙ୍ଗବର ଅଟ ହୋ ସଜ୍ଜନ
ତେଣୁ ତୁ ପଚାରି ପାରୁ ହରି କଥାମାନ ।
ବନ୍ଦଇ ସେ ନାରାୟଣ କମଳାର ପତି
ସର୍ବଜନଙ୍କର ହୃଦେ ପ୍ରଭୁ ତୋର ସ୍ଥିତି ।

ସଂସାର ଜନଙ୍କୁ ପ୍ରଭୁ ନିସ୍ତାରିବା ପାଇଁ
ମାନବ ଶରୀରେ ମର୍ତ୍ତ୍ୟପୁରେ ଅବତାରୀ ।
ମତ୍ସ୍ୟ କଚ୍ଛପ ବରାହ ତୁ ନରକେଶରୀ
ବାମନ ପରଶୁରାମ ରାମରୂପ ହରି ।
ବଉଦ୍ଧ କଳଙ୍କୀ ଏହି ଦଶ ଅବତାର
ଅସୁରଙ୍କ ନିବାରଣେ ଏତେ ରୂପ ତୋର ।
ବଳଭଦ୍ର ଜଗନ୍ନାଥ ଭଦ୍ରା ସୁଦର୍ଶନ
ଶ୍ରୀନୀଳକନ୍ଦରେ ବିଜେ ଚତୁର୍ଦ୍ଧା ରୂପେଣ ।
ଶ୍ରୀବିମ୍ବ ଅଧରେ ପ୍ରଭୁ ମନ୍ଦ ମନ୍ଦ ହସି
ଶରଣ ଯାଚୁ ତୁ ଭୁଜ ଟେକି ବ୍ରହ୍ମରାଶି ।
ତୁମ୍ଭର ମହିମା ପ୍ରଭୁ ତୁମ୍ଭଙ୍କୁ ଗୋଚର
ମୋତେକାହିଁ ଗୋଚର ତାହେବଦାମୋଦର
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ଦୟା କରଅଛ ମୋତେ ଦେବ ଶିରୀବତ୍ସି ।
ତୋହର ଚରଣ ବିନୁ ନ ଜାଣଇ ଆନ
ଏ ଭବସାଗରୁ ପାରିକର ଭଗବାନ ।
ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣେ ବିନତି
କରୁଅଛି ମୁଁ ଶାରଳା ଦାସ ଶୂଦ୍ରମୁନି ।

---

## ଶତଧନୁ ଶରଣ

ଅଗସ୍ତି କହନ୍ତେ ମନୁରାୟ ଯେ ଉଠିଲା
ମୁନିଙ୍କ ଚରଣ ତଳେ ନମସ୍କାର କଲା ।
ବିନୟ ଭାବେ ବୋଲଇ ଏମନ୍ତ ବଚନ
ତଦୁତ୍ତରେ ବନବାସେ କି କଲେ ଅର୍ଜୁନ ।
ଆଉର କଥାଏ ମୁନି ପଚାରୁଛି ମୁହିଁ
ଶତ୍ରାଜିତ ମାରି ଶତଧନୁ ଯେ ପଳାଇ ।
କେବଣ ପ୍ରକାରେ ସେହି ରଖିଲା ଜୀବନ
ଯାହାର ବିପକ୍ଷ ହେଲେ ପ୍ରଭୁ ଭଗବାନ ।
ଏହା ଶୁଣି ମୁନିବର ଅଳପ ହସିଲେ
ବହୁତ ପ୍ରଶଂସା ପୁଣି ରାଜାଙ୍କୁ ସେ କଲେ ।
ବଦନ୍ତି ଅଗସ୍ତି ଶୁଣ ମନୁ ମହାତମା
ଯୁଗ ଅନ୍ତଃକାଳକୁ ତୁ ଅଟୁ ନିଷ୍ଟେଁ ବ୍ରହ୍ମା ।
ଆଉର କଉତୁକ ତୁ ଶୁଣ ମନୁରାୟ
କୃଷ୍ଣର ତୁଲେ ବିବାଦ ହେଲା ଧନଞ୍ଜୟ ।
ମନୁ ବୋଇଲେ ତ ବଡ଼ ଦୁର୍ଲ୍ଲଭ ଏ କଥା
କହିବା ହରି ଅର୍ଜୁନ ଯୁଦ୍ଧର ବାରତା ।

ଖାଣ୍ଡବବନ ଦହିଲା ଅଗ୍ନିଙ୍କ ନିମନ୍ତେ
ଅନେକ ଶର ଅନଳ ଦେଲେ ତୋଷଚିତ୍ତେ ।
ସଦାନନ୍ଦଙ୍କୁ ଜିଣିଲା କିରାତ ରୂପରେ
ପାଶୁପତ ଶର ଲଭିକଲା ହରିବରେ ।
ପାର୍ବତୀ ଦେଲେ ଅକ୍ଷୟ ତୂଣୀର ଯେ ବେନି
ଅତପେ ଅଭକ୍ତେ ଏହା ପାଇଲା ଫାଲ୍‌ଗୁନ
ଯୁଦ୍ଧରେ ଇନ୍ଦ୍ରଙ୍କୁ ଜିଣି ପାଇଲା ସେ ବର
କେମନ୍ତେ ଶ୍ରୀହରି ସଙ୍ଗେ ହୋଇଲା ସମର ।
ଶୁଣସି ହେ ମହାତମା ପଚାରିଲୁ ଯାହା
ଅଗସ୍ତି ବୋଇଲେ ଆମ୍ଭେ କହିବା ନା ତାହା
ଦୁର୍ଯ୍ୟୋଧନ ରାଜା ପଞ୍ଚବଂଶ ଅଙ୍ଗରାରୀ
ଏ ସମୟରେ ଏମନ୍ତ ଯୋଗ ସିନା ହୋଇ ।
ଶ୍ରାବଣ ମାସର ଶୁକ୍ଳ ପକ୍ଷର ଚଉଠି
ଉତ୍ତର ଫାଲ୍‌ଗୁନକ୍ଷତ୍ର କରଣ ଯେ ବିଷ୍ଟି ।
ଭୌମବାର ସେହିଦିନ ସିଦ୍ଧି ନାମେ ଯୋଗ
ସିଂହ ସଂକ୍ରାନ୍ତିର ଯେ ସାତଦିନ ଭୋଗ ।
ଦ୍ୱାରକା ସହରେ ବିଜେ ପ୍ରଭୁ ଜଗନ୍ନାଥ
ରାମ ବାସୁଦେବ ଉଗ୍ରସେନଉ ସହିତ ।
ସାତବଂଶ ଯୋଦ୍ଧାମାନେ ଅଛନ୍ତି ଆସ୍ଥାନେ
ତଳେ ପଟୁଆରୀ ପାଦ ମିଶି ଯୋଦ୍ଧାମାନେ ।
ବିମ୍ବାଧର ନାମେ ଏକ ଗୁପତ ଡ଼ଗର
ସେ ଯାଇ କହିଲା ବୀର ସାତ୍ୟକି ଆଗର ।
ସ୍ୱାମି ଶତ୍ରାଜିତକୁ ଯେ ମାଇଲା ଗୁପତେ
ମୁହିଁ ତାହା ଠାବ କରି ଆଇଲଇଁ ଏଥେ ।
ସତ୍ୟବର ଯାଦବର ପୁଅ ଶତଧନୁ
ସେ ମାଇଲା କୃତବର୍ମା ଅନାଧୃଷ୍ଟ ଜାଣୁ ।
ସାତ୍ୟକି ବୋଇଲା ତୁହୋ ପାସୋର ସେକଥା
ଅନେକ ଗୋଳ ହୋଇବ ପାଇଲେ ବାରତା
ସାତ୍ୟକି ବଚନେ ସେ ଯେ ହୋଇଲେକ ତୁନି
ଶୁଭେ ପ୍ରକାଶ ହୋଇଲା ସେ ଦିନ ରଜନୀ ।
ଅଦ୍ଭୁତେ ସେ କଥା ହେଲା ସଭାରେ ପ୍ରକଟ
ଗୋବିନ୍ଦର ବେଷ ଜାଣିପାରି ଅନାଧୃଷ୍ଟ ।
ତକ୍ଷଣେ ବୋଇଲା ଆହୋ ଜନତାର ବଳା
ଏହିକ୍ଷଣି ଦ୍ୱାରକାରୁ ବେଗହୋଇ ପଳା ।
ପଳାଇଲା ଶତଧନୁ ସେହିଦିନ ରାତେ
ଗୋବିନ୍ଦ ଗୋଡ଼ାଇ ଗଲେ ରଜନୀ ପ୍ରଭାତେ ।

ପଳାଇ ଅନେକ ଦୂର ଶତଧନୁ ଗଲା
ମହାଘୋର ଅରଣ୍ୟରେ ଯାଇଣ ପଶିଲା ।
ସୁରଥ ନାମରେ ଥିଲା ଏକଇ କଇବର୍ତ
ଶତଧନୁ ହେଲା ଯାଇ ତା ଶରଣାଗତ ।
ଆହେ କଇବର୍ତ ଶରଣ ମାଗଇ ମୁଁ ତୋତେ
ଗୁପତ କରି ଲୁଚାଇ ପାରିବୁ କି ମୋତେ ।
କଇବର୍ତ ବୋଇଲା ତୁମ୍ଭ କାହାରୁ ଅଇରି
ଜଗନ୍ନାଥ ଭୟେ ମୁହିଁ ପଳାଉଛି ଡରି ।
ସୁରଥ ବୋଲେ ସେ ତ୍ରୈଲୋକ୍ୟ ଚିନ୍ତାମଣି
ବୃହିଁବିଲ ମାନେ ସଂସାର ପାରଇ ସେ ଜାଣି ।
ଏଥୁ ତୁମ୍ଭ ବେଗହୋଇ ପଳା ଶତଧନୁ
ପଚାରିଲେ ନ କହିବ ଏ ମୋହର ଜାନୁ ।
ପଳାଇଲା ଶତଧନୁ ମହାଘୋର ନିଶି
ଗୋର୍ଷର ସାଗର ବନ ମଧ୍ୟେ ଗଲା ପଶି ।
ଗୋବିନ୍ଦ ଭେଟିଲେ ଯାଇ ସୁରଥ କଇବର୍ତ
ଆରେ ଶତଧନୁ କେଣେ ଗଲା ଏ ବନସ୍ତ ।
କଇବର୍ତ ବୋଇଲା ମୁହିଁ ନ ଜାଣଇ ତାହା
ଲୋଡ଼ ମହାତମା ବନେ ପଶି ଖୋଜ ଯାହା ।
ଶୁଣି ପ୍ରଭୁ ଜଗନ୍ନାଥ କୋପେଣ ପ୍ରଜ୍ୱଳ
ବଜ୍ରେ କର୍ଣ୍ଣକଟାକ୍ଷକୁ ମାରି ବନମାଳୀ ।
ସେ ସୁରଥ କଇବର୍ତକୁ ପକାଇଲେ ହାଣି
ଧାଇଁଯାନ୍ତି ଅତିବ୍ୟଗ୍ରେ ଦେବ ଚକ୍ରପାଣି ।
ଧାମଇଁ ସେ ଶତଧନୁ ଭଦ୍ରାନଦୀ କୂଳେ
ଯମନକ ନୃପତିକୁ ଭେଟେ ସନ୍ଧକାଳେ ।
ଯମନକ ବୋଲେ ତୁମ୍ଭ କାହାର ବଇରୀ
ଆବର କିଏ ସେ ତୋତେ ଗୋଡ଼ାଉଛି ମାରି
ଶତଧନୁ ବୋଲେ ମୁହିଁ ନାରାୟଣେ ଦୋଷୀ
ରଖି ପାରିବୁ କି ରାଜା ବହନ କହସି ।
ଯମନକ ବୋଲେ ମୋତେ କର ତୁ ଉପେକ୍ଷ
ସ୍ୱୟଂ ନାଗେଲୁ ନାହିଁ ତୋର ଆଉ ରକ୍ଷା ।
ତୁରିତେ ପଳାଅ କ୍ଷଣେ ନ ରହ ତୁ ଏଥ
ନାରାୟଣ କୋପକୁ କେ ହୋଇବ ସମର୍ଥ ।
ପଳାଇଲା ଶତଧନୁ ସେ ବଚନ ଶୁଣି
ଦିବସ ରଜନୀ ଖାଲ ଢିପକୁ ନ ଗଣି ।
ଯମନକ ନୃପତିଙ୍କୁ ଭେଟିଲେ ଶ୍ରୀହରି
ଶତଧନୁ କେଣେ ଗଲା ତାହାକୁ ପଚାରି ।

ଶତଧନୁ ବୋଲି ଦେବ ନ ଜାଣଇ ମୁହିଁ
ସାରେକ ପଳାଉଅଛି ମହାଶ୍ରମ ପାଇ ।
ଗୋବିନ୍ଦ ବୋଇଲେ ତୁମ୍ଭ ଅଟ ହୀନଜାତି
ମୋର ଶତ୍ରୁ ଛାଡ଼ିଦେଲୁ ଅଇଲା ତୋ କନ୍ତ ।
ବଜ୍ରେ କର୍ଣ୍ଣକଟାକ୍ଷକୁ ଘେନି ଚକ୍ରପାଣି
ଯମନକ ନୃପତିକୁ ପକାଇଲେ ହାଣି ।
କୋପେ ଗୋଡ଼ାନ୍ତି ଶ୍ରୀହରି ପାଇ ମହାଶ୍ରମ
ଗରୁଡ଼ ଲୋଡ଼ନ୍ତି ବେଗେ ହୋଇ ତମ ତମ ।
ଶତଧନୁ ପଳାଉଛି ତହୁଁ ମହାଭୟେ
ସୁରସେନ ଶବର ସେ ବନମଧ୍ୟେ ଥାଏ ।
ତାହାକୁ ବୋଇଲା ରଖି ପାରିବୁ କି ମୋତେ
ସେ ବୋଇଲା କେ ଆସୁଛି କହ ତୋ ପଶ୍ଚାତେ
ଶତଧନୁ ବୋଲେ ମୋର ଗୋବିନ୍ଦ ବଇରୀ
ସୁରସେନ ବୋଲେ ଏଥୁ ପଳା ବେଗ କରି ।
ପଳାଇଲା ଶତଧନୁ ଜଗନ୍ନାଥ ଡରେ
ସୁରସେନକୁ ଭେଟିଲେ ସ୍ୱାମୀ କଛୁଦୂରେ ।
ବୋଇଲେ କଇବର୍ତ ମୋର ଶତ୍ରୁ ଗଲା କେଣେ.
ସୁରସେନ ପଡ଼ି କହେ ପ୍ରଭୁଙ୍କ ଚରଣେ ।
ତୋହର ବଇରୀ ହୋଇ କେ ଅଛି ସଂସାରେ
ସୁଦର୍ଶନ ଚକ୍ର ଯାଇ ଘେରେ ନିରନ୍ତରେ ।
ବୃଥାରେ ତୁ ନାଥ ଶ୍ରମ ପାଉଛୁ କାହିଁକି
ସାରେକ ଯାଉଛି ପଛେ ଗଲା ଡାକି ଡାକି ।
ନ ଶୁଣିଲା କେଶ ବାସ ଅସମ୍ଭାଳେ ଗଲା
ଏହା କହି ଶ୍ରୀଧରଙ୍କ ଚରଣେ ପଡ଼ିଲା ।
ଶ୍ରୀହରି ବୋଇଲେ ବର ମାଗ ସୁରସେନ
କଇବର୍ତ ଜନ୍ମରୁ ପାରି କର ଜନାର୍ଦ୍ଦନ ।
ଏହା କହି ସେ କଇବର୍ତ ରୂପ ବେଗେ ଧରି
ଶତଧନୁର ନିମନ୍ତେ କୂଟେ ଦେବ ହରି ।
ମଥାରେ ମୟୂର ଝାଲି କଣ୍ଠେ ଗୁଞ୍ଜାମାଳ
ଲୋହିତ ବସ୍ତ୍ର ଚନ୍ଦନେ ଅଙ୍ଗକୁ ଶ୍ୟାମଳ ।
ଶ୍ରୀହସ୍ତେ ଧରି ତାମଣା କାଠର ଯେ ଧନୁ
ଭ୍ରମନ୍ତି ଲୋଡ଼ନ୍ତି ବନମଧ୍ୟେ ଶତଧନୁ ।
ଶତଧନୁ ପବନହୁଁ ବେଗେ ଯାଏ ଉଡ଼ି
ବେନିଶତ ଯୋଜନର ମଧ୍ୟେ ଛଡ଼ାଛଡ଼ି ।
ନଦାଘ ନୃପତି ନାମ ଅଟେ କୁତକେଶୀ
ସଙ୍ଗେ ଯୋଦ୍ଧାସେନ ବନକ୍ରୀଡ଼ାରେ ସେ ଆସି

ପଳାନ୍ତେ ସେ ଶତଧନୁ ବାଟେ ହେଲା ଭେଟ
ଶରଣ ରଖି ପାରିବୁ କି ହୋ ନୃପଶ୍ରେଷ୍ଠ ।
ରାଜା ବୋଲେ ମୁଁ ଶରଣପଞ୍ଜର ଧାରିଧୁ
ଶୁଣିନାହୁଁ କି ମୁଁ ଦୁଃଖୀଜନଙ୍କର ବନ୍ଧୁ ।
ସୁଖେ ଥାଇ ରହ ମୁହିଁ ରଖିଲଇଁ ତୋତେ
ବ୍ରହ୍ମା ଇନ୍ଦ୍ର କି କରିବେ ମୋହର ଅଗ୍ରତେ ।
ଏସନ ପ୍ରତିଜ୍ଞା କଲା ରାଜା କୃତକେଶୀ
ରହିଲେକ ଶତଧନୁ ଶରଣ ହବେଶି ।
ବ୍ୟୂହେକ ସେ ରଚାଇଲା ଶକଟ ଆକାରେ
କେତେଲକ୍ଷ ଯୋଦ୍ଧା ତାର ରହିଲେ ଊର୍ଦ୍ଧରେ
ଝିମ୍ବମୁଣ୍ଡ ଆବୋରିଲେ ତିନି ଯେ ଅଯୁତ
ଦୁଇଚକ ଆବୋରିଲେ ଦୁଇ ଯେ ନିଯୁତ ।
ଆଗ ଆବୋରିଲେ ଚାରି ଅଯୁତେ ଯେ ଯୋଧ
ଫଳକେ ସେ ଶତ ଶତ ରଥି ନିରବଧି ।
ଏମନ୍ତେ ଏକ ଶକଟବ୍ୟୂହ ସେ ସୃଜିଲା
ତାହାର ମଧ୍ୟରେ ପଦ୍ମବ୍ୟୂହେକ ରଚିଲା ।
ପାଖୁଡ଼ାକେ ରଖାଇଲେ ସହସ୍ରେକ ରଥୀ
କେଶରେ ରଖି ଚାଳିଶ ସହସ୍ର ସେନାପତି ।
ତହିଁର ଭିତରେ ପୁଣି ନାଡ଼ଭେଦ କଲା
ସେ ନାଡ଼ ଭିତରେ ଶତଧନୁ ଲୁଚିଇଲା
ବ୍ୟୂହର ବାହାରେ ପୁଣି ରଚାଇଲା ଗଡ଼
ପାଚେରି ହୋଇଲେ ଦୈତ୍ୟସେନା ବଡ଼ବଡ଼ ।
ଏମନ୍ତେ ସେ ଲୁଚାଇଣ ନେଇ ଶତଧନୁ
ଆପେ ଗଡ଼ ଆବୋରିଲା ସୌଦାସର ସୂନୁ ।
ଶତଧନୁକୁ ଆବୋରି ରହେ କୃତକେଶୀ
ଏମନ୍ତ ସମୟେ ହୃଷୀକେଶ ହଜେ ଆସି ।
କବଚ ରୂପ ସେ ଦେବ ଶରୀରେ ବିକାଶ
ଦିଶନ୍ତି ନୀଳ ଉତ୍ପଳ ପ୍ରାୟେ ହୃଷୀକେଶ ।
ଶୋଣିତ ବର୍ଣ୍ଣ ଚନ୍ଦନ ଲିପ୍ତ ସର୍ବକାୟ
ଦିଶନ୍ତି ସେ ନାରାୟଣ ଦିବାକର ପ୍ରାୟ ।
ଚିହ୍ନି ନ ପାରି ଅସୁର ରାଜା କୃତକେଶୀ
କରେ କବଚ ବୋଲି ସେ ଉଗାଳିଲା ଆସି
ସଧୀରେ ପୁଚ୍ଛନ୍ତି ଦେବ ଦେବକୀର ସୂନୁ
ବୀରମାନେ ଦେଖିଛ କି ଗଲା ଶତଧନୁ ।
ବୋଇଲେ ଯେ ଉପହାସ କରି ଦୁଷ୍ଟବୀରେ
କାହିଁ ଚୋର ଶତଧନୁ ଖୋଜ ଯା ବନରେ
ଉପହାସ କରି ତାଙ୍କୁ ବୀର ଅନର୍ଗଳେ
କ୍ରୀଡନ୍ତି ଅସୁରେ ମଦ ରସପାନ ଘେନେ ।
ରାଗେ ଆଜ୍ଞାଦେଲେ ଯେବେ ସତ୍ୟ ନ କହିବ
ଆମ୍ଭ ଦୋଷ ନାହିଁ ସର୍ବେ ନଷ୍ଟେଁ ନାଶଯିବ ।
ଶୁଣି କୋପାନଳ ହେଲେ ରକ୍ଷ ମହାବଳୀ
କରେ ଅସ୍ତ୍ର ଶସ୍ତ୍ର ଧରି କୋପେଣ ପ୍ରଜ୍ୱଳି ।
ବିବିଧ ଆୟୁଧ ଧରି ଧାମନ୍ତି କୌଣପେ
ସହସ୍ରେକ ଯୋଦ୍ଧା ଆସି ଉଗାଳିଲେ କୋପେ
ବିନ୍ଧିଲେ ନାରାଚ ନାରାୟଣଙ୍କ ଉପରେ
ଅସ୍ତ୍ର ଶସ୍ତ୍ର ନ ଭେଦଇ ଶ୍ରୀବିଷ୍ଣୁ ଅଙ୍ଗରେ ।
ଅଭେଦ୍ୟ କବଚ ଯେହ୍ନେ ନ ଭେଦେ ଶକତି
ଗୋବିନ୍ଦ ଅଙ୍ଗେ ସମସ୍ତେ ପଡ଼ି ଚୂରି ହୁଅନ୍ତି ।
ରାଗେ ବିନ୍ଧିଲେ ଶ୍ରୀହରି ସୁତୀକ୍ଷ୍ଣ ନାରାଚ
ଯୋଜନେକ ଭୂମି ମାଡ଼ି ପଡ଼ିଲେ ଦନୁଜ ।
ଅଶୀସହସ୍ର ଯୋଦ୍ଧାଙ୍କୁ ପକାଇଲେ ଖେଦି
ତ୍ରିବିକ୍ରମ ଆରମ୍ଭେ ଦମ୍ଭେ ଗଲେ ବ୍ୟୂହଭେଦି ।
କୋପେ ନାରାଚ ବିନ୍ଧିଲେ ପୁଣି କଉଣପେ
ପଡ଼ନ୍ତେ ସେ ନ ଧୁଅନ୍ତି ସୁରାପାନ ଦର୍ପେ ।
ଏକରି ପଡ଼ିବା ଦେଖି ଆରେକ ଧାମନ୍ତି
ଅନେକ ଶସ୍ତ୍ର ଶ୍ରୀକୃଷ୍ଣ ଦେହେ ପ୍ରହାରନ୍ତି ।
ପର୍ବତେ ଯେସନେ ବୃଷ୍ଟି ହୁଅନ୍ତି ବଜ୍ରରେ
ଗଦା ବୃଷ୍ଟି ହୁଅନ୍ତି ନାରାୟଣଙ୍କ ଅଙ୍ଗରେ ।
ବହୁତ ସମୟ ତହିଁ ହେଲା ରଣରଙ୍ଗ
ରକତେ କର୍ଦ୍ଦମ ହେଲା ସ୍ୱାମୀଙ୍କ ଶ୍ରୀଅଙ୍ଗ ।
ଧାମଣା କାଠରି ଧନୁ ଫିରିକରି ଶର
ବିନ୍ଧନ୍ତି ସଂଗ୍ରାମେ କୋପେ ପ୍ରଭୁ ଯୋଗେଶ୍ୱର
ଯେସନେ ପଡ଼ନ୍ତି ମହାବାତେ ବୃନ୍ତଫଳ
ଲୋଟଇ ଶିରକମଳ ପଡ଼ନ୍ତି ଭୂତଳ ।
ସମର ମହିମା ମୁଖେ କହି ତ କେ ପାରି
କରେ ଗଦା ଧରି ଦେବ ଅସୁରଙ୍କୁ ମାରି ।
କୋପାନଳେ ଚାହିଁଲେ ସେ ହୁଅନ୍ତି ଦହ୍ୟ
ତେଜରେ ସେ ଭସ୍ମ ହେଲେ ଅନେକ ଦନୁଜ
କେତେ ବେଳ ସଂଗ୍ରାମତ ଯାଉଅଛି ବଢ଼ି
ଆକାଶକୁ ଉଚ୍ଛୁଳଇ ଦଇତ୍ୟଙ୍କ ରକ୍ତ ।
ପ୍ରଥମ ଦୁଆରେ ଭେଦି ଗଲେକ ଅଚ୍ୟୁତ
ଦ୍ୱିତୀୟ ଦ୍ୱାରେ ବିଜୟ ଯାଇ ଜଗଦ୍ଭୂତ ।

ଦାନବଙ୍କୁ ମାରି ହରି ଷଡ଼ଫଳ ଜଣି
ଅଖିଚକେ ସନ୍ନିଧିରେ ମିଳି ଚକ୍ରପାଣି ।
ଗହଳ ଗୋଳ ଧନ୍ଦୋଳ କଲେ ତ କେ ପାରି
ପ୍ରଳୟର କାଳେ ଯେହ୍ନେ ସମୁଦ୍ର ଉଚ୍ଛୁଳ ।
ଧନୁଶରକୁ ସମ୍ବରି ଦେବ ବନମାଳି
ଗଦା ଘେନିଣ ଦାନବମାନଙ୍କୁ ପ୍ରହାରି ।
ଏକ ପ୍ରହାରେକ ଦଶ ବିଂଶ ଯେ ପଚାଶ
ଛଳମନ୍ଦା ଜାଣି ଛଳେ ପଡ଼ିଲେ ରାକ୍ଷସ ।
ସଙ୍ଗି ପକାଇ କହିଲେ କୃତକେଶୀ ଆଗେ
ବହୁତ ସୈନ୍ୟ ପଡ଼ିଲେ ଘୋର ରଣରଙ୍ଗେ
ଜଣକ ମହିମା ଦେବ ନ ଯାଇ କଥନ
କବଚ ନୁହଇ ସେହୁ ଅଟେ ବଡ଼ଜଣ ।
ଯେତେକ ଶସ୍ତ୍ର ପ୍ରହାର କଲୁ ତାର କାୟେ
ଶସ୍ତ୍ର ନ ଭେଦଇ ରହିଅଛଇ ନିର୍ଭୟେ ।
ତୀକ୍ଷ୍ଣ ପରଶୁ ମୁଦ୍‌ଗର ଗଦାଆଦି କରି
ପଡ଼ି ଚୂର ହୋଇଲାଣି ଶରୀରେ ତାହାରି ।
ଅସ୍ତ୍ରକୁ ଦେବ ତାହାର ଭଲେ ନାହିଁ ଭୀତି
ବହୁତ ଦାନବବଳ ମାରଇ ବକୋଡି ।
ତୁମ୍ଭେ ପରମ ପଣ୍ଡିତ ବିଚାର ତ ଏହା
ସୁରେଶ୍ୱର ମହେଶ୍ୱର କବା ଚଢ଼ିବାହା ।
ସୁରଗଣଙ୍କ ମୁଖରୁ ଏସନକ ଶୁଣି
ହସେ କଲେ ସେ ଅସୁର ବୀର ଶିରୋମଣି ।
ସଉଦାସର ନନ୍ଦନ ଅଟେ କୃତକେଶୀ
ଅଭୟ ବର ପାଇଛି ନିରଞ୍ଜନ ତୋଷି ।
କୋଟିଏ ଶିର ତାହାର ସହସ୍ରେକ ଭୁଜ
ପଞ୍ଚାଶତ ଧନୁ ଧରି ବିନ୍ଧଇ ନାରାଚ ।
ନାରାଚ ଧରିଛି ପଞ୍ଚାଶତ ଭୁଜେ ଜୟ
ମହାପର୍ବତ ପରାୟେ ଦିଶୁଛି ତା କାୟ ।
ସ୍ଫଟିକ ପ୍ରାୟେ ଧବଳ ସୁସଞ୍ଚ ଶରୀର
କୋପେ ଅନଳ ପରାୟେ ନୟନ ତାହାର ।
ବଇଦୁର୍ଯ୍ୟ ପର୍ବତ କି ଆସୁଅଛି ଉଠି
ଭୁଲେ ତା ମୁକୁଟବନ୍ଧା ପାଞ୍ଚଶତ କୋଟି ।
ଗିରିମଣ୍ଡଳ ରଥରେ ବିଜେ କରେ ରାଜା
ଦେଖି ତାକୁ ପଳାଇଲେ ଦୁଷ୍ଟ ସେ ଦନୁଜା ।
ଅସୁର ରାଜାକୁ ଦେଖି ପ୍ରଭୁ ଜଗନ୍ନାଥ
ସୁମରିଲେ ସୁଦର୍ଶନ ଚକ୍ରକୁ ଅଚ୍ୟୁତ ।
ଚକ୍ର ପ୍ରବେଶ ହୁଅନ୍ତେ ନାରାୟଣ ଭୁଜେ
ଦେଖି ଭୟେ ପଳାଇଲେ ଦୁଷ୍ଟ ଯେ ଦନୁଜେ
ତ୍ରଇଲୋକ୍ୟ ପ୍ରକାଶିଲେ ପୁରୁଷ ଉତ୍ତମ
ଅସୁରଙ୍କ ସଙ୍ଗତରେ କଲେକ ସଂଗ୍ରାମ ।
ଫଣୀ ବଳ ଦେଖି ଯେହ୍ନେ ଧାଏଁ ଖଗରାୟ
ଅନେକ ସାନନ୍ଦେ ସ୍ୱାମୀ ଉଲ୍ଲସାଇ କାୟ ।
କ୍ଷୁଧାର୍ତ୍ତ ପ୍ରାଣୀ ଯେସନେ ଅନ୍ନ ଦେଖି ତୃପ୍ତ
ଅମୃତ ପାନେ ଶରୀର ହୁଏ ଯେହ୍ନେ ଶାନ୍ତ ।
ଅସୁରବଳଙ୍କୁ ଦେଖି ପ୍ରଭୁ ବାସୁଦେବ
ବିନ୍ଧନ୍ତି ନାରାଚ ଦରହସିତ ସ୍ୱଭାବ ।
ସିନ୍ଧୁ ମନ୍ଥନ ଯେସନ କଲାକ ମନ୍ଦର
ନିଷାଦବଳ ମନ୍ଥିଲେ ପ୍ରଭୁ ଚକ୍ରଧର ।
ବେଢ଼ିଲେ ଅସୁରେ ତାଙ୍କୁ ଲକ୍ଷେପୁର କରି
ବିନ୍ଧନ୍ତି ନାରାଚ ଧନୁ ଅନୁକ୍ଷଣେ ଧରି ।
କକଡ଼ା ମାସରେ ଯେହ୍ନେ ବରଷଇ ମେଘ
ନାରାଚେ ଶର ଛେଦନ୍ତି ଦଇତ୍ୟ ନିଦାଘ ।
ଝଲକନ୍ତି ନାରାଚରେ ବିଜୁଳିର ଜ୍ୟୋତି
ଆକାଶ ଅନ୍ଧକାରେ କି ଉଦେ ସୂର୍ଯ୍ୟଜ୍ୟୋତି
ପ୍ରକାଶି ଅଛନ୍ତି ସ୍ୱାମୀ ସଂଗ୍ରାମରେ ତେଜ
ସମସ୍ତ ଶସ୍ତ୍ର ସେ ତେଜେ ହେଉଛନ୍ତି ଦହ୍ୟ ।
ଲକ୍ଷେକ ନାରାଚ ବିନ୍ଧି ଦେବ ଚକ୍ରପାଣି
ଲକ୍ଷେ ଦଇତ୍ୟଙ୍କ ଶିର ପକାଇଲେ ହାଣି ।
ପୁଣି ହିଁ ବିନ୍ଧିଲେ ଦେବ କୋଟିଏକ ଶର
କୋଟିଏ ଯୋଦ୍ଧା ପଡ଼ିଲେ ସେ ଅସୁର ବୀର
ଅର୍ବୁଦ ନାରାଚ ପୁଣି ମାରି ଚକ୍ରପାଣି
ଅର୍ବୁଦ ଯୋଦ୍ଧାଙ୍କୁ ରଣେ ପକାଇଲେ ହାଣି
ପଡ଼ିଲେ ଅସୁରବଳ ଯୋଜନେକ ମାଡ଼ି
ଦନୁଜେ ଶକଟବ୍ୟୂହ ଗଲେ ଭୟେ ଛାଡ଼ି ।
ଯୋଜନେ ଯାଏ ରାକ୍ଷସବଳ ଗଲେ ଛେଦି
ଶକଟ ବ୍ୟୂହକୁ ଜାଣି ପଦ୍ମବ୍ୟୂହ ଭେଦି ।
ପଞ୍ଚାଶତ ଭୁଜେ ଧନୁ ଧରି କୃତକେଶୀ
ଜଗନ୍ନାଥଙ୍କ ଉପରେ ନାରାଚ ବରଷି ।
ରୋମକେ ନାରାଚ କରି ମାଇଲା ଦନୁଜ
ସମସ୍ତଙ୍କୁ ଦଗ୍ଧ କଲା ନାରାୟଣ ତେଜ ।
ପୁଣ ନାରାଚ ପେଷିଲା ରାଜା କୃତକେଶୀ
ଆଦ୍ୟଆଷାଢ଼େ ଯେସନେ ଜଳଧାରା ବର୍ଷି ।

ଭୁଲେ ଅଛନ୍ତି ତାହାର ପଞ୍ଚବିଂଶ ରଥୀ
ଅପର୍ଯ୍ୟାପ୍ତ ନାଗତ ଯେ ଧରଣ ଛନ୍ଦନ୍ତ ।
ରଣରେ ପଶି ଆସନ୍ତ ଯେବଣ ପୁରୁଷ
ରାକ୍ଷସବଳଙ୍କୁ ଦେଖି ଦ୍ୱିଗୁଣ ହରଷ ।
ମାରୁ ନ ସରଇ ସେହି ଦୁଷ୍ଟରାଜା ବଳ
ଘର ଉଶ୍ୱାସ ନିମନ୍ତେ ନାଶିଲେ ସକଳ ।
ଏସନ ଯୁଦ୍ଧ କରନ୍ତେ ସୂର୍ଯ୍ୟ ଅସ୍ତହେଲା
କୁହୁକ ନାଗତ କୃତକେଶୀ ଯେ ମାଇଲା ।
ନାଗତହିଁ ଅନ୍ଧାର ଯେ ରାବହିଁ ଅନ୍ଧାର
କହୁଁ କହୁଁ ଘୋଟିଗଲା ଅନ୍ଧାରେ ଅମ୍ବର ।
ଅନ୍ଧକାର ଦେଖିଣ ଯେ ଅସୁରେ ଘୋଟିଲେ
ସୁଦର୍ଶନ ଚକ୍ରକୁ ଯେ ଗୋବିନ୍ଦ ଧଇଲେ ।
ଯେସନେ ଉଦୟ ହେଲା ପରମଳ ଇନ୍ଦୁ
ରାକ୍ଷସବଳ ନାଶିଲେ ଯେସନେକ ସିନ୍ଧୁ ।
ବୁଲାଇଣ କୌମୋଦକୀ ଗଦା ବନମାଳୀ
କୃତକେଶୀର ଉପରେ ପ୍ରହାରିଲେ ତୋଳି ।
ବିଶାଶତେ ଯୋଜନ ଯେ ଆୟତନ ରଥ
ଗଦାର ଘାତେ ସେହି ହେଲା ଭସ୍ମୀଭୂତ ।
ଧାଇଁଲା ଯେ ପାଦଗତ ହୋଇ ଅତି କୋପେ
ଧନୁ ଛାଡ଼ି ବୁଲାଇଲା ଗଦା ପରତାପେ ।
ଗଦାବର ପଡ଼ଯାଇ କୃଷ୍ଣ ହୃଦୟରେ
ଶତଖର ଗଦା ଭାଙ୍ଗି ପଡ଼ିଲା ଭୂମିରେ ।
ଦେଖିଣ ଆଶ୍ଚର୍ଯ୍ୟ ହୋଇ ରାଜା କୃତକେଶୀ
କିଛି ନ ସ୍ଫୁରଇ ଚିତ୍ତେ ଭୟ ଗଲା ପଶି ।
କୋପେଣ ଗୋବିନ୍ଦ ଗଦା କୌମୋଦକୀ ପିଟି
ବଜ୍ରପାତ ଜାଣି ଭୂମି ଦଗ କମ୍ପି ଉଠି ।
ଘାଏ ଘୁମାଇଲା ସେହି ଦୈତ୍ୟ ମହାବଳୀ
ପୁଣି ଗଦା ପ୍ରହାରିଲେ ଦେବ ବନମାଳୀ ।
ଦ୍ୱିତୀୟ ପ୍ରହାରେ ଦୈତ୍ୟମୁଣ୍ଡ ଗଲା ଭାଜି
ପଡ଼ିଲା ଦାନବ ରଣଭୂମିରେ ଗରଜି ।
ତ୍ରୈଲୋକ୍ୟ କମ୍ପିଲା ସେହି ଦୈତ୍ୟ ଉଡ଼ଘାତେ
ଆପେ ତାକୁ ବଧକଲେ ଶ୍ରୀହରି ଶ୍ରୀହସ୍ତେ ।
କୃତକେଶୀ ପଡ଼ିବାର ଶବଦ ଶୁଭିଲା
ଶତଧନୁ ପଦ୍ମନାଳ ମଧ୍ୟୁ ବାହାରିଲା ।
ରଡ଼େ ପଳାଇଲା ତାକୁ ନ ଦେଖିଲେ କେହି
ଠାବକର ନ ପାରିଲେ ତାକୁ ରବଗାହି ।

ବ୍ୟୂହଭେଦ ଅସୁରଙ୍କୁ ମାଇଲେ ବିକୋଡ
ପଡ଼ିଲେ ଅସୁର ଯୋଦ୍ଧା ଅନେକ ପଦାତ ।
ଗୋଡ଼ାଇ ମାଇଲେ ପ୍ରଭୁ ଅସୁରଙ୍କୁ ଖେଦି
ପଳାନ୍ତି ଦୈତ୍ୟେ ମାରନ୍ତି ଜଗତ ଅନାଦି ।
କୃଷ୍ଣ ସମରେ ପଡ଼ିଲେ ଅନେକ ଦଇତ୍ୟେ
ଗୋଡ଼ାଇ ମାଇଲେ ଶତଯୋଜନ ପର୍ଯ୍ୟନ୍ତେ
ଏକ ଜଣକୁ ସେ ଦେବ ନ ଛାଡ଼ନ୍ତି ପୁଣି
ରୁଧିରେ କର୍ଦ୍ଦମ ହେଲେ ଦେବ ଚକ୍ରପାଣି ।
କେଶଦାସ ଅସମ୍ଭାଳ ଝାଳରେ ନିପଣ୍ଡ
ନିଜରୂପ ଛାଡ଼ି ଦେବ କରତ ପ୍ରଚଣ୍ଡ ।
ଅସୁରଙ୍କୁ ନାଶି ଦେବ ଦେବକୀର ସୁନୁ
ଯୋଗବଳେ ନାଶିଲେ ଯେ ଗଲା ଶତଧନୁ ।
ପଳାଉଛି ପବନହୁଁ ବେଗ ବେଗ ହୋଇ
ଦେଖିଲେ ଶତଯୋଜନେ ଜଗବନ୍ଧୁ ଥାଇ ।
ମଣିଭଦ୍ରା ବୋଲି ନଦୀ ଅଛଇ ଗୋଟିଏ
ବୀର ଧନଞ୍ଜୟ ସେହି ନଦୀକୂଳେ ଥାଏ ।
ମଣିଭଦ୍ରା ବୋଲି ତହିଁ ଏକଇ ପର୍ବତ
ସେ ଗିରି ଉପରେ ଅଛି ବୀରବର ପାର୍ଥ ।
ଅସମ୍ଭାଳ ହୋଇ ଧାଇଁ ଧାଇଁ ଶତଧନୁ
ଭେଟିଲା ଗିରି ଉପରେ ବାସବର ସୂନୁ ।
ବୋଇଲା ହେ କରତ ମୁଁ ତୋହର ଶରଣ
ଦଶନଖ ମୁଖେ ଭରି ଦନ୍ତରେ ତୃଣ ।
ଶରଣବତ୍ସଳ ସେହୁ କଥା ଜଗତ୍ରେଠି
ମାନଉଦ୍ଧାରଣ ପୁଣି ବୀରବର ଶ୍ରେଷ୍ଠି
ରହ ରହ ମହାତମା ନୁହ ତୁ ବିକଳ
ଶରଣରକ୍ଷଣ ମୁହିଁ କ୍ଷତ୍ରୀ ଅନର୍ଗଳ ।
ଦେଖି ଶତଧନୁ ମୁଖେ ଶରଣ ଫୁକାର
ରକ୍ଷାକର ରକ୍ଷାକର ବୀର ଧନୁର୍ଦ୍ଧାରୀ ।
ଆସ ଆସ ବୋଲି ପାର୍ଥ ଡାକିଲେ ତାହାକୁ
ରଖିଲଇଁ ତୋତେ ଭୟ କରୁ ତୁ କାହାକୁ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହେଲେ ଭୟନାହିଁ
ମୋହର ସନ୍ନିଧେ ଥାଅ ତୁ ନିଶ୍ଚିନ୍ତ ହୋଇ
ରହିଲା ଅର୍ଜ୍ଜୁନ ବାକ୍ୟେ ତହିଁ ଶତଧନୁ
ଭେଟିଲେ ତାହାକୁ ଦେବ ଦେବକୀର ସୁନୁ ।
ଅର୍ଜ୍ଜୁନ ଅଛି କରତ ରୂପକୁ ଯେ ଧରି
କୋହ୍ଲ ମହ୍ଲାର ଫିରସ୍ତ ଦିଶନ୍ତି ଶ୍ରୀହରି ।

ବିଶେଷେ ବନ ଗହନ ଘୋର ଅନ୍ଧକାର
ମହାଘୋର ନିଶାକାଳ ନ ଦିଶେ ଅମ୍ବର ।
ଆଦିତ୍ୟ ଦେବତା ମେରୁ ପଶ୍ଚିମରେ ଅସ୍ତ
ମଣିଭଦ୍ରା ବୋଲି ତହିଁ ଯେବଣ ପର୍ବତ ।
ସେହି ପର୍ବତ ଉପରେ ଅଛଇ ଫାଲ୍‌ଗୁନ
ଉଭା ହୋଇଛନ୍ତି ସେ ଯେ ଶରଧନୁ ଘେନ ।
ଏମନ୍ତ ସମୟେ ଦେବଦେବ ଜଗନ୍ନାଥ
ଦେଖିଲେ ଶରଧନୁକୁ ଅର୍ଜ୍ଜୁନର ସାଥ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ଶୁଣ ହେ କଵଚ
ସେହି ମୋହର ବଇରୀ ଅଟଇ ନିଚାନ୍ତ ।
ଯୁଗତେ ଅଟଇ ସେହି ମୋ ପିତୃ ବଇରୀ
ତୁ କଵଚ ମାନ ତାକୁ କେମନ୍ତେ ଆବୋରି
ମହାଶ୍ରମ ପାଇ ମୋର ବଢ଼ିଅଛୁ ଗଗ
ଜୀବନରେ କାର୍ଯ୍ୟଥିଲେ ଛାଡ଼ିବଇ ବେଗ ।
ଅର୍ଜ୍ଜୁନ ବୋଇଲେ ଦୁଷ୍ଟ ଅଜ୍ଞାନରେ ବାଇ
ଫେରି ଯା ତୁ ଅକାରଣେ ମରିବୁ କପାଇଁ ।
ଗଗ ସମ୍ବର ପ୍ରସର ଦେଉ ମହାନିଶା
ଏକପାଁ ତୋହର ଦୋଷୀ ଏଡ଼େତୋରଘୋଷା
ଏହା ନ ବିଚାରି କପାଁ କହୁଅଛ ବଡ଼ି
କି କାର୍ଯ୍ୟେ କମର୍ଥେ ମରୁ ଏହାକୁ ତୁ ଛେଡ଼ି
ଅନେକ ଧ୍ୱଂସ ଗଲେଣି ଏହାର ନିମନ୍ତେ
ଏହା କହି ଅର୍ଜ୍ଜୁନକୁ ମାଇଲେକ ଶସ୍ତ୍ରେ
ଅର୍ଜ୍ଜୁନ ନ ଜାଣେ ଶସ୍ତ୍ର ବିନ୍ଧିଲେକ ବୋଲି
ଧାଡିକାରେ ସେ ନାରାଚ ଆସୁଅଛି ପେଲି ।
କ୍ଷେପଇ ସେହି ନାରାଚ ଗୋଟି ଅତି ବେଗେ
ଭୁରିତେ ପଡ଼ିଲା ଯାଇ ଅର୍ଜ୍ଜୁନର ଅଙ୍ଗେ ।
ଗଗେ ସେ ଶର କେଶବ ବିନ୍ଧିଲେ ଯଦ୍ୟପି
ସେ ନାରାଚ ନ ଛାଡ଼ଇ ଧର୍ମକୁ ତଥାପି ।
ଅର୍ଜ୍ଜୁନ ଅଙ୍ଗରେ ପଡ଼ି ନୋହିଲା ନିପାତ
ବଜ୍ର ଜାଣି ପଡ଼ିଲା ସେ ଅର୍ଜ୍ଜୁନ ହୃଦ୍‌ଗତ ।
ଘାଏ କୁପିତ ହୋଇଣ ବୀର ସବ୍ୟସାଚୀ
ବୋଲେ ଆଜ ଯମ ହେଲା ତୋର ପାଞ୍ଜିପୋଛି
ପୁଣିହିଁ ନାରାଚ ଏକ ମାଇଲେ ଶ୍ରୀହରି
ମେଣ୍ଟି ତାହା ଫାଲଗୁନ ଗଲା ଅପସରି ।
ପୁଣିହିଁ ନାରାଚ ଏକ ମାଇଲେ ଅନନ୍ତ
ବଞ୍ଚାଇଲେ ଧନଞ୍ଜୟ ହେଲା ଭୂମିଗତ ।

ଦେଖିତ୍ତୁ ଦେଲ କୁପିତଯେହୋଇଲେ ଫାଲ୍‌ଗୁନ
ବିନ୍ଧିଲେ କୋପେ ସୁତୀକ୍ଷ୍ଣ ମୁନା ଶର ଘେନ
ଅର୍ଜ୍ଜୁନ ନାରାଚ ଗୋଟି ଗଲା ଧାଡିକାରେ
ଗର୍ଜି ପଡ଼ିଲା ଶ୍ରୀକୃଷ୍ଣ ଶ୍ରୀଅଙ୍ଗ ଉପରେ ।
ହୃଦରେ ନାରାଚ ଗଲା ଧାଡିକାରେ ଫୁଟି
ରୁଧିର ବହି ସର୍ବାଙ୍ଗଯାକ ହେଲା ବୃଷ୍ଟି ।
ଘାଏ ଘୁମାଇଲେ ଦେବଦେବ ଯେ ଅଚ୍ୟୁତ
ଦଇବର ବଳେ ପୁଣି ହୋଇଲେ ସଚେତ ।
ସାରଙ୍ଗ ଧନୁ ସୁମରୁ ଦେବଦେବ ହରି
କରେ ପ୍ରାପତ ହୁଅନ୍ତେ ବେଗେ ତାହା ଧରି
ଶ୍ରୀକରେ ନାରାଚ ଧରି ଦେବକୀ ତନୁଜ
ଅର୍ଜ୍ଜୁନ ଉପରେ ବିନ୍ଧିଲେକ ତେଜ ବ୍ୟାଜ ।
ବିକାଶେ ମହା ଅନନ୍ତ ତେଜ ବ୍ରହ୍ମଶର
ଦେଖନ୍ତେ ଆଲୁଅମୟ ହୋଇଲା ଅସୁର ।
ଯେସନେ ଅନଳ ଖସି ଆସଇ ଆକାଶୁଁ
ବନ ଗହନ କମ୍ପୁଛି ମହାଶର ଆସୁଁ ।
ଦେଖି ମନରେ ବିଚାରି ବୀର ଫାଲଗୁନ
ସୁରବୋଧନ ଶରକୁ ମାଇଲା ତା ଘେନ ।
କେଶବଙ୍କ ବ୍ରହ୍ମଶର ନାଶିଲା ପାଣ୍ଡବ
ପୁଣିହିଁ ନିର୍ଘାତ ବାଣ ମାଇଲେ ମାଧବ
ନାରାଚ ଆସନ୍ତେ ତାହା ଦେଖି ସବ୍ୟସାଚୀ
କୋପେ ବିନ୍ଧିଲା ନାରାଚନାମେ ବଜ୍ର ସୂଚୀ ।
ବାଣ ସନ୍ଧି ସମ୍ଭାଷଣ ହୁଅନ୍ତେ ସେ ବେନି
ମହାଘୋର ଅନ୍ଧାରେ କେ କାହାକୁ ନ ଚିହ୍ନି
ବେନି ନାରାଚ ହୁଅନ୍ତେ ତହିଁ ପରତାଳ
ରଜନୀ ଆଲୁଅମୟ ବନସ୍ତ ମଣ୍ଡଳ ।
ପ୍ରଳୟ ମେଘ ଜାଣିଣ ଶବଦ ଶୁଭଇ
ପତାଳ ସ୍ୱର୍ଗ କମ୍ପିଲା କୂର୍ମ ସହ ମହୀ ।
ଆକାଶ ପୁରେ କମ୍ପିଲେ ଥାଇ ବୃନ୍ଦାରକେ
ବେନିଶର ଆଘାତରେ କମ୍ପିଲେ ଭୁଲୋକେ
ବଢ଼ିଲା ସମର ତହିଁ ବେନି ବୀରଙ୍କର
କମ୍ପିଗଲା ସ୍ୱର୍ଗ ମର୍ତ୍ତ୍ୟ ପାତାଳ ନପୁର ।
ଶବଦେ ସାଗର ଜଳ ହେଲା କମ୍ପମାନ
ଶୂନ୍ୟ ପୁରୁଷମାନେ ଯେ ଛାଡ଼ିଲେ ଆସନ ।
ପର୍ବତାଶରକୁ କୃଷ୍ଣ ବିନ୍ଧିଲେ ସତ୍ତରେ
ଅର୍ଜ୍ଜୁନ ଭେଦିଲେ ତାହା ପେଷି ବଜ୍ରଶରେ ।

ଧନ୍ୟ ତୁ ପାର୍ଥିବ ବୋଲି ହୋଇଲେ ବିଦଶେ
କୃଷ୍ଣ ଅର୍ଜ୍ଜୁନ ସମର ଦେଖନ୍ତି ଆକାଶେ ।
ଗୋବନ୍ଦ ଛନ୍ଧଲେ ନାଗପୃଣ ଶର ଘେନ
କମ୍ପିଲା ସପ୍ତବ୍ରହ୍ମାଣ୍ଡ ଘେନ ପଦ୍ମଯୋନ ।
ଅର୍ଜ୍ଜୁନ ତା ସୁମରଲେ ଆଗ୍ନିଙ୍କର ମନ୍ତ୍ରେ
ସେ ଶର ଆସି ରହିଲା ଅର୍ଜ୍ଜୁନର ହସ୍ତେ ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଦେବ ନାଗପୃଣ
କୋପେ ସୁମରିଲେ ପୁଣି ପାଶୁପତ ବାଣ ।
ଗୁଣେ ବସାଇ ପେଷିଲେ ସେ ଦେବ ଅନନ୍ତ
ହାସିଲେ ସେ ଶରତେଜ ଦେଖି ତ୍ରିଜଗତ ।
ସୁମରିଲେ ବୈଶ୍ୱାନର ମନ୍ତ୍ରେ ବୀରପାର୍ଥ
ଅର୍ଜ୍ଜୁନଙ୍କୁ ପ୍ରାପ୍ତିହେଲା ସେହି ରୁଦ୍ର ଅସ୍ତ୍ର ।
କୋପେ ପ୍ରଜ୍ୱଳିତ ହେଲେ ଦେବ ଯେ ଅନାଦି
ଶ୍ରୀହସ୍ତେ ଘେନଲେ ମହାଶର ମନଭେଦୀ ।
ଗୋବନ୍ଦ ଯେ ଡାକଦେଲେ ପର୍ବତରେ ଥାଇ
ଆରେ ଶବର ଏ ଶର ପାଇଲୁ ତୁ କାହିଁ ।
ସାଧ୍ୱୀ ପୁଣ୍ୟବନ୍ତୀ ତୋତେ କଲା ଯେ ପ୍ରସବ
ଏ ଦେବଶରକୁ ମୋର ଦେଲୁ ପରାଭବ ।
ଆନ ଶରମାନ ମୋର ସମ୍ଭାଳିଲୁ ସିନା
ଏ ଶରଗୋଟି ସମ୍ଭାଳେ ଆହେ ମହାତମା ।
ଆଜ୍ଞାଦେଲେ ଦେବ ମନଭେଦ ନାରଚକୁ
ତୁ ଯାଇ ଛେଦନ କର କବଚ ଶରକୁ ।
ଜଗନ୍ନାଥ ଆଜ୍ଞାରେ ସେ ମନଭେଦୀ ଶର
ତକ୍ଷଣେ ତେଜେ ଘୋଟିଲା ପାଇ ତନପୁର
ସୁମରଇ ଫାଲଗୁନ ଅଗ୍ନି ଦଇବତ
ସେ ଶର ପ୍ରାପତ ହେଲା ଯାଇ ପାର୍ଥ ହସ୍ତ ।
ଦେଖିଣ ବିରସ କଲେ ନାଗପୃଣ ମନ
କୋପେଣ ମାଇଲେ ଦେବ ଆମୋଘ ଶକତ
ମାଇଲେ ବଜ୍ରଶକତ ଘେନ ଫାଲଗୁନ
ସେ ଅମୋଘ ଶକତିର ହେଲା ତେଜହାନ
ପେଷନ୍ତି ଯେବଣ ଶସ୍ତ୍ରମାନ ଯେ ଅନନ୍ତ
ସୁମରନ୍ତେ ଅର୍ଜ୍ଜୁନର ହୁଏ କରଗତ
ତହୁଁ ଗୋବନ୍ଦ ପେଷିଲେ ତ୍ରିଶୂଳ ଶକତ
ସୁମରନ୍ତେ ଅର୍ଜ୍ଜୁନଙ୍କୁ ହୋଇଲା ପ୍ରାପତ ।
ଅରଜୁନ ଡାକଦେଲେ ପର୍ବତରେ ଥାଇ
କବଚ ହୋଇ ଏ ଶସ୍ତ୍ର ପାଇଲୁ ତୁ କାହିଁ ।
ରାଗେଣ ବଦନ୍ତି ତାକୁ ଦେବ ଚକ୍ରଧାରୀ
ରେ ବନଚର ଜୀବନ ସାର୍ଥକ ତୋହର ।
ଅର୍ଜ୍ଜୁନ ବୋଲେ ମାଇଲୁ ଯେତେ ଶସ୍ତ୍ରଘେନ
ସାଧୁ ଶବର ତୋହର ପିଅର ଜନମ ।
ମହିଁ କ୍ଷତ୍ରୀ ବୋଲି ତୋର ଶସ୍ତ୍ର ଦେଲି ମେଣ୍ଟି
ଚିହ୍ନି ନପାରେ ନ ଜାଣେ ତୋର ନାମଗୋଟି
ଅନେକ ଶର ମୋତେ ତୁ ମାଇଲୁଣି ସିନା
ମୋହର ନାରଚ ଦେଲେ ସମ୍ଭାଳ ତୁ କନା
ମୋହନା ଶରକୁ ପାର୍ଥ କଲା ସୁମରଣ
ବୈଶ୍ୱାନର ପରସନ୍ନେ ପ୍ରାପତ ତକ୍ଷଣ ।
ଛଆରଇ ମନଭେଦୀ ଶର ସର୍ବସାତ
ମୃତକେ ଅନଳ ମୋତେ ଯେବେ ଦେଇଅଛୁ
ବହୁତ ଜଞ୍ଜାଳ ମୋତେ କଲୁଣି କବଚ
ତାହାକୁ ସଂଗ୍ରାମେ ଯାଇ କରତୁ ନବର୍ତ୍ତି
ସେମେକ ଭେଦିବୁ ଶତନାରଚ ତୁ ହୋଇ
ପ୍ରାଣେ ନ ମାରିବୁ ପଡ଼ିଥିବ ମୋହଯାଇ ।
ସାମାନ୍ୟ ଜନ ନୁହଇ ଏହି ଯେ କବଚ
ରାନ ପାଇଲେ ଚାହିଁବା କେଉଁ କୁଳେ ଜାତ
ବହୁର କର ଛେଦିବା ସିନା ତାର ଶିର
ମୋହେ ପଡ଼ିଥିବ ତାକୁ ପ୍ରାଣରେ ନ ମାର
ଏସନକ ଆଜ୍ଞା ଯହୁଁ ଦେଲେ ଧନଞ୍ଜୟ
ଚଳିଲା ନାରଚ କୋଟି ବଜ୍ରାନଳର ପ୍ରାୟ ।
ତୃପ୍ତ ମନରେ ତାହାକୁ ଦେଇଛନ୍ତି ବହ୍ନି
ଆଜ୍ଞା ନ ମେଣ୍ଟିଲା ଯାହା ବୋଇଲା ଫାଲ୍‌ଗୁନ
ସଂଗ୍ରାମେ ଯେବେ ଥିବେଟି ହରିହର ବ୍ରହ୍ମା
ପରାଣ ହରି ରଖିବେ ଅର୍ଜ୍ଜୁନ ମହିମା ।
ଚଳଇ ନାରାଚ ବନ ଗହନକୁ ଛେଦି
ନାଗପୃଣ ଅଙ୍ଗେ ଯାଇ ବସିଲାକ ଭେଦି ।
ଗୋବନ୍ଦଙ୍କ ହସ୍ତରେ ସେ ନାହିଁ ଦେବଶର
ଦେଖିସ୍ତମ୍ଭୀଭୂତ ହେଲେ ଦେବ ଦାମୋଦର
ନାରଚେ ଯନ୍ତ୍ରିତ ହେଲା ଦେବଙ୍କର କାୟ
ତାଙ୍କ ଶରୀର ଦିଶଇ କିଙ୍କପକ୍ଷୀ ପ୍ରାୟ ।
ଯେସନେକ ସର୍ପେ ଉପ୍ତେ ପଶନ୍ତି ବିବରେ
ଶୋଣିତ ବୃଷ୍ଟି ହୋଇଲା ଗୋବନ୍ଦ ଶରୀରେ
ଯେହୁଁ ପ୍ରଭୁ ଜଗନ୍ନାଥ ପୁରୁଷ ଉତ୍ତମ
ମୋହନା ଶର ଆଘାତେ ହେଲେ ଅସାସ୍ତମ ।

ଭୂମିରେ ଲୋଟିଲେ ଦେବ ଜାଣି ଶରଶଯ୍ୟା
ନଷ୍ଟଭ୍ରଷ୍ଟ ହୋଇ ପଡ଼ିଲେ ତଳେ ଦେବରାଜା ।
ପଟଭୁଁ ଓହ୍ଲାଇ ଧାଇଁଗଲା ଧନଞ୍ଜୟ
ଶ୍ରୀକୃଷ୍ଣଙ୍କୁ ଆକର୍ଷଇ ବହ୍ନ ତେଜ ପ୍ରାୟ ।
ଭୂମିରେ ଲୋଟି ଅଛନ୍ତ ପ୍ରଭୁ ଦେବରାଜ
ତଥାପି ସେ ବିକଶନ୍ତ ଦିନକର ତେଜ ।
ସୁଲକ୍ଷଣ ମୁଖୀଁ ତାଙ୍କ ନିରେଖେ ଅର୍ଜୁନ
ନିଷ୍କଳଙ୍କ ଚନ୍ଦ୍ରପ୍ରାୟ ଦିଶଇ ବଦନ ।
ଦେଖିଣ ମନେ ବିସ୍ମର କରଇ ବାସବ
କେବଣ ମହାତମା ତୁ ହେଲୁ ପରାଭବୀ ।
କୋପେ ଉଞ୍ଚାଇଛୁ ବିଜ କର୍ଣ୍ଣେ ଯେ କଠାର
ଶ୍ରୀମୁଖେ ସ୍ମରିଣ ଶାର କଳ୍କ ବର୍ତ୍ତର ।
କେଉଁ ପୁଣ୍ୟବନ୍ତ ତୋତେ ଗର୍ଭେ କଲା ଜାତ
ତୋତେ ମାରିବାକୁ କାର ନ ଚଳଇ ଚିତ୍ତ
କେମନ୍ତେ ତୋତେ ମାରିବି ବିନା ଅପରାଧେ
ନୋହୁ ତୁ ବଇରି ମଲୁ ଅକାରଣ ଯୁଦ୍ଧେ ।
ଶତଧନୁକୁ ପଗୃରେ କାହାକୁ ତୋ ଖ୍ୟାତି
ଏହାର ତୋହର କିମ୍ପା ଏତେକ ଅପ୍ରୀତି ।
ଶତଧନୁ ବୋଲେ ଶୁଣ ହେ କିରୀଟ ରାୟେ
ହୁଅ ସାବଧାନ ମୁହିଁ କହୁଛି କଥାଏ ।
ଦ୍ୱାରକା ଭୁବନେ ଆମ୍ଭେ କଲୁ ରହସ୍ୟରେ
ସ୍ୟମନ୍ତକ ମଣି ନେଲୁ ଶତ୍ରାଜିତ ମାରି ।
କୃତବର୍ମା ଅନାଧୃଷ୍ଟ ମୁହିଁ ଶତଧନୁ
ଶତ୍ରାଜିତ ନାଶଗଲା ତିନଙ୍କର ଜାନୁ ।
ଅନାଧୃଷ୍ଟକୁ ଗୋବିନ୍ଦ ବଳେ ନାଶ କଲେ
ତହୁଁ ମୁହିଁ ପଳାଇଲି ଜୀବନ ବିକଳେ ।
ଦେବମନ୍ତ୍ରୀ ଅକ୍ରୂର ଯେ ସମ୍ଭାଳିଲା ମୋତେ
ତାହାର ଆଶ୍ରେ ରହିଲି ବିନାକେତେ ଗୁପ୍ତେ
ସମୟେ ପୁଣି ଉଦିତ ହେଲି ମୁହିଁ ଯହୁଁ
ଉଗରେ ଗୁପତେ ଦେବ କହିଲେକ ତହୁଁ
କେହି ରକ୍ଷାକରି ଦେବ ନ ପାରିଲେ ମୋତେ
ଜୀବନ ସଫଳ ହେଲା ଭେଟିଲି ମୁଁ ତୋତେ
ଏହି ପୁରୁଷ ପ୍ରତ୍ୟକ୍ଷେ ଅଛେ ଜଗନ୍ନାଥ
ସାଧୁମହାତମା ତୋର ଜନ୍ମହିଁ କିରୀଟ ।
ମୁହିଁ କିସ କରିବଇଁ ତୋହର ମହିମା
ଶରଣରକ୍ଷକ ତୁହି ଅଟୁ ମହାତମା ।

ଶତଧନୁର ବଚନ ଶୁଣି ଫାଲଗୁନ
ଧନୁ ଶରକୁ ପକାଇ କୃଷ୍ଣ କୋଳେ ଘେନ
ମନଭେଦୀ ନାରାଚକୁ କାଢ଼ି ନିଜ ମନ୍ତ୍ରେ
ଚେତା କରାଇଲେ ଦେବ ଦେବ ଜଗନ୍ନାଥେ
ଜୀବନ୍ୟାସ ପବନକୁ ପାଇ ଯୋଗେଶ୍ୱର
ସାଷ୍ଟାମ ହୋଇ ବସିଲେ ପ୍ରଭୁ ଦାମୋଦର ।
ବେନି ଭୁଜେ ଗୋବିନ୍ଦଙ୍କୁ କୋଳେ ଧଇଅଛି
ଅନେକ ବିନୟୀ ହୋଇ କହେ ସବ୍ୟସାଚୀ ।
ସାଷ୍ଟାମ ହୋଇ ବସିଲେ ଯହୁଁ ଦେବରାୟ
ଶତସହସ୍ର ପ୍ରମାଣ କରେ ଧନଞ୍ଜୟ ।
ପରମାନନ୍ଦ ପୁରୁଷ ମହାଯୋଗେଶ୍ୱର
ମୁହିଁ ତୋର ଦ୍ରୋହ ବାରେ ମୋତେ ରକ୍ଷା କ
ମୁହିଁ ତ ଅଜ୍ଞାନ ଦେବ ଜ୍ଞାନ ମୋର ନାହିଁ
ମହାନିଶାରେ ତ ଚିହ୍ନି ନ ପାରିଲି ମୁହିଁ
ତୁ ଦେବ ଦେବ ସଂସାର ଜନ ହିତକାରୀ
ମୋର ଅପରାଧ ବାରେ ରକ୍ଷା କର ହରି ।
ବିଶେଷେ ପାମର ମୁହିଁ କିସ ମୋର ବୁଦ୍ଧି
ଭକତ ଜନବତ୍ସଳ କରୁଣା ବାରିଧି ।
ଧୂଳି ପକାଇଲେ ସିନ୍ଧୁ ହୁଅଇ କି ପୋତ
ଚେକା ମାଇଲେ କି ଗିରି ଭାଙ୍ଗି ପଡ଼େ କ୍ଷିତି
ତୁ ଜଗତଭୂତ ପ୍ରଭୁ ଅଟୁ ବରଦାମୀ ।
ସୁପ୍ରସନ୍ନ ସଦାନନ୍ଦ ଅଭୟ ସ୍ୱାମୀ ।
ନରକୁଳ ନାଥ ତୁହି ଗତି ମୁକ୍ତିଦାତା
ସଂସାର ଧାରଣ ତୁହି ଅଟୁ ପିତାମାତା ।
ମାତାର କୁକ୍ଷିରେ ତୁହି ପଶି କୁତୂହଳେ
ଶରୀରର ସଂହାରଣ କରୁ ସର୍ବକାଳେ ।
ଅପ୍ରସନ୍ନର ପ୍ରସନ୍ନ ନାଥ ଶୁଦ୍ଧଚେତା
ଅଗତିର ଗତି ନାଥ ତୁହି ସର୍ବଦାତା ।
ବୁଡ଼ନ୍ତେ ସଚରାଚର ତୁହି ଯେ ଉଦ୍ଧରୁ
ମୁକତିର ତତ୍ତ୍ୱ ନାଥ ତୁହି କଳ୍ପତରୁ ।
ମୁହିଁ ତୋ ଦାସର ଦାସ ଅଟେ ଜନ୍ମ ଜନ୍ମ
ଶୂଦ୍ରମୁନି ଶାରଳା ଦାସ ଭକ୍ତି ଘେନ ।
ଅନେକ ବିନୟୀ ହେଲେ ଏମନ୍ତେ କରି
ଜଗନ୍ନାଥଙ୍କ ଚରଣ ତଳେ ଯାଇ ଲୋଟି ।
ଶୁଣି ପାର୍ଥଙ୍କ ଅନେକ ବିନୟ ବଚନ
ଚେତନା ପାଇ ବସିଲେ ଦେବ ଜନାର୍ଦ୍ଦନ ।

କେବଣ ମହାତ୍ମା କପଟରେ ରୂପ ଧରି
ଜଗଦ୍ ବନ୍ଦନ ପୁରୁଷ ନୋହିଲି ମୁଁ ସରି ।
ଏ ମର୍ତ୍ତ୍ୟମଣ୍ଡଳେ ତୋର ଅସଂଖ୍ୟ ମହିମା
ମୋତେ ଜଣି ରୁହାଇଲୁ ଜଗତର ସୀମା ।
ଅର୍ଜ୍ଜୁନ ପ୍ରଣମି ଦରହସିତ ବଦନେ
ଚହ୍ନି ନ ପାରିଲି ଦେବ ମୁଁ ତୋର ଚରଣେ
ଦାସ ଜନ ଦାସ ଭୃତ୍ୟ ଜନର ମୁଁ ଭୃତ୍ୟ
ପାଣ୍ଡବ କଶଟି ମୁହିଁ ଅଟେ ଜଗନ୍ନାଥ ।
ବଦୟନ୍ତ ଶ୍ରୀଗେ ବନ୍ଦ ତୁ ସେ ଫାଲଗୁନ
ସଂଗ୍ରାମର ବେଳେ ମୁଁ ଯେ ନ ପାରିଲି ଚହ୍ନି
ଧନୁ ଶରକୁ ପକାଇ ଉଠିଲେ ଶ୍ରୀହରି
ଶ୍ରୀଭୁଜରେ ଅର୍ଜ୍ଜୁନକୁ କୋଳକରି ଧରି ।
ସାଧୁରେ ତୁ ଫାଲଗୁନ ସାଧୁ ତୋ ଜୀବନ
ତୋର ସମା ପରାଭବ ସଅନ୍ତା କି ଆନ ।
ତୁହି ମୋର ପ୍ରାଣସଖା ଭିନ୍ନ ଭିନ୍ନ ନାହିଁ
ଏବେ ତୋତେ ସଂଗ୍ରାମରେ ହାରିଲଇଁ ମୁହିଁ ।
ଈଶ୍ୱର ଦେବଙ୍କୁ ତୁହି ଜିଣିଲୁ କରୂପେ
ଅମରନାଥ ଜିଣିଲୁ ଅଗ୍ନିର ପ୍ରତାପେ ।
ମୁହିଁ ଏକା ତୋହଠାରୁ ଥିଲଇଁ ଉବୁରି
ଜିଣିଲୁ କପଟ ରୂପେ ଗଲି ମୁହିଁ ହାରି ।
ଏବେ ସେ ଜାଣିଲି ବାବୁ ତୋର କ୍ଷତ୍ରିବୃତ୍ତ
ତ୍ରୈଲୋକ୍ୟ ଜିଣିବାକୁ ତୁହି ସାମରଥ ।
ତୋହର ତୁଲେ ଥିଲେ ମୁଁ ଅରଜିବ ଯଶ
ତୁ ସେ ପୃଥ୍ୱୀ ଭାରତର କରିବୁ ଉଚ୍ଛ୍ୱାସ
ଆନର ଶକ୍ତିକୁ ବାବୁ ମୋର ଦର୍ପ ଧ୍ୱଂସେ ।
ଏ ମୋର ଅନେକ ପୁଣ୍ୟ ଦେଖିଲି ମୁଁ ବେଶେ
ଆନର ହାତେ ମୁଁ ଯେବେ ଝିଙ୍ଗାସ ହୁଅନ୍ତି
ତେବେ ରେ ବାବୁ ଜୀବନ କ୍ଷଣେ ନ ରଖନ୍ତି
ନାରାୟଣ ବୋଇଲେ ତୁ ଶୁଣ ଧନଞ୍ଜୟ
ମାଗ ମାଗ ବର ମୋତେ ବାସବ ତନୟ ।
କରପଦ ଯୋଡ଼ି ବୋଲେ ବାସବର ସୂନୁ
ଦେବଦେବ ଦୋଷ ଉପେକ୍ଷେ ରଖ ଶତଧନୁ ।
ଶରଣ ପଶିଲା ଆସି ଜୀବନ ନିମନ୍ତେ
ଏହାର ଜୀବନ ରକ୍ଷା କର ଜଗନ୍ନାଥେ ।
ଛାଡ଼ିଲେକ କୋପ ଦେବ ଅର୍ଜ୍ଜୁନ ବଚନେ
ଅର୍ଜ୍ଜୁନକୁ କୋଳକରି ଧରି ଜନାର୍ଦ୍ଦନେ ।

ବାବୁ ତୁ ଏ ଘୋରବନେ ନ ଯାଅ ତୁ ଏକା
ଆସ ମୋର ପ୍ରାଣଧନ ଭୁବନ ଦ୍ୱାରକା ।
ଅର୍ଜ୍ଜୁନ ବୋଇଲେ ସ୍ୱାମି ଶୁଣିମା ଶ୍ରୀହରି
ବନବାସ ଆଉ ମୋର ସାତମାସ ଅଛି ।
ନିୟମ ଲଙ୍ଘି କି ଯିବା ତୁମ୍ଭର ସଙ୍ଗତେ
ତୁମ୍ଭ ପ୍ରସାଦେ ବିପଦ ନାହିଁ କିଛି ମୋତେ ।
ଏବେ ସ୍ୱାମି ସୁଚିତ୍ତେ ମୋତେ ଦୟା କରିଥିବା
ତୁମ୍ଭ ପଦ୍ମପାଦେ ମୁହିଁ କରିଥିବି ସେବା ।
ଗୋବିନ୍ଦ ବୋଇଲେ ତୋତେ ମୋହର ଶପଥ
ବନବାସ ସାରି ଯିବୁ ଦ୍ୱାରକା ସଙ୍ଗାତ ।
ଅବଶ୍ୟ ମୁଁ ଦ୍ୱାରକାକୁ ଯିବଇଁ ପଶ୍ଚାତେ
ଶତଧନୁ ଥାଉ ଦେବ ମୋହର ସଙ୍ଗତେ ।
ହେଉ ବୋଲି ଆଜ୍ଞା ଦେଲେ ସେ ଜଗତଭୂତ
ଧ୍ୟାନେ ସୁମରଣା କଲେ ବିନତାର ସୁତ ।
ରମ୍ୟକ ଦ୍ୱୀପୁଁ ମିଳିଲା ଆସି ଖଗେଶ୍ୱର
ବିଜୟ ଶ୍ରୀ ଜଗନ୍ନାଥ ଗରୁଡ଼ ପିଠିର ।
ଶ୍ରୀଧର ବୋଇଦେ ତୋର ପୁରୁ ମନୋ ବାଞ୍ଛା
ଆରୋଗ୍ୟ ଶରୀରେ କର ବନକୁ ଉପେକ୍ଷା ।
ଏତେକ ବଗୁରି ସେ ଯେ ଦୀନଜନ ବନ୍ଧୁ
ଦ୍ୱାରକାରେ ବିଜେ ପ୍ରଭୁ ପରମ ଆନନ୍ଦୁ ।
ବଳରାମ ବିଜେ କରିଅଛନ୍ତି ରୈବତେ
ବସୁଦେବ ନନ୍ଦ ଉଗ୍ରସେନର ସଙ୍ଗତେ ।
ଗୋବିନ୍ଦ ମିଳିଲେ ବଳରାମଙ୍କ ସନ୍ନିଧେ
ପ୍ରଣିପାତ କରି ଦେବ ଶୋଇଲେ ଶ୍ରୀପଦେ ।
ବଳରାମ ବୋଇଲେ ତୁ ଅଜ୍ଞାନ ଶ୍ରୀହରି
ପଳାଇଲା ପ୍ରାଣୀକୁ ଯେ କଷ୍ଟାଳ ନ କରି ।
ପ୍ରମାଦ ଯେବେ ଚିନ୍ତିଲା ସେ ଶତ୍ରୁ ଜତକୁ
କେତେ ଅବା ଧର୍ମଦେବ ସହିବ ତାହାକୁ ।
ଆମ୍ଭର ଶତ୍ରୁକୁ କେହି କରିପାରେ ରକ୍ଷା
କାହାର ପ୍ରତିଜ୍ଞା ହେବ କେ କରିବ କକ୍ଷା ।
ଗୋବିନ୍ଦ ବୋଇଲେ ସ୍ୱାମି ଦୂରେ ପଳାଇଲା
ତାହାର ନିମନ୍ତେ ବାଟେ ଶବରେକ ମଲା ।
ତ୍ରେତାଯୁଗ ରଜା କୁତକେଶୀ ନାମେ ଦୈତ୍ୟ
ସତ୍ୟବାସ ନୃପତିର ଅଟଇ ସେ ସୁତ ।
ତା ପାଦେ ସେ ଶତଧନୁ ଶରଣ ପଶିଲା
ସତ ଅକ୍ଷୌହିଣୀ ବଳ ଘେନି ସେହ୍ନ ମଲା ।

ଣି ସେ ଅନେକ ଦୂର ଗଲା ଶତଧନୁ
ଶରଣ ରଟିଲା ତାଙ୍କୁ ବାସବର ସୂନୁ ।
ଅର୍ଜୁନ ସଙ୍ଗେ ଆମ୍ଭର ହୋଇଲା ସମର
ସଂଗ୍ରାମେ ଜିଣିଲା ମୋତେ ପାର୍ଥ ଧନୁର୍ଦ୍ଧର ।
ଅନେକ ପ୍ରାଭବ ମୋତେ ଦେଲା ଧନଞ୍ଜୟ
ଶୁଣିଣ ହରଷ ହେଲେ ରୋହିଣୀ ତନୟ ।
ତୋତେ ଜିଣିବାକୁ ହେଲା ସମର୍ଥ ଫାଲ୍‌ଗୁନ
ପରମ ସାନନ୍ଦ ହେଲୁ ଆମ୍ଭେ ଏହା ଶୁଣି ।
ଗୋବିନ୍ଦ ବୋଇଲେ ସ୍ୱାମୀ ସେ କିରାତ ବେଶେ
ବନେ ଜିଣିଲା ହରଙ୍କୁ ରହି ବନବାସେ ।
ଅକ୍ଷୟ ତୂଣୀର ଦେଲା ପାଶୁପତ ଶର
ପିନାକ ସାରଙ୍ଗ ଧନୁ ଦେଲେ ଦେବ ହର ।
ଅମର ପୁରେ ଜିଣିଲା ଦେବ ଆଖଣ୍ଡଳ
ଅଗ୍ନିଙ୍କୁ ଖାଣ୍ଡବବନ ଦେଲା କୁନ୍ତୀବାଳ ।
ତୃପତ ହୋଇଲେ ବନ ଖାଇ ବୈଶ୍ୱାନର
ଦେଲେ ସେ ଆଣି ଅନେକ ଦେବତାଙ୍କ ଶର
ବଳରାମ ହର୍ଷ ଜଗନ୍ନାଥଙ୍କ ବଚନେ
ଅର୍ଜୁନଙ୍କୁ ପ୍ରଶଂସନ୍ତି ଅତି ତୋଷମନେ ।
ପର୍ବତ ଉପରେ ରାମ କୃଷ୍ଣ ଛନ୍ତି ବସି
ନାନା କଉତୁକେ ହେଉଛନ୍ତି ହସାହସି ।
ଷଷ୍ଠ ଯୋଜନ ବିସ୍ତାର ପର୍ବତର ସ୍ଥଳୀ
ଦ୍ୱାଦଶ ଯୋଜନ ପୋତା ଉଚ ଯୁଣ ଗୁର ।
ବାସୁଦେବ ବୋଇଲେ ହେ ଶୁଣ ହଳହସ୍ତ
ଆମ୍ଭର ଏବେ ସକଳ କାର୍ଯ୍ୟ ହେଲା ସାର୍ଥ ।
କୃପାଜଳ ଋଷିଙ୍କର କୋଳେ ଉତପନ୍ନ
ସତ୍ୟଯୁଗରେ ନର୍ମଦା ସରସ୍ୱତୀ ନାମ ।
କଳିକାଳ ଧ୍ୱଂସିନୀ ଗୋ ଝଙ୍କଡ଼ବାସିନୀ
ମୁହିଁ ତୋହର ଚରଣେ କରଇ ଦଇନୀ ।
ଜାମଦଗ୍ନ୍ୟ ପଶୁରାମ କର ଯାର ପୂଜା
ପୃଥ୍ୱୀ ନିକ୍ଷତ୍ରି କଲେ ହୋଇ ମହାତେଜା ।
ପରଦୁଃଖେ କାତର ତୁ ଅବିରତେ ଭେଳା
ସଂସାରେ ବାଳୁତରୂପେ କରୁ ମାଗୋ ଖେଳା
ଆଦି ମଧ୍ୟ ଅବଶେଷ ମାଗୋ ଯାର ନାହିଁ
ମୁହିଁ ତାହାକୁ ପାଳିଲି ଜନ୍ମେ ଜନ୍ମେ ଧ୍ୟାୟି ।
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ପ୍ରସନ୍ନେ ମୁଁ ଲେଖିଲଇଁ ଅଭୟା କାମାକ୍ଷୀ ।

ନାହିଁ ଉପମା ଯାହାକୁ ତିନିପୁର ମଧ୍ୟେ
ସେ ଦେବୀଙ୍କି ବନ୍ଦଇ ମୁଁ ଗଦଗଦ ହୃଦେ ।
ସେବିବାକୁ ଚିତ୍ତ ମୋର ନ ବଳଇ ଆନେ
ଝଣ୍ଡୁଲ ମୁହିଁ ଦସ୍ୟୁ ତ ଶାରଳା ପ୍ରସନ୍ନେ ।
ପ୍ରଥମେ ବନ୍ଦଇ ମାଗୋ କୋଣାରକ ଚଣ୍ଡୀ
ମୁଖେ ଗୋଟି ଶୋଭା ତୋର ସିନ୍ଦୂରରେ ମଣ୍ଡି ।
ମାଡ଼ି ବସିଲୁ ଦକ୍ଷିଣ ସମୁଦ୍ରର ତୀର
ଉତ୍ତରକୁ ଦ୍ୱାର ମାଗୋ ଅତ୍ୟନ୍ତ ବିସ୍ତାର ।
ଶ୍ରୀରାମ ଭୁଜନେ ରାମଚଣ୍ଡୀ ନାମ ହେଲା
ଟଳ ନଯୋଗହିଁ ମାଗେ କିଛୁ ଉ ସ୍ତୁରିଲା ।
ପଞ୍ଚବଦନ କାହିଁ ଆଣି ଖାଉ ମହାମାଛ
ତିନିଶ ଷାଠିଏ ଦିନ ଘଡ଼ିଆ ନୁହଇ ।
ଦିଲ୍ଲୀ ଯେ ଡଙ୍ଗର ମାଗୋ ମଳବ କୁଞ୍ଜର
ଏତେ ଦୂରୁ ଆଣି ମାଗୋ ପେଷୁ ତୁ ଉଦର ।
ମୃଦସୁଲି ରୂପେ ମାଗୋ ମାଠିଆ କାଖର
ମାଜଣା ନିମନ୍ତେ ମାଗୋ ହୋଇଲୁ ବାହାର
ବନ୍ଧ ଚୁଡ଼ଙ୍ଗଙ୍କୁ ମାଗୋ ଭଣ୍ଡି ତୁ ଆଇଲୁ
ହାତେ ହାତେ ବଢ଼ି ମାଗୋ ସମୁଦ୍ରେ ପଶିଲୁ
ଅନାଦି ଅପର୍ଣ୍ଣା ମାଗୋ ଜଗଜ୍ଜନ ମାଏ
ଜନ୍ମେ ଜନ୍ମେ ସେବା ମାଗୋ ରାମଚଣ୍ଡୀପାଏ
ଶ୍ରୀଶାରଳା ଶ୍ରୀଚରଣେ ଶରଣ ମୁଁ ନିତ୍ୟ
ମୁଁ ଶାରଳା ଦାସ ମୁକ୍ତି ଇଚ୍ଛେ ଶୁଭଚିତ୍ତେ ।
ଜୟ ଜୟ ତୁହି ଦେବ ଶଙ୍ଖଚକ୍ରଧାରୀ
ଦଇତ୍ୟ ଦଳନ ହେତୁ ନାମ ଦଇତ୍ୟାରି ।
ପତିତଜନଙ୍କୁ ଦେବ ତରିବାର ଅର୍ଥେ
ନୀଳଗିରିରେ ବିଜୟ ନାଥ ଜନ ହିତେ ।
ତୁମ୍ଭେ ଯେ କରତା ଦେବ ଚତୁର୍ଦ୍ଦଶପୁରୀ
ଅବିନାଶୀ ପୁରୁଷ ତୁ ଦେବ ଦଇତ୍ୟାରି ।
ବ୍ରହ୍ମାଣ୍ଡ ଉତ୍ପନ୍ନ ଦେବ କଳ୍ପନାରୁ ତୋର
ତୁମ୍ଭ ପ୍ରକୃତିରୁ ଜାତ ସକଳ ସଂସାର ।
ସର୍ବଭୂତେ ଦୟା ତୋର ନାମ ଦୟାନିଧି
ଚିନ୍ତାମଣି ନାଥ ତୁମ୍ଭ ଅମୃତ ପୟୋଧି ।
ବିଶ୍ୱମ୍ଭରଭର ଦେବ କର ତୁମ୍ଭେ ନାଶ
ଅଶେଷ ଜନଙ୍କ ହୃଦେ କର ତୁମ୍ଭେ ବାସ ।
ଅରକ୍ଷପାଳନ ତୁମ୍ଭେ ଜଗତରକ୍ଷଣ
ତୁମ୍ଭ ବିନୁ ନାହିଁ ପ୍ରଭୁ ବ୍ରହ୍ମ ଅନ୍ୟ ଜାଣ ।

ଉତ୍ପତ୍ତି ସ୍ଥିତି ପ୍ରଳୟ ତୁମ୍ଭେ ବେଦବର
ଦେବ ମାନବେ ମହିମା ତୋର ଅଗୋଚର ।
ପାଳିତ ଜନଙ୍କୁ ତୁମ୍ଭେ ପାଳ ବିଷ୍ଣୁରୂପେ
ସଂହାରଣ କର ତୁମ୍ଭେ ଈଶ୍ୱର ସ୍ୱରୂପେ
ଉତ୍ପତ୍ତି କରିବା ବେଳେ ବ୍ରହ୍ମରୂପ ଧର
ଅନନ୍ତ ମୂରତି ଦେବ ଅଟ ବିଶ୍ୱେଶ୍ୱର ।
କହିବାକୁ କେ ତୁମ୍ଭର ମହିମା ସମର୍ଥ
ଅଶେଷ ଲୋକ ଯାହାକୁ ସେବନ୍ତି ନିରତ ।
ନାହାନ୍ତି ତ ତୁମ୍ଭଠାରୁ ବଡ଼ ଏଣୁ କରି
ତୁମ୍ଭେ ଜାତ କରିଅଛ ସପ୍ତସିନ୍ଧୁବାରି ।
ଉତ୍ତର ପଶ୍ଚିମ ଆଡ଼େ ମହୋଦଧି ତଟେ
ନୀଳକନ୍ଦର କଳପବଟ ପଛ ବାଟେ ।
ରତ୍ନସିଂହାସନ ପରେ ଅଛି ତୂଳୀ ଚକ
ସେ ଚକ ଉପରେ ବିଜେ ଜଗତ ନାୟକ ।
ନବୀନ-ନୀଳ-ଜଳଦ ଜିଣି ଶ୍ୟାମବର୍ଣ୍ଣ
ମାଣିକ୍ୟ ବର୍ଣ୍ଣ ଅଧର ପଙ୍କଜ ନୟନ ।
ମରକତ କପୋଳକୁ ସଞ୍ଚ ଦୀର୍ଘ ନାସା
ଦନ୍ତିଁ ମୋତିବର ମୁକ୍ତା ବସା ତାର ମିଶା ।
କୋଟିଏ ଚନ୍ଦ୍ରକୁ ଜିଣି ଶ୍ରୀମୁଖମଣ୍ଡଳ ।
ଶ୍ରବଣରେ ଶୋଭାପାଏ ମକର କୁଣ୍ଡଳ ।
କମ୍ବୁକଣ୍ଠେ ଶୋଭାପାଏ ମୁକ୍ତା ରତ୍ନମାଳୀ
ଗ୍ରୀବ ମାଳା ପଦକ ତୋ ହୃଦଦେଶେ ଲୁଳି ।
ନାନା ମଣିରେ ଜଡ଼ିତ ରତ୍ନକଣ୍ଠ ମାଳ
କ ଜିଣି ପୂର୍ଣ୍ଣଚନ୍ଦ୍ରମା ଶ୍ରୀମୁଖମଣ୍ଡଳ ।
ବାମେ ଯେ କମଳାଦେବୀ ଚକ୍ର ସୁଦର୍ଶନ
ଅଶେଷ ମହିମା ଦେବ ଦେବ ଜନାର୍ଦ୍ଦନ ।
ଦକ୍ଷିଣରେ ବଳଭଦ୍ର ସୁଭଦ୍ରା ମଧ୍ୟରେ
ନାମ ଚିନ୍ତା କରନ୍ତି ଯେ ବ୍ରହ୍ମାଦି ଅମରେ ।
ଯୋଗୀଜନଙ୍କ ଭକତି ଥାଇ ଯାଇ ପାଦେ ।
ମୁନିମାନେ ସମ୍ଭାବନ୍ତି ଦେବ ଯାକୁ ବାଦେ ।
ବଡ଼େ ବଡ଼ ଦେବ ନାହିଁ ଚତୁର୍ଦ୍ଦଶ ପୁର
ଏଣୁ ମୁଁ ଚିନ୍ତାକରଇ ସେହି ନରହରି ।
ତି ମୁକ୍ତି ଦିଅ ମୋତେ ଶଙ୍ଖ ଚକ୍ର ହସ୍ତ
ଦ୍ରମୁନି ମୁଁ ଶାରଳା ଦାସ ଚିନ୍ତେ ନିତ୍ୟ ।

---

## କଳମ୍ବାସୁର ବଧ

ଏଥୁଅନ୍ତେ ବୈବସ୍ୱତ ମନୁ ନାମେ ରାଜା
ଅଗସ୍ତି ମୁନିଙ୍କ ପାଦପଦ୍ମେ କଲେ ପୂଜା ।
ହେ ମୁନି ପଣ୍ଡିତ ଜ୍ଞାନୀ ସର୍ବ କଥା ଜାଣ
ମଧ୍ୟପର୍ବର ବାରତା କହିଲ ପ୍ରମାଣ ।
ଶୁଣିବାକୁ ମୁନିବର ଶରଧା ମୋହର
ପ୍ରସନ୍ନ ଚିତ୍ତ ହୋଇଣ ଅବଧାନ କର
ରାଜାଅତି ବିନୟ ଭକ୍ତିଭାବ ଦେଖି
କହନ୍ତି ପ୍ରସନ୍ନ ଚିତ୍ତ ହୋଇ ବ୍ରହ୍ମମୁନି ।
ଶୁଣ ମହାରାଜ ଏବେ କହିବା ତା ତତ୍ତ୍ୱ
ମଧ୍ୟପର୍ବର ଯେ କଥା ଶ୍ରୀମହାଭାରତ ।
ବୈଶାଖ ଶୁକ୍ଳ ପଞ୍ଚମୀ ତିଥିଗୁରୁବାର
ନକ୍ଷତ୍ର ଯେ ମୃଗଶିରା ବୃଷେ ଶଶଧର ।
ଅତିଗଣ୍ଡ ଯୋଗ ପୂର୍ଣ୍ଣ ବାଳବ କରଣ
ସତର ଦିନ ଯେ ଭୋଗ ମେଷ ସଂକ୍ରମଣ ।
ସେ ଦିନ ଶ୍ରୀନାରାୟଣ ଗରୁଡ଼ ପିଠିରେ
କପିଳାସପର୍ବତକୁ ଗମନ୍ତେ ବାଟରେ ।
ଭେଟ ହେଲେ ସଦାନନ୍ଦ ଦେବ ତ୍ରିପୁରାରି
ଗରୁଡ଼ ପିଠିରେ ଥାଇ ପ୍ରଣମିଲେ ହରି
ଦେଖି ଆଲିଙ୍ଗନ କଲେ କଲେ ସମ୍ଭାଷଣ
ବସିଲେ ମହେନ୍ଦ୍ରଗିରି ଶିଖେ ବେନିଜଣ
ନାନା କଥାମାନ କୁହାକୁହି ସେ ହୁଅନ୍ତି
ସଂସାର ଧାରଣ ଶିରୀପତି ପଶୁପତି ।
ଦୁହେଁ ବସିଅଛନ୍ତି ଯେ ଏକାସନ ହୋଇ
ଅଦଭୁତେ କଳମ୍ବାସୁର ମିଳିଲାକ ଯାଇ ।
ବିବିଧ ବୀରବେଶ ଯେ ହୋଇଛି ଦାନବ
ସ୍ୱର୍ଗପୁରେ ପଶି ରଣେ ଜିଣିଲା ବାସବ ।
ନାନା ଶସ୍ତ୍ରମାନ କରେ ଅଛି ବୀର ଦେଖ
ଦାନବର ଭରରେ ଯେ କମ୍ପଇ ମେଦିନୀ ।
ହରିହରଙ୍କୁ ସେ ଚାହିଁ ଧଡ଼ୁରଇ ହସି
କାହୁଁ ଆସି ତୁମ୍ଭେ ଦୁହେଁ ଏଥେ ଅଛ ବସି ।
ବୁଭୁକ୍ଷିତ ମୁଁ ଜଗତଯାକ ବୁଲି ବୁଲି
ତୁମ୍ଭଙ୍କୁ ଦେଖିଣ ମନେ ଆନନ୍ଦ ହୋଇଲି ।
ଆହାର ନିମନ୍ତେ ମୁହିଁ ବୁଲଇ ନଗରେ
ତୁମ୍ଭଙ୍କୁ ଦେଖି ବିସ୍ମୟ କରିଛି ମୁଁ ଚିତ୍ତେ ।

ଆଜ ଭକ୍ଷି ସୁସ୍ଥ ମୁହିଁ କରିବ ମୋ କାୟ
ଏତେ ବୋଲି ରଡ଼ି ଏକ ଛାଡ଼ିଲା ଦୁର୍ଜ୍ଜୟ ।
ରେ ରେ କାଉ ଧ୍ୱଜବର ଆସିଲା ଫୁତ୍କାର
ଦାନବର ରଡ଼ିଘାତେ କମ୍ପେ ବସୁନ୍ଧରା ।
ରଡ଼ି ଛାଡ଼ି ଗଦା ଧରି ଆସି ସାରମଣି
ହରି ହରଙ୍କ ଉପରେ ପ୍ରହାରିଲା ଆଣି ।
ଆସନକୁ ଛାଡ଼ି ଉଭା ହେଲେ ହରି ହର
ଦାନବ ଗଦା ପଡ଼ିଲା ପର୍ବତ ଉପର ।
ସାତତଳ ଯାଏ ପଶିଗଲା ଗଦାଘାତ
ଦେଖି ଗରୁଡ଼ ପିଠିରେ ବିଜେ ଜଗନ୍ନାଥ ।
ବୃଷଭ ପିଠିରେ ବେଗେ ବିଜେ କଲେ ହର
ଦୁଇଜଣ ଧଇଲେକ କରେ ଧନୁ ଶର ।
ଦନୁଜ ଧଇଲା ତାହା ଦେଖି ଧନୁବାଣ
ଅସ୍ତ୍ର ଶସ୍ତ୍ର ଘେନ ତହିଁ ଆରମ୍ଭିଲେ ରଣ ।
ପଞ୍ଚବାଣ ସେ ଦାନବ ଧନୁରେ ପୁରାଇ
ଶ୍ରୀହରିଙ୍କ ଉପରକୁ ବିନ୍ଧିଲା ନଠାଇ ।
ଦେଖି ନାରାୟଣ ତାକୁ ପ୍ରତିଶର କଲେ
ଦାନବର ଅସ୍ତ୍ର ସବୁ କାଟି ପକାଇଲେ ।
ଦେଖି ଦାନବ ପର୍ବତ ଶର ବେଗେ ଧରି
ବିନ୍ଧି ଦେଲା ମହାରାଗେ ଆକର୍ଣ୍ଣ ଓଟାରି ।
ଛେଦିଲେ ତା ବଜ୍ର ଶର ଘେନ ଦେବ ହରି
ପୁଣି ନାରାଚ ବିନ୍ଧିଲେ ଦେବ ଚକ୍ରଧାରୀ ।
ବିନ୍ଧନ୍ତି ପିନାକ ଶାର୍ଙ୍ଗେ ହରିହର ବାଣ
ଦାନବ ରାଜା ନାରାଚ ବିନ୍ଧେ ଅପ୍ରମାଣ ।
ବିରଞ୍ଚିର ବରେ ବଳୀ ସେ ଦାନବ ସାର
ବରଷାଇ ଧାରାପରି ବିନ୍ଧୁଅଛି ଶର ।
ଘୋର ଶବଦ କରଇ ଗୁଣକୁ ଟଙ୍କାର
ନାରାଚର ତେଜରେ ଯେ ଛୁଟିଲା ତିମିର ।
ହରି ହର ବେନି କୋପେ କରୁଛନ୍ତି ରଣ
ନାରାଚ ବିନ୍ଧନ୍ତି କରି ଶବ୍ଦ ଗୁରୁଟଣ ।
ବିନ୍ଧିଲା ସେ କଳ୍ପାସୁର କୋପେ ଲକ୍ଷେଶର
ଗରୁଡ଼ ଡେଣାରେ ବାଜି ସବୁ ହେଲା ଚୂର ।
ଶାରଙ୍ଗ ଧନୁରେ ବାଣ ଯୋଚି ଜନାର୍ଦ୍ଦନ
ଦାନବର ଉପରକୁ କରନ୍ତେ ସନ୍ଧାନ ।
ଦେଖିଣ ଦାନବବର ଛେଦିଲା ଝଟତି
ବିନ୍ଧିଲେକ ପଞ୍ଚଶିଖ ବାଣ ପଶୁପତି ।

ଦେଖିଲା ଦୈତ୍ୟ ନାରାଚ ଆସେ ଗଗନରୁ
ପ୍ରତିଅସ୍ତ୍ର କଲା ବାଣ ନାମେ କଲ୍ପତରୁ ।
ଦୁଇ ଶସ୍ତ୍ର ବାଟ ମଧ୍ୟେ ହେଲେ ଯାଇ ଭେଟ
ଦୁହିଙ୍କର ଧ୍ୱନି ତେବେ ଅତ୍ୟନ୍ତ ଉତ୍କଟ ।
ଘୋର ଧ୍ୱନି ଉଠିଲାକ ତହିଁ ବେନିପକ୍ଷେ
ଦେବତାମାନେ ଦେଖିଲେ ଆସି ଅନ୍ତରୀକ୍ଷେ ।
କୁବେର ବରୁଣ ଚନ୍ଦ୍ର ସୂର୍ଯ୍ୟ ବିଶ୍ୱେଦେବା
ତେତିଶ କୋଟି ଦେବତା ସହିତେ ମଘବା ।
ଇନ୍ଦ୍ର ପଚାରିଲେ ସୁରଗୁରୁ ମୁଖ ଚାହିଁ
ଯୁଦ୍ଧ କରୁଛନ୍ତି କିଏ କହ ତାରସାଇଁ ।
ବୃହସ୍ପତି ବୋଇଲେ ହେ ଶୁଣ ପୁରନ୍ଦର
ହରିହର ସଙ୍ଗେ କଳ୍ପାସୁରର ସମର ।
ଇନ୍ଦ୍ର ବୋଇଲେ ଆମ୍ଭର ତେବେ ସଜ ହୁଅ
ସମସ୍ତ ଦେବତା ବେଗେ ବାହନ ଆଣେହ ।
ଯେ ଯାହା ଆୟୁଧମାନ ଆସ କରେ ଘେନ
ସଜ ହୋଇ ଆସନ୍ତୁ ମୋ ସକଳ ସଇନ ।
କହିଲେକ ମାତଳିକି ଚାହିଁ ସୁନାସୀର
ଐରାବତ ଗଜବର ବେଗେ ସଜ କର ।
ଗନ୍ଧର୍ବମାନଙ୍କୁ କହ ଆମ୍ଭ ନାମ ଧରି
ଉଚ୍ଚୈଃଶ୍ରବା ଅଶ୍ୱବର ଆଣ ସଜକରି ।
ଧାଇଁଲେ ଇନ୍ଦ୍ରର ଆଜ୍ଞା ପାଇ ସର୍ବ ସୈନ୍ୟ
ସଜ ହୋଇଣ ଚଢ଼ିଲେ ଯେ ଯାହା ବାହନ
ଯାହାର ଯେ ଶସ୍ତ୍ର ତାହା ବେଗେ ଧରି ଧାଇଁ
ବୋଲନ୍ତି ଯେ ଦେବତାଙ୍କୁ ଚାହିଁ ସୁରସାଇଁ
ଆହେ ଦେବଗଣ ତୁମ୍ଭେ ଆମ୍ଭ ବାକ୍ୟ ଶୁଣ
କଳ୍ପାସୁର ସଙ୍ଗେ ଯୁଦ୍ଧ ହରି ନାରାୟଣ ।
ସ୍ୱଭାବେ ସେହି ଦଇତ୍ୟ ସବୁଙ୍କର ଶଲ
ଏକାଳେ ବେଢ଼ି ମାରିବା ତେବେ ଆମ୍ଭ ସୈନ
ବୃହସ୍ପତି ବୋଇଲେକ ସାଜିଲୁଣି ସୈନ୍ୟ
କଳ୍ପକୁ ଯେ ଜିଣିବାକୁ ନୋହିବା ଭାଜନ ।
ମାରି ନ ପାରିବା କାଳେ ଆସିବା ପଳାଇ
ସ୍ୱର୍ଗ ସହିତେ ଦାନବ ନେବଟି ଛଡ଼ାଇ ।
ଇନ୍ଦ୍ର ବୋଇଲେ ହେ ଗୁରୁ ନ କହ ଏମ
ତା ଭୁଲେ ଯୁଦ୍ଧ କରନ୍ତି ଦେବ ଜଗନ୍ନାଥ
ଆବୋରି ଅଛନ୍ତି ହରିହର ଦୁହେଁ ରଣ
ଦୁଷ୍ଟ କଳ୍ପ ଦାନବର ରହିବ କି ପ୍ରାଣ ।

ମନ୍ତ୍ରୀଙ୍କ ଏମନ୍ତ କଥା କହି ସୁରପତି
ମହେନ୍ଦ୍ର ପର୍ବତ ତଳେ ଯାଇଣ ମିଳନ୍ତି ।
କଳ୍ପାସୁର ଭୁଲେ ଯୁଦ୍ଧ ନାରାୟଣ ହର
ପ୍ରବେଶିଲେ ଦେବସୈନ୍ୟ ଭୁଲେ ସୁରେଶ୍ୱର
ଦାନବଙ୍କୁ ମାର ବୋଲି ଶୁଭେ ଘୋରଧ୍ୱନି
ନାରାଚ ବୃଷ୍ଟି କଲେ ସେ ଦ୍ରୋଣମେଘ ଜାଣି ।
ସକଳ ଦେବ ମିଳଣ ବିନ୍ଧିଲେକ ଶର
କଳ୍ପାସୁର ଦେହେ ବାଣ ପଡ଼େ ନିରନ୍ତର ।
ପର୍ବତେ ବିନ୍ଧିଲେ ଶର ଯେସନେକ ହୋଇ
ତେସନେ ଦାନବ ଅଙ୍ଗେ ଟଳି ଉପୁଡ଼ଇ ।
ଆଦିତ୍ୟର ବରେ ଦୈତ୍ୟବରେ ମହାବଳ
ଦେବସୈନ୍ୟ ଡାକନ୍ତି ସେ ହୋଇ କୁତୂହଳ
ଗଦା ଟଙ୍କ ଭଲ୍ଲ କାଣ୍ଡ ଶକଟ ମୁଦ୍‌ଗର
କୁନ୍ତ ଆସିବର ପାଶ ଅଙ୍କୁଶ ତୋମର ।
ପର୍ବତ ଭୈରବ ନାଗପାଶ ମହାବାଣ
ବଜ୍ରମୂନା ବଜ୍ରଶର ବାବଲ ଯେ ଠାଣ
ମୋହପାଶ ଜଳପାଶ କାମ୍ୟ ନାମେ ଶର
ରୁଦ୍ରପାଶ ଯମପାଶ ଇନ୍ଦ୍ରାସ୍ତ୍ର ଆବର ।
ଘୋରବାଣ ଅଗ୍ନିବାଣ ଭଇରବୀ ବାଣ ।
ଅର୍ଦ୍ଧଚନ୍ଦ୍ର କଳାଚନ୍ଦ୍ର ଭଲ୍ଲ ଭଲ୍ଲ ଜାଣ ।
ଅବିନାଶୀ କଲ୍ପତରୁ ବଜ୍ରସ୍ୱିଁ ଅବର ।
କାଳଶର କଲ୍ପତରୁ ବଜ୍ରସ୍ୱିଁ ଆବର ।
ପବନା ବରୁଣ ମେଘଶର ବିଶ୍ୱଜିତ
ବ୍ରହ୍ମାଣ୍ଡ ଅନ୍ତକ ଶର ଶର ଶତ୍ରୁଜିତ ।
ମହୀଳତା ଶର ପୁଣି ଘୋର ଘଡ଼ଘଡ଼
ବଜ୍ରଲ୍ଲ ନକ୍ଷତ୍ର ଘଡ଼ଘଡ଼ ଚଡ଼ଚଡ଼ ।
କାଳକଣ୍ଠ ନୀଳକଣ୍ଠ ବୀରଭଦ୍ର ଶର
କୁହୁଳ କଭୁସିବାଣ କୁହୁଡ଼ି ଆବର ।
ନାଗଚମାନଙ୍କ ଜ୍ୟୋତି ଅଗ୍ନି ଦିବାକର
ମାରନ୍ତି ଏ ବାଣମାନ ଅମର ନିକର ।
ଏ ବାଣମାନ ପଡନ୍ତେ ଦାନବର କାୟେ
ମଣଇ ଦାନବ ତାହା ପୁଷ୍ପବୃଷ୍ଟି ପ୍ରାୟେ ।
କୁବେରଙ୍କ ଗଦାବର ବରୁଣଙ୍କ ଫାଶି
ସମସ୍ତ ଦେବତା ସବୁ ଶର ଦେଲେ ପେଷି ।
କରନ୍ତି ସେ ଦାନବର ସଙ୍ଗେ ଘୋର ରଣ
ରଣଝଣ ଧ୍ୱନି ଶୁଭେ କୋଳାହଳ ପୁଣ ।

ଏକାକୀ ସେ ଦାନବର ସୈନ୍ୟ ନାହିଁ ସଖା
ଗଜଯୂଥ ମଧ୍ୟେ ଯେସନ୍ତେ କେଶରୀ ନିଃଶଙ୍କା ।
ନାରଦ ବୀଣାଯନ୍ତ୍ରକୁ ଘେନି ଯୁଦ୍ଧ ଦେଖି
ନାଚନ୍ତି ସେ ରେରେକାର କରି ହୋଇ ସୁଖୀ
କୁତୂହଳେ ନାଚନ୍ତି ସେ ବୀଣାଯନ୍ତ୍ର ବାଇ
ହସନ୍ତି ସେ ବ୍ରହ୍ମମୁନି ତ୍ରିଦଣ୍ଡ ବୁଲାଇ ।
ଲାଗୁ ଲାଗୁ ବୋଲି ମୁନି ନାରଦ ହସିଲେ
କଳ ଧୋକଡ଼ିରୁ ଧୂଳି ମୂଠାଏ ମାଇଲେ ।
ଲାଗିଲା ବିଷମ ଘୋର ରଣ ଅପ୍ରମାଣ
ଦେଖନ୍ତି ଆନନ୍ଦେ ରଣ ବ୍ରହ୍ମାର ନନ୍ଦନ ।
ବିମୁଖ ଦାନବ ରଣ ଦେଖି ହରିହର
ବିଚାରନ୍ତି ଘେନିବ ଏ ଦୈତ୍ୟ ତ୍ରିଭୁବନପୁର ।
ଯେହେତୁ ଏହାର ଦେହେ ନ କାଟିଲା ବାଣ
କିରୂପେ ଏ ଦାନବର ଘେନିବା ପରାଣ ।
ଏତେକ ବିଚାର କରି ଦେବ ମଧୁହାରୀ
ଶ୍ରୀକରରେ ସୁଦର୍ଶନ ଚକ୍ରବର ଧରି ।
ହୁଁକାର ଶବଦ କରି କୋପେ ନାରାୟଣ
ଦାନବକୁ ମାଇଲେ ସେ କରି ମହାଟାଣ ।
ଅଶୀତି ସହସ୍ର ଧାର ଯେବଣ ଚକ୍ରର
ଦୈତ୍ୟର ହୃଦରେ ବାଜି ହୋଇଲା ଅନ୍ତର
ହସଇ ସେ ଠହ ଠହ ହୋଇ କଳ୍ପାସୁର
ଦେଖି ମନେ ବଡ଼ବ୍ୟଥା ହେଲା ଦେବଙ୍କର
ସୁରଗଣମାନେ ମନେ ଚିନ୍ତାଭର ହୋଇ
ସମର କରନ୍ତି ମନେ ମହା ରୋଷ ବହି ।
ବ୍ରହ୍ମାର ନନ୍ଦନ ହସ୍ତେ ତ୍ରିଦଣ୍ଡ ବୁଲାଇ
ଈଶ୍ୱରଙ୍କ କଇଲାସ କନ୍ଦରକୁ ଯାଇ ।
କାର୍ତ୍ତିକ ଗଣେଶ ନନ୍ଦି ମହାକାଳ ରୁଦ୍ର
ବୀରଭଦ୍ର ରଣଭଦ୍ର ଭୃଙ୍ଗୀ ମଣିଭଦ୍ର ।
ଏ ସକଳ ରୁଦ୍ରଗଣ ବସିଛନ୍ତି ମେଳେ
ନାରଦ ବାରତା ନେଇ ଦେଲେ ଏହିକାଳେ
ଶୁଣି ରୁଦ୍ରଗଣ ଏକ ପରମାଦ ବାଣୀ
ବଳଦ ଚଢ଼ିଣ ଯାଉଥିଲେ ଶୂଳପାଣି ।
ଦ୍ୱାରକାରୁ ଗରୁଡ଼ରେ ବିଜେ ବନମାଳୀ
ବାଟ ମଧ୍ୟେ ବେନି ଜନ ହେଲେ ମିଳାମିଳି ।
ଦୁହିଙ୍କର ଭେଟ ହେଲା ମହେନ୍ଦ୍ର ପର୍ବତେ
ହରିହର ବସିଥିଲେ ସେଠାରେ ଏକାନ୍ତେ ।

ଏମନ୍ତ ସମୟେ କଲ୍ପାସୁର ନାମେ ଦୈତ୍ୟ
ହରିହରଙ୍କୁ ଭେଟିଲା ହୋଇ ବୃଦ୍ଧିତ ।
ଘୋର ଗର୍ଜ୍ଜନ କରି ସେ ଆବୋରିଲା ରଣ
ଜିଣି ନ ପାରିଲେ ରଣେ ତାଙ୍କୁ ଦେବଜନ ।
ଦେବ ମାନବ ଆଦି ଯେ ସୁର ପଶୁପତି
ତେତିଶକୋଟି ସଇନ୍ୟ ଯେନ ସୁରପତି ।
ମହାଘୋର ଯୁଦ୍ଧ କଲେ ଦାନବ ସଙ୍ଗରେ
ଏବ୍ବକ୍ଷଣି ଆମ୍ଭେ ଦେଖି ଆଇଲୁ ଚକ୍ଷୁରେ ।
ଦାନବ ସଙ୍ଗେ ଯୁଜନ୍ତେ ହୋଇ ଏକମୁଖ
ଦେବଗଣ ହରିହର ହେଲେଣି ବିମୁଖ ।
ପାରଯେବେ ବେଗେ ଯାଇ ଆବୋରି ସେ ରଣ
ତକ୍ଷଣେ ବାହାର ହେଲେ ଶୁଣି ଶିବଗଣ ।
ଯେ ଯାହା ଆୟୁଧ ଧରି ହୋଇଲେ ବାହାର
ତକ୍ଷଣେ ଭେଟିଲା ଯାଇ ରଣେ କଲ୍ପାସୁର ।
ରେରେକାର କରିଦେଲେ ଭଇରବ ରଡ଼ି
ମେରୁ ମନ୍ଦର ଗିରି କି ପଡ଼ିଲାକ ଝଡ଼ି ।
ଦାନବର ଉପରକୁ ମାଇଲେ ସେ ଶର
ଯେସନ ଶ୍ରାବଣ ମାସ ବରଷାର ଧାର ।
ତେସନ ଦାନବ ଅଙ୍ଗେ ପଡ଼େ ଶରମାନ
ବିମୁଖ ହୋଇଲେ ରଣେ ଦେବ ରୁଦ୍ରଗଣ ।
ଏଥୁ ଅନନ୍ତରେ କୋପେ ଦେବ ସୁରପତି
ଐରାବତ ଗଜ ଚଢ଼ି ଧାଇଁଲେ ତଡ଼ିତ ।
ଗନ୍ଧର୍ବବଳଙ୍କୁ ସଙ୍ଗେ ଯେନ ସୁନାସୀର
ରାକ୍ଷସ ଉପରେ ବଜ୍ର ମାଇଲେ ସତ୍ୱର ।
ଅଗ୍ନି ଦେବତା ଉପରେ ମୁଦ୍ଗର ଯେନ
କୁବେର ମାଇଲେ ଗଦା ରତ୍ନାବଳି ଆଣି ।
କାଳାନ୍ତକ ପରିଘକୁ ମାଇଲେ ନୈରୃତ
ଯମଦେବତା ମାଇଲେ କାଳଦଣ୍ଡ ଅସ୍ତ୍ର ।
ମୃତ୍ୟୁ ଦେବତା ମାଇଲେ କୋପେ ମହାବାଣ
ବଜ୍ରାବଳି ଗଦା ଧରି ମାଇଲେ ବରୁଣ ।
ଗର୍ଜ୍ଜନ ଅସ୍ତ୍ର ମାଇଲେ ଦେବ ନିଶାକର
ମାଇଲେକ ସୂର୍ଯ୍ୟାବର୍ତ୍ତ ଶର ପ୍ରଭାକର ।
ଅନିବାର ଶକତିକୁ ମାଇଲେ ମଳୟ
ଗନ୍ଧର୍ବ ଶର ମାଇଲେ ବାସବ ତନୟ ।
ପବନ ଯେନ ମାଇଲେ ବରୁଣ ବାୟବ୍ୟ
ମାଇଲେକ କାଳଚନ୍ଦ୍ର ଯେନ ଭଇରବ ।
ଗର୍ଜ୍ଜନ ତର୍ଜ୍ଜନ ପୁଣି ଭଇରବୀ ବାଣ
ଦାନବକୁ ମାଇଲେ ଯେ ପାର୍ବତୀ ନନ୍ଦନ ।
କାର୍ତ୍ତିକେୟ ମାଇଲେ ଯେ ରୁଦ୍ରକାଳଶର
ବିଗ ଦହନ ଖଡ଼ଗ ମହାକାଳ ବୀର ।
ଭୃଙ୍ଗୀ ମାଇଲା କୋପେ ଗିରିଚୂଡ଼ ବାଣ
ନନ୍ଦୀ ମାଇଲେକ ନନ୍ଦାବର୍ତ୍ତ ନାମେ ବାଣ
ଜୟନ୍ତକ ପ୍ରହାରିଲା ଚନ୍ଦ୍ରମୁନା ଶର
ମଣିଭଦ୍ର ପ୍ରହାରିଲା ଶର ବିଶ୍ୱେଶ୍ୱର ।
ରୁଦ୍ରଦେବ ପ୍ରହାରିଲେ ତ୍ରିଶୂଳ ଶକତି
କୌମୋଦକୀ ଗଦାବର ମାଇଲେ ଶ୍ରୀପତି
ଦାନବର ଅଙ୍ଗେ ବାଜି ଏଡ଼େ ଏଡ଼େ ଶର
ତିଳେମାତ୍ର ନ ଭେଦିଲା ହସେ ଦୈତ୍ୟବର
ଦେଖି ଦେବଙ୍କର ବୁଦ୍ଧି ନ ସ୍ଫୁରଇ କିଛି
ନିଃଶ୍ୱାସେକ ଛାଡ଼ି ଦେବ ବୋଲନ୍ତି ଶ୍ରୀବତ୍ସି
ଏ ଦୈତ୍ୟ ଆଦିତ୍ୟ ବରେ ଅଟଇ ଅମର
ନଷ୍ଟେଁ ଦାନବ ନାଶିଲା ଜାଣ ତନପୁର ।
ଏହା ହେତୁ ନାଶଗଲା ନବଖଣ୍ଡ ସୃଷ୍ଟି
ଆଲୋକିତ ବର ଯାଚିଦେଲେ ପରମେଷ୍ଠି
ଏସନକ ଭାଳୁଛନ୍ତି ହରି ମନେ ମନେ
କଲ୍ପାସୁର ଧାଇଁଆସି ତାଙ୍କ ସନ୍ନିଧାନେ ।
ଦେବତାଙ୍କୁ ପ୍ରହାରଇ ଆୟୁଧେ ଅଶନ
ଇନ୍ଦ୍ରଡ଼ର ପଳାଇଲେ ସୁରଗଣ ଯେନ ।
ଭାଙ୍ଗିଲେକ ରୁଦ୍ରଗଣ ମନେ ହେଲା ଡର
ବୃଷଭ ଗରୁଡ଼ ଛାଡ଼ି ଗଲେ ହରିହର ।
ଯେ ଯାହାପୁରକୁ ସେ କରନ୍ତି ଗମନ
ପଛେ ଦୈତ୍ୟ ଗୋଡ଼ାଇଛି ହୋଇ କୋପମ
ପର୍ବତରେ ହରିହର ପଶିଲେ ପଳାଇ
କୋପେ ସେ ଦାନବ ସ୍ୱୟଂ ଅଛଇ ଗୋଡ଼ା
କାହିଁ କି ରେ ଯିବ ବୋଲି ରାକ୍ଷସ ଡାକଇ
ବନସ୍ତେ ଦୈତ୍ୟକୁ ସେ ଯେ ନଅନ୍ତି କଡ଼
ପଛ ନ ଛାଡ଼ଇ ଦୈତ୍ୟ ଯାଏ ଘନ ଘନ
ବାରୁଣ ବନ୍ତେ ଉଠିଲେ ଯାଇ ଦେବଜନ ।
ରାକ୍ଷସ ଗୋଡ଼ାଇ ଅଛି ତାଙ୍କ ପଛକତି
ଅନ୍ତର ହେଲେ ଶ୍ରୀପତି ଦେବ ପଶୁପତି
ବୀରବେଶ ଛାଡ଼ି ତହିଁ ହୋଇଲେ ବ୍ରାହ୍ମଣ
ସେ ଦାନବ ଦେଖୁ ଦେଖୁ ହେଲେ ଅନ୍ତର୍ଦ୍ଧ

ତା ଦେଖି ଦାନବବର ବିଚାରଇ ଚିତ୍ତେ
କେଣେ ଗୁଳିଗଲେ ବୋଲି ସ୍ମହିଁଇ ଚକିତେ
ମନେ ମନେ ବିଚାରଇ ଚଳିଯିବେ କାହିଁ
ଚଉଦ ଭୁବନେ ପଶି ଖୋଜିବଇଁ ମୁହିଁ ।
ଏତେ ବିଚାରି ଶ୍ରବଣା ଦଇତ୍ୟର ନାଥ
କରେ ଘେନି ଅସ୍ତ୍ରଶସ୍ତ୍ର କୋଦାଳ ଶକତି ।
ଡାକଇ ଦଇତ୍ୟ କେଣେ ଗଲ କେବନ ବାଟରେ
ସମର୍ଥବନ୍ତ ବୋଲାଅ ବ୍ରହ୍ମାଣ୍ଡ ଭିତରେ ।
ନଶୁଣିଲ ପ୍ରାପ୍ତ ହୋଇଛନ୍ତି ହରିହର
କୂଟ କରଣ ମାରିବା କରନ୍ତି ବିଚାର ।
ଏମନ୍ତ ସମୟେ ଶୁଣ ବୈବସ୍ୱତ ମନୁ
ସେ ପର୍ବତେ ବୁଲୁଛନ୍ତି ଅଦିତ୍ୟର ସୂନୁ ।
କରେ ଧନୁଶର ଧରି ଖୋଜେ ଗଣ୍ଡାଜୀବ
ଏ ସମୟେ ଲେଉଡ଼ି ଆସୁଥିଲା ସେ ଦାନବ ।
ଅଦିତ୍ୟର ନନ୍ଦନଙ୍କୁ ଦୂରରୁ ଦେଖିଲା
ଏହାଙ୍କୁ ପୁଚ୍ଛିବି ବୋଲି ମନେ ବିଚାରିଲା ।
ଡାକିଲା ରାକ୍ଷସ ଶୁଣ ଜଗତରେ ତୁମ୍ଭ
କେବନ ବାଟରେ ଯାଉଛନ୍ତି ଦେଖିଲୁ କି ନାହିଁ ।
କର୍ଣ୍ଣ ବୋଇଲେ ତାହାଙ୍କୁ ମୁହିଁ ଦେଖି ନାହିଁ
ପଳାଇବା ଶତ୍ରୁକୁ ତୁ ଗୋଡ଼ାଉ କପାଇଁ ।
ଧର୍ମଶାସ୍ତ୍ର ତତ୍ତ୍ୱବିଧି ନାହିଁ କରେ ଶୁଣି
ପଳାଇବା ଶତ୍ରୁକୁ କି ଗୋଡ଼ାଇ କେ ହାଣି
ସକଳ ଧର୍ମ ଆବର ସୁକୃତ ତାହାର
ସମସ୍ତ ବିନାଶ ଯାଇ ପାଏ ନର୍କଘୋର ।
ଯେବେ ଶତ୍ରୁ ପଳାଇଲେ ନ ପାରି ଯୁଦ୍ଧରେ
ତାହାଙ୍କୁ ଗୋଡ଼ାଉ ତୁମ୍ଭେ କହ କି ପ୍ରକାରେ ।
ଶାସ୍ତ୍ରତତ୍ତ୍ୱ ଶୁଣିଲୁଣି ଫେରଯାଉରେ ବୀର
ଶୁଣିଣ ଦାନବ ହେଲା କୋପେ ଥରହର ।
ବୋଲଇ କପଟ ଅଟୁ ବାଳୁତ କି ତୁମ୍ଭ
ମୋହର ଶତ୍ରୁକୁ ଦେଖି ଲୁଚିଲୁ କପାଇଁ ।
ତାହାଙ୍କ ପାଳଟ ଭକ୍ଷ୍ୟ ହୋଇଲୁ ତୁ ଜାଣ
ମୋହର ହାତରେ ତୋର ନିଶ୍ଚୟ ମରଣ ।
ଏତେ କହି ସେ ଦାନବ ମାଇଲା ଶକତି
ଅନବାର ଶରେ କର୍ଣ୍ଣ ଛେଦିଲେ ଝଟତି ।
ଦେଖି ଦାନବ ଛାଡ଼ିଲା କୋପେ ଘୋରରଡ଼ି
ଗିରି କନ୍ଦର କି ନାଦେ ପଡ଼ିଲେକ ଝଡ଼ି ।

କୁଦାଳ ଆୟୁଧ କୋପେ ବୁଲାଇ ପ୍ରହାରେ
କାଳାନ୍ତକ ଶର କର୍ଣ୍ଣ ବିନ୍ଧିଲେ କୋପରେ ।
ଦୈତ୍ୟର କୁଦାଳେ ଯାଇ ପଡ଼ିଲା ସେ ଶର
କୁଦାଳ ଅସ୍ତ୍ରରେ ଭାଜି ପଡ଼ିଲା ଭୂମିର ।
ଦେଖି ମନେ ବିଚାରଇ ଅଦିତ୍ୟ ନନ୍ଦନ
ଧନ୍ୟ ଏ ଦାନବ ଅଟେ କାହାର ସନ୍ତାନ ।
ଧନ୍ୟ ଏହାଙ୍କ ଆୟୁଧ ବଜ୍ରଅଛି କରେ
ନ ଭାଙ୍ଗିଲା ଏଣୁ ଶସ୍ତ୍ର କାଳାନ୍ତକ ଶରେ ।
ଏତେ ବିଚାରି ଘେନିଲା ଅମୋଘ ଶକତି
ମନ୍ତ୍ର ପଢ଼ିଣ ମାଇଲା କଶ୍ୟପର ନାତି ।
ଦାନବ ଉପରେ ବାଣ ପଡ଼ିଲେକ ଯାଇ
ଅଗ୍ନି ଝଲକ ଦାନବ ଅଙ୍ଗରୁ ଉଠଇ ।
ଦେହେ ତିଳେ ନ ଭେଦିଲା ପଡ଼ିଲା ଭୂମିରେ
ପୁଣି ବଜ୍ର ଅସ୍ତ୍ର ଧରି ବିନ୍ଧେ କୋପଭରେ ।
ଦୈତ୍ୟର ଅଙ୍ଗରେ ବାଣ ଭେଦି ନ ପାରିଲା
ମୁନ ମୋଡ଼ି ହୋଇ ଆସି ଭୂମିରେ ପଡ଼ିଲା ।
ଦେଖି ଆଦିତ୍ୟ ତନୟ ଭୟେ ଥରହର
କଦଳି ପତ୍ର ପ୍ରାୟେ କମ୍ପଇ ଶରୀର ।
ବାଛି ଶରେକ ତୂଣୀରୁ କଲେକ ବାହାର
ମହାତେଜ ଅନଳର ଜ୍ୟୋତି ପରଖର ।
ପ୍ରକାଶିଲା ସୂର୍ଯ୍ୟର କି ସହସ୍ର କିରଣ
ତୂଣୀରୁ ବାହାର କଲେ ସହସ୍ରେକ ମୁନ ।
ଗୁଣେ ବସାନ୍ତେ ତା ମୁନ ଆୟୁତେକ ହେଲା
କୋପେ କର୍ଣ୍ଣ ବୀର ମନେ ମନ୍ତ୍ର ସୁମରିଲା ।
କର୍ଣ୍ଣ ପରିଘନ୍ତେ ଟାଣି ଓଟାରନ୍ତେ ବୀର
ଦଶଅୟୁତ ହୋଇଲା ମୁନ ସେ ବାଣର ।
ଫିଟନ୍ତେ ଯେ ନାରାଚର ହେଲା ଲକ୍ଷେ ମୁନ
ଗର୍ଜ୍ଜନ କରି ଚଳନ୍ତେ କୋଟିଏ ବଦନ ।
ପଡ଼ିବାରବେଳେ ମୁଖ ଅର୍ବୁଦେ ହୁଅଇ
କଳଡ଼ାମାସେ କି ଦ୍ରୋଣମେଘ ବରଷଇ ।
ରାକ୍ଷସ ଉପରେ ଯହୁଁ ପଡ଼ିଲା ସେ ଶର
ତିଳବୃଷ୍ଟି ହୋଇଲେକ ପର୍ବତ ଉପରେ ।
ଦେହେ ବାଜିବାକୁ ସ୍ଥାନ ନ ହୋଇଲା ବାଣ
ଧନ୍ୟରେ ଦାନବ ବୋଲି ବୋଲେ ବୀରକର୍ଣ୍ଣ
ପୁଣି କର୍ଣ୍ଣ ଅଗ୍ନିଶର ବିନ୍ଧିଲା ସତ୍ୱର
ତୁଣ୍ଡକୁ ବିସ୍ତାରି କରି ଗିଳିଲା ଅସୁର ।

ଅଗ୍ନିଶର ଯନ୍ତେଁ ଗିଳିଦେଲା ଦୈତ୍ୟନାହା
ନସ୍ତନ ଚଗତି ବୀର ହଲାଇଲା ବାହା ।
ପଥରେକ ଘେନ ଦୈତ୍ୟ ମାଇଲା ତଡ଼ିତ
ବଜ୍ରଶରେ ଛେଦିଲା ତା କର୍ଣ୍ଣ ମହାକ୍ଷତି ।
ବୃକ୍ଷ ଉପାଡ଼ି ପିଟିଲା ଦୈତ୍ୟ ବୀରବର
କଙ୍କୁସି ବାଣେ ଛେଦିଲା ଆଦିତ୍ୟ କୁମର ।
ବୃକ୍ଷ ଛେଦ ପୁଣି କର୍ଣ୍ଣ ଦୈବାସ୍ତ୍ର ମାରେ
ଆଙ୍ଗୁଳି ପାତ ବୀର ତା ସଂହରଣ କରେ ।
ଶର ଯନ୍ତ ଅସ୍ତ୍ର ପୁଣି ବଳେ କର୍ଣ୍ଣବୀର
ପଡ଼ିଲା ନାଗଚ ଯାଇ ଦୈତ୍ୟର ଉପର ।
ମୁନ ମୋଡ଼ ହୋଇ ଯାଇ ଶର ପଡ଼େ ଖଣ୍ଡ
ନର୍ଘାତବାଣ ବିନ୍ଧିଲା କର୍ଣ୍ଣ ଚଡ଼ବଡ ।
ଦାନବ ଶରୀରେ ଯାଇ ପଡ଼ିଲାକ ବାଣ
ଟହଟହ ହୋଇ ହସେ ସେ ଦନୁଜଗଣ ।
ବୋଇଲା ମାନବ ତୋର ପୂରିଲା ଆୟୁଷ
ତୋତେ ରଖିବାକୁ ନାହିଁ ସୁର ଚତୁର୍ଦ୍ଦଶ ।
ଏତେ ବୋଲି ସେ ଅସୁରବୀର ମହାବଳୀ
କୁଦାଳ ଆୟୁଧ ମୋର ଘେନ ଭୁଜେ ତୋଳି
କର୍ଣ୍ଣର ଅଙ୍ଗେ ବାଜିଲା ଯନ୍ତେଁ ମହାଶର
ଭୂମିରେ ପଡ଼ିଲା ଜ୍ଞାନ ହାରି କର୍ଣ୍ଣବୀର ।
ତା ଦେଖି ଦାନବବୀର ଧାଇଁଲା ତଡ଼ିତ
ଦେଖିବା ନା ଜଗତର କେମନ୍ତ ମୂରତି ।
ଏତେ ବିଚାରି ଆଗରେ ଯାଇ ତାର ମିଳି
ଧନୁଶର ଧରି ପଡ଼ିଅଛି ମହାବଳୀ ।
ଦାନବ ବୋଇଲା ଆହେ ଧନ୍ୟ ତୋର ପିତା
ଧନ୍ୟ ଜଗତରେ ତୋର ଗର୍ଭଧାରୀ ମାତା ।
ଧନ୍ୟ ଯେବଣ ଦେଶେ ତୁ ହୋଇଥିଲୁ ଜାତ
ଧନ୍ୟ ତୋ ସାମର୍ଥ୍ୟ ଧନ୍ୟ ଧନ୍ୟ ବଳବନ୍ତ
ଧନ୍ୟ ତୋର ଗୁରୁ ଧନ୍ୟ ତୋର ବିଦ୍ୟାବଳ
ମୋର ତୁଲେ ଯୁଦ୍ଧ କଲୁ ରବି ଏତେବେଳ
ଧନ୍ୟରେ କବଚ ମୋର ହସ୍ତେ ଗଲୁ ନାଶ
ଏତେ ବିଚାରି ମନରେ ହୋଇଲା ହରଷ ।
ବୋଇଲାକ ଆଦିତ୍ୟର ହେଲା ଅସ୍ତକାଳ
ସ୍ନାନ କରିବି ମୁଁ ଯାଇ ପଶି ନଦୀଜଳ ।
ପଛେ ଏହାର ମାଂସକୁ ଭକ୍ଷିବଇଁ ମୁହିଁ
ଧନୁ ଶରକୁ ଛଡ଼ାଇ ନେଲା ଦୈତ୍ୟସାଇଁ ।

ସେ ପର୍ବତ ତଳେ ବହେ ବାରୁଣୀ ଯେ ନ
ସେ ନଦୀକୁ ସ୍ନାନ କରିବାକୁ ସେ ଗମନ୍ତେ
ଯନ୍ତେଁ ବୋଇଲା ଭକ୍ଷିବ ତୋର ରକ୍ତ ମ
ଆକାଶେ ଜାଣିଲେ ତାହା କଶ୍ୟପର ଶି
ବାକ୍ୟଦେବୀଙ୍କୁ ଚିନ୍ତିଲେ ମନରେ ଆଦିତ
ହେ ଦେବୀ ସରସ୍ୱତୀ ଗୋ ଛେଦିବା ଆଗ
ଜୟ ତୁ ଅନାଦି ମାଗୋ ବ୍ରହ୍ମାର କୁମାରୀ
ନାରିସ୍ୱଣ ପୁରୁଷର ମନ ନେଉ ହରି ।
ବୀଣାସ୍ୱର କୁହୁକେ ଗାନରସ ବାଣୀ
ଅନାଦି ମାଧବ ମୋହ ଗଲେ ତାହା ଶୁଣି
ହା ହା ହୁହୁ ଗନ୍ଧର୍ବାଦି ଗାୟନ ତୁମ୍ଭର
ପାଦପଦ୍ମ ସେବା କରୁଥାନ୍ତି ନିରନ୍ତର ।
ବୃହସ୍ପତି ସନକ ଯେ ସନାତନ ବ୍ୟାସ
ତୋ ପାଦରେ ମୁନିଗଣ ସେବନ୍ତି ଅଶେଷ
ତୁ ଏବେ ସୁଦୟା ମାଗୋ କର ବାକ୍ୟେ
ଏ ଶାରଳା ଦାସ ତୋର ପାଦ ସେବାକା
ଆଦିତ୍ୟ ଚିନ୍ତିତେ ଉପଗତ ସରସ୍ୱତୀ
ସପ୍ତସ୍ୱର ବୀଣା ଶ୍ରୀହସ୍ତେ ଘେନିଛନ୍ତି ।
ଶୂନ୍ୟେରେ ଯେ ଉଭା ହୋଇ କହନ୍ତେ ଏମ
ହେ ତିମିର ନିବାରଣ ଚିନ୍ତିଲ କାମର୍ଥେ ।
କହନ୍ତି ସେ ଦିବାକର ଶୁଣିମା ଗୋ ମାତ
କଳ୍ପାସୁର ଯୁଦ୍ଧେ ମାରିଗଲା ମୋର ସୁତ
ସ୍ନାନକରି ଆସି ତାକୁ କରିବ ଭକ୍ଷଣ
କଣ୍ଠେ ବସି ଦୟାକର ମାତା ତତକ୍ଷଣ ।
ଆଦିତ୍ୟର ବଚନେ ସେ ଦେବୀ ଗୋସାମ
ଦୈତ୍ୟର କଣ୍ଠରେ ବିଜେ କଲେ ଠାକୁର
ସ୍ନାନ ଯାଇ ଆସି କୂଳେ ରକ୍ଷକୁଳବର
ପଡ଼ିଲାକ ନିଜପୁର ମନରେ ତାହାର ।
ମନେ ବିଚାରଇ ଆଗ ଯିବି ନିଜ ପୁର
ପଛେ ଆସି ଭକ୍ଷିବଇଁ ମାଂସକୁ ଏହାର ।
ଏମନ୍ତ ବିଚାରି ମନେ ରକ୍ଷକୁଳପତି
ଆପଣା ପୁରେ ପ୍ରବେଶ ହୋଇଲା ଝଟତି
ଏଥି ଉତ୍ତାରେ ପାହିଲା ସେଦିନ ରଜନୀ
ଗଗନରେ ଉଦେ ହେଲେ ପ୍ରଭୁ ଦିନମଣି ।
ସଂଗ୍ରାମେ ସେ କର୍ଣ୍ଣ ପଡ଼ିଥିଲା ଶରଘାତେ
ଗଣ୍ଡସ୍ଥଳେ ଆଦିତ୍ୟର କିରଣ ଲାଗନ୍ତେ ।

କୁଣ୍ଡଳୁଁ ଅମୃତ ଝରି ପଶିଲା ମୁଖରେ
ମୋହ ଭେଳ କର୍ଣ୍ଣବୀର ଉଠିଲା ହରଷରେ ।
ତକ୍ଷଣେ କର୍ଣ୍ଣ ପ୍ରାପତ ହେଲା ନିଜ ପ୍ରାଣ
ମୋହ ଭେଳ ବୀରବର ଉଠିଲା ତକ୍ଷଣ ।
ଧନୁ ତୂଣୀର ଲୋଡ଼ଇ ବୀର ଗୁଣଗ୍ରାହୀ
ଦେଖିଲା ଧନୁ ଆବର ତୂଣୀରହିଁ ନାହିଁ ।
ମନେ ବିଗୁରିଲା ନେଲା ଦୈତ୍ୟକୁଳଗଣ
ଶିର ଛେଦନ ନ କରି ରଖା କଲା ପ୍ରାଣ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଏମନ୍ତବେଳେ ଶ୍ରୀପତି ଦେବ ପଶୁପତି ।
ବ୍ରାହ୍ମଣ ରୂପ ଧାରଣ କରି ଦେବଜନ
ବନସ୍ଥ ଯେଉଁଠାରେ ଅଛି ବୀର କର୍ଣ୍ଣ ।
ବ୍ରାହ୍ମଣଙ୍କୁ ଦେଖି ଉଠି ବେଗେ ରାଧାସୁତ
ପାଦେ ପ୍ରଣମିଣ ଉଭା ହେଲା ଯୋଡ଼ି ହସ୍ତ ।
କହଇ ବିପ୍ରେ ଏ ବନେ ଅଇଲ କପାଇଁ
କଲ୍ମାସୁର ନାମେ ଏକ ଦାନବ ଅଛଇ ।
ମୋହର ସଙ୍ଗେ ସେ ଯୁଦ୍ଧ କଲା ଅପ୍ରମେୟ
ମୋତେ ମାରି ଧନୁ ନୋଣ ନେଲା ଦୈତ୍ୟରାୟ
ମୋହର ମାଂସ ଭକ୍ଷଣେ ଅଛି ତାର ମନ
ଦେଖିଲେ ତୁମ୍ଭଙ୍କୁ ନଶ୍ଚେ କରିବ ଭୋଜନ ।
ସଜ ଶୁଦ୍ଧମାଂସ ଯେବେ ପାଇବ ଯୁକତେ
ବାସି ମୃଗମାଂସ ସେହି ଭକ୍ଷିବ କେମନ୍ତ ।
କ୍ଷଣେହେଁ ନ ରହି ତୁମ୍ଭେ ଯିବାକ ପଳାଇ
ଘୋର ବନସ୍ତରେ ଆମ୍ଭେ ପଶିବା ନା ଯାଇ
ଶ୍ରୀହରି ବୋଇଲେ ଆମ୍ଭେ ସ୍ୱଭାବେ ବ୍ରାହ୍ମଣ
ଥିଲେ ମଲେ ଆମ୍ଭଙ୍କୁ ତ ନାହିଁ ନା ଦୂଷଣ ।
ତୁମ୍ଭେ ମହାବୀର ଅଟ କ୍ଷତ୍ରିକୁଳେ ଜାତ
ଶତ୍ରୁ ମୁଖୁ ପଳାଇଲେ ହେବୁ ନର୍କପ୍ରାପ୍ତ ।
କର୍ଣ୍ଣ ବୋଇଲେ ମୋହର ନାହିଁ ଧନୁବାଣ
କି ଯେନ ରଣ କରିବି ଥିଲେ ଛନ ପଣ ।
ବ୍ରାହ୍ମଣ ବୋଇଲେ ତୋତେ ଧନୁବାଣ ଦେଲେ
ଯୁଦ୍ଧ କରି ପାରିବୁ କି ସେ ଦୈତ୍ୟର କୂଳେ ।
କର୍ଣ୍ଣ ବୋଇଲେ ଆମ୍ଭେ ନ ଜାଣୁ ଅନ୍ୟ ଶିଧା
ପରଶୁରାମଙ୍କ ଶିରି ଦ୍ରୋଣଙ୍କର ଦକ୍ଷା ।
ବିପ୍ରେ ବୋଇଲେ ଯହିଁରେ ମାରିବ ବଇରୀ
ସେ ଉତ୍ତମ ଗୁରୁଧର୍ମ ଶାସ୍ତ୍ରରେ ବିସ୍ତରି ।

ବଇରୀକୁ ମାରି ପଛେ ରଖି ଗୁରୁଧର୍ମ
ଗୁରୁ ପ୍ରଶଂସା କରନ୍ତି ଦେଖି ପରାକ୍ରମ ।
ରାଧାର ନନ୍ଦନ ବୋଲେ ବାକ୍ୟ ଅନୁମତେ
ତୁମ୍ଭେ ବିପ୍ର ଧନୁଶର କାହୁଁ ଦେବ ମୋତେ
ଯେବେ ଅନୁଗ୍ରହ କରି ଦେବ ଧନୁବାଣ
ସୁମରିଲେ ଯେ ଶାରଙ୍ଗ ଧନୁ ନାରାୟଣ ।
ତକ୍ଷଣେ ଧନୁ ଆସି ହୋଇଲା ପ୍ରବେଶ
ତାହା ଦେଖି କର୍ଣ୍ଣବୀର ହୋଇଲା ହରଷ ।
ହରିହର ଦୁହେଁ ଯେନ ଦୁହିଙ୍କ ଅଙ୍ଗୁଳି
ନାରାଚ କରି ନିର୍ମାଣ କଲେ ଦୁହେଁ ମିଳି ।
କର୍ଣ୍ଣଙ୍କୁ ବୋଇଲେ ତୁ ହୋ ଯେନ ବେନିବାଣ
ଦାନବର ସଙ୍ଗେ ତୁମ୍ଭ କଲାବେଳେ ରଣ ।
ହୃଦକୁ ବିନ୍ଧିବୁ ତୁମ୍ଭ ଶୁକ୍ଳକର୍ଣ୍ଣ ଶରେ
କୃଷ୍ଣବର୍ଣ୍ଣ ନାରାଚକୁ ବିନ୍ଧିବୁ ନାଭିରେ ।
ତେବେ ଦଇତ ଛାଡ଼ିବ ତାର ନିଜ ପ୍ରାଣ
ଏମନ୍ତବେଳେ ମିଳିଲା ଆସି ଦୈତ୍ୟଗଣ ।
ରେରେକାର କରି କୋପେ ଡାକଇ ରାକ୍ଷସ
ହରିହର ବେନି ଦେବ ହୋଇଲେ ଅଦୃଶ୍ୟ ।
ରେ ରେ ନରାତ ବୋଲିଣ ଡାକେ ଦୈତ୍ୟରାୟେ
ପଥର ବୃଷ୍ଟି କଲା ସେ କର୍ଣ୍ଣର ହୃଦୟେ ।
ଦେଖି ବୀରକର୍ଣ୍ଣ କୋପେ ଧନୁ ଧରି କରେ
ନାରାଚକୁ ବସାଇଲା ଧନୁର ଗୁଣରେ ।
କର୍ଣ୍ଣ ପରିଯନ୍ତେ ତାକୁ ଆଣିଲା ଓଟାରି
ମନ୍ତ୍ର ସୁମରି ବିନ୍ଧିଲା ବାଣ ଯନ୍ତ୍ରକରି ।
ଦୃଷ୍ଟିର ଗୋଚରେ ଥାଇ ସେହି ରାଧାସୁତ
ହୃଦୟ ନାଭିକୁ ବିନ୍ଧି ଦେଲା ବେନି ଶସ୍ତ୍ର ।
ନାଭି ହୃଦୟ ଫୁଟିଣ ଗଲା ବେନି ବାଣ
ଅସ୍ତ୍ର ସଙ୍ଗେ ବାହାରିଲା ଦଇତର ପ୍ରାଣ ।
ପଡ଼ିଲା ଘୋର ଗର୍ଜନ କରି ଦୈତ୍ୟବୀର
ନିର୍ଭୟ କରି ଆଣିଲା ସେହି ବେନି ଶର ।
ଧନ୍ୟ ଧନ୍ୟ କର୍ଣ୍ଣ ବୋଲି ବୋଇଲେ ଅମରେ
କୁସୁମ ବରଷା କଲେ ରାଧାସୁତ ଶିରେ ।
କଲ୍ମାସୁର ଯେତେ କଷ୍ଟ ଦେବତାଙ୍କୁ ଦେଲା
ଆଦିତ୍ୟର ନନ୍ଦନ ତା ସବୁ ନାଶକଲା ।
ମନୁ ବୋଇଲେ ହେ ମୁନିବର କହ ମୋତେ
କଲ୍ମାସୁର ଯୁଦ୍ଧ କଥା କହିଲ ଅଗ୍ରତେ ।

କାହା ଆୟୁଧେ ନୋହିଲା ଭେଦ ତାର କାୟ
କାହାକୁ ସେବି ପାଇଲା ବର ଦୈତ୍ୟରାୟ ।
ମୁନି ବୋଇଲେ ସେହିଲା ଦେବ ଦିବାକର
ନିରାହାରେ ବଞ୍ଚିଲା ସେ ସହସ୍ର ବତ୍ସର ।
ନିରଞ୍ଜନ ଦୀକ୍ଷା ନେଇ ଶୂନ୍ୟେ କଲା ଧ୍ୟାନ
ଘୋର ତପ ଦେଖି ତୋଷେ କମଳଲୋଚନ ।
ବୋଇଲେ ରେ କଳ୍ପାସୁର ମାଗି ନେନ ବର
ଯାହା କି ମନରେ ବାଞ୍ଛା ଅଛଇ ତୋହର ।
ଦାନବ ବୋଇଲା ତୁ ହୋ କେବଣ ଦେବତା
ବଦନ୍ତି ଆଦିତ୍ୟ ଆମ୍ଭେ ଦିବସ କରତା ।
ଅସୁର ବୋଇଲା ତୁମ୍ଭେ ଯେବେ ଦେବୁ ବର
କଳ୍ପ ପରଯନ୍ତେ ମୁହିଁ ହୋଇବି ଅମର ।
ଦେବ ଦାନବ ମାନବ ଯକ୍ଷ ବିଦ୍ୟାଧର
ଗନ୍ଧର୍ବ ନାଗ ପିଶାଚ ଗୁହ୍ୟକ କିନ୍ନର ।
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା ରୁଦ୍ରଗଣ ଇନ୍ଦ୍ର
ବ୍ରହ୍ମା ବିଷ୍ଣୁ ଅଗ୍ନି ବାୟୁ ନୈର୍‌ଋତ ନାଗେନ୍ଦ୍ର
ବରୁଣ କୁବେର ଦେବ ତେତିଶ ଯେ କୋଟି
ଯାହାର ତୂଣୀରେ ଯେତେ ଶସ୍ତ୍ର କୁନ୍ତ ଯଷ୍ଟି
ବିଶ୍ୱକର୍ମାର ନିର୍ମାଣ ଶସ୍ତ୍ରମାନ ଯେତେ
ବ୍ରହ୍ମାର ନିର୍ମାଣ ଶସ୍ତ୍ର ଯଜ୍ଞାହୁତ ମତେ ।
ନ ଭେଦିବ ଏ ସମସ୍ତ ଶସ୍ତ୍ର ମୋର କାୟ
ଚଉଦ ଭୁବନ ମୁହିଁ କରିବଇଁ ଜୟ ।
ଅସ୍ତୁ ହେଉ ବୋଇଲେକ ଦେବ ଗ୍ରହପତି
ଦାନବ ଅଙ୍ଗେ ଲେପନ କଲେକ ବିଭୂତି ।
ହୃଦୟ ନାଭି ଏ ଦୁଇ ସ୍ଥାନହିଁ ଗଧାର
ବଜ୍ରବିଭୂତି ନ ଲାଗି ହୋଇଲା ଅନ୍ତର ।
ଅର୍କ ବିଦାରଣ ତହୁଁ ଗଲେ ଅନ୍ତର୍ଦ୍ଧାନେ
ବର ପାଇ ସେ ଦାନବ ଗଲା ନିଜସ୍ଥାନେ ।
ଆଦିତ୍ୟ ବରେ ଜଗତଜନ ସାଧି କଲା
ମୃତ୍ୟୁ ପ୍ରାପତକାଳେ ସେ କର୍ଣ୍ଣଙ୍କୁ ଭେଟିଲା ।
ହରିହରଙ୍କର କୂଟେ ପ୍ରାଣେ ହେଲା ନାଶ
ଅଙ୍ଗୁଳିକୁ ଛେଦି ବାଣ କଲେ ପୀତବାସ ।
ନାରାୟଣଙ୍କ ଅଙ୍ଗୁଳି ଛେଦନ ଯେ ବାଣ
ନୀଳବାଣ ନାମ ତାର ସ୍ୱୟଂ ନାରାୟଣ ।
ମହାଦେବଙ୍କ ଅଙ୍ଗୁଳି ହେଲା ଯେଉଁ ଶର
ଭୁଜବାଣ ନାମଗୋଟି ହୋଇଲା ତାହାର ।

ଦୈତ୍ୟ ପଡ଼ନ୍ତେ ଅଇଲେ ସେହି ବେନିଜନ
ବାବୁ ଦେବତାଙ୍କ ଶତ୍ରୁ ମାଇଲୁ ତୁ କର୍ଣ୍ଣ ।
ବୋଇଲେ ଯେ ବରମାଗ ଦେବା ଆମ୍ଭେ ଦୁହେଁ
କର୍ଣ୍ଣ ବୋଇଲା ଗୋସାଇଁ କହ ତୁମ୍ଭେ କିଏ ।
କହନ୍ତି ଯେ ରୁଦ୍ର ବିଷ୍ଣୁ ଆମ୍ଭେ ବେନିଜନ
ଶୁଣିଣ ଶୋଇଲା ପାଦେ ପଡ଼ି ବୀରକର୍ଣ୍ଣ ।
ତୁମ୍ଭଙ୍କୁ ନ ଚିହ୍ନି କହିଗଲି ମନ୍ଦବାଣୀ
ମମଦୋଷ କ୍ଷମ ଶୂଳପାଣି ଚକ୍ରପାଣି ।
ଯେବେ ବର ଦେବ ଦେବ ଏହି ବେନି ଶର
ଶୁଣିଣ ସେ ବେନି ଜନ ଦେଲେ ଏ ଉତ୍ତର ।
ତୁମ୍ଭ ମହାଦାନୀ ଅଟୁ ରାଧାର ତନୟ
ବିପ୍ରରୂପେ ଆସି ଦେବ ଦାନବ ନିଚୟ ।
ଦାନ ମାଗି ତୋତେ ନେଇଯିବେ ଏହି ବାଣ
ନିମିଷକେ ଜିଣିବେ ଏ ଚଉଦ ଭୁବନ ।
ସାକ୍ଷାତେ ଅଟନ୍ତି ହରିହର ଏହି ଶର
ଏ ବାଣେ ମରିବେ ବ୍ରହ୍ମା ଇନ୍ଦ୍ର ହରିହର ।
ଏ କଥାଗୋଟି ବିଚାର କର ତୁମ୍ଭ ମନେ
ଶୁଣି ହସ୍ତ ଦେଲା ବୀର କର୍ଣ୍ଣ ଶିରେ କାନେ ।
ଗୋସାଇଁ ମୁଁ ଗୁପ୍ତ କରିଥିବି ଏହି ଶର
ବିଶୁଦ୍ଧ ଚିତ୍ତରେ ଯେବେ ଦେବ ତୁମ୍ଭେ ବର
କାହାକୁ ବାବୁ ଏ ଶର ନେନ ନ ମାରିବୁ
ଏ ଶର ମହିମା କେହି ନ ଜାଣଇ ବାବୁ ।
ପ୍ରାଣକୁ ଯେବେ ତୋହର ପଡ଼ିବ ବିପତ୍ତି
ମାରିବୁ ତେବେ ଏ ଶର ନେନ ମହାକ୍ଷତ୍ରୀ ।
ଏତେ କହି ଦୁଇବାଣ ଦେଲେ ହର ହରି
ସେ ଶସ୍ତ୍ର ଥୋଇଲା କର୍ଣ୍ଣ ବେନି ଜାନୁ ଚିରି ।
ଜାଣନ୍ତି ଯେ ହରିହର କର୍ଣ୍ଣ ଜଣ ତିନି
ବେଦବ୍ୟାସ ଜାଣନ୍ତି ସେ ଯେଣୁ ମହାଜ୍ଞାନୀ ।
ସର୍ବଜ୍ଞ ଯେ ମନ୍ତ୍ରୀ ସହଦେବ ଯେ ଜାଣଇ
ଏହି ପାଞ୍ଚଜଣ ଭିନ୍ନ ନ ଜାଣନ୍ତି କେହି ।
ବେନି ଦେବତାଏ ତହୁଁ ଗଲେ ଦେଇ ବର
ଆପଣା ପୁରକୁ ଗଲା ଆଦିତ୍ୟକୁମର ।
ସେ ରାଜା କଳ୍ପର ମୃତ୍ୟୁ ଦେଖି ସର୍ବସୁରେ
ଯେ ଯାହା ମନ୍ଦିରେ ଯାଇ ମିଳିଲେ ସ୍ୱର୍ଗରେ ।
ଚିନ୍ତା ଛାଡ଼ିଲେ ବନିତା ପୁତ୍ରମାନେ ନେନ
ଉଶ୍ୱାସ ପାଇ ଆନନ୍ଦ ହୋଇଲା ମେଦିନୀ ।

ଦୁଷ୍ଟ ନିବାରନ୍ତେ ସୃଷ୍ଟି ହେଲେ ଚଣ୍ଡୀ ଘୁଡ଼ି
ମୁଖସିନ୍ଧୁରେ ସବୁର ଚଉ ଗଲା ବୁଡ଼ି ।
ଶୁଣ ବୈବସ୍ୱତ ମନୁ ମଧ୍ୟପର୍ବ ଗୀତ
କଳମ୍ବାସୁର ବଧ ଯେହ୍ନେ କର୍ଣ୍ଣରେ ଶୁଣନ୍ତି ।
ସ୍ତ୍ରୀହତ୍ୟା ବ୍ରହ୍ମହତ୍ୟା ଗୋରୁ ଶିଶୁବଧ
ସୁବର୍ଣ୍ଣ ଚୋରି କରଇ ସୁରାପାନ ସଧ ।
ଏହି ମହାପାପମାନ ନାଶଯାଇ ଶୁଣି
ଭାରତ ଶୁଣି ଦକ୍ଷିଣା ନ ଦିଏ ଯେ ପ୍ରାଣୀ ।
ଶତେକଜନ୍ମ ପର୍ଯ୍ୟନ୍ତେ ବଧିର ହୁଅନ୍ତି
ପୁରାଣ ଶୁଣିବା ଫଳ ପୁଣି ସେ ନ ପାନ୍ତି ।
ହେ ପ୍ରାଣୀମାନେ ଦକ୍ଷିଣା ଯାଚି ପୁଣିଦେବ
ନିରନ୍ତର ଶ୍ରୀଭାରତ ଚିନ୍ତା କରୁଥିବ ।
ପଦେ ଅଧେ ଅକ୍ଷରରେ କଲେ ସୁମରଣ ।
ନାଶ କରନ୍ତି ସକଳ ବ୍ୟାଧି ନାରାୟଣ
ଜୟ ତୁ ଜଗତନାଥ ଜଗତଜୀବନ
ଜୟ ତୁ ଜଗତନାଥ ରାଜୀବଲୋଚନ ।
ଶଙ୍ଖ ଚକ୍ର ଗଦାଧର ଗରୁଡ଼ ଆସନ
ନୀଳଗିରିବାସୀ କୁମ୍ଭଧାରୀ ଭଗବାନ ।
ଭକତ ଦୁଃଖନାଶନ ଶମ୍ଭୁ ଅନ୍ତକାରୀ
ପତିତପାବନ ଦେବ ଦେବ ଦଇତ୍ୟାରି ।
ସିନ୍ଧୁର ଉତ୍ତରତୀରେ ଅଟେ ତୁମ୍ଭ ବାସ
ଦରିଦ୍ରଜନ ବାନ୍ଧବ କମଳାବିଳାସ ।
ଦୁଃଖୀର ଦୁଃଖକୁ ଦେଖି କ୍ଷଣେ ନ ସହ ତ
ଆସ ଆସ ବୋଲି ଉଚେ ଶରଣ ଯାଚତ ।
ତେଣୁ ଜନଙ୍କର ମନ ସେ ପାଦେ ନମଇଁ
ରକ୍ଷାକର ଦେବ ଦେବ କମଳାର ସାଇଁ ।
ତୁମ୍ଭ ପାଦ ବିନୁ ମୁହିଁ ଅନ୍ୟ ନ ଜାଣଇ
ଆଶ୍ରାକଲି ମୁଁ ତୁମ୍ଭର ନାମ ହୃଦେ ଧ୍ୟାଇ ।
ଜୟ ଜୟ ପଦ୍ମନାଭ ଜୟ ପଦ୍ମପାଣି
ଜୟ ପଦ୍ମାକ୍ଷୀ ପଦ୍ମାକ୍ଷୀ ଯାହାର ଘରଣୀ ।
ଜୟ ଜୟ ପଦ୍ମମୁଖ ଜୟ ପାଦପଦ୍ମ
ଜୟ ଜଗଜ୍ଜନ ସାକ୍ଷୀ ଜଗଜ୍ଜନ ସଦ୍ମ ।
ଅଭୟବର ଶାରଳା ଦାସକୁ ଯେ ହେବା
ସେ ପଦ୍ମପାଦରେ ରହୁ ନିତ୍ୟ ମୋର ସେବା
ବନ୍ଦଇ ଯେ ଲମ୍ବୋଦର ଗିରିଜାନନ୍ଦନ
ଇନ୍ଦୁର ପିଠିରେ କରୁ ସର୍ବଦା ଗମନ ।
ସର୍ବଦା ଅମୃତ ଲଡ଼ୁ ତୋହର ଭୋଜନ
ନୃତ୍ୟରସ ବିନୋଦେ ତୁ ତୋଷ୍ ଶିବମନ ।
ଅନ୍ଧକ ବିନାଶ ଗଲା ଯାର ବୁଦ୍ଧିବଳେ
କାଶୀପୁର ଧ୍ୱଂସ ଗଲା ତୋର କୋପାନଳେ
ମଣିକର୍ଣ୍ଣିକାତୀର୍ଥରେ ବିଜେ ସଦାଶିବ
ପରମାନନ୍ଦ ପୁରୁଷ ନାହିଁ ଯାହ ଭବ ।
ମହାପ୍ରଳୟ କେବଳ ତୁମ୍ଭ ନାଶ ଜାଣୁ
ମନୁ ଏକଲୁ ଦିବସ ପ୍ରାପ୍ତେ ତୁମ୍ଭ ମଣୁ ।
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ଏ ପଞ୍ଚ
ମହାଭୂତ ତୁଲେ ତୁମ୍ଭେ ନିସ୍ୱାର ଦଞ୍ଚ ।
ଶିରେ ସିନ୍ଦୂର ତୋ ଗଳେ ପାରିଜାତ ମାଳେ
ମତ୍ତ ମାତଙ୍ଗ ନାଥ ତୋ ଗଣ୍ଡେ ସଦା ଲୁଳେ
ଗଣେଶଙ୍କ ପଦ୍ମ ପାଦେ ପଶିଲି ଶରଣ
ଉଦ୍ଧର ଧର ହେ ମୋତେ ଗିରିଜାନନ୍ଦନ ।
କପାଳେ ଲିପ୍ତ ଯାହାର ଶ୍ରୀଖଣ୍ଡଚନ୍ଦନ
ଗଜଦନ୍ତ ଥୋରହସ୍ତ ତୋର ଗଜାନନ ।
ଅନନ୍ତ ବାସୁକୀ ତୋର ଭୁଜର କଙ୍କଣ
ତୋହର ଚରଣ ତଳେ ପଶିଲି ଶରଣ ।
ଅଯୋନି ସମ୍ଭୂତ ତୋତେ ଦୁର୍ଗା କଲେ ଜାତ
ପାର୍ବତୀ ଜନନୀ ତୋର ସଦାଶିବ ତାତ ।
ରଖିଲୁ ଦକ୍ଷିଣଦ୍ୱାର ନାଥ ଭୁଜବଳେ
ସୁମରନ୍ତେ ବିଘ୍ନ ତୁମ୍ଭ ଖଣ୍ଡୁ ଅବହେଳେ ।
କପଟେ ଅମୃତ ଲଡ଼ୁ କଲୁ ତୁ ଭୋଜନ
ପରଶୁ ପାଶ ଅଙ୍କୁଶ କରକୁ ଶୋଭନ ।
ଶ୍ୱେତମଣି ମୁକୁଟ ତୋ ଶିରେ ପାଏ ଶୋଭା
ଲଲାଟରେ ବିରାଜଇ ସେ ମୁକୁଟ ପ୍ରଭା ।
ଏ ତୋର ଚରଣେ ନାଥ ଲୁଚୁ ମମ ମାଥ
ପଦସ୍ତୁରଣ ବରହିଁ ଦେବା ଗଣନାଥ ।

---

## କୁମ୍ଭକ ବଧ

ଏଥୁ ଅନନ୍ତରେ ପୁଣି ବୈବସ୍ୱତ ମନୁ
ପାଦ୍ୟ ଅର୍ଘ୍ୟେ ପୂଜାକରି କୁମ୍ଭଋଷି ସୁନୁ ।
ଅର୍ଜୁନ ତ ଯାଇ ବନବାସରେ ରହିଲେ
ତହୁଁ ସେ ଅନେକ ପୁଣ୍ୟମାନହିଁ ସଞ୍ଚିଲେ ।
ଯୁଧିଷ୍ଠି ଭୀମ ନକୁଳ ସହଦେବ ବୀର
ଏ କେବଣ କୃତ୍ୟ କଲେ କହ ତପସ୍ବୀର ।

ଅଗସ୍ତି ବୋଲନ୍ତି ଶୁଣ ଆହେ ମନୁବସ୍ତ
କୁମ୍ଭକ ବଧକଲା ଯେ ପବନ ତନୟ ।
ମୁନି ବୋଇଲେ ଏ ବଡ଼ ସୁସଙ୍ଗ ପ୍ରସ୍ତାବ
ଏ କଥା ମୋତେ କହିବା ହେଉ ମୁନି ଦେବ
କାହାର ପୁତ୍ର ହେ ବୀର କାହାକୁଳେ ଜାତ
କେମନ୍ତେ ମାରୁତି କଲା ତାହାକୁ ନିହତ ।
ବଦନ୍ତି ଅଗସ୍ତି ଯେ ମୁନି ବ୍ରହ୍ମବେତ୍ତା
ପର୍ବତଙ୍କୁ ଭୁ ବହୁତ ଦିନର ବାରତା ।
ଆଦି ସିଂହକାର ତହୁଁ ଉତପତି ବହ୍ନି
ସାହୁର ନନ୍ଦନ ଅଟେ ଦୈତ୍ୟ ବୀରବାହୁ ।
ବୀରବାହୁର ନନ୍ଦନ ଅଟେ ଜମ୍ଭଦୈତ୍ୟ
ଅମର ବିବାଦେ ନାଶକଲେ ପୁରୁହୂତ ।
ବଜ୍ରରେ ତା ଶିର ଇନ୍ଦ୍ର ପକାଇଲେ ଛେଦି
ଜମ୍ଭଦୈତ୍ୟ ନାଶିବାରୁ ନାମ ଜମ୍ଭଭେଦୀ ।
ଜମ୍ଭଦୈତ୍ୟର ନନ୍ଦନ ଅଟେ ଲୌହଶିର
ଚଣ୍ଡୀଯୁଦ୍ଧେ ନାଶଗଲା ସେ ମହାଅସୁର ।
ଲୌହଶିରର ନନ୍ଦନ ଅଟଇ ଭାସ୍କର
ଭାସ୍କର ନନ୍ଦନ ଅର୍କ ନାମରେ ଅସୁର ।
ସର୍ବଦା ଆବୋରିଥାଇ ସେହି ଅର୍କତୀର୍ଥ
କଟସୃବନ୍ଧୁ ବିବାଦେ ନାଶିଲେ ଆଦିତ୍ୟ ।
ଅର୍କ ଦୈତ୍ୟର ନନ୍ଦନ ଉଦପା ଅସୁର
ଉଦପାସୁର ନନ୍ଦନ ଦର୍ପାସୁର ବୀର ।
ଦର୍ପାସୁରର ନନ୍ଦନ ଅଟେ ମହିଦାସ
ମହିଦାସର ନନ୍ଦନ ମାୟା ଯେ ରାକ୍ଷସ ।
ମାୟାକୁ ମାଡବସିଲେ ବୀର ହନୁମନ୍ତ
ଏହାର ନନ୍ଦନ ଅଟେ ଶ୍ରବଣା ଦଇତ୍ୟ ।
ଶ୍ରବଣାର ନନ୍ଦନ ଯେ ଅଶ୍ଳେଷା ଅସୁର
ତାକୁ ବଧକଲେ ବାଣେ ବୀର ଷଣ୍ମାତୁର ।
ଅଶ୍ଳେଷାର ନନ୍ଦନ ଯେ କଲ୍ପାସୁର ଦୈତ୍ୟ
ହରିହର ବାଦେ ତାକୁ କଷ୍ଟେ କଲେ ହତ ।
କଲ୍ପାର ନନ୍ଦନ ଅଟେ କୁମ୍ଭକ ଅସୁର
ମହାପ୍ରତାପୀ ଅସୁର ପୃଥ୍ୱୀରେ ସେ ବୀର ।
ବାଳକାଳୁଁ ସେବିଲା ସେ ଦେବ ଦିବାକର ।
ତୋଷେ ନିରଞ୍ଜନ ଦେବ ଦେଲେ ତାକୁ ବର
ମାଗିଲା ଦେବ ଦାନବେ ନୋହିବି ମୁଁ ବଧ
ଅସ୍ତ୍ର ନୋହିଉ ବୋଲି ତାକୁ ବୋଇଲେ ବିବୁଧ
ମନୁଷ୍ୟଙ୍କୁ ଗ୍ରାହ୍ୟ ବୋଲି ନ କଲା ସେ ଖ୍ୟାତି
ଏଥିରେ ରଖିଲେ ତାର ମୃତ୍ୟୁ ପ୍ରଜାପତି ।
ରଥ ଗଜ ଅଶ୍ୱ ତାର କେହି ନାହିଁ ସଙ୍ଗେ
ଜିଣିଲା ସେ ବ୍ରହ୍ମା ସୁର ଇନ୍ଦ୍ରଗଣ ରଙ୍ଗେ
ସେ କୁମ୍ଭକ ଦୈତ୍ୟ ବଳେ ଆକାଶରେ ପଶି
କୁବେର ଭଣ୍ଡାରୁ ନେଇଗଲା ଧନରାଶି ।
ବିଦ୍ୟାଧରୀମାନଙ୍କୁ ସେ ଆଣେ ଧରି ବଳେ
ଦେବେ ରହି ନ ପାରିଲେ ଗଗନ ମଣ୍ଡଳେ ।
ଇନ୍ଦ୍ର ଚନ୍ଦ୍ର ବରୁଣ ଯେ କୁବେର ପବନ
ଯମ ଅଗ୍ନି ନଇର୍ଋତ ଗ୍ରହ ତାରାଗଣ
ଏମାନେ ସମସ୍ତେ ମିଳି ଘୋରଯୁଦ୍ଧ କଲେ
ମହାପ୍ରତାପୀ କୁମ୍ଭକ ଦାନବର ତୁଲେ ।
ବୈଶାଖ ଶୁକ୍ଳପକ୍ଷ ତୃତୀୟାର ଦିନ
ରୋହିଣୀ ନକ୍ଷତ୍ର ଭୃଗୁବାର ବିଦ୍ୟମାନ ।
ତୈତିଲ ନାମେ କରଣ ସଉଭାଗ୍ୟ ଯୋଗ
ରୋହିଣୀ ଘରେ ସେ ଦିନ ବୃଷ କରେ ଭୋଗ
ସ୍ୱନକ୍ଷତ୍ର ବନ୍ଦାପନା ଇନ୍ଦ୍ରର ସେ ଦିନ
ମନର ଆନନ୍ଦେ ସେ ଯେ ଦେବ ମଘବାନ ।
ବସନ୍ତ ଉତ୍ସବ ଏକ ଯାତ୍ରାର ବିଧାନେ
ଅନନ୍ତ ସମ୍ଭାର ଘେନି ବୃନ୍ଦାରକମାନେ ।
ନନ୍ଦନବନେ ଆକାଶଗଙ୍ଗା ନଦୀକୂଳେ
ବସିଲେ ଆସ୍ଥାନ ସ୍ଥାପି ଦଶଦିଗପାଳେ ।
ଚଉଷଠି କୋଟି ବିଦ୍ୟାଧର ବିଦ୍ୟାଧରୀ
ମହାସମାରୋହେ ତହିଁ ବିଜେ ଅପସରୀ ।
ସାରି ଗାମା ପା ଧା ନି ସା ସପ୍ତସ୍ୱର ଧରି
ବୀଣା ଘେନି ନୃତ୍ୟଗୀତ କରନ୍ତି ସୁନ୍ଦରୀ ।
କେଶିନୀ ଉର୍ବଶୀ ମେଧା ସୁମେଧା ଚରିଧା
ଶାନ୍ତ ସୁମତି ସୁକାନ୍ତ ରତି ପରିଛଦା ।
ସୁବାସିନୀ ବିଳାସିନୀ ଶ୍ରୀଯୁକ୍ତା ସରସ୍ୱତି
ମହା ସମାରୋହେ ନୃତ୍ୟଗୀତ କରୁଛନ୍ତି ।
ସାରି ଗାମା ପାଧା ନିସା ସରସ୍ୱତୀ ବୀଣା
ବିଜାନ୍ତି ରସନାୟିକା ମଧ୍ୟେ ହୋଇ ଗଣା ।
ରମ୍ଭା ଉର୍ବଶୀ ମେନକା କଳା ଚନ୍ଦ୍ରରେଖା
ମୋହିନୀ ଚଞ୍ଚଳା କାମକଳା ମଦନିକା ।
ମାଳିନୀ ଲଳିତା ଆଦି ସ୍ୱର୍ଗ ଅପସରୀ
କାଞ୍ଚି ସୁମାଳୀ ମାଳତୀ ଅନଙ୍ଗ ସୁନ୍ଦରୀ ।

ଏହାଙ୍କର ମୂଳେ ଚଉଷଠି ବଳାସିମା
ଚଉଷଠି ପରବନ୍ଧେ ଲଗାଇ ଖଞ୍ଜଣି ।
ସନକ ସନନ୍ଦ ଆଦି ଭୃଗୁ କଉଶିକ
ଏହାଙ୍କୁ ଘେନ ବସିଲେ ଅମରନାୟକ
ଦେବର୍ଷି ରାଜର୍ଷି ବ୍ରହ୍ମର୍ଷି ଯେତେ
ବସନ୍ତ ଉତ୍ସବ ଯାତ୍ରା କରନ୍ତି ସମସ୍ତେ ।
ବଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧର
ଏମନ୍ତବେଳେ ବାହାରିଲା କୁମ୍ଭକ ଅସୁର ।
ଅମରାବତୀ ନଗରରେ ପଶିଲା ଗରଜ
ଶବଦରେ ପର୍ବତ କି ପଡ଼ୁଅଛି ବଜ୍ର ।
ସ୍ତ୍ରୀଶି ପୁରୁଷ ଯେତେକ କୁମାର କୁମାରୀ
ସମସ୍ତେ ପ୍ରବେଶ ଯାତ୍ରା ରସରଙ୍ଗ କରି ।
ପ୍ରଚଣ୍ଡବଳୀ ଅମରପୁର କରେ ରକ୍ଷା
ସଙ୍ଗେ ଲକ୍ଷେକ ଗନ୍ଧର୍ବ ସମରେ ନିଃଶଙ୍କା
ସମସ୍ତ ସମ୍ପଦ ଘେନ ଦେବ ସୁନାସୀର
କରନ୍ତି ଯାତ୍ରା ଆକାଶଗଙ୍ଗା ନଦୀତୀର ।
ଦାନବ ପଶନ୍ତେ ସ୍ୱର୍ଗେ ଆଗରୁ ଓଗାଳ
କାହିଁର ଦର୍ପିଷ୍ଟ ତୋର ଭରସା ଏଭଳ ।
ଧାଇଁଲେ ସେ ବିଦ୍ୟାଧରେ ରେରେକାର କରି
ନିଜ ନିଜ ଆୟୁଧକୁ ଯେତ୍ନେ କରେ ଧରି ।
ସ୍ୱର୍ଗପୁରେ ନିଶାଚର ପଶିଲାକ ପେଲ
ଦୁଷ୍ଟ ଅସୁରକୁ ଦେଖି ସେ ପ୍ରଚଣ୍ଡବଳୀ ।
ଗଦାବରକୁ ବୁଲାଇ ପିଟିଲା ତା ଶିରେ
ନିଦ୍ରା ଭଙ୍ଗିଗଲା ଦୈତ୍ୟ ଉଠି କୋପଭରେ ।
ଦରାଣ୍ଡି ତା କେଶଧରି ଦେଲା ତାକୁ ଫିଙ୍ଗି
ଗଙ୍ଗାକୂଳେ ପଡ଼ିଲା ସେ ହୋଇ ସ୍ଥାନତ୍ୟାଗୀ
ଭିତରେ ଦାନବ ବୀର ପଶିଲା ଗରଜି
ଦ୍ୱାରଗଡ଼ ଜଗତୀକୁ ପକାଇଲା ଭଜି ।
ମେଡ଼ ମଣ୍ଡପ ଦେଉଳ ଯେତେକ ଅଟ୍ଟାଳ
ସମସ୍ତ ଭାଙ୍ଗଇ ପଶି ଦୈତ୍ୟ ମହାବଳୀ ।
ପୁରେ ପୁରେ ଦାନବ ସେ ଲୋଡ଼ଇ ଉଦ୍ଦେଶି
ନ ଦେଖି ଦାନବ ବୀର ଲୋଡ଼ଇ ଆକାଶି
ନାରଦ ପ୍ରବେଶ ଯାଇ ଉତ୍ସବ ନଗର
ଦେଖି ପୂଜା କଲେ ତାଙ୍କୁ ଦେବ ସୁନାସୀର
ଇନ୍ଦ୍ର ବୋଇଲେ ହେ ମୁନି ବ୍ରହ୍ମାଙ୍କ କୁମର
କି କଥା ସମ୍ଭାବନ୍ତ କହ ମୋ ଆଗର ।

ନାରଦ ବୋଇଲେ ତୁମ୍ଭେ ଶୁଣ ସୁରପତି
ଅମରାବତୀ ନାଶିଲା ଅଶ୍ଳେଷାର ନାତି ।
ପ୍ରଚଣ୍ଡବଳୀକୁ ଦେଲା ରୋଷେ ବେଗେ ଫିଙ୍ଗି
ଦ୍ୱାରସ୍ୱର୍ଗପୁର ତୋର ପକାଇଲା ଭାଙ୍ଗି ।
ଶୁଣି ସ୍ତମ୍ଭୀଭୂତ ହେଲେ ଦେବ ମଘବାନ
ଯାତ୍ରା ଭାଙ୍ଗିଦେଲେ ଏଣେ ମନ ଛନ୍ନଛନ୍ନ ।
ଦେବତାମାନେ ବୋଇଲେ ଇନ୍ଦ୍ର ଦେବତାଙ୍କୁ
ଆମ୍ଭେ ଯାଉଅଛୁଁ ଏବେ ଅମ୍ଭ ଭବନକୁ ।
ଇନ୍ଦ୍ର ବୋଇଲେ ଯେ ତୁମ୍ଭେମାନେ ସଜ ହୁଅ
ମାରିବା ସେ ଦାନବକୁ ଫେଡ଼ିବା ସଂଶୟ ।
ଚିତ୍ରସେନ ବୃଦ୍ଧଶ୍ରବା ଅଙ୍ଗାରପର୍ଣ୍ଣଗ
ଜୟନ୍ତ ଅଜୟସେନ ତୁଳାକର୍ଣ୍ଣ ସଙ୍ଗ ।
ଏହାଙ୍କ ତୁଲେ ଗନ୍ଧର୍ବବଳ ନବଲକ୍ଷ
ଏହାଙ୍କୁ ଶୀଘ୍ରେ ଆଦେଶ କଲେ ସହସ୍ରାକ୍ଷ ।
ରଥ ଗଜ ଅଶ୍ୱ ତୁଲେ ସକଳ ସଇନ୍ୟେ
ସଜ ହେଲେ ଯାଇ ଦେବରାଜଙ୍କ ବଚନେ ।
ଆପେ ସୁରନାଥ ଐରାବତ ହସ୍ତୀ ମଣ୍ଡି
ଉପରେ ଥୋଇଲେ ଚନ୍ଦ ତୋମର ଭୁଷଣ୍ଡି ।
ଭିତରେ ଖଞ୍ଜଣି ହୀରା ମାଳାର ପରଡ଼
ଲୁହାର ଜାଲ ଆବର ତା ଉପରେ ବାଡ଼ ।
ଭିତରେ ସେନା ବାହାରେ ବସେ ବିଦ୍ୟାରଙ୍ଗ
ଅଷ୍ଟାଙ୍ଗ ଶସ୍ତ୍ରରେ ମଣ୍ଡି ଅଛନ୍ତି ମାତଙ୍ଗ ।
ଘଣ୍ଟ ଝାଗୁଡ଼ ମାନରେ ଶୋଭା ପାଇ କଣ୍ଠ
ଶୁକଳ ଦୋସର ଚନ୍ଦ ସୁବର୍ଣ୍ଣର ଘଣ୍ଟ ।
ଉପରେ ଶୁକଳ ନେତ ପାଟ ଲୁଗା ଛନ୍ଦ
ନାଗୁଡ଼ି ଚନ୍ଦ୍ରକରଣ ପଙ୍ଖା ଉଚ୍ଚେ ବାନ୍ଧ ।
କୁମ୍ଭସ୍ଥଳରେ ବଚନ ରତ୍ନମାନ ଖଞ୍ଜି
ମୁକୁତାର ତୁଲେ ହୀର ମାଳା ପୁଞ୍ଜି ପୁଞ୍ଜି ।
ଉପରେ ଶୋଭେ ମାଣିକ୍ୟ ମଣି କେତେ କେତେ
ଚଉକତରେ ଲମ୍ବିଲ ମୁକୁତାର ଝରା ।
ଛତ୍ର ଉପରେ ବତିଶ ଆୟୁଧ ଅଛଇ
କୁନ୍ତ ଖଡ଼ଗ ଟାଙ୍ଗିଆ ଧନୁଶର ଥୋଇ ।
ସାଙ୍ଗି ସାବଳ ମୁଷଳ ଶକ୍ତି ବଜ୍ର ଯଷ୍ଟି
ତୀକ୍ଷ୍ଣମୁନା ଅସିପତ୍ର ଭଲ୍ଲି କାତି ଭୁଷ୍ଟି ।
ଶୂଳ ଚକ୍ର ଗଦାବର ପଟ୍ଟିଶ ମୁଦ୍‌ଗର
ଭୁଷଣ୍ଡୀପରଶୁ ଆଦି ବତିଶ ପ୍ରକାର ।

ଏସନ ରୂପେ ବଜସ୍ପୃ ତହିଁ ଶଚୀପାଇଁ
ରେରେ ଦାନବ ବୋଲି ସେ ଓଗାଳିଲେଯାଇ
ବାସବର ସଜଦେଖି ବିଦ୍ୟାଧରମାନେ
ସମସ୍ତେ ଶସ୍ତ୍ର ପିଟିଲେ କୋପେ ଏକମନେ
ଶସ୍ତ୍ର ପଡ଼ନ୍ତେ ଅସୁର ନ କରଇ ଭୟ
ସେ ତାହା ଜାଣଇ ପିଚକାରି ଜଳପ୍ରାୟ ।
ଆପେ ଦେବଇନ୍ଦ୍ର କୋପେ ବହୁ ଶସ୍ତ୍ର କଲା
ଶରମାନ ତା ଦେହରେ ପଡ଼ି ଚୂର ଗଲା
ବଜ୍ରଶକତି ବୁଲାଇ ଇନ୍ଦ୍ର ବେଗେ ପିଟି
ଦେଖି ଦାନବ ପାତିଲା ତାର ମଥା ଗୋଟି ।
ପର୍ବତ ଚୂର୍ଣ୍ଣ ହୁଅଇ ଯେଉଁ ବଜ୍ର ପଡ଼ି
ଦଇତ ମସ୍ତକେ ପଡ଼ି ସେ ଗଲାକ ଉପୁଡ଼ି ।
ଶକ୍ତି ଗୁଣ୍ଡ଼ଣ ହୋଇଲା ଇନ୍ଦ୍ର ହୀନବୀର୍ଯ୍ୟ
ତା ଦେଖି କମ୍ପଇ ଦୁଷ୍ଟ କୁମ୍ଭକ ଦନୁଜ ।
ମହାକୋପେ ଧାଇଁଲା ସେ ରେରେକାର କରି
ଇନ୍ଦ୍ର ଉପରେ ପିଟଇ ମୁଦ୍ଗର ଧରି ।
ମୁଦ୍‌ଗର ପିଟନ୍ତେ ଦେଖି ଦେବ ମଘବାନ
ଐରାବତକୁ ଘୁଞ୍ଚାଇ କଲେ ପଳାୟନ ।
ଦିଗପାଳେ ପଳାଇଲେ ଯେ ଯାହା ପୁରକୁ
ଇନ୍ଦ୍ରଦେବ ପଳାଇଲେ ନନ୍ଦନବନକୁ ।
ବିଦ୍ୟାଧରମାନଙ୍କୁ ସେ ମାଇଲା ଥୋକାଏ
ଦାନବରକ୍ଷାର୍ଥେ ମେରୁ ଉହାଡ଼କୁ ଯାଏ ।
ଅନେକ ଜୁର କଲା ସେ ଦେବଙ୍କ ଭଣ୍ଡାର
ବାହୁଡ଼ଇ ଆପଣାର ଭୁବନେ ଅସୁର ।
ପ୍ରବେଶ ହୋଇଲା ଆସି ଆପଣାର ପୁରେ
ରଜନୀ ପ୍ରକାଶେ ଉଦେ ହେଲେ ଦିନକରେ
ପୁଣିହିଁ ସଜ ହୋଇଲା କୁମ୍ଭକ ଦଇତ
ଏକହସ୍ତେ ମୁଦ୍ଗର ଏକହସ୍ତେ କୁନ୍ତ ।
ମହାମତ୍ତ ହୋଇ ବୀର ଆସେ କୋପଭରେ
କଣ୍ଠ ଉତ୍କଣ୍ଠିତ ଶ୍ୱାସ ବହେ ଖରତରେ ।
ସିଂହନାଦ କରି ଧାଇଁ ଆସଇ ରାକ୍ଷସ
ଅଳକାପୁରେ ହୋଇଲା ଯାଇ ସେ ପ୍ରବେଶ ।
ଶୁଣି କୁବେର ମନରେ ପାଇ ମହାତ୍ରାସ
ସୈନ୍ୟଙ୍କୁ ବୋଲେ ପଳାଇ ଯିବା ଆମ୍ଭେ ଆସ
ନବସାଗର ଯେ ଯକ୍ଷରାଜାର ସଇନ
ବରୁଣପୁରେ ପଳାନ୍ତି ଭଣ୍ଡାରକୁ ଘେନ ।

ଅମର ଭଗ୍ନ ଦେଖି ସେ ଅଳକାର ପତି
ଅନ୍ତର ହୋଇଲା କଡ଼ି ନେଇଣ ସମ୍ପତ୍ତି ।
କୁମ୍ଭକ ପ୍ରବେଶ ହେଲା କୁବେରର ପୁରୀ
ରକ୍ଷପାଳଙ୍କୁ ମାଇଲା କରେ କେଶ ଧରି ।
ଘରେ ଘରେ ପଶି ସେହି ନ ପାଇଲା କଟି
ବଗ୍ଭରଇ ଦାନବ ସେ କାହିଁ ଲୁଚିଗଲା ।
ତାର ପୁରଯାକ ସବୁ ପକାଇଲା ଭାଙ୍ଗି
ନ ପାଇ ଦୈତ୍ୟ ବାହୁଡ଼ି ଆସେ ହୋଇ ବର୍ତି
ଦିଣ ପ୍ରବେଶ ହୋଇଲା ଆସି ନିଜପୁରେ
ସମସ୍ତ କଥା କହଇ ମାତାର ଆଗରେ
ଇନ୍ଦ୍ରକୁ ଜିଣିଲି ହାରିଗଲା ଯକ୍ଷେଶ୍ୱର
ପବନ ଦେବତା ଡରେ ଘୁଞ୍ଚିଲା ଆବର ।
କାଲି ପ୍ରଭାତରେ ମୁହିଁ ଯିବି ସଂଯମନୀ
ଆସିବି କାଳ ବିକାଳ ଚିତ୍ରଗୁପ୍ତ ଘେନି ।
ବାନ୍ଧିନେଇ ପକାଇବି ସମୁଦ୍ରର ମଝି
ଅମର ହୋଇବି ପୋଛି ଯମରାଜା ପାଞ୍ଜି ।
ଏମନ୍ତ କହୁଥିଲେ ଅରୁଣ ପ୍ରକାଶ
ଉଦେଗିରି ବିକାଶିଲା କି କମଳକୋଷ ।
ବଦନ୍ତି ଅଗସ୍ତି ଶୁଣ ମନୁ ନରରାୟ
ଭୀମସେନଙ୍କୁ ହକାରି ଧର୍ମର ତନୟ ।
ବୋଇଲେ ପିତାଙ୍କ ଶ୍ରାଦ୍ଧ ହେବ ପରଦିନ
ଗଣ୍ଡା ଗୋଟିଏ ବନକୁ ଯାଇ ମାରିଆଣ ।
ସ୍ୱାମୀଙ୍କର ଆଜ୍ଞା ଭୀମ ଶିରରେ ନିକେଶି
ଚଳଇ ବେଗେ ଗହନ ବନମଧ୍ୟେ ପଶି ।
ନିର୍ଝର ଅଟବୀ ଗିରି କନ୍ଦର ଯେ ଲତା
ଲୋଡ଼ଇ ଗଣ୍ଡାଜୀବ ଯେ ଭୀମ ବଳବନ୍ତା ।
ଏଥୁ ଅନନ୍ତରେ ସେ ଯେ କୁମ୍ଭକ ଦଇତ
ରଜନୀ ପ୍ରଭାତ ଯହୁଁ ହେଲା ଉପଗତ ।
ଏକ କରେ ଗଦା ଆଉ କରେ ମୁଦୁଗର
ପ୍ରବେଶ ହୋଇଲା ଯାଇ ସଂଯମନୀପୁର ।
ଚିତ୍ରଗୁପ୍ତ କହିଲେ ଯମର ଅଗ୍ରତ
ତୋ ପୁରକୁ ବାହୁଡ଼ିଲା କୁମ୍ଭକ ଦଇତ୍ୟ ।
ବାସବର ଅରିଷ୍ଟି ଯେ ଯାଇଛନ୍ତି ଦେଖି
ଯମହିଁ ପଳାଇ ଗଲା ସମର ଉପେକ୍ଷି ।
ଦେବନ ନୈର୍‌ଋତ ଯମ କୁବେରର ବଳ
ପଳାଇ ପଶିଲେ ଯାଇ ସମୁଦ୍ରର ତଳ ।

ଏକାଳେ ଗୋଡ଼ାଇ ଦୈତ୍ୟ ମାଇଲାକ ଧର
ପଳାନ୍ତ ସକଳ ସୈନ୍ୟ ପ୍ରାଣଭୟ କର ।
କାହିଁ ନ ପାଇ ତହିଁ କୁମ୍ଭକ ଅସୁର
ସ୍ୱର୍ଗ ଚୂର୍ଣ୍ଣୀଭୂତ କଲା ସଂଯମନୀ ପୁର ।
ମେଡ଼ ମଣ୍ଡପ ତାହାର ଜଗତୀ ଅଟାଳ
ଆସ୍ଥ ନବର ସହିତେ ସବୁ ଦେଲା ଜାଳି ।
ସମସ୍ତ ଭୁବନ ଏବେ ଛାଡ଼ିଲେ ବିବୁଧେ
ଦେବତାମାନଙ୍କୁ ସାଧି କଲା ଏକା ପୁଢେ ।
ଋଷି ବିପ୍ର ତପୋଧନ ନ ରହନ୍ତି କେହି
ଏକ ଦିବସେ ବୁଲଇ ସପ୍ତଦ୍ୱୀପା ମହୀ ।
ନିରଞ୍ଜନ ବରେ ସେହି ଦାନବ ଅଜେୟ
ନାରାୟଣ ଦେବତାଙ୍କୁ ନାହିଁ ତାର ଭୟ ।
ଆକାଶ ଛାଡ଼ି ପଳାଇ ଗଲେ ବୃନ୍ଦାରକେ
କ୍ଷୀର ସାଗରେ ପଶିଲେ ଯାଇ ଦେବଲୋକେ
ଇନ୍ଦ୍ର ଦେବତା କହିଲେ ପିତାମହ ଆଗେ
କୁମ୍ଭକର ଭୟେ ରହି ନ ପାରିଲୁ ସ୍ୱର୍ଗେ ।
ଇନ୍ଦ୍ର ବଚନେ କହନ୍ତି ଦେବ ବେଦପଣ୍ଡ
ବହୁତ କଠାଳ କଲା ଅଶ୍ଳେଷାର ନାଣ୍ଡ ।
ନିରଞ୍ଜନ ବରେ ସେହି ଦର୍ପିଷ୍ଠ ଅସୁର
ଦେବତାଙ୍କ ହସ୍ତରେ ଯେ ନୁହଇ ସଂହାର ।
ଦେବତାଙ୍କ କଷ୍ଟ ଶୁଣି ଅବନୀ ଗୁହାରି
ବିଶ୍ୱନାଥ ଜନ୍ମ ହେଲେ ନରଦେହ ଧରି ।
ସୋମବଂଶ ଚନ୍ଦ୍ର ରାଜା କୋଳେ ପାଞ୍ଚପୁତ୍ରେ
ଜାତ ହୋଇଛନ୍ତି ଦୈତ୍ୟ ନିପାତନ ଅର୍ଥେ ।
ତୁମ୍ଭେ ସମସ୍ତେ ହୋ ଏବେ ହୋଇଥାଅ ସ୍ଥିର
ପରଦିନ ତେରଦଣ୍ଡେ ମରିବ ଅସୁର ।
ସ୍ୱର୍ଗେ ଦେବତାଙ୍କୁ ଦୈତ୍ୟ ନ ପାଇଲା ଲୋଡ଼ି
କପିଳାସ କନ୍ଦରକୁ କୋପେ ଦେଲା ଧାଡ଼ି ।
ମୁଦ୍‌ଗର ବୁଲାଇ ସେହି ଧାଏଁ ଅତିବଳେ
ଭିତରେ ପଶନ୍ତେ ଉଗାଳିଲେ ଦ୍ୱାରପାଳେ ।
ଭଇରବ ମଣିଭଦ୍ର ଚଣ୍ଡ ଯେ ପ୍ରଚଣ୍ଡ
ଜୟନ୍ତ ଯେ ଅଜୟନ୍ତ ମହାକାଳଦଣ୍ଡ ।
ବିନାୟକ ବିନାୟକ ଭୀମ ଗଣିପତି
ନନ୍ଦୀ ମହାକାଳ ଭୃଙ୍ଗୀ କାର୍ତ୍ତିକେୟ ଯତି ।
ଚଉଦକୋଟି ଅଛନ୍ତି ଶିବଗଣମାନେ
ଦାନବ ପ୍ରତାପ ଦେଖି ଆସି କୋପମନେ ।

ଗଦା ମୁଦ୍‌ଗର ମୁଷଳ କୁନ୍ତ ଖଡ୍‌ଗ ଯାଠି
ପଟ୍ଟିଶ ଗୁରୁଜ ଅସିବର ନେଇ ପିଠି ।
ଦେଖିଲେ ଦୂରରେ ଉଭା ହୋଇଅଛି ଦୈତ୍ୟ
ହିମବନ୍ତ ଜିଣି ବିଶେ ତାହାର ଯେ ଗାତ୍ର ।
ଶିବଗଣ ଅଟନ୍ତି ଯେ ସମରେ ଅଜେୟ
ଦେବଗଣେ ଜିଣିକରି ଅସୁରେ ଅକ୍ଷୟ ।
ଗଦା ମୁଦ୍‌ଗର ଶୂଳ ଶକ୍ତି ଘେନି ପିଟି
ଆବର ରେ ରେ ଶବଦେ ସମସ୍ତେ ଯେ ଉଠି
ଅଭେଦ୍ୟ ଅଟଇ ସେହି ଅସୁର ଶରୀର
ତେଣୁ ଶରେ ପଡ଼ି ତାର ଦେହେ ହେଲେ ଚୂର
ଛାଡ଼ିଲା କୋପରେ ଦୈତ୍ୟରାଜ ସିଂହରଡ଼ି
ଆକାଶରୁ ନିର୍ଘାତ ଯେସନେ ପଡ଼େ ଝଡ଼ି ।
ଅସ୍ତ୍ର ନ ଭେଦିଲାରୁ ଯେ ଶିବଗଣେ ଭଜି
ଗଦା ବୁଲାଇ ଅସୁର ଉଠିଲାକ ଗର୍ଜି ।
ଗହଳ ଚହଳ ଧ୍ୱନି ଶୁଣି ଦେବହର
ଭିତରପୁରୁ ବିଜୟ ହୋଇ ଶୂଳକର ।
କୋଟିଏ ବଳ ଅଟଇ ସେ ପିନାକ ଧନୁ
ଅକ୍ଷୟ ତୂଣୀରେ ଘେନି ଆସେ ପଞ୍ଚମନୁ ।
ହୃଦୟେ ଶୋଭେ ବାସୁକୀ ନାଗରାଜାହାର
ସୋମ ସୂର୍ଯ୍ୟ ଅନଳ ଯେ ନୟନ ନିକର ।
ରୁଦ୍ର ଅବତାର କଣ୍ଠତଟେ କାଳକୂଟ
ନାଗ ଆଭରଣ ଶିରେ ଶୋଭେ ଗୁରୁଜଟ ।
ଶିବଗଣଙ୍କୁ ଛାଡ଼ଣ ଅସୁର ଧାମଇ
ଗଦା ବୁଲାଇ ଈଶ୍ୱର ଆଗେ ଉଭା ହୋଇ ।
ଅସୁର କହଇ ତୁମ୍ଭେ ଶୁଣ ଦେବହର
ମୋହର ପିତୃବଇରୀ ତୋହର କୁମର ।
ଈଶ୍ୱର ବୋଇଲେ ସେହୁ ବଡ଼ ଉଗ୍ର ହୋଇ
ଅଳପକେ ନାଶଗଲା ନ ସହିଲା ମହୀ ।
ଦୈତ୍ୟ ବୋଲେ ସମସ୍ତଙ୍କୁ ଦେଉ ତୁହି ବର
ମୋତେ ବର ନ ଦେଉ ଏ କେମନ୍ତ ବିଚାର
ଅସୁର ବଚନ ଶୁଣି ବୋଲେ ବିଶ୍ୱନାଥ
ଅଭକତେ ବର କାହିଁ ହୁଏ ପରାପତ ।
ଦାନବ ବୋଲେ ନ ଦେବୁ ଯେବେ ଆଜ ବର
ତୋତେ ଘେନିଯିବି ନଷ୍ଟେ ମୋହର ମନ୍ଦର
ଏତେ ବୋଲିଣ ଦାନବବୀର ଆସେ ଧାଇଁ
ସଦାଶିବଙ୍କ ଛାମୁରେ ଗଦାକୁ ବୁଲାଇ ।

ଅନ୍ଧକ ତ୍ରିପୁରାସୁର ବଧ କଲେ ଏକା
କୁମ୍ଭକର ମୂର୍ତ୍ତି ଦେଖି ମନେ କଲେ ଶଙ୍କା ।
ଅନେକ ଅସ୍ତ୍ର ପେଷିଲେ ସ୍ୱାମୀ ଦେବହର
ଅସୁର ଦେହରେ ପଡ଼ି ସବୁ ହେଲା ଚୂର ।
ରେ ରେକାର ଶବ୍ଦକରି ଦୈତ୍ୟବର ଉଠ
ଈଶ୍ୱରଙ୍କ ଉପରେ ସେ ଗଦାବର ପିଟି ।
ଗଦା ପିଟନ୍ତେ ପାଡିଲେ ହର ଶୂଳଦଣ୍ଡ
ଲାଗି ସେହି ଶୂଳଦଣ୍ଡ ହେଲା ବେନି ଖଣ୍ଡ ।
ଦେବଦାନବ ସମରେ ଦାନବ ଅଜେୟ
ଦାନବ ଗଦାକୁ ଦେବେ କଲେ ମହାଭୟ ।
ସଂଗ୍ରାମରୁ ଘୁଞ୍ଚି ଆଡ଼ ହେଲେ ଦେବେ ଭବ
କୁମ୍ଭକ ଭୟରେ ମୁହିଁ କପିଳାସ ନେବ ।
ଏତେ ବଗୃର କଳପାସୁର କୁଳଶଶୀ
କପଳାସ କନ୍ଦରକୁ ଧଇଲା ଆକର୍ଷି ।
ମଥାରେ ବସାଇ ପୁରେ ଆସଇ ଲେଉଟି
ଗୋଡାଇ ଈଶ୍ୱର ତାର ପଛେ ଶୂଳ ପିଟି ।
ପାଞ୍ଚବେଳ ପରଯନ୍ତେ ପିଟିଲେକ ହର
ନମାନ୍ତ ଦାନବ ଯାଏ ହୋଇ ଗୁରୁତର ।
ଥୋକାଏ ଦୂରକୁ ଯାଇ ଚାହିଁଲା ଲେଉଟି
ଦେଖିଲା ଗୋଡ଼ାଇଛନ୍ତି ପଛରେ ଧୂର୍ଜଟି ।
ସେ ବନ ଭିତରେ ଅଛି କ୍ରୌଞ୍ଚ ନାମେ ଗିରି
ସେ ଗିରି ଉପରୁ ଆସେ ଗଣ୍ଡା ଭୀମ ମାରି ।
କ୍ରୌଞ୍ଚା ନାମେ ବହୁଯାଏ ତହିଁ ନଦୀଗୋଟି
ଈଶାନଭାଗ ସାଗରେ ଯାଇ ସେହି ଫୁଟି ।
କ୍ରୌଞ୍ଚ ପର୍ବତ ଈଶାନ ତେରକୋଶ ବନ
ଯହିଁକି ହର ଉଦ୍ୟାନ ବିକାଶେ ଯୋଜନ ।
ସେ ଗିରି ଉପରେ ଉଠି ଭୀମସେନ ବେଗେ
ମୃଗ ବରାହ ହରିଣ ଗଣ୍ଡାଜୀବ ଜଗେ ।
ଭାଳଇ ମାରୁତି ଆଜ କରିବି ମୁଁ କସ
କହିଁ ନ ଦେଖି ମନେ ବହୁତ ବିରସ ।
ଏମନ୍ତ ସମୟେ ଦେବଦେବ ଯେ ଧୂର୍ଜଟି
ଦଶାଶତେ ଯୋଜନ ଯେ ପଳାଇଣ ଫୁଟି ।
କଟାଳ ଗୋଡ଼ାଇଅଛି ଦୈତ୍ୟକୁଳ ଯୋଧି
ସେ ବନରେ ଭୀମସେନ କରଇ ପାରଧି ।
ଆରତ ହୋଇସେ ଦେବଦେବ ପଞ୍ଚମୁଖ
ଆହେ ମହାତ୍ମା ଶରଣ ତୋର ମୋତେ ରଖ

ପାଶେ ଯାଇ ଦେଖିଲେ ସେ ଅଟେ ଭୀମସେନ
ଦେଖିଣ ତାକୁ ସାନନ୍ଦ ହେଲେ ତ୍ରିଲୋଚନ ।
ଈଶ୍ୱର ତହୁଁ କଠୋର ବଚନକୁ ଶୁଣି
ପର୍ବତୁ ଡେଇଁ ପଡ଼ିଲା କାଳଦଣ୍ଡପାଣି ।
ମାରୁତି ବୋଇଲା ରହ ରହ ରେ ଦାନବ
ତେ ହର ଈଶ୍ୱରଙ୍କର କପାଇଁ ଅଭାବ ।
ଭୀମ ବଚନ ନ ଶୁଭେ ଦାନବ କର୍ଣ୍ଣକୁ
କାଞ୍ଚତ ପ୍ରାୟେ ମଣିଲା ସେ ଭୀମସେନକୁ ।
ଡାହାଣ କରେ ସେ ଗଦା ଗିରି ବାମହସ୍ତେ
ଯେସନେକ କ୍ଷୁଦ୍ରଟେକା ଘେନନ୍ତି ବାଳୁତେ ।
ପର୍ବତର ଉପରକୁ ଉଠଇ ସେ ବେଗେ
ଧାଇଁଯାଇ ଉଗାଳିଲା ମାରୁତି ତା ଆଗେ ।
ଭୀମମୂର୍ତ୍ତି ଦେଖି ଦୈତ୍ୟବଳ ଯାଏ ରହି
ଖଗେଶ୍ୱର ଦେଖି ଯେହ୍ନେ ଘୁଞ୍ଚିଯାନ୍ତି ଅହି ।
ଅସୁର ବୋଲେ ମାନବ ମାତ୍ର ହୋଇ ତୁହି
ଏଡେବଡ଼ ଦର୍ପ ଆଗେ ବହୁ କାହିଁପାଇଁ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯାକୁ ନୁହନ୍ତି ସରି
ତୁ ମାନବ ମାତ୍ର ରଖୁ ମୋହର ବଇରୀ ।
ଭୀମ ବୋଇଲା ଅଜ୍ଞାନ ମନ୍ଦ ତୁ ରେ ବାଇ
ଶରଣ ବୋଇଲେ ମୁହିଁ ଉପେଖଇ ନାହିଁ ।
ଭୀମସେନର ବଚନେ ହସିଲା ଅସୁର
ଆଜ ଦିନହିଁ ସଫଳ ହୋଇଲା ମୋହର ।
ଯାହାକୁ ମୁଁ ଲୋଡ଼ୁଥିଲି ଆପେ ହେଲା ପ୍ରାପ୍ତ
ନରବଳ ଭୋଜ ମୋତେ ଦେଲୁରେ ବିଧାତ
ଏତେ ବୋଲିଣ ଦାନବ ଗର୍ଜ କୋପଚିତ୍ତେ
ମଣୋହି କରିବି ଆଜ ମୁହିଁ ପୋଡ଼ି ତୋତେ
ଭୀମ କୋପିଲେ ଅସୁର ମୁରୁଡିକୁ ଦେଖି
ବୁଲାଇଲେ କାଳଚକ୍ର ପ୍ରାୟେ ବେନି ଆଖି ।
ଯଦ୍ୟପି ସ୍ୱର୍ଗ ପାତାଳ ଜିଣିଲୁ ଅସୁର
ଆଜ ଯମ ନିକଟେ ପାଞ୍ଜି ପୋଛିଲା ତୋହର ।
ଟେଁଟେ ମାରି ରଖିବି ମୁଁ କୈଳାସ-କନ୍ଦର
ଆକାଶର କଷ୍ଟ ଆଜ ଯିବ ରେ ପାମର ।
ଭୀମର ବଚନ ଶୁଣି ଦୈତ୍ୟ କୋପଚିତ୍ତ
କଇଳାସ କନ୍ଦରକୁ କରି ଭୂମିଗତ ।
ଗଦାବରକୁ ବୁଲାଇ ଦାନବ ଗରଜି
ଶବଦେ ଗିରି କନ୍ଦର ପଡ଼ିଲା କି ଭାଜି ।

ବେନଗଦା ହସ୍ତେ ଧରି ବୀର ଭୀମସେନ
ଦିଶିଲା ସେ ଧୂମକେତୁ ଉଦୟେ ଯେସନ ।
ଆରେ ରେ ମାନବା ବୋଲି ଦାନବ ଯେ ଉଠି
ଭୀମର ଉପରେ ଦେଲା ଗଦାବର ପିଟି ।
ଲୂହାର ସେ ଗଦା ଶତ ଶତ ଭାର ଗୁରୁ
ହାତପାଳେ କମ୍ପନ୍ତି ଯା ଗଦା ଧରୁ ଧରୁ ।
ଶତଶୃଙ୍ଗ ବଳେ ଯାର ବଜ୍ର ବାମଅଙ୍ଗ
ପିଟନ୍ତେ ସେ ଗଦାବର ହେଲା ତାର ଭଙ୍ଗ ।
ଆରେକ ଗଦା ବୁଲାଇ କୋପେ ସେ ଅସୁର
ଏ ଭ୍ରାନ୍ତ ମାନବା ବଳ ଜାଣିବା ତୋହର ।
ସମୁଦ୍ର ମନ୍ଥନକାଳେ ଯେମନ୍ତ ଶୁଭଇ
ତେସନ ସେ ଗଦାବର ପିଟି ଗରଜଇ ।
ସମ୍ଭାଳ ସମ୍ଭାଳ ବୋଲି ଗଦାବର ପିଟି
ଗଦା ପିଟନ୍ତେ ଗଦାରେ ଭୀମସେନ ମେଣ୍ଟି ।
ବେନଗଦା ପରତାଳେ ଉଠିଲା ବହନ
ସପ୍ତଲକ୍ଷ ଯୋଜନରେ କମ୍ପେ ପଦ୍ମଯୋନି ।
ଭୀମସେନ ଗଦାବର ବୁଲାଇଲା କୋପେ
ଶୂନ୍ୟଭୁବନ କମ୍ପିଲା ସେ ଗଦା ପ୍ରତାପେ ।
କୋପଭରେ ଭୀମସେନ ଦିଶଇ ପ୍ରଚଣ୍ଡ
ରଡ଼ଘାତେ କମ୍ପାଇଲା ସପତ ବ୍ରହ୍ମାଣ୍ଡ ।
ପ୍ରଳୟ ନିକଟେ ଯେହ୍ନେ ଗର୍ଜ୍ଜେ ମେଘମାଳ
ତେସନେ ଶୁଭଇ ବେନ ଗଦା ପରତାଳ ।
ଭୀମସେନ ଗଦା ଯାଇ ଦୈତ୍ୟ ଅଙ୍ଗେ ପଡ଼ି
ସହସ୍ରେକ ଖଣ୍ଡ ହୋଇ ଭାଙ୍ଗି ଦେଲା ଚୂର ।
ପୁଣି ଆର ଗଦା ନେଇ ପିଟେ ବୃକୋଦର
ଧୂଳି ହୋଇ ଯାଇ ଉଡ଼ି ପଡ଼ିଲା ଭୂମିର ।
ଅସୁର ସେ ଗଦା ଘେନି ପିଟିଲା ଭୀମକୁ
ଦେଖି ବୃକୋଦର ପାତି ଦେଲା ବାମ ବୁକୁ ।
ଭୀମର ଗ୍ରୀବାରେ ପଡ଼ି ଦୈତ୍ୟ ଗଦାବର
ସହସ୍ରେକ ଖଣ୍ଡ ହୋଇ ଗଦା ହେଲା ଚୂର ।
ଗଦାବର ଭଗ୍ନ ହେବା ଦେଖି ଦୈତ୍ୟରାଗେ
ପର୍ବତ ଏକ ଉପାଡ଼ି ଧାଏଁ ଅତି ବେଗେ ।
ଅନ୍ତରୀକ୍ଷ ମାର୍ଗେ ଧରି ବୁଲାଇ ପର୍ବତ
ଭୀମସେନର ଉପରେ ପିଟିଲା ଦଇତ ।
ବାମଅଙ୍ଗେ ପଡ଼ି ଭାଙ୍ଗି ଗଲା ଗିରିବର
ଧୂଳି ହୋଇ ଉଡ଼ିଗଲା ଗଗନ ଅନ୍ଧାର ।

ଆକାଶ ମାର୍ଗେ ଶୁଭିଲା ଜୟ ଜୟ ବାଣୀ
ଅସୁରକୁ ବଧକରି ଉଦ୍ଧର ଧରଣୀ ।
କୁମ୍ଭୀର କାଳର ବକ ହିଡ଼ିମ୍ବକ ଚୂର
ବଧକରି ରଖିଅଛୁ ବୀରବସୁନ୍ଧରା ।
ଏବେ ଏହି କୁମ୍ଭକକୁ କର ତୁ ବିନାଶ
ଏହା କଲେ କାବୁ ସୁସ୍ଥ ହେବ ଏ ଆକାଶ ।
ଆକାଶର ଧ୍ୱନି ଶୁଣି ବୀର ବୃକୋଦର
ବଜ୍ରମୁଷ୍ଟିକ ମାଇଲେ ଦାନବ ଉପର ।
ଦଇତ୍ୟ ଉପରେ ପଡ଼ି ସେହି ବଜ୍ର ମୁଷ୍ଟି
କାଳାନଳ ପ୍ରାୟ ହୋଇ ଅଗ୍ନି ଜଳଉଠି ।
ଦେବ ଦାନବ ସମରେ ଯେ ବୀର ଅଜେୟ
ବୃକୋଦର ରୂପ ଦେଖି କଲା ମହାଭୟ ।
ଶସ୍ତ୍ର ବିହୁନେ ସେ ଦୁହେଁ ମଲ୍ଲ ଗତି ଘେନି
ଧରାଧରି ଗଡ଼ାଗଡ଼ି ହୁଅନ୍ତି ସେ ବେନି ।
ହାତମୋଡ଼ାଇ ପକାଇଣ ଦାନବ ଭୀମକୁ
ଲେଉଟାଇ ଭୀମ ମାଡ଼ି ବସିଲା ତାହାକୁ ।
ଭୁଜେ ଭୁଜ ଭିଡ଼ି ପାଦେ ପାଦ ଦେଲ ଛନ୍ଦି
ଶିରେ ଶିର ପରତାଳ ହୃଦେ ହୃଦ ଛନ୍ଦି ।
ପଡ଼ି ଲେଟନ୍ତି ଗଡ଼ନ୍ତି ଦୁହେଁ ବସୁମତୀ
ଚକ୍ଷୁର ନିମିଷେକେ ପୁଣି ଲେଉଟନ୍ତି ଧାଇଁ ।
ସମରେ ଅଟନ୍ତି ବେନି ବୀରେ ମହାବଳୀ
ଶାଳବୃକ୍ଷମାନେ ଘାତେ ହେଉଛନ୍ତି ଧୂଳି ।
ହାତପାଳେ କମ୍ପିଲେକ ଶୁଣି ମୁଖରଡ଼ି
କୂର୍ମ ଚମକିଲା କମ୍ପି ଗଲା ବସୁନ୍ଧରା ।
ଭୀମକୁ ମାଡ଼ି ବସିଲା ଦୈତ୍ୟ-କୁଳରାୟ
ହୃଦୟକୁ ଆକର୍ଷଇ ମୃଗ ବ୍ୟାଘ୍ର ପ୍ରାୟ ।
କୋପେ ପ୍ରତିଜ୍ଞା କରଇ ସେ ଅସୁର ବୀର
ଆରେ ରେ ମାନବା ତୁହି ଯିବୁ ଯମପୁର ।
ଈଶ୍ୱର ଦେବତା ଡରେ ପଳାଇଲେ ହାରି
ତୁ ଛାର ମାନବା ମୋତେ ନବୋଧୁ ଛୁଧର ।
ସାଧୁ ମହିମା ତୋହର ଧନ୍ୟ ବୀରପଣ
ଧନ୍ୟ ତୋର ମାତା ପିତା କଲୁ ଯେଉଁ ରଣ
ବୀରପଣେ ସରି ତୋତେ ନାହିଁ ରବିତଳେ
ମୋର ସଙ୍ଗେ ପରତାଳ ଦେଲୁ ତୁ ରେ ବଳେ
ତୋତେ ମାରି ଆଜ ନେବି ଈଶ୍ୱରଙ୍କୁ ଧରି
ମାଂସ ଭକ୍ଷିବି ତୋହର ପୋଡ଼ାବଳି କରି ।

ସୁମର ମାନବା ଏବେ ତୋର ପିତାମାତା
ସୁମର ମାନବା ତୋର ଯେ ଇଷ୍ଟଦେବତା ।
ଅସୁର ପ୍ରତିଜ୍ଞା ଉଗ୍ର କଟୁବାଣୀ ଶୁଣି
ଭସ୍ମେ ଅନ୍ତର ହୋଇଲେ ସ୍ୱାମୀ ଶୂଳପାଣି ।
ପ୍ରଥମ ସମରେ ହାରି ପଣ୍ଡୁର ନନ୍ଦନ
ଶତଶୃଙ୍ଗ ପର୍ବତକୁ କଲେ ସୁମରଣ ।
ହେଲା ଏକୋତ୍ତର ଶତ ସିଂହ ପରାକ୍ରମ
ବୃକୋଦର ମୂରତିକି ଧଇଲେ ଯେ ଭୀମ ।
ହୁଂକାର ଶବଦ କରି ବୀର ମହାବଳେ
ଲେଉଟାଇ ପକାଇଲା ଦାନବକୁ ତଳେ ।
ମନ୍ଦର ମାଡ଼ି ଯେସନେ ବସେ ହିମବନ୍ତ
ତେସନେ ବସଇ ସେହି ଦୁହିଙ୍କର ଗାତ୍ର ।
ତଳେ ଅସୁର ଉପରେ ବୀର ଭୀମସେନ
ବଶନ୍ତ ସେ କି ଦ୍ୱିଷାପୁ ଜନ୍ତୁ ବିନାଶନ ।
ଭୀମସେନ ବୋଇଲା ରେ ଜାଣି ତୁ ଭରସୁ
ଜଳନ୍ତା ଅଗ୍ନିରେ ଜାଣୁ ଜାଣୁ ଆସି ପଶୁ ।
କୁମ୍ଭୀର କନ୍ଦର ଦୈତ୍ୟ ବକ ହିଡ଼ିମ୍ବକ
ଏହାଙ୍କୁ ବଧିଲି ତୁହି ଉବୁରିଲୁ ଏକ ।
ଆଜ ତୋର ନାମ ପୋଛି ଦେବି ଜନ୍ତୁଅରି
ହେଇଲୁ ନିରେଖି ତୋତେ କେହୁ ରକ୍ଷାକର
କୋପେ ମାରୁତି ମାଇଲା ଏକ ବଜ୍ରମୁଥ
ନାସିକା ଫାଟି ରୁଧିର ବହେ ଅପ୍ରମିତ ।
ମେରୁ ଫୁଟି ଗଙ୍ଗା ହେଲା ଯେସନେ କାହାର
ତେସନ ରୁଧିର ବହେ ହୋଇ ଧାର ଧାର ।
ହିରଣ୍ୟ ବିଦାରଣରେ ଯେସନ ନୃସିଂହ
ତେସନ ସେକାଳେ ଦିଶେ ଭୀମସେନ ଅଙ୍ଗ
ବିଶେଷତଃ ବୃକୋଦର ବଳୀ କୁନ୍ତୀବଳା
କାଳରନ୍ଧ୍ର ଜିଣି ଦିଶେ ତାର ବେନଡୋଳା ।
ଯେସନେ ଉପରେ ମାଡ଼ିବସଇ ସୁମେରୁ
ଟଳି ନ ପାରି ପାଇଲା ଦୈତ୍ୟ ମହାଗୁରୁ ।
ଚଣ୍ଡି ଚପିଲା ତାହାର ଭୀମ ବାମହସ୍ତେ
ଡାହାଣ ହସ୍ତେ ମାଇଲା ବୀର ବଜ୍ରମୁଥେ ।
ପୁଣ ପୁଣ ପ୍ରହାରଇ କୋପେ ବୀର ତୋଳି
ଭଙ୍ଗି ଅସୁରର ମୁଣ୍ଡ କରିଦେଲା ଧୂଳି ।
ଅସୁର ପିଣ୍ଡରୁ ପ୍ରାଣ ଗଲା ବେଗେ ଛାଡ଼ି
ପଡ଼ିଲା ଦାନବ ବୀର ପାଞ୍ଚକ୍ରୋଶ ମାଡ଼ି ।

ଅସୁର ବିନାଶି ଉଭା ହେଲା ବୃକୋଦର
ଦେଖିଲାକ ସମୀପରେ ନାହିଁ ଦେବ ହର ।
ମେଷ ଶୁକ୍ଳପକ୍ଷ ପୁଣି ଅଷ୍ଟେ ଗୁରୁବାର
ଦୈତ୍ୟବଧ ହେଲା ତେର ଦଣ୍ଡର ଉତ୍ତର ।
ଆକାଶରେ ଶୁଭିଲା ସେ ସାଧୁ ସାଧୁ ବାଣୀ
ଭୀମର ଉପରେ ପୁଷ୍ପ ବୃଷ୍ଟି କଲେ ଆଣି ।
ସାଧୁ ସାଧୁ ପାଣ୍ଡବ ତୁ ଜାଳବର ଶତ୍ରୁ
ଅସୁରକୁ ବଧକଲୁ ତୁ ବୀର ପ୍ରଚଣ୍ଡ ।
ଅସୁରକୁ ବଧ କଲେ ବୀର ବୃକୋଦର
ଭୀମର ଆଗରେ ବିଜେ କଲେକ ଈଶ୍ୱର ।
ବୋଇଲେ ମାଇଲୁ ଦୈତ୍ୟବର ବୃକୋଦର
ଯେମନେ ଇଚ୍ଛା ତୋହର ମାଗିନେନ ବର
ଭୀମ ବୋଲେ ଅନୁଗ୍ରହ କଲ ଯେବେ ମୋତେ
ମୋର କାର୍ଯ୍ୟବେଳେ ସିନା ମୁଁ ମାଗଇ ତୋତେ
ଈଶ୍ୱର ବୋଇଲେ ପୁଣ ମୋର ବୋଲ ଶୁଣ
କାର୍ଯ୍ୟକାଳେ କରିବୁ ତୁ ମୋତେ ସୁମରଣ ।
ଏତେ ବୋଲି କପିଳାସ ଗଲେ ଦେବହର
ନିଜସ୍ଥାନେ ବସାଇଲେ ନେଇ ସେ କନ୍ଦର ।
ଲେଉଟଇ ଗଣ୍ଡାଭାର ଘେନିଣ ପାବନ
ପ୍ରବେଶିଲେ ପୁରେ ବେଳ ପ୍ରହର ଯେ ଦିନ
ଜୟ ଦେବ ତ୍ରିଲୋଚନ ଉମାଦେବୀ ପତି
କଣ୍ଠେ କାଳକୂଟ ଶିରେ ଗଙ୍ଗାଦେବୀ ସ୍ଥିତି ।
ଅର୍ଦ୍ଧାଙ୍ଗେ ଶୈଳସୁତା ନାଭିରେ ବ ବହି
ଜଟାକୁଳ ସ୍ୱର୍ଣ୍ଣବର୍ଣ୍ଣ ନାଗେ ବିରାଜଇ ।
ଡିବ ଡିବ ଡମ୍ବରୁ ଯେ ଘନ ଘନ ଡାକ
ଶ୍ରୀଭୁଜରେ ଶୋଭାପାଏ ତ୍ରିଶୂଳ ପିନାକ ।
ବ୍ୟାଘ୍ରଚର୍ମ ପରିଧାନ ହୃଦେ ଅସ୍ଥିମାଳା
ବିରାଜଇ ରବି ଚନ୍ଦ୍ର ବହ୍ନି ତିନିଡୋଳା ।
କନ୍ଦର୍ପ ଧ୍ୱଂସି କାଞ୍ଚିଲ କୁପିତ ଯା ଦୃଷ୍ଟି
ଦକ୍ଷଯଜ୍ଞ ବିନାଶନେ ଅଭୟ ଧୂର୍ଜଟି ।
ଶଶାଙ୍କ ମଉଳ ଦେବ ଭକ୍ଷି କାଳକୂଟ
ଭାବଗ୍ରାହୀ ନାଥ ତେଣୁ ନାମ ନୀଳକଣ୍ଠ ।
ଅନ୍ଧକ ତ୍ରିପୁର ଆଦି ଦୈତ୍ୟ ଶିର ଛେଦି
ଆବର କାଳୀ କାଳଞ୍ଜ ବେନି ଦୈତ୍ୟ ବଧି ।
ବେଦବର ବେଦଯାଗେ ପିତା ମୁଣ୍ଡ ମୋଡ଼ି
ମହାଘୋର ସନ୍ଧି ହତ୍ୟାମାନ ତୁହି ଖଣ୍ଡି ।

ଅନଙ୍ଗ ସୁନ୍ଦର ନାଥ ପନ୍ନଗ ସୁନ୍ଦର
ପିଙ୍ଗଳବର୍ଣ୍ଣ ବହ୍ନିରୁ ତୋ ତେଜ ପ୍ରଖର ।
ଗଳିତ ଅମୀୟ ରସ ଜ୍ୱଳିତ ବହ୍ନିରୁ
ବାଞ୍ଛିତ ସେବାରେ ନାଥ ତୁମ୍ଭ କୃପା କରୁ ।
ସେବକ ଜନକୁ ଦେଉ ଯାନ ସୁଖାସନ
ପରକୁ ସମ୍ପଦ ଦେଉ ନିଜ ଦେହ ଶୂନ୍ୟ ।
ପରଦୁଃଖକାତର ତୁ ଦର୍ଶନେ ତୋହର
ଅନ୍ଧ କୁଷ୍ଠୀ ଦରିଦ୍ରଙ୍କ ଦୁଃଖ ହୁଏ ପାର ।
ବାଞ୍ଛିତ ସେବାରେ ନାଥ ହେଉ ବରଦାତା
ଭାବୁକ ଭବନନାଥ ନାହିଁ ତୋର ଚିନ୍ତା ।
କଳିକାଳ ଜନେ ନାଥ ପଡିଗଲେ ଭାସି
ତରିବାକୁ ନାଥ ଗଢ ମୁକ୍ତି ପଥ ଦେସି ।
କୈଳାସ କନ୍ଦର ଦ୍ୱାରେ ମୁହିଁ ଦ୍ୱାରପାଳ
ଗିରିଜା ଶାପେ ଜନ୍ମିଲି ଆସି ମହୀତଳ ।
ଶ୍ରୀ ରୁଦ୍ରଦେବଙ୍କ ପାଦପଦ୍ମେ ରତ୍ନ ଚିତ୍ତ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ତୋ ଭକତ ।
ଜମ୍ବୁଦ୍ୱୀପ ଓଡ଼ରାଷ୍ଟ୍ର ଭାରତ ମଣ୍ଡଳେ
ଚିତ୍ରଉତ୍ପଳା ନଦୀର ଅଇଶାନ କୂଳେ ।
ଝଙ୍କଡ଼ପୁର ବୋଲିଣ ତାହାର ଯେ ନାମ
କନକାବତୀ ପାଟଣା କଲେ ପର୍ଶୁରାମ ।
ଉତ୍ତର କୋଣେ ଝଙ୍କଡ଼ ବୋଲି ଏକ ଗ୍ରାମେ
ବିଜେ ମାହେଶ୍ୱରୀ ଚଣ୍ଡୀ ଶ୍ରୀଶାରଳା ନାମେ
ଜମଦଗ୍ନିର ନନ୍ଦନ ଭାବେ ଯାକୁ ପୂଜି
ରୁଧିରେ ତର୍ପଣ କଲେ ପିତୃଲୋକ ଭଜି ।
ଗୋପପୁରେ ଅବତାର ନନ୍ଦର କହାଇ
ପିତାମହ ଶାପେ ତହିଁ ବିଜେ ମହାମାଈ ।
ବାଛୁରୀ ଚରନ୍ତେ ଗୋପେ କୁମାର ଶ୍ରୀହର
ଜାଣି ଏକାନ୍ତେ ତୋତେ ଗୋ କହିଲେ ତଥାର
କର୍ମଭୋଗ ଶୁଝିଲୁ ଗୋ ଚଳ ଏଥୁ ମାଏ
କର ଯା କନକାବତୀ ପାଟଣା ବିଜୟେ ।
କୃଷ୍ଣର ବଚନେ ବିଜେ ଜଗତର ମାତ
ଚନ୍ଦ୍ରଭାଗାର ଈଶାନ କୋଣେ ଅଛି ତୀର୍ଥ ।
କୃପାଜ-ର ନନ୍ଦିନୀ ଦେବୀ ସରସ୍ୱତୀ
କଳିକାଳ ଧ୍ୱଂସିନୀ ଶ୍ରୀଶାରଳା ମୂରତି ।
ବୁଧଜନମାନେ ମୋର ନ ଧରିବା ଦୋଷ
ଜନ୍ମେ ଜନ୍ମେ ମୂର୍ଖ ମୋର ବୁଦ୍ଧି ଅବା କିସ
ସେ ଶାରଳା ଚଣ୍ଡୀଙ୍କର ଚରଣେ ମୋ ସେବା
ଶାରଳା ଦାସକୁ ମାଗୋ ପଦ କହିଦେବା ।

---

## ଗୋସିଂହ ଦୈତ୍ୟ ବଧ

ବୈବସ୍ୱତ ମନୁ ପୃଚ୍ଛାକଲେ ଅଗସ୍ତିଙ୍କି
ଅର୍ଜୁନ କି କଲେ ଶତଧନୁ ପାଖେ ରଖି ।
ବଦନ୍ତି ଅଗସ୍ତି ଶୁଣ ବଳଙ୍କ ରାଜନ
ଗୋସିଂହକୁ ବଧ କଲେ ପାଣ୍ଡବ ଅର୍ଜୁନ ।
ମନୁ ବୋଇଲେ କେମନ୍ତେ ମାଇଲେ ଅସୁର
ବିସ୍ତାରି କରି ସେ କଥା କହ ମୋ ଆଗର ।
ବଦନ୍ତି ଅଗସ୍ତି ଶୁଣ ମନୁ ନରରାଣ
ଯଦୁବଳ ଘେନି ବିଜେ କୃଷ୍ଣ ବଳରାମ ।
ରୈବତ ପର୍ବତେ ଯାଇ ପ୍ରବେଶ ହୋଇଲେ
ଆନନ୍ଦେ ସେ ଗିରିବର ଶୋଭାକୁ ଦେଖିଲେ
ପର୍ବତ ଉପରେ ରାମ କୃଷ୍ଣ ଛନ୍ତି ବସି
ପରିମଳ ସ୍ଥାନ ଦେଖି ରାମ ଯେ ପ୍ରଶଂସି ।
ଷଡ଼ ଯୋଜନ ଆୟୁତ ଅଟଇ ସେ ଗିରି
ଦଶ ଯୋଜନ ତା ପୋତା ଉତ୍ସର୍ଗ ତା ଗୁରି ।
ଉଗ୍ରସେନ ବୋଇଲେ ରେ ବାବୁ ହଳହସ୍ତ
ଏଠେ ଯାଗ କରିଥିଲେ ରାଜା ରଇବତ ।
ଉ[illegible]କଲେ ସେହି ମହାଯାଗରୁ ରେବତୀ
ବ୍ରହ୍ମାର ନିକଟେ ଗଲା ରୈବତ ନୃପତି ।
ପ୍ରବେଶିଲା ଧାତାଙ୍କର ଉପକର୍ମବେଳେ
ରଇବତ ଉଭାହେଲା ଆସ୍ଥାନର ତଳେ ।
କକଡ଼ାମାସର କୃଷ୍ଣପକ୍ଷର ନବମୀ
ରୋହିଣୀ ନକ୍ଷତ୍ରେ ଉପକର୍ମ କଲେ ସ୍ୱାମୀ ।
ଉପକର୍ମ ସାରି କଲେ ମନକୁ ପବନ
ବୋଇଲେ ରୈବତ ରାଜା ଯୋଡ଼ି କରପଦ୍ମ
ସ୍ୱାମି ମୁଁ ଯେ ବେଦଯଜ୍ଞ କଲି ବେଦବର
ସେ ଯଜ୍ଞରୁ ଜାତ ହେଲା ଦୁହିତା ମୋହର ।
ଦୁହିତା ଗୋଟି ପ୍ରଦାନ କରିବି କାହାକୁ
ଅଇଲଇଁ ଅନୁକୂଳ ଆଜ୍ଞାହିଁ ନେବାକୁ ।
ରୈବତ ମୁଖରୁ ଶୁଣି ଏମନ ବାରତା
ପରମ ଆନନ୍ଦ ହୋଇ କହିଲେକ ପିତା ।
ଆହେ ରଇବତ କନ୍ୟା ଯାହାକୁ ତୁ ଦେବୁ
ତୁମ୍ଭଙ୍କୁ ତାହାର କଥା କହିବାରେ ବାବୁ ।

ସତ୍ୟ ତ୍ରେତା ଦ୍ୱାପର ଏ ଯୁଗ ଗଲା ବହି
ମଧୁବନେ ବଳରାମ ଅଛନ୍ତି ଯେ ରହି ।
ତାହାଙ୍କୁ ପ୍ରଦାନ ଭୁଞ୍ଜ କରିବୁ କୁମାରୀ
ସେ ପନ୍ନଗ ନାରୀପୂର୍ଣ ମର୍ତ୍ତ୍ୟେ ଅବତରି ।
ବ୍ରହ୍ମାର ବଚନେ ତହୁଁ ଆଇଲା ରୈବତ
ଦୁହିତା ଗୋଟିଏ ସଙ୍ଗେ ଘେନଣ ଭରତ ।
ତୋତେ ଯେ ପ୍ରଦାନ ଆଣି କଲ୍କ ନୃପତି
ବତିଶ ବରଷ ବଡ଼ ଅଟେ ମହାସତୀ ।
ବଳରାମ ବୋଇଲେ ସେ ଉଗ୍ରସେନ ଆଗେ
ଯାହା ତୁମ୍ଭେ କହିଲ ତା ବିଧି କେଉଁ ବାଗେ
ଉଗ୍ରସେନ ବୋଇଲେ ଯେ ଦେବଋଷି କର
ଯଜ୍ଞେ ଯାଜ୍ଞିକ ବରଣ ଅଟେ ଶୁଭକାରୀ ।
ବଳରାମ ବୋଇଲେ ହେ ଶୁଣସି ଅଚ୍ୟୁତ
ଏଠାରେ ଯଜ୍ଞ କରିବା ଅଟଇ ପ୍ରଶସ୍ତ ।
ଉଗ୍ରସେନ ବୋଇଲେକ ଦେବଯଜ୍ଞ କଲେ
ଅନେକ ପୁଣ୍ୟ ହୋଇବ ଅନ୍ନଦାନ ଦେଲେ
ଯାଗକଲେ ସାତଜନ୍ମ ପାପକ୍ଷୟ ଯାଇ
ଅନେକ ଗୋ ଫଳ ଶ୍ରୁତି ବହୁ ପୁଣ୍ୟ ପାଇ ।
ବଡ଼ ଭାଗ୍ୟବନ୍ତେ ମିଳେ ବଇକୁଣ୍ଠ ଠାବ
ଶୁଣି ସନ୍ତୋଷ ହୋଇଲେ କୃଷ୍ଣ ବଳଦେବ ।
ବ୍ରହ୍ମାଙ୍କୁ ସ୍ମରଣ କଲେ ଦେବ ଜଗନ୍ନାଥେ
ବିଜୟ ବ୍ରହ୍ମା ଦେବତା ରୈବତ ପର୍ବତେ ।
ବଶିଷ୍ଠହିଁ ଭଜେ କଲେ ଦୁର୍ବାସା ସହିତେ
ସୁଦେବ ମାର୍କଣ୍ଡ ଋଷ ମିଳଲେ ଭୃଗତେ ।
ପ୍ରବେଶ ହୋଇଲେ ଆସି ବିଭାଣ୍ଡକ ମୁନି
ଗଉତମ ପରାଶର ବିଶ୍ୱାମିତ୍ର ଘେନ ।
ଉଦ୍ଦାଳକ ପ୍ରୋହିତ ସୁମନ୍ତ ମୁଚୁକୁନ୍ଦ
ବାଲ୍ମୀକ ପଉଲସ୍ତ୍ୟ ସନକ ସନନ୍ଦ ।
ଚ୍ୟବନ ସୁରଥ କର ଅଷ୍ଟାବକ୍ର ଋଷି
ଏସନ ସମସ୍ତେ ଗାର୍ଗ୍ୟ ମିଳିଲେକ ଆସି ।
ଚଉଷଠି ଶିଷ୍ୟ ଘେନ ଅଇଲେ ଅଙ୍ଗିରା
ଜାବାଳ କଶ୍ୟପ ଆଦ୍ୟ ଋଷି ଅଷ୍ଟଶିରା ।
ସମସ୍ତେ ପ୍ରବେଶ ହେଲେ ରୈବତ ପର୍ବତେ
ପୂର୍ବରୁ ତା ଯଜ୍ଞଶାଳା ଅଛି ବିଧିମତେ ।
ଯଜ୍ଞଶାଳା ଆରମ୍ଭିଲେ ପୁଣି ଋଷିମାନେ
ରାଜାଙ୍କୁ ତ ନିମନ୍ତ୍ରଣ ଦେଲେ ଯେ ବିଧାନେ ।

ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଏ ଚାରି
ଦୂତ ବରଗିଲେ ମୁନିମାନଙ୍କ ବିଚାରି ।
ଶାମ୍ବକୁମାରଙ୍କୁ ଆଜ୍ଞା ଦେଲେ ସେ ଶ୍ରୀପତି
ତୁ ଯାଅ ପଶ୍ଚିମଦିଗ ରାଜାଙ୍କ ନିମନ୍ତି ।
ପ୍ରଦ୍ୟୁମ୍ନକୁ ବୋଇଲେ ତୁ ଦକ୍ଷିଣକୁ ଯିବୁ
ନିମନ୍ତ୍ରଣ କରି ରାଜାମାନଙ୍କୁ ଆଣିବୁ ।
ଗଦକୁ ବୋଇଲେ ପୂର୍ବଦିଗକୁ ତୁ ଯାଇ
ରାଜାମାନଙ୍କୁ ଆଣିବୁ ନିମନ୍ତ୍ରଣ ଦେଇ ।
ସାତ୍ୟକକୁ ବୋଇଲେ ତୁ ଉତ୍ତରକୁ ଯିବୁ
ନିମନ୍ତ୍ରଣ କରି ରାଜାମାନଙ୍କୁ ଆଣିବୁ ।
ଗୋବିନ୍ଦଙ୍କ ବଚନରେ ଗଲେ ଚାରିବାଟେ
ସେ ଯା ଦିଗକୁ ଚଳିଗଲେକ ସମ୍ଭାରେ ।
ରାମ କୃଷ୍ଣଙ୍କର ଯଜ୍ଞ ବୋଲି ସେ ଜଣାଇ
ପୁଣି ସମସ୍ତ ରାଜାଏ ଆସୁଛନ୍ତି ଧାଇଁ ।
ଥାଟ ସୈନ୍ୟ ସଙ୍ଗେ ଘେନି ସକଳ ନୃପତି
ରୈବତ ପର୍ବତେ ଆସି ପ୍ରବେଶ ହୁଅନ୍ତି ।
ଉଗ୍ରସେନ ବସିବାକୁ ଦିଅନ୍ତି ଆସନ
ପୂଜା ଗଉରବ ପାଇ ବସନ୍ତି ରାଜନ ।
ନୃପତି ଆସନ୍ତି ଯଜ୍ଞେ ନିମନ୍ତ୍ରଣ ଶୁଣି
ଦେଖିଣ ଆନନ୍ଦ ହେଲେ ଦେବ ଚକ୍ରପାଣି
ସହସ୍ର ଅର୍ବୁଦ ଦ୍ୱିଜ ହେଲେ ସୂପକାର
ରନ୍ଧଣା କରନ୍ତି ସେ ଯେ ଅମୃତ ଯୋଗାଡ଼
ଗଉଡ଼ି ଖଣ୍ଡଶି ପାକମାନ ନଳବିଧି
ବିନକର ତେଜେ ପାକ ହୋଇଅଛି ସିଦ୍ଧି ।
ମୃଗ ବରି ତଣ୍ଡୁଳ ଯେ ପରବା ସମାନ
ଜଗନ୍ନାଥ ଆଜ୍ଞାରେ ଯେ ନିଯୋଗ ଭିଆଣ
ସୁବର୍ଣ୍ଣର ପଲମ ଯେ ଥାଳ ରତ୍ନଝରି
ମଣୋହିବେକେ ଦିଅନ୍ତି ଘରୁ ତାହା ବାରି
ଗନ୍ଧ ଚନ୍ଦନ କର୍ପୂର ଅଗୁରୁ କସ୍ତୁରୀ
ଚତୁଃସମ ଗନ୍ଧମାନ ଶରୀରରେ ବୋଳି ।
ଦୁର୍ବାସା ସାମନ୍ତ ହେଲେ ଯାଗେ ଯାଗନିକ
ଋଷ୍ୟଶୃଙ୍ଗ ମାରକଣ୍ଡ ଋଷି ଉଦ୍ଦାଳକ ।
ଏତେ ଋଷି ବସି ତହିଁ ମହାଯଜ୍ଞ କରି
ବୈଶ୍ୱାନରର ବରଣ ମନ୍ତ୍ରେ ସୀଡ଼କାରି ।
ପ୍ରଚଣ୍ଡ ଲୋହିତ ରୂପ ହେଲେ ହୁତଭୁକ
ସ୍ୱାହା ସ୍ୱଧାମନ୍ତ୍ରେ ଘୃତ କଲେ ଅଭିଷେକ ।

ଋଷିମାନେ କରନ୍ତି ଯେ ବସି ବେଦଧ୍ୱନି
ଜଗନ୍ନାଥ ବଜାଇଲେ କରେ ଶଙ୍ଖ ଧ୍ୱନି ।
ବାସବ ଦେଲା ସୁଧର୍ମା ସଭାକୁ ପଠାଇ
ସହସ୍ର ଯୋଜନ ତାର ଆୟତ୍ତ ଅଟଇ ।
ମହାସଭାରେ ବସନ୍ତେ ରାଜାଗଣମାନେ
ହରଲେ ପାପ ଦୁଷ୍କୃତ ସଦା ଦରଶନେ ।
ବତିଶ ସହସ୍ର କନ୍ୟା ଅଷ୍ଟ ପାଟବଂଶୀ
ରୈବତ ପର୍ବତେ ହେଲେ ସମସ୍ତେ ଯେ ଆସି
ଲକ୍ଷେ ଷାଠିଏ ସହସ୍ର ଅଶୀତି ନନ୍ଦନ
ସମସ୍ତେ ଜଲେ ରୈବତ ପର୍ବତେ ଗମନ ।
ସହସ୍ର ଯୋଜନ ଅଟେ ସେହି ସଭାସ୍ଥଳ
ସମସ୍ତେ ପ୍ରବେଶ ହୋଇ ସେ ସଭାରେ ମିଳ ।
ଏସନକ ସମ୍ପଦ ଯେ ରୈବତ ପର୍ବତେ
ଦେଖିଣ ଆନନ୍ଦ ହେଲେ ଦେବ ଜଗଭୂତେ
ଏସନ ସମ୍ପଦେ ପୂର୍ଣ୍ଣ ରୈବତ ପର୍ବତ
ସମସ୍ତ ଦେଶୁଁ ପ୍ରବେଶ ଆସି ନରନାଥ ।
ସାତ୍ୟକ ଯେ ନିମନ୍ତ୍ରଣ କରଇ ଉତ୍ତରେ
ନିମିନ୍ତ୍ର ଆସଇ ବେଗେ ବେଗେ ନୃପବରେ ।
ନାରାୟଣ ମହାଯାଗ ନିମନ୍ତ୍ରଣ ଶୁଣି
ଆସନ୍ତି ସମସ୍ତ ଦେଶୁଁ ବେଗେ ନୃପମଣି ।
ରଥ ଗଜ ଅଶ୍ୱ ପୁଣି ଅନେକ ପଦାତି
ମିଳନ୍ତି ତ ସମାରୋହେ ସମସ୍ତ ନୃପତି ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରହିଁ ଅନେକ
ରାକ୍ଷସ ପିଶାଚ ରୁଦ୍ର ଆସି ସର୍ବଲୋକ ।
ଦଶଲକ୍ଷ ବ୍ରାହ୍ମଣ ଯେ ଦିଅନ୍ତି ଆହୁତି
ବ୍ରହ୍ମାଣ୍ଡରେ ପ୍ରକାଶଇ ଅଗ୍ନି ରୂପ କାନ୍ତି ।
ସ୍ରୁବେ ପୂରଇ ମୁନିଏ ଆହୁତି ଦିଅନ୍ତି
ଭୂରିତୋଷେ ଯାଗନିକେ ଆପଦ ଖଣ୍ଡନ୍ତି ।
ସାତ୍ୟକ ପ୍ରବେଶ ହେଲା ଯେ ଉତ୍ତର ଦିଗେ
ରାଜାମାନଙ୍କୁ ନିମନ୍ତ୍ରେ ଯାଇ ମଧ୍ୟସ୍ୱର୍ଗେ ।
ରଜାଏ ସମସ୍ତେ ଯଜ୍ଞ ନିମନ୍ତ୍ରଣ ପାଇ
ଆସନ୍ତି ସମସ୍ତେ ରାଜ୍ୟୁଁ ଯେତେକ ନୃପହିଁ ।
ରଥ ଅଶ୍ୱ ଗଜ ସେନ ଆବର ପଦାତି
ରଇବତ ପର୍ବତେ ଆସିଣ ମିଳନ୍ତି ।
ବ୍ରହ୍ମକ୍ଷତ୍ରୀ ବୈଶ୍ୟ ଶୂଦ୍ର ଦଇତ ପିଶାଚ
ରାଜାଗଣ ସର୍ବେ ଆସି ହୋଇଲେ ପ୍ରବେଶ ।

ଗୃଳଶ ସହସ୍ର ରାଜାଗଣେ ନିମନ୍ତ୍ରିଲା
ଭ୍ରମନ୍ତେ ଯେ ଜେନାବଳ ନଗରେ ମିଳିଲା ।
ଜେନାବଳ ପାଟଣାରେ ହୋଇଲା ପ୍ରବେଶ
ଭୁବନ ସୁବର୍ଣ୍ଣମୟ ଦେଖି ହେଲା ତୋଷ ।
କ୍ରୁମ୍ଭବଳୀ ପାଟଣା ଯେ ଅପୂର୍ବ ନଗରୀ
ତହିଁ ଭିତରେ କନକ ନାମେ ଅଛି ଗିରି ।
କପିଳସିଂହ ନନ୍ଦନ ଅଟେ ମଣି ସିଂହ
ଏହା ନନ୍ଦନ ଅଟଇ ଯେ ମହିଷ ସିଂହ ।
ତାହାର ନନ୍ଦନ ଅଟେ ବଜ୍ରସିଂହ ବୀର
ଏହାର ନନ୍ଦନ ଅଟେ ଗୋସିଂହ ଅସୁର ।
ଗୋସିଂହ ନାମରେ ଅଟେ ଯେବଣ ଦଇତ୍ୟ
ମନୁଷ୍ୟ ଶରୀର ତାର ଗୋମୁଣ୍ଡ ସଞ୍ଜିତ ।
ପ୍ରତାପୀ ରାଜା ମହିଷ ଅସୁରର ବଂଶ
ଜେନାବଳୀ ନଗ୍ରେ ରାଜ୍ୟ କରଇ ରାକ୍ଷସ ।
ତପେ ମନାଇଛି ଦେବ ଦେବ ଯେ ବିରଞ୍ଚି
ତ୍ରୈଲୋକ୍ୟ ଅବଧ ହେବବୋଲି ମନେବାଞ୍ଛି
ଊର୍ଦ୍ଧ୍ୱମୁଖ ହୋଇ ତପେ ତୋଷିଲା ତାହାଙ୍କୁ
ବର ଦେଇଗଲେ ପୁଣି ଆପଣା ପୁରକୁ ।
କନକ ଭୁବନ ତାର ପରମଳ ଦେଖି
ଅଶ୍ୱେକ ଚଢ଼ି ପ୍ରବେଶ ତହିଁରେ ସାତ୍ୟକ ।
ଅସୁର ଭୁବନ ବୋଲି ନ ଜାଣଇ ବୀର
ସାତ୍ୟକ ପ୍ରବେଶ ହେଲା ଯାଇ ସିଂହଦ୍ୱାର ।
ଲୌହଶିରୀ ସିଂହନାଦ ଦ୍ୱାରପାଳ ସେନ
ସହସ୍ରେ ସହସ୍ରେ ବୀର ଲୁହାଗଦା ଘେନ ।
ମହା ବଳବନ୍ତ ସେହି ଦୁର୍ଜ୍ଜୟ ଦାନବ
ସାତ୍ୟକକୁ ଓଗାଳଲେ କରି ମହାଗର୍ବ ।
କାହିଁର ମାନବା ତୁରେ କେବଣ ଭରସା
ଏ ଦେଶେ ପଶିଲୁ କରେ ଛାଡ଼ି ପ୍ରାଣ ଆଶା ।
ସିଂହନାଦ ବୋଲେ ଭଲ କଲୁ ତୁ ଅଇଲୁ
ଯତନେ ଯା ଲୋଡ଼ୁ ଆପେ ପ୍ରାପତ ହୋଇଲୁ
ନର ବାନର ଏ ସେନ ଆମ୍ଭ ନିଜ ଭକ୍ଷ୍ୟ
ପ୍ରାପ୍ତ ହେଲୁ ଖାଇ ଆମ୍ଭେ ପାଇବୁ ନା ସୁଖ ।
ଦରହସିତ ବଦନେ ଶାନ୍ତବାକ୍ୟେ ବୋଲି
ଗଦାବରେ ଥୋଇ କରେ ଅଶୀପତ୍ରେ ତୋଳି
ଆକର୍ଷଇ ଲୌହଶିରୀ ଧରି ତାର ଶିଖା
ଦେଖି ତାହାକୁ ସାତ୍ୟକ ହୋଇଲା ଡାଟକା ।

ଉପସ୍ଥିତେ ସାତ୍ୟକ ଯେ ସୁମରଇ ହରି
ବୋଲେ ଅଇଲ ରାଜାଙ୍କୁ ନିମନ୍ତ୍ରଣ କରି ।
ତୁମ୍ଭ ରାଜାର ଗ୍ରାମରେ କରି ମୋତେ ନେଇ
ଯତ୍ନେ ମୋତେ ଭକ୍ଷ ମୁହିଁ ଯିବ ଆଉ କାହିଁ ।
ଅସୁର ବୋଲଇ କି ମୁହିଁ ନ ଜାଣେ ତୁମ୍ଭଙ୍କୁ
ନିମନ୍ତ୍ରଣ ପାଇଁ ଯିନା ଅଇଲ ଏଥକୁ ।
କାର ଦୂତେ ବୋଲି ଦୟା କଲେ କଉଣସେ
ଦରଶନ କରାଇଲେ ରାଜାର ସମୀପେ ।
ଜଗତି ଉପରେ ବଜେ ଗୋସିଂହ ନୃପତି
ତଳେ ପଟୁଆର ଅଶୀପଦ୍ମ ସେନାପତି ।
ଆକାଶ ମଣ୍ଡଳେ ଶିର ଲାଗୁଛି ରାକ୍ଷସ
ଦେଖିକରି ସାତ୍ୟକର ଉଡ଼ିଲା ସାହସ ।
ମୁହିଁ ତ ଏ ନଗରକୁ ଅଇଲି ନ ଜାଣି
ଏଥୁ ପାରିକରି ମୋତେ ଦେବ ଚକ୍ରପାଣି ।
ଲୌହଶିଖ ବୋଲେ ସ୍ୱାମି ଅସୁର ନାୟକ
ସାବଧାନ ହୋଇ ଶୁଣ ଏହା କଥାଯାକ ।
ଅସୁରେ ବୋଇଲେ ହେବ ଏ ଅସୁର ବଳ
ଭଲ ଲକ୍ଷ୍ୟ ତ ଆମ୍ଭର କାହୁଁ ଆସି ମିଳ ।
କେ ବୋଲେ ଏହାକୁ ଭଲ କରିଣ ଛଡ଼ାସି
ବୁରିଆଡ଼ର ମାଂସକୁ ଭିନ୍ନଭିନ୍ନ କରି ।
ପଚାରଇ ଗୋସିଂହ ରେ ତୋର କିସ କାର୍ଯ୍ୟ
କି ନିମନ୍ତେ ଆସିଅଛୁ ଆମ୍ଭ ପୁରେ ଆଜ ।
ସାତ୍ୟକ ବୋଇଲା ଶୁଣ ହୋଇ ସାବଧାନ
ମଧୁବନର ନୃପତି ଅଟେ ଉଗ୍ରସେନ ।
ଦେବଯଜ୍ଞ କରୁଅଛି ରୈବତ ପର୍ବତେ
ରାଜାଏ ତହିଁକି ଚଳିଗଲେଣି ସମସ୍ତେ ।
ଋଷି ବିପ୍ର ତପୋଧନେ ପୂରିଲେଣି ଗିରି
ମୁହିଁ ତୁମ୍ଭଙ୍କୁ ଅଇଲି ନିମନ୍ତ୍ରଣ କରି ।
ସମସ୍ତ ସଇନ୍ୟ ଯିବେ ଯେତେକ ତୁମ୍ଭର
ସେ ଯଜ୍ଞକୁ ଯିବ ତୁମ୍ଭେ ଘେନ ଏ ବେଭାର
ଗୋସିଂହ ବୋଇଲା ଛାଡ଼ ଛାଡ଼ ହୋ ଏହାକୁ
ଏ ଆସିଛି ନିମନ୍ତ୍ରଣ ଦେଇ ବରିବାକୁ ।
ଋଷି ବିପ୍ର ତପୋଧନ ଅଛନ୍ତି ତ ମିଳି
ସୁଖେ ଭକ୍ଷିବା ଆମ୍ଭେ ରେ କରି ଯୋଡ଼ାବଳି
ଅନେକ ନର ଭୋଜନ ତହିଁ ରନ୍ଧାଅଛି
ସୁଖେ ଭୋଜନ କରିବା ତହିଁ ବାଛି ବାଛି ।

ସାତ୍ୟକଙ୍କୁ କଲେ ତହିଁ ଅନେକ ଗୌରବ
ଅଙ୍ଗେ ଅଳଙ୍କାର ଦେଇ କଲେ ପ୍ରିୟଭାବ ।
ସାତ୍ୟକ ଭାବରେ ଶୀର୍ଣ୍ଣକୂପରେ ପଡ଼ିଲି
ଧର୍ମ ଉଦିତ ହୋଇଲା ଉପାୟେ ତରିଲି ।
ମୋହର ପ୍ରାଣ ରଖିଲି ମୁଁ ଉପାୟ କରି
ରାମକୃଷ୍ଣଙ୍କ ସଂଗ୍ରାମେ ଯିବେ ଯମପୁରୀ ।
ସାତବଂଶ ସଙ୍ଗତରେ ମରିବାର ଭଲ
ଏକାରେ ମଲେ ମୋହର ସିନା ଅମଙ୍ଗଳ ।
ଭଗଭର ନାଶ ଅର୍ଥେ ଜାତ ଦଇତ୍ୟାରି
ଏମନ୍ତ ସଂଯୋଗେ ଅବା ଯିବ ଏହୁ ମରି ।
ହରଷ ବିସ୍ମୟେ କରେ ସାତ୍ୟକ ଗମନ
ଗୋସିଂହର ଅଳଙ୍କାର ହୋଇଛି ଭୂଷଣ ।
ସାତ୍ୟକଙ୍କୁ ଦେଲା ଆଣି ବିମାନ ଗୋଟିଏ
ଦଶେ ହେମଝଲ ରତ୍ନ କିରଣ ପରାୟେ ।
ସେହି ବିମାନ ଉପରେ ବିଜୟ ସାତ୍ୟକ
ବନ୍ଧୁ ସାଜ ବୋଲି ଗଲା ତାକୁ ଆପେ ଡାକ
ଢୋଲ ଠମକ ନିଶାଣ ବାଜେ ବିଜଘୋଷ
ଖରତୁରୀ ଶବଦରେ କମ୍ପଇ ଆକାଶ ।
ଓଟ ଗଧ ଗଜ ଅଶ୍ୱ ବ୍ୟାଘ୍ର ଯେ ଶାର୍ଦ୍ଦୂଳ
ଆରୋହି ଅସୁରେ ଯାନ୍ତି ଅପର୍ଯ୍ୟାପ୍ତ ବଳ ।
ଗଦା ଶୂଳ ଚକ୍ର କାତି ମୁଦ୍ଗର ଭୁଷଣ୍ଡି
ସୁବର୍ଣ୍ଣ ପ୍ରବାଳ ରତ୍ନେ ରଥଯାକ ମଣ୍ଡି ।
ଲକ୍ଷେକ ସାଗର ରଥ ଦ୍ୱିସାଗର ହସ୍ତୀ
କେନିଲକ୍ଷ ସାଗର ଯେ ମାତଙ୍ଗ ଗବସ୍ତି ।
ଅଶୀଲକ୍ଷ ଅସୁରଙ୍କ ବ୍ୟାଘ୍ର ଯେ ବାହନ
ଓଟ ପିଠିରେ ଚଢ଼ିଲେ ଅସୁରେକ ସୈନ୍ୟ ।
ଗଧ ବାହନେ ପଞ୍ଚଶଖର୍ବ ଦୈତ୍ୟ ଚଳି
ବଳଆ ବାହନେ ତେରଖର୍ବ ମହାବଳୀ ।
ବଳଦ ବାହନେ ଗଲେ ଅଶୀପଦ୍ମ ସେନା
ଗଜ ବାହନରେ ଗଲେ ଅଶୀପଦ୍ମ ଜେନା
ଗଦା ମୁଦ୍ଗର ଖଡ଼ଗ ଶକ୍ତି ଶୂଳ ଯଷ୍ଟି
ପଞ୍ଚାଶ କୋଟି ଭୁଷଣ୍ଡି ଚକ୍ର ଘେନ ଉଠି ।
ଅଜଗବ ସମ ଧନୁ କମାଣହିଁ କରେ
ଲକ୍ଷ ଲକ୍ଷ ନାରାଚ ସେ ପୂରାଇ ତୂଣୀରେ ।
ମୀନ ଶୁକ୍ଳପକ୍ଷ ଷଷ୍ଠୀ ତିଥି ଗୁରୁବାର
ଆର୍ଦ୍ରା ନକ୍ଷତ୍ର ମିଥୁନ ଚନ୍ଦ୍ର ସେ ଦିନର ।

କୌଳବ ନାମେ କରଣ ଅତିଗଣ୍ଡ ଯୋଗ,
ମୀନ ସଙ୍କ୍ରାନ୍ତିର ଉତ୍ତରାୟନ ଭୋଗ ।
ଅଶ୍ଳେଷା ନକ୍ଷତ୍ର ଅଟେ ଗୋସିଂହର ରାଶି
ସେ ରାଶିରେ କେତୁଗ୍ରହ ବ୍ୟୟେ ଗୁରୁ ବସି ।
ଅଷ୍ଟମରେ କୁଜଗ୍ରହ ସପ୍ତମରେ ରାହୁ
ନିଧନ ଋକ୍ଷେ ପ୍ରୟାଣ କଲ ଜାଣ ସେହୁ ।
ଆଗରେ ବାଟ କଡ଼ାଉ ଅଛନ୍ତି ସାତ୍ୟକି
ଧାଆନ୍ତି ଅସୁରମାନେ ଆବୋରି ମହୀକି ।
ପ୍ରଳୟକାଳେ ଯେସନେ ସିନ୍ଧୁ ଆସେ ଘୋଟି
ତେସନେ ଅସୁରବଳ ମହୀରେ ପ୍ରକଟି ।
ସାତ୍ୟକି ବିଚାରେ ମୁହିଁ ମନ୍ଦକୃତ୍ୟ କଲି
ଏତେ ବଡ଼ ଦୈତ୍ୟପୁରେ କପାଇଁ ପଶିଲି ।
ଦେଖି କହିବେ କି ବୋଲି ମୋତେ ଚକ୍ରପାଣି
ଆବର କ୍ରୋଧ କରିବେ ନିଶ୍ଚେ ହଳପାଣି ।
ଡରେ ମୁହିଁ ନସ୍ମରିଲି ପ୍ରାଣର ବିକଳେ
ନ ପୁଣ କୋପ କରନ୍ତି ମୋତେ ହଳଧରେ ।
ପୁଣି ବିଚାରେ ମରଣୁ ବଳଯିବ ଲାଜ
କୋପକଲେ ଶ୍ରୀରାମରେ ମରିବଇଁ ଆଜ ।
ପୃଥ୍ୱୀର ଭାର ଉଶ୍ୱାସ ପାଇଁ ଦେହଧାରୀ
ଏହାର ନିମନ୍ତେ ଯଜ୍ଞ ଅଛନ୍ତି ବା କରି ।
ଯାହା ତାହାହେଉ ଏହୁ ଧାରଣାର ଶଲ
ମଲେ ଉଶ୍ୱାସ ପାଇବ ବସୁନ୍ଧରା କଲି ।
ଖଳପ୍ରାଣୀ ଯେ ଆବର ପରଧନହାରୀ
ବିପ୍ର ଅଭକତ ଧର୍ମ ମାର୍ଗ ନାଶକାରୀ ।
ଦୁଃଖୀଜନମାନଙ୍କୁ ଏ ନ କରନ୍ତି ଦୟା
ପରଜୀବକୁ ଖଣ୍ଡନେ ବଡ଼ାନ୍ତି ଏ କାୟା ।
ଅପନ୍ତରା ବୃକ୍ଷ କାଟି ହରି ପରସୀମା
ଆବର ହରି ନିଅନ୍ତି ବଳେ ପରରାମା ।
ଏହାଙ୍କର ମାରଣରେ ବହୁତର ପୁଣ୍ୟ
ବେଦରେ କହନ୍ତି ଏହା ସଦା ବିବର୍ଜନ ।
ପଛରେ ଅମାପବଳ ସାତ୍ୟକି ଯେ ଆଗେ
ଅସୁରଙ୍କୁ ଛାଡ଼ିଯାଇ ଲେଡ଼େ ବେଗେ ବେଗେ
ଧାଆନ୍ତି ଯେ କଉଣସେ ବନ୍ଧୁଦୂର କ୍ଷେପି
ଯେସନେକ ବନଚରେ ଖେଦି ଖେଦି ଧାପି
ଗୋରୁ ମନୁଷ୍ୟ ଘୁଷୁରି ମେଷ ଯେ ଛାଗଳ
ଖାଅନ୍ତି ଧରି ଗିଳନ୍ତି ମଦରସେ ଭୋଳ ।

ପ୍ରୟାଣ କାଳେ ଭାଙ୍ଗିଲେ ସେ ଅନେକ ଦେଶ
ନଗର ଛାଡ଼ିଣ ଜନେ କଲେ ବନବାସ ।
ବହୁତର ଉପଦ୍ରବ କରିଣ ଅସୁରେ
ଭକ୍ଷନ୍ତି ବାଳକ ସ୍ତ୍ରୀଆଦି ଧରି କୋଳେ ।
ସର୍ବଭକ୍ଷ ଦେଖି ତାଙ୍କୁ ସାତ୍ୟକି ଆଶ୍ଚର୍ଯ୍ୟ
ଏହି ଦୁରନ୍ତଙ୍କ ବଳ ନାଶୁ ଦେବରାଜ ।
ଏ ଦୁଷ୍ଟବଳଙ୍କୁ ନାଶ କରିବା ନିମନ୍ତେ
ଦେବତା ଏ ମୋତେ ଅବା ପେଷିଲେ ଗୁପତେ
ରହିଲେ ଅସୁରବଳ ମଧୁବନ ମାଡ଼ି
ରାତରେ ସାତ୍ୟକି ଗଲା ଅସୁରଙ୍କୁ ଛାଡ଼ି ।
ପଛକୁ ସେ ପୁଣ ପୁଣ ଚାହିଁଇ ସାତ୍ୟକି
ନ ପୁଣ ଗୋଡ଼ାଇ ମୋତେ ମାରନ୍ତି ସେ ନକି
ରାତ୍ରିକାଳେ ଅଇଲା ସେ ଗଗନମଣ୍ଡଳେ
ଅସୁରେ ମତ୍ତ ମଦିରାରସ ପାନ ହେଲେ ।
ବାଡ଼ା ମର୍ଦ୍ଦଳ ବଜାଇ ବଜାନ୍ତି ଘୁମୁରା
ମହୁଆଳ ଖେଳେ ନାଚ ଚମକାନ୍ତି ଧରା ।
ରାତ୍ରେ ଯେ ସାତ୍ୟକି ଗଲା ବେଗ ବେଗ ହୋଇ
ରୈବତ ପର୍ବତେ ଶୀଘ୍ର ପ୍ରବେଶିଲା ଯାଇ ।
ମହା ଯଜ୍ଞରେ ସେ କରିଅଛନ୍ତି ଉତ୍ସବ
ଅସ୍ଥାନ ଉପରେ ବସେ କୃଷ୍ଣ ବଳଦେବ ।
ତନେ ପ୍ରଣିପାତ କରି ଶୁଣିଲା ସାତ୍ୟକି
କେଶବ ଆନନ୍ଦ ହେଲେ ଭ୍ରାତାକୁହିଁ ଦେଖି ।
ସାତ୍ୟକି ବୋଇଲା ଦେବ ଶୁଣ ମୋ ଶ୍ରୀହରି
ମନ୍ତ୍ରିଷସିଂହର ନାତି ଗୋସିଂହ ଆସୁଛି ।
ସାତ୍ୟକି ବଚନ ଶୁଣି ଦେବ ହଳସାଇଁ
ଆସ୍ଥାନୁ ଡେଇଁ ପଡ଼ିଲେ ମୁଷଳ ବୁଲାଇ ।
ରେରେକାର କରି ତାକୁ ଡାକ କାମପାଳ
କାଦମ୍ବରୀ ପାନେ ମତ୍ତ ନୟନ ସୁତଳ ।
ଗୋବିନ୍ଦ ବୋଇଲେ କୋପ ସମ୍ବରଣ କର
ଧାତାର ବରେ ବଡ଼ହିଁ ପ୍ରତାପୀ ଅସୁର ।
ପୁରୁଷ ହାତରେ ବଧ ନୁହେ ତାର ବଂଶ
ଯୁଗାନ୍ତକ କାନ୍ତିଁ କଲୀ ଅଟଇ ରାକ୍ଷସ ।
ବଳରାମ ବୋଇଲେ ତୁ କହିଲୁ ଏମନ୍ତ
ଏକ୍ଷଣି ସବୁ ନାଶିବ କରିବା କେମନ୍ତ ।
ନର ଜନ୍ତୁ ସୈନ୍ୟ ଦେବେ ଏହିକ୍ଷଣି ଧ୍ୱଂସି
ବିଚାରିଲେ ଆମ୍ଭେ ସିନା ହେଲୁ ଅବିଶ୍ୱାସୀ ।

ଭଲ ଯଜ୍ଞ କଲୁ ଆମ୍ଭେ ପୁଣ୍ୟଧର୍ମ ଅର୍ଥେ
ପାପେ ଦୂଷିତ ହୋଇଲୁ ଏବେ ଅନର୍ମିତେ ।
ଏ ମହାସଭା ଯେମନ୍ତେ ନୋହିବ ଉପେକ୍ଷା
କେମନ୍ତେ ଅସୁର ଭୟୁ କରିବାନା ରକ୍ଷା ।
ସଭାରେ ଫୁଟି ପଡ଼ିଲା ଏସନ ବାରତା
ଲାଗିଲା ମନରେ ତ୍ରାସ ହେଲା ବଡ଼ ଚିନ୍ତା ।
ମହାଗୋଳ ହୋଇଲା ସେ ସଭାର ଭିତରେ
କମ୍ପିଲେକ ରାଜାମାନେ ଦୈତ୍ୟଙ୍କର ଡରେ ।
ଉଗ୍ରସେନ ବାସୁଦେବ ନନ୍ଦ ଉପନନ୍ଦ
ବାବୁ ଗୋସିଂହ ବାନ୍ଧିଲା ଯେନ ଦୈତ୍ୟବୃନ୍ଦ
ଏବେ ଆମ୍ଭେ ଆଉ ରକ୍ଷା ହୋଇ ନ ପାରିବ
ପୁତ୍ର ବନ୍ଧୁ ଘେନ ଚାଲ ଦ୍ୱାରକାକୁ ଯିବା ।
ପୁତ୍ର ଦୁହିତା ବାନ୍ଧବ ବଧୂ ଆଦିକରି
ଉତ୍ସବ ନିମନ୍ତେ ଏଥେ ଅଛନ୍ତି ତ ପୁରି ।
ଏବେ ବଳୁର ବୁଦ୍ଧି ଯେ କରି କାମପାଳ
ପଳାଇ ନ ପାରିବେଟି କଷ୍ଟାନର ବେଳ ।
ଏହାଙ୍କ ବାକ୍ୟେ ବଦନ୍ତି ଦେବ ହଳଧର
ଚାଲଯାନ୍ତୁ ଦ୍ୱାରକାକୁ କୁମାରୀ କୁମାର ।
ଗୋବିନ୍ଦ ବୋଇଲେ ଦେବ କଲେଟି ଏମନ୍ତ
ସଭାର ମୁରାଟ ଭାଙ୍ଗି ଯିବଟି ସମସ୍ତ ।
ଋଷିମାନେ ଏହା ଶୁଣି ତରଳ ହୋଇଲେ
ଯଜ୍ଞ ଉପେକ୍ଷି ରାମଙ୍କ ସନ୍ନିଧେ ମିଳିଲେ ।
ଭୁ କାମପାଳ ସକଳ ଜନ ଚିନ୍ତାମଣି
ଗୋସିଂହର ଭୟେ ଆମ୍ଭେ କ କରିବୁ ପୁଣି ।
ସେ ଦୁର୍ଲ୍ଲଭ କଉଣପ ଅଟେ ମହାପାପୀ
ଋଷି ବିପ୍ର ତପୋଧନ କାହାକୁ ନ ଥାପି ।
ଏ ମହା ସଭାଟି ଦେବ ହୋଇଲା ନିରକ୍ଷ
ଗୋ ବ୍ରାହ୍ମଣ ଆଦି ସବୁ ଅସୁରଙ୍କ ଭକ୍ଷ ।
କପିଳ ମାଂସ ବୋଲି ସେ ଋଷିଙ୍କୁ ଖୋଜଇ
କରଇ ସେ ପୋଡ଼ାବଳ ପାଏ ଯେବେ ସେହି
ଅଟନ୍ତି ଦେବ ମାନଙ୍କେ ଅସୁରେ ଅଜେୟ
ଶସ୍ତ୍ରମାନ ନ ଭେଦଇ ତାହାଙ୍କର କାୟ ।
ଆମ୍ଭର ବଚନ ତୁ ହେ ଶୁଣ ହଳହସ୍ତ
ଏ ମହାଯଜ୍ଞଟି ତୋତେ ନୋହିଲା ପ୍ରାପତ ।
ନିର୍ଭୟରେ ଆମ୍ଭେ ସିନା ପାରୁ ମନ୍ତ୍ର ପଢ଼ି
ମନ୍ତ୍ରଭ୍ରଷ୍ଟ ହୋଇଲୁଣି ଦାନବଙ୍କୁ ଡରି ।

ରାମ ବୋଇଲେ ନ କର ତୁମ୍ଭେ କିଛି ଚିନ୍ତା
ଦାନବର ଭୟୁ ଆମ୍ଭେ ନିବାରଣ କର୍ତ୍ତା ।
ଦୈତ୍ୟଭୟୁଁ ନ ପାରିବୁ ଯେବେ ରକ୍ଷାକରି
କେମନ୍ତେ ନାମ ବହିବୁ ଆମ୍ଭେ ଦଇତ୍ୟାରି
ଏବେ ଥୋକାଏ ଦୂରକୁ ଆମ୍ଭେ ଚାଲି ଯିବା
ସଭାକୁ ସେ ଦଇତ୍ୟଙ୍କୁ ଅଣାଇ ନ ଦେବା ।
ଗୋବିନ୍ଦ ବୋଇଲେ ଦେବ ବରିଲା ସାତ୍ୟକି
ଆସୁକନା ସେ ଦଇତ୍ୟ କି କରଇ ଦେଖି ।
ରୈବତ ଠେକି ଚଉଦଶ ଯୋଜନ ସେ ଗଲେ
ତା ଆସିବା ପଥେ କେଶୀ ପର୍ବତେ ରହିଲେ
ରଜନୀ ପ୍ରଭାତେ ଉଦେ ହେଲେ ଦିନମଣି
ସାଜ ସାଜ ବୋଲି ଉଠେ ଶୁଭିଲାକ ବାଣୀ ।
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ଘୋଷେ ଧାମନ୍ତି ଅସୁରେ
ଅସ୍ଥି ଚର୍ମ ରକ୍ତ ମାଂସ ବିଭୂତ ଶରୀରେ ।
ଗୋଚର୍ମ ପରିଧାନ କେ ମଇଁଷି ଚଉଁରୀ
କର୍ଣ୍ଣରେ ରକତବର୍ଣ୍ଣ ମନ୍ଦାରର କଢ଼ି ।
ଧାମନ୍ତି ସେ କଉଣପେ ବିକଟ ଚରିଳ
ଖାଙ୍କର କେଶମୁକୁଳା କାହାର ବା ବାଳ ।
ପାତାଳେ ପାଦ ଆକାଶେ ଶିର ଯାଇ ଲାଗେ
ଧାମନ୍ତି ସେ କଉଣପ କେ କାହାର ଆଗେ ।
ଗିରିବର ପ୍ରାୟେ ଦିଶେ ତାହାଙ୍କର ମୁଣ୍ଡ
ଚମ୍ପାପତ୍ର ପ୍ରାୟେ ନେତ୍ର ବିସ୍ତାରଣ ତୁଣ୍ଡ ।
ସ୍ୱର୍ଗ ଗୁଡ଼ ଡରେ ଶୂନ୍ୟେ ପୁରୁଷେ ପଳାନ୍ତି
କାଳଯମ ତୁଲେ ଦୈତ୍ୟଗଣଙ୍କୁ ମଣନ୍ତି ।
ତିରିଶ ଯୋଜନ ମାଡ଼ି ଚଳନ୍ତି ଅସୁରେ
ଅସୁରଙ୍କ ପ୍ରତିଜ୍ଞା କେ ମୁଖେ କହିପାରେ ॥
ମୁଖରାବ ଶବଦରେ ଗିରିଯାଏ ଫାଟି
କ୍ଷୀରୋଦଜଳ ଯେସନେ ଆସେ ପୂର୍ବେ ଘୋଟି
ରାମକୃଷ୍ଣ ରୁହିଁଲେ ଯେ ପର୍ବତରେ ଉଠି
ଗିରିମାଳ ଆସନ୍ତି କି ଗଗନରେ ଫୁଟି ।
ଗୋବିନ୍ଦ ବୋଇଲେ ଦେବ ଦୁର୍ଭାର ଏ ଥାଟ
ପଞ୍ଚତିରିଶ ଯୋଜନ ନ ଦିଶଇ ବାଟ
ଅସୁରଙ୍କ ଭୀମମୂର୍ତ୍ତି ଦେଖି ନୀଳାମ୍ବର
ବେଗ ହୋଇ ସଉନନ୍ଦ ସମର୍ଥିକ କର ।
ଦଶନ୍ତି ନନ୍ଦାଘଟେକ ଜଣି ହଳପାଣି
ନୟନ ବରଜେ ତାଙ୍କ କାଳଚନ୍ଦ୍ର ଜାଣି ।

ତାଳଧ୍ୱଜ ରଥ ତେଜ୍ୟାକରି ଦେବ ସ୍ୱାମୀ
ପର୍ବତ ଉପରୁ ଡେଇଁ ପଡ଼ିଲେ ଧରଣୀ ।
ତ୍ରୈଲୋକ୍ୟ ବିକାଶିଲା କାମପାଳ ତେଜ
ମହାକୋପଭରେ ଗଲେ ଗର୍ଜି ଦେବରାଜ ।
ହଳ ମୁଷଳ ବୁଲାଇ ଧାଆନ୍ତି ସେ ହଳୀ
ଏକା ରାମ ଲୋଡ଼େ ବଡ଼ ବଳକୁ ଓଗାଳି ।
ନାରାୟଣ ସୁମରିଲେ ଧ୍ୟାନେ ଖଗେଶ୍ୱର
ରମ୍ୟକ ଦ୍ୱୀପୁଁ ଆଇଲା ବିନତାକୁମର ।
ନାରାୟଣ ବିଜେ କଲେ ବୈନତେୟ ପିଠି
ଶଙ୍ଖ ଚକ୍ର ଧନୁ ଗଦା କୌମୋଦକୀ ମୁଷ୍ଟି ।
ବିଜୟ ଶ୍ରୀବଳଦେବ ସେ ମହା ସଂଗ୍ରାମେ
ବାଟେ ଥାଇ ଓଗାଳିଲେ କୃଷ୍ଣ ବଳରାମେ ।
ଆଗୁଆଣି ହୋଇଥିଲେ ଯେତେ ମହାବୀର
ରାମଙ୍କୁ ବେଢ଼ିଲେ ଆସି କରି ଲକ୍ଷେଶ୍ୱର ।
ଯୋଗେଶ୍ୱର ପୁରୁଷ ସେ ସଦା ରଙ୍ଗେଭୋଳ
ରଣ ଦେଖିଣ ଆନନ୍ଦ ହେଲେ କାମପାଳ ।
ସଉନନ୍ଦ ସମର୍ଥକୁ ବୁଲାଇଣ କରେ
ପିଟିଲେ ନେଇ ଦୁରନ୍ତ ଦୈତ୍ୟଙ୍କ ଉପରେ ।
ପ୍ରଥମ ଥାଟେ ଆସିଲେ ଦେବ ବେଗେ ଆସି
ଆଦିତ୍ୟର ଅସ୍ତେ ଯେସନେ ରଜନୀ ପ୍ରବେଶି ।
ତେସନ ଦାନବଗଣେ ରେବତୀରମଣ
ବନେ ସେ ଦର୍ପିଷ୍ଟଙ୍କର ଦର୍ପ କଲେ ଚୂର୍ଣ୍ଣ ।
ରଥ ଗଜଙ୍କ ଉପରେ ହଳ ନେଇ ପିଟି
ବିଷମଘାତେ ପଡ଼ିଲେ ଅନେକ ଯେ କୋଟି ।
ପୁଣି ପ୍ରହାର କଲେ ସେ ହୋଇ ଊର୍ଦ୍ଧ୍ୱବାହୁ
ନିଶାପତି ଦେଖି ଯେସନେ ଯୋଟଇ ସେ ରାହୁ
ବ୍ରହ୍ମାଣ୍ଡ କମ୍ପିଲା ରାମ ଦେଲେ ଘୋରରଡ଼ି
ଗିରିବର ସମାନେ ସେ ପଡ଼ୁ ଅଛନ୍ତି ଝଡ଼ି ।
ଅସ୍ତ୍ର ପ୍ରହାର କରନ୍ତି ରାମ ମହାତମେ
ଅନେକ ଅସୁର ବଳ ମାଇଲେ ସଂଗ୍ରାମେ ।
ପିଟନ୍ତି ସେ ବଳରାମ ଲୋଟନ୍ତି କୌଣପେ
ଅନେକ ଅସୁର ମାରି ପକାଇଲେ କୋପେ ।
ଦାନବେ ବୁଲାଇ କରେ ଆୟୁଧ ପ୍ରହାର
ପର୍ବତ ଉପରେ ପଡ଼ି ଯେସନେ ହୁଏ ଚୂର ।
ରାମ ଉପରେ ତେସନ ଦୈତ୍ୟଙ୍କର ଶର
ଆଚମ୍ବିତ ହେଲେ ତାହା ଦେଖି ନିଶାଚର ।

ଅସୁରଙ୍କ ଶସ୍ତ୍ରକୁ ସେ ନ କରଇ ଖାତି
ଆଉରି ରେ ଅସୁର ବୋଲି ଉଠି ହଳପତି ।
ଲକ୍ଷେକ ସେନା ମାଇଲେ ଏକା ନୀଳାମ୍ବର
ଲକ୍ଷେକ ମାଇଲେ ପକ୍ଷାଘାତେ ଖଗେଶ୍ୱର ।
ଯେ ବନ୍ଦ ମାଇଲେ ଗଦା କୌମୋଦକୀ ଧରି
ଲକ୍ଷେକ ସେନାଏ ରଣେ ପକାଇଲେ ମାରି ।
ଛନଲକ୍ଷ ସେନା ଯହୁଁ ମଲେ ଏହିମତେ
ଦଣ୍ଡଭଗ୍ନ ହେଲା ନବଯୋଜନ ପର୍ଯ୍ୟନ୍ତେ ।
ଯେ ସିଂହ ଦୈତ୍ୟର ମନ୍ତ୍ରୀ ଜପାସୁର ବୋଲି
ବଳରାମ ଅଗ୍ରତକୁ ଅଇଲେକ ଖେଳି ।
ପାଦରେ ଗମନ ଶସ୍ତ୍ର ନାହିଁ ତାର ହସ୍ତେ
ପ୍ରବେଶ ହୋଇଲା ରାମ କୃଷ୍ଣଙ୍କ ଅଗ୍ରତେ ।
ଆହେ ମହାତମା ତୁମ୍ଭେ କାହାର ନ ସୁନ
ଆମ୍ଭେ ସେ ଦାନବ ଜାଣ ତୁମ୍ଭଙ୍କୁ ନ ଛନ୍ଦୁ ।
ଆମ୍ଭଙ୍କୁ ନିମନ୍ତ୍ରି ତୁମ୍ଭେ ଆଣିଲ ଯାଗକୁ
ଭୋଜନ ନ ଦେଇ କପା ମାରୁଛ ଆମ୍ଭଙ୍କୁ ।
ବିବାଦ ନାହିଁ ତୁମ୍ଭର ଆମ୍ଭର ତ ପୂର୍ବେ
ଯଜ୍ଞ ଦେଖିବା ନିମନ୍ତେ ଆସିଅଛୁ ଆମ୍ଭେ ।
ଯାହାକୁ ନିମନ୍ତ୍ରି ଆଣି ତାହାକୁ କି ମାରି
ଭୁଞ୍ଜାଇ କରି ବିଶ୍ୱାସଘାତକର ପରି ।
ପ୍ରୀତି ଦେଖାଇ ମାରଇ ଜାଣ ଅବିଶ୍ୱାସୀ
ଆହାର ଦେଇ ପ୍ରାଣୀକୁ ଯେଉଁ ଜନ ନାଶି ।
ନିଶ୍ଚୟ ସେ ଜାଣ ହୁଏ ବ୍ରହ୍ମହତ୍ୟା ଦୋଷୀ
ଧର୍ମଶାସ୍ତ୍ରେ ମୁନିଗଣ ଅଛନ୍ତି ପ୍ରକାଶି ।
ଆହେ ମହାତମା ତୁମ୍ଭେ ଗୁଣ ଜ୍ଞାନବନ୍ତ
ଜ୍ଞାନ ଥାଉଁ ଥାଉଁ କରି ବିଶ୍ୱାସରେ ଘାତ ।
ବଳରାମ ବୋଧିଗଲେ ଅସୁର ବଚନେ
ଶାନ୍ତକୁ ଭଜିଲେ ବଚନ ମଧୁରସ ପାନେ ।
ରହ ରହ ଶ୍ରୀକୃଷ୍ଣ ହୋ ନ ମାର ଏହାଙ୍କୁ
ଶାନ୍ତ ମୂରତି ହୋଇଣ ଆସନ୍ତୁ ସଭାକୁ ।
ଆଗେ ରାମ କୃଷ୍ଣ ପଛେ ଅସୁର ସଇନ୍ୟ
ରୈବତ ପର୍ବତେ ବିଜେ ସେ ଜଗମୋହନ ।
ପର୍ବତ ଉତ୍ତର କୋଣେ ଛାଡ଼ି ଅସୁରଙ୍କୁ
ଅଶୀକଣ ଘାରି ତୁଲେ ନେଲେ ଗୋସିଂହଙ୍କୁ
ବସାଇଲେ ନେଇ ଛାୟାମଣ୍ଡପ ମଧ୍ୟରେ
ଯାଧୁ ତୁ ଜଗମୋହନ ବୋଲନ୍ତି ଅସୁରେ ।

ସାଧୁ ତୁ ଜଗତମୋହନ ତୋର କୂଟବୁଦ୍ଧି
ଏତେ ବଳକୁ ଆଣିଲୁ କପଟରେ ସାଧି ।
ଉଗ୍ରସେନ ରାଜା କଲେ ଗୋସିଂହକୁ ପୂଜା
ଗଉରବ ପାଇ ବସେ ସେ ଅସୁର ରାଜା ।
ଯେ ବସ୍ତୁ ଯୋଗାଡ଼ ଆଦ ତାହାଙ୍କୁ ଦିଅନ୍ତି
ଛପନ କୋଟି ଯାଦବେ ଅନ୍ନ ପରଷନ୍ତି ।
ସୂପକ୍ୱ ଅନ୍ନ ଅମୃତ ଯୋଗାଡ଼ ଏମାନ
ସନ୍ତୋଷ ମନେ କରନ୍ତି ଅସୁ ଭୋଜନ ।
ଅମୃତରସ ଭୋଜନେ ଅସୁର ନୃପତି
ଅସୁରଙ୍କ ତୁଲେ ହେଲା ଯାଦବଙ୍କ ପ୍ରୀତି ।
ବଳରାମ ବୋଇଲେ ଏ ପୃଥିବୀକ ଭାର
ଯଜ୍ଞ ସରଲେ ମାରିବା ଘେନ ଦାମୋଦର ।
ଏହା ଭୟେ ଦେବେ ରହି ନ ପାରିଲେସ୍ୱର୍ଗେ
ଶତେ ବେଳ ସ୍ୱର୍ଗପୁର ଜୂଉ କଲା ରାଗେ ।
ଏସନକ ବୃତ୍ତାନ୍ତେ ରାମକୃଷ୍ଣ ବେନି
ଚନ୍ଦ୍ରସେନକୁ ରାଇଲେ ଦେବ ସସ୍ତ୍ର ଯୋନି ।
ଅମର ଅଭିଷେକା ଏ ପାରିଜାତ ମାଳେ
ଆଭରଣ କରି ନେଇ ରାମକୃଷ୍ଣ ଗଲେ ।
ଜଗନ୍ନାଥ ଦେବଙ୍କୁ ତୁ କହିବୁ ଏକାନ୍ତ
ଗୋସିଂହ ଦଇତ୍ୟ ନାଶଯାଇଟି ଯେମନ୍ତେ ।
ଅଭୟ ପାଟଣା ଜେନାବଳୀ ନାମେ ପୁରୀ
ତହିଁ ପଶିଲେ ଏହାକୁ ନ ପାରିବ ମାରି ।
ବିଶ୍ୱାସଘାତକତାକୁ ନ କରିବେ ଚିନ୍ତା
ଗୋସିଂହକୁ ବଧକରି ରଖନ୍ତୁ ଦେବତା ।
ପିତାର ବଚନ ଘେନ ଗଲା ଚନ୍ଦ୍ରସେନ
ବିମାନେ ବିଜୟ ରାମ କୃଷ୍ଣ ସନ୍ନିଧାନ ।
ଯେତେ ଅଳଙ୍କାର ଦେଇଥିଲେ ସୁରରାଜା
ରାମକୃଷ୍ଣ ପାଦେ ଦେଇ କଲା ଦିବ୍ୟପୂଜା
ସେ ଗନ୍ଧର୍ବ ନାରାୟଣ ପାଦରେ ପ୍ରଣମି
ଗୋସିଂହ ଦୈତ୍ୟକୁ ବଧକର ଦେବ ସ୍ୱାମି ।
ବିନୟେ କହୁଅଛନ୍ତି ଦେବ ସୁରଦୂତ
ତୁମ୍ଭର ସ୍ନେହ ତ ସିନା ସ୍ୱର୍ଗ ଜଗନ୍ନାଥ ।
ଗୋବିନ୍ଦ ବୋଇଲେ ତୁନହୋଇଥାରେ ବାବୁ
ପ୍ରତାପୀ ଅସୁର ତାକୁ କେମନ୍ତେ ମାରିବୁ ।
ଲକ୍ଷେ ରାଜାର ହୁଅଇ ଯେତେକ ସଇନ୍
ଏକା ଗୋସିଂହ ଆସିଛି ତେତେ ସୈନ୍ୟଘେନ

ଚନ୍ଦ୍ରସେନ ବୋଇଲାକ ଅଗାଧ ଯେ ସିନ୍ଧୁ
ଅଗସ୍ତ୍ୟ ଗଣ୍ଡୂଷ କଲେ ବାଲ୍ମିର ବନ୍ଧୋବୁ ।
ଅଗାଧ ସାଗର ସିନା ଅଟନ୍ତି ଦର୍ପିଷ୍ଟ
ଗଣ୍ଡୂଷ କରି ଅଗସ୍ତି ତୁମ୍ଭେ ସିନା ଅଟ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଦେଉଥିବ ବର
ହତ୍ୟାକଲେ ମୋତେ ଦୋଷଦେବଯେ ଆବର
ପୂର୍ବେ ମୁହିଁ ରାବଣକୁ ମାରିଲି ଯେ ଦୁଃଖେ
ବ୍ରହ୍ମହତ୍ୟା ଦୋଷମୋତେଦେଲେ ଚତୁର୍ମୁଖେ
ଅମର ନଗରେ ଯେତେବେଳେ ଥିଲି ବସି
ଅନେକ ବଚନ ଇନ୍ଦ୍ର ବୋଇଲା ହିଙ୍ଗାସି
ବୋଇଲେ ତୁ ଶୁଣ ଦଶରଥର ନନ୍ଦନ
କେମନ୍ତେ ତୁ ବ୍ରହ୍ମହତ୍ୟା କଲୁ ହେ ଶ୍ରୀରାମ ।
ବିଶ୍ରବା ଋଷି ଅଟଇ ସାକ୍ଷାତେ ବ୍ରାହ୍ମଣ
ତାହାର କୁମର ପୁଣି ଅଟଇ ରାବଣ ।
ରାବଣକୁ ମାରିଲୁ ଯେ ଦେବ ଦାଶରଥି
ମୁଖ ତୋହର ନ ଚାହିଁ ବୋଲେ ସୁରପତି ।
ଅନନ୍ତ ଶଯ୍ୟାରେ କରିଥିଲଇଁ ଶୟନ
ହୃଦୟ ମଧ୍ୟେ ପୂରଇ ସେହି ଅଭିମାନ ।
ତହୁଁ ଅଣାଇଲେ କଂସ ମରିବା ନିମନ୍ତେ
ତୁ କି ନ ଜାଣିଛୁ ମୁହିଁ କହିବଇଁ ତୋତେ ।
ଏତେକହି ଆଶ୍ୱାସିଲେ ଦେବ ଚନ୍ଦ୍ରସେନ
ମାରି ପାରିବୁ ଯେମନ୍ତେ କରିବୁ ତେସନ ।
କୁବେର ଦେବତା ଦେବା ରତ୍ନ ଅଳଙ୍କାର
ବତିଶସହସ୍ର କନ୍ୟା ବାଣ୍ଟି କଲେ ହାର ।
ଛପନକୋଟି ଯାଦବ ଯେତେକ ଅଛନ୍ତି
ସମସ୍ତଙ୍କୁ ଅଳଙ୍କାର ଦେଲା ରତ୍ନପତି ।
ଲକ୍ଷେ ଷାଠିଏ କୁମର ଜଗନ୍ନାଥଙ୍କର
ସବୁଙ୍କୁହିଁ ଅଳଙ୍କାର ଦେଲାକ କୁବେର ।
ଅଭିଷେକର ଯୋଗାଡ଼ ଦେଲା ଯେ ରାମଙ୍କୁ
ଦେଲା ପୁଣି ନନ୍ଦ ବସୁଦେବ ଏ ଦୁହିଙ୍କୁ ।
କୁବେରର ପୁତ୍ର ପୁଣି ସେ ନଳ କୁବେର
ଏମାନ ଘେନି ସେ ସୂର୍ଯ୍ୟକେତୁ ବିମାନର
କୁବେର ବୋଇଲା ରତ୍ନମାନ ଦେଇ ଦେବୁ
ଗୋସିଂହକୁ ମାର ବୋଲି ଗୁପତେ କହିବୁ
ତେବେ ସିନା ରକ୍ଷାହେବ ପୁର ବାରସ୍ଥି
ଭଣ୍ଡାରକୁ ଜୁରକଲା ନଗରର ପତି ।

ପିତା ବଚନେ ଚଳଇ ସେ ନଳ କୁବେର
ରୈବତ ପର୍ବତେ ରାମକୃଷ୍ଣଙ୍କ ଛାମୁର ।
ସବୁ ଅଳଙ୍କାର ତାଙ୍କ ପାଖେ ଦେଇ ଥୋଇ
ନଳକୁବେର ଶୋଇଲା ଦଣ୍ଡବତ ହୋଇ ।
କୁବେର ଦେବତା ଦେଲା ଅଳଙ୍କାର ମଣି
ଶ୍ରୀଅଙ୍ଗରେ ଆଭରଣ କଲେ ଚକ୍ରପାଣି ।
ଯାହାର ଯେଉଁ ରତ୍ନ ସେ ଆଭରଣ କଲେ
ଏହାଅନ୍ତେ ନଳ କୁବେର ରାମଙ୍କୁ କହିଲେ ।
ଅନେକ ବିନୟେ ବୋଲିଅଛି ରତ୍ନପତି
ଗୋସିଂହ ବଧ ନିମନ୍ତେ ଆହେ ହଳପତି ।
ଶ୍ରୀକୃଷ୍ଣ ବୋଇଲେ କଥା କର ହୋ ଗୁପତ
ଅସୁରର ସୈନ୍ୟ କେତେ ନ ଯାଏ କଳିତ ।
ସାହାପକ୍ଷ ହୋଇଥାଅ ତୁମ୍ଭେ ଆମ୍ଭ ତୁଲେ
ବଧ କରିବା ଏ ଯାଗ ସମ୍ପୂର୍ଣ୍ଣ ହୋଇଲେ ।
ଅନେକ ରତ୍ନ ଦେଇଣ ସେ ଦେବ ଅଚ୍ୟୁତ
ଗୋସିଂହକୁ ଗଉରବ କଲେକ ବହୁତ ।
ସେନା ସେନାପତି ମନ୍ତ୍ରୀ ଯେତେ ତାର ଥିଲେ
ଗୋବିନ୍ଦ ଅନେକ ଧନରତ୍ନ ତାକୁ ଦେଲେ ।
ଚତୁଃସମ ଚନ୍ଦନ ସେ ନାନାବିଧ ପୁଷ୍ପ
ହାତଷେ ଦେନନ୍ତି ତହିଁ ଯେତେ କଉଣପ ।
ପୁରୁଷାର୍ଥପାଇ ସେହି ଅସୁରେ ଉସତ
ମହା ମହା ଦର୍ପିଷ୍ଟ କେ କରିବ ଗଣିତ ।
ଗୋବିନ୍ଦ ଯେ ଗୋସିଂହକୁ ଅନେକ ତିଆରି
ଅନେକ ଦେଶର ତୁମ୍ଭେ ଅଛ ଦଣ୍ଡଧାରୀ ।
ଆମ୍ଭେ ବିଜେ କରିଅଛୁ ମହା ଯଜ୍ଞସ୍ଥାନେ
ଯେ ଯାହାର ସ୍ଥାନେ ତୁମ୍ଭେ ଥିବ ସର୍ବଜନେ ।
ଗୋବିନ୍ଦ ବଚନ ଶୁଣି ବୋଇଲେ ସମସ୍ତ
ବିଜେ କର ଦେବ ଯଜ୍ଞ ହେଉ ପରାପତ ।
ରାଜାଙ୍କୁ ତିଆରି ବାମଦେବଙ୍କୁ ସେ ନେଇ
ସବୁ ନିବୃତ୍ତ କରିବୁ ବୁଲି ଧାଇ ଯାଇ ।
ଏସନକ ଆଜ୍ଞା ଦେଲେ ପ୍ରଭୁ ନନ୍ଦବାଳ
ନିବୃତ୍ତ କଲା ସେ ବାମଦେବ କ୍ଷେତ୍ରପାଳ ।
ଲକ୍ଷେ ରାଜାଙ୍କ ସହିତ ଯେତେକ ସଇନ
ଭୁଞ୍ଜି ଅମୃତ ଯୋଗାଡ଼ ତୋଷ ନୃପମଣି ।
ଅଶ୍ୱମାନଙ୍କୁ ଚରିଚ ଦେଇ ଘାସ ବରି
ସୁଖେ ଅଛନ୍ତି ସେମାନେ ନାନା କ୍ରୀଡ଼ାକରି ।

ଅସ୍ତ୍ର ଶସ୍ତ୍ର ତେଜ୍ୟାକରି ଦେଇ ଯେ ଅଚ୍ୟୁତ
ଯଜ୍ଞେ ରାମକୃଷ୍ଣ ବିଜେ ହୋଇ କୁଶହସ୍ତ ।
ଲମ୍ବିତ ଜଟା ଆବର ବିକଳ୍ପ ବସନ
କଉସ୍ତୁଭମଣି ଦେନ୍ତି ଚନ୍ଦନ ଲେପନ ।
ବେଦ ମନ୍ତ୍ର ଅଧ୍ୟୟନ କଲେ ମନ୍ତ୍ରପୋଥି
ଋଷିମାନଙ୍କ ସଙ୍ଗରେ କୃଷ୍ଣ ହଳପତି ।
ଗୋସିଂହକୁ ତିଆରଇ ଦୈତ୍ୟକୁଳ ମନ୍ତ୍ରୀ
କୃଷ୍ଣ ମାୟାଧର ଏ ଯେ ଅଟଇ ଶ୍ରୀପତି ।
ନ ଜାଣି ଆସି ମିଳିଲ ତୁମ୍ଭେ ଏ ସଭାରେ
ଲେଉଟି ନ ଯିବା ଆମ୍ଭେ ଜେନାବଳ ପୁରେ
ଏସନକ କୃଷ୍ଣ ପାଞ୍ଚ ସର୍ବ ଦେବଗଣେ
ପଠାଇ ଦେଇ ଅଛନ୍ତି ଦେଖ ଚନ୍ଦ୍ରସେନ ।
ନଳକୁବେରକୁ ପେଷି ଅଛଇ କୁବେର
କୃଷ୍ଣଙ୍କୁ ବୋଇଲେ ତୁ ହୋ ଗୋସିଂହକୁ ମାର
ଗୁପତ କର ଏ କଥା ମାରିବା ଉପାୟେ
ଏହି ମହାଯଜ୍ଞ ସମାପତ ହେବାଯାଏ ।
କୃଷ୍ଣକପଟିଆ ଅଟେ ଏହି ଜଗନ୍ନାଥ
କଷ୍ଟେ ଆମ୍ଭଙ୍କୁ କରିବ ସମରେ ନିପାତ ।
ଆହୋ ଗୋସିଂହ ତୁ ଏବେ ଆମ୍ଭ ବୋଲକର
ଅସ୍ତ୍ରଶସ୍ତ୍ର ନାହିଁ ରାମକୃଷ୍ଣଙ୍କ ହସ୍ତର ।
ନିଶସ୍ତ୍ର ହୋଇ ସେ ବସି ଅଛନ୍ତି ଯଜ୍ଞରେ
କୁଶହସ୍ତେ ବସିଛନ୍ତି ମଉନ ବ୍ରତରେ ।
ବେଦମନ୍ତ୍ର ଦେନ୍ତି ବସି ଅଛନ୍ତି ମୁନିଏ
ଯେ ଯାହାର ସ୍ଥାନେ ବସି ଅଛନ୍ତି ରାଜାଏ ।
ନିଶସ୍ତ୍ର ହୋଇ ଅଛନ୍ତି ସମସ୍ତେ ଯାଗରେ
ପାରୁ ଯେବେ ପଶି ଯାଗଶାଳର ଭିତରେ ।
ରାମକୃଷ୍ଣଙ୍କୁ ସଂଗ୍ରାମ କରି ନାଶ କର
ତେବେ ସିନା ରକ୍ଷ ହେବ ଆମ୍ଭର ଶରୀର ।
ଯେବେ ପାର ଏହି ସମୟରେ ପକାମାର
ଶସ୍ତ୍ର ଧଇଲେ ତାହାଙ୍କୁ ଜିଣି ତ ନପାର ।
ଗୋସିଂହ ବୋଇଲା ମନ୍ତ୍ରୀ ନୁହଇ ଏସନ
ସତେ କି ବିଶ୍ୱାସଘାତୀ ହେବ ଜନାର୍ଦ୍ଦନ ।
ମନ୍ତ୍ରୀ ବୋଇଲା ରାଜା ତୁ କିଛିହିଁ ନ ଜାଣୁ
ମାୟାଧର ନାମକୁ ସେ ବହିଅଛି ତେଣୁ ।
ଗୋସିଂହ ଯେ କୋପକଲା ମନ୍ତ୍ରୀର ବଚନେ
ଘେନିଲା ଅଶୀ ସହସ୍ର ଯୋଦ୍ଧା ଯାତୁଧାନେ ।

ମନ୍ତ୍ରୀ କୋଇଲା ଅସୁର କୁଳର ତୁ ପତି
ଆଦିତ୍ୟ ଯେ ଅସ୍ତ ଯାଉ ହେଉ ପୁଣି ରାତ ।
ମନ୍ତ୍ରୀର ବଚନେ ରାଜା ହୋଇଲା ସନ୍ତୁଷ୍ଟ
ରଜନୀ ସମୟେ ଆମ୍ଭେ କରିବା ଅନିଷ୍ଟ ।
ଏସନକ ବିଚାରନ୍ତେ ପ୍ରବେଶିଲା ନିଶି
ଯଜ୍ଞରେ ଅଛନ୍ତି ରାମ ହୃଷୀକେଶ ବସି ।
ଅନ୍ନ ଭୋଜନ ତାଙ୍କର ନାହିଁ ଦିବାରାତି
ଏ ସମୟେ ଗୋସିଂହକୁ ବୁଝାଇଲା ମନ୍ତ୍ରୀ ।
ବୋଇଲା ମହାରାଜା ତୁ ଆମ୍ଭ ବୋଲକର
ଆରତ ହୋଇଲେ ବାବୁ ନ ଚଳେ ଦେହର
ଯଜ୍ଞରେ ରହିଲେ ରାମକୃଷ୍ଣ ଉପବାସେ
ପନ୍ଦର ଦିବସ ଅନ୍ନ ତେଜ୍ୟା କରିବ ସେ ।
ପଞ୍ଚଦଶ ଉପବାସ ବପୁ ହୋଏ କ୍ଷୀଣ
ବଳ ନାଶ ଯିବ ଅନ୍ନ ବିହୀନରେ ପ୍ରାଣ ।
ଏତେ ବିଚାରି ଅସୁର କୁଳର ସେ ମନ୍ତ୍ରୀ
ଦଶଦିବସ ଏମନ୍ତେ ଗଲା ଦିବାରାତି ।
ବଇଶାଖ କୃଷ୍ଣଷଷ୍ଠୀ ତିଥି ଶୁକ୍ରବାର
ସେ ଦିବସ ଉପବାସ ରାମ କୃଷ୍ଣଙ୍କର ।
ରାତ୍ରେ ଉଠିଲେ ଦାନବେ ଗୋସିଂହଙ୍କ ଭୁଲେ
ଅସୁର ଯେ ଯାଗଶାଳ ଦ୍ୱାର ଆବୋରିଲେ ।
ଉଛବାଚ ଦେଖି ବାମଦେବ କ୍ଷେତ୍ରପାଳ
କୋପେ ସେ କରେ ଧଇଲା ଅସୁରଙ୍କ ବାଳ ।
ଗୋସିଂହର ଲୌହଶିରା ନାମେ ସେନାପତି
ବାମଦେବଙ୍କୁ ଧଇଲା କୋପେ ଯାଇଁ ଧାତି ।
ଅଶ୍ୱଗୋଷ୍ଠା ଆରୋହଣ କ୍ଷେତ୍ରପାଳ ଥିଲା
କୋପେ ଗୋସିଂହ ତାହାର ଭୁଜକୁ ଧଇଲା ।
କ୍ଷେତ୍ରପାଳ ମାଇଲାକ କୋପେ ତୀକ୍ଷ୍ଣ ପର୍ଶୁ
ଗୋସିଂହ ଅଙ୍ଗରେ ପଡି ହେଲା ଧୂଳିପାଂଶୁ ।
ଭୁଜଧରି ବୁଲାଇଲା ସେ କ୍ଷେତ୍ରପାଳକୁ
କୋପେ ଫିଙ୍ଗିଦେଲା ଦୈତ୍ୟ ଦକ୍ଷିଣ ଦିଗକୁ
ଦଶସହସ୍ର ଯୋଜନେ ପଡ଼ିଲା ସାଗରେ
ପଡ଼ି ବୁଡିଗଲା କ୍ଷେତ୍ରପାଳ କ୍ଷୀର ନୀରେ ।
ଆକାଶ ରକ୍ଷ ପାଳକୁ ବୁଝିଲେ ବରୁଣ
କ୍ଷେତ୍ରପାଳର ହସ୍ତକୁ ଧଇଲେ ତକ୍ଷଣ ।
ଆଦିତ୍ୟର ଅଶ୍ୱ କ୍ଷେତ୍ରପାଳ ଚଢିଥିଲା
ସେ ଅଶ୍ୱ ଉପରେ ଲୌହଶିରା ଯେ ଚଢିଲା

ଦ୍ୱାରେ ଚନ୍ଦ୍ରସେନ ନଳ କୁବେର ପ୍ରଦ୍ୟୁମ୍ନ
ମୁନିଙ୍କି ଧଇଲେ ଆସି ଦୈତ୍ୟ ତିନିଜଣ ।
ଲୌହଶିରା ଧଇଲାକ ଯାଇ ପ୍ରଦ୍ୟୁମ୍ନକୁ
ସିଂହନାଦ ଧରେ ଚନ୍ଦ୍ରସେନ ଗନ୍ଧର୍ବକୁ ।
ଅମସ୍ୟାସୁର ଧଇଲା ନଳ କୁବେରକୁ
ନିବଡ଼ି କରି ଧଇଲେ ତିନିହେଁ ତିନିଙ୍କୁ ।
ଗୋସିଂହ ପଶିଲା ଯାଇ ବେଗେ ଯଜ୍ଞଶାଳେ
ଜଗନ୍ନାଥ ଦେବଙ୍କର ଆହୁତିର ବେଳେ ।
ମଉନବ୍ରତ ସେ ରାମ କୃଷ୍ଣ କୁଶପାଣି
କହୁଛନ୍ତି ମାର୍କଣ୍ଡ ଋଷି ଧର୍ମବାଣୀ ।
ଏମନ୍ତ ସମୟେ ଯାଇ ଗୋସିଂହ ପଶିଲା
ଅଶୀସହସ୍ର ଦାନବ ସଙ୍ଗତରେ ନେଲା ।
ଆରେ ଆରେ ବୋଲି ପାଦ ମାରି ମାର୍କଣ୍ଡେ
ଧାଡିକାରେ ଧଇଲାକ ବଳେ ସେ ରାମଙ୍କୁ
ପ୍ରତିଜ୍ଞା କରି ଅସୁର ରାଉ ଉଚ୍ଚେ ଡାକେ
ବଳଦେବଙ୍କୁ ଗୃହରେ ଧରି ବାମକାଖେ ।
ଜଗନ୍ନାଥଙ୍କୁ ମାଇଲା ସେ ନିର୍ଘାତ ବାଣ
ପଡ଼ିଲେକ ଅସାଷ୍ଟମ ହୋଇ ନାରାୟଣ ।
ଅମାତି ଚର୍ମ କଲେକ ଯତ୍ନେ ଯାତୁଧାନେ
ଅନ୍ତରୀକ୍ଷେ ପଳାଇଲେ ଋଷିଗଣମାନେ ।
ଅନେକ ଋଷିଙ୍କୁ ତହିଁ ପକାଇଲେ ମାରି
ଖାଇଲେ ଦୈତ୍ୟ ସେ ଯଜ୍ଞକୁଣ୍ଡ ପୋଡ଼ିକରି
ଅନ୍ତରୀକ୍ଷେ ବଳଦେବ ସ୍ୱାମୀଙ୍କ ବୁଲାଇ
ନାରାୟଣଙ୍କ ଉପରେ କଚାଡିଲେ ନେଇ
ଅସୁରର ପ୍ରହାରେ ସେ କୃଷ୍ଣ ବଳରାମ
ପଡିଲେକ ଅଚେତନ ହୋଇ ଅସାଷ୍ଟମ ।
ଯଜ୍ଞକୁଣ୍ଡ ଭିତରେ ସେ ପକାଇଲା ନେଇ
ବିଚାର କରିଲା ମନେ ଦୈତ୍ୟକୁଳ ସାଇଁ ।
ଏହାଙ୍କର ମାଂସ ମୁହିଁ ଖାଇବଇଁ ପୋଡ଼ି
ତେବେ ସେ କଳପୀ ହେବ ଶରୀର ମୋହରି
ଅଗ୍ନିରେ ପକାଇ ତହିଁ ଘୃତ ଅଜାଡିଲା
ପ୍ରଜ୍ୱଳିତ ହୁତାଶନ ଊର୍ଦ୍ଧ୍ୱକୁ ଉଠିଲା
ସେତେବେଳେ ତେଜେ କରିଥିଲେ ବୈଶ୍ୱାନର
ରାମକୃଷ୍ଣଙ୍କୁ ଗୋପନ କଲେ ସେ କୁଣ୍ଡର ।
ଅଗ୍ନିକୁଣ୍ଡେ ହାତଦେଇ ଦହଣ୍ଡେ ଗୋସିଂହ
ଲେଉଟି ନ ପାଇଲା ରାମ କୃଷ୍ଣଙ୍କର ଅଙ୍ଗ ।

ମନ୍ତ୍ରୀ ବୋଇଲା ଅନେକ ଯୁଗ କୁ ବରଷୁ
ମାନବ ଶରୀର ଯିବା ପୋଡ଼ି ହେଲା ପାଂଶୁ
ଦରଶି ନ ପାଇ ହେଲା ଗୋସିଂହ ନରେଶ
ସତ୍ୟଭାମା ଦେବୀ ଥିଲେ ନାରଦୃଣ ପାଶ ।
ତ୍ରୈଲୋକ୍ୟ ମୋହିନୀ ସେ ଅଟଇ ଯୁବତୀ
ନେଇକରି ବସାଇଲା ରଥେ ଦୈତ୍ୟପତି ।
ରାତ୍ରିକାଳେ ମହାଗୋଳ କରି ସେ ଅସୁରେ
ଅନେକ ସୈନ୍ୟ ବିନାଶ କଲେ ନଗରରେ
ଚଉରାଶୀଲକ୍ଷ ସୈନ୍ୟ ଅଟନ୍ତି ରାକ୍ଷସ
ନରଙ୍କୁ ଦେଖି ଅନେକ ନାଶି କଲେ ଗ୍ରାସ ।
ରତ୍ନବସ୍ତ୍ର ଅଳଙ୍କାରମାନ ଜୁରି କଲେ
ଯକ୍ଷଶାଳମାନ କୋପେ ଭାଙ୍ଗି ପକାଇଲେ ।
ଲୌହଶିର ଗନ୍ଧର୍ବଙ୍କୁ କାଖେ ଯାକିଥିଲା
ମେରୁ ପର୍ବତକୁ କୋପେ ଫିଙ୍ଗି ପକାଇଲା ।
ସିଂହନାଦ ଫିଙ୍ଗି ଦେଲା ନଳ କୁବେରକୁ
ଅମାପୁ ଅସୁର ଫିଙ୍ଗିଦେଲା ପ୍ରଦ୍ୟୁମ୍ନକୁ ।
ତିନିଗୋଟି ପୁର ଅଛି ରୈବତ ପର୍ବତେ
ଯଦୁକୁମରେ ତହିଁରେ ରହିଲେ ଗୁପତେ ।
ଷୋଡ଼ଶ ସହସ୍ର କନ୍ୟା ଅଷ୍ଟ ପାଟବଂଶୀ
ଅସୁରର ଭୟେ ଥିଲେ ଜଳପୁରେ ପଶି ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ଜଳପୁରେ ହୋଇଥିଲେ ସେମାନେ ଗୋପନ
ଅସୁର ଋଷିମାନଙ୍କୁ ଧାଇଁ ଧରୁଥିଲେ
ସମସ୍ତ ଋଷିଏ ଏଣେ ତେଣେ ପଳାଇଲେ ।
ଆବର ବିଶେଷେ ପୁଣି ଅଟେ ରାତ୍ରିକାଳ
ତେଣୁ ଜାଣ ନରଜନ୍ତୁ ବଧିଲେ ସକଳ ।
ଜପାସୁର ମନ୍ତ୍ରୀ ବୋଲେ ଅସୁର ରାଜାକୁ
ଚାଲ ଯିବା ଆମ୍ଭେ ସୋନାବଳ ନଗରକୁ ।
ଜନ୍ମଭୂମିରେ ରହିବା କ୍ଷଣେ ନ ଯୋଗାଇ
ରହିଲେ ଅବଶ୍ୟ ଏଥେ ପ୍ରମାଦ ପଡ଼ଇ ।
ଦଇତ୍ୟଦଳନ ଏହି ରାମ କୃଷ୍ଣ ଦେବ
ତିନିଭୁବନ ଜିଣନ୍ତି ଯଦୁବଳ ସେନ ।
ଅନେକ ଅସୁର ରଣେ ଜିଣିଲେଣି ଏହି
ହସ୍ତେ ଅସ୍ତ୍ର ଥିଲେ ଜିଣି ନ ପାରନ୍ତି କେହି ।
ଚାଲ ଯିବା ରାଜ୍ୟେ ଏବେ ଆମ୍ଭର ରାଜ୍ୟକୁ
ସ୍ୱରୂପ ବଚନ ମୁହିଁ କହିବି ତୁମ୍ଭଙ୍କୁ ।

ମନ୍ତ୍ରୀବର ବଚନରେ ଗୋସିଂହ ରାଜନ
ସମସ୍ତ ଦଣ୍ଡ ପଲ୍ଲଣି କରେ ନବରାଜ ।
ସତ୍ୟଭାମାକୁ ରଥରେ ବସାଇ ଗୋସିଂହ
ଆପଣା ରାଜ୍ୟେ ଚଳଇ ହୋଇ ଅତିବେଗ ।
ପଶିଲା ଅସୁର ଯହୁଁ ମହାଘୋରବନେ
ମାଡିଲେ ମଦରାରସ ପାନେ ସାବଧାନେ ।
ସୂର୍ଯ୍ୟକେତୁ ବିମାନ ଯେ ଅନଳ କୁବେର
ସେ ରଥେ ଅନେକ ରତ୍ନ ପୁରାଇ ଅସୁର ।
ଚଉରାଶୀ ଅକ୍ଷୌହିଣୀ ବଳ ସଙ୍ଗେ ଘେନି
ସେ ରଥେ ବସିଲା ଘେନି ଶ୍ରୀକୃଷ୍ଣଭାମିନୀ ।
ମନ୍ତ୍ରୀ ବୋଇଲା ହେ ରାଜା ମୋର ବୋଲକର
ଏ ସ୍ତ୍ରୀରୀକୁ ଛାଡ଼ି ଏହୁ ଯାଉ ନିଜପୁର ।
ପୂର୍ବରୁ ତ ଅଛି ସ୍ତ୍ରୀରୀ ହରଣରେ ଦୋଷ
ଭଲ ଭଲ ଲୋକେ କରି ଯାଇଛନ୍ତି ନାଶ ।
ଲକ୍ଷେସିଂହ ପରାକ୍ରମଶାଳୀ ଯେଉଁ ବାଳି
ରୋମା ହରଣ ଦୋଷରୁ ଶରେ ପଡ଼ି ଟଳି ।
ସୀତା ହରଣରେ ନାଶ ଗଲାଟି ରାବଣ
ଖଣ୍ଡ ଖଣ୍ଡ ହେଲ ଚନ୍ଦ୍ର ତାରାକୁ ହରଣ ।
ଜଗତି ହରଣେ ନାଶଗଲା ନଳରାଜ
ସର୍ପ ହୋଇ ରହିଲା ସେ ମେରୁର କୋଟର ।
ଇନ୍ଦ୍ର ହରିଲା କପଟେ ଗଉତମ ପତ୍ନୀ
ଋଷିଙ୍କ ଶାପେ ହୋଇଲା ସେ ସହସ୍ର ଯୋନି
ପରସ୍ତ୍ରୀରୀ ହରଣରେ ଏସନକ ଦୋଷ
ଯେତେଦର୍ପ ଥିଲେ ଅଳପକେ ହୁଏ ନାଶ ।
ଲୋଭ ଛାଡ଼ ଛାଡ଼ ଏ ଯେ ଅଟଇ ଅପସ୍ମୃତି
ଏ ସ୍ତ୍ରୀରୀକୁ ଲୋଭକଲେ ନାଶଯିବୁ ସିନା ।
ମନ୍ତ୍ରୀ ବଚନେ ବୋଇଲା ସେହି ଦଣ୍ଡଧାରୀ
ସୁନ୍ଦରୀ କାମିନୀ ଏହା ଛାଡ଼ି ତ ନ ପାରି
ମନ୍ତ୍ରୀ ବୋଇଲା ତୋହର କର୍ମେ ଅଛି ଯାହା
ଚାଲ ଶୀଘ୍ର ଯିବା ରଥ ବେଗେବେଗେ ବାହା
ଚାଲ ଚାଲ ବୋଲି ଥାଟେ ପଡିଲା ଚହଳ
ଆକାଶେ ଉଚ୍ଛୁଳେ ଗାର ତୂରର ଗହଳ ।
ଚଳନ୍ତି ଦଇତ୍ୟବଳ ହିଂଶପୂଣ ମାଡ଼ି
ଅନେକ ଦେଶର ଲୋକେ ପଳାଇଲେ ଛାଡ଼ି ।
ଅନେକ ଗୋରୁ ବ୍ରାହ୍ମଣ ଛାଗ ଆଦି କରି
ଖାଉଛନ୍ତି ସେ ରାକ୍ଷସେ ଅନୁକ୍ଷଣେ ଧରି

ତରିଶ ଯୋଜନ ମାତ୍ର ଚଳନ୍ତି ମଇନ
ଗୋବିଂଦ ଅଛୁ ବମାନେ ସତ୍ୟଭାମା ସେନ ।
ମଣିଭଦ୍ରା ନାମେ ଅଛି ନଦୀ ଯେ ଗୋଟିଏ
ତହିଁର ତୀରେ ରହିଛୁ ବୀର ଧନଞ୍ଜୟେ ।
ସୁରଉଦୟ ବୋଲି ସେ ଗିରି ନାମଗୋଟି
ତା ଉପରେ ବସିଅଛୁ ସେ ସବେ କଷଟି ।
ଶତଧନୁ ବୋଇଲା ତୁ ଶୁଣ ଫାଲଗୁନ
ଦକ୍ଷିଣ ଦିଗ ଶୁଭିଲ ମହାଗୋଳ ଧ୍ୱନ ।
କେବଣ ରାଜାର ବଡଥାଟ ଗୋଟାଯାଏ
ଏଥୁ ଆଡହୋଇ ଯିବା ଆହେ ଧନଞ୍ଜୟେ ।
ଅର୍ଜୁନ ବୋଇଲେ ଯିବେ ପଥେ ଭଜଶାନ୍ତ
ପରଥାଟ ଘରକୁ ହୋ କସ ମୋର ଖଣ୍ଡ ।
ଯେ ଅବା ଥାଟକୁ ସେନ ଆସିବ ଅଜ୍ଞାନେ
ମରିବେ ସେ ସୈନ୍ୟଯାକ ଏ ନାଶବ ମୁନେ
ଶତଧନୁ ଅର୍ଜୁନର କଥା ଶୁଣନ୍ତେ ତହିଁ
ଅସୁରବଳ ଭେଟିଲେ ସେ ପର୍ବତେ ଯାଇ ।
ରଥରେ ବସି ଆରତେ ଦେବୀ ସତ୍ୟସତୀ
ରଖ ରଖ ଅର୍ଜୁନ ହୋ ଉଚ୍ଚରେ ଡାକନ୍ତି ।
ଶତଧନୁ ବୋଇଲକ ଶୁଣ ଫାଲଗୁନ
ଶୁଭଇତ ସତ୍ୟଭାମା ଦେବୀ ମୁଖଧ୍ୱନ ।
ଶତ୍ରାଜିତ ନନ୍ଦନୀ ସେ କୃଷ୍ଣ ପାଶେ ବସେ
କେବଣ ଦାନବ ଅବା ବଳେ ସେନ ଆସେ
ରୋଦନ କରି ଡାକନ୍ତି ପୁଣି ସତ୍ୟଭାମା
ରକ୍ଷା କର ଅର୍ଜୁନ ମୁଁ ଶ୍ରୀକୃଷ୍ଣଙ୍କ ବାମା ।
ରକ୍ଷା କର ରକ୍ଷା କର ବୋଲି ଦେବୀ ଭାଷେ
ଗୋବିଂଦ ଦଇତ ମୋତେ ବଳେ ସେନଆସେ
ଏସନକ ବାକ୍ୟ ସତ୍ୟଭାମା ମୁଖୁଁ ଶୁଣି
ମନଭେଦ ନାରଚକୁ ପେଶେ ବୀରମଣି ।
କେହି ପୁଣି କାହାକୁହିଁ କରେ କଳାକାର
କାରି ନ ପାରିଲ ମୁହିଁ ଘୋର ଅନ୍ଧକାର ।
ପଥ ନିରୋଧ କରି ତୁ ଏ ତିନଭୁବନ
କେଣେ ନ ଯିବେଟି ରାଜା ଆଦି ତାର ସୈନ୍ୟ
ରଣ ପ୍ରଭାତରେ ଏହା ବିଚାର କରିବା
ଦୁଷ୍ଟ ହୋଇଲେ ତାହାକୁ ପ୍ରାଣରେ ମାରିବା
ବାସବୀର ବଚନରେ ଗଲା ମନରେଷୀ
ଆକାଶ ପାତାଳ ଚାରିଦିଗହିଁ ନିରୋଧି ।

କେଉଁ କତକ ଯିବାକୁ ନାହିଁ ପୁଣ ବାଟ
ମଧ୍ୟରେ ରହିଅଛଇ ଅସୁରର ଥାଟ ।
ଗୋବିଂଦ ବୋଇଲେ ତୁହେ ଦୁର୍ଦ୍ଦଣ୍ଡ ସାରଥି
ବାହୁକନା ରଥ ଚଳିଯିବା ହୋ ଝଟତି
ସାରଥି ବୋଲଇ ଦେବ ଦଶିଲ ତ କାହିଁ ।
ପଥ ନିରୋଧ ପଡ଼ିଲା ବାଟ ଆଉ ନାହିଁ ।
ଗୋବିଂଦ ବୋଲେ ଆକାଶେ ବାହା ତୁହି ରଥ
ତହିଁ ବାଟ ନାହିଁ ଘୋଟିଅଛି ଶରପଥ ।
ଚୌରାଶୀକ୍ଷଉଣୀ ବଳ ସେନାଣ ନବେଧି
ମେରୁ ମନ୍ଦର ଯେସନେ ନାହିଁ କିଛି ସନ୍ଧି ।
ପୂର୍ବର ଦିଗରେ ବାଟ ନ ପାଇ ସାରଥି
ବାହୁଡାଏ ରଥ ହୋଇ ପଶ୍ଚିମ ମୂରଛି ।
ପଶ୍ଚିମଦିଗେ ଯିବାକୁ ନାହିଁ ପୁଣି ବାଟ
ଦକ୍ଷିଣ ଦିଗକୁ ପୁଣି ଚଳାଇଲେ ଥାଟ ।
ଯେସନେକ ବେଢ଼ିଛି କପିରେଶ ଲଙ୍କାର
ବାଟ ନପାଇଲା ସେହ୍ନ ଦୈତ୍ୟ ଦୁରାଚାର ।
ସାରଥିକୁ ବୋଇଲକ ତୁହିଁ ଦୈତ୍ୟନାହା
ତୁ ଆକାଶ ମଣ୍ଡଳକୁ ରଥ ମୋର ବାହା ।
ରାଜାର ବଚନେ ରଥ ବାହେ ମହାବୀର
ଆକାଶକୁ ବାଟ ନାହିଁ ଘୋଟିଅଛି ଶର ।
ସାରଥି ବୋଇଲା ଦେବ ନାହିଁ ଏଥେ ବାଟ
ବିକଳ ହେଉଅଛନ୍ତି ଅସୁରର ଥାଟ ।
ଜପାସୁର ମନ୍ତ୍ରୀ ତୁହିଁ ରାଜାଙ୍କୁ କହିଲା
ବୋଲି ଯେ ନ କଲୁ ରାଜା ପ୍ରମାଦ ପଡ଼ିଲା ।
ପିତା ବଚନ ମେଣ୍ଟଣ କରେ ଯେଉଁ ସୁତ
ଆୟୁଷ କ୍ଷୟ ତାହାର ହୁଅଇ ନିତାନ୍ତ ।
ଶାଶୁ ଶ୍ୱଶୁର ବଚନ ମେଣ୍ଟାଇ ଯେ ବଧୂ
ସନ୍ତାନ ହାନି ହୁଅଇ କୁଳକୁ ଅସାଧୁ ।
ସ୍ୱାମୀର ବଚନ ଯେବେ ମେଣ୍ଟଇ ଘରଣୀ
ଗୃହ ବାସ ଅପ୍ରାପତ ହୁଏ ଦୋଗରୁଣୀ ।
ଗୁରୁ ବଚନ ମେଣ୍ଟଣ କରେ ଯେଉଁ ଶିଷ୍ୟ
ହତାଶ ହୁଅଇ ବିଦ୍ୟା ନୁହଇ ଅଭ୍ୟାସ ।
ବଡ଼ ବଚନ ମେଣ୍ଟିଲେ ପଡ଼ଇ ପ୍ରମାଦ
ଶାସ୍ତ୍ରକଥା ନିନ୍ଦା କଲେ ହୁଏ ସ୍ଥିରଚ୍ଛେଦ ।
ରାଜାମାନଙ୍କର ମନ୍ତ୍ରୀ ଅଟେ ଗୁଣନିଧି
ତାହା ବୁଦ୍ଧିରେ ରାଜାର ସର୍ବକାର୍ଯ୍ୟ ସିଦ୍ଧ ।

ମନ୍ତ୍ରୀର ବଚନ ଯେବେ ମେଣ୍ଟଇ ନୃପତି
ହତରାଜ୍ୟ ହୁଅଇ ଯେ ହରାଇ ବିଭୂତି ।
ବତିଶ ଗୁଣ ଥିଲେ ସେ ହୁଅଇ ଭୂପତି
ତେତିଶଗୁଣ ବହିଲେ ହୁଏ ସିନା ମନ୍ତ୍ରୀ ।
ସତ୍ୟଯୁଗ ରାଜା ଜଳତରଙ୍ଗ ଯେ ଥିଲା
ମନ୍ତ୍ରୀର ବୁଦ୍ଧିବଳରେ ସମସ୍ତ ଜିଣିଲା ।
ଏକ ଦିନେ ବରୁଣକୁ ସେ ଦଣ୍ଡ ସାଜିଲା
ନ ଯାଅ ବୋଲି ତାହାକୁ ମନ୍ତ୍ରୀ ନିବାରିଲା ।
ମନ୍ତ୍ରୀର ବଚନ ରାଜା କଲାକ ଅବଜ୍ଞା
ବୋଇଲା ଏ ବାର ମୋର ଦେଖ ହୋ ପ୍ରତିଜ୍ଞା
ସିନ୍ଧୁ ଜିଣି ଆଣିବଇଁ ମୁହିଁ ରତ୍ନନିଧି
ଏହିକ୍ଷଣି ସଂଗ୍ରାମରେ ଜିଣିମା ଜଳଧି ।
ଏତେ ବିଚାରି ବରୁଣପୁରେ ଧାଡ଼ିଦେଲା
ଚଉରାଶୀ କୋଟି ସୈନ୍ୟ ସମୁଦ୍ରେ ବାହିଲା ।
ଅସୁର ସୈନ୍ୟ ସମୁଦ୍ରେ ପଶି ଯାଉଅଛି
ପାଣି ପିଅନ୍ତେ ସମୁଦ୍ରେ ଯାଉଅଛି ଧୂଳି ।
ସନ୍ଧାନ ନ ଦେଖି ଯହୁଁ ବରୁଣ ଜଳଧି
ଥାଟ ଘେନ ରାଜା ବେଗେ ପଶିଲାକ ଖେଦି ।
ମନ୍ତ୍ରୀ ବୋଇଲା ରାଜାଏ ଶୁଣିମା ଦୁର୍ଲ୍ଲଭ
ରାଜ୍ୟେଶ୍ୱର ହୋଇ ତୁମ୍ଭେ ନ କର ଯେ ଲୋଭ
ଲୋଭ ବଢ଼ିଲେ ମନୁଷ୍ୟ ହୁଏ ହୀନବୁଦ୍ଧି
ଲୋଭେ ପାପ ହୁଏ ପାପେ ହୁଅଇ ସମାଧି ।
ତଥାପି ରାଜନ ମନ୍ତ୍ରୀ ବୋଲ ଯେ ନ କଲା
ସୈନ୍ୟବଳ ଘେନ ବରୁଣକୁ କଟାଳିଲା
ସେ ଜଳତରଙ୍ଗ ରାଜା ପ୍ରତିଜ୍ଞା କରିଣ
ଧସାଇ ପଶିଲା ଜଳେ ସଇନ୍ୟ ଘେନିଣ ।
ବରୁଣ ଦେବତା ଯେବେ ସମାଧାନ କଲା
ବହୁତ କଟାଳ ଦେଖି କରୁହିଁ ନ ଦେଲା ।
ପବନ ଦେବତା ଆଗେ କହିଲାକ କାନ୍ଦି
ପଳାଇଲା ତା ଭବନ ଛାଡ଼ି ସେ ଜଳଧି ।
ବୋଇଲା ବରୁଣ ତୁ ହୋ ଶୁଣସି ପବନ
ତୋର ପର ସଖା ଥାଉଁ ଏତେ ବଡ଼ମ୍ବନ ।
ଜଳ ପବନ ଅନଳ ଆମ୍ଭେ ଏକ ପ୍ରୀତି
ପାଳିବା ନା ଏ ସଚରାଚର ବସୁମତି ।
ଚନ୍ଦ୍ର ସୂର୍ଯ୍ୟ ଘେନ ଆମ୍ଭେ ଷଡ଼ ରଇବତ
ଏ ସଚରାଚର ପୃଥ୍ୱୀ ପାଳିବାକୁ ଜାତ ।

କୋଟି ବ୍ରହ୍ମାଣ୍ଡ ଦେବତା ଆମ୍ଭଙ୍କୁ ନ ଗଣି
ପାଳକ ପୁରୁଷ ଆମ୍ଭ ତହୁଁ କେହୁ ଅଛି ।
ସମୁଦ୍ର ପାଣି ନ ନେଇ ମେଘ କି ବର୍ଷିବ
ପୃଥିବୀ ଶସ୍ୟ ନ ଦେଲେ କେମନ୍ତେ ଥିବେ ଜୀବ
ଆଦିତ୍ୟ ଦେବ ଯେବେହି ନ ଖଣ୍ଡିବେ କ୍ଲେଶ
ଚନ୍ଦ୍ର ଦେବତା ନ ଦେବ ପୁଣି ସୁଧାରସ ।
ଏମନ୍ତେ ନାଶ ହୋଇଲେ ନଷ୍ଟେଁ ଚତୁର୍ଦ୍ଦଶ
ତେଣୁ ପରସ୍ପରେ ପ୍ରୀତି ରଖିବା ଅବଶ୍ୟ ।
ସମୁଦ୍ର ଯେ ପାଣି ଦେବ ମେଘ ବରଷିବ
ପୃଥ୍ୱୀ ଶସ୍ୟ ଦେବ ଜୀବ ପବନହିଁ ଦେବ ।
ଆଦିତ୍ୟ କ୍ଲେଶ ଖଣ୍ଡିବ ଚନ୍ଦ୍ର ଦେବ ରସ
ଆମ୍ଭେ ଷଡ଼ଜଣ ସିନା ପାଳିବା ନିଦଶ ।
ଏତେକ ଯହୁଁ ତାହାକୁ ବରୁଣ କହିଲା
ଅଣଚାଶ ପବନ ଯେ ଏକାଠି ବହିଲା ।
ଦକ୍ଷିଣ ମୂରତି ହୋଇ ଯାଆନ୍ତି ଅସୁରେ
ଉତ୍ତର ମୂରତି ହୋଇ ବହେ ଧାତକାରେ ।
ଜଳ ପବନ ମେଘ ଏ ଏକାଠି ହୋଇଲେ
ଜଳତରଙ୍ଗ ସୈନ୍ୟକୁ ମାଡ଼ିଣ ପଡ଼ିଲେ ।
ଲକ୍ଷେ ଯୋଜନ ଗର୍ଭରେ ଥିଲେ ସେହି ପଶି
ଚଉରାଶୀ କୋଟି ସୈନ୍ୟ ଗଲେ ସର୍ବେ ଭାସି ।
ମନ୍ତ୍ରୀର ବଚନ ଜଳତରଙ୍ଗ ନ କଲା
ଶୁଣ ହୋ ଗୋସିଂହ କାଳେ ଏମନ୍ତ ହୋଇଲା
ପରର ପରାଭବକୁ ଚିନ୍ତନ୍ତି ଯେ ପ୍ରାଣୀ
ବିଧାତା ପୁରୁଷ ଦଣ୍ଡ ଦିଏ ତାକୁ ଜାଣି ।
କେବଣ ମହାତମା ଏ ନରୋଧିଲା ବାଟ
ଏ ସୃଷ୍ଟି କିମନ୍ତେ ନଷ୍ଟେଁ ନାଶଯିବ ଥାଟ ।
ମନ୍ତ୍ରୀ କହନ୍ତେ ଏମନ୍ତେ ପାହିଗଲା ରାତି
ରାକ୍ଷସ ବଳ ଦେଖିଲେ ପାର୍ଥର ମୂରତି ।
ବୋଇଲେକ କରପଦ ଯୋଡ଼ି ଶତଧନୁ
ଶୁଣ ତୁ ହୋ ସାବଧାନେ ଇନ୍ଦ୍ରଙ୍କର ସୁନୁ ।
ଗୋସିଂହ ଦଇତ୍ୟ ଏ ଯେ ମହିଷର ନାତି
ତ୍ରୈଲୋକ୍ୟଜେତା ପୁରୁଷେ ବଧି ନ ପାରନ୍ତି
ଜପାସୁର ମନ୍ତ୍ରୀ ତହୁଁ ଘେନ ସତ୍ୟଭାମା
ଅର୍ଜ୍ଜୁନକୁ ଦେଇ କହେ ସମ୍ଭାଳ ମହାତ୍ମା ।
ଦେଖିଣ ବେଗେ ଉଠିଲା ବୀର ଫାଲଗୁନ
ସତ୍ୟଭାମା ପାଦତଳେ କଲାକ ଦଇନା ।

ଶୋକଭର ହୋଇ ଶଙ୍ଖାଜଡର ଦୁଲଳୀ
ବୋଲେ ଗୋସିଂହ ନାଶିଲା ରାମ ବନମାଳୀ
ସମସ୍ତ କଥା କହିଲେ ଅର୍ଜ୍ଜୁନର ପାଶ
ଗର୍ଜ୍ଜି ପାର୍ଥିବ ଉଠିଲେ କରି ମହାରୋଷ ।
ଜପାସୁର ବାଳ ପାର୍ଥ ଧରି ବାମକରେ
ବଜ୍ରସ୍ତୁ କର୍ତ୍ତ୍ରକଣ୍ଟାରେ ଛେଦିଲେ ସତ୍ୱରେ ।
ଛିଡ଼ିଲାକ ସେ ଅସୁର ମନ୍ତ୍ରୀ ଘର୍ଘରଡ଼
ଯେସନେକ ଗିରିବର ପଡ଼ିଲାକ ଝଡ଼ ।
ବେନି ପ୍ରହାରେ ଛିଡିଲା ତାର ଘର୍ଘମୁଣ୍ଡ
ପଡ଼ିଲା ଦନୁଜବର ହୋଇ ବେନିଖଣ୍ଡ
ମନ୍ତ୍ରୀ ପଡ଼ନ୍ତେ ଧାଇଁଲେ ବେଗେ କଉଣପେ
ଅନେକ ନାରାଚ ବୃଷ୍ଟି କଲେ ମହାକୋପେ
ଅର୍ଜ୍ଜୁନ ବୋଇଲେ ତୁ ହୋ ଶୁଣ ଶତଧୃତୁ
ସତ୍ୟକୁ ତୁ ନଅ ଗିରିବର ସନ୍ନିଧାନୁ ।
ସୂର୍ଯ୍ୟକେତୁ ବିମାନରେ ଗୋସିଂହ ଯେ ଥିଲା
ସୁମରନ୍ତେ ଅର୍ଜ୍ଜୁନ ତା ଛାମୁରେ ମିଳିଲା ।
ସେ ବିମାନରେ ଅସୁରେ ଥିଲେ ଯେତେ ବସି
ଅର୍ଜ୍ଜୁନକୁ ମାଇଲେ ସେ ନାରାଚ ଆକର୍ଷି
ଯେସନେକ ଜଳବୃଷ୍ଟି ହୁଅଇ ଗଗନେ
ପରିଘ ନାରାଚ ବର୍ଷୁଛନ୍ତି ଅନୁକ୍ଷଣେ ।
ଅସ୍ତ୍ରେ ଶସ୍ତ୍ରେ ଜତା ଯେହ୍ନ ସଂଗ୍ରାମେ ନିଃଶଙ୍କା
ଅନର୍ଥକ ଅଜେୟ ଯେ ବୀର ରଣରଙ୍କା ।
ଯୁଦ୍ଧେ ଅନିବାରଣ ସେ କ୍ଷତ୍ରୀ ଚୂଡ଼ାମଣି
ଏକା ନାରାଚେ ସମସ୍ତ ଶସ୍ତ୍ର ଦେଲା ହାଣି ।
କୁହୁକ ନାରାଚ ପୁଣି ମାଇଲେ ଦଇତେ
ଅର୍ଜ୍ଜୁନ ଘେନି କାଟିଲା ସୂର୍ଯ୍ୟାବର୍ତ୍ତ ଅସ୍ତ୍ରେ ।
କୁହୁଡ଼ି ତେଜ ଫାଟିଲା ଦିଗ ଗଲା ଫିଟି
ପୁଣ ଦାନବ ବର୍ଷିଲେ ସର୍ବଦିଗ ଘୋଟି ।
ବହ୍ନିତ ନାରାଚ ପୁଣି ବର୍ଷିଲେ କୌଣପେ
ସମସ୍ତ ଧ୍ୱଂସ ହୋଇଲା ପାର୍ଥର ପ୍ରତାପେ ।
ଅସଂଖ୍ୟ ସଂଗ୍ରାମ କଥା ଲୋକେ ଅଗୋଚର
ଅବିଶ୍ରାମ ସଂଗ୍ରାମ ଯେ ହୋଇଲା ଅପାର ।
ସଂଗ୍ରାମ ବିମୁଖ ହେଲେ ବୀରବର ପାର୍ଥ
ନିଜ ହସ୍ତରେ ଧଇଲେ ଅସ୍ତ୍ର ପାଶୁପତ ।
ଯେବେ ତୃପ୍ତ ମନେ ତୋତେ ଦେଇଛନ୍ତି ହର
ଅସୁର ବଳକୁ ଧ୍ୱଂସି ପକାଅ ତୁ ଶର ।
ଯେତେବେଳେ ଦେଖିଲାକ ଅପର୍ଯ୍ୟାପ୍ତ ସୈନ
ତିଆରି ନାରାଚ ଗୋଟି ପେଷିଲା ଅର୍ଜ୍ଜୁନ ।
ଚଳିଲା ନାରାଚ ଗୋଟି ରୁଦ୍ରତେଜ ଘେନି
ଯାଆନ୍ତେ ସେ ଦହୁଅଛି ଅସୁରବାହିନୀ ।
ମାଳବାଣ ଭୁଜବାଣ ହରିହର ଆତ୍ମା
ପୁଣି ବେନିଶରକୁ ଯେ ପେଷଇ ମହାତ୍ମା ।
ମାଳବାଣ ଭୁଜବାଣ ପାଶୁପତ ଶର
ତିନି ନାରାଚ ଘୋଟିଲା ଦିଗ ଯେ ଅମ୍ବର ।
ଶତେ ଶତେ ତାଳ ଯେହ୍ନ ନାରାଚଙ୍କ ଶିଖା
ଘରୀଭର ଦହନ ସେ ଅନନ୍ତ ଯା ସଖା ।
ଯେବଣ ଶର ବ୍ରହ୍ମାଣ୍ଡଯାକ ପାରେ ଘୋଟି
ତିନି ନାରାଚ କି ସୂର୍ଯ୍ୟ କିରଣ ପ୍ରକଟି ।
ଅସୁରଙ୍କ ଦହନ ହେଲେ ଶରତେଜ ରହିଁ
ପଥ ନିରୋଧ ଯିବାକୁ ବାଟ ନାହିଁ କାହିଁ ।
ଖେଚରୀ ନାରାଚ ଦେଇଥିଲେକ ପାର୍ବତୀ
ସେ ନାରାଚ ବସାଇଲା ପାର୍ଥ କୋପମୂର୍ତ୍ତି ।
ନାରାଚକୁ ତିଆରଇ ବୀରବର ପାର୍ଥ
ପୂର୍ବ ମହିଷାସୁରକୁ ବଧିଲ ଗୋ ମାତ ।
ଏବେ ଏମାନେ ଅଟନ୍ତି ଦେଖ ତୋ'ର ଭକ୍ଷ୍ୟ
ଗୋସିଂହକୁ ବଧକରି ନିଜଗତ ରଖ ।
ଖେଚରୀ ନାରାଚ ସନ୍ଧୁଁ ବନ୍ଧିଲେ ଫାଲ୍‌ଗୁନ
କଳକଳା ନାଦ କରି ଉଠିଲା ବହନ ।
ଭେଦନ୍ତି ନାରାଚ ଯାଇ ଦୈତ୍ୟରୋମାବଳି
ସୂଚିମୁନ ପ୍ରାୟେ ଦେହେ ଯାଉଛନ୍ତି ଗଳି ।
ରକତେ କର୍ଦ୍ଦମ ହେଲା ଦାନବଙ୍କ କାୟ
ଶରୀର ଦିଶେ ମନ୍ଦାର ପୁଷ୍ପମାଳା ପ୍ରାୟ ।
ଖେଚରୀ ନାରାଚ ଗୋଟି କିରଣର ଜ୍ୟୋତି
ଯେତେ ଦାନବ ସେ ହେଲା ଚେତକ ମୂରତି
ଯେବଣ ଆଜ୍ଞା ଦେଇଛି ବୀର ସବ୍ୟସାଚି
କୁହୁକ ପ୍ରାୟେ ନାରାଚ କ୍ଷେପି ଯାଉଅଛି ।
ଯେସନେ ତୁଷାର ବୃଷ୍ଟି କରଇ ଶିଶିରେ
ତେସନ ବର୍ଷଇ ପାର୍ଥ ଅସୁର ଶରୀରେ ।
ପଡ଼ିଲେ ଅସୁରେ ଯେହ୍ନ ନାରାଚେ ନିମଜ୍ଜି
ସମ୍ମୁଖ ରଣେ ନ ରହି ଏଣେତେଣେ ଭାଜି
ଗୋସିଂହ ଦୈତ୍ୟର ଥାଟ ଚୌରାଅଶୀ କୋଟି
ଏକାକୀ ଅର୍ଜ୍ଜୁନ ଦେଲା ସମସ୍ତଙ୍କୁ ଘାଣ୍ଟି ।

ଅଗସ୍ତିଙ୍କୁ ପୁଚ୍ଛା କଲେ ବୈବସ୍ୱତ ମନୁ
ଅସୁରେ ନାରାଚ ଯେତେ ଫେଷନ୍ତ ଅଜ୍ଞାନୁ ।
ସେ ଶସ୍ତ୍ରମାନ ଅର୍ଜୁନ ଦହନ୍ତ କେମନ୍ତେ
ଏହା ସଂକ୍ଷେପି କହିବା ହେଉ ମନ ମୋତେ ।
ଅଗସ୍ତି ବୋଇଲେ ଶୁଣ ମନୁ ଯୁଗେଶ୍ୱର
ଚଉରାଶୀ କୋଟି ସୈନ୍ୟ ବହନ୍ତ ଯେ ଶର ।
ଲକ୍ଷ ସହସ୍ର ଅର୍ବୁଦ ଖର୍ବ କୋଟି କୋଟି
ବହନ୍ତ ଯେହ୍ନେ କକଡ଼ା ମାସେ ଜଳବୃଷ୍ଟି ।
ସମସ୍ତ ହୋଇ ଯେତେକ ନାରାଚ ବହନ୍ତ
ଏକା ଅର୍ଜୁନ ତେତକ ସନ୍ଧାନ କରନ୍ତ ।
ଶସ୍ତ୍ରକୁ ଶସ୍ତ୍ର କରନ୍ତ ପାର୍ଥ ପରତାଳ
ଆକାଶ କମ୍ପଇ ସେହୁ ଶସ୍ତ୍ରଙ୍କର ଜାଳ ।
ନୀଳଭୂଜ ପାଶୁପତ ବାଣ ଯେ ଖେଚରୀ
ଅଗ୍ନି ଦେଇଥିଲେ ପୁଣି ଯେଉଁ ଶସ୍ତ୍ର ଗୁର ।
ବ୍ରହ୍ମା ହୋଇଲେହେଁ ସେହି ଶସ୍ତ୍ରକୁ ନ ଜିଣି
ଅଗ୍ନିଙ୍କର ପଞ୍ଚଆତ୍ମା ଶର ପାର୍ଥ ଘେନି ।
ଖାଣ୍ଡବବନ ଦହନେ ଅଗ୍ନି ତୋଷ ହେଲା
ପଞ୍ଚଆତ୍ମା ପଞ୍ଚଶର ଅର୍ଜୁନକୁ ଦେଲା ।
ଜଗନ୍ନାଥଙ୍କ ବଚନ ଶୁଣି ଫାଲଗୁନ
କୋପେ ପେଷିଲା ପାର୍ଥ ସେ ଶସ୍ତ୍ରମାନ ଘେନି ।
ଅନବାର ଶର ସେହୁ ନୁହଇ ନିବାର
ଦହିଲେ ଦାନବବଳ ଘୃତ ଯୋଗକର ।
ପଚାଶ ଯୋଜନ ମାଡ଼ି ଅସୁରେ ଯେ ଥିଲେ
ସାତଘଡ଼ିର ଭିତରେ ଦହ୍ୟଯ ହୋଇଲେ ।
ସୈନ୍ୟହତ ଦେଖି କୋପେ ଦାନବ ଗୋସିଂହ
ଦେବରଥ ଚଢ଼ି ମିଳି ଆସି ପାର୍ଥ ଆଗ ।
ସାରଥି କହିଲା ରାଜା ସାବଧାନେ ଶୁଣ
ଏହାର ହାତରେ ଅଛୁ ତୋହର ମରଣ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବ ବଜ୍ରଧାରୀ
ସମର କଲେ ନ ହନ୍ତ ଏକେ ଏକେ ସରି ।
ଗୃହଦ୍ୱାରପାଳ ହୋଇଛନ୍ତି ଏକମୂର୍ତ୍ତି
ମୋତେ ତ ଦୃଶ୍ୟ ହେଲାଣି ଏହା ରୂପ କାନ୍ତି
ବ୍ରହ୍ମାଙ୍କର ସ୍ୱରୂପ ଏ ଜାଣିଲି ହୃଦଗତେ
କଟି ମେଖଳା ବାସବ ଭୁଜ ଜଗନ୍ନାଥେ ।
ଭବଭର ନିବାରଣେ ଜନମ ଏ ଯୋଗେ
ମୋତେ ତ ଦୃଶ୍ୟ ହୋଇଲା ଏହାଙ୍କ ସ୍ୱରୂପେ ।
ସଂଗ୍ରାମ ଛାଡ଼ି ତୁ ଅବା ଯାଆନ୍ତୁ ପଳାଇ
ପଥ ନରୋଧ ଯିବାକୁ ତୋତେ ବାଟ ନାହିଁ ।
ରଣଯଜ୍ଞ କର ତୁହୋ ନୁହସି ନସତ
ନିଶ୍ଚୟ ମୃତ୍ୟୁ ହୋଇବ ତୋତେ ସରପତ ।
ସାରଥି ବଚନେ ସେହି ଗୋସିଂହ ଅସୁର
ଜୀବନର ଆଶା ଛାଡ଼ି ହେଲା ଆଗୁସାର ।
ଦେବରଥ ଛାଡ଼ି ପୁଣି ଚଢ଼ିଲାକ ହସ୍ତୀ
ଅର୍ଜୁନ ଛାମୁରେ ଆସି ମିଳିଲା ସେ ରସ୍ତ ।
କୋଟିଏ ସହସ୍ର ବଳ ଧନୁକୁ ଧଇଲା
ଦଶଲକ୍ଷ ନାରାଚ ସେ ପାର୍ଥକୁ ମାଇଲା ।
କୃତାନ୍ତ ନାମେ ନାରାଚ ମାଇଲେ ଫାଲ୍‌ଗୁନ
ଗୋସିଂହର ସବୁଶସ୍ତ୍ର ପକାଇଲା ହାଣି ।
ହସ୍ତବ୍ୟଗ୍ରେ ଶସ୍ତ୍ରମାନ ଦେଖି ସେ ନ ପାର
ପବନୁ ବେଗେ ଅସୁର ତାଙ୍କୁ ଶସ୍ତ୍ର ମାର ।
ପଙ୍କତା ନାମେଣ ଶର ମାଇଲା ଅସୁର
ବଜ୍ରଶରେ ତାହା ପାର୍ଥ କଲେକ ନିବାର ।
ବ୍ରହ୍ମଶସ୍ତ୍ର ଘେନି କୋପେ ଅସୁର ମାଇଲା
ନାରାୟଣ ଶରେ ପାର୍ଥ ତାହା ନିବାରିଲା ।
ବ ବଲ ଶର ପେଷିଲେ ଶରାସନେ ସନ୍ଧି
ଗୋସିଂହ ଧନୁକୁ ପାର୍ଥ ପକାଇଲେ ଛେଦି ।
ମହା କୋପେ ଗୋସିଂହର କମ୍ପୁଅଛି ଅଙ୍ଗ
ଅର୍ଜୁନ ଉପରେ ନେଇ ପିଟିଲା ପରିଘ ।
ଆସନ୍ତେ ଦେଖି ସେ ଶସ୍ତ୍ର ବଞ୍ଚାଇ ପାର୍ଥିବ
ବଜ୍ର ଶକତିରେ ଦେଲେ ଦୈତ୍ୟକୁ ପ୍ରାଭବ ।
ଦେଖି ଗୋସିଂହ ପାତିଲା ତାର ଶିଙ୍ଗ ଅଙ୍ଗ
ଶକତି ତହିଁରେ ପଡ଼ି ଫୁଟି ହେଲା ଭଙ୍ଗ ।
ଗୋସିଂହ ଯେ କ୍ଷେତ୍ରପାଳ ଅଶ୍ୱ ଚଢ଼ିଥିଲା
ଦୈତ୍ୟେ ପକାଇ ଅର୍ଜୁନେ ସେ ଶରଣେ ଗଲା
ପ୍ରଳୟ ଅନ୍ତକ ଅଟଇ ଯେ ସେହୁ ହୟ
ଦେଖିଣ ଅର୍ଜୁନ ତାର ଚରଣେ ବିନୟ ।
କୋପେ ଅସୁର ବୁଲାଇ କୁଠାର ଆୟୁଧ
ଅର୍ଜୁନ ଉପରେ ନେଇ ପିଟିଲା ନିର୍ବୋଧ ।
ବଜ୍ର ସଦୃଶେ ପିଟିଲା କୋପେ ଦୈତ୍ୟପତି
ବଞ୍ଚାଇ ପାର୍ଥ ମାଇଲେ ତ୍ରିଶୂଳ ଶକତି ।
ଦେଖିଲା ଗୋସିଂହ ଦୈତ୍ୟ ପାତିଲା କପାଳ
ବଜ୍ରାଘାତ ପ୍ରାୟ ଆସି ପଡ଼ିଲା ତ୍ରିଶୂଳ ।

ଭାଙ୍ଗି ଖଣ୍ଡ ଖଣ୍ଡ ହେଲା ତ୍ରିଶୂଳ ଶକତ
ଆକାଶରେ ଝଲକଲା ଅଗ୍ନି ଜ୍ୟୋତି କାନ୍ତ ।
ବେଗେ ପାର୍ଥିଙ୍କ ପେଷଇ ପୁଣି ଅଗ୍ନି ଶର
ଅଗ୍ନିକୁ ଦେଖିଣ ତୁଣ୍ଡ ପାତିଲା ଅସୁର ।
ଗୋସିଂହ ପେଟେ ପଶିଲା ଯାଇ ଅଗ୍ନିବାଣ
ଅସୁର ଗ୍ରାହ୍ୟ ନ କଲା ଦେଖି ତତକ୍ଷଣ ।
ଆଶ୍ଚର୍ଯ୍ୟ ହୋଇଲେ ଇନ୍ଦ୍ର ଚନ୍ଦ୍ର ବେଦବ୍ରହ୍ମା
ଧନ୍ୟରେ ଗୋସିଂହ ଦୈତ୍ୟ ତୋହର ମହିମା
ଆକାଶରେ ଗାଇ କଲେ ଦେବେ ବେଦଧ୍ୱନି
ଗୋସିଂହ ମାର ଆକାଶ ରଖ ଫାଲଗୁନ ।
ବଇଷ୍ଣବୀ ଚକ୍ର ମହାମାୟାଙ୍କର ଥିଲା
ସେ ଚକ୍ର ଘେନିଣ ପାର୍ଥ ଗୋସିଂହ ମାଇଲା ।
ଯେବଣ ଚକ୍ରେ ମାଇଲେ ଦେବୀ ରକ୍ତବୀର୍ଯ୍ୟ
ଦାନବବଳ ହୋଇଲେ ତହିଁରେ ଦନ୍ଧଯ୍ୟ ।
ସେ ଚକ୍ର ପଡ଼ିଲା ଯାଇ ଗୋସିଂହ ହୃଦୟେ
ଦହନ ହୋଇଲା ତେଣେ ଗୋସିଂହର କାୟେ ।
ପ୍ରଳୟ ଅଗ୍ନିରୁ ତେଜ ଚକ୍ରରୁ ଉଗୁଳ
ଗୋସିଂହ ଶରୀରଯାକ ହେଲା ପାଂଶୁମାଳ ।
ଘଡ଼ିଏକ ଦିବସେକ ସମର ହୋଇଲା
ଚଉରାଶୀକୋଟି ସୈନ୍ୟ ଗୋସିଂହହିଁ ମଲା ।
ବୈଶାଖ କୃଷ୍ଣ ନବମୀ ତିଥି ସୋମବାର
ଧନିଷ୍ଠା ନକ୍ଷତ୍ର ପୁଣି ସେ ଦିନ ଆବର ।
ଗର ନାମେ କରଣ ଯେ ବ୍ରହ୍ମନାମେ ଯୋଗ
ମେଷ ସଂକ୍ରାନ୍ତିର ଅଠର ଦିନ ଭୋଗ ।
ବେଳ ଅଢ଼ାଇ ପ୍ରହର ଶନିଶ୍ଚର ବେଳା
ଗୋସିଂହ ଦୈତ୍ୟ ପଡ଼ିଲା କରି ରଣଖେଳା ।
ତ୍ରିଦଶ ଦେବତା କଲେ ସ୍ୱର୍ଗେ ସାଧୁ ଧ୍ୱନି
ବୋଇଲେ ସ୍ୱର୍ଗ ଅରିଷ୍ଟ ଖଣ୍ଡିଲୁ ଫାଲ୍‌ଗୁନ ।
ଭାରତର ନିବାରଣ କଲୁ ବୀରପାର୍ଥ
ଅମୃତ ବୃଷ୍ଟି କଲେ ସେ ଅର୍ଜୁନର ମାଥ ।
ଗୋସିଂହ ବଧ ଅଟଇ ରହସ୍ୟ ଏ ଗାଥା ।
ଇତି ଶ୍ରୀମହାଭାରତ ମଧ୍ୟପର୍ବ କଥା ।
ଅଗସ୍ତି ବାକ୍ୟ ଶୁଣନ୍ତି ମନୁ ମହାରଥା
କହି ନୁହଇ ଅସଂଖ୍ୟ ପୁରାଣ ବାରତା ।
ମୁଁ ଏହା ରଚିଲି ମହାମାୟାର ପ୍ରସନ୍ନେ
କଳିକଳ୍ମଷ ପାପରୁ ମୁକ୍ତ ହୁଅ ଜନେ ।
ଗୋସିଂହ ବଧ ଶୁଣଇ ଯେହୁ ଏକ ମନେ
ଅଗାଧ ପାପ ସାଗରୁ ତରେ ତତକ୍ଷଣେ ।
କୋଟିଏ ତୀର୍ଥ କଲର ପାଇ ଫଳଶ୍ରୁତି
ଖଣ୍ଡନ୍ତି ପାତକ ଆଉ ଦୁଃସହ ଦୁର୍ଗତି ।
ଅସଂଖ୍ୟ ମହାଭାରତ କେହୁ ଅନ୍ତକରି
ଅଗାଧ ସାଗର ଜଳ କେହୁ କଳିପାରି ।
କୋଟି ଅଶ୍ୱମେଧ ଏହି ଭାରତକୁ ଗରୁ
ଭଜନ୍ତେ ହେଲା ଏ ମହାଗରୁ ସବୁଠାରୁ ।
ସୁଦୟା କଲେ ଅନନ୍ତରୂପା ଯେ ହିଙ୍ଗୁଳା
ପରମସାଧକୀ ସେହି ଶ୍ରୀଚଣ୍ଡୀ ଶାମ୍ଭଳା ।
ବହଇ ଗୋପନେ ବୃଦ୍ଧମାତା ନାମେ ନଦୀ
ପାତାଳ ଗଣ୍ଡକୀ ସେହି ମହାତୀର୍ଥ ଭେଦି ।
ସେ ନଦୀତୀରେ ଆସନ କଲେ ମହାମାୟେ
ମହାସମ୍ପଦ ଦିଏ ଯେ ପଡ଼େ ତାର ପାୟେ ।
ମୁହିଁ ସେ ଦେବୀ ଅଭୟ ମୃଦୁ ପଦ୍ମପାଦେ
ମନକୁ ଦେଖି ଅଦୃଶ ଲେଖେ ତା ପ୍ରସାଦେ ।
ଅଦ୍ୟାପି ଖେଳଇ ସେହି ବାଳରୂପ ଧରି
ତପେ ବର ଦିଅଇ ସେ କଷ୍ଟୁଁ କରେ ପାରି ।
ଏ ମାୟା ମୋହସାଗରୁ ଉଦ୍ଧରୁ ଗୋ ଦେବୀ
ସୁଜନ୍ମା ପ୍ରାଣୀ ଲଭଇ ତୋତେ ମନେ ଭାବି ।
ନ ପଢ଼ିଲି ବିଦ୍ୟା ମୁହିଁ ନ ଜାଣଇ ରସ
ବଦନ୍ତି ଯେ ଗ୍ରନ୍ଥାକାର ଶ୍ରୀସାରଳା ଦାସ ।

---

## ସୁଭଦ୍ରା ହରଣ

ବଦନ୍ତି ଅଗସ୍ତି ସେ ଯେ କୁମ୍ଭଋଷି ବର
ସନକ କୃତ୍ୟ କଲା ସେ ବୀର ବୀଭତ୍ସ ।
ଯେତେ ଧନୁ ଆଣିଥିଲେ ସେ ସବୁ ଅସୁରେ
ଶତଧନୁ ରଖେ ସୂର୍ଯ୍ୟକେତୁ ବିମାନରେ ।
ସେ ସମସ୍ତ ଦିବ୍ୟ ଧନୁ ଘେନି ଫାଲଗୁନ
ସତ୍ୟଭାମା ପାଦେ ଦେବ କରଇ ଦଗିନୀ
ସତ୍ୟଭାମା ବୋଇଲେ ମୁଁ କି ଦେବଇଁ ତୋତେ
ମାରକଣ୍ଡଙ୍କ ଆୟୁଷ ପ୍ରାପ୍ତ ହେଉ ତୋତେ ।
ଜଗନ୍ନାଥେ ଉପକାର ତୁହି ପାର୍ଥ କଲୁ
ଅସୁର ମୁଖରୁ ମୋତେ ଉଦ୍ଧରି ଆଣିଲୁ ।
ରେବତ ପର୍ବତେ ଚାଲ ବେଗ ହୋଇ ଯିବା
ରାମ କୃଷ୍ଣଙ୍କ ଚରିତ ସେଠାରେ ବୁଝିବା ।

ସତ୍ୟଭାମା ଭଜେ ସୂର୍ଯ୍ୟକେତୁ ବିମାନରେ
ଆଗେ ପାର୍ଥ ଶତଧନୁ ବସିଲେ ପଛରେ ।
କ୍ଷେତ୍ରପାଳ ଅଶ୍ୱ ଚଳି ସ୍ୱର୍ଗ ଭୁବନକୁ
ଦେଖିଣ ଇନ୍ଦ୍ର ଯତନେ ରଖିଲେ ତାହାଙ୍କୁ ।
ଛନ୍ଦଦନେ ପ୍ରବେଶିଲେ ରୈବତ ପର୍ବତେ
ଦେଖିଲେ ଯଜ୍ଞ ଭବନ ଭଗ୍ନ ଇତସ୍ତତେ ।
କୁଣ୍ଡେ ଅଗ୍ନି ଗୋପ୍ୟ କରିଛନ୍ତି ବେଦଭ୍ରାତେ
ତହିଁ ସତ୍ୟା ସହ ପାର୍ଥ ମିଳିଲେ ତୁରତେ
କୁଣ୍ଡ ସନ୍ନିଧାନେ ଯାଇଁ ପ୍ରବେଶି ଅର୍ଜୁନ
ଅଗ୍ନି ଦେବତାଙ୍କୁ ସ୍ତୁତି କଲେ କରି ମାନ୍ୟ ।
ଜୟ ତୁ ଅନଳ ବୈଶ୍ୱାନର ସେ ଦେବତା
ଶୋଷକ ନାଶକ ଦେବ ତୁମ୍ଭେ ଉଦ୍ଧାରନ୍ତା ।
ଯେବେ ମୋଠାରେ ସଦୟ ତୁମ୍ଭେ ଦେବସ୍ୱାମୀ
ସ୍ୱରୂପ ଦେଖାଅ ମୋତେ ଘମକୁଣ୍ଡ ବେନି ।
ଅର୍ଜୁନ ବାକ୍ୟେ ସାନନ୍ଦ ଦେବ ବୈଶ୍ୱାନର
ଯଜ୍ଞକୁଣ୍ଡୁ ଘମକୁଣ୍ଡ କଲେ ବାହାର ।
ଧବଳ କୋମର ଶିରେ ଶୋଭେ ସପ୍ତଫଣୀ
ଦିଶନ୍ତ ସେ କାମପାଳ ମହାତେଜ ଜିଣି ।
ନୀଳଉତ୍ପଳ ଯେ ତନୁ ଶଙ୍ଖ ଚକ୍ରପାଣି
ଅଗ୍ନିରୁ ବାହାର ଦେବ ଶତଚନ୍ଦ୍ର ଜିଣି ।
ଶତଧନୁ ଘେନ ପାଦେ ଅର୍ଜୁନ ପ୍ରଣମି
ଭାବ ନବାରଣ ଦେବ ଉଦ୍ଧର ହେ ସ୍ୱାମି ।
ଗୋବିନ୍ଦ ବୋଇଲେ ଆମ୍ଭଙ୍କୁ ତୁ ଉଦ୍ଧରିଲୁ
ଗୋସିଂହର ଦର୍ପେ ଆମ୍ଭେ ଦୂଷିତ ହୋଇଲୁ
କରପୁଟ ଯୋଡ଼ି ଶତଧନୁ ଯେ ବୋଇଲା
ସତ୍ୟାଠାକୁରାଣୀଙ୍କି ସେ ଦୈତ୍ୟ ନେଉଥିଲା ।
ମଣିଭଦ୍ରା ନଦୀ ତୀରେ ଆମ୍ଭେ ଥିଲୁ ରହି
ସତ୍ୟଭାମା ଡାକଦେଲେ ପାର୍ଥ କରି ବାହି ।
ମୁହିଁ ବୋଇଲି ଭଦ୍ରଦେବ ଶୁଣ ବୀରମଣି
ରଖ ବୋଲି ଡାକଦେଲେ ସତ୍ୟାଠାକୁରାଣୀ
ତାହା ଶୁଣି ପେଷିଲେକ ପାର୍ଥ ମନଭେଦୀ
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ନବେଧି ।
ସ୍ୱାମି ସଂଗ୍ରାମର କଥା କହି ତ କେ ପାରି
ଅଢ଼ାଇ ପ୍ରହରେ ଥାଉଁ ଗଲେ ଯମପୁରୀ ।
ଯେବଣ ସମର କଲା ଗୋସିଂହ ଦଇତ୍ୟ
ଦେବ ଦାନବେ ଦୁର୍ଲ୍ଲଭ ସେ ଅତି ବଚନ ।

ଅସଂଖ୍ୟ ସମର ଦେବ ଅତି ଅଗୋଚର
ଅଢ଼ାଇ ଦିବସେ ମଲା ଗୋସିଂହ ଅସୁର ।
ଅସ୍ତ୍ର ଅଶ୍ୱଧାମା ଦେବ ଶୁଣିମା ଶ୍ରୀହର
କହଇ ସେ ଶତଧନୁ ସମର ବିସ୍ତାର ।
ଶୁଣି ପରମ ଆନନ୍ଦ ହେଲେ ରମ ହର
ଆରେ ଶତଧନୁ ବର ମାଗ ତୁ ବର୍ବର ।
ପାଦେ ପ୍ରଣମିତ ହୋଇ ବୋଲେ ଶତଧନୁ
ଜୀବନଦାନ ଦେବାକୁ ଦେବକୀର ସୁନୁ ।
ଗୋବିନ୍ଦ ବୋଇଲେ ଅର୍ଜୁନ ପଇଲୁ ତୁ ରକ୍ଷା
ଥାଅ ଏବେ ଦ୍ୱାରକାରେ ପୂରୁ ମନୋବାଞ୍ଛା ।
ବଳରାମ କୋଳକରି ଧଇଲେ ପାର୍ଥଙ୍କୁ
କଲେ ଅନେକ ଗୌରବ ସୁତୁଷ୍ଟ ଥ ତଙ୍କୁ
ଧନ୍ୟ ପାର୍ଥିବ ଜୀବନ ତୋର ସାଧୁ ସାଧୁ
ତୁମ୍ଭେ ହି ପାର୍ଥିବ ମୋର ଅଟ ପ୍ରାଣବନ୍ଧୁ ।
ତୁମ୍ଭରେ ପାର୍ଥ ମୋହର ପ୍ରାଣ ଅଧିକାରୀ
ପ୍ରତ୍ୟକ୍ଷ ତୁ ଅଟ ଦେବ ନିରଞ୍ଜନ ସରି ।
ତୁମ୍ଭେ ସେ ଅଟ ଅନାଦି ଧାରଣ ମହାତ୍ମା
ତୁମ୍ଭେ ସେ ଅଟ ଅସୁର ପିତାମହ ବ୍ରହ୍ମା ।
ତୁମ୍ଭରେ ମୋର ଦ୍ୱାରକାପୁରେ ରକ୍ଷାବନ୍ଧ
ଧନ୍ୟ ଧନ୍ୟ ପାର୍ଥିବ ରେ ଜୀବନ ତୋ ସାଧୁ
ପରହିତେ ସଦା ଥାଉ ଦୁଃଖୀ ପରଦୁଃଖେ
କି ଦେଇ ତୃପ୍ତ କରିବ କାହିଁ ନ ଦେଖେ ।
ଅନେକ ସାନନ୍ଦ ହୋଇ କୃଷ୍ଣ ବଳଦେବ
ରୈବତ ପର୍ବତେ ଦେବ କରନ୍ତି ଉତ୍ସବ ।
ନଳ କୁବେର ପ୍ରଦ୍ୟୁମ୍ନ ଜଳେ ପଡ଼ିଥିଲେ
ବରୁଣ କୁବେର ତାଙ୍କୁ ତହୁଁ ଉଦ୍ଧରିଲେ ।
ସେ ଆସି ପ୍ରବେଶ ହେଲେ ରୈବତ ପର୍ବତେ
ଥୋକାଏ ଯାଦବ ଥିଲେ ରହିଣ ଗୁପତେ ।
ରଇବତ ପରବତ ଅଟେ ତନପୁର
ଅସୁର ଭୟେ ସେ ଥିଲେ ଯାଇ ତଳପୁର
ବଳଦେବ ଠାକୁରଙ୍କ ଦୃଢ଼ବାକ୍ୟ ଶୁଣି
ଭିତରପୁରୁ ବାହାର ହେଲେ ଯୁବମଣି ।
ଅର୍ଜୁନଙ୍କୁ କୋଳକରି ବସାଇ ଶ୍ରୀପତି
ଶ୍ରୀକରେ ମଥାର ଜଟା ଦେବ ଫେଡ଼ନ୍ତି ।
ଉଗ୍ରସେନଙ୍କୁ ଯେ ଆଜ୍ଞା ଦେଲେ ଚକ୍ରଧର
ପାର୍ଥର ଉତ୍ସବ କଥା ସମସ୍ତେ ବିସ୍ତର ।

ଗୋବିନ୍ଦର ବଧ ଶୁଣି ଋଷି ତପୋଧନ
ରୈବତ ପର୍ବତେ ଆସି କଲେ ଧନ୍ୟ ଧନ୍ୟ ।
ଅର୍ଜୁନର ଜଟା ଫେଡ଼ି ସୁଗନ୍ଧ ଲଗାଇ
ତାହାଙ୍କୁ ସ୍ନାନ କରାନ୍ତି ଆପେ ଯଦୁସାଇଁ ।
ସତ୍ୟଭାମା ରତ୍ନଘଟେ ପାଣି ଦେଲେ ତୋଳି
ଆପେ ଶ୍ରୀହରି କେଶକୁ ଦିଅନ୍ତି ପଖାଳି ।
ପ୍ରଦ୍ୟୁମ୍ନ ଗଦ ଯେ ଶାମ୍ବ ସାତ୍ୟକି ସହିତେ
ରତ୍ନଘଟେ ପାଣି ତୋଳି ଦିଅନ୍ତେ ସମସ୍ତେ ।
ସ୍ୱର୍ଣ୍ଣର ସିଂହାସନେ ବସାଇ ଫାଲ୍‌ଗୁନ
ପୋଛିଲେ କେଶ ଶ୍ରୀକରେ ବସ୍ତ୍ରଖଣ୍ଡେ ଘେନ
ସାତ୍ୟକି ଛତ୍ରଧରୁ ଯେ ଆଲଟକୁ ତୋଳି
ଶ୍ରୀକରରେ ଜଗନ୍ନାଥ କେଶକୁ କୁରୁଳି ।
କେଶ ଶୁଖାଇ କୁସୁମ ଘେନି ନିଜ ହସ୍ତେ
ଦ୍ୱାଦଶ ଫଳର ଗଭା ସାଜି ଜଗନ୍ନାଥେ ।
ଅନେକ ରତ୍ନ ଶରୀରେ କଲେ ଆଭରଣ
ପିନ୍ଧାଇଲେ ପୀତାମ୍ବର ସୁଛିନ୍ନ ବସନ ।
ଶିରେ ସୀମନ୍ତେ ଲଲାଟେ ଦେଇ ଗନ୍ଧମାଟି
ସମୁଦ୍ରମନ୍ଥନେ ଯେହ୍ନେ ଆଦିତ୍ୟକୁ ଘୋଟି ।
କର୍ଣ୍ଣରେ ଦେଲେ ରତନ ଅମୃତକୁଣ୍ଡଳ
ହୃଦରେ ଭୂଷଣ କଣ୍ଠେ ରୁଦ୍ରାକ୍ଷର ମାଳ ।
ଭୁଜରେ ତାଡ଼ ତୋଡ଼ର କଙ୍କଣ ବାହୁଟୀ
ହିଦମୁଦ୍ରିକା ଯେ ଅଷ୍ଟରତ୍ନର କରଟୀ ।
ପାଦରେ ନୂପୁର କଟି ମେଖଳାହିଁ ଶୋଭା
ଯେସନେ ଦିଶଇ ଗଗନେ ପୂର୍ଣ୍ଣଚନ୍ଦ୍ର ପ୍ରଭା ।
ବୀରବେଶେ ଅଳଙ୍କୃତ କରି ବନମାଳୀ
ଚନ୍ଦନ ଯେ ଚତୁଃସମେ ଶରୀର ସମ୍ଭାଳି ।
ଆପେ ପୁଣି ଜଳେ ସ୍ନାନ କରିଣ ଅଚ୍ୟୁତ
ବେଶ ଭୂଷଣ ହୋଇଣ ଶ୍ରୀଜଗତଭୂତ ।
ଦିବ୍ୟ ସିଂହାସନେ ଯାଇ ବିଜୟେ ମୁରାର
ବସାଇଲେ ଅର୍ଜୁନକୁ ନେଇ କୋଳେ ଧରି ।
ସୁଗନ୍ଧ ଚନ୍ଦନ ମୃଗନାଭି ଯେ କସ୍ତୁରୀ
ଅଙ୍ଗେ ଲେପନ କରାଇ ଆପେ ଦେବ ହରି ।
ଆଜ୍ଞା ଦେଲେ ଯଦୁପତି ସତ୍ୟଭାମା ରାଇ
ସମସ୍ତ କନ୍ୟାଙ୍କୁ ତୁମ୍ଭେ କହ ବେଗେ ଯାଇଁ ।
ହସ୍ତେ ଅର୍ଘ୍ୟସ୍ଥାଳୀ ଘେନି ସମସ୍ତେ ଆସନ୍ତୁ
ଅର୍ଜୁନର ଶିରେ ଅର୍ଘ୍ୟ ଦେଇଣ ବନ୍ଦାନ୍ତୁ ।

ସତ୍ୟଭାମା କହିଲେ ଯେ କନ୍ୟାଙ୍କର ପାଶ
ଅର୍ଜୁନକୁ ଅର୍ଘ୍ୟଦେବା ବେଗ ହୋଇ ଆସ ।
ଶୁଣି ସାନନ୍ଦ ହୋଇଲେ ସକଳ ଯୁବତୀ
ନାନା ଅଳଙ୍କାର ବସ୍ତ୍ର ପିନ୍ଧିଣ ଆସନ୍ତି ।
ନାନାବିଧ କୁସୁମ ଖଞ୍ଜି କବରୀ ଶାମଳ
ହସ୍ତେ ଘେନିଲେ ମାଣିକ୍ୟ ଦୀପ ଅର୍ଘ୍ୟଥାଳ
ଚନ୍ଦ୍ରଶାଳା ଭୁବନରେ ବିଜେ ଚକ୍ରପାଣି
ଅଭେଦ ଦେହ ପାର୍ଥକୁ କୋଳକରି ଆଣି ।
ଦ୍ୱାରେ ଭିଡ଼ ହୋଇଲେକ ସମସ୍ତ କାମିନୀ
ହରି ଅର୍ଜୁନକୁ କେହି ନ ପାରିଲେ ଚିହ୍ନି ।
କେ ହରି କେହୁ ଅଟଇ ବୀରବର ପାର୍ଥ
କାହାର ଶିରରେ ଅର୍ଘ୍ୟ ଦେବା ଗୋ ସଙ୍ଗାତ
ଅର୍ଜୁନ ବୋଲି ନ ପୁଣ ସ୍ୱାମୀଙ୍କି ବନ୍ଦାଇ
କୋପ କରିବେ ତ ଦେଖି ଯଦୁକୁଳସାଇଁ ।
କେ ମାଧବ କେ ଅଟଇ ବୀର ଫାଲଗୁନ
ନିରୂପିଣ କନ୍ୟାମାନେ ନ ପାରନ୍ତି ଚିହ୍ନି ।
ଜାମ୍ବୁବତୀ ବୋଲନ୍ତି ଗୋ ଜାଣିଲି ସଙ୍ଗାତ
ବସିଅଛନ୍ତି ଅର୍ଜୁନ କୋଳେ ଜଗନ୍ନାଥ ।
ରୁକ୍ମିଣୀ ବୋଲନ୍ତି ସଖୀ ନୁହଇ ଏମନ୍ତ
ଆମ୍ଭର ଘରେ ଅର୍ଜୁନ ଅଟେ ଅଭ୍ୟାଗତ ।
ବସିବ କି ଅଭ୍ୟାଗତ କୋଳେ ଗୃହବାସୀ
ଏ ମୋହର ମନକୁ ତ ଏମନ୍ତ ନ ଆସି ।
ଆଉର ବିଶେଷେ ଜାଣ ଅର୍ଜୁନ କନିଷ୍ଠ
କନିଷ୍ଠର କୋଳେ କାହୁଁ ବସିବାକ ଜ୍ୟେଷ୍ଠ
ମାନବ ଯୋନି ଜନମ ଅଟଇ ସେ ପୁଣି
ଜଗନ୍ନାଥ କୋଳେ ତେଣୁ ବସିଲେ ଫାଲ୍‌ଗୁନି
ଏସନକ ବିଚାରନ୍ତି ସେ ଯୁବତୀଗଣ
ଯୁବତୀଙ୍କ ମନକଥା ଜାଣି ନାରାୟଣ ।
ଏକ ଶରୀର ଆମ୍ଭେ ଯେ କୃଷ୍ଣ ଫାଲଗୁନ
କନ୍ୟାମାନେ ନିରୂପିଣ ନ ପାରିଲେ ଚିହ୍ନି ।
କନ୍ୟାଙ୍କର ବଦନକୁ ଚାହିଁ ଜଗନ୍ନାଥ
ଆଖି ଠାରିଲେ ଅର୍ଜୁନ ଶିରେ ଦେଇ ହସ୍ତ ।
ଆରେ ତୁ ମୋର ପ୍ରାଣର ସଖା ସବ୍ୟସାଚି
ବନବାସ ଆଉ ତୋର କେତେଦିନ ଅଛି ।
ଅର୍ଜୁନ ବୋଇଲେ ଦେବ ମୋର ବନବାସ
ଶେଷ ହେବାକୁ ଅଛଇ ତିନି ଯେ ଦିବସ ।

ଶିଲେ ଯୁବତୀମାନେ ଠାରିଲେ ଗୋବିନ୍ଦ
ନ ହେବ ଭିତରେ ପରମ ଆନନ୍ଦ ।
ମେ ସେ ଅର୍ଘ୍ୟଦେଲେ ଅର୍ଜ୍ଜୁନର ଶିରେ
ଶୀଘ୍ରରେ ବନ୍ଦାଇଲେ ଦେବ ଦାମୋଦରେ
ଧୁ ସାଧୁ ଅର୍ଜ୍ଜୁନ ହୋ ଜୀବନ ତୋ ଧନ୍ୟ
ଷ୍ଣ କୋଳେ ବସିବାକୁ ତୁ ସିନା ଭଜନ ।
ନବ ଜନ୍ମ ଜୀବନ ତୋର ସାଧୁ ସାଧୁ
ନନ୍ଦ ପୁରୁଷର ତୁ ହେଲୁ ପ୍ରାଣବନ୍ଧୁ ।
ଧୁ ସାଧୁ ହୋ ତୋହର ପିଅର ଜନନୀ
ନେକ ପୁଣ୍ୟେ ପାଇଲେ ତୋତେ ଫାଲଗୁନ
ତ୍ରିଲୋକ୍ୟ ମଧ୍ୟରେ ତୋର ଅନେକ ମହିମା
ରମାନନ୍ଦ ପୁରୁଷ ତୁମ୍ଭ ମହାତମା ।
ନେକ ପ୍ରଶଂସା କରି ସୁଭଦ୍ରାକୁମାରୀ
ର୍ଜ୍ଜୁନର ରୂପ ଦେଖି କାମଶରେ ଘାରି ।
ଅଭୁକ୍ତ ଆତ୍ମାରେ ସେ ହେଲା ବଡ଼କଷ୍ଟୀ
ନଙ୍ଗଶର ଭେଦିଲା ନ ପାରେ ଲେଉଟି ।
କ୍ମିଣୀଙ୍କୁ ସ୍ୱହିଁ ଆଜ୍ଞା ଦେଲେ ଦାମୋଦର
ମୃତ ଯୋଗାଡ଼ ପାକ ବେଗେ ତୁମ୍ଭେ କର ।
ାସ୍ୟପୂଣଙ୍କ ବଚନେ ଚଳିଲେ ଯୁବତୀ
ଭଦ୍ରା ଯାଇ ନ ପାରେ ବିରହେ ତା ମତି ।
ନ୍ୟାମାନେ ତାକୁ ଛାଡ଼ି ନ ପାରନ୍ତି ଯାଇ
ୁଣ ପୁଣ ସୁଭଦ୍ରା ଯେ ଲେଉଟିଣ ଚାହିଁ ।
ମାହେ ସେ ସୁନ୍ଦରୀ ତଳେ ପଡ଼ିଗଲା ଢଳି
କାଳରେ ଧଇଲେ ଶତ୍ରାଜିତର ଦୁଲାଳୀ ।
ଜପୁରେ ପ୍ରବେଶିଲେ ଯାଇ ଦେବ ବାମା
ଭଦ୍ରା ମୁଖକୁ ଚାହିଁ ବୋଲେ ସତ୍ୟଭାମା ।
କାନ୍ତ ମନ୍ଦିରେ ବସି କରନ୍ତି ଭାବିଣି
ଶରୀର ବିକୃତ କିମ୍ପା କଲୁ ସଙ୍ଗ ଭୁଣି ।
ସୁଭଦ୍ରା ବୋଇଲେ ସଖି ମନ୍ଦଭାଗ୍ୟ କଲି
ମୁଁ କପାଇଁ ଅର୍ଘ୍ୟ ଦେବା ଭିତରେ ପଶିଲି ।
ମୁହିଁ ଜାଳନ୍ତି ସି ତୋତେ କରିଥିବି ସେବା
କୁନ୍ତୀଙ୍କ ନନ୍ଦନ ମୋତେ ଅର୍ଜ୍ଜୁନକୁ ଦେବା ।
ମଦନ ଶରେ ଆରତ ମୋହିତ ହୃଦୟ
ଅର୍ଜ୍ଜୁନର ରୂପ ଦେଖି ମୋହିତ ମୋ କାୟ ।
କେଉଁ ଉପାୟ କରିବି କହ ସଙ୍ଗାଭୁଣି
ଅର୍ଜ୍ଜୁନକୁ ଭେଟାଇ ତୁ ପାରୁ ଯେବେ ଆଣି ।

ଗୁପତେ ଯାଇ ତୁ ଭେଟ କରାଅ ସଖିରେ
ରାତ୍ରରେ ପଶି ପାର୍ଥର ଶୟନ ମନ୍ଦିରେ ।
ସତ୍ୟଭାମା ବୋଇଲେ ନ ହେବ କିଛି କାର୍ଯ୍ୟ
ତୁମ୍ଭ ଏମନ୍ତ ହୋଇଲେ ଉପୁଜିବ ଲାଜ ।
ସୁଭଦ୍ରା ବୋଇଲେ ମୋତେ ପାର୍ଥ ନାଶକଲା
ଦ୍ୱାରକାକୁ କିସ ପ୍ରୟୋଜନରେ ଆଇଲା ।
ମୁହିଁ ତୋ ପାଦେ ଶରଣ ପଶିଲି ଗୋ ସଖି
ଛାଡ଼ିଲିଣି ଲାଜ ମୁହିଁ ଛାଡ଼ିଲିଣି ଧୃତି ।
ତୁ ଯେବେ ପ୍ରସନ୍ନ ସତ୍ୟଭାମା ହେଉ ମୋତେ
ଅର୍ଜ୍ଜୁନକୁ ଭେଟାଇ ତୁ ପାରିବୁ ଗୁପତେ ।
ରାତ୍ରରେ ପଶିବି ପାର୍ଥ ଶୟନ ମନ୍ଦିରେ
ଯେସନେକ ଲାଜ ଭୟ ତେଜନ୍ତି ଶୀଘ୍ରରେ ।
ତେସନେ ବେଭାର ସଖି ହେଲାଣି ମୋହର
ତତ୍ପର୍ଯ୍ୟ କରଇ ଯେହ୍ନେ ଲାଜ କାହିଁ ତାର ।
ମାଗିବା ଲୋକର ଲାଜ ସଙ୍କୋଚ ଗୋ କାହିଁ
ପରର ଅନ୍ନକୁ ନିତ୍ୟ ଯେ ଆଶା କରଇ ।
ସେ ପ୍ରାଣୀର ସଖି ଲଜ୍ଜା ଭୟ ଅବା କିସ
ପରଦାର ପ୍ରବୃତ୍ତିର ଯେବଣ ମାନସ ।
ତାହାଙ୍କର ଥାଇ କି ଗୋ ସଖି ଲଜ୍ଜା ଧୃତି
ପାର୍ଥକୁ ଦେଖିଲାବେଳୁଁ ତେସନ ମୋ ମତି ।
ଯେବଣ ପୁରୁଷ ସଖି ହୁଅଇ ଉଦାସୀ
ତାହାଙ୍କର ଲଜ୍ଜା ଧୃତି କାର୍ଯ୍ୟରେ କି ଲେଖି
ଯେବଣ ଜନ ଚଳନ୍ତି ବରଯାହିଁ ପଣେ
ତାହାଙ୍କର ଲଜ୍ଜା ଲେଖା କେବଣ କାରଣେ
ସ୍ୱାମୀର ଦୁର୍ଭଗା ହୁଏ ଯେଉଁ କୁଳନାରୀ
ଜନଙ୍କ ଅନ୍ତରେ ଲଜ୍ଜା ଥାଇ କି ତାହାର ।
ଧନହୀନ ହୁଅଇଟି ଯେବଣ ପୁରୁଷ
ସେ ପ୍ରାଣୀର ନ ଥାଇଟି ଲଜ୍ଜାହିଁ ବିଶେଷ ।
ମଧ୍ୟସ୍ଥପଣ କରନ୍ତି ଯେଉଁ ଜନମାନେ
ତାହାଙ୍କର ଲଜ୍ଜା ସଖି ଲେଖି କି କାରଣେ ।
ଯେବଣ ପ୍ରାଣୀ ଶରୀର ହୁଅଇଟି ରୋଗୀ
ସେ ଜନ ସଖି ହୁଅଇ ଲଜ୍ଜା ପରିତ୍ୟାଗୀ ।
ମୁହିଁ ଏବେ ବିରହିଣୀ ହୋଇଲି ସଙ୍ଗାତ
ତେଜିଲି ଆବର ଲଜ୍ଜା ସଙ୍କୋଚ ସହିତ
କାମ ଅପାୟମେ କଲି ସକଳ ମୁଁ ତେଜ୍ୟା
ବାଳୁତ ଜନର ତୁମ୍ଭେ ଖୋଜ କିସ ଲଜ୍ଜା ।

ମୁଁ ତୋତେ ଶରଣ ପଶି ମାଗେ ମନଇଚ୍ଛା
ଭକତଜନ ବତ୍ସଳ କର ମୋତେ ରକ୍ଷା ।
ଅଳଙ୍କାର ଦେଇ ସତ୍ୟଭାମା ପାଦ ବନ୍ଦି
ଚରଣ ତଳେ ପଡ଼ି ସେ ଉଚ୍ଚସ୍ୱରେ କାନ୍ଦି ।
ମୁହିଁ ବାଳସ୍ତିରି ତୋର କି କରିବି ସେବା
କୁନ୍ତୀନନ୍ଦନ ଅର୍ଜୁନ ମୋତେ ଆଣିଦେବା ।
ପର ଉପକାର କରେ ଜାଣ ଯେଉଁ ପ୍ରାଣୀ
ଜୀବନ ଧନ୍ୟ ତାହାର ହୁଏ ସ୍ୱର୍ଗଗାମୀ ।
ସୁଭଦ୍ରା ବିକଳ ଦେଖି ଦେବୀ ସତ୍ୟଭାମା
ଅନେକ ମତେ ବୁଝାଏ ନାରାୟଣ ବାମା ।
ଚଳ ଯା ସୁଭଦ୍ରା ତୁ ଗୋ ତୋର ନିଜ ପୁର
ଅର୍ଜୁନକୁ ଭେଟାଇବି ତୋର ସଙ୍ଗତର ।
ଏସନ ସନ୍ଦେଶ ଯହୁଁ ସତ୍ୟଭାମା କହି
ସୁଭଦ୍ରା ଦେବୀ ତାହାଙ୍କ ପାଦତଳେ ଶୋଇ
ଚରଣ ତଳେ ଲୋଟଇ ନିର୍ମାକ୍ଷୀ ପଦ୍ମିଣୀ
ରକ୍ଷାକର ତୁହି ମୋତେ ଏବେ ସଙ୍ଗାତୁଣି
ସତ୍ୟଭାମାଙ୍କୁ ସୁଭଦ୍ରା କହଇ ବିନୟେ
ଜଗନ୍ନାଥ ବିଜେ କଲେ ଏମନ୍ତ ସମୟେ ।
ସତ୍ୟଭାମା ପାଦତଳେ ସୁଭଦ୍ରା ପ୍ରଣମି
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଜଗନ୍ନାଥ ସ୍ୱାମୀ ।
ଦେଖି ସୁଭଦ୍ରା ପଳାଇ ଗଲା ସଙ୍କୋଚରେ
ଶଯ୍ୟାମନ୍ଦିରେ ବିଜେସ୍ୱେ ବିକୃତ ଚିତ୍ତରେ ।
ତୁମ୍ଭ ତୁଲେ ସୁଭଦ୍ରାର କି ବିଷୟ ଭାବ
ପଚାରନ୍ତି ସତ୍ୟଭାମା ପାଶରେ କେଶବ ।
ସତ୍ୟଭାମା ବୋଇଲେକ ଯାହାର ପିରତି
ଉପୁଜଇ ଭାବ ତାର ଭୋଳ ହୁଏ ମତି ।
ଏମନ୍ତ ଉପାୟେ ଦେବୀ ତାହାଙ୍କୁ ପ୍ରବୋଧି
ପରମାନନ୍ଦ ପୁରୁଷ ଜାଣେ ସର୍ବବୁଦ୍ଧି ।
ଗୋବିନ୍ଦ ବୋଇଲେ କଲ ଗୋପନ ଏ କଥା
ଗୁରୁ ସ୍ୱାମୀଙ୍କ ଆଗରେ ନ କହନ୍ତି ମିଥ୍ୟା ।
ସତ୍ୟଭାମା ବୋଇଲେକ ଶୁଣିମା ଶ୍ରୀହରି
କହିବାକୁ ଦେବ ମୋତେ ସଙ୍କୋଚ ଲାଗୁଛି ।
ଜାଣି ମାଧବ କହିଲେ କହୁତ କଠାଳ
ସ୍ୱରୂପ କହି ବଦନ୍ତି ପ୍ରଭୁ ବନମାଳୀ ।
କରଯୋଡ଼ି ପୁଣି କହେ ଦେବୀ ସତ୍ୟାସତୀ
ଅର୍ଜୁନଠାରେ ସୁଭଦ୍ରା ଦେବୀ ଆସକତି ।

ଅତି ଅସାଧ୍ୟମ ସେହି ମଦନ ଆରତେ
ତେଣୁ ବିନୟେ କହଇ ଦେବ ଆସି ତେ
ଗୋବିନ୍ଦ ବୋଇଲେ ସତ କହିଲୁ ଏକ
ଆମ୍ଭେ ଜାଣୁ ଅର୍ଘ୍ୟଦେଇ ଲେଉଟିବା
ଲେଉଟି ଆସିବାବେଳେ ଗୃହେଁ ପୁଣି
ତୁମ୍ଭେ ଯେ ତାହାକୁ କୋଳକର ଧରିଥ
ସତ୍ୟଭାମା ବୋଇଲେକ କରିବା କେମ
ଗୋବିନ୍ଦ ବୋଇଲେ କର ହୋଇବ
ସୁଭଦ୍ରା ସଙ୍ଗେ କରାଅ ଅର୍ଜୁନର ଭେଟ
ତୁମ୍ଭଙ୍କୁ ଭକତି କଲା ଫିଟୁ ତାର କଷ୍ଟ
ଅର୍ଜୁନ ଦ୍ୱାଦଶ ବର୍ଷ ବନବାସ ସାରି
ଦ୍ୱାରକାପୁର ରଖିଲା ଗୋସିଂହକୁ ମାରି
ପ୍ରଥମେ ଅଇଲା ପୁଣ ସେହି ମୋ ପୁରକୁ
ବାସ ଦେଇ ଭକ୍ତି ଆମ୍ଭେ କରିବା ତାହ
ସୁଭଦ୍ରା ସମ ଦ୍ୱାରକାପୁରେ ନାହିଁ ବର
ନିଷ୍କଳଙ୍କ ସୋମବଂଶୀ ବାସବକୁମର ।
ଧାର୍ମିକ ବିବେକୀ ସେହି କକ୍ଷା ଜଗଜ୍ଜେଠି
ଅସମୟେ କାଳେ ମୋତେ ରଖଇ କଷ୍ଟି
ସୋମବଂଶେ ଉପୁଜଇ ଯେବଣ ସନ୍ତାନ
ସେହି ସେ ରାଜ୍ୟର ସିନା ହେବ ଚରମ
ଜମ୍ବୁଦ୍ୱୀପ ମଧ୍ୟରେ ସେ ସପ୍ତଦ୍ୱୀପାପୃଥ୍ୱୀ
ଏଥିରେ ଠାକୁର ସୋମବଂଶ ନରପତି ।
କନ୍ୟା ଗୋଟିଏ ପାର୍ଥକୁ ଆମ୍ଭେ ଯେବେ
ଯୁଗେ ଯୁଗେ ଆମ୍ଭ ଯଶ କୀର୍ତ୍ତି ରୁହାଇବା
ସତ୍ୟଭାମା ବୋଇଲେ ଏ କଥା ଦୃଢ଼ କ
ବଡ଼ ଠାକୁରଙ୍କୁ କହି କର ବିଭାଘର ।
ଆବର ଚତୁର୍ଥ୍ୟମତି କପାଇଁ କରିବା
ଶୁଭ ଲଗନ ଧରାଇ ବିଭା କରାଇବା ।
ଗୋବିନ୍ଦ ବୋଇଲେ ଭାଙ୍ଗି ଦେବେ କାମ
ପାଣ୍ଡବଙ୍କର ବିପକ୍ଷ ସଦା ହଳଧର ।
ସତ୍ୟଭାମା ବୋଇଲେକ ଉହିବକ କାହିଁ
ଦେଖିବା ଥରେ ଜଣାଅ କିବା ଦେବଙ୍କୁ
ନାରାୟଣ ବୋଇଲେ ଗୋ ଶୁଣ ସତ୍ୟା
ଯଶୋଦାଙ୍କ ପୁରେ ତୁମ୍ଭେ ଯାଅ ଆଜ
ଏ କଥାମାନ କହିବ ସବୁ ଯଶୋଦାଙ୍କୁ
ସେ ଯାଇ କହନ୍ତୁ ବଳଦେବ ଠାକୁରଙ୍କୁ

ଏମନ୍ତ କହି ଗୋବିନ୍ଦ ପୁଣି ଯେ କହିଲେ
ଗୁପ୍ତେ ଭେଟ କରାଇବା ଗମ ନାହିଁ କଲେ ।
..ତେକ ବୋଲ ତାହାଙ୍କୁ ଦେବ ଶିରିପତି
ଅର୍ଜୁନ ଘେନି ରୁକ୍ମଣୀ ପୁରକୁ ଗମନ୍ତି ।
ସ୍ନାନ ଦେବାର୍ଚ୍ଚନ କର୍ମ ଆହ୍ନିକ ସାରି
..ଣୋହିରେ ବିଜେକଲେ ଦେବ ଚକ୍ରଧାରୀ
ସୁବର୍ଣ୍ଣର ପଲଙ୍କେ ଯେ ଅଷ୍ଟରତ୍ନ ଜଡ଼ି
..ନ ସମ୍ଭାଳିଲେ ଶୁଦ୍ଧ ଶୁକ୍ଳବସ୍ତ୍ର ପାରି ।
ସୁବର୍ଣ୍ଣରୁଖା ସହସ୍ରେ ଦୀପ ବଳି ଜାଳି
..ନେତର ବଳିତା ଗୁଆଘୃତ ତହିଁ ମେଳି ।
..ରିତ କରି ପବିତ୍ର ଶୁଦ୍ଧଜଳେ ପାଦ
..ଣୋହି କୋଠାକୁ ବିଜେ ଅର୍ଜୁନ ଗୋବିନ୍ଦ
ବସିଣ ଦୁହେଁ ପବିତ୍ର ବିଚିତ୍ର ଆସନେ
..ର ସିଅନ୍ତି ଆସନ ସ୍ଥାନ ସମାର୍ଜ୍ଜନେ ।
..ମର ଢାଳନ୍ତି ଜମ୍ବୁବତୀ ସନ୍ନିଧାନେ
..ତ୍ୟ ଚାମର ଢାଳନ୍ତି ସ୍ୱାମୀ ବିଦ୍ୟମାନେ ।
..ଷ୍ଣନନ୍ଦନୀ ଆଦିକରି ଅଷ୍ଟ ପାଟବଂଶୀ
ସୁବର୍ଣ୍ଣ ଥାଳରେ ଆଣି ଅନ୍ନ ପରଷନ୍ତି ।
ଘୃତ ଆଣି ପରଷନ୍ତି ଦେବୀ କମଳାସୀ
ଭୂମିରେ ପିତୃଲୋକଙ୍କୁ ଦେଇ ଅନ୍ନପାଣି ।
..ାହ୍ୟବଳି ଦେଇ ଚଳୁ ଘେନିଲେ ଶ୍ରୀକରେ
ଗୁରୁଦେବତାଙ୍କ ମନ୍ତ୍ର ସୁମରି ମନରେ ।
..ଶ୍ୱେଶର ଦେବ ନାମ ଧରି ଚକ୍ରପାଣି
ଶ୍ରୀହସ୍ତୁ ଚଳୁ ଛାଡ଼ିଲେ ତଳେ ତତକ୍ଷଣି ।
ଲକ୍ଷ୍ମୀ ବୋଇଲେ ଛାଡ଼ିଲ କିପାଁ ତୁମ୍ଭେ ଚଳୁ
ଗୋବିନ୍ଦ ବୋଇଲେ ହେଳା ମଣେ ହରେହେଳୁ
ଅର୍ଜୁନ ଅଇଲରୁ ମୋ ମନ ହେଲା ଶାନ୍ତ
..ାକୁରେ ନ ଦେଖି ମୁହିଁ ବିଜେକଲି ଏଥି ।
..'ରୁ ତୁ ମଣୋହି କରୁଥାଅ ସବ୍ୟସାଚି
..ଶୁନାଥ ଠାକୁରଙ୍କୁ ଦେଖି ମୁଁ ଯେ ଉଚ୍ଛି ।
ଲକ୍ଷ୍ମୀ ବୋଇଲେକ ତୁମ୍ଭେ ପୁରୁଷଉତ୍ତମ
..ୈଲୋକ୍ୟଠାକୁର ତୁମ୍ଭେ ତୈଲୋକରେଧାମ
..ମ୍ଭ ଉପରେ ଠାକୁର କରୁଛ କାହାକୁ
.. ଆଶ୍ଚର୍ଯ୍ୟ ମଣୁଅଛୁ ତୁମ୍ଭର କଥାକୁ ।
ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ସେ ଜଗତଭୂତ
..ହସ୍ରେକ ବ୍ରହ୍ମା ହେଲେ ଲୋମକେ ଗୁପତ ।

ଅଣାକାର ପୁରୁଷ ସେ ଅପାପବିଦ୍ଧ ଯୋଗୀ
ସର୍ବଦା ଆନନ୍ଦ ସୁଖଭୋଗୀ ପରିତ୍ୟାଗୀ ।
ଲକ୍ଷ୍ମୀ ବୋଲେ ଅଛନ୍ତିକି ତାଙ୍କର ଘରଣୀ
ମୋର ଉପରେ ସେ ହେବେହେବେଠାକୁରାଣୀ
ଗୋବିନ୍ଦ ବୋଇଲେ ଏହା ଅଟଇ ନିଶ୍ଚିତ
ପାର୍ବତୀ ଦର୍ଶନେ ତୁମ୍ଭେ ହୋଇବ ମୂକତ ।
ତାଙ୍କୁ ପ୍ରଶଂସି କହିଲେ ଯହୁଁ ଚକ୍ରପାଣି
ମନେ କୋପ ବହିଲେ ସେ ଦେବୀ କମଳାସୀ
ଲକ୍ଷ୍ମୀ ବୋଇଲେ ସର୍ବଦା ବିଅଇ ମୁଁ ଅନ୍ନ
ମୁହିଁ ସଂସାରଜନଙ୍କୁ କରଇ ପାଳନ ।
ମୋହର ଦେଲେ ସକଳ ଜନ ପାଏ ପୂଜା
ଦେବଙ୍କ ଉପରେ ତୁମ୍ଭେ ଅଟ ଦେବରାଜା ।
ମୁହିଁ ଯେ କୋପ କଲଇଁ ଇନ୍ଦ୍ର ଦେବତାଙ୍କୁ
ରଖି ନ ପାରିଲେ ପୁଣି କେହି ତ ତାହାଙ୍କୁ
ଯେବଣ ଜନଙ୍କୁ ମୁହିଁ ଗୃହେଁ ସୁନୟନେ
ଧନ ସନ୍ତାନ ତାହାର ବଢ଼େ ଦିନେ ଦିନେ
ଯାହାକୁହିଁ କୋପ ମୁହିଁ କରଇ କାଳିତେ
ଅଗଣିତ ଅପଣ୍ଡିତ ହୁଏ ସେ ଜଗତେ ।
ପାର୍ବତୀ ବୋଲି କେବଣ ମହାମ୍ନାଣୀ ପୁଣି
ତାଙ୍କୁ ଦର୍ଶନ କରାଇ ଲୋଡ଼ୁ ପୁଣି ସ୍ୱାମୀ ।
କୃଷ୍ଣ ବୋଇଲେ କହିଲେ କରିବୁ ତୁ କୋପ
ତୋହର ଦେଖିଲା ନାହିଁ ଠାକୁରାଣୀ ରୂପ ।
ସତୀ ସାବିତ୍ରୀ ପାର୍ବତୀ ତାରା ଯେ ରୋହିଣୀ
ସ୍ୱାହା ସ୍ୱଧା ଭଗବତୀ ଏ ଆଠ ଭଉଣୀ ।
ଅଟନ୍ତି ଏ ଅଷ୍ଟକନ୍ୟା ଜାଣି ମହାସତୀ
ଶଚୀ ତାରା ମନ୍ଦୋଦରୀ ଅହଲ୍ୟା ପାର୍ବତୀ ।
ସତୀଙ୍କୁ ମହାସତୀ ଏ ଲକ୍ଷେଗୁଣେ ଶ୍ରେଷ୍ଠ
ତେଣୁ ଲକ୍ଷ୍ମୀ ତୋର ନମସ୍କାର ପାଦ ଆଠ ।
ତାହାଙ୍କର ମହିମା ଗୋ ଅଟି ଅଗୋଚର
ଯାହାଙ୍କ କୋପକୁ ଭୟ କରେ ସୁରେଶ୍ୱର ।
ହରି ବ୍ରହ୍ମା ଆଦି ଦେବେ ତାଙ୍କ ପାଦ ବନ୍ଦି
ସକଳ ଭୁବନେ ମହାସତୀଙ୍କୁ ଆରାଧି ।
କୋଟି କଳପ ଆୟୁଷ ଘେନି ଅଷ୍ଟଦେବୀ
ଭର୍ତ୍ତା ନାଶଯାନ୍ତି ଏହୁ ଅଟନ୍ତି ନିର୍ଜୀବୀ ।
ତାଙ୍କ ସ୍ୱାମୀ ପ୍ରାଣତ୍ୟାଗ କରନ୍ତି ଯେ ବେଳେ
ମୃତପିଣ୍ଡ ଘେନି ବସିଥାନ୍ତି ବୃକ୍ଷ ତଳେ ।

ଆପଣା ଆୟୁଷ ଯେବେ ସ୍ୱାମୀଙ୍କ ଜାଆଇ
ପତି ନାଶଯାନ୍ତି କଳ୍ପୀ ଅଛନ୍ତି ତ ସେହି ।
ସତୀଙ୍କ ପରେ ଅଛନ୍ତି ଏହୁ ମହାସତୀ
ପ୍ରଳୟ ହୋଇଲେ ଏକ ଦିବସ ମଣନ୍ତି ।
ଏମାନଙ୍କ ଉପରେ ଯେ ଉମା ଠାକୁରାଣୀ
ଶୁଣ ଲକ୍ଷ୍ମୀ କହନ୍ତି ଯେ ଦେବ ଚକ୍ରପାଣି ।
ସ୍ୱାମୀ ସେମାନେ ଅଛନ୍ତି ଯେତେ ମହାସତୀ
ମୋତେ କାହିଁକି ନ ଦେଖାଦେବ ଶିରୀପତି
ଗୋବିନ୍ଦ ବୋଇଲେ ତୁମ୍ଭେ କରିବନା କୋପ
ମହାସତୀରୁ ବାହାର ତୁମ୍ଭର ଯେ ରୂପ ।
ପୁଣି ହସିଣ ବୋଇଲେ ଦେବ ଚକ୍ରପାଣି
ଲକ୍ଷ୍ମୀ ତୋତେ ବୋଲନ୍ତି ଯେ ବାଇଠାକୁରାଣୀ
ବାଇହୋଇ ଠାକୁରାଣୀ କାହିଁ ଦେବ ଅଛୁ
ସଂସାରଲୋକେ ବୋଲନ୍ତି ମୋତେ ସିନାବାଛୁ
ନ ଖାଏ ନ ପିଏ ଯେହୁ ତାହାକୁ ତୁ ଦେଉ
ସଜ୍ଜନଲୋକଙ୍କର ତୁ ପାଶକୁ ନ ଯାଉ ।
ନୀଚ ଲୋକଠାରେ ତୁହି ହେଉ ବଡ ତୋଷ
ସୁଲକ୍ଷଣ ଜନଠାରେ ପୁଣି ବହୁ ଦ୍ୱେଷ ।
ଲକ୍ଷ୍ମୀ ଗୋ ଚଞ୍ଚଳାବୋଲି ବୋଲନ୍ତି ଟିତୋତେ
ବେଶ୍ୟାଙ୍କୁ ଚଞ୍ଚଳା ପୁଣି ବୋଲନ୍ତି ଯୁକତେ
ଚଞ୍ଚଳା ପ୍ରକୃତି ଜାଣ କାହାର ନୁହନ୍ତି
ଦିନକୁ ଦିନ ସେ ପରପୁରୁଷରେ ମାତି ।
ଯହିଁ ଥାଇ ତହିଁ ତୁହି ନୋହୁ ଯେ ନିଶ୍ଚଳ
ପ୍ରାଣୀକୁ ଦୟା ନ କରୁ ତୁହି ଚିରକାଳ ।
ନିଶ୍ଚଳ ହୋଇ କାହିଁରେ ଯେଣୁ ତୁ ନ ରହୁ
ତେଣୁ ତୁ ଲକ୍ଷ୍ମୀ ଚଞ୍ଚଳା ନାମଗୋଟି ବହୁ ।
ତୁ ମହାଲକ୍ଷ୍ମୀ ଜଗତଜନଠାକୁରାଣୀ
ଜଗତଜନେ ବୋଲନ୍ତି ବାଇ ଠାକୁରାଣୀ ।
ଯେଣିକି ଚାହୁଁ ଗୋ ସେହି ହୁଏ ସୁଖଭୋଗୀ
ଯାହାକୁ ନ ଚାହୁଁ ସେହି ହୁଏ ଦୁଃଖଭୋଗୀ
ଜଣକୁ ଭାଙ୍ଗି ଆରେକ ଦିନ ହେଉ ଥାପି
ତେଣୁ ମହାଲକ୍ଷ୍ମୀ ତୁହି ଅଟୁ ବଡ଼ପାପୀ ।
ପାର୍ବତୀ ଠାକୁରାଣୀଙ୍କୁ ତୁ ଦର୍ଶନ କଲେ
ଏ ପାପ ଖଣ୍ଡିବ ତୋର ଗୋବିନ୍ଦ ବୋଇଲେ
ଲକ୍ଷ୍ମୀ ବୋଇଲେ ହେ ଦେବ ଯିବ ଚାଲ ମୁହିଁ
ଖଣ୍ଡିବ ପାତକ ପାର୍ବତୀର ମୁଖ ଚାହିଁ ।

ମଣୋହି କର ବୋଇଲେ କୃଷ୍ଣ ଅର୍ଜୁନକୁ
ଆମ୍ଭେ ଯାଉଅଛୁ ଏବେ କୈଳାସ ପୁରକୁ
ଲକ୍ଷ୍ମୀଙ୍କୁ ବୋଇଲେ ବେନି ଦେବ ନରହ
ଗରୁଡ ପିଠିରେ ଲକ୍ଷ୍ମୀ ନାରାୟଣ ଚଢ଼ି ।
ଆକାଶମାର୍ଗେ ଗମଇ ଦିନରାତ୍ର ସୁତ
ପବନୁ ବେଗ ଗଗନେ ଚଳିଗଲା ସେ ତ
ମହାଲକ୍ଷ୍ମୀ ନାରାୟଣ ଆସିବାର ଜାଣି
ବୃଷଭ ପିଠିରେ ବିଜେକଲେ ଶୂଳପାଣି ।
ପାର୍ବତୀଙ୍କୁ କୋଳେ ଘେନି ଗଙ୍ଗା କୂଳେବ
ବୃଷଭ ପୃଷ୍ଠୁଁ ଓହ୍ଲାଇ ଉମା ଦେବରାଜେ ।
କଞ୍ଚିତ ଅନ୍ତର ହୋଇ ବସିଲେ ପାର୍ବତୀ
ବସିଲେ ଅନ୍ତର ହୋଇ ଦେବ ପଶୁପତି
ଯେତେ ଦୂର ସ୍ୱାମୀଙ୍କର ବସିଲା ଆସନ
ଗରୁଡ଼ ପୃଷ୍ଠୁ ଓହ୍ଲାଇ ଦେବ ଜନାର୍ଦ୍ଦନ ।
ଲକ୍ଷ୍ମୀ ବୋଇଲେ କପାଇଁ ଓହ୍ଲାଇଲ ସ୍ୱାମି
ସେ ଯୋଗୀ ଗୋଟାକୁ ନାଥ ଯାଉ କି ପ୍ର
ଦେଖିଲେ ଅଯାତ୍ରା ପୁଣି ଛୁଇଁଲେକ ତ୍ୟା
ବ୍ରାହ୍ମଣ ଚଣ୍ଡାଳ ଘରେ ଖାଏ ଅନ୍ନ ମାଗି
ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ଜଞ୍ଜାଳ ନ
ଠାକୁରଙ୍କୁ ନିନ୍ଦିଲେ ତ କେବେ ନାହିଁ ପା
କୋପେ ସେ ଚାହିଁଲେ ନାଶଗଲା ମନସିଜ
କୋପେ ଚାହିଁଲେ ହୋଇବା ଆମ୍ଭେ ତ ଦ
କରନ୍ତି ଶ୍ରୀ ଜଗନ୍ନାଥ ପାସେ ନଉସ୍ଥଳ
ବାଞ୍ଛା ସିଦ୍ଧହେଉ ବାବୁ ବୋଇଲେ ନିଶ୍ଚ
ଲକ୍ଷ୍ମୀ ବୋଇଲେ ଯୋଗୀର ଭାର୍ଯ୍ୟାଯୋଗ
ଏହା ଗୁରେ ଓଳଗି ମୁଁ କେହ୍ନେ ହେବ ଦ
ଯୋଗୀ ତପସ୍ୱୀ ଭିକ୍ଷାଶୀରାଉଳ ଏ ହର
ଜଉଡ଼ ବାଉଡ଼ ପୁଣି ହାଉଡ଼ ମୋ ବର ।
ଏହାଙ୍କରେ ଏହାଙ୍କର ହେବ ବନ୍ଧୁପଣ
ମୁଁ କପାଁ ବନ୍ଦିବି ଯୋଗିଆଣୀର ଚରଣ ।
ଏହା ରେ ମୁଁ ସତୀପଣ ଜାଣିବ କେମନ୍ତେ
ସମସ୍ୟାବଚନେ ଜଣିପାରେ ଯେବେ ମେ
ଲକ୍ଷ୍ମୀ ବିଜେକଲେ ଯାଇ ପାର୍ବତୀର କଟ
ସନ୍ନିଧେ ବସିଲେ ଦେବୀ ନ କର ପୀରତି
ଲକ୍ଷ୍ମୀ ବୋଇଲେ ଗୋ ଦେବୀ ଶୁଣ ଏକ
ଭିକ୍ଷାଶୀ ଗୋଟା ଯିବାର ଦେଖିଲ କ ପ

ପାର୍ବତୀ ଭାଳି ଲକ୍ଷ୍ମୀଙ୍କ ବଚନକୁ ଶୁଣି
କଳିର ନିମନ୍ତେ ହରି ଏହାକୁ ଯେ ଆଣି ।
ମୋହର ସ୍ୱାମୀ ଯେ ଭିକ୍ଷା ମାଗି ବୁଲେ ବୋଲି
ଏ ମୂଢ଼ୀ ଜାଣି ପଚାରେ ମୁଁ ଜାଣି ପାରିଲି ।
ପାର୍ବତୀ ବୋଇଲେ ଯେବେ ଭିକ୍ଷାଣୀରେ କାର୍ଯ୍ୟ
ବଳିଦୁଆରେ ଅଛଇ ବାମନ ଯେ ଦ୍ୱିଜ ।
ଭିକ୍ଷାଣୀ ଜାଣନ୍ତି ସିନା ଭିକ୍ଷାଣୀର କଥା
ବଳିକୁ ଯେ ଦାନ ମାଗୁଅଛି ଟେକିମଥା ।
ଲକ୍ଷ୍ମୀ ବୋଇଲେ ଏହାର ସ୍ୱାମୀ ସିନା ଯୋଗୀ
ମୋର ସ୍ୱାମୀ ଗଲେ ବଳିଦ୍ୱାରେ ଦାନ ମାଗି
ଦାନ ଭିକ୍ଷା ଦୁଇ ଏକ ଅଟଇ ଯୁକତେ
ଲଜପାଇ ଲକ୍ଷ୍ମୀଦେବୀ ବସିଲେ କାଖିତେ ।
ଲକ୍ଷ୍ମୀ ବୋଇଲେ ଗୋ ଆଜି ଗଲି କି ଏ ବାଟେ
ତାଣ୍ଡବ ନୃତ୍ୟ କରିଣ ଦେଖିଲି କି ନଟେ ।
ପାର୍ବତୀ ଦେବୀ ବୋଇଲେ ଏ ମନ୍ଦ ଚଞ୍ଚଳୀ
ନିଷ୍ଟସ୍ୱ ଆମ୍ଭର ସଙ୍ଗେ ଲଗାଇବ କଳି ।
ଦେବୀ ମନ ରଞ୍ଜିବାକୁ ହରି ନୃତ୍ୟକଲ
ଏହି ମୂଢ଼ୀ ଆସି ମୋତେ ତାହା ଉଘାଇଲା ।
ପାର୍ବତୀ ବୋଇଲେ ଶୁଣ ଆଗୋ ବଇଦେହି
ନଟ ପୁରୁଷକୁ ଖୋଜ ବୃନ୍ଦାବନେ ଯାଇ ।
ତାଳୁରେ ଚୂଳ ହସ୍ତରେ ଧରନ୍ତି ବଇଁଶୀ
କଦମ୍ବମୂଳେ ଗୋପୀଙ୍କୁ ନ ଛାଡ଼ନ୍ତି ବସି ।
ତାହାଙ୍କୁ ପଚାରି ନୃତ୍ୟ କରିବାର କଥା
ନଟେ ସିନା ଜାଣନ୍ତି ଯେ ନଟଙ୍କ ବାରତା ।
ଲକ୍ଷ୍ମୀ ବୋଇଲେ ହାରିଲି ଏହାକୁ ଯୁକତେ
ମୋର ସ୍ୱାମୀ ନୃତ୍ୟ କଲେ ଗୋପୀଙ୍କ ନିମନ୍ତେ
ଉତ୍ତର ଦେଲେକ ସିନ୍ଧୁରାଜାର କୁମାରୀ
ଯୋଗୀ ଗୋଟିଏ କି ଯାଏ ମୃଗଛାଲ ଧରି ।
ପାର୍ବତୀ ଦେବୀ ବୋଇଲେ ଲକ୍ଷ୍ମୀର ବଚନେ
ଅଳପକ ଲୋକ ସିନା କହନ୍ତି ଏସନେ ।
ମୋର ସ୍ୱାମୀ ମୃଗଛାଲ ଆଭରଣ କରି
ଏହା ମୋତେ ଉଘାଇଲା ଏ କାଣୀ ଦୁବାରୀ
ପାର୍ବତୀ ବୋଇଲେ ଶୁଣ ଆଗୋ ମହାଲକ୍ଷ୍ମୀ
ନଇମିଷ ବନେ ଖୋଜ ତପ କରୁଅଛି ।
ମୃଗଛାଲ ପିନ୍ଧି ପୁଣି ବସି ମୃଗଛାଲେ
ନରନାରାୟଣ ରୂପ ଦେଖ ଯାଇ ଭଲେ ।

ଯାହାର ସ୍ୱାମୀ ବରାହ ରୂପ ଅଛି ଧରି
ତାହାକୁ ପଚାରି କେଣେ ଗଲେ ମୃଗ ମରି ।
ଲକ୍ଷ୍ମୀ ବୋଇଲେ ଏଥିରେ ନୋହିଲା ତ ଯଶ
ଏ କଥାରେ ମୁଁ ଏହାକୁ ହାରିଲି ଅବଶ୍ୟ ।
ଏହା ସ୍ୱାମୀ ମୃଗଚର୍ମ ଆଭରଣ କାରୀ
ମୋ ସ୍ୱାମୀ ବରାହ ପୁଣି ଋଷିରୂପଧାରୀ ।
ଏତେକ ବିଚାରି ଲକ୍ଷ୍ମୀ ମଉନ ହୋଇଲେ
ପୁଣି ପାର୍ବତୀଙ୍କୁ ପ୍ରତିଉତ୍ତର ସେ ଦେଲେ ।
ଲଙ୍ଗଟି ଭଙ୍ଗଟି ବୃଦ୍ଧ ଯୋଗିଆ ଗୋଟାଏ
ହାଡ଼ମାଳ ବିଭୂଷଣ ବୃଷଭରେ ଯାଏ ।
ତାହାକୁ ଦେଖିଲୁ କି ଏ ବାଟେ ଯାଉଁ ଯାଉଁ
ପାର୍ବତୀ ବୋଇଲେ ମୂଢ଼ା ଶିଖିଲୁକ କାହୁଁ ।
ମୋହର ସ୍ୱାମୀ ଏ ବେଶେ ବଳଦ ଚଢ଼ଇ
ତାହା ମୋତେ ଉଘାଇଣ ଝିଙ୍ଗାସ କରଇ ।
ଶୁଣ ଯାହା ପଚାରିଲୁ ବୋଇଲେ ପାର୍ବତୀ
ଗୋରୁଙ୍କର ବାରତା ଯେ ଗଉଡ଼େ ଜାଣନ୍ତି ।
ନନ୍ଦଗଉଡ଼ ପୁଅକୁ ପଚାରେ ଏ କଥା
ସେ କହି ପାରଇ ଗୋରୁ ବଳଦ ବାରତା ।
ମହାଲକ୍ଷ୍ମୀ ତୁନି ହେଲେ ପାର୍ବତୀ ବଚନେ
ଏ କଥାରେ ଯଶ ମୋତେ ନୋହିଲା ଏ ସ୍ଥାନେ
ଏହାର ସ୍ୱାମୀ ବଳଦ ଯାଏ ସିନା ଚଢ଼ି
ମୋହର ସ୍ୱାମୀ ଗୋପାଳରୂପେ ଗୋଠେ ବଢ଼ି
ପୁଣି ପଚାରନ୍ତି ତାକୁ ବରୁଣ ଦୁହିତା
ଗଳେ ମୁଣ୍ଡମାଳ ଅଛି ଦେଖିଲ କି ହେତ ।
ପାର୍ବତୀ ବୋଇଲେ ଏହା ଜାଣିଲୁ କେମନ୍ତେ
ହରି ଆଣିଛି ଏହାକୁ କଳିର ନିମନ୍ତେ ।
ପାର୍ବତୀ ବୋଇଲେ ତୋତେ କହିବା ଏକଥା
ହିରଣ୍ୟାକ୍ଷ ପୁରେ ଅଛି ମୁଣ୍ଡର ବହନ୍ତା ।
ନୃସିଂହରୂପେ ହିରଣ୍ୟ ଚିରି ସତ୍ୟଯୁଗେ
ମଡ଼ା ନ ଛାଡ଼ିଣ ସେ ଯେ ବହିଛନ୍ତି ସଙ୍ଗେ ।
ତାହାଙ୍କୁ ପଚାରି ଯାଇ ମଡ଼ାର ବ୍ୟବସ୍ଥା
ସେହି ଯେ କହିବେ ମୃତପିଣ୍ଡର ବାରତା ।
ଲକ୍ଷ୍ମୀ ତୁଷ୍ଟ ହୋଇଲେକ ପାର୍ବତୀ ବଚନେ
ଏ କଥାରେ ଯଶ ମୋତେ ନୋହିଲୁକ ଖଣେ
ଏହାଙ୍କ ସ୍ୱାମୀ ଗଳାରେ ଅଛି ମୃତପିଣ୍ଡ
ବହନ୍ତି ଆବର ମୋର ସ୍ୱାମୀ ସେତୁଖଣ୍ଡ ।

ମୃତପିଣ୍ଡ ମୁଣ୍ଡ ଏହି ଅଟେ ଏକ କଥା
ଏବେ ଯଶ ମୋତେ ପୁଣି ନୋହିଲା ଏ କଥା
ଜାଣି ନ ପାରିଲେ ସିନ୍ଧୁରାଜାର କୁମାରୀ
ପାର୍ବତୀ ପାଦେ ପଡ଼ିଲେ ହୋଇ ଦଣ୍ଡପରି ।
କୋଳ କଲେ ଦକ୍ଷ ପ୍ରଜାପତିର କୁମାରୀ
ମୁଖରେ ଚୁମ୍ବନ ଦେଲେ ଭୁଜେ ଭିଡ଼ିକରି ।
ଈଶ୍ୱର ପଚାରିଲେ କେ ଜିଣିଲା ହାରିଲା
ଗୋବିନ୍ଦ ବୋଇଲେ କଳ ସମାନ ହୋଇଲା
ଏକହିଁ ଯେବେ ଜିଣନ୍ତା ଏକହିଁ ହାରନ୍ତା
ତୁମ୍ଭର ଆମ୍ଭର ବଡ଼ ଅପ୍ରୀତି ହୁଅନ୍ତା ।
ତାଙ୍କ ହରଷରେ ହରି ହରଙ୍କ ହରଷ
ବୃଷଭ ଗରୁଡ଼ ଦୁହେଁ ଲଭିଲେ ସନ୍ତୋଷ ।
ଦେବଦେବୀ ବାହନ ଏ ହରଷ ହୁଅନ୍ତି
ସଂସାର ଜନମାନଙ୍କୁ ହରଷ କରନ୍ତି ।
ଏ ଦେବ ଦେବୀମାନଙ୍କୁ ଭାବ ହୃଦଗତେ
ଦରିଦ୍ର ବାଧା ତୁଟେ ଏ ଆଖ୍ୟାନ ଶୁଣନ୍ତେ ।
ଏ ମୋହର ଜ୍ଞାନେ କି ମୁଁ ପାରେ ତଥ୍ୟକରି
କେ ଏହା କହିବ ପୁଣ ନରଦେହ ଧରି ।
ଯାହା ସେ କହିଅଛନ୍ତି ମୁନି ଯେ ଅଗସ୍ତି
ମୁଁ ତା ବଖାଇ କହିଲି ଶାସ୍ତ୍ରର ସଙ୍ଗତି ।
ଜୟ ଜୟ ହରି ହର ବ୍ରହ୍ମା ଅବତାର
ନୀଳକମଳ ସ୍ୱରୂପ ଧବଳ ଶରୀର ।
ଖଗବର ବାହନ ଯେ ତ୍ରିଶୂଳଧର
ପିନାକୀ ସାରଙ୍ଗ ପୁଣି ଶଙ୍ଖ ଚକ୍ରଧର ।
କୈଳାସ ବୈକୁଣ୍ଠ ଶମଶାନ ବନବାସୀ
ଜୟ ଜୟ ହରିହର ଯୋଗ ବ୍ରହ୍ମରାଶି ।
ଅଷ୍ଟରତନ ଭୂଷଣ ଅଷ୍ଟକୁଳା ନାଗ
ଗନ୍ଧ ଭସ୍ମ ବିଲେପନ ଚରଣ ଯେ ଭାଗ ।
ଯୋଗେ ଜଗନ୍ନାଥ ତୁମ୍ଭ କଷାର୍ଦ୍ଧୀନ ଦାସ
ଶୋଷକ ନାଶକ ଦେବ ପରମପୁରୁଷ ।
ଏକକାୟେ ନାଥ ତୁ ଯେ ନାଗ ଅବତାର
ଅଲେଖପୁରୁଷ ନାଶ ନାଶ ମହାଭାର ।
ଜାତଅନ୍ତ କରତା ତୁ ହରନ୍ତା ଧରନ୍ତା
ଜୟ ଜୟ ହରିହର ବହନ୍ତା ରଖନ୍ତା ।
ଶ୍ରୀହରି ହରଙ୍କ ପାଦେ ଶରଣ ମୁଁ ନିତ୍ୟ
ଶୂଦ୍ରମୁନି ବିନୟ ଯେ ହୁଅଇ ଭକତେ ।

ଶ୍ରୀଚଣ୍ଡୀ ଶାରଳା ମାଗୋ ଝଙ୍କଡ଼ର ବାସୀ
ତାହାଙ୍କ ଆଶ୍ରିତ କୃପାଜଳ ମହାଋଷି ।
ସେ ଦେବୀ ଲୟେ ଶାରଳା ଦାସ ମୁହିଁ କବି
ତାହାର ଚରଣ ନିତ୍ୟ ହୃଦଗତେ ଭାବି ।
ପରଦୁଃଖେ କାତର ଯେ ସିଦ୍ଧ ସେ ସାଧ୍ୱୀ
ତାର ଅନୁଗ୍ରହେ ମହାଭାରତ ମୁଁ ଭାବି ।
ତାହାଙ୍କ ପ୍ରସନ୍ନେ ଲେଖି କଲି ଗୀତ ଗ୍ରନ୍ଥ
ଶୁଣନ୍ତେ ଧନ ସନ୍ତାନ ହୁଅଇ ପ୍ରାପତ ।
ଶ୍ରୀଚଣ୍ଡୀ ଶାରଳା ଲୟେ ମମ ହୃଦଗତ
ଶୂଦ୍ରମୁନିଙ୍କୁ ମୁକତ କର ଜଗନ୍ନାଥ ।
ବଦନ୍ତି ଅଗସ୍ତି ଶୁଣ ମନୁ ନରରାୟେ ।
ଏ ମହାଭାରତ ଶୁଣି ପାପ ଯାଉ କ୍ଷୟେ ।
ଅନେକ ଭକତି ତାକୁ କଲେ କମଳାମ୍ବୀ
ବହୁତ କଲ୍ୟାଣ ବାଞ୍ଛା କଲେ କାତ୍ୟାୟିନୀ ।
ଲକ୍ଷ୍ମୀଙ୍କି ଘେନି ଗରୁଡ଼ ପୃଷ୍ଠେ ବିଜେକରି
ଚଳିଲେ ଜଗମୋହନ ଦ୍ୱାରିବତୀପୁରୀ ।
ହରି ପାର୍ବତୀ ଏ ଦୁହେଁ ବୃଷଭ ଆରୋହି
କଇଳାସ କନ୍ଦରରେ ବିଜେକଲେ ଯାଇଁ ।
ଶ୍ରୀହରି କମଳା ବିଜେ ଦ୍ୱାରକା ଭୁବନେ
ସନ୍ଧ୍ୟା ସାରଣ ଭୋଜନ କଲେ ଜନାର୍ଦ୍ଦନେ ।
ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
କିସ ଆଜ୍ଞା ଦେଲେ ହରି ଭଦ୍ରା ଦୁଃଖଦେଖି ।
ଅଗସ୍ତି ବୋଇଲେ ତହୁଁ ହେ ମହାରାଜନ
ଯହା ପଚାରିଲୁ ଶୁଣ ହୋଇ ସାବଧାନ ।
ଗୋବିନ୍ଦ ଯେ ଆଜ୍ଞାଦେଲେ ସେ ସତ୍ୟଭାମାଙ୍କୁ
ତୁମ୍ଭେ ଚଳଯ ଅ ବେଗେ ଯଶୋଦାପୁରକୁ ।
ଆଜ୍ଞାପାଇ ଚଳିଗଲେ ହରି ପାଟବଂଶୀ
ଯଶୋଦାପୁରେ ପ୍ରବେଶ ହେଲେ ଯାଇଁ ନିଶି ।
ପ୍ରଣାମ କରି ବୋଇଲେ ଏମନ୍ତ ବଚନ
କଥାଏ କହିବି ମାତ ହୁଅ ସାବଧାନ ।
ସୁଭଦ୍ରାକୁ ପ୍ରଦାନ କି କରିବୁ ପ୍ରାର୍ଥକୁ
ବାସୁଦେବ ବୁଝି ସିନା କହିଲେ ତାହାକୁ ।
ଯଶୋଦା ଦେବକୀ ଦୁହେଁ ବୋଇଲେ ଏମନ୍ତ
ଆମ୍ଭ ଝିଅରକୁ ଏହା ଯୋଗାଇଲା ମାନ ।
ଅନ୍ତର୍ଯ୍ୟାମୀ ପୁରୁଷ ସେ ହରତା କରତା
ଅଟନ୍ତି ସକଳ ଜୀବଜନ୍ତୁ ପିତାମାତା ।

ଯାହାଙ୍କୁ ଯହା କହିବେ ସେହି ଅବଧାରିଲେ
କେ ତାହା ଅନ୍ୟଥା କରି ପାରିବ ବା ବଳେ
କ୍ଷତ୍ରିୟ ସେ ନସ୍କଳଙ୍କ ବଂଶେ ଜଗଜ୍ଜିତ
ଦ୍ୱାରକାରି ସେନାପତି ବିଷ୍ଣୁର ଭକତ ।
ସୁଭଦ୍ରା କର୍ମେ ଯଦ୍ୟପି ଥିବ ଶୁଭକର୍ମ
ତେବେ ସେ ଦକ୍ଷିବ ସିନା ସବୁରି ଯେ ଧର୍ମ ।
ଧାର୍ମିକ ବିବେକୀ ସେହି ଅତି ପୁଣ୍ୟଜନ
ଅତି ପୁଣ୍ୟରେ ପ୍ରାପତ ହୁଏ କଥାମ ନ ।
ସୁଭଦ୍ରାର ପୂର୍ବେ ଯେବେ ଥିବ ପୁଣ୍ୟ ଅତି
ତେବେ ସେ ହୋଇବ ସିନା ଅର୍ଜ୍ଜୁନ ଯୁବତୀ ।
ସତ୍ୟଭାମାକୁ ବୁଝାଇ ଗଲେ ଯଶୋମତୀ
ବଳରାମଙ୍କର ପୁରେ ପ୍ରବେଶ ହୁଅନ୍ତି ।
ଦେଖି ଧାତିକାରେ ଉଠି ଦେବ ହଳୀ
ମାତାଙ୍କ ପାଦେ ଓଳଗି ବୋଲନ୍ତି ମୁଷଳୀ ।
କେବଣ କାରଣେ ବିଜେ କଲ ଆଗୋ ମାଏ
କେବଣ ବିଧାନ ଅବା କେଉଁ କଥା ହୁଏ ।
ସାବଧାନେ ଶୁଣ ବାବୁ କହେ ମୁଁ ତୁମ୍ଭଙ୍କୁ
ସୁଭଦ୍ରାକୁ ପ୍ରଦାନ କି କରିବା ପାର୍ଥକୁ ।
ମାତାଙ୍କ ମୁଖରୁ ଶୁଣି ଏସନ ବଚନ
ଭୁଇଁକୁଇଁ କାମପାଳ ଛୁଇଁଲେ ଶ୍ରବଣ ।
ଅର୍ଜ୍ଜୁନଙ୍କୁ ଦେଖିଲ କି ସୁନ୍ଦର ମୂରତି
ମାତାର ନାମ ତାହାର ଅଟଇ ଯେ କୁନ୍ତୀ ।
ପିତାର ନାମ ତାହାର ପଣ୍ଡୁ ଯେ ରାଜନ
ବ୍ରହ୍ମହତ୍ୟା ଶାପ କଲା ନାଶି ତପୋଧନ ।
କୁନ୍ତୀର ଅମାତ ମୁଖେ କହିତ କେ ପାରି
ପୁତ୍ରଙ୍କୁ ଜନମ କଲା ପରେ ପ୍ରୀତି କରି ।
ବଂଶରେ କଳଙ୍କ ପୁଣି ଅଛଇ ଯାହାର
ତାହାଙ୍କୁ କନ୍ୟା ଦେବାର ନୁହଇ ବେଭାର
ଆମ୍ଭେ ବିଚାର ମନରେ କରିଛୁ ଯାହାଙ୍କୁ
ସୁଭଦ୍ରାକୁ ଦେବା ରାଜା ମାନଗୋବିନ୍ଦଙ୍କୁ ।
ବଂଶେ ନସ୍କଳଙ୍କ ପଞ୍ଚ କଟକର ରାଜା
ସକଳ ନୃପେ କରନ୍ତି ତାର ପାଦପୂଜା ।
ଶଙ୍ଖନିଧି ପଦ୍ମନିଧି ଅଛଇ ତା କରେ
ପାଣିଦ୍ରବ୍ୟ ହୁଏ କର ଲାଗିଲେ ପଥରେ ।
ଗୁଳିଲେ ସୁବର୍ଣ୍ଣ ଅଷ୍ଟପଦ୍ମ ଯେ ଫୁଟିଲ
ଅତିମାନେ ରାଜା ମାନଗୋବିନ୍ଦ ଅଟଇ ।

ପାଣ୍ଡବଙ୍କୁ ରାଜ୍ୟ ଦେଲେ ସେ ବାହାର କରି
କାନନକ ପାଣ୍ଡବେ ତାର ଭୟେ ବନଚାରୀ ।
ଗୋଳକୁଣ୍ଡା ପାଣ୍ଡବେ ଯେ ଅଛନ୍ତି ଅଜାତି
ପାଞ୍ଚଜଣ ବିଭା ହେଲେ ଏକଇ ଯୁବତୀ ।
ମୋହର ଆଗରେ ଯାହା କହିଲ ଗୋ ମାତ
ଏ କଥାଗୋଟି ନ ଜାଣେ ଯେହ୍ନେ ଜଗନ୍ନାଥ ।
ଭଲ ଦିନେ ରାଜା ଦୁର୍ଯ୍ୟୋଧନଙ୍କୁ ମୁଁ ଆଣି
ପ୍ରଦାନ କରିବି ତାଙ୍କୁ ତୁମ୍ଭର ଦୁଲଣୀ ।
ପାଣ୍ଡବେ ଅଟନ୍ତି ଗୋଳକୁଣ୍ଡା ବ୍ରହ୍ମଦ୍ୱେଷୀ
ତାହାଙ୍କୁ କନ୍ୟା ଦେବାର ବିହିତ ନ ଆସି ।
ତୁମ୍ଭ ଆଗେ କହିଲି ଯେ ଏତ୍ତ ସବକଥା
ଜଗନ୍ନାଥ ନ ଜାଣିବ ଏଥିର ବାରତା ।
ବଳରାମ ମୁଖୁଁ ଶୁଣି ଏସନକ ବାଣୀ
ପ୍ରବେଶ ହୋଇଲେ ନିଜପୁରେ ନନ୍ଦରାଣୀ ।
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ
ସତ୍ୟଭାମାଙ୍କର ଆଗେ ଏ କଥା କହିଲେ ।
ଶୁଣି ସତ୍ୟଭାମା ଦେବ କଲେ ଆଗମନ
ଶ୍ରୀହରି ଛାମୁରେ ଆସି ମିଳିଲେ ତକ୍ଷଣ ।
ବୋଇଲେ ଶୁଣିମା ହେଉ ଦେବ ମଧୁହାରି
ଅର୍ଜ୍ଜୁନ ନାମରେ କୋପ କଲେ ହଳଧାରୀ ।
ଅନେକ କହିଲେ ଦୋଷ ବାଛି ପାଣ୍ଡବଙ୍କୁ
ସୁଭଦ୍ରାକୁ ଦେବେ ରାଜା ମାନଗୋବିନ୍ଦଙ୍କୁ ।
ଏସନକ ବିଚାର ଯେ ହୋଇଲାକ ଆଜ
ପୁଣି ମହାକୋପ କଲେ ପ୍ରଭୁ ଦେବରାଜ ।
ଗୋବିନ୍ଦ ବୋଇଲେ ଚାହିଁ ସେ ସତ୍ୟଭାମାଙ୍କୁ
ତୁମ୍ଭେ ସୁଭଦ୍ରାକୁ ନିଅ ଅର୍ଜ୍ଜୁନ ଛାମୁକୁ ।
ଅର୍ଜ୍ଜୁନ ସୁଭଦ୍ରା ଭେଟ କରି ତୁମ୍ଭେ ନେଇ
କେମନ୍ତେ ବିଭା କରିବେ ତାଙ୍କୁ ହଳସଇଁ ।
ଏସନ ବିଚାର କରି ରଜନୀ ପ୍ରଭାତେ
କହିଲେକ ଉଦ୍ଧବଙ୍କୁ ଚାହିଁ ହଳହସ୍ତେ ।
ଅଶ୍ୱ ଏକ ଚଢ଼ି ତୁହି ଚଳ ଏହିକ୍ଷଣେ ।
ବାରତା କହିବୁ ଯାଇ ରାଜା ଦୁର୍ଯ୍ୟୋଧନେ ।
କରଗଜର ଆସିବୁ ତାକୁ ଏହିକ୍ଷଣି
ସୁଭଦ୍ରାକୁ ଦେବା ଆମ୍ଭେ ଆସୁ ସୈନ୍ୟ ଘେନି
ବଳରାମଙ୍କ ବଚନେ ଚଳିଲା ଉଦ୍ଧବ
ବରଣ ଯୋଗାଡ଼ ତାଙ୍କୁ ଦେଲେ ବଳଦେବ ।

ଆଜ୍ଞା ପ୍ରମାଣେ ଉଦ୍ଧବ ଚଳିଁ ଚଳିଗଲା
ହସ୍ତିନାପୁର ମଧ୍ୟରେ ପ୍ରବେଶ ହୋଇଲା ।
ସମଦଣ୍ଡ ସଙ୍ଗେ ଘେନି ପ୍ରଭୁ ହଳପତି
ରଇବତ ପରବତେ ବିଜେ କରନ୍ତି ।
ବସନ୍ତ ଉତ୍ସବ ଏକ ଯାତ୍ରାର ବିଧାନେ
ଯାଦବ ସର୍ବେ ବାହୁଡ଼ିଲେ ପୁଣି ସେ ମଧ୍ୟାହ୍ନେ ।
ଦ୍ୱାରକା ଭୁବନେ ଯାଇ ହୋଇଲେ ପ୍ରବେଶ
ସତ୍ୟଭାମାଙ୍କୁ ବୋଇଲେ ଶ୍ରୀ ପୀତବାସ ।
ସୁଭଦ୍ରାକୁ ତୁମ୍ଭେ ବେଶ ଭୂଷଣ କରାଇ
ଅର୍ଜୁନ ଶୟନସ୍ଥାନେ ସମର୍ପିବ ନେଇ ।
ଚଳିଗଲେକ ସତ୍ୟଭାମା ସ୍ୱାମୀର ବଚନେ
ପ୍ରବେଶ ହେଲେ ସୁଭଦ୍ରା ଦେବୀ ମେଢ଼ସ୍ଥାନେ
ଯୋଗୀ ଯେସନେ ଜାଗଇ ଦିବସ ଶର୍ବରୀ
ଅର୍ଜୁନ ନିମନ୍ତେ ଦେବୀ କ୍ଷୁଧା ତୃଷା ହାରି ।
ବଦନ୍ତି ଗୋ କାତ୍ୟାୟିନୀ ମାତା ଯୋଗେଶ୍ୱରୀ
ତବ ଚରଣେ ଶରଣ ପାର୍ଥ ଆଶ୍ରା କରି ।
ଶତସହସ୍ର ପ୍ରଣାମ ଘେନ ମୋର ସେବା
କୁନ୍ତୀନନ୍ଦନ ଅର୍ଜୁନ ମୋତେ ଆଣିଦେବା ।
ଏସନ ବଚନ ସ୍ତୁତି କରନ୍ତେ ଯୁବତୀ
ଦ୍ୱାରେ ପ୍ରବେଶ ହୋଇଲେ ଯାଇ ସତ୍ୟାସତୀ
ସତ୍ୟଭାମାକୁ ଦେଖିଣ ନନ୍ଦର ନନ୍ଦିନୀ
ମୁକତି ଗତି ଲଭଇ ଅନ୍ଧ ଚକ୍ଷୁ ଜାଣି ।
ସତ୍ୟଭାମାର ଚରଣେ ପ୍ରଣମିଲା ବାଳୀ
ଏ କଷ୍ଟୁ ଉଦ୍ଧର ଶଙ୍ଖାଜିତର ଦୁଲାଳୀ ।
ବିକଳ ଛାଡ଼ି ତୁ ବେଶ ହୁଅ ମହାମାୟା
କଲେଣି ପରମାନନ୍ଦ ସ୍ୱାମୀ ତୋତେ ଦୟା ।
ଉଠ ଉଠ ସୁଭଦ୍ରା ଗୋ ବେଗ ହୋଇ ଯିବା
ଅର୍ଜୁନ ଦର୍ଶନେ କାମକଷ୍ଟ ତୋ ହରିବା ।
ଶୁଣିଣ ସାନନ୍ଦ ସେ ଯେ ନନ୍ଦର କୁମାରୀ
ବିବିଧ ବେଶ ହୋଇଲେ ଅଳଙ୍କାର ଭରି ।
ରାତ୍ର ସାତଘଡ଼ି ମଧ୍ୟେ ଗଲେ ବେନି ବାମା
ଅର୍ଜୁନ ଶୟନ ପୁରେ ମିଳେ ସତ୍ୟଭାମା ।
ଅର୍ଜୁନ ଯେ ଶୋଇଅଛି ବିଚିତ୍ର ମନ୍ଦିରେ
ସତ୍ୟଭାମା ସୁଭଦ୍ରା ଯେ ପ୍ରବେଶିଲେ ଦ୍ୱାରେ
ପେଲନ୍ତି ଯେ ନ ଫିଟଇ କବାଟ କିଳଣି
ପଲ୍ୟଙ୍କେ ବସି ଅର୍ଜୁନ ଶରମାନ ଗଣି ।

ଦୀପାବଳିମାନ ଜଳେ ଘର ଚଉକତି
ନିଦ୍ର ହୋଇ ବାସବୀର ଶୟ୍ୟେ ଲୟମତି ।
ସତ୍ୟଭାମା ଡାକଦେଲେ ଶୁଣ ଫାଲଗୁନି
ଠାକୁରଙ୍କ ଆଜ୍ଞା ମୁହିଁ ଆସିଅଛି ଘେନି ।
କବାଟକୁ ଫେଡ଼ ମୁହିଁ ଭିତରକୁ ଯିବି
ପ୍ରଭୁଙ୍କର ବାରତା ତୋ ଆଗରେ କହିବି ।
କବାଟ ତୁ ଫେଡ଼ି ବାକୁ ଆସ ବହି ମୋଦ
ଏମନ୍ତେ କହିବି ଜଗନ୍ନାଥଙ୍କ ସମ୍ବାଦ ।
ଅର୍ଜୁନ ବୋଇଲେ ତୁମ୍ଭେ ହରିପାଟବଂଶୀ
ଦ୍ୱାରକା ପୁରକୁ ତୁମ୍ଭ ଅଟ ଗୃହହଂସୀ ।
ଯାଦବ ଯେ ଶଙ୍ଖାଜିତ ରାଜାର କୁମାରୀ
ବଂଶୀକପଣରେ ନୁହେଁ ଜଗନ୍ନାଥ ସରି
ପଞ୍ଚଭୂତ ଆତ୍ମା ତୋତେ ଦେଇ ବାସୁଦେବ
ଅନବରତ ତୋଠାରେ ଥାଇ ପ୍ରିୟଭାବ ।
ମାଗୋ ଏତେ ରାତ୍ରେ କିପାଁ ମୋ ପୁରେଆଗମ
କେହ୍ନେ ଉପେକ୍ଷୀ ଅଇଲୁ ଶ୍ରୀପୁରୁଷୋତ୍ତମ ।
ସେହି ମାୟାଧର ଅବା ମୋତେ ମାୟା କଲା
ଛତ୍ର ବଡ଼ବାପାଇଁ ମୋ ପୁରକୁ ପେଷିଲା ।
ନାରାୟଣ ମାୟା ତୁ ଗୋ ନ ଜାଣିଲୁ ପୁଣି
ଚକ୍ରକୂଟର ବୁଦ୍ଧିରେ ପଡ଼ିଲୁ ନ ଜାଣି ।
ସତ୍ୟଭାମା ବୋଇଲେ ତୁ ଶୁଣ ସବ୍ୟସାଚୀ
ଆପେ ଡକାଇ ପେଷିଲେ ମୋତେ ଶିଖିବର୍ହି
ମୋହର ଶପଥ ତୋତେ ଠାକୁରଙ୍କ ରାଣ ।
ସନ୍ଦେଶ କହିବି ଯାହା ସାବଧାନେ ଶୁଣ ।
ଅର୍ଜୁନ ବୋଇଲେ ମାଗୋ ନୁହଇ ଏମନ୍ତ
ବାରତା କହିବ ମୋତେ ହେଉ ଯେ ପ୍ରଭାତ ।
ଏତେବେଳ ହୋଇଲାଣି ବହୁତ ଗୋ ରାତି
ଚଉଶ ସହସ୍ର କନ୍ୟା ମଧ୍ୟେ ପ୍ରିୟା ଅଛି ।
ସତ୍ୟଭାମା ବୋଇଲେ ତୁ ଶୁଣ ଫାଲଗୁନି
ମୁହିଁ ଆସିଅଛି ଏଥେ ସୁଭଦ୍ରାକୁ ଘେନି ।
ତୋତେ ଦେଖି ହୋଇଲା ଏ ଦେବୀ ବିରହିଣୀ
ଜାଣିଲେ ତା ମନକଥା ଦେବ ଚକ୍ରପାଣି ।
ଯତ୍ନେ ପୁଣ ଆଜ୍ଞା ମୋତେ ଦେଲେ ଦେବରାଇ
ସୁଭଦ୍ରାକୁ ଦେଇ ଆସ ଅର୍ଜୁନକୁ ନେଇ ।
ଅରଜୁନେ ବୁଝାଇଣ ସମର୍ପି ତୁ ଆସ
ମୋହର ଆଜ୍ଞା ବୋଲିଣ କହ ତାଙ୍କ ପାଶ ।

ମୁହିଁ ଯେବେ ତୋତେ ବାକୁ କହୁଅଛୁ ମିଥ୍ୟା
ଜଗନ୍ନାଥ ଆଜ୍ଞା ମୁଁ ନ ପାଇବ ସର୍ବଥା ।
ତୋହର ଶପଥ ଦ୍ରୋହକର୍ତ୍ତାର କରଇ
ଗୁରୁଜନଙ୍କର ନିନ୍ଦା ଦୋଷେ ମୁଁ ପଡ଼ଇ ।
ଅର୍ଜୁନ ବୋଇଲେ ତୁ ଗୋ ଶୁଣ ମାହେଶ୍ୱରୀ
ମୁହିଁ ମାନବ ତୁ ଏହା କପାଁ ନ ବିଚାର ।
ସୁଭଦ୍ରା ପ୍ରତିଉତ୍ତର ଦେଲେ ଅର୍ଜୁନକୁ
ପାପଚକ୍ଷୁରେ ଦେଖଇ କିନା ମୁଁ ତୁମ୍ଭଙ୍କୁ ।
ଅର୍ଜୁନ ବୋଇଲେ ସ୍ୱପ୍ନେ ନ ଥିବ ତ ଭୁଲି
ରୈବତପର୍ବତେ ମୋତେ ଦେଖ ସିନା କାଲି
ସୁଭଦ୍ରା ବୋଇଲେ ମୋର ସନ୍ନିଧିକି ଆସ
ତୋହର ଆଗରେ ମୁଁ ଯେ କହିବି ବିଶ୍ୱାସ ।
ପୁଣ ପୁଣ ବୋଲଇ ଯେ ବୀର ଅର୍ଜୁନ
ଧର୍ମକୁ ନ ଗଚ୍ଛଇ ଏ ତୋହର ବଚନ ।
ଅର୍ଜୁନ ବୋଇଲେ ପରସ୍ତ୍ରିଷୀ ମୋର ମାତା
ପରସ୍ତ୍ରିଷୀଙ୍କ ଯେ ସ୍ୱାମୀ ସେହି ମୋର ପିତା
ପରର ଦ୍ରବ୍ୟ ମୋହର ଅଟଇ ଦେବତା
ପରର ଶିରୀ ଦେଖି ମୁଁ ନ କରଇ ଚିନ୍ତା ।
ପରଧନ ନ ହରଇ ପରେ ନାହିଁ ହିଂସା
ପରଦାର ପ୍ରକୃତିରେ ନ କଳଇ ଆଶା ।
ପରଦୁଃଖେ କାତର ମୁଁ ପରଦୁଃଖେ ଦୁଃଖୀ
ପ୍ରସନ୍ନ ମୁଁ ପରଦାରେ ଶରଣ ମୁଁ ରଖି ।
ସୁଭଦ୍ରା ବୋଇଲେ ଯାହା କହିଲ ଯେ ଭବେ
ଶରଣବତ୍ସଳ ମାଗେ ଶରଣ ମୁଁ ଏବେ ।
ତୁମ୍ଭେ ଯେ ବୋଇଲ ମୁହିଁ ପରଦୁଃଖେ ଦୁଃଖୀ
ତୁମ୍ଭେ ପରଲୋକ ବନ୍ଧୁ ଅଟେ ମୁଁ ନର୍ମାଖୀ ।
ଶତଧନୁ ତୋର ତହିଁ ପଶିଲ ଶରଣ
ତାହାକୁ ରଖି ଜଣିଲୁ ଦେବ ନାରାୟଣ ।
ଶରଣ ପଶିଣ ଅଗ୍ନି ଦେବତା ଯେ ଆସି
ଇନ୍ଦ୍ରକୁ ଜିଣି ଖାଣ୍ଡବବନ ଦେଲୁ ଧ୍ୱଂସି ।
ଅନଙ୍ଗ ଦେବତା ମୋତେ ହଏ ପରାଭବ
ଅଦୋଷେ ନାଶଇ କେତେ ବନ୍ଧେ କାମଦେବ
ବିକଳେ ପଳାଇ ଆସି କାମଦେବ ଭୟେ
ମୁହିଁ ତୋ ଶରଣ ମୋତେ ରଖ ଧନଞ୍ଜୟେ ।
ଅଗ୍ନିଦେବର ଖଣ୍ଡିଲୁ ଲୁ ଦୁରୁଦୁ ବ୍ୟାଧି
ମୋତେ ଉଦ୍ଧର ତୁ ଏବେ ଦେଇ ମହୌଷଧି

କାମ-ସର୍ପବିଷଘାତ କରୁଛି ମୋ କାୟ
ସେ ବିଷ ଝାଡ଼ ଗାରେଡ଼ ମନ୍ତ୍ରେ ଧନଞ୍ଜୟ ।
ଅକାରଣ ଜନକୁ ଯେ କାରଣ କରନ୍ତି
ମହତ ପ୍ରାଣି ଭକତ ଜନ ଉଦ୍ଧାରନ୍ତି ।
ମୁହିଁ ଅନାଥ ମୋହର ବନ୍ଧୁ ଫାଲଗୁନ
ଶତ ସହସ୍ର ପ୍ରଣାମ ବହୁତ ଦଇମ ।
କ୍ଷୁଧାବେଳେ ଅନ୍ନଦେଲେ ହୁଏ ଯେତେ ପୁଣ୍ୟ
ଦରିଦ୍ର ପ୍ରାଣୀଙ୍କି ତ କ ଯତ୍ନେ ଦେବା ଦାନ ।
ତୁ ଫାଲଗୁନି ମହତ ଜନ କଳ୍ପତରୁ
ବୁଡ଼ିଅଛି କାମ ଜଳେ କପାଇଁ ନ ଧରୁ ।
ନିଷ୍କଳଙ୍କ ଚନ୍ଦ୍ର ପ୍ରାୟ ତୋ ବଦନ ଗୋଟି
ଦେଖା ବାରେ ମୋର ଅନ୍ଧକାର ଯାଉ ଫାଟି ।
ବିନୟ ବଚନେ ତାଙ୍କୁ ବୋଲେ ଫାଲଗୁନ
ସୁଭଦ୍ରା ଗୋ ତୋତେ ମୋର ଅନେକ ଦଇମ
ପରଦାର ଦୋଷେ ମାଗେ ନାଶଯାଇ ତପ
ମୋର ସ୍ଥିର ଦେହ ଲାଗି ତୋର ଏଡ଼େ ତାପ
ଠାକୁର ସେବକ ଏକ ଯୋଗ ଅଛି କାହିଁ
ବ୍ରାହ୍ମଣ ଚଣ୍ଡାଳ ସଙ୍ଗେ ମିତ୍ର ହୁଏ ନାହିଁ ।
ତୁ ମୋହର ମାଆ ଭୁଲି ଛାଡ଼ ମୋର ଆଶ
ତୋହର ସଦୃଶେ ବର ଦେଖ ତୁ ମନୁଷ୍ୟ ।
ସୁଭଦ୍ରା ବୋଇଲେ ତୋର ଜନ୍ମ ସୋମବଂଶ
ହରି ବଳରାମଠାରୁ ଅଟୁ ଗୁରୁହଂସ ।
ତୁମ୍ଭ ରୂପ ଦେଖି ମୋର ବଳିଲା ମନୀଷା
ମୁଁ ତୁମ୍ଭ ଶରଣ ମୋତେ ନ କର ନିରାଶା ।
ସୁଭଦ୍ରା ଅନେକ ସ୍ତୁତି କଲେ ଅର୍ଜୁନକୁ
ମୁର୍ଚ୍ଛ ଯାଇ ମଣ୍ଡିଲେ ସେ ଧରଣୀ ତଳକୁ ।
କୋଳ କରିଣ ଧଇଲେ ତାକୁ ସତ୍ୟବତୀ
ଆହେ ଅର୍ଜୁନ ତୁ ହତ୍ୟା କଲୁ ଏ ଯୁବତୀ ।
ନିଶ୍ଚୟ ଏହି ସୁଭଦ୍ରା ତୋର ଯୋଗ୍ୟ ମଲା
କବାଟ ଫେଡ଼ି ତୁ ଦେଖ ପ୍ରାଣତ୍ୟାଗ କଲା ।
କାଳବେଳେ ପଶିଲୁ ଏ ପୁରେ ଧନଞ୍ଜୟେ
ପ୍ରଥମେ ଲଭିଲୁ ସ୍ତ୍ରୀହତ୍ୟା ତୁ ଗୋଟାଏ ।
ନିଶ୍ଚୟ ଜାଣ ସୁଭଦ୍ରା ହେଲା ମୃତଆତ୍ମା
ଏବେ ସନ୍ନିଧିକୁ ଆସି ଦେଖ ହୋ ମହାତ୍ମା ।
ବୋଧ ଦେଇ ନ ମରଲେ କହ ପାର୍ଥ ତୁନ
ଅଢ଼ାଇ ପ୍ରହର ଆସି ହୋଇଲା ରଜନୀ ।

ତାଙ୍କ ସମ୍ମୁଖ ହୋଇଲେ ଦେବୀ ସତ୍ୟଭାମା
ବିବଶେ ତହୁଁ ବାହୁଡ଼ି ଗଲେ ବେନି ବାମା
ଗରଳ ଘୋଟିଲେ ଦେହେ ଯେହ୍ନେ ହୋଏ ପ୍ରାଣୀ
ସୁଭଦ୍ରାଙ୍କୁ ସତ୍ୟଭାମା କୋଳକରି ଆଣି ।
ମେଡ଼ ଭିତରେ ଶୁଆଇ ଦେଇ ଶଶୀମୁଖୀ
ସୁଭଦ୍ରା ବୋଇଲେ କହ କି କରିବ ସଖି ।
ନ ରହଇ ଆତ୍ମା ମୋର କାମ ଆସକତେ
ଛାଡ଼ିବ ପ୍ରାଣ କନ୍ଦର୍ପର ଘେନି ଲଗ ହସ୍ତେ ।
ପୋଡ଼ୁ ପୋଡ଼ୁ ସଖି ଏହି ସ୍ତିରୀଜନ୍ମ ଗୋଟା
ଯୁବାକାଳରେ କାମର ହୁଏ ଯେତେ ଚେଷ୍ଟା
ଆହେ ଧାତା ତୁହି କପାଁ ମନ୍ଦକୃତ୍ୟ କଲୁ
ସ୍ତିରୀଙ୍କ ଉପରେ କାମଦେବକୁ ଜନ୍ମିଲୁ ।
ଶରୀର ଦେଇ ପଞ୍ଚଶରକରୁ ଭୃତ୍ୟକାରୀ
ଅତି ପାତକୀ ହୋଇଣ ନିର୍ମିଛ ଯେ ସ୍ତିରୀ ।
ସତ୍ୟଭାମା ବୋଇଲେ ଗୋ ନ ଭାଳ ସଙ୍ଗାତ
ଅବଶ୍ୟ ଅର୍ଜୁନ ତୋତେ ହୋଇବ ପ୍ରାପତ ।
ତୁ କପାଇଁ ନିନ୍ଦାକରୁ ଏ ସ୍ତିରୀ ଜନ୍ମକୁ
ସ୍ତିରୀ ଉତ୍ପତ୍ତି କରଇ ସିନା ପୁରୁଷକୁ
ସ୍ତିରୀ ନ ଥିଲେ ପୁରୁଷ ହୁଅନ୍ତେ ଗୋ କାହିଁ
ପୁରୁଷ ବିଧାତା ସ୍ତିରୀ ଗଢ଼ିଅଛି କହି ।
ଆଗହୁଁ ଦେଖ ସଙ୍ଗାତ ସ୍ତିରୀ ନାମ ଧରି
ପଛରେ ସିନା ପୁରୁଷ ନାମକୁ ଉଚ୍ଚାରି ।
ଆଗ ଦେଖ ଲକ୍ଷ୍ମୀ ବୋଲି ପଛେ ନାରାୟଣ
ଆଗେ ଉମା ମହେଶ୍ୱର ପଛେ ସୁମରଣ ।
ସକଳ ଜନଙ୍କ ସ୍ତିରୀ ଅଟଇ ଗୋ ମୂଳ
ସ୍ତିରୀଙ୍କ ବଶ ଅଟନ୍ତି ପୁରୁଷ ସକଳ ।
ପୁରୁଷେ ସିନା ସ୍ତିରୀଙ୍କି କରନ୍ତି ଦଇମା
ପୁରୁଷ ମଧ୍ୟେ ପାଷାଣ ଅଟେ ଫାଲଗୁନ ।
ଧଇର୍ଯ୍ୟ ଗଛରେ ଫଳ ଧରଇ ନା ସଖି
ଆରତ ହୋଇଲେ କାର୍ଯ୍ୟ ନୋହେ ଜାଣ କିଛି
ଏ କଥା ମୁହିଁ ଜଣାଇ ଦେବ ଦେବରାଜ
ଆଜର ମଧ୍ୟରେ ସିଦ୍ଧି କରାଇବ କାର୍ଯ୍ୟ ।
ସତେହେଁ ଆମ୍ଭ ଦଇନୀ ଯେବେ ନ ଘେନିବ
ଆମ୍ଭଙ୍କୁ ବିବଶ କରି ପାର୍ଥ କାହିଁ ଯିବ ।
ଯେବେ ବିବଶ କରିବ ଆମ୍ଭଙ୍କୁ ଫାଲ୍‌ଗୁନ
ବଳେ ତାହାକୁ ଆଣିବ ସଖି ମୁହିଁ ଘେନି ।

ସୁଭଦ୍ରା ହରଷ ସତ୍ୟଭାମାର ବଚନେ
ଯାଉଅଛୁ ସଖି ଜଗନ୍ନାଥ ସନ୍ନିଧାନେ ।
ମୋ ହର କଥାକୁ ସଖି ନ କର ତୁ ହେଳ
ଅଗାଧ ସମୁଦ୍ରେ ବୁଡ଼ିଅଛି ମୋର ଭେଳ
ମୁହିଁ କେତେବେଳେ ଯିବ ତୋହର ଠା
ନ ପୁଣ ପାସୋରୁ ମୋତେ ଠାକୁରଙ୍କୁ
ଦୁର୍ଯ୍ୟୋଧନକୁ ବରିଲେ ଯେବେ ବଳଶ
ନିଜ ରୂପ ଧରି ବଳେ କରେ ଯେବେ କ
ତାହାଙ୍କଠାରେ ଗୋ ସଖି ନାହିଁ ମେ ର
ଅର୍ଜୁନହୁଁ ସଖି ମୋର ଆନେ ନାହିଁ ବ
ଏସନକ ବଚନରେ ପ୍ରସରିଲା ରାତି
ମିଳିଲେ ସ୍ୱାମୀ ଶୟନ ସ୍ଥାନେ ସତ୍ୟଭାମ
ଦେଖି ତାଙ୍କୁ ପରମାନନ୍ଦ ପ୍ରଭୁ ଜଗନ୍ନାଥେ
କାର୍ଯ୍ୟସିଦ୍ଧି ହୋଇଲା କି ବୋଲନ୍ତି ଏତେ
ଦୂତ ବୋଲନ୍ତେ ସକଳ କାର୍ଯ୍ୟ ହୋଏ ସିଦ୍ଧି
ସୁଭଦ୍ରାକୁ ପ୍ରସନ୍ନ କି ହେଲ ଯଥାବିଧି ।
କରଯୋଡ଼ି କହେ ଶତ୍ରାଜିତର ନନ୍ଦନୀ
ପୁରୁଷ ଲକ୍ଷଣ ନାହିଁ ନୃଶଂସ ଫାଲଗୁନ ।
ତିନି ପ୍ରହର ପର୍ଯ୍ୟନ୍ତେ ମନାଇଲୁ ବସି
କବାଟକୁ କିଳି ଦେଇ କହୁଛି ଝିଙ୍ଗାସି ।
ପାଷାଣ ତରଳି ଯିବ ଆମ୍ଭ ବାକ୍ୟ ଶୁଣି
ତଥାପି ଇଚ୍ଛା ନ କଲା କ୍ଷତ୍ରୀଚୂଡ଼ାମଣି ।
ତୃତୀୟ ପ୍ରହର ଦେବ ଭୋଗ ହେଲା ଗତ
ବିବଶ ହୋଇ ଅଇଲୁ ବେନି ଯେ ଯୁବତୀ ।
ସୁଭଦ୍ରାକୁ ଛାଡ଼ିଲି ମୁଁ ମେଡ଼ର ଭିତର
କିସ ବିଚାରଣ ଆଜ୍ଞା ଦେବା ଚକ୍ରଧର ।
ଏସନ କହିଲେ ଶତ୍ରାଜିତର ଦୁଲଣୀ
ଶୁଣି ହରଷ ହୋଇଲେ ତହିଁ ବନମାଳୀ ।
ବସନ୍ତ ଉତ୍ସବଯାତ୍ରା ବଟେ ମୁନିମାନେ
ଜଳକ୍ରୀଡ଼ା କରନ୍ତି ସେ ନଉକା ବିମାନେ ।
ସ୍ନାନ ତର୍ପଣ ଆହ୍ନିକ କର୍ମ ଦେବ ସାରି
ରୈବତ ପର୍ବତ ବିଜେ କଲେ ଦେବ ହରି
ବଳରାମ ଉଗ୍ରସେନ ସାତବଂଶ ଘେନି
କ୍ରୀଡ଼ାରସ ରଙ୍ଗେ ବିଜେ ସର୍ବ ମହାମୁନି ।
ଅର୍ଜୁନକୁ ସଙ୍ଗେ ଘେନି ଦେବ ଜନାର୍ଦ୍ଦନ
ଖେଳନ୍ତି ଜଳେ ଆରୋହି ନଉକା ବିମାନ

ଧନୁ ଜଣାଇଲା ଦେବ ଜଗନ୍ନାଥ
ଗମ ହସ୍ତିନାକୁ ବରିଗଲେ ଦୂତ ।
ର୍ଯ୍ୟାଧନଙ୍କୁ ଉଦ୍ଧବ ଗଲେ ଆଣିବାକୁ
ଦ୍ରାକୁ ସେ ପ୍ରଦାନ କରିବେ ତାହାଙ୍କୁ ।
ନ ବାରତା ତୋଟି ଶୁଣିଣ ଶ୍ରୀହରି
ଧ ହୋଇଲେ ଦେବ ନଷ୍ଟୁରଇ କଷ୍ଟ ।
ନର ବଦନକୁ ଚାହିଁ ଦେବରାୟ
ର ନ କରୁ କପାଁ ଏତା ଧନଞ୍ଜୟ ।
ରାୟଣଙ୍କ ବଚନେ ଅର୍ଜୁନ ମଉନ
ଥାସାର ବାହୁଡ଼ିଲେ ଦେବ ଜନାର୍ଦ୍ଦନ ।
ର୍ଜୁ ବୋଇଲା ଦେବ ହସ୍ତିନାକୁ ଯିବ
ର୍ଯ୍ୟାଧନ ଠାକୁରଙ୍କୁ ସଙ୍ଗେତେ ଆସିବ ।
ଣ୍ଠ ଅର୍ଜୁନ ବାକ୍ୟ ଶୁଣି ବନମାଳୀ
ଧୁ ସାଧୁ ଅର୍ଜୁନ ତୁ କ୍ଷତ୍ରୀ ବୁଦ୍ଧିଶାଳୀ ।
ର୍ଯ୍ୟାଧନ ଆସିବେଟି ଯେବେ ଦ୍ୱାରକାକୁ
କପାଇଁ ଯିବୁ ଆଉ ହସ୍ତିନାରାଜ୍ୟକୁ ।
ଷ୍ଟି ଠାକୁର ପୁଣି ହେବେ ବରଜାତ
ଷ୍ମ ଦ୍ରୋଣ ଭୂରିଶ୍ରବା ଆଦି ସେନାପତି ।
ତେକ ବେଳି ବିଜୟ କଲେ ଦ୍ୱାରକାକୁ
ହାଇଲେ ସମାଦାର କରି ଅର୍ଜୁନକୁ ।
ନହାର ଦେବ କଲେ ମଣୋହିରେ ବଜେ
ବଧି ଭୋଜନ କରି ପ୍ରଭୁ ଦେବରାଜେ ।
ର୍ଜୁନକୁ ଘେନି ଦେବ ବିଜେ ସିଂହାସନେ
ମ୍ବରେ ନୃତ୍ୟ କରନ୍ତି ଅପସରାମାନେ ।
ତରୁ ଓହ୍ଲାଇ ଆସି ନନ୍ଦର ଦୁଲାଳୀ
ଳା କବାଟର ବାଟେ ଚାହେଁ ଚକ୍ଷୁ ଡାଳି ।
ର୍ଜୁନର ବଦନକୁ ଚାହିଁ ଇନ୍ଦ୍ରାକ୍ଷି
ଗମୋହନ ମୂରତି ମୁଖ ଚାରି ଦେଖି ।
ଗୃହନ୍ତି ଗୋବିନ୍ଦ ଯେ ଆପଣାର ଚିତ୍ତେ
ଚଳ ଦ୍ରବ୍ୟ ଛାଡ଼ଇ ପାର୍ଥଙ୍କୁ କେମନ୍ତେ ।
ଙ୍ଗା ଅବତାରେ ଯାର ପ୍ରକୃତି ସବଥା
ବିନ୍ଦି ସିନା ଜାଣଇ ଯେ ପର ଦାର କଥା ।
ନତ ଗୌରବ ଆଦି ସମସ୍ତ ଉପେକ୍ଷି
ନବ କଟାକ୍ଷେ ମୋହିଲା ସକଳ ମୃଗାକ୍ଷି ।
ଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧାରୀ
ଷ୍ଟି ମରେ ଅସ୍ତ ଗଲେ ଗଗନବିହାରୀ ।

ରାତ୍ରରେ ସାରିଣ ଦେବ ଅମୃତ ମଣୋହି
ଅର୍ଜୁନକୁ ଆସ୍ଥାନରେ ଶୟନ କରାଇ ।
ଦିବ୍ୟ ପଲଙ୍କରେ ଶଯ୍ୟା କରାଇ ସୁପାତି
ସହସ୍ରେକ ଦୀପାବଳି ଜଳେ ଚଉକତି ।
ଉପରେ ଯେ ଚନ୍ଦ୍ରାତପ ମୁକ୍ତା କେରି କେରି
ମାଣିକ୍ୟ ପୁଞ୍ଜିରେ ହୀରା ମାଳାମାନ ଝୁଲି ।
ଅର୍ଜୁନ କୁ ଯେ ଶୟନ କରାଇ ଶ୍ରୀହରି
କବାଟ ନ କଲି ଶୋଇଥିବୁ ସବ୍ୟସାଚି ।
ଆପେ ଶ୍ରୀହରି ଶୟନ ମନ୍ଦିରେ ପ୍ରବେଶ
ସତ୍ୟଭାମାକୁ ବୋଇଲେ ଡାକି ହୃଷୀକେଶ ।
ଆମ୍ଭେ ତଥାରେ ଅଇଲୁ ବୀର ଫାଲଗୁନ
ତୁମ୍ଭେ ଚଳ ଏବେ ସଖି ସୁଭଦ୍ରାକୁ ଘେନ ।
ସୁଭଦ୍ରା ସମର୍ପି ଆସ ଅର୍ଜୁନକୁ ନେଇ
କାର୍ଯ୍ୟ ସୁବଧାନ କରି ଦେବେ ତୁମ୍ଭେ ଯାଇ
ସ୍ୱାମୀଙ୍କର ଆଜ୍ଞାପାଇ ଚଳେ ସତ୍ୟାସଖି
ସୁଭଦ୍ରା ସୁବେଶ ହୋଇ ବସିଅଛୁ ରାତି ।
ସୁଭଦ୍ରା ପାଶେ ପ୍ରବେଶ ହେଲେ ସତ୍ୟଭାମା
ସୁଭଦ୍ରା ବୋଇଲେ ସାଧୁ ସାଧୁ ତୋ ମହିମା
ପର ଉପକାର ମର୍ତ୍ତ୍ୟେ କରନ୍ତି ଯେ ଜନ
କିସ ଦେଇ ସେବାରେ ମୁଁ ହୋଇବି ଭାଜନ
ଅର୍ଜୁନ ମୋହର ସଙ୍ଗେ ଥିବ ଏକମେଳେ
ସେବା କରିବ ତୋହର ମୁହିଁ ସେତେବେଳେ
ସୁଭଦ୍ରାକୁ ଘେନି ଚଳି ଗଲେ ସତ୍ୟାସଖି
ପୁରେ ପ୍ରବେଶନ୍ତେ ଦେଢ଼ ପ୍ରହର ଯେ ରାତି
ତିନ ପୁରର କବାଟ ବଜ୍ରର କଳଣି
ନିଶ୍ଚିନ୍ତେ ବସି ଅଛଇ ବୀର ଫାଲଗୁନି ।
ପଲଙ୍କରେ ବସି ଶର ଗଣେ ବୀରପାର୍ଥ
ସୁଭଦ୍ରାଙ୍କୁ ଘେନି ଦ୍ୱାରେ ସତ୍ୟା ମାରେ ହାତ
ପେଲନ୍ତେ ବଜ୍ର କବାଟ ନ ଫିଟେ କଳିଣି
ଉଚ୍ଚେ ଡାକ ଦେଲେ ଶତ୍ରାଜିତର ଦୁଲଣୀ ।
କବାଟ ଫେଡ଼ ତୁ ପାଥ ସନ୍ନିଧିକୁ ଆସ
ଜଗନ୍ନାଥ ଦେଇଛନ୍ତି ତୋତାକୁ ସନ୍ଦେଶ ।
ସେ ଜଗମୋହନ ଦେବ ଆଜ୍ଞା ମୁହିଁ ପାଇ
ସୁଭଦ୍ରା ଘେନି ଅଇଲି ତୋତେ ଦେବାପାଇଁ
ଏ ସୁନ୍ଦରୀ ବଳାଇଲା ତୋତାରେ ମାନସ
ତୁମ୍ଭେ ଫାଲଗୁନ ପୁରା ଏହା ଅଭିଳାଷ ।

ଭିତରେ ଥାଇ ବୋଲଇ ବୀର ସବ୍ୟସାଚି
ଏମନ୍ତ ହୋଇଲେ କାର୍ଯ୍ୟ ନ ହୁଅଇ କିଛି ।
ମାତା ହୋଇ ତୁ କପାଇଁ କରୁଛୁ କଣ୍ଟାଳ
ତୋହଯୋଗୁଁ ହୋଇବ କି ମୁଁ ଷେଉଣ୍ଟାଳ
ହରି ବଳରାମ ପରା ତୋର ବେନଭ୍ରାତେ
ଲଜ୍ଜା କପାଇଁ ବସାଉ ତାହାଙ୍କର ଚିତ୍ତେ ।
କି ବୋଲି ବୋଲିବେ ମୋତେ ରାମବନମାଳୀ
ଏଡେ ବଡ ବଂଶରେ ତୁ ଲଗାଇବୁ କାଳି ।
ପାପପୁଣ୍ୟଙ୍କୁ କପାଇଁ ବିଗ୍ଭର ନ କର
ଏ ସ୍ଥିର ପାପ କଥାରେ ମଜ୍ଜୁଛୁ କପର ।
ଶୁଣିଲଣି ଦୁର୍ଯ୍ୟୋଧନ ହେବେ ତୋତେ ବର
ତୁ ମୋହର ଗୁରୁପତ୍ନୀ କରିବ ତୋ ସେବା
ହେବୁ ପଞ୍ଚକଣ୍ଟକର ତୁହି ଠାକୁରାଣୀ
ସେବକଙ୍କୁ ଆଶା ଗୋ ନ କର ମହାତ୍ମାଣୀ
ଚଳ ଚଳ ସୁଭଦ୍ରା ଗୋ ଫିଟିଲା ତୋ କଷ୍ଟ
ପନ୍ନଗ ନାଗପୁଣର ସଙ୍ଗେ ହେବୁ ଭେଟ ।
ସୁଭଦ୍ରା ବୋଇଲା ପାର୍ଥ ଅଟୁ ତୁ ନିର୍ଲ୍ଲଜ
ତୋ ସ୍ଥିରକୁ ଶବ କପାଁ । କଲେ ଦେବରାଜ
ଦୁର୍ଯ୍ୟୋଧନ ରାଜା ଅଟେ ତୁମ୍ଭର ବଇରୀ
ତା ସ୍ଥିରକୁ ପ୍ରଶଂସା ତ ଏତେ ମତେ କରି ।
ମୁହିଁ ତୋହର ଭରସା ହେବ ବୀର ପାର୍ଥ
କଉରବଙ୍କର ନାମେ କମ୍ପେ ମୋର ଗାତ୍ର
ତୁ ତାର ଗୁଣ ବର୍ଣ୍ଣନ କରୁଛୁ କେମନ୍ତେ
ଧାତା ଘଟସୂତ୍ର କରିଅଛି ତୋତେ ମୋତେ
ଆହେ ଧନଞ୍ଜୟ ଏବେ କବାଟ ଫେଡ଼ିବା
ମୁହିଁ ତୋହର ଚରଣେ କରିବଇଁ ସେବା ।
କ୍ଷତ୍ରୀକୁଳବାନା ତୋର ପ୍ରତିଜ୍ଞା ଯେ ସତ
ନ କର ନିରାଶ ମୋତେ ଏବେ ପଣ୍ଡୁସୁତ
ତାହା ଶୁଣି କୋପଭରେ ବୋଲଇ କିରୀଟି
ଉଚ୍ଚକୁଳେ ଜାତହୋଇ ତୁ ଏଡେ ନଲଠୀ ।
ଧିକ ଧିକ ତୋହର ଯେ ନନ୍ଦ ତାତ ମାତ
ଏସନକ ଯୋଗେ ତୋତେ କରିଛନ୍ତି ଜାତ ।
କୁଳ ସୁଲକ୍ଷଣ ଯେବେ ଉପୁଜେ ନନ୍ଦନ
ସୁସ୍ତିରୀ ହୋଇଲେ ହୁଏ ଦୁଇକୁଳ ଧନ୍ୟ ।
ଗଉଡ଼ ଜାତିରେ ସିନା ଉତପତ୍ତି ନନ୍ଦ
ଗୋପାଳଙ୍କ ପ୍ରକୃତି ଯେ ସବୁଠାରୁ ମନ୍ଦ ।

ଜାଣିକରି ବିଧାତା ଯେ ଦେଲା ଅଭିଶାପ
ଦ୍ୱାରେ ଦ୍ୱାରେ ବୁଲୁଥାନ୍ତି ଯୁବତୀ କଳାପ ।
ଯେତେକ ବଚନ ତୁହି ବୋଇଲୁ ଯଥାର୍ଥ
ଅଯାଚକର ଏସନ ଅଟେ ଚରିତାର୍ଥ ।
ତୁହି ଯେ ବୋଇଲୁ ରାମ କୃଷ୍ଣ ମୋର ଭାଇ
ଅଗସ୍ତିଙ୍କ ପୁତ୍ର ହେଲେ ପ୍ରତିଗ୍ରହୀ ହୋଇ
ଗୋପାଳୁଣୀ ଜନ ତୋର ପ୍ରକୃତି ଯେ ହୀନ
ତୋ ଯୋଗୁ ଦୂଷିତ ହେଲେ ରାମଭଗବାନ
ଦୁହିତା ଏ ଉପୁଜିଲେ ବଂଶକୁ ଅସାଧୁ
ସତ୍ୟଭାମା ବୋଇଲେ ତୁ ପାର୍ଥ କପାଁ ନିନ୍ଦୁ
ଆପେ ଯାହା ଅରଜ ତା କର୍ମ ବୋଲି ପାର୍
ଆମ୍ଭେମାନେ ମନ୍ଦ ଜାତି ତୁମ୍ଭେ ତ ମହତ ।
ମହତ ଜନଙ୍କୁ ଦେଖି ଆମ୍ଭେ ଆଶ୍ରା କଲୁ
ଈଶ୍ୱରଙ୍କ ସେବାକରି ନିଷ୍ଫଳ ହୋଇଲୁ ।
ଭିତରେ ଥାଇ ବୋଲଇ ବୀର ଫାଲଗୁନ
ଦନ୍ତରେ ତିରଣ ଘେନି ତୋତେ ମୋଦଇନ
ମୁହିଁ ଯେ ତୋହର ଭୃତ୍ୟ ଦାସର ଯେ ଦା
ଦେବସ୍ତିରୀ ହୋଇ କପାଁ । ମାନବରେ ଆ
ଗରେଣ କଲଇ ତେ ତେ ଅନେକ ଭର୍ତ୍ସନା
ପ୍ରଣାମ କରୁଛି ମନେ ନ କର ତା ଘେନା ।
ଜାଣିଲେ କୋପ କରିବେ ବଳରାମ ସ୍ୱାମି
ଏ କାରୁଣୁ ପୁଣ ପୁଣ କହୁଛି ପ୍ରଣମି ।
ଅନେକ ବାରେ ବୋଇଲେ ପାର୍ଥ କାନ୍ତିବା
ରାଗେ ପ୍ରତ୍ୟୁତ୍ତର ଦେଲା ନନ୍ଦର ଦୁଲଣୀ ।
ଆହେ ଅର୍ଜ୍ଜୁନ ତୁ ମୋତେ କଲୁଣି ହିଂସା
ପୁରୁଷ ମଧ୍ୟରେ ଅଟୁ ତୁ ହୀନ ପୁରୁଷ ।
ଧିକ ଧିକ ତୋ ଜୀବନ ଆରେ ଫାଲଗୁନ
ଧିକ ଧିକ ହେଉ ତୋର ପିଅର ଜନମ ।
କେବଣ ମହାତ୍ମା ହେଲା ତୋର ବୀଜଦାତା
କ୍ଲୁ ପୁରୁଷପଣେ ତୋତେ ସର୍ଜିଲା ବିଧାତା ।
ଧିକ ତୋର କ୍ଷତ୍ରୀପଣ ସବୁ ଅଟେ ମିଛ
କପାଁ । ତୋର ନାମଗୋଟି ଦେଲେକ ବିକ
ବଳବୀର୍ଯ୍ୟ ତୋହର ଏସବୁ ଧିକ ହେଉ
ଏ ତୋହର ମାଂସ ପଛେ ଗୃଧ୍ରପକ୍ଷୀ ଖାଉ ।
ଜପାସୁର ମୁଖରେ ତୁ ପଡ଼ିଲୁ ଯେ କେନେ
ମୋ କଷ୍ଟ ନ ଥାନ୍ତା ମରିଥିଲେ ତୁ ସେକାଳେ

ମୋତେ ଦହିବାକୁ ବହିଅଛୁ ନିଜ କାୟ
ଦୁଃଖୀର ସଙ୍ଗାତ ତୁହି ଅଟୁ ଧନଞ୍ଜୟ ।
ଅନେକ ଭର୍ତ୍ସନା ମୋତେ ବୋଲୁଅଛୁ ଆଜ
ବେଗେ ଆସି ହରୁ କିନା ମୋ ପ୍ରାଣ ନିର୍ଲଜ ।
ଯୁଧିଷ୍ଠିର ଶପଥ ତୋତେ କରୁଁ ଦ୍ରୋହ କରୁ
ଜଗନ୍ନାଥ ରାଣ ଯେବେ କବାଟ ନ ଫେଡୁ ।
ଶୁଣି ହସିଲା ପାଣ୍ଡବ ବୀର ଧନଞ୍ଜୟ
ସାଧ୍ୱୀ ସୁଭଦ୍ରା ଭେଟିଲା ତସ୍କର ପରାୟ ।
ରାଣ ପକାଇ ଯେନଇ ମୋର ଜାତି ବୃତ୍ତି
ନ ପୁଣ ସୁଭଦ୍ରା ବୋଲେ ଆସଇ ମୋ କତି ।
ପରହିଂସା ପୁଣି ପୁରୁଷହିଁ ବ ଇ
ରାଗୀ ବ୍ରାହ୍ମଣ ଆବର ଦୁର୍ଦ୍ଦଣ୍ଡ ଯେ ତାଇ ।
ଅମୂଳକ ତୀର୍ଥ ଆଗୋ ଅସତ ମଇଷ
ଅମାର୍ଗ ପଥ ଆବର ଅକୂଳ ସଂଜାତ ।
ଅକାରଣ ସ୍ଥାନ କୂଳ ଭୟଙ୍କର ବୁଦ୍ଧି
ଅନ୍ୟ କାହା କର୍ମେ ଥିଲେ ନୁହଇ ସେ ସାଧି
ଅନ୍ୟାଗୃହୀ ବ୍ରାହ୍ମଣ ଯେ ଅମୂର୍ତ୍ତି ଦଇତ
ଅସାଧନ ପୁରୁ ପୁଣି ଅଜ୍ଞାତ ପଣ୍ଡିତ ।
ଅଭାଗ୍ୟ କର୍ମ ଆବର ଅଯୋଗ୍ୟ ଘରଣୀ
ଅହର୍ନିଶି କୋପ କରୁଥାଇ ଦେ.ଗୃରୁଣୀ ।
ଅକୁଳ ଅଭାଗ ଆଉ ହୀନସ୍ଥାନବାସୀ
ଏ ଲୋକ ସଙ୍ଗେ ହସିଲେ ଧର୍ମହିଁ ନ ଆସି ।
ତୁ ଯେବେ ମୋତେ କଣ୍ଟାଳ କଲୁରେ ସୁବକ୍ଷ
ଆଉ କେବେ ନ ଆହିବ ପୁର ଦ୍ୱାରବକ୍ଷ ।
ଅଳପ କଥାରେ ବହୁ ଉପୁଜଇ ଲାଜ
ଅଣ୍ଡିତ ଲୋକ ସିନା କରନ୍ତି ଅକାର୍ଯ୍ୟ ।
ନୁହଇ ନୁହଇ ଜାଣ ଏ ମୋହର କର୍ମ
କୋଟି ସିହଜନ ତୋର ରାଜ ବଳରାମ ।
ତ୍ରୈଲୋକ୍ୟ କମ୍ପାଇ ଆଗା ଯାର ପରାକ୍ରମେ
ଦକ୍ଷେ ସୌନନ୍ଦ ମୂଷଳ ବଜ୍ର ହଳ ବାମେ ।
କଦମ୍ବରସ ପାନରେ ପୃଥ୍ୱୀ ହେଳେ ଯେନେ
କୈଳାସ ତ ଉଲ୍ଲ ..ଳକାଳ ହଳମୂନେ ।
ତା ଭଗିନୀ ଧର୍ଷିବାକୁ କେବଣ ସହାସ
ଦେଖୁ ଦେଖୁ ଅନଳେ କି ଝମ୍ପ ଦେବ ଖାସ
ସୁରଙ୍ଗ ଦେଖିଣ ମୋତେ ସଖି କରୁ ଇଚ୍ଛା
କାଳେ ତୋହର ପୂରନ୍ତା ନାହିଁ ମନୋବାଞ୍ଛା ।

ନ ଜାଣି ଏପର କପଁ । ହେଉ ଗୋସାମଣି
ମୋହର ଦଇଆ ଯେନ ତଳ ଏହିକ୍ଷଣି ।
ଛାଡ ଛାଡ ସୁନ୍ଦରୀ ଗୋ ଏବେ ମୋର ଆଶ
ଏ କଥା ଛାଡ଼ ତୁ ଆନ ପୁରୁଷରେ ରସ
ଅନେକ ଦୁଃଖ ପାଇବୁ ମୋ ଲାଗି ସୁନ୍ଦରୀ
ଶୁକପକ୍ଷୀ ପ୍ରାୟେ ଆଶା ହୋଇବ ତୁମ୍ଭର ।
ଶିମିଳିବୃକ୍ଷେ ସୁରଙ୍ଗ କୁସୁମ ଯେ ଦେଖି
ନିରାଶ ହୋଇଲେ ତହିଁ ଯେତେକ ଶୁକପକ୍ଷୀ ।
ବଡ଼ ସୁରଙ୍ଗ ଧରଇ ବୃନ୍ଦାରକ ଫଳ
ତା ଆଶେ ଶୁକପକ୍ଷୀ ହୋଇଲା ନିଷ୍ଫଳ ।
ସୁରଙ୍ଗ ରଙ୍ଗ ଦେଖିଣ ବଢ଼ାଇଲା ଆଶା
କାଳେ ନ ପୂରଲା ତାର ବୁଡ଼ିଲା ଭରସା ।
ନ ଜାଣି ବୁଡ଼ି ପଡ଼ିଲୁ ଏବେ ମହାମାଣି
ସୁଭଦ୍ରା ପ୍ରତିଉତ୍ତର ଦେଲା ତାହା ଶୁଣି ।
ବଧିର ଶୁଣଇ କାହିଁ କମ୍ବୁରସବାଣୀ
ପଦ୍ମଗନ୍ଧ ଛାଡ଼ି ଭେକ ଖାଏ ପଙ୍କପାଣି ।
ତୁହି ଯେବେ ନ ଶୁଣିଲୁ ଧର୍ମ ଅର୍ଥ ବୋଲ
ସୁଜାଣ ପଣକୁ ଛାଡ଼ି ହୋଇଲୁଣି କାଲ ।
ନ ରହ ତୁ ଏଥେ ବେଗେ ଯାଅ ଯା ବାହୁଡ଼ି
ସମସ୍ୟା ନ ଦେଇ ବେଗେ ଶୁଅ ମୁହଁ ମାଡ଼ି ।
ନିରସ୍ତ ହୋଇ ବୋଇଲେ ସେ ବେନି କାମିନୀ
ତିନପ୍ରହର ହୋଇଲା ଆସି ସେ ରଜନୀ ।
ସମସ୍ୟା ନ ପାଇ ତହୁଁ ହୋଇଲେ ନିରାଶ
ବାହୁଡ଼ିଲେ ସତ୍ୟଭାମା ଦେଖି ନିଜ ବାସ ।
କେ ଦଇବ ପୁରୁଷ ତୁ ଏସନକ ବୋଲି
ଅ[illegible] ସେ ସୁଭଦ୍ରା ନ ପାରଇ ବୁଲି ।
ସତ୍ୟଭାମା ବୋଇଲେ ତୁ ନ ରାଜ ସଙ୍ଗାତ
ଅବଶ୍ୟ ତାକୁ ବୋଲିବେ କାଲି ଜଗନ୍ନାଥ
ନିସ୍ତଳ ନୋହିବ କେବେ ପର୍ଣ୍ଣ ରାମ ଧାଡ଼ି
ପୂରିତ ଆରତ ଲ ତାକୁ ଆମ୍ଭେ ଲୋଡ଼ି ।
ସୁଭଦ୍ରା ଗଲେ ଯେ ତହୁଁ ମେଢ଼ ଭିତରକୁ
ସତ୍ୟଭାମା ଗଲେ ଜଗନ୍ନାଥଙ୍କ ଛାମୁକୁ ।
ଜଗନ୍ନାଥଙ୍କ ଛାମୁରେ କଲେ ସାଷ୍ଟାଙ୍ଗେ
କୁଶଳ ବାର୍ତ୍ତା ପୁଚ୍ଛନ୍ତି ପ୍ରଭୁ ଦେବରାଜେ ।
ସତ୍ୟଭାମା ବୋଇଲେକ ନୋହିଲା ତ କିଛି
ଶୁଣି ତହୁଁ ସ୍ତମ୍ଭୀଭୂତ ହୋଇଲେ ଶ୍ରୀହରି ।

ସତ୍ୟଭାମାକୁ ବୋଇଲେ ଦେବ ହୃଷୀକେଶ
ଆମ୍ଭର ବୁଦ୍ଧି ଉପସ୍ଥ ଅଛୁ ତହିଁ ଆସ ।
ଶୀଘ୍ର ପ୍ରଭାତରେ ତୁମ୍ଭେ ଘେନ ସୁଭଦ୍ରାକୁ
ଚଳେଯାଅ ବେଗେ ପୁତ୍ର ପ୍ରଦ୍ୟୁମ୍ନ ପୁରକୁ ।
ମାୟାବତୀଙ୍କର ଆଗେ କହିବ ଏ କଥା
ସେହି ଜାଣନ୍ତି ପୁରୁଷ ମୋହନ ବାରତା ।
ମାୟାବତୀ ପୁରକୁ ଗୋ ଚଳ ଏହିକ୍ଷଣ
ତେବେ ସୁଭଦ୍ରାକୁ ଜାଣ ଅଛଇ କାରଣ ।
ସତ୍ୟଭାମାକୁ ତଆର ଜଗନ୍ନାଥ ସ୍ୱାମୀ
ସୁଭଦ୍ରା ମନ୍ଦିରେ ବଜେ ଶଙ୍କର ଦୁଲଣୀ ।
ଯେ ପ୍ରକାରେ ସବ କହିଥିଲେ ଜଗନ୍ନାଥ
ସୁଭଦ୍ରା ଆଗରେ ସବ କହିଲେ ଭୁରତ ।
ଅନେକ ହରଷ ହେଲେ ନନ୍ଦର ଦୁଲଣୀ
ମାୟାବତୀପୁରେ ଗଲେ ସତ୍ୟାଭଦ୍ରା ଘେନ
ଅନେକ ଯେ ଅଳଙ୍କାର ସୁକ୍ଷ୍ମ ବସନ ।
ପ୍ରବେଶିଲେ ଘେନ ମାୟା ପୁରେ ବେନିଜନ
ପଲ୍ୟଙ୍କରେ ଥିଲେ ମାୟାବତୀ ମାହେଶ୍ୱରୀ
ଧାଡକାରେ ଆସନକୁ ତେଜ ସେ ଉତ୍ତର ।
କରେ ତହୁଁଶ୍ରୀ ଏକ ଘେନକର ବାଳୀ
ଗୁରୁପତ୍ନୀ ଦେବାଙ୍କର ଚରଣ ପଖାଳ ।
ପାଦ୍ୟାର୍ଘ୍ୟ ଦେଇ କନକ ଆସନେ ବସାଇ
ପ୍ରଣାମ କରି ଶୋଇଲେ ଦଣ୍ଡପ୍ରାୟ ହୋଇ ।
ଆଶିଷ ବାଞ୍ଛା ତାହାର କଲେ ସତ୍ୟାବତୀ
ଅହିଅ ସୁଲକ୍ଷଣି ଗୋ ହୁଅ ପୁତ୍ରବତୀ ।
ମନର ବାଞ୍ଛା ପ୍ରାପତ ହେଉ ତୋତେ ମାୟେ
ବେନିଭୁଜେ ଆଲିଙ୍ଗନ କରି ତାଙ୍କୁ ସ୍ନେହେ
ବୋଇଲେ ସେ ସତ୍ୟଭାମା ଶୁଣସି ଗୋ ମାତ
ତୋର ପୁରକୁ ପେଷିଲେ ମୋତେ ଜଗନ୍ନାଥ ।
ମଧ୍ୟମ ପାଣ୍ଡବ ସେ ଯେ ବୀର ଫାଲଗୁନ
ପ୍ରତ୍ୟକ୍ଷେ ଜାତ ହୋଇଛୁ ବିଷ୍ଣୁ ତେଜ ଘେନ
ଅର୍ଜ୍ଜୁନ ଯେମନ୍ତ ଦ୍ୱାରକାର ଉପକାରୀ
ତୁ ତାହାପ୍ରତ୍ୟକ୍ଷେ ମାଗୋ ଜାଣୁ ତଥ୍ୟକରି
ଗୋସିଂହକୁ ବଧକରି ସାତବଂଶ ରକ୍ଷି
ସେହି ଅର୍ଜ୍ଜୁନ ଆମ୍ଭର ପୁରକୁ ଆସିଛୁ ।
ସୋମବଂଶୀ ଠାକୁର ସେ ମଧ୍ୟ ଭୁବନର
ଆଉମାନେ ପରସ୍ପର ଅଟନ୍ତି ତାହାର ।

ଗୋବିନ୍ଦଙ୍କ ମନ ଦେବା ସୁଭଦ୍ରା ପାର୍ଥକୁ
ସେ କଥା ନ ଯୋଗାଇଲା ରାମଙ୍କ ମନକୁ ।
ସୋମବଂଶେ ଉତ୍ପନ୍ନ ଯେବେଟି ସନ୍ତାନ
ସେହି ହେବ ଜମ୍ବୁଦ୍ୱୀପ ପୃଥ୍ୱୀର ଧାରଣ ।
ଏତେକ ବିଚାରି ମୋତେ ଦେବ ଯେ ହକାରି
ବୋଇଲେ ଏ କଥା ତୁମ୍ଭେ ପାରିବ କି କରି
ହୋଇବ ତେବେ ଅର୍ଜ୍ଜୁନ ସୁଭଦ୍ରା ପୀରତି
ବଳରାମଙ୍କ କୋପକୁ କରାଇବା ଶାନ୍ତି ।
ମାଗୋ ସେ ବଚନେ ଘେନ ସୁଭଦ୍ରାକୁ ଗଲୁ
ବେନି ରାତି ହେଲା ଆମ୍ଭେ ଖଟି ମନାଇଲୁ ।
କବାଟ କିଳ ଶୋଇଛି ନିଶ୍ଚିନ୍ତେ ରଜନୀ
ବହୁର ଜନ ପରସ୍ପ ବଚନ ନ ଶୁଣି ।
ବିନୟ କରି କହିଲୁ ଆମ୍ଭେ ଯେତେ ବାଣୀ
ପାଷାଣ ଝୁଡ଼ି ପଡ଼ିବ ଆମ୍ଭ ବୋଲ ଶୁଣି ।
ନିରାଶ ହୋଇ ଅଇଲୁ ଯେଣୁ ବେନିରାତି
ତୋହର ପାଶକୁ ପେଷିଲେ ମୋତେ ଯଦୁପତି ।
ଯେମନ୍ତ ମନ ବଳାଏ କନ୍ୟା ଧନଞ୍ଜୟ
ଗନ୍ଧମନ୍ତ୍ରେ ତହିଁର ଗୋ କରିବୁ ଉପାୟ ।
ସତ୍ୟଭାମାଙ୍କ ବଚନେ ସୁଭଦ୍ରା ଯେ ଉଠି
ଧଇଲେକ ମାୟାବତୀ ଭୁଜ ଔଠ ପିଠି ।
ବସ ଗୋ ମାତା ବୋଲନ୍ତି ଧୀରେ ମାୟାବତୀ
କରାଇବା ଅର୍ଜ୍ଜୁନର ତୋହର ପୀରତି ।
ଶୁଣିବା ଗୋ ଠାକୁରାଣୀ ଏଥିର ଚରିତ
କହିବାକୁ ତୁମ୍ଭଙ୍କୁ ଏ ବଡ଼ଇ ଗୁପତ ।
ମାଗୋ ସ୍ତ୍ରୀମାନଙ୍କୁ ଯେ ପୁରୁଷେ ରମନ୍ତି
ପୁରୁଷକୁ ସ୍ତ୍ରୀମାନେ ଅଙ୍ଗଭୋଗ ଦ୍ୟନ୍ତି
ଦୁଇ ଅନୁବନ୍ଧରେ ହେ ଚନ୍ଦ୍ରକଳା ବରି
ପ୍ରତିପଦାଠାରୁ ପୌର୍ଣ୍ଣମାସୀ ଯାଏ ଧରି ।
ତିଥିକ ତିଥି ଚନ୍ଦ୍ରର କଳା ଯେ ବାରିବା ।
ଶୁକଳପକ୍ଷେ ଚନ୍ଦ୍ରମାମତେ ବିଚାରିବା ।
ପ୍ରଥମେ ଶୁକ୍ଳପକ୍ଷରେ ପ୍ରତିପଦା ତିଥି
ଚନ୍ଦ୍ର ରହିଥାଇ ତଳ ପାପୁଲିର ଗଣ୍ଠି ।
ଦ୍ୱିତୀୟା ରେ ଥାଇ ଚନ୍ଦ୍ର ପୁଟିଆ ଯେ ଜଙ୍ଘ
ତୃତୀୟାରେ ରହେ ଯାଇ ଆଣ୍ଠୁ ଗଣ୍ଠି ସଙ୍ଗ ।
ଚତୁର୍ଥୀରେ ଥାଇ ଚନ୍ଦ୍ର ଜଙ୍ଘର ଉପର
ପଞ୍ଚମୀ ଦିନ ରହଇ ବାଉସୁଆ ଘର ।

ଷଷ୍ଠୀରେ ରହିଣ ଥାଇ ଭଗର ପାଶର
ସପ୍ତମୀରେ ରହେ ପୁଣି ତାହାର ଭିତରେ ।
ଅଷ୍ଟମୀରେ ରହେ ଚନ୍ଦ୍ର ନାଭି ମଣ୍ଡଳରେ
ନବମୀ ଦିନ ରହଇ ତାହାର ଉପରେ ।
ଦଶମୀରେ ରହେ ଚନ୍ଦ୍ର ହୃଦୟ ଉପରେ
ଏକାଦଶୀରେ ଥାଇ ସେ ସ୍ତନର ଉପର ।
ଦ୍ୱାଦଶୀରେ ରହେ ପୁଣି ଯାଇ କଣ୍ଠତଟେ
ତ୍ରୟୋଦଶୀରେ ରହଇ ଜିହ୍ୱାର ଅଗ୍ରତେ ।
ଚତୁର୍ଦ୍ଦଶୀରେ ରହଇ କପାଳ ଉପର
ପୂର୍ଣ୍ଣିମୀରେ ରହେ ଚନ୍ଦ୍ର ତାଳୁର ଭିତର ।
ଏହିମତେ ଯେହୁ ଚନ୍ଦ୍ର ଗୃହକୁ ଜାଣି
ରତିକାଳେ ଚନ୍ଦ୍ରସ୍ଥାନ ପାଆନ୍ତି ସେ ପ୍ରାଣୀ ।
ସେବେଳେ କାମକଳାରେ ଉପୁଜଇ ସୁଖ
ସେ ସ୍ତ୍ରୀ ବିବେକୀ ପୁଣି ପୁରୁଷ ବିବେକ ।
ଶୁକ୍ଳ ପକ୍ଷରେ ଅଟଇ ଏମନ୍ତ ବିଚାର
ସ୍ତ୍ରୀ ପୁରୁଷେ ଜାଣିବେ ଏହାର ବେଭାର ।
ଏବେ ଶୁଣ କୃଷ୍ଣପକ୍ଷ ଚନ୍ଦ୍ରକଳା ରସ
ଏହା ଜାଣିବେ ସୁଜ୍ଞାନୀ ସ୍ତ୍ରୀ ଯେ ପୁରୁଷ
ଏମନ୍ତେ ପୂର୍ଣ୍ଣିମା ପରେ ପ୍ରତିପଦା ଦିନ
ଚନ୍ଦ୍ର ରହେ ସ୍ତ୍ରୀଙ୍କର ଶରୀର ଯେ ସ୍ଥାନ ।
ଦ୍ୱିତୀୟା ଦିନ ଯେ ଚନ୍ଦ୍ର କପାଳରେ ଥାଇ
ତୃତୀୟା ଦିନରେ କର୍ଣ୍ଣ ମୂଳରେ ରହଇ ।
ଚତୁର୍ଥୀ ଦିନ ରହଇ ଆଖି ଯେ କୋଣର
ପଞ୍ଚମୀରେ ରହିଥାଇ ନାସିକା ଉପର ।
ଷଷ୍ଠୀଦିନ ରହେ ଯାଇ ପୁଣି ଜିହ୍ୱାତଳେ
ସପ୍ତମୀରେ ରହେ ସେହି ଯାଇ କଣ୍ଠମୂଳେ ।
ଅଷ୍ଟମୀ ଦିନ ରହଇ ସ୍ତନର ଉପରେ
ନବମୀରେ ରେହେପୁଣି ନାଭିର ଭିତରେ
ଦଶମୀରେ ଚନ୍ଦ୍ର ତଳପେଟରେ ରହଇ
ଏକାଦଶୀରେ ସେ ଜାନୁ ସନ୍ଧିରେ ସମ୍ଭାଇ ।
ଦ୍ୱାଦଶୀରେ ରହେ ସେହୁ ଭଗରେ ପ୍ରମାଣ
ତ୍ରୟୋଦଶୀରେ ରହଇ ଜଙ୍ଘର ତଳେଣ
ଚତୁର୍ଦ୍ଦଶୀରେ ଥାଇ ସେ ଆଣ୍ଠୁର ଉପରେ
ଅମାବାସ୍ୟାରେ ରହଇ ପାଦ ତଳପାରେ ।
ଏମନ୍ତ ପ୍ରକାରେ ପୁଣି ଚନ୍ଦ୍ର କଳା ସାର
ବିବେକୀ ସ୍ତ୍ରୀଙ୍କ ପୁରୁଷ ଜାଣନ୍ତି ବିଚାର ।

ଦୁହେଁ ଉନ୍ମତ ହୋଇ କରନ୍ତେଣ ରତି
ସୁଖଉପୁଜେ ଆବର ହୁଏ ମହାପ୍ରୀତି ।
ଏମନ୍ତ ଚନ୍ଦ୍ରଗୃହକ କହେ ମାୟାବତୀ
ପୁଣି କହନ୍ତି ଶୁଣିମା ହେଉ ଶଙ୍କାବତୀ ।
ସୁଭଦ୍ରା ହୋଇଅଛନ୍ତି କାମେ ଅଧାଷ୍ଟମ
ଚନ୍ଦ୍ରଦେବ ଧରିଛନ୍ତି ତାହାର ମରମ ।
ତେଣୁ କରି ସେହୁ ହୋଇଛନ୍ତି କାମେ ବାଇ
ଅରଜୁନ ପୁଣି ପିତଅଙ୍ଗ ଯେ ଅଟଇ ।
ଯେତେବେଳେ ଅଗ୍ନିଦେବ ପାର୍ଥପାଶେ ଗଲେ
ଖାଣ୍ଡବ ବନକୁ ଦାନ ଦେନ ସେ ମାଗିଲେ ।
ଅର୍ଜୁନ ବୋଇଲେ ମୋର କରେ ଶସ୍ତ୍ର ନାହିଁ
ଅଗ୍ନି ସର୍ବ ଦେବଶର ମାଗି ଦେଲେ ନେଇ ।
କାମଦେବ ଦେଇଛନ୍ତି କାମେଶ୍ୱର ବାଣ
ତାହା ଦେଲେ ବୈଶ୍ୱାନର ପାର୍ଥର କରେଣ
ତେଣୁ କରି ଅଙ୍ଗେ ତାର ନ ପଡ଼େ ମଦନ
ଯତିଅଙ୍ଗ ଗୋଟି କହୁଅଛୁ ଅରଜୁନ ।
ଏଥକୁ ଏକ ଉପାୟ ଅଛଇ ମୋହର
ଗୁରୁଦେବତରୁ ଯେ ମନ୍ତ୍ର ହୋଇଛି ବାହାର ।
ଯାହାର ନାମଟି ଧରି ଏ ମନ୍ତ୍ର ପଢ଼ିବ
କାମଦେବ ଜାଣି ତାର ଅଙ୍ଗରେ ପୀଡ଼ିବ ।
ଏତେ ବୋଲି ଚହୁଁ କାମଦେବର ଯୁବତୀ
ମନ୍ତ୍ରଗୋଟି ସୁଭଦ୍ରକୁ କହିଲେ ଝଟତି ।
କବାଟ କିଳିଣ ଶୋଇଥିବେ ଧନଞ୍ଜୟ
ତହିଁକ ଅଛୁ ମୋହର ମନ୍ତ୍ର ଯେ ଗୋଟିଏ ।
ଉଲୁକ ବିଦ୍ୟା ତୁ ପଢ଼ି ଯିବୁ ଆନସନ୍ଧି
ଏମନ୍ତ୍ର ପଢ଼ି ଛୁଇଁଲେ ଦ୍ୱାର ଯିବ ଫିଟି ।
ଫିଟାଇ କହିଲେ ସୁଭଦ୍ରାକୁ ମନ୍ତ୍ରଗୋଟି ।
ଏହା ପଢ଼ି ହାତ ଦେଲେ ଦ୍ୱାର ଯିବ ଫିଟି ।
ଉଲୁକ ବିଦ୍ୟା ସାଧନ ଶିଖାଇବି ତୋତେ
ଏହାକୁ ପଢ଼ି ଅର୍ଜୁନ ପାଶେ ଯିବୁ ସନ୍ଧେ ।
ତୁ ସବୁ ଦେଖିବୁ ତୋତେ ନଦେଖିବେ କେହୁ
ଏକଇ ବିଦ୍ୟା ସାଧନେ ଯିବ ମୋହ ହୋଇ
ଆଉରେକ ପଦାର୍ଥ ଅଛୁ ପାଦୁକ ଔଷଧି
ସହସ୍ର ଯୋଜନେ ଥିଲେ ଭେଟିବୁ ତୁ ସାଧି ।
ଅଞ୍ଜନ ବିଦ୍ୟା ମୁଁ ତୋତେ କହୁଛି ଗୋ ମାଏ
ସବେ ଗୃହିଁଲେ ଦିଶିବ ଦିବସ ପରାଏ ।

ପାତାଳ ଭୁବନେ ଯଦି ହୋଇବାକ ଗୋପ୍ୟ
ଅଞ୍ଜନ ଦେଇ ଚାହିଁଲେ ଦିଶିବ ସ୍ୱରୂପ ।
ପୁରୁଷ ବଶ ହୁଅନ୍ତି ଏମନ୍ତେ ଗୋ ମାତ
ଏହୁ ମହୌଷଧି ତୋତେ ଦେଉ ପରାପତ ।
ଶରୀରେ ଦେଲେ ଔଷଧି ନାମ ମନ୍ତ୍ର ପଢ଼ି
ଛାଡ଼ିବ ନିଜ ସଦନ କାମେ ଯିବ ଜଡ଼ି ।
ଯଦ୍ୟପି ହୋଇବ ସେହୁ ମାନ ଗଉରବୀ
ଛାଡ଼ିବ ତା ଦମ୍ଭପଣ ହେବ ପରାଭବୀ ।
ଏ ବିଦ୍ୟାରେ ତୋତେ ବଶ ହେବ ଫାଲଗୁନି
ତୋହର ଚହୁଁ ଆନେ ନ ଚାହିଁବ ଭବାନୀ
ଶୁଣସି ଗୋ ସାବଧାନେ ରତିଶାସ୍ତ୍ର ବିଦ୍ୟା
କାମଶାସ୍ତ୍ରରେ ଯେମନ୍ତେ ହୋଇବ ସଂସିଦ୍ଧା
ଚନ୍ଦ୍ର ପବନ ଯୋଟିବ ଆଗୋ ଯେତେବେଳେ
କାମ ଘଟନ ଶାସ୍ତ୍ର ଯେ ଘଟିବ ତତ୍କାଳେ ।
ଏମନ୍ତ ସାଧିକ ବିଦ୍ୟା ଦେଲେ ମାୟାବତୀ
ପୁରୁଷ ମାତ୍ର ହୋଇ କେ ଧରିବ ତା ଧୃତି ।
ସ୍ତମ୍ଭନ ମୋହନ ବିଦ୍ୟା ବଶ ଉଚ୍ଚାଟନ
ଏ ଗୃରଙ୍କି ମହାଦେବୀ କରିବ ସାଧନ ।
ସକଳ ବିଦ୍ୟାରେ ଜାଣ ଜଣାଇ ସେ ନାରୀ
ତୋହର ସ୍ୱାମୀ ହୁଅଇ ତାର ପରିଗୃହୀ ।
କହିଲ ସେ ମହାମ୍ପାଣୀ ସର୍ବଜ୍ଞ ଯେଁ ଏତି
ଅନାଦି ଅପ୍ରସ୍ତି ତାଙ୍କୁ କହିଲେ ପ୍ରବୋଧି ।
ସଂସାରେ ସୁନ୍ଦରୀ ଯେତେ ମୋହେ କାମଦେବ
ଆନ ପୁରୁଷ କେ ତାହା ଚହୁଁ ଉବୁରିବ ।
ଆପେ ସାଧଇ ଯେ ସ୍ତ୍ରୀମାନଙ୍କ ମୋହିନୀ
ଦେଖିଲେ ବଶ ହୁଅନ୍ତି ସ୍ତ୍ରୀ ମହାମ୍ପାଣୀ ।
ସମସ୍ତ କଥା କହିଲେ ଦେବୀ ସୁଭଦ୍ରାଙ୍କୁ
ଆରେକ କଥା କହିଲେ ଏବେ ମୁଁ ତୁମ୍ଭଙ୍କୁ ।
ତୁମ୍ଭର ଯେ ଅର୍ଜ୍ଜୁନର ହେବ ବଡ ଭବ
କହୁଅଛି ତୋତେ ତାହା ବଡ଼ଇ ଦୁର୍ଲ୍ଲଭ ।
ଦୁର୍ବାର ଆବର ମତ୍ତଭେଳ ବଳରାମ
ଯାଦବବଳ ଯେବଣ କରିବେ ସଂଗ୍ରାମ ।
ଯେବଣ କାଳେ ଦହନ ହେଲେ କାମଦେବ ।
ସର୍ବବିଦ୍ୟା କହିଥିଲେ ଜାଣି ପରାଭବ ।
ଯେତେ ଦେବ ଶାସ୍ତ୍ରମାନ ଦେଲେ ମୋ ରହାତେ
ସକଳ ଶାସ୍ତ୍ର ଥୋଇଛି ଗର୍ଭେ ମୁଁ ଗୁପତେ ।

ଅନାଦି ଯେ ମନ୍ତ୍ରମାନ ଶରୀର ଉଦ୍‌ଗାର
ସୁଭଦ୍ରାଙ୍କୁ ସୁପ୍ରସନ୍ନେ ଦେଲେ ମାହେଶ୍ୱରୀ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଅଗ୍ନି ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ
ଯମଆଦି ହାରିବେ ଯେ ରଣେ ପାଇ ଲାଜ
ତୁଗୋ ମାହେଶ୍ୱରୀ ଯାଇ ପାର୍ଥ ତୁଳେ ଭେଟି
ପାଇବୁ ସେ ନାରାୟଣ ପାଣ୍ଡବ କିରୀଟି ।
କାମଦେବର ବିମାନ ଅଛି ମୋର ତହିଁ
ଯାଅ ମାଗୋ ତୁମ୍ଭେ ଏହି ବିମାନ ଆରୋହି
ସଂଗ୍ରାମ କାଳେ ବସିବ ଏଥେ ଧନଞ୍ଜୟ
ତ୍ରୈଲୋକ୍ୟ ସଂଗ୍ରାମେ ସେହି ହୋଇବ ନିର୍ଭୟ
ଏବେ ଗୋ ମାତ ଏଥିରେ ବିଜେ କରିଯିବ
ସର୍ବଦାହିଁ ଅନୁଗ୍ରହ ମୋତେ କରିଥିବ ।
ମାୟାବତୀ ମାୟାମନ୍ତ୍ର ପାଇ ତୋଷମନେ
ସୁଭଦ୍ରା ଯେ ସତ୍ୟଭାମା ବିଜେ ନିଜ ସ୍ଥାନେ
ଯାହାରଙ୍ଗ ବିନୋଦରେ ଦେବ ଦଇତ୍ୟାରି
ସମ ଦଣ୍ଡରେ ବିଜୟେ ରଇବତ ଗିରି ।
ଶ୍ରୀହରି ଚରଣେ ଯାଇ ଅର୍ଜ୍ଜୁନ ପ୍ରଣମି
ହସ୍ତିନା ପୁରକୁ ଯିବ ଆଜ୍ଞାଦେବା ସ୍ୱାମୀ ।
ଗୋବିନ୍ଦ ହୋଇଲେ ଯାହା ଉତ୍ସବକାଳେ
ଯତ୍ନେ ବନ୍ଧୁବର୍ଗ ଲୋଡ଼ି ଆସିଲ ସକଳେ
ତୁ ମୋହର ସହୋଦର ଅଟୁ ପ୍ରାଣସଖା
ମୋତେ ଛାଡ଼ିଣ କେମନ୍ତେ ଯିବୁ ତୁହି ଏକା
କେବଣ କଥାକୁ ତୁହି କରୁଅଛୁ ଭ୍ରାନ୍ତି
ତୋଠାରେ ମୋ ଦୟା ସେତୁ କାହୁକୁ ଯେସନ୍ତି
ନାରାୟଣଙ୍କ ବଚନେ ଅର୍ଜ୍ଜୁନ ଲଜ୍ଜିତ
କେନ ଭୁଜରେ ଶ୍ରୀହରି କଲେ କୋଳାଗତ ।
ଆଜ୍ଞା ପ୍ରମାଣେ ରହିଲେ ବୀରବର ପାର୍ଥ
ଦ୍ୱାରକା ଭୁବନେ ବିଜେ କଲେ ଜଗନ୍ନାଥ ।
ସ୍ନାନ ଭୋଜନାଦି ଶେଷ କରି ଦେବହରି
ଶୟନ ମନ୍ଦିରେ ବିଜେ କଲେ ଦଇତ୍ୟାରି ।
ସମସ୍ତ ଯାଦବ ଗଲେ ଯେ ଯାହା ଭୁବନେ
ରହେ ଶୟନ କରନ୍ତି ଯେ ଯାହାର ସ୍ଥାନେ
ଶୟନ ଭୁବନେ ଯାଇ ବିଜେ ସବ୍ୟସାଚି
ନିଶ୍ଚିନ୍ତେ ଶୋଇଲେ ଖଟେ ବିଶ୍ରାମ ଶ୍ରୀପତି
ସତ୍ୟଭାମାକୁ ବୋଇଲେ ଦେବ ଭଗବାନ
ସୁଭଦ୍ରାକୁ ଘେନିଯାଅ ଅର୍ଜ୍ଜୁନ ଭୁବନେ ।

ଯେବଣ ଭବନେ ଶୋଇଅଛନ୍ତି ବୀରପାର୍ଥ
ଘରଗୋଟି ଆସ୍ତରଣ ସୁବର୍ଣ୍ଣର କାନ୍ଥ ।
ସ୍ଫଟିକ ପିଢ଼ା ଚନ୍ଦନ ରୁଅ କାଠଶ୍ରେଣୀ
ତହିଁ ଉପରେ ହୋଇଛନ୍ତି ରତ୍ନର ଖଞ୍ଜଣି ।
ଉପରେ ସେ ଚନ୍ଦ୍ରାତପ ମୁକ୍ତା ମାଳ ମାଳ
ସହସ୍ରେକ ମାଣିକ୍ୟର ରତ୍ନପାପାବଳ ।
ଶ୍ରୀକରେ ସେ ଧନୁ ଏକ ଧର ସବ୍ୟସାଚ
ପଲଙ୍କ ଉପରେ ବସି ନାଗଚ ଆମଞ୍ଚ ।
ସାତପୁର ଭିତରେ ସେ ଶୋଇଅଛନ୍ତି ପୁଣି
ସାତକବାଟ ସେ ସବୁ ଯନ୍ତ୍ରର କଳଣି ।
ନକ୍ଷତ୍ର ମନ୍ଦରେ ବସିଅଛନ୍ତି ସବ୍ୟସାଚ
କ୍ଷଣିପ୍ର ଗୁଣେ ନାଗଚ ଧନୁକୁ ଆମଞ୍ଚ ।
ଆଜ୍ଞା ପରମାଣେ ତହୁଁ ଶ୍ରୀକୃଷ୍ଣର ବାମା
ସୁଭଦ୍ରାକୁ ଘେନ ଚଳଗଲେ ସତ୍ୟଭାମା ।
ଅର୍ଜୁନ ଶୟନପୁରରେ ପ୍ରବେଶିଲେ ଯାଇ
ଅର୍ଜୁନ ଅର୍ଜୁନ ବୋଲି ସତ୍ୟା ଡାକ ଦେଇ ।
କବାଟ ଫେଡ଼ି ସମ୍ବାଦ ଶୁଣ ଫାଲଗୁନ
ଠାକୁରଙ୍କ ଆଜ୍ଞା ମୁହିଁ ଆସିଅଛି ଘେନ ।
ଡାକ ବିମୁଖ ହୋଇଲେ ସୁରଭି କାମିନୀ
ସମସ୍ୟା ନ ଦେଇ ବୀର ହୋଇଅଛନ୍ତି ତୁନ ।
ଡାକ ସତ୍ତୁଁ ନ ଶୁଣିଲ ବୀରବର ପାର୍ଥ
ସତ୍ୟଭାମା କହିଲେ ଯେ ସୁଭଦ୍ରା ଅଗ୍ରତ ।
ମାୟାବତୀଙ୍କର ମନ୍ତ୍ର ପଢ଼ ତୁମ୍ଭେ ଆଗେ
କେମନ୍ତେ ଫଳ ହୋଇଛି ଦେଖିବା ବେଗେ
ଏମନ୍ତ ଶୁଣି ସୁଭଦ୍ରା ଭାବେ ଜଗନ୍ନାଥ
ରକ୍ଷାକର ମୁଁ ତୁମ୍ଭର ଶରଣ ଆଗତ ।
ମାୟାବତୀ ମନ୍ତ୍ର ପଢ଼ି ନନ୍ଦର ଦୁଲଣୀ
ଫିଟିଲା ସାତ କବାଟ ଯନ୍ତ୍ରର କଳଣି ।
ଯେଉଁପରି କହିଥିଲେ ପୁଷ୍ପକକୁମାରୀ
ପ୍ରତ୍ୟକ୍ଷେ ଫଳିଲା ତାହା ଦେଖିଲେ ସୁନ୍ଦରୀ ।
ଛୁଅନ୍ତେ ସାତ କବାଟ ଗଲା ବେଗେ ଫିଟି
କବାଟ ଫେଡ଼ି ସୁଭଦ୍ରା ଅର୍ଜୁନକୁ ଭେଟି ।
ଧନୁଶର ରଖି ପାର୍ଥ ହୋଇ କୋପାନଳ
ବାମକରେ ଧଇଲା ଯେ ସୁଭଦ୍ରାର ବାଳ ।
ପାର୍ଥ ବୋଲେ କଣ୍ଟାରକୁ ଘେନ ଦକ୍ଷପାଣି
ବୋଇଲା ନାସା ଶ୍ରବଣ ପକାଇବ ହାଣି ।

ରାକ୍ଷସୀ କି ପିଶାଚୀ କୁ ଡାକିନୀ ଶାକିନୀ
ସତ୍ୟେ ମୋ ଶୟନ ସ୍ଥାନେ ଆସିଲୁ ନ ମାନ
ସୁମର ଲୋ ଡାକିନୀ ତୋ ଦେବତା କେ ଇଷ୍ଟ
ସ୍ତ୍ରୀ ସିଲଙ୍ଗ ନୋହିଥିଲେ ହାନନ୍ତା ମୁଣ୍ଡକାଟ ।
ସୁଭଦ୍ରା ଯେ ସୁମରଇ ନନ୍ଦ ମୋ ପିଅର
ପୁଣି ସୁମରଇ ମାତା ଯଶୋଦା ଯେ ମୋର ।
ଅର୍ଜୁନ ବୋଇଲା ଦୁଷ୍ଟ ପାମର ଲୋ ମନ୍ଦ
କୁ କପାଇଁ ସୁମରିଲୁ ଯଶୋଦା ଯେ ନନ୍ଦ ।
ସୁଭଦ୍ରା ବୋଇଲା ନନ୍ଦ ଯଶୋଦା ଏ ଦୁଇ
ପିତାମାତା ହୋନ୍ତି କଲି ସୁମରଣା ମୁହିଁ ।
ଅର୍ଜୁନ ବୋଇଲେ ତାଙ୍କ ଜୀବନହିଁ ଧିକ
ଗୋପାଳ ଜାତି ଅଟନ୍ତି ଅତି ଅବିବେକ ।
ସୁଭଦ୍ରା ଯେ ସୁମରଇ ଶ୍ରୀପୁରୁଷୋତ୍ତମ
ଆବର ସେ ସୁମରଇ ପ୍ରଭୁ ବଳରାମ ।
ଅର୍ଜୁନ ବୋଲେ ସୁମରୁ କପାଇଁ ଯଦୁସାଇଁ
ସୁଭଦ୍ରା ବୋଇଲେ ମୋର ସହୋଦର ଭାଇ
ଅର୍ଜୁନ ବୋଲେ ଏ ବଂଶେ ସ୍ତ୍ରୀ ସୀ ଉପୁଜିଲେ
କୁଳେ କଳଙ୍କ ଲଗାଇ ମନ୍ଦବାଟେ ଗଲେ ।
ପାର୍ଥ ବୋଲେ ରାମକୃଷ୍ଣ ଜୀବ ଧିକ ହେଉ
ତୁମ୍ଭ ଏଡ଼େ ବଡ଼ବଂଶେ କଳଙ୍କ ଲଗାଉ ।
ଆମ୍ଭେ ପଞ୍ଚଭ୍ରାତ ହେଲୁ ସୋମବଂଶେ ଜାତ
ଅପବାଦ କି ମତ ଯେ ନ ସହୁ ଜଗତ ।
ଧର୍ମକୁ ନ ଲଙ୍ଘୁ ଆମ୍ଭେ ସତ୍ୟକୁ ନ ଲଙ୍ଘ
ପାଷାଣର ରେଖା ଆମ୍ଭ ବାକ୍ୟ ଏଥିଯୋଗୁଁ ।
ଦ୍ରୌପଦୀ ଯୁଧିଷ୍ଠିରଙ୍କର ଶୃଙ୍ଗାର ଦେଖିଲି
ସୁଖଭୋଗ ତେଜି ମୁହିଁ ବନବାସ କଲି ।
ପ୍ରଥମେ ଗଙ୍ଗାତୀର୍ଥରେ କଲଇଁ ମୁଁ ସ୍ନାନ
ତଥାପି ନ ଗୁଡ଼ିଲା ସେ ଭ୍ରାନ୍ତ ମୋର ମନ ।
ଗଙ୍ଗାରେ ମକରଶାୟୀ ହୋଇ ପିଣ୍ଡ ଦେଲି
ଗଙ୍ଗାଧରଙ୍କୁ ତୋଷିଣ ବଂଶ ଉଦ୍ଧାରିଲି ।
ବିଶ୍ୱନାଥ ସେବ ମଣିକର୍ଣ୍ଣିକାର ଘାଟେ
ପରଦାର ନ କରିବ କହିଲି ନିକଟେ ।
ନ କରିବ ପରନିନ୍ଦା ପୁଣି ପରହିଂସା
ପର ଦାର ପର ଧନ ନ ବଳେ ମୋ ଆଶା
ବିଶ୍ୱନାଥ ତୋଷି ମୁହିଁ ମାଗିଲି ଏମନ୍ତ
ସୁପୁତ୍ର ମଧ୍ୟେ ଜଗତେ ଲେଖିବେ ଯେମନ୍ତ ।

ଦ୍ୱାଦଶ ବରଷ କଲି ସଙ୍ଗମେ ମୁଁ ସ୍ନାନ
ପ୍ରୟାଗରେ କଲି ଯାଇ ମାଧବ ଦର୍ଶନ ।
ତହିଁ ପୁଣି ସତ୍ୟକଲି ହୋଇବି ଅବୋଧ
ପରଦାର ଦୋଷେ ମୁହିଁ ନୋହିବି ସେ ନନ୍ଦ୍ୟ
ନର୍ମଦା ଆବର କାଶୀଖିର ଭାଗୀରଥୀ
ବୈତରଣୀ କୃଷ୍ଣାବେଣୀ ନଦୀ ସରସ୍ୱତୀ ।
ତୀର୍ଥମାନ ବୁଲି ମୁହିଁ କଲି ଏଥି ବାଞ୍ଛା
ପରଦାର ଶୃଙ୍ଗାରେ ନ ବଳେ ଯେହ୍ନେ ଇଚ୍ଛା
ପରଦାରରୁ ହରଣୁ ନାହିଁ ଆନ ପାପ
କୌଶିକୀରେ ସ୍ନାନ କଲି ନର୍ମଦାରେ ତପ ।
ପାତାଳଗଙ୍ଗା କାବେରୀ ଆବର ତ୍ରିବେଣୀ
ସଂକଳ୍ପ କରି ଛାଡ଼ିଲି ପରଦାର ପୁଣି ।
ସିଂହବେଣୀ ଗୋଦାବରୀ ତୀର୍ଥ ମଣିଭଦ୍ରା
ମାଇଲି ପଞ୍ଚଇନ୍ଦ୍ରିୟ କଲି ଯେ ସମୁଦ୍ରା ।
ସୁଭଦ୍ରା ବୋଇଲେ ମୁହିଁ ନୁହେଁ ପରଦାର
ତୋତେ ପ୍ରଦାନ କରିବେ ମୋତେ ଚକ୍ରଧର
ମାୟାବତୀ ମନ୍ତ୍ର ପଢ଼ି ଚାହିଁଲା ଅପାଙ୍ଗେ
ଭେଦିଲା ମଦନ ଶର ଅର୍ଜ୍ଜୁନର ଅଙ୍ଗେ ।
ମାୟାବତୀର ଯେବଣ ଧୂଳିମନ୍ତ୍ର ବୋଲି
ବାମପାଦ ରଜ ଦେଇ ପାର୍ଥ ଅଙ୍ଗେ ବୋଳି
ସାଧନା ବିଦ୍ୟାରେ ବଶ ହେଲେ ଧନଞ୍ଜୟ
ମଦନ ଆରତେ କମ୍ପେ ତାହାଙ୍କର କାୟ ।
ଅର୍ଜ୍ଜୁନ ଯେ ଧରିଥିଲା ସୁଭଦ୍ରାର ବାଳ
ବାଳଛାଡ଼ି ସୁଭଦ୍ରାକୁ ଘେରି କଲା କୋଳ ।
ଦେଖ ଆହେ ମହାରାଜା ସାଧନାର ଗୁଣ
ପରମ ଯୋଗୀ ପାର୍ଥଙ୍କ ଭାଙ୍ଗିଦେଲା ଟାଣ ।
ସୁଭଦ୍ରାକୁ କୋଳେ ନେଇ ବସାଇଲା ପାର୍ଥ
ବହୁତ ବିନୟ ହୋଇ ବୋଲେ ପରମାର୍ଥ ।
ଯଦୁବଂଶେ ଉପୁଜି ତୁ ହେଲୁ ହୀନମାନ
ସ୍ତିରୀକୁଳେ ଜାତ ହୋଇ ଏତେକ ଅଜ୍ଞାନ ।
ପ୍ରାଣୀଙ୍କ ସୁଖ ଶୃଙ୍ଗାର ରସ ବିଧି କଲା
ଲୋଭ ଆଚରି ଅଳପେ ପ୍ରାଣୀ ସିନା ମଲା ।
ନ ରହଇ ପାଣି କେବେ ଭାଙ୍ଗିଗଲେ ବନ୍ଧ
ଅଳପକେ ଦୋଷ ହୋଇ ତୁଟଇ ତା ବନ୍ଧ ।
ଖଣ୍ଡିଲା ପ୍ରାଣୀର ଶତବରଷ ଆୟୁଷ
ପକାଇଲା ଏତେକ ନ ଜାଣି ମହାରସ ।

ଯେତେକ କଷ୍ଟ ହେଲା ପୁଣି ଏଥି କାୟାରୋଷ୍ଟି
ଅଚେତନ ଅଙ୍ଗନରେ ଦଣ୍ଡ ମହୀ ଲେଟି ।
ତିରିଷ ବରଷେ ପୁଣି ହୋଇଲେ ପୁରୁଷ
ସ୍ତିରୀଏ ହୋଇଲେ ଜାଣ ବର୍ଷ ଅଷ୍ଟାଦଶେ ।
ଏସନ ସମୟ ଜାଣ ଆଗୋ ବୟସ୍ଥିତି
ସ୍ତିରୀପୁରୁଷ ସଂଯୋଗେ ଅନୁକୂଳ ଗୋଟି ।
ପ୍ରଥମ ଶୃଙ୍ଗାର ପାଇ ବଢ଼ିବ ଯୁବତୀ
ତିରିଶ ଦିବସ ଯାଏ ଯିବ ଦିନରାତି ।
ତିରିଶ ଦିନେ ହୋଇବ ପୁଣି ପୁଷ୍ପବତୀ
ଅଶୁଦ୍ଧ କାୟା ହୋଇବ ନ ଛୁଇଁବ ପତି ।
ଶୁଦ୍ଧକାୟା ହେବ ପୁଣି ପାଞ୍ଚଦିନ ଗତି
ଶୁଦ୍ଧସ୍ନାନ କରି ଜଳେ ସେ ଦିନ ଯୁବତୀ ।
ସପତମ ଦିନେ ଶୁଦ୍ଧ ହୋଇବ ତା ଅଙ୍ଗ
ସ୍ତିରୀ ପୁରୁଷ ହୋଇବେ ଏକତ୍ରରେ ସଙ୍ଗ ।
ଧାତାହିଁ ସର୍ଜନା କଲା ଘରରେ ରମଣ
ଦିବସକେତନେ ଶୃଙ୍ଗାର କଲେଟି ମରଣ ।
ଏ ମାର୍ଗେ ଥିଲେ ଅଭୁଟ ହୁଅଇ ଯେ କାୟ
ନଷ୍ଟକୁଳ ହୋଇ ସ୍ୱର୍ଗ ଶରୀର ନିର୍ଭୟ ।
ସାଧିବ ଉଜାଣି ଛନ୍ଦ ପଞ୍ଚଗୋଟି ଇନ୍ଦ୍ରି
ଚଞ୍ଚଳା ସ୍ତିରୀ ସାଧିବ ଧ୍ୟାନମାର୍ଗ ଛନ୍ଦି ।
ଜାଣ ସେ ପୁରୁଷ ଗୋଟି ଅଟଇ ନିଶ୍ଚଳ
ଯେସନେକ ସିନ୍ଧୁଜଳ ନ ଲଂଘଇ କୂଳ ।
ସ୍ୱପୁରୁଷେ ପ୍ରୀତି ଆଗେ ସ୍ୱଦାରରେ ରତି
ଏତେ ବାଗେ ଥିଲେ ଆୟୁ ବର୍ଦ୍ଧିତ ହୁଅନ୍ତି ।
ମୋତେ ପ୍ରଦାନ କରିବେ କୃଷ୍ଣ ଯେବେ ତୋତେ
ଏଥିରୁ ସୁଲଭ ଆଉ ଅଛି କି ଜଗତେ ।
କେଉଁ ସୁଲଭ ହୋଇବ ତୋର ଅକାରଣ
ଘୃତ ଭୋଜନ ନିମନ୍ତେ ତୁଷେ କି ବ୍ରାହ୍ମଣ ।
ନିଧି ପ୍ରସଙ୍ଗେ ଦାରିଦ୍ର୍ୟ ଯାଏ ଯେହ୍ନେ ଘୁଞ୍ଚି
ଏମନ୍ତେ ପରମ ଅର୍ଥ କନ୍ୟା ସବ୍ୟସାଚି ।
ବୋଇଲେ ଉକଟ ମାଂସ ଶରୀର ଯୁକତେ
କାମ ସାଗରୁ ତରିବ କହ ମୁଁ କେମନ୍ତେ ।
ଯଦ୍ୟପି ପଞ୍ଚଇନ୍ଦ୍ରିୟ ମାରିଥାରି ଯତି
ସ୍ତିରୀ ମୁଖ ଦେଖି କାମେ ଭୋଳହୁଏ ମତି ।
ମାୟାବତୀର ଅଞ୍ଜନ ଯେବଣ ଅପାଙ୍ଗେ
ଚାହାନ୍ତେ ମଦନ ଶର ଭେଦେ ପାର୍ଥଅଙ୍ଗେ ।

ଗୁଡ଼ାକ ସେ ନସ୍ତାପର ଭାଙ୍ଗିଲ ତା ଦମ୍ଭ
ସୁଭଦ୍ରାକୁ କୋଳେ ଧରି ବହେ ପ୍ରୀତିଭାବ ।
ମାନିନୀ ଅବସ୍ଥା ପାଇ ହେଲ ମାନବତୀ
ଏକାନ୍ତେ ସୁଭଦ୍ରା ତେଜେ ବଚସ ମଥାପୋତି ।
ସୁନ୍ଦର ନସ୍ତାପଣ ଉପଣୀର ଠାଣ
ସ୍ପୃହା ପାଇ ପାର୍ଥ ଅଙ୍ଗେ ଭେଦେ ପଞ୍ଚବାଣ ।
ସୁଭଦ୍ରା ରୁଷନ୍ତେ ପାର୍ଥ ବୋଲଇ ସରାଗେ
କାମଦେବ ନାଶ କର ବାମଦେବ ଯୋଗେ
ସୁଭଦ୍ରା ବୋଇଲେ ମୋତେ ଛାଡ଼ ଛାଡ଼ ପାର୍ଥ
ଅପ୍ରଭୃଷ୍ଟା ସ୍ତ୍ରୀଙ୍କୁ ତୁ ଛୁଇଁବୁ କେମନ୍ତ ।
ତୁ ମହା ପଣ୍ଡିତ ପୁଣି ଧାର୍ମିକ ସୁଶୀଳ
ସାତ ସତ ହିୟାରେ ତୁ ବାଞ୍ଛୁ ଦିନକାଳ ।
ଆହେ ଗଉଡ଼ୁଣି ତୁମ୍ଭ ଅଟୁ ଭଲ ଜାତି
ନିର୍ଲଜ୍ଜ ଦୋଗୁର ପୁଣି ଅଟୁ ତ ଅସତୀ ।
କେମନ୍ତେଣ ଛୁଉଁ ମୋତେ ଛାଡ଼ ଛାଡ଼ ବୀର
ନ ହରିବ ପର ପରଧନ ପରଦାର ।
ଭ୍ରମ କରନ୍ତ ତୁମ୍ଭେ ତୀର୍ଥ ତୀର୍ଥ ବୁଲି
ଜଗନ୍ନାଥଙ୍କ ବାରତା କହିବ ମୁଁ ବୋଲି ।
ଅଛଲି ତୁମ୍ଭ ପାଖକୁ ତୁମ୍ଭେ ବଳେ ଧର
ମୁହିଁ ତ ଅବଳା ତୁମ୍ଭେ ବଳବନ୍ତ ବୀର ।
ଯମଙ୍କୁ ଭୟ ତୁମ୍ଭର ଥାଏ ପର ଚେଉ
ତାର ଭଗିନୀକି ବଳେ ଧରୁଛ କେମନ୍ତେ ।
ଜାଣିଲି ପାଣ୍ଡବ ତୁମ୍ଭେ ଅଟ ଜାର ଜାତି
ତେଣୁ ବଳେ ଧରି ମୋତେ କରୁଛ ଏମନ୍ତ
ଛାଡ଼ ଛାଡ଼ ଗୁରୁପତ୍ନୀ ଅଟେ ମୁଁ ତୁମ୍ଭର
ଦୁର୍ଯ୍ୟୋଧନ ଅଟେ ତୁମ୍ଭ ଜ୍ୟେଷ୍ଠ ସହୋଦର
ଏପରି ଅନୀତି ତୁମ୍ଭେ କରୁଛ କେମନ୍ତେ
ତୁମ୍ଭେ ପରା ନ୍ୟାୟ ମାର୍ଗେ ଥାଅ ଅବିରତେ
ଏମନ୍ତ ଭର୍ତ୍ସନା କଟୁ ବଚନ ସେ ବୋଲି
ଛାଡ଼ ଛାଡ଼ ବୋଲି ରାଗେ ପକାଇଲା ଠେଲି
ମାୟାବତୀର ଯେବଣ ସିଦ୍ଧମନ୍ତ୍ର ଗୁଣ୍ଡି
ଶଯ୍ୟାରେ ପକାନ୍ତେ କାମଜଳେ ପାର୍ଥ ବୁଡ଼ି ।
ସ୍ନେହ ଆଦରେ ତାହାଙ୍କୁ ଧଇଲେ ଅର୍ଜୁନ
ବୋଇଲେ ନନ୍ଦ ନନ୍ଦିନୀ ରଖ ମୋ ଜୀବନ ।
ସୁଭଦ୍ରା ବୋଇଲେ ତୁ ଯେ ପରଂ ବ୍ରହ୍ମଯୋଗୀ
ଏତେ ବଡ଼ ମୁଦ୍ରାକୁ କି ପାରିବୁ ତୁ ଭାଙ୍ଗି ।

ଅର୍ଜୁନ ବୋଇଲେ ତୁହି ବାଳିକା ଯୁବତୀ
ଏକାନ୍ତେ ଏତେ ନାଗରୀ ଅଟୁଟ ତୋ ଧୃତି
ମୋତେ ଗୋଚର ନୋହିଲା ତୋହର ଯେ ମାୟା
ଏବେ ମୁଁ ଜାଣିଲି ସ୍ତ୍ରୀ ଅଟନ୍ତି ନିର୍ଦ୍ଦୟା ।
ଯହୁଁ ସେ ମଦନେ ମନ ପ୍ରାଣ ଅସାଷ୍ଟମ
ଧଇଲା ଆକର୍ଷି ବଳେ ହୋଇ ମତିଭ୍ରମ ।
ସୁଭଦ୍ରା ଡାକ ଦଅଇ ଆଗୋ ସତ୍ୟଭାମା
ବଳେ କଟାଳ କରୁଛି ପାର୍ଥ ମୁହିଁ ବାମା ।
ଅବଳା ବାଳୁତ ସ୍ତ୍ରୀ ନ ଜାଣଇ କିଛି
ମୋତେ ବୀର ଧନଞ୍ଜୟ କଟାଳ କରୁଛି ।
କେବଣ ପଦାର୍ଥ ଏବା ଅଛି ମୋର ତହିଁ
ଏ ମୋତେ ମାଗଇ ମୁହିଁ ପାରିବଇଁ କାହିଁ ।
ଆକର୍ଷି ବହୁ ଅବସ୍ଥା ଦେଉଅଛି ମୋତେ ।
ଦେଖୁ ଦେଖୁ ଧର୍ମକୁ ଏ ଲଙ୍ଘୁଛି କେମନ୍ତେ ।
ସତ୍ୟଭାମା ବୋଇଲେ ଗୋ ନ କର ଝିଙ୍ଗାସ
ସ୍ତ୍ରୀ ସିନା ଉପେକ୍ଷନ୍ତି ପୁରୁଷଙ୍କ ଦୋଷ ।
ଏବେ ମାନ ଅଭିମାନ ଫିଟିଲା ତୋହର
ମୁଁ ଯାଉଛି ଜଗନ୍ନାଥ ଦେବଙ୍କର ପୁର ।
କବାଟ ପକାଇ ତହୁଁ ସତ୍ୟା ଗଲେ ହସି
ଅର୍ଜୁନ ପାଶେ ରହିଲେ ସୁଭଦ୍ରା ସୁକେଶୀ ।
ପ୍ରାଣଅପାନ ବ୍ୟାନୋଦାନ ସମାନ ମହାତ୍ମା
ଏକତ୍ରେ ମଦନ ଜଳେ ଭାସିଲେ ପଞ୍ଚାତ୍ମା ।
ହାସ୍ୟ ପରିହାସ ଆଦି ହୁଅନ୍ତେ ଏମନ୍ତେ
ରାତି ପୁହାଇଲେ କେନ ପଲ୍ୟଙ୍କେ ଏକାନ୍ତେ
ଅର୍ଜୁନ ବୋଇଲେ ଶେଷ ହୋଇଲାଣି ରାତି
ଯାଅ ଗୋ ସୁଭଦ୍ରା ବେଗେ ହେଉଛି ପାହାନ୍ତି
ସୁଭଦ୍ରା ବୋଇଲେ କପାଁ କହ ଅସଙ୍ଗତ
ମୋତେ ଦେଖି କପାଁ ଡରୁଅଛ କୁନ୍ତୀସୁତ ।
ଅର୍ଜୁନ ବୋଇଲା ଏ ଯେ ଗୁପତ ମିଳନ
ଗୁପତ ନୋହିବ ଏ କଥା ହୋଇବ ବିସ୍ତୀର୍ଣ୍ଣ ।
ମୋତେ ତ ଦୁଃଖିତ ଏବେ କଲୁ ପ୍ରାଣସହି
ବଳରାମ ଜାଣିଲେଟି ନ ବର୍ତ୍ତିବେ କେହି ।
ତୋର ଭୁବନକୁ ଏବେ ଚଳ ଯା ସୁଭଦ୍ରେ
ଯେମନ୍ତେ ନ ଜାଣନ୍ତି ଏ କଥା ରାମଚନ୍ଦ୍ରେ ।
ବେଳେ ଫାଲଗୁନ ଶେଷ ହୋଇଲାଣି ରାତି
ତେଜହୀନ ହୋଇଲାଣି ଔଷଧୀବଳ ଜ୍ୟୋତି ।

ଅର୍ଜୁନର ବଚନରେ ଚଳେ ମାହେଶ୍ୱରୀ
ଭୁଜରେ ଆପଣା ମେଡେ ଯାଇ ବିଜେକରି ।
ଏଥୁ ଅନନ୍ତରେ ପୁଣି ରଜନୀ ପ୍ରଭାତେ
ସ୍ନାନ ନିତ୍ୟକର୍ମ ଲାଗି ଚଳେ ଶ୍ରୀର ପାର୍ଥେ ।
ସ୍ନାନ ତର୍ପଣ ଆହ୍ନିକଙ୍କର ସଦ୍ୟସାତ
ଯାଇଣ ଦର୍ଶନ କଲେ ଦେବ ଶ୍ରୀପତିରି ।
ରୈବତ ପର୍ବତେ ହୁଏ ଯାହାର ବିଧାନ
ସାତବଂଶ ଘେନି ବିଜେ ରାମ ନାରାୟଣ ।
ବାଜଇ ଢୋଲ ମର୍ଦ୍ଦଳ କାହାଳି ମହୁରୀ
ଯାନ୍ତା ରସରଙ୍ଗେ ବିଜେ ସର୍ବ ନରନାରୀ ।
ବଶିଷ୍ଠ ଯେ ବିଶ୍ୱାମିତ୍ର ବ୍ୟାସ ବାସୁଦେବ
ଜଳକ୍ରୀଡାର ବିନୋଦେ ସକଳ ଯାଦବ ।
କର୍ପୂର ପଥର ଜଳ ସୁବାସିତ ପାଣି
ମାରନ୍ତି ପିଚକା ବୃଷ୍ଟି ଶିଟିର କି ଜାଣି ।
ଅନେକ ଜନ ଗହଳ ହେଲା ଜଳଘାଟେ
ବିକାଶଇ କଞ୍ଚନ ଯେ ତ୍ରୀନ ରଙ୍ଗଟେଟେ ।
ଅନେକ ସମ୍ଭାର ତହୁଁ କହିତ କେ ପାରି
ଖଟନ୍ତି ବହୁତ ଉପରେରେ ବିଦ୍ୟାଧରୀ ।
ଅର୍ଜୁନକୁ ସଙ୍ଗେ ଘେନି କୃଷ୍ଣ ବଳଦେବେ
ଜଳକ୍ରୀଡ଼ା ବିନୋଦରେ ବିଜେକଲେ ନାବେ
ଯାହାର ବିନୋଦ ଯୋଗୁଁ ସାର ନିତ୍ୟକର୍ମ
ରୈବତ ପର୍ବତେ ବିଜେ ଶ୍ରୀ ପୁରୁଷୋତ୍ତମ ।
ଅନେକ ବିହୁଡ଼ି ଦୀପ ଲାଗିଲାକ ହୁଳା
ରଥରେ ଆଲୁଅମୟ ଦିଶେ ଦିଗମାଳା ।
ବିଜୟ ଜଗମୋହନ ଭୁବନ ଦ୍ୱାରକା
ମଙ୍ଗଳ ଧ୍ୱନି କରନ୍ତି ସକଳ ନାୟିକା ।
ଅନେକ ହରଷ ଦେଖି ଦ୍ୱାରକାର ନାରୀ
ଅର୍ଜୁନକୁ ସଙ୍ଗେ ଘେନି ବିଜେ ନିଜପୁରୀ ।
କର୍ପୂର ତାମ୍ବୁଳ ଭୁଞ୍ଜି ପ୍ରଭୁ ଜଗନ୍ନାଥ
ଶୟନ ମନ୍ଦିରେ ବିଜେ ଶ୍ରୀରବର ପାଥ ।
ଶ୍ରୀଜଗନ୍ନାଥଙ୍କୁ ପୁଚ୍ଛି ଦେବୀ ସତ୍ୟାବତୀ
ଅର୍ଜୁନ ସୁଭଦ୍ରାଙ୍କର ବଢ଼ିଲା ପୀରତି ।
ଧନ୍ୟ ମହିମା ସେ ମାୟାବତୀର ଯେ ମନ୍ତ୍ର
ଏକ କବାଟ ଛୁଇଁଲେ ଫିଟେ ସାତଯନ୍ତ୍ର ।
ଅନେକ ସାନନ୍ଦେ ସତ୍ୟଭାମା ଏ କହିଲେ
ଶୁଣିଣ ଶ୍ରୀଜଗନ୍ନାଥ ସାନନ୍ଦ ହୋଇଲେ ।

ଜୟ ରୁକ୍ମିଣୀବଲ୍ଲଭ ଜୟ ଜଗନ୍ନାଥ
ଜୟ ଜୟ ଜାମ୍ବବତୀ ଦେବୀ ପ୍ରାଣନାଥ ।
ଜୟ ଜୟ ସତ୍ୟଭାମା ହୃଦୟ ବଲ୍ଲଭ
ଜୟ ଜୟ ପଦ୍ମନାଭ ଯଦୁବ ମାଧବ ।
ଜୟ ଜଗମୋହନ ଭୁ ତୁଳସୀର ପତି
ଜୟ ଜୟ ତୁଳସୀର ବଲ୍ଲଭ ଶ୍ରୀପତି ।
ଜୟ କମଳା ବଲ୍ଲଭ ଶ୍ରୀପୁରୁଷୋତ୍ତମ
ଜୟ ଜୟ ଚଞ୍ଚଳାର ହୃଦୟ ଯେ ଧାମ ।
ଜୟ ଜୟ କମଳାର ହୃଦୟ ବିହାରୀ
ଜୟ ଜୟ ଅଷ୍ଟପାଟବଂଶୀ ମନୋହାରୀ ।
ଜୟ ଜୟ ମାଳତୀର ବଲ୍ଲଭ ମାଧବ
ଜୟ ଜୟ କାଳନ୍ଦୀର ବଲ୍ଲଭ ଶ୍ରୀ ଦେବ ।
ଜୟ ଜୟ ନୀଳଗିରିପତି ଚକ୍ରପାଣି
ଜୟ ଜୟ ଦେବଙ୍କର ମଉଡର ମଣି ।
ଜୟ ଶରଣବତ୍ସଳ ଜୟ ମଧୁରିପୁ
ଜୟ ପରମପୁରୁଷ ନୀଳାମ୍ବର ବପୁ ।
ଜୟ ଜୟ ମନୋହର ଗୋପାଳ ମଦନ
ଜୟ ଜୟ ମହାଲକ୍ଷ୍ମୀ ଦେବୀର ଜୀବନ ।
ଜୟ ଶ୍ରୀମତୀବଲ୍ଲଭ କମ୍ବୁ—ଚକ୍ରପାଣି
ଜୟ ଶାରଳା ଦାସର ଏ ମଙ୍ଗଳ ବାଣୀ ।
ଇତି ଶ୍ରୀମହାଭାରତ ମଧ୍ୟପର୍ବ କଥା
ସଂକ୍ଷେପି ତା କହିବାକୁ ମୁହିଁ କର୍ଣ୍ଣ ଜ୍ଞାତା ।
ଅଗାଧ ସମୁଦ୍ର ମୁଁ କି ତରିବାକୁ ଶକ୍ୟ
ନିରୁପି ତା କହିବାକୁ ନୁହଇ ମୁଁ ଦକ୍ଷ ।
ମହାଭାରତ ଅମୃତ ରସମୟ ବାଣୀ
ସଂସାର ଜନଙ୍କ ହିତେ ସଞ୍ଚିଲି ମୁଁ ଆଣି ।
ଶୁଣି ସୁଜ୍ଞଜନମାନେ ନ ଧରିବ ଦୋଷ
ଶୂଦ୍ରମୁନି ଶ୍ରୀଶାରଳାଦାସର ଅଭ୍ୟାସ ।
ସୁଭଦ୍ରା ଦେବୀ ଯେ ବାସୁଦେବର ଭ୍ରସନେ
ଅର୍ଜୁନ ତାହାଙ୍କ ଚଳେ ଘନେ ପ୍ରତିଦିନେ ।
ବିଳସଇ ସୁଭଦ୍ରାକୁ ଘେନି ଫାଲଗୁନ
ବଢ଼ାଇଲେ ପିରତି ସେ ନନ୍ଦର ନନ୍ଦନ ।
ଦିବସରେ ହରଲୀଳା ଘନେ ଆତଯାତ
ଏମନ୍ତେ ତାଙ୍କ ପୀରତି ହେଲା ଦିନସାତ ।
ବୈଶାଖ ମାସ ଶୁକଳ ପଞ୍ଚମୀର ଦିନ
ସୋମବାର ରୋହିଣୀକୁ ବୃଷରାଶି ଜାଣ ।

ନବ ନାମରେ କଉଣ ଅଭିଗଣ୍ଡ ଯୋଗ
ମେଷ ସଙ୍କ୍ରାନ୍ତିର ଅଠେଶ ଦିନ ଭୋଗ ।
ସେ ଦିନ ବିଜୟ କରି ରୈବତ ପର୍ବତେ
ଚଳିଗଲେ କନ୍ୟାମାନେ ରେବତୀ ସଙ୍ଗତେ ।
ଜଳର ଭିତରେ ପଶି ଉତ୍ସବ ନଗରେ
କ୍ରୀଡ଼ା କରୁଛନ୍ତି କନ୍ୟାମାନେ ତା ଭିତରେ
ରେବତୀ ସୁଭଦ୍ରା ଜଳକ୍ରୀଡ଼ା କରି ଆସି
ଦଶଶ ସହସ୍ର କନ୍ୟା ଅଷ୍ଟପାଟକଂଶୀ ।
ପରଧାନ କନ୍ୟାଙ୍କର ସୁରଙ୍ଗ ପଡମା
ପମାର ଜଳ ପିଚକା ମାରନ୍ତି କାମିନୀ ।
ସମସ୍ତ କନ୍ୟା ହୋଇଣ ତହିଁ ଏକମେଳ
କ୍ରୀଡ଼ା କରନ୍ତି ଏକକୁ ଆନ ଶିର ତୋଳ ।
ଛଳ ଅଏଁଳା ସହିତ ଚତୁଃସମ ଗୋଳ
ପରହାସରେ ହୁଅନ୍ତି ସର୍ବେ ବୋଳାବୋଳ ।
କେ ଜଳ ଭିତରେ ଥାଇ ଜଳ ଫିଙ୍ଗି ଦିଅନ୍ତି
କେହି ବୁଡ଼ିଯାଇ କାହାଗୋଡ଼କୁ ଧରନ୍ତି ।
ପରହାସେ ଉଚ୍ଛୁଡ଼ନ୍ତି ଗୁପ୍ତ ହୋଇ ଜଳେ
ଠାବରେ ବୁଡ଼ି ଉଠନ୍ତି କ୍ରୀଡ଼ାଭାବ ଭେଳେ
ବେଢ଼ି କ୍ରିଡ଼ନ୍ତି ଜଳରେ ପଶି ସ୍ତ୍ରୀଗଣବୃନ୍ଦ
ସବୁ ସ୍ତ୍ରୀଗଣଙ୍କର ପୁଣି ସୁଭଦ୍ରା ନନ୍ଦେ ।
ପରହାସେ ବେଢ଼ି ଗଲେ ସମସ୍ତ ଯୁବତୀ
କେ ତାହା ଶିରେ ହଳଦୀ ଅଏଁଳା ଲେପନ୍ତି
କେହି ପିଚକାରି ମାରି ଫିଙ୍ଗି ଦିଅନ୍ତି ପାଣି
କେ ତାହା ଶିରରେ ପାଣି ନିହୁଡ଼ନ୍ତି ଆଣି ।
କେ ବାଳ ଧରି ଦେଖନ୍ତି ଭୁଜ ଦୁଇ ଧରି
ପିନ୍ଧିଲା ବସନ କେହି ନିଅନ୍ତି ଉଚ୍ଛୁଡ଼ି ।
ବିବସନା ହୋଇଲା ସେ ନନ୍ଦର ନନ୍ଦିନୀ
ଜଳେ ଡେଇଁ ପଡ଼ିଲା ସେ ମାନିନୀ କାମିନୀ ।
କୋଳକରି ସୁଭଦ୍ରାକୁ ରେବତୀ ଧଇଲେ
ଟେକି ଘେନି ଆସି ତାକୁ କୂଳରେ ଥୋଇଲେ
ସୁଭଦ୍ରା ଉରୁରେ ଦଶେ ନଖକ୍ଷତ ଚିହ୍ନ
ଦେଖି ରେବତୀ ତାହାକୁ ବୋଲନ୍ତି ବଚନ ।
କେବଣ ପୁରୁଷ ପଶି କଲା ଏହି କର୍ମ
ସୁଭଦ୍ରା ତା ସଙ୍ଗେ ପଡ଼ି ହେଲା ମତିଭ୍ରମ ।
ସ୍ଥଳରେ ଦେଖି ତାହାକୁ କଲେ ଆଣି ଉଷ
ପ୍ରଥମ ଚନ୍ଦ୍ରମ କି ତା ଉପରେ ପାଏ ଶୋଷ ।

ରେବତୀ ବୋଇଲେ ସଖି ସତକଥା କହ
କେବଣ ପୁରୁଷ ସଙ୍ଗେ ବଢ଼ାଇଲୁ ସ୍ନେହ ।
ଲଗାଇଲୁ ଏଡ଼େ ବଡ଼କୁଳେ ତୁ କଳଙ୍କ
କେବଣ ପୁରୁଷ ଦେଲା ତୋ ଅଙ୍ଗରେ ଅଙ୍କ ।
ତୁ ଅବା କରିଲୁ ତୋର ସ୍ୱାମୀମାନେ ଜନ୍ମେ
ସେ କେଉଁ ମହାତ୍ମା କଲା ଏ କର୍ମ କି ଭ୍ରମେ
ଯେଉଁ ଭୁବନକୁ ଶଙ୍କା କରେ କାଳଯମ
ବିଡ଼ମ୍ବନା କଲା ତୋତେ କେଉଁ ମହାଦ୍ରୁମ ।
ସାଧୁପୁତ ବୋଲିବା ନା ତାହାକୁ ଏ କାଳେ
ରାମ କୃଷ୍ଣ ଭଗିନୀକୁ ହରିଲା ସେ ବଳେ ।
ସାଧୁ ସାଧୁ ମହିମା ନା ବଳ ଦର୍ପମାନ
ସାମାନ୍ୟ ନୁହଇ ସେହି ଅଟେ ବଡ଼ଜାଣ ।
ଯେହୁ ତୋତେ ବିଡ଼ମ୍ବନ କଲା ଗୋ ସୁଭଦ୍ରେ
ପଳାଉ ସେ ନ ଜାଣିଲୁ କୃଷ୍ଣ ରାମଚନ୍ଦ୍ରେ ।
ସୁଭଦ୍ରା କର୍ଣ୍ଣରେ ଡେଶା କହିଲେ ଏମନ୍ତ
ତୋତେ ବିଡ଼ମ୍ବନା କଲା କି ଗୋ ବୀର ପାର୍ଥ
କ୍ଷତ୍ରିୟବର ସୁନ୍ଦର ସେ ପରମ ଯୋଗୀ
ସେହି ହୋଇଛି କି ତୋର ଅଙ୍ଗ ବଇଭୋଗୀ
ଶୁଣି ସୁଭଦ୍ରା ରେବତୀ ଚରଣେ ପ୍ରଣତ
ମୁହିଁ ତୋ ଶରଣ ରକ୍ଷା କର ଗୋ ସଙ୍ଗାତ ।
ମୁହିଁ ବିରହିଣୀ ହୋଇ କାମେ କଲି ଇଚ୍ଛା
ତୁ ପରମା ସାଧବୀ ଗୋ ମୋତେ କର ରକ୍ଷା
ସ୍ତ୍ରୀଏ ଜାଣନ୍ତି ସିନା ସ୍ତ୍ରୀଙ୍କ ବେଦନା
ଅନଙ୍ଗ ନାଗରେ ଦଶ ପୁରୁଷହିଁ ସିନା ।
ରେବତୀ ଚରଣ ତଳେ ପଡ଼ି ପୁଣି କହି
କେଶବାସ ଅସମ୍ଭାଳ ହୋଇ ଦେବୀ କାନ୍ଦି ।
ଦନ୍ତରେ ତୃଣ ଗଳେ କୁଠା ଏକ ଭରି
ଅନାଥକୁ ଅନୁଗ୍ରହ କର ମାହେଶ୍ୱରୀ ।
ହୋଇନହିଁ ମୁହିଁ ମନ୍ଦ ମହାପାପୀ ପ୍ରାୟ
ଅକୁଳେ ଦୂଷିତ ହୋଇ ନାହିଁ ମୋର କାୟ
ବଂଶେ ନିଷ୍କଳଙ୍କ ପାର୍ଥ ସେ ପରମ ଯୋଗୀ
ମୁହିଁ ଦୁଷ୍କୃତ କରିଲି ସେ ପୁରୁଷ ଲାଗି ।
ରେବତୀ ବୋଇଲେ ମୁହିଁ କରିବଇଁ ଗୋପ୍ୟ
ହତ୍ୟା ଆଉ ପରଦାର ଅଟେ ବ ପାପ ।
ଏ କଥା ଗୋପନ କଲେ ନୁହେ କିଛି କାର୍ଯ୍ୟ
ଅବଶ୍ୟ ଏ ବିଘଟନ ହୋଇବଇଁ ଲାଜ ।

ଯଦ୍ୟପି ହରିଲ ତୋତେ ହେଇ ସେ ଅଜ୍ଞାନା
ଯାଉ ଅର୍ଜୁନ ଦ୍ୱାରକାପୁରୁ ତୋତେ ଘେନ ।
ହର ସପକ୍ଷ ସହାୟ ସଦା ଅର୍ଜୁନଙ୍କୁ
ସମସ୍ତେ ଶାନ୍ତ କରିବେ ପଛେ ସେ ରାମଙ୍କୁ ।
ମାୟାବତୀ ସତ୍ୟଭାମା ହୋଇଲେ ପ୍ରବେଶ
ପ୍ରଣମି ମିଳିଲେ ଯାଇ ରେବତୀଙ୍କ ପାଶ ।
ସୁଭଦ୍ରା ବିନୟ କରି ବୋଲୁଛନ୍ତି ବାଣୀ
ରେବତୀ ତୁଷ୍ଟ ହୋଇଲେ ସେ ବଚନ ଶୁଣି ।
ସତ୍ୟଭାମା ବୋଇଲେ ଗୋ କହ ଠାକୁରାଣୀ
ସୁଭଦ୍ରାର ତୁମ୍ଭର ତ ଗୁପତ ଭଜେଣୀ ।
ଆମ୍ଭଙ୍କୁ ଦେଖି ଧରୁଛ କପଟ ମୌନବ୍ରତ
କେବଣ କଥା କହ ଗୋ ନ କର ଗୁପତ ।
ରେବତୀ ବୋଇଲେ ତୁମ୍ଭେ ଶୁଣ ଆମ୍ଭ ବାଣୀ
ସୁଭଦ୍ରାକୁ ବିଡ଼ମ୍ବନା କଲା ଫାଲଗୁନ ।
ସତ୍ୟଭାମା ବୋଇଲେ କି ସୁଭଦ୍ରାର ଦୋଷ
ବିଭା ନକର କଲ ଗୋ ଏହାକୁ ତ ନାଶ ।
ତୁମ୍ଭେ କି ନ ଜାଣ ସ୍ତ୍ରୀମାନଙ୍କର ବ୍ୟଥା
ଅନଙ୍ଗର ଶରଘାତ ଏ କାହୁଁ ସହନ୍ତା ।
ଶୁଣ ଦେବୀ ଏ କାର୍ଯ୍ୟ ଏ କଲା ଯେବେ ହୁଡ଼ି
ସ୍ତ୍ରୀଜନେ ଏ କଥା ଗୋ ବିସ୍ତର ନ କର ।
ଯେମନ୍ତେ ଏ କଥାମାନ ନ ଜାଣନ୍ତି କେହି
ଦୋଷ ଉପେକ୍ଷା କରିବା ସଖି ତୁମ୍ଭେ ସହି ।
ଏସନକ ବିସ୍ତରନ୍ତେ ପ୍ରବେଶିଲା ନିଶି
ବାହୁଡ଼ ଯାଅ ବୋଇଲେ ହୃଷୀକେଶ ଆସି ।
ଚଳିଲେ ସୁନ୍ଦରୀମାନେ ଯେ ଯାହା ଭୁବନେ
ନିଜ ସ୍ଥାନେ ବିଜେ କଲେ ପ୍ରଭୁ ଜନାର୍ଦ୍ଦନେ
ସନ୍ଧ୍ୟା ଷଟକର୍ମ ସାରି ଦେବ ବାସୁ   ବ
ଅର୍ଜୁନଙ୍କୁ ସଙ୍ଗେ ଘେନ ବିଜୟ ମାଧ
ମଣୋହି ସାରଣ ଦେବ ଅବକାଶ   ଜ
ପାର୍ଥକୁ ବୋଲନ୍ତି ଯାଇ ଶୁଅ ଦେବର   ।
ଦିବ୍ୟ ପଲ୍ୟଙ୍କରେ ବିଜେ କଲେ ସବ୍ୟସାଚି
ନିଶ୍ଚିନ୍ତ ହୋଇ ଶୋଇଲେ ତା ଦେଖି ଶ୍ରୀବତ୍ସ
ବାହୁଡ଼ି ଦେବ ବିଜୟ କଲେ ନିଜ ସ୍ଥାନେ
କବାଟ କିଳି ଶୋଇଲେ ଫାଲ୍‌ଗୁନ ଆମ୍ଭନେ
କରେ ଅର୍ଘ୍ୟଥାଳି ଘେନ ନନ୍ଦର ଦୁଲାଳୀ
ଦେଖିଲେ ପାର୍ଥ କବାଟ ଯତ୍ନେ ଅଛି କିଳି ।

ପଢ଼ିଲେକ ମାୟାବତୀ ମନ୍ତ୍ର ମହାସତୀ
ନୁଅନ୍ତେ ସତୀ କବାଟ ଫିଟିଲା ତଡ଼ିତ ।
ଦେଖି ଧନଞ୍ଜୟ ମନେ ଅନେକ ହରଷ
ଅର୍ଘ୍ୟ ବନ୍ଦାଇ ସୁଭଦ୍ରା ପ୍ରଣମି ଅଶେଷ ।
ସୁଭଦ୍ରା ଅର୍ଜୁନଙ୍କର ହେଲା ମେଳ ଭାବ
କହିଲେକ ରତିରଙ୍ଗ ଅନେକ ପ୍ରସ୍ତାବ ।
ଯୁବା ଯୁବତୀଙ୍କ ଅଙ୍ଗେ ନ ଭେଦିଲା ନିଦ
ଦୁହିଙ୍କ ଚିତ୍ତରେ ନାହିଁ କିଞ୍ଚିତରେ ଖେଦ ।
ରତିଶାସ୍ତ୍ର ପଢ଼ିଅଛି ନନ୍ଦର ନନ୍ଦନୀ
କାମଶାସ୍ତ୍ରରେ ନିର୍ଜିତ ବୀର ଫାଲଗୁନ ।
ଚନ୍ଦ୍ରକଳା ଭେଦ ଜାଣ ପାଣ୍ଡବ ସୁନ୍ଦର
ପରସ୍ତ୍ରୀ ପ୍ରସଙ୍ଗ ନାହିଁ ଶରୀରେ ତାହାର ।
ତ୍ରୈଲୋକ ଜିଣିବାକୁ ସମର୍ଥ ଯେ ଯୋଗୀ
ଉଚ୍ଚାଟ ମନ୍ତ୍ରେ ସୁଭଦ୍ରା ତାକୁ କଲା ବନ୍ଦୀ ।
ଏମନ୍ତବେଳେ ପ୍ରଖର ହୋଇଲା ରଜନୀ
ଉଲୂକ ବିଦ୍ୟାକୁ ପଢ଼ି ଆସଇ ତରୁଣୀ ।
ଆପଣାର ପାଦଧୂଳି ଧଇଲେକ ଧାଡ଼ି
ମନ୍ତ୍ର ସୁମରଣ ତାହା କପାଳେ ବୋଳନ୍ତି ।
ଅର୍ଜୁନ ପାଶକୁ ସେହି ଆସଇ ଝଟତି
ସମସ୍ତଙ୍କୁ ଦେଖେ ତାକୁ କେହି ନ ଦେଖନ୍ତି
ଉଲୂକ ବିଦ୍ୟାର ଗୁଣ ଏମନ୍ତ ଅଟଇ
ତାହା ସୁମରଣ ଦେବୀ ହରଷେ ଆସଇ ।
ମନ୍ତ୍ର ସୁମରି ସୁଭଦ୍ରା ଆସିଲେ ଯେ ଖରେ
ଆପଣା ମନ୍ଦିରେ ମିଳି ନିତ୍ୟକର୍ମ ସାରେ ।
ଆହେ ଚଇତନ ମାୟାମନ୍ତ୍ର ଏହି ବିଧି
ଏମନ୍ତେ ଯେ ସାଧେ ତାର କାର୍ଯ୍ୟ ହୁଏ ସିଦ୍ଧି ।
ସୁଭଦ୍ରା ହସ୍ତରେ ଗୋଟି ମୂଳିକା ଯେ ଅଛି
ତାହାର ବଳେ ପାର୍ଥକୁ ବନ୍ଧ ସେ କରିଛି ।
ଶୁଣ ଆହେ ନୃପବର ଅଗସ୍ତ କହିଲେ
ମାୟାବତୀ ମନ୍ତ୍ରେ ଭଦ୍ରା ପାର୍ଥକୁ ମୋହିଲେ ।
ଏଥୁଅନନ୍ତରେ ତୁହେ ଶୁଣ ଆନ ବାଣୀ
କସ ଉଆଶ କଲେ ସେ ଦେବ ଚକ୍ରପାଣି ।
ଶୁଣ ସାବଧାନେ ଏହୁ ଅପୂରୁବ କଥା
ତାହା ଉଆଇ ଅଛନ୍ତି ଜଗତ କରତା ।
ଏ ମହାଭାରତ ଅତି ରହସ୍ୟ ପବିତ୍ର
ସୁଭଦ୍ରା ଦେବୀଙ୍କର ଯେ ବିବାହ ଚରିତ ।

ବୈଶାଖ ଶୁକ୍ଳପକ୍ଷ ପଞ୍ଚମୀର ନିଶି
ସୋମବାର ଅଟଇ ଯେ ରୋହିଣୀରେ ଶଶୀ ।
ସେ ଦିନେ ରାମ ଅଛନ୍ତି ପତ୍ନୀଙ୍କ ସଙ୍ଗଡ଼
ରେବତୀ ଯେ ପୁଚ୍ଛା କଲେ କରପଦ ଯୋଡ଼ି
ସ୍ୱାମୀ ତୁମ୍ଭର ଭଗିନୀ ସୁଭଦ୍ରା କୁମାରୀ
କାହାକୁ ପ୍ରଦାନ ତୁମ୍ଭେ କରିବ ବିଚାରି ।
ହସ୍ତିନଙ୍କ ସୋମବଂଶୀ ରାଜା ଦୁର୍ଯ୍ୟୋଧନ
ସୁଭଦ୍ରାକୁ ଶୁଭ୍ରକେଶୀ କରିବ ପ୍ରଦାନ ।
ଆଣିବା ନିମନ୍ତେ ମୁହିଁ ପେଷିଅଛି ଦୂତ
କାଲି କୁରୁବଳ ଘେନି ଆସିବ ସଙ୍ଗାତ ।
ହେ ଦେବୀ ତୁମ୍ଭେ ତାହାକୁ ଦେଖିଛ କି ନାହିଁ
ପଦ୍ମଗ ନାରାୟଣ ସେ ପ୍ରତ୍ୟକ୍ଷେ ଅଟଇ ।
ଲକ୍ଷେ ରାଜାଙ୍କ ମଉଡ଼ମଣି ସେ ରାଜନ
ଆପଣା ସମାନ ଜାଣ ହେବ ବନ୍ଧୁପଣ ।
ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ଉଦ୍ଧବ ଯେ ଗଲ ଦୁର୍ଯ୍ୟୋଧନଙ୍କୁ ନିମନ୍ତ୍ରି ।
ହସ୍ତିନା ଆସ୍ଥାନେ ବସିଅଛି କୁରୁସାଇଁ
ଏମନ୍ତ ସମୟେ ଦୂତ ପ୍ରବେଶିଲା ଯାଇ ।
ଦୁର୍ଯ୍ୟୋଧନଙ୍କ ଛାମୁରେ ଅକ୍ଷତ ଥୋଇଲେ
ତୁମ୍ଭଙ୍କୁ ସୁଭଦ୍ରା ବିଭା କରିବେ ବୋଇଲେ ।
କୁଙ୍କୁମ ଲେପନ କଲେ ତାହାଙ୍କ ଶରୀରେ
ପଞ୍ଚବର୍ଣ୍ଣ ମୁକୁଟକୁ ବାନ୍ଧିଲେକ ଶିରେ ।
ପୁରୋହିତଙ୍କୁ ବସାଇ କଲେକ ବରଣ
ସାଜ ସମଦଣ୍ଡ ଯିବା ଦ୍ୱାରକା ଏକ୍ଷଣ ।
ତାହା ଶୁଣି ଦୁର୍ଯ୍ୟୋଧନ ବହୁତ ହରଷ
ଦୂତକୁ ଗଉରବ ସେ କଲେକ ବିଶେଷ ।
ଯୁଧିଷ୍ଠି ଭୀମ ନକୁଳ ମନ୍ତ୍ରୀ ସହଦେବ
ବିଚାର ବାରତା କହେ କୁରୁରାଜ ଦେବ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ କୃପ ଶଲ୍ୟ ଭୂରିଶ୍ରବା
ଆଜ୍ଞା ଦେଲେ ରାଜା ଚାଲ ଦ୍ୱାରକାକୁ ଯିବା
ରାମ କୃଷ୍ଣଙ୍କ ଭଗିନୀ ସୁଭଦ୍ରା ଅଟଇ
ଦୁର୍ଯ୍ୟୋଧନଙ୍କୁ ବରିଲେ ରାମ ତାହା ପାଇଁ ।
ବଡ଼ ସମାରୋହେ କାଲି ହୋଇବ ଯେ ବିଭା
ଅନେକ ଦଣ୍ଡ ଘେନଣ କଉରବେ ଉଭା ।
ଅଶୀଲକ୍ଷ ତୁରଙ୍ଗମ ଚାରିଲକ୍ଷ ଗଜ
ରଥ ଚାରିଲକ୍ଷ ରେଖା ଚତୁରଙ୍ଗ ସଜ ।

ଅଷ୍ଟାଦଶ ଅକ୍ଷୌହିଣୀ କୁରୁବଳ ସାଜେ
ଅନେକ କଂସାଳ ଗାରତୁର ବାଦ୍ୟ ବାଜେ ।
ଶ୍ୱେତ ପାଟଛତ୍ର ଦଣ୍ଡ ଚାମର ସୁଆରି
ଏକ ପାଞ୍ଚଲକ୍ଷ ଉଭା ଶତଲକ୍ଷ ଚାରି ।
କେତେ କୋଟି ଶଙ୍ଖ ବାଜେ ସବୁ ସୁବର୍ଣ୍ଣର
ଗଉଡ଼େ ଆସନ୍ତି ରେଖା ତୁରଙ୍ଗ ଉପର ।
ପାତ୍ର ଅମାତ୍ୟ କୁମାର ମିତ୍ର କଉଜେନା
ମୁକୁଟ ବାନ୍ଧି ଆଗରେ ଉଭା ହୁନ୍ତି ସେନା ।
ଅନେକ ସମ୍ଭାର ଥାଟ କହି ତ କେ ପାରି
ଚଳନ୍ତି ସୈନ୍ୟ ଯୋଜନ ଚାରି ମାତ୍ରକରି ।
ଯୁଧିଷ୍ଠି ବିଦୁର ସଙ୍ଗେ ଆବର ଶକୁନି
ଚଳନ୍ତି ଏ ପଞ୍ଚଆଣି ଥାଟେ ସୈନ୍ୟ ଘେନି ।
ଦୁର୍ଯ୍ୟୋଧନ ବରବେଶ କହି ତ କେ ପାରି
ସହଦେବ ହସନ୍ତି ଯେ ନାକେ ହାତ ଭରି ।
ସହଦେବ ହାସ୍ୟ ଦେଖି ପୁଚ୍ଛନ୍ତି ବିଦୁରେ
ତୁହି ହସିଲୁ ଟିରେ ବାବୁ କେବଣ ବେଭାରେ
କହ ବାବୁ ଏ କଥାର ସନ୍ଦେହ ବାରତା
ତୁ ପଣ୍ଡିତ ମନ୍ତ୍ରୀବର ଅଟୁ ମହାଜ୍ଞାତା ।
ସହଦେବ ବୋଇଲେ ତ ହେଲା ବଡ଼ ରସ
ହେଉଛନ୍ତି କାହା କନ୍ୟାପାଇଁ ବରବେଶ ।
ବିଦୁର ବୋଇଲେ ରାମ ପେଷିଛନ୍ତି ଦୂତ
ସୁଭଦ୍ରାକୁ ବିଭା ହେବ ରାଜା କୁରୁନାଥ ।
ଏ କଥାଗୋଟି କଦାପି ନୋହିବ ଅନ୍ତର
ତାହା ବଚନ ଲଙ୍ଘିବ କେହୁ ମନ୍ତ୍ରୀବର ।
କହଇ ସେ ସହଦେବ ବସାଇ ଏକାନ୍ତେ
ବିଦୁର ସଞ୍ଜୟ ଆଉ ଯୁଧିଷ୍ଠି ସହିତେ ।
ବନବାସ ଯାଇଥିଲେ ବୀର ଫାଲଗୁନି
ଗୋହିହିକୁ ବଧ କରି ସତ୍ୟଭାମା ଘେନି ।
ରଇବତେ ରାମ ହରି କରନ୍ତି ଉତ୍ସବ
ଏମନ୍ତ ସମୟେ ଯାଇ ମିଳିଲେ ପାର୍ଥିବ ।
ଅନେକ ସାନନ୍ଦ ହେଲେ ଦେବ ମଧୁରିପୁ
ବହୁତ ବେଶ କରାଇ ଅର୍ଜୁନର ବପୁ ।
ବସନ୍ତ ଉତ୍ସବ ଦାନା ରୈବତ ପର୍ବତେ
ଅର୍ଜୁନ ଠାକୁର ଘେନି ବିଜେ ଜଗନ୍ନାଥେ ।
ଦିନେ କହି ପଠାଇଲେ ଗୋବିନ୍ଦ ରାମଙ୍କୁ
ସୁଭଦ୍ରାକୁ ପ୍ରଦାନ କି କରିବା ପାର୍ଥଙ୍କୁ ।

ରାମ ବୋଇଲେ ଯଦ୍ୟପି ଦେବାକ କୁମାରୀ
ଆମ୍ଭ ଭୁଲେ ହୋଇବ ଯେ ବନ୍ଧୁପ୍ରାଣେ ସରି ।
ପଞ୍ଚକଟକେ ଠାକୁର ମାନ ଚକ୍ରବର୍ତ୍ତୀ
ତାଙ୍କୁ ପ୍ରଦାନ କରିବା ସୁଭଦ୍ରା ସୁନ୍ଦରୀ ।
ବଳରାମ ବୋଲ ହରି ଖଣ୍ଡି ନ ପାରିଲେ
ଗର୍ଭେ ରାଗ ଧରି ବାହ୍ୟେ ସନ୍ତୁଷ୍ଟ ହୋଇଲେ
ବଳରାମ ବୋଇଲେକ ଯାଅ ହେ ଉଦ୍ଧବ
ତୁରିତେ ଦୁର୍ଯ୍ୟୋଧନକୁ ଘେନିଣ ଆସିବ ।
ରାମ ଆଜ୍ଞାରେ ଉଦ୍ଧବ ଆସି ଏ ନଗରୀ
ଦୁର୍ଯ୍ୟୋଧନ ନୃପତିଙ୍କୁ ନେଉଅଛୁ ବରି ।
ଜଗନ୍ନାଥଙ୍କର ଏଥି ନାହିଁ ସନମତ
ସୁଭଦ୍ରା ଅର୍ଜୁନ ସଙ୍ଗେ କରାଇଲେ ପ୍ରୀତି ।
ସୁଭଦ୍ରା ବଚନ ଯତ୍ନଂ ଅର୍ଜୁନ ନ କଲେ
ସୁଭଦ୍ରାକୁ ମାୟାବତୀ ମନ୍ତ୍ର ଶିଖାଇଲେ ।
ତେଣୁ ସୁଭଦ୍ରାର ବଶ ହେଲେ ସବ୍ୟସାଚ
ଅର୍ଜୁନ ସୁଭଦ୍ରା ଏକ ଯୋଗ ହୋଇଅଛି ।
ଯଦ୍ୟପି ଏ ଦୁର୍ଯ୍ୟୋଧନ ଯିବେ ବରବେଶେ
ଲଜ୍ଜା ପାଇବେ ଅନେକ ଲୋକ ଉପହାସେ
ଶୁଣିଣ ବିଷାଦ ହେଲେ ରାଜା ଯୁଧିଷ୍ଠିର
ବିଷାଦ ପାଇଲେ ଶୁଣି ସଞ୍ଜୟ ବିଦୁର ।
ଯୁଧିଷ୍ଠି ଦେବ କହିଲେ ଚାହିଁ ବିଦୁରଙ୍କୁ
ଏଥୁ ବ ହୁଡ଼ିଲେ ଲାଜ ନୋହିବ ଆମ୍ଭଙ୍କୁ ।
ବିଦୁର ବୋଇଲେ ଯେବେ ଏସନ ପ୍ରସ୍ତାବ
ଦୁର୍ଯ୍ୟୋଧନ ଶୁଣି କୋପ ଆମ୍ଭଙ୍କୁ କରିବ ।
ଆମ୍ଭେ ରହିବା ରୈବତ ପର୍ବତରେ ଯାଇ
ବାହୁଡ଼ନ୍ତୁ କୁରୁବୀରେ ତହୁଁ ଲାଜ ପାଇ ।
ପ୍ରଥମ ଜ୍ୱରେ ଅଗ୍ରାହ୍ୟ ଜାଣ ଅନ୍ନପାଣି
ପ୍ରଥମ ବୟସକାଳେ କହୁହିଁ ନ ଜାଣି ।
ରାଗୀ ବ୍ରାହ୍ମଣ ଯେ ମଦବିହ୍ୱଳିତ ହସ୍ତୀ
ଏହାଙ୍କୁ ବାରିଲେ ବାକ୍ୟ ବିଅର୍ଥ ହୁଅନ୍ତି ।
ଯୁଧିଷ୍ଠି ବୋଇଲେ ତୁମ୍ଭେ କହିଲ ଏମନ୍ତ
ଏ କଥାରେ ଲଜ୍ଜା ପୁଣି ହୋଇବ ବହୁତ ।
ଚଳଇ ସେ କୁରୁଆଟ ତ୍ରିବେଣୀର କୂଳେ
ରହିଲେକ ମନୋହର ବନେ ସନ୍ଧ୍ୟାକାଳେ ।
ସନ୍ଧ୍ୟା ସାରି ଭୋଜନ କଲେ ସେ ନିଅବକାଶେ
ମିଳିଲେକ ଭୀଷ୍ମ ଦ୍ରୋଣ କର୍ଣ୍ଣ ରାଜା ପାଶେ ।

ବିଦୁର ଯେ ହକାରିଲେ ଦ୍ୱାରକାର ଦୂତ
ସୁଭଦ୍ରା ଦୁର୍ଯ୍ୟୋଧନକୁ ଦେବାର ଯେ ସତ୍ୟ ।
ତୁମ୍ଭର ପେଷିବାବେଳେ କେ କେ ଥିଲେ ବସି
କାହା କାହା ଅନୁମତେ ତୁମ୍ଭେ ଏଥେ ଆସି
ରାଜା ଆଜ୍ଞା ପାଇ କହୁ ଅଛନ୍ତି ଉଦ୍ଧବ
ରାମ କୃଷ୍ଣ ଉଗ୍ରସେନ ନନ୍ଦ ବସୁଦେବ ।
ସାତ ବଂଶ ଯାଦବହିଁ ଥିଲେ ତହିଁ ପୂରି
ଆମ୍ଭଙ୍କୁ ପେଷିଲେ ନେଇ ସମ୍ମତି ସବୁରି ।
ଅଧିକ ଜଣେକ ପୁଣି ଦ୍ୱାରକାରେ ଅଛି
ଉଦ୍ଧବ ବୋଇଲେ ଏକ ଅଛି ସବ୍ୟସାଚୀ ।
ଶୁଣି ରାଜା ଦୁର୍ଯ୍ୟୋଧନ ସାନନ୍ଦ ହୋଇଲା
ଅର୍ଜୁନ ଯେବେ ଅଛଇ ଭଲଇଁ ହୋଇଲା
ବନବାସ ଯାଇ ପାଏ ଆସି ଦ୍ୱାରକକୁ
ସୋଦର ଥିଲେ ଉତ୍ସବ ଭଲ ଦେଖିବାକୁ ।
ଦୁର୍ଯ୍ୟୋଧନକୁ ବିଦୁର ବୋଇଲେ ଏକାନ୍ତେ
ସେ କନ୍ୟା ଆନର ବାର୍ତ୍ତା ପାଇଲୁଣି ଏଥେ
ରାଜା ବୋଲେ ଚନ୍ଦ୍ର କରେ ଯେ ପୁରକୁ ରକ୍ଷା
ମାନବ କ ପରୀକ୍ଷାରେ କାହାର ଭରସା ।
କେମନ୍ତେ ଏ ଅସମ୍ଭବ କହ ତୁମ୍ଭ ଭଳି
ଏ ବାରତା ପାଇଲେ କ ଜାଆଇଁବେ ହଳୀ ।
ରାଜା ବଚନେ ସମସ୍ତେ ହୋଇଲେକ ତୁନି
ଶୁଭେ ପ୍ରବେଶ ହୋଇଲେ ଆସି ସେ ରଜନୀ
କନକ ଭଦ୍ରାର ତୀରେ ନିତ୍ୟକର୍ମ ସାରି
ସ୍ନାନ ସନ୍ଧ୍ୟା ଦେବାର୍ଚ୍ଚନ ସାରି ଦଣ୍ଡଧାରୀ ।
ଚଳାଇଲେ ସମଦଣ୍ଡ ଦକ୍ଷିଣ ମୂରତି
ବୀରତୂରି ଶବଦରେ କମ୍ପେ ବସୁମତୀ ।
ସେଠାରୁ ଉଦ୍ଧବ ରଥେ ଅନ୍ତରୀକ୍ଷେ ଗଲେ
ଦ୍ୱାରକା ସଭାରେ ଯାଇ ପ୍ରବେଶ ହୋଇଲେ
ବେଗ କରାଇ ଆଣିଲୁ ଆମ୍ଭେ କୁରୁପତି
ବଡ଼ ସମାରୋହେ ଆସେ ମାନ ଚକ୍ରବର୍ତ୍ତୀ ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଯୁଧିଷ୍ଠି ସହିତେ
କ୍ଷଣେକ ବିଶ୍ରାମ ନାହିଁ ଚଳନ୍ତି ନିରତେ ।
ଶୁଣି କମପାଳଙ୍କର ମହାରୋଷ ମନ
ଚାହିଁ ବୋଇଲେ ସେ ପୁଣି ଅର୍ଜୁନେ ବଚନ
ଯୋଗାଇଲୁଟି ଅର୍ଜୁନ ତୋର ବିଷ୍ଟରକୁ
ସୁଭଦ୍ରାକୁ ଦେବ ଦୁର୍ଯ୍ୟୋଧନ ନୃପତିକୁ ।

ଅର୍ଜୁନ ବୋଇଲେ ସ୍ୱାମୀ କଲ ଯେ ବିଚାର
ରାଜାଧିରାଜେଶ୍ୱର ଯେ ତ୍ରୈଲୋକ୍ୟ ସୁନ୍ଦର ।
ରାମ ବୋଇଲେ ପାର୍ଥକୁ ଯୋଗାଇଲ ହରି
ଦ୍ୱାରକାପୁରେ ଉତ୍ସବ କରା ଯତ୍ନକରି ।
ଉଗ୍ରସେନ ରାଇ ଆଜ୍ଞା ଦେଲେ ଦେବରାଜ
ବୀରେ ସଜ୍ଜା ଘେନଯାଅ ରୈବତକୁ ଆଜ ।
ଉଗ୍ରସେନ ବୋଇଲେକ ଗୋବିନ୍ଦଙ୍କୁ ଚାହିଁ
ବରର ଯୋଗାଡ଼ ଘେନ ଯିବ ବେଗେ ମୁହିଁ ।
କେମନ୍ତେ ଆଜ୍ଞା ଦେବାକ ମୋତେ ଭଗବାନ
ନେବ ସଜ ହୋଇ ବଡ଼ ଯଉତୁକ ମାନ ।
ଗୋବିନ୍ଦ ବୋଇଲେ ନଅ ରାଜା ଉଗ୍ରସେନ
ଦୁହିତା ଥିଲେ ଅବଶ୍ୟ କରିବା ପ୍ରଦାନ ।
ସ୍ୱାମୀଙ୍କର ଆଜ୍ଞା ତାହା ଲଙ୍ଘି କେହୁ ପାରି
ଯାହାକୁ ହେଲେ ପ୍ରଦାନ କରିବା କୁମାରୀ ।
ସମସ୍ତ ସଜ କରନ୍ତେ ସୂର୍ଯ୍ୟ ଅସ୍ତହେଲା
ଥାଟ ଘେନ ରାଜା କେଶୀ ବନରେ ରହିଲା ।
ରୁଦ୍ରବେଣୀ କୂଳେ ଥାଇ କେଶୀ ନାମେ ବନ
ସେଠାରେ ରହିଲା ଯାଇ ରାଜା ଦୁର୍ଯ୍ୟୋଧନ
ସ୍ନାହାନ ଭୋଜନ ଆଦି ସାରିଲେ ସମସ୍ତ
ଦ୍ୱାରକା ସଭାରେ ଯାଇ ହେଲେ ଉପଗତ ।
ଆଦିତ୍ୟ ଅସ୍ତ ହୁଅନ୍ତେ ବଳରାମ ଗଲେ
ଶୟନ ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ରାମ ବୋଇଲେ ରେବତୀ ଦେବୀ ସନ୍ନିଧାନେ
ପ୍ରଦାନ କରୁଛୁ ଆମ୍ଭେ ତୁମ୍ଭର ବଚନେ ।
ଦୁର୍ଯ୍ୟୋଧନକୁ ଅଣାଇ ଅଛୁ ଦୂତ ପେଷି
ପନ୍ନଗ ନାରାୟଣ ସେ ଅଟେ ସୋମବଂଶୀ ।
ରେବତୀ ବୋଇଲେ ଦେବ ହେଲା ଅକାରଣ
କେତେ ଭଳ ରାଜାଙ୍କୁ ତ କଲ ବିଡ଼ମ୍ବନ ।
ପରେ ଦୂଷିତା ହେଲାଣି ସୁଭଦ୍ରା ତୁମ୍ଭର
ଛନ୍ଦ କର ନ ଜାଣ ତୁମ୍ଭେ ହଳଧର ।
ଉତ୍ସବ ନବରେ ମୁହିଁ ଦେଖିଲି ତାହାକୁ
ଦେହ ସମର୍ପିଲାଣି ସେ କେଉଁ ପୁରୁଷକୁ ।
ଚନ୍ଦ୍ରଭାଗା ନଦୀତଟରେ ଫେଡ଼ିଲ ବସନ
ଉରେ ବିରାଜଇ ତାର ଦନ୍ତ ନଖ ଚିହ୍ନ ।
କି ସେ ପ୍ରତିପଦା ନିଶି କଳାକର ଜ୍ୟୋତି
ଶୁଣି କାମପାଳଙ୍କର ହଜିଗଲା ମତି ।

ଏ କଥା ଯେବେ ସ୍ୱରୂପ ଅଟଇ ସଙ୍ଗାତ
ଆଜ କି ପ୍ରାଣ ପାଇବେ ମ ଦେବ ସମସ୍ତ ।
ରେବତୀ ବୋଇଲେ ଦେବ ଅଟଇ ସ୍ୱରୂପ
ମିଥ୍ୟା କହିଲେ ହୋଇବ ଜାଣ ବଡ଼ପାପ ।
ତୁମ୍ଭ ଛାମୁରେ କେ ମିଥ୍ୟା କହିଯିବ ବର୍ତ୍ତି
ସାତ୍ୟକିଙ୍କୁ ରାଇ ଆଜ୍ଞା ଦେଲେ ହଳପତି ।
ଉଗ୍ରସେନଙ୍କୁ ତୁ ରାଇ ଆଣିବୁ ଏକ୍ଷଣି
ବିଳମ୍ବ ହେଲେ ତୋ ଶିର ପକାଇବି ହାଣି ।
ଚଳଇ ସାତ୍ୟକି କାମପାଳର ବଚନେ
ପ୍ରବେଶ ହୋଇଲେ ଉଗ୍ରସେନ ସନ୍ନିଧାନେ
ଯୋଗାଡ଼ କରୁଛି ଯାହା ବିଭାଘର ଲାଗି
ରାତ୍ରେ ନିଦ୍ରା ନାହିଁ ସାରା ରାତିଯାକ ଜାଗି
ରୋଷାଇ ଶାଳେ ରାନ୍ଧନ୍ତି ବସି ସୂପକାରେ
ଅମୃତ ପାକ କରନ୍ତି ସେ ଷଡ଼ ରସରେ ।
ସାତ୍ୟକି ବୋଇଲା ଶୁଣ ଦେବ ଉଗ୍ରସେନ
ବଳରାମଙ୍କର ଆଜ୍ଞା ଆସିବ ଏକ୍ଷଣ ।
ଆସ୍ଥାନୁ ଉଠାଇ ରାଜା ଅଇଲା ସତ୍ୱରେ
ରାମ ବିଜେ କରିଛନ୍ତି ଚନ୍ଦ୍ରଶାଳାପୁରେ ।
ଉଗ୍ରସେନ ପ୍ରଣିପାତ କଲା ପାଦତଳେ
ରାମ ସମସ୍ୟା ନ ଦେଲେ ତାଙ୍କୁ କୋପଭରେ
ବଳରାମ ବୋଇଲେ ହୋ ଶୁଣ ଉଗ୍ରସେନ
ସୁଭଦ୍ରାକୁ ଏ ପୁରେ କେ କଲା ବିଡ଼ମ୍ବନ ।
ଉଗ୍ରସେନ ବୋଇଲେ ଏ ଅସମ୍ଭବ କଥା
ଏଥି ଆସିବାକୁ ଖାତ ମୃତ୍ୟୁର ଦେବତା ।
ଡରେ ଯମ ନ ଆସଇ ଯେଉଁ ଦ୍ୱାରକାକୁ
କାହାର ଭରସା ଏଡ଼େ କର୍ମ କରିବାକୁ ।
ବଳରାମ ବୋଇଲେ ଯେ କହିଲେ ରେବତୀ
ଅନାଦି ଅପର୍ଣ୍ଣା ସେହି ମିଥ୍ୟା ନ କହନ୍ତି ।
କୋପେ ପୁଣି ତାଙ୍କୁ ଆଜ୍ଞା ଦେଲେ ହଳପାଣି
ନଶାପତିମାନଙ୍କୁ ତୁ ବେଗେ ପକା ହାଣି ।
ଶୁଣି ମନରେ ବିଚାର କଲେକ ରେବତୀ
ଅଦୋଷୀ ଲୋକଙ୍କୁ କପାଁ ଦେବେ ଏଡ଼େ ଶାସ୍ତି
ଯେତେକ ଲୋକଙ୍କୁ ଏଡ଼େ ପକାଇବେ ହାଣି
ନଷ୍ଟେଁ ହତ୍ୟାଦୋଷେ ମୁହିଁ ହୋଇବି କାରଣି
ରେବତୀ ବୋଇଲେ କୋପ ଆନକୁ ନ କର
ଅର୍ଜୁନ ହରିଲା ଦେବ ଭଗିନୀ ତୁମ୍ଭର ।

ଜାଣି ଦେବ କେମନ୍ତେ ବା ନ କହିବ ମୁହିଁ
ଅଦୋଷୀ ମାଇଲେ ଦୋଷ ହେବ ଆମ୍ଭଙ୍କୁହିଁ
କୋପାନଳ ଶୁଣି ଜଗଜ୍ଜନ ଅଧିକାରୀ
ବୋଇଲେ ସାତ୍ୟକ ଆଣ କୃଷ୍ଣଙ୍କୁ ହକାରି ।
ଶୁଣି ସେ ସାତ୍ୟକ ବେଗେ କରଇ ଗମନ
ଗୋବିନ୍ଦ ବିଜୟ ଜାମ୍ବବତୀର ଭବନ ।
ସନ୍ନିଧେ ଯାଇ ଚରଣ ତଳରେ ପ୍ରଣମି
ଠାକୁରଙ୍କ ଆଜ୍ଞା ଦେବ ଆସିବ ହୋ ସ୍ୱାମି ।
ଛାମୁରେ ବିହୃଡ଼ି ପୁଣି ଜଣେ ଏକଲକ୍ଷ
ବଳରାମଙ୍କ ଛାମୁରେ ବିଜୟ ଶ୍ରୀବତ୍ସ ।
କେଶବ କରନ୍ତି ପାଶେ ଯାଇଁ ନିଉଛାଳି
ସାଷ୍ଟାଙ୍ଗେ ଶୋଇଲେ ଗଡ଼ଧାଳି ବନମାଳୀ ।
ରାଗେ ବଳରାମ ତାଙ୍କୁ ନ କଲେ କଲ୍ୟାଣ
ଏମନ୍ତ ହରି ଦ୍ୱାରକା ରଖିଅଛୁ ପୁଣ ।
ଅତି ଆଶ୍ୱାସନା କରି ପେଷିଲେକ ଶ୍ୱାନ
କାନେ ସେ ତାହାର ମୁଖେ ଦିଅଇ ଚୁମ୍ବନ ।
ଚୋଳକୁଣ୍ଡା ଜାରଜାତ ଅଟନ୍ତି ପାଣ୍ଡବ
ସୁଭଦ୍ରାକୁ ହରିଲ ନ ଜାଣୁ କି ମାଧବ ।
ଶୁଣିଣ ବିଷାଦ ହେଲେ ଜଗନ୍ନାଥ ସ୍ୱାମୀ
ବେନି କର୍ଣ୍ଣ ଛୁଇଁ ହସ୍ତ ଦେଲେକ ମେଦିନୀ ।
ସ୍ୱାମୀ ତୁମ୍ଭଙ୍କୁ କହିଲି କେ ଏସନ କଥା
ମୁଁ ବା କେମନ୍ତେ ଜାଣିଲି ଏହାର ବାରତା
ସ୍ୱାମୀ ଅଟଇ ଅର୍ଜ୍ଜୁନ ପୁଣି ମହାଯତି
ପର ନିନ୍ଦା କଲେ ଆପେ ହୁଏ ନର୍କଗତି ।
ସଜ୍ଜନ ଜନଙ୍କୁ ଦେବ ଅମାତ କହିଲେ
ଧର୍ମ ନ ସହଇ ଗଉରବେ ନିନ୍ଦା କଲେ ।
ସ୍ୱାମୀ ତୁମ୍ଭେ କପାଁ ଏହା ନ କର ବିଚାର
ଏତେ ବଡ଼ ଭରସା କି ହେବ ଅର୍ଜ୍ଜୁନର ।
ବଳରାମ ବୋଇଲେକ ଶୁଣ ଗୋ ରେବତୀ
କେଶବ ଛାମୁରେ କହ ସେ କେବଣ ରୀତି ।
ରେବତୀ ବୋଇଲେ ମୁହିଁ ଦେଖିଲି ପ୍ରତ୍ୟେକ୍ଷ
ସୁଭଦ୍ରାକୁ ବେଢ଼ିଛିଲି ପାଣ୍ଡବ ବିବସ୍ତ୍ର ।
କହିଲେକ କରପଦ ଯୋଡ଼ି ଦେବ ହରି
ନାନାବିଧ ପ୍ରକାରେ ମନ୍ଦ କହନ୍ତି ତ ସ୍ତିରୀ
ନ ଜାଣି ଧାତା ସର୍ଜିଲା ଏ ସ୍ତିରୀ ଜାତିଙ୍କୁ
କପାଁ ଆନ ନାମ ଦେଲା ପ୍ରମଦା ଏହାଙ୍କୁ ।

ଅନବରତରେ ଭୋଳ ଅଟନ୍ତି ସ୍ତ୍ରୀ ଜାତି
ଅଖ୍ୟାତ ଅଜ୍ଞାନ ଅନବରତେ ବୁଲନ୍ତି ।
ସ୍ତିରୀଙ୍କ ବୋଲକୁ ପ୍ରତେ ନ ଯିବା ହେ ଦେବ
ଯେତେକ କହନ୍ତି ମିଥ୍ୟା ସମସ୍ତ ପ୍ରସ୍ତାବ ।
ରେବତୀ ବୋଇଲେ ବାବୁ କହୁଅଛୁ ଯାହା
ତୁମ୍ଭ ସେ ଉଆଣ ସିନା କରିଅଛୁ ଏହା ।
ଚକ୍ରକୂଟ ବୁଦ୍ଧିକି କେ ଭଜନରେ ବାବୁ
ତୁ ପୁଣି ଏଥି ଅନେକ ଦ୍ୱନ୍ଦ୍ୱ କରାଇବୁ ।
ପୁଣି ବୋଲନ୍ତି ଶୁଣିମା ହେଉ ହଳଧାରୀ
ଦୁର୍ଯ୍ୟୋଧନକୁ ବୋଲନ୍ତୁ ଯାଉ ସେ ବାହୁଡ଼ି ।
ଶୁଣି କୋପେ ଆଜ୍ଞା ଦେଲେ ଦେବ ରାମଚନ୍ଦ୍ର
କେମନ୍ତେ ପାର୍ଥକୁ ରକ୍ଷା କରଇ ଗୋବିନ୍ଦ ।
ଅପ୍ରୀତି ତୁ କରାଇଲୁ ଯେବେ ଚକ୍ରପାଣି
ଆପଣା କୁଳେ କଳଙ୍କ ଲଗାଇଲୁ ଆଣି ।
ଉଗ୍ରସେନ ରାଇ ଆଜ୍ଞା ଦେଲେ ହଳଧାରୀ
ପାରିଲେ ତୁ ଅର୍ଜ୍ଜୁନକୁ ବଳେ ଥିବୁ ଧରି ।
ତିରଣ ପ୍ରମାଣ କରି କାଟିବା ତା ମାଂସ
ଆବର ମୁଁ ଥୋଇବି କି ପାଣ୍ଡବଙ୍କ ବଂଶ ।
ଏତେ ବୋଲି ଦେବ କଲେ ଆସ୍ଥାନରେ ବିଜେ
ନିଅବକାଶରେ ବିଜେ କଲେ ଦେବରାଜେ ।
ନିଜ ଭୁବନରେ ବିଜେ କଲେ ଜଗନ୍ନାଥ
ସତ୍ୟଭାମାକୁ ରାଇଣ ବୋଇଲେ ଅଚ୍ୟୁତ ।
ବଳରାମ ଜାଣିଲେଣି କଥାଗୋଟି ଫୁଟି
ସୁଭଦ୍ରାକୁ ଘେନଯାଉ ଏ ପୁରୁ କିରୀଟୀ ।
ଉଗ୍ରସେନ ରାଇ ଆଜ୍ଞା ଦେଲେ ବଳରାମ
ରାତ୍ର ପ୍ରଭାତରେ କାଲି ହୋଇବ ସଂଗ୍ରାମ ।
ଶ୍ରୀକୃଷ୍ଣଙ୍କ ଆଜ୍ଞା ପାଇ ଗଲେ ସତ୍ୟାସତୀ
ଅର୍ଜ୍ଜୁନ ଭୁବନେ ବିଜେ କଲେ ସେ ଝଟତି ।
ସୁଭଦ୍ରା ଅର୍ଜ୍ଜୁନ ଦୁହେଁ କରୁଛନ୍ତି କେଳି
ଦ୍ୱାରେ ଉଭାହେଲେ ଶଙ୍କାଜତର ଦୁଲ୍ଲଭୀ ।
କବାଟ ପେଲି ସମସ୍ୟା କଲେ ବୀରପାର୍ଥ
ସନ୍ନିଧେ ପ୍ରବେଶ ଆସି ବାସବର ସୁତ ।
ସତ୍ୟଭାମା ବୋଇଲେ ହେ ଶୁଣ ଫାଲଗୁନ
ଏହିକ୍ଷଣି ଯାଅ ତୁମ୍ଭ ସୁଭଦ୍ରାକୁ ଘେନ ।
ରେବତୀ ଦେବୀ କହିଲେ ଜାଣିଲେ ତ ରାମ
ରଜନୀ ପ୍ରଭାତେ କାଲି ହୋଇବ ସଂଗ୍ରାମ ।
ସୁଭଦ୍ରା ଦେବୀ ବିକଳ ହେଲେ ତାହା ଶୁଣି
ସ୍ୱାମୀତୁମ୍ଭ ନ ଘରକୁ ଯିବା ଏହିକ୍ଷଣି ।

କଳହରେ ପ୍ରୟୋଜନ ନାହିଁ ଦେବ କହୁ
ଆଜ୍ଞାପାଇ ଉଗ୍ରସେନ ଏବେ ଆସୁଅଛୁ ।
ସ୍ୱାମି କୋଟିଏ ସିଂହର ଯାର ପରାକ୍ରମ
କେମନ୍ତେ ତାହାର ତୁଲେ କରିବୁ ସଂଗ୍ରାମ ।
ଶୁଣି ଅର୍ଜୁନ କହିଲା ଯାଇ ସୁଭଦ୍ରାକୁ
ଆଦ୍ୟରୁ ତୁ ନ ଜାଣୁ କି ସେ ବଳରାମଙ୍କୁ ।
ନ ଜାଣି ତୁ ପରଦାର କରାଇଲୁ ମୋତେ
ଯେବେ ତୋତେ ଘେନିଯିବ ମୁହିଁ ନଶାଗତେ
ଚଉର୍ଯ୍ୟ କର୍ମେ ପାଇବି ଲୋକେ ଅପଖ୍ୟାତି
ଯିବଇଁ ମୁଁ ତୋତେ ଘେନି ପାହୁ ଏହି ରାତି ।
ଏମନ୍ତ କଥା ନ କହ ମୋତେ ସଇଭଦ୍ରେ
ଆସନ୍ତୁ ନା ଯେତେ ବଳ ଘେନି ରାମଚନ୍ଦ୍ରେ ।
ଅନେକ ପ୍ରକାରେ ତୋତେ କଲି ମୁହିଁ ନାସ୍ତି
ବଳାତ୍କାରେ ମୋତେ ତୁହି କରାଇଲୁ ପ୍ରୀତି ।
ଏତେବେଳେ ଆଉ ମୁହିଁ ଯିବି କାହିଁ ଘୁଞ୍ଚି
ଅର୍ଜିତ କର୍ମ ଯେମନ୍ତେ ମୋ କପାଳେ ଅଛି ।
ଏସନକ ଘଟସୂତ୍ର ଅଛି ଯେବେ ମୋତେ
ମୁହିଁ ଏଥେ ନାଶଯିବି ତୋହର ନିମନ୍ତେ ।
ଆପଣାର କଲା କୃତ୍ୟ କର୍ମ ବୋଲି ଲେଖି
ଭୁଞ୍ଜିବ ନା କର୍ମଫଳ ଯାହା ଅର୍ଜିଅଛି ।
ସତ୍ୟଭାମାଏ ବୋଇଲେ ରାମର କୋପକୁ
ସହିଣ ସମାନ ହେବୁଟିକି ସଂଗ୍ରାମକୁ ।
ଅର୍ଜୁନ ବୋଇଲେ ମୁହିଁ ଜାଣେ ସବୁକଥା
କେ ଆନ କରି ପାରିବ କପାଳ ଲିଖିତା ।
କହ ଯାଇ ସତ୍ୟଭାମା ଦେବ ଜଗନ୍ନାଥେ
କଣ୍ଠତରେ ଦୟା ସେହି କରିଥାନ୍ତୁ ମୋତେ ।
ନରାଶ ବଚନ ନାରାୟଣଙ୍କୁ କହିଲେ
ନିର୍ଭୟ ହୋଇ ସେଠାରେ ଅର୍ଜୁନ ରହିଲେ ।
ବୋଇଲେ ଆସନ୍ତୁ କନା ସହସ୍ରେକ ରାମ
ସୁଭଦ୍ରା ନିମନ୍ତେ ମୁହିଁ କରିବି ସଂଗ୍ରାମ ।
ନରାଶ ବଚନ ପାଇ ଯାନ୍ତି ସତ୍ୟାସତୀ
ନାରାୟଣ ଦେବଙ୍କୁ ସେ ଏ କଥା କହନ୍ତି ।
ନିର୍ଭୟ ହୋଇ ରହିଲା ଦେବ ଧନଞ୍ଜୟ
ତୋ ପାଦେ ଭରସା ଦେବ ତୁ ହୁଅ ସଦୟ
ବୋଇଲା ଆସନ୍ତୁ କନା ସହସ୍ରେକ ରାମ
ସୁଭଦ୍ରାଭି ଛଳେ ମୁହିଁ କରିବି ସଂଗ୍ରାମ ।
ଗୁରୁତର ପ୍ରତିଜ୍ଞା ତ କଲା ସବ୍ୟସାଚି
ମନ୍ଦର ସମାନ ଦେବ ନିଷ୍କମ୍ପରେ ଅଛି ।
ବୋଲନ୍ତି ଏସ ସତ୍ୟଭାମା ଶୁଣହି ଜଗନ୍ନାଥ
କ୍ଷତ୍ରିୟ ଅନର୍ଗଳ ସେ ବୀରବର ପାର୍ଥ ।
ପ୍ରଦ୍ୟୁମ୍ନ ଗଦ ଯେ ଶାମ୍ବ କୁମରକୁ ଗଇ
ଅର୍ଜୁନେ ବଧାଗ ହୋଇଛନ୍ତି ହଳସାଇଁ ।
ଦୁର୍ଯ୍ୟୋଧନଙ୍କୁ ବୋଲନ୍ତି ସୁଭଦ୍ରା ଦେବାକୁ
ସୁଭଦ୍ରା ତ ବରିଲାଣି ଏଣେ ଅର୍ଜୁନକୁ ।
ଅର୍ଜୁନ ତୁଲେ ଅବଶ୍ୟ କରିବ ସେ ଯୁଦ୍ଧ
ଆମ୍ଭେ କେମନ୍ତ କରିବା କହ ବାବୁ ମଧ୍ୟ ।
ବୋଲନ୍ତି କୁମରମାନେ କରପଦ ଯୋଡ଼ି
ଅର୍ଜୁନ ଆମ୍ଭର ଅଟେ ବନ୍ଧୁ ଉପକାରୀ ।
ଆମ୍ଭେ ତ ଛାଡ଼ି ନ ପାରୁ ଦେବ ଧନଞ୍ଜୟ
ଅର୍ଜୁନ ଆଡ଼େ ହୋଇବୁ ଆମ୍ଭେ ଦେବରାୟ ।
ଶୁଣି ଆନନ୍ଦ ହୋଇଲେ ଦେବ ଭଗବାନ
ପୁତ୍ରଙ୍କର ସାହାଯ୍ୟରେ ଜିଣିବ ଅର୍ଜୁନ ।
ଏସନ ଭାଳନ୍ତେ ତନପ୍ରହର ଯେ ରାତି
ଉଗ୍ରସେନ ତୁଲେ ଘେନି ଅର୍ବୁଦେକ ରଥୀ ।
ପାଞ୍ଚ ଅର୍ବୁଦ ତୁରଙ୍ଗ ଅୟୁତେକ ହସ୍ତୀ
ଚୌବିଂଶବୃନ୍ଦ ରାଉତ ଅନେକ ପଦାତି ।
ରାତି ପ୍ରହରକେ ଥାଉଁ ବେଢ଼ିଲେ ଗୁପତେ
ଅର୍ଜୁନ ଶୟନ ସ୍ଥାନ ଘେରିଲେ ସମସ୍ତେ ।
ଗହଳ ଚହଳ ଦେଖି ସୁଭଦ୍ରା ବିକଳ
ସ୍ୱାମୀ ସମଦଣ୍ଡ ଘେନ ବଟେ କାଳପାଳ ।
କ୍ଷତ୍ରିୟ ଚୂଡ଼ାମଣି ସେ ରସପାନେ ଭୋଳା
ସୁକୁମାର ଶରୀରକୁ ଘେନ ବେଗେ ପଲା ।
ହେ ପ୍ରାଣନାଥ ତୋର ମୁଁ ଘେନଇ ଆପଦ
ଅମୂଲ୍ୟ ଦେହେ ନ ପୁଣ ପଡ଼ଇ ପ୍ରମାଦ ।
କପାଇଁ ତୁ ମନେ ଚିନ୍ତା କରୁ ଗୋ ସୁଭଦ୍ରେ
ବ୍ରହ୍ମା ବିଷ୍ଣୁ ଶିବ ଇନ୍ଦ୍ର କିବା ରାମଚନ୍ଦ୍ରେ ।
ଏକଥାକୁ ମୁହିଁ ଯେବେ କରନ୍ତି ଘାତ
ତୋହର ତୁଲେ କପାଇଁ କରନ୍ତି ପୀରତି ।
ମାରିବି ମୁଁ ସାତବଂଶ ବୁହାଇବି କଥା
ସୋଦର ଦୁଃଖେ ନ ପୁଣି ମନେ ଧରୁ ବ୍ୟଥା
ସୁଭଦ୍ରା ବୋଇଲେ ତୁମ୍ଭେ ଜଣ ଯଦୁବଳ
ତୋହର ଶରୀର ଗୋଟି ଥାଉ ଯେ କୁଶଳ ।

ମୋତେ ପ୍ରଦାନ ନ କଲେ ମୁଁ ହେଲି ଯୁବତୀ
ମୋହର ଇଚ୍ଛାରେ ବର ବରିଲି ସମ୍ପ୍ରତି ।
ତାହା ନିରୋଧ କରନ୍ତି କାହାର ନିମନ୍ତେ
ଧର୍ମ ଦେବତା ଏ କଥା ସମ୍ଭବ କେମନ୍ତେ ।
ମୁହିଁ ପୁଣି ନରମାଂସୀ ପାମରୀ ସ୍ତ୍ରୀ ଜନ
ତୋ ପାଦେ ଶରଣ ମୋତେ ଉଦ୍ଧର ଅର୍ଜୁନ
ତୋର ବଳଦର୍ପ ତୁହି ଜାଣୁ ସିନା ନାହା
ମୁହିଁ ସ୍ତ୍ରୀମାନେ ମୋତେ ଧର୍ମ ହେଉ ସାହା
ଏ ପୁରୁଁ ବାହାର ହୁଅ ନାଥ ମୋତେ ଘେନ
ଏଥି ଥିଲେ ଅଜଯୁଟି ଜାଣ ଫାଲଗୁନ ।
ମାୟାବତୀ ସେ ପୁଷ୍ପକ ରଥ ଦେଇଥିଲା
ମନେ ଧ୍ୟାନକର ତାହା ସୁଭଦ୍ରା ସ୍ମରିଲା ।
ମନେ ସ୍ମରନ୍ତେ ପବନୁଁ ବେଗେ ସେହି ଆସେ
ଉଦୟଗିରି ପ୍ରାୟେ ସେ ଗଗନରେ ଦିଶେ ।
ଯେତେକ ଶାସ୍ତ୍ର ଅଛଇ ତହିଁ ଆନଆନୁ
ସେ ରଥ ଜାତ ହୋଇଲା ସମୁଦ୍ର ମନ୍ଥନୁ ।
ହି ଦିଶଦେବ ସେ କଲେ ଅନ୍ୟୋଅନ୍ୟ ହୋଇ
ମିଳି କାମଦେବଙ୍କୁ ଯେ ଦେଲେ ତାହା ନେଇ
ଈଶ୍ୱରଙ୍କ କୋପାନଳେ କାମ ଦଗ୍ଧ ହେଲା
ସେ ଦେବରଥକୁ ରତି ଯତ୍ନେ ଥୋଇଥିଲା ।
ସୁଭଦ୍ରାକୁ ସୁପ୍ରସନ୍ନ ହେଲେ ମାହେଶ୍ୱରୀ
ଅନାଦି ଅପର୍ଣ୍ଣା ସେହି ଦେଲେ ସିଦ୍ଧନାରୀ
ସେ ରଥରେ ବିଜେ କଲେ ବୀର ଫାଲଗୁନ
ଯେବଣ ରଥରେ ଥିଲେ ସାଧୁପୁର ଜନ ।
ଅର୍ଜୁନ ଯାଇ ବିଜୟ କଲେ ସେହି ରଥେ
ମାୟାବତୀର ବିଦ୍ୟାରେ ଶସ୍ତ୍ର ପ୍ରାପ୍ତ ହସ୍ତେ ।
ସୁଭଦ୍ରାକୁ ବସାଇଛି ରଥ ପରେ ବୀର
ଈଶ୍ୱର ପିନାକ ଧରିଅଛି ବାମକର ।
ତାରକା ବିବାଦେ ଯେହ୍ନେ କୁମାରହିଁ ଦିଶେ ।
ସେହି ପ୍ରକାରେ ଅର୍ଜୁନ ତେଜହିଁ ପ୍ରକାଶେ ।
ହିରଣ୍ୟକୁ ଦେଖି ଯେହ୍ନେ ନୃସିଂହ ଗରଜ
ଦେଖି ଯେହ୍ନେ ଯଦୁବଳ ପଳାଇଲେ ଭାଜି ।
ଅନେକ ରତ୍ନ ବିରାଜେ ଅର୍ଜୁନର କାୟେ
ଦିଶଇ ସେ ଫାଲଗୁନ ପୁରୁରବା ପ୍ରାୟେ ।
ହାବୋଡ଼ା ଶର ମାଇଲେ ପାର୍ଥ ମହାବୀର
ଦ୍ୱାରେ ଯେତେ ଥିଲେ ସର୍ବେ ହୋଇଗଲେ ଦୂର

ସେହ୍ନା ଫୁଟିଣ ନାରାଚ ପଡ଼ ଗୁଣ୍ଡ ଫୁଟି
ପଡ଼ିଲେ ତିନଅଯୁତ ଯୋଦ୍ଧା ମହୀ ଲୋଟି ।
ସତ୍ୟଯୁଗେ ଯେଉଁପରି ନୃପତି ମାନ୍ଧାତା
ତେସନ ଦିଶୁଛି ତେଜ ପାର୍ଥ ବଳବନ୍ତା ।
ଲକ୍ଷ୍ମୀ ନାରାୟଣ ବିଜେ କି ସିନ୍ଧୁ ମନ୍ଥନୁ
ସେହିରୂପ ଦିଶଇ ସେ ବାସବର ସୁନୁ ।
ରତିକୁ ଘେନି ଯେସନେ ବିଜେ ପଞ୍ଚବାଣ
ତେସନ ସୁଭଦ୍ରା ଘେନି ଦିଶଇ ଅର୍ଜୁନ ।
ହିମବନ୍ତ ଘରେ ଯେହ୍ନେ ଉମା ମହେଶ୍ୱର
ଶଚୀକୁ ଘେନି ବିଜୟ ଯେହ୍ନେ ପୁରନ୍ଦର ।
ଅନଙ୍ଗ ଧନୁ ଶ୍ରୀକରେ ପୁଣି ବଜ୍ରବାଣ
ସେହିପରି ଦିଶୁଅଛି ପଣ୍ଡୁର ନନ୍ଦନ ।
ସ୍ମରନ୍ତେ ପବନୁ ଯାଏ ଯାଉ ଶର ଖେଦ
ଖାଣ୍ଡବବନ ଦହନେ ଜିଣି ଜମ୍ଭଭେଦୀ ।
ଈଶ୍ୱରଙ୍କୁ ଜିଣିଲା ସେ କିରାତ ସ୍ୱରୂପେ
ଗୋସିଂହ ବିନାଶ ଗଲା ଯାହାର ପ୍ରତାପେ ।
ଯାଦବବଳ ଅଟନ୍ତି ସର୍ବେ ସର୍ବେଶ୍ୱର
ଅର୍ଜୁନ ଶରେ ପଡ଼ିଲେ ବଳ ସେ ଅପାର
ବାହାର ହୋଇ ଆସଇ ପାର୍ଥଶର ବନ୍ଧି
ଶତ ଶତ ଯୋଦ୍ଧା ଏକ ନାରାଚରେ ଛେଦି
ଦ୍ୱାରକା ଦାଣ୍ଡରେ ବିଜେ ଆସି ସବ୍ୟସାଚୀ
ନାରାୟଣ ସ୍ୱରୂପ ତା କାନ୍ତି ଝଟକୁଛି ।
ସୁଭଦ୍ରାକୁ ଘେନି ବୀର ଆସୁଅଛି ଚଳି
ଦିଅନ୍ତି ଦ୍ୱାରକା ସ୍ତ୍ରୀମାନେ ହୁଳହୁଳି ।
ବୋଲନ୍ତି ସାଧୁ ସୁଭଦ୍ରା ପାର୍ଥକୁ ମୋହିଲା
ଏବେ ଦ୍ୱାରକା ଭୁବନ ଶୋଭାହିଁ ପାଇଲା ।
ବଡ଼ ପୁଣ୍ୟବନ୍ତୀ ତୁହି ଅଟୁ ଗୋ ସୁଭଦ୍ରେ
ଅମରପୁରୁ ବିଜୟ କିବା ଶଚୀ ଇନ୍ଦ୍ରେ ।
ସମସ୍ତେ କରନ୍ତି ଜୟ ସୁମଙ୍ଗଳ ବାଣୀ
ଦେଖି ସାନନ୍ଦ ହୋଇଲେ ଦେବ ଚକ୍ରପାଣି ।
ଲକ୍ଷେ ଷାଠିଏ ସହସ୍ର ଦେବ ପୁତ୍ର ସମ
ସବୁରି କରେ ବିରାଜେ ଶଙ୍ଖ ଚକ୍ର ଚିହ୍ନ ।
ଅର୍ଜୁନ ଯିବାର ଦେଖି କୃଷ୍ଣ ପୁତ୍ରମାନେ
ଆଗେଇ ଅଇଲେ ବେଗେ ସେ ଯାହାନ୍ତମାନେ
ସୁଭଦ୍ରାକୁ ରଥେ ଘେନି ଚଳଇ ବିବସ୍ତ୍ର
ପୁତ୍ରମାନେ ଲାଗିଛନ୍ତି ଅର୍ଜୁନର ପଛ ।

ଶାମ୍ବ ଗଦ ଅର୍ଜ୍ଜୁନର ବାମପାଖ କଟ
ଅଶୀସହସ୍ର କୁମରେ ସପକ୍ଷ ଅଛନ୍ତି ।
ଲକ୍ଷେ ଷାଠିଏ ସହସ୍ର ଅଶୀ କୃଷ୍ଣ ସୁତେ
ଅର୍ଜ୍ଜୁନ ଡାହାଣେ ଛନ୍ତି ଚଢି ରଥେ ରଥେ ।
ସାତ୍ୟକ ଅକ୍ରୂର ଭୁଲେ ଦଶପଦୁ ହସ୍ତୀ
ଏମାନେ ଆବୋରିଛନ୍ତି ପାର୍ଥ ପଛକଟ ।
ଜଗନ୍ନାଥ ଭରସାରେ ଦ୍ୱାରକାର ଜନ
ସେମାନେ ପଛରୁ ଆସି ରଖିଲେ ଅର୍ଜ୍ଜୁନ ।
ଏସନ ସମୟେ ଯାଇ କହିଲା ଉଦ୍ଧବ
ସାବଧାନ ହୋଇ ଶୁଣ ସ୍ୱାମି ବଳଦେବ ।
ଦ୍ୱାରକା ପୁରରେ ଥିଲା ବୀର ଫାଲଗୁନି
ଯାଉଅଛଇ ରଥରେ ସୁଭଦ୍ରାକୁ ଘେନ ।
ଶୁଣି କାମପାଳ କୋପେ ହୋଇଲେ ଅଥୟ
ହଳ ମୂଷଳ ଧରଣ ରଥରେ ବିଜୟ ।
ଯାଅ ରଜା ଉଗ୍ରସେନ ଘେନ ଚୋର ଥାଟ
ସୁଭଦ୍ରା ଘେନ ଯାଉଛି ପାଣ୍ଡବ ପାପିଷ୍ଟ ।
ବଳରାମ ମୁଖୁଁ ଶୁଣି ଏସନକ ରଡ଼
ଯାଦବଂଶ ଯୋଦ୍ଧାମାନେ ପଡ଼ିଲେକ ମାଡ଼
ରଥ ଗଜ ଅଶ୍ୱ ଘେନ ସଇନ୍ୟ ପଦାତି
ଗର୍ଜ୍ଜନ ନାଦ କରଣ କୋପରେ ଧାମନ୍ତି ।
ବଳରାମ ସନ୍ନିଧିରେ ହୋଇଲେ ପ୍ରବେଶ
ସିନ୍ଧୁ ମନ୍ଥନ ପର୍ବୟେ ଶୁଭେ ମୁଖଘୋଷ ।
ଅର୍ଜ୍ଜୁନର ତେଜ ମହାତେଜଠାରୁ ବଳ
ବିଶ୍ୱରୂପ ବିକାଶିଲେ ଦେଖି ଦେବହଳୀ ।
ବିଜେ କାମପାଳ ତାଳଧ୍ୱଜ ରଥପରେ
ଦକ୍ଷେ ସୌନନ୍ଦ ମୁଷଳ ହଳ ବାମକରେ ।
ନଦାଘ ଅନଳ ଜଣି ଶିରେ ସପ୍ତଫଣି
ଷୋଳନୟନ ବିକାଶେ କାଳଚକ୍ର ଜଣି
ବଳରାମ ବିଜେକଲେ କୋପେଣ ପ୍ରଚଣ୍ଡ
ରେ ରେ କାର ଶବଦରେ କମ୍ପେ ମହୀଖଣ୍ଡ
ବଳରାମଙ୍କର କୋପ ଦେଖି ବନମାଳୀ
ନୀଳାମ୍ବର ଚରଣରେ କଲେ ନଉଛାଳି ।
କୁହି ଦେବ ନୀଳାମ୍ବର ପୁରୁଷ ଉତ୍ତମୀ
କାହାକୁ ଏତେ କୋପ ତୁ କରୁ ଦେବସ୍ୱାମି
ବଦନ୍ତି ନୀଳାମ୍ବର ତୁ ଶୁଣ ଜନାର୍ଦ୍ଦନ
ସୁଭଦ୍ରାକୁ ହରିନେଲା ପାଣ୍ଡବ ଅର୍ଜ୍ଜୁନ ।

କୋପେ ବୋଲନ୍ତିରେ ଦେଖୁ ଦେଖୁତେରଦର୍ପ
ବଳାତ୍କାରେ ହରି ନେବ କରେ ଧରି ରୂପ ।
ଆଜ ପାଣ୍ଡବଙ୍କୁ ମୁହିଁ ଆଣିବଇଁ ଧରି
ମାଂସ କାଟିବି ତାଙ୍କର ଟିକ ଟିକ କରି ।
ମାନବ ଗୁରୁ ହୋଇ ତା ଏଡ଼େକ ପ୍ରତିଜ୍ଞା
ଗଉରବ କଲରୁ ସେ କରଇ ଅବଜ୍ଞା ।
ଗୋବିନ୍ଦ ବୋଇଲେ ଦେବ କୋପ କର ଶାନ୍ତି
ପାର୍ଥର କି ଦୋଷ ଅମ୍ଭ ଭଗିନୀ ଅସତୀ ।
ଏଡେ ବଡ ବଂଶରେ ଏ ଉପୁଜାଏ ଲଜ୍ଜା
ବନ୍ଧୁ କୁଟୁମ୍ବ ସମସ୍ତ କଲା ଦେଖି ତ୍ୟଜ୍ୟା ।
ଯୁବତୀ ଭଗ୍ନୀକୁ ଆମ୍ଭେ ନ କଲେ ପ୍ରଦାନ
କାଳେ ହୋଇଲା ଆମ୍ଭଙ୍କୁ ଏତେ ଅପମାନ ।
ବଜ୍ରନାଭ ପ୍ରଦାନ ଯେ ନ କଲା ଦୁହିତୀ
ବଳାତ୍କାରେ ହରିଲା ଯେ ତାକୁ ରତିପତି ।
ବିବାହ ନ ଦେଲା ବାଣଅସୁର ଉଷାକୁ
ଅନିରୁଦ୍ଧ ପାଇଁ ଆମ୍ଭେ ଆଣିଲୁ ତାହାକୁ ।
ଯୁବତୀ କନ୍ୟାମାନେ ଯେ ପିତାଘରେ ଥିଲେ
ବହୁତ ଲଜ୍ଜା ବିଅନ୍ତି ଗୋବିନ୍ଦ ବୋଇଲେ ।
କୋପ ଶାନ୍ତ କର ସ୍ୱାମି ଚିତ୍ତ ସ୍ଥିର କର
ଲଜ୍ଜା ହେଲାଣି ପାର୍ଥକୁ କୋପକୁ ସମ୍ବର ।
ଆମ୍ଭେ ଯେବେ ସଂଗ୍ରାମ କରିବା ଆହେ ଦେବ
ଜିଣି ନ ପାରିଲେ ତହୁଁ ଲଜ୍ଜା ଉପୁଜିବ ।
ନ ଜାଣି କୋପ କଲେତ କାର୍ଯ୍ୟ ହୁଏ ଧ୍ୱଂସ
ନ ବୁଝି କୋପ କଲେ ତ ସମ୍ପଦ ବିନାଶ ।
ଖାଣ୍ଡବବନ ଦହିଲା ଯେ ଅଗ୍ନି ନିମନ୍ତେ
ତୋତେ ଅସ୍ତ୍ର ଦେଇଛନ୍ତି ଅଗ୍ନି ଦଇବତେ ।
କିରାତରୂପେ ଜିଣିଲା ସେହୁ ଈଶ୍ୱରଙ୍କୁ
ତୋଷେ ଅନେକ ଶର ଯେ ଦେଲେଟି ତାହାକୁ
ଅକ୍ଷୟ ତୂଣୀର ପୁଣି ଦେଲେଟି ପାର୍ବତୀ
ତ୍ରଇଲୋକ୍ୟଜିତା ସେହୁ ଅଟେ ବଡ଼ କ୍ଷତ୍ରୀ ।
ବୁଝାଇ କହିଲେ ତାଙ୍କୁ ଦେବ ଚକ୍ରପାଣି
ତଥ୍ୟର ଯେତେକେ ନ ଶୁଣେ ଧର୍ମର କାହାଣୀ
ବଳରାମ ଆଜ୍ଞା ଦେଲେ ବେଗେ ହୁଅ ସଜ
ପାଣ୍ଡବଙ୍କୁ ମୁହିଁ ଧରି ଆଣିବଇଁ ଆଜ ।
ଏ ନିଷ୍ଠୁର ବାକ୍ୟ ବଳରାମ ତହୁଁ ଶୁଣି
ନନ୍ଦଘୋଷ ରଥେ ବିଜେ କଲେ ଚକ୍ରପାଣି ।

ତାଳଧ୍ୱଜ ରଥେ ବିଜେ କଲେ ଦେବ ହଳୀ
ବୋଲନ୍ତି ତୋ ହସ୍ତେ ଶସ୍ତ୍ର ନାହିଁ ବନମାଳୀ
ଗୋବିନ୍ଦ ବୋଇଲେ ଦେବ ଜାଣୁନ୍ତୁ ଏମନ୍ତେ
କୌମୋଦକୀ ଗଦା ନାହିଁ ଏ ମୋହର ହସ୍ତେ
ଗାଣ୍ଡିବ ଧନୁ ମୋହର ନେଇଅଛି ପାର୍ଥ
ତେଣୁ ମୁହିଁ ହୋଇଅଛି ଦେଖ ଶୂନ୍ୟହସ୍ତ ।
ଜଗନ୍ନାଥଙ୍କ ବଚନେ ବଳରାମ ରୁଷ୍ଟ
ତୋହର ହେତୁ ଅର୍ଜୁନ କଲା ଏ ଅନିଷ୍ଟ ।
ସାମାନ୍ୟ ମାନବ ପାର୍ଥ ଅଟେ ହୀନଜାତ
ସତ୍ୟବନ୍ତ ଲୋକେ ସିନା ମହତ୍ତ୍ୱେ ରହନ୍ତି ।
ଗୋଳକୁଣ୍ଡା ଜାରଜାତ ଅଟନ୍ତି ଅଜ୍ଞାନ
ଏକ ଘରଯା ରମଣେ ପାଞ୍ଚେ ନ୍ୟନ୍ତ ଧନ
ଲଘୁ ପ୍ରାଣୀକୁ ଯେ ହର କରଇ ଆଶ୍ୱାସ
ଆପେ ନାଶଯାଇ ତାର କାର୍ଯ୍ୟ ଯାଇ ନାଶ ।
ଏତେ କହି ଚଳଗଲେ ସର୍ବ ଯଦୁବୀରେ
ପାର୍ଥକୁ ଭେଟିଲେ ରଇବତ ପର୍ବତରେ ।
ଅଙ୍କ ବର୍ଷେ ଯେସନ ଦିଶନ୍ତି କପାଳୀ
ନିର୍ଧୂମ ଅନଳ ଜଣି ଦିଶେ ତେଜ ଝଳ ।
ସପତଶିଖା ମଉଳ ଶୋଭିତ ଲଲାଟେ
ଝଲକନ୍ତି ଗଜମୁକ୍ତା ମଣିବନ୍ଧ ହୋ'ଟେ ।
ଅମୃତକୁଣ୍ଡଳେ ଶୋଭା ପାଏ କର୍ଣ୍ଣ ବେନ
ଶିରସୀମନ୍ତେ ଖଞ୍ଜିତ ଅଷ୍ଟରତ୍ନ ମଣି ।
ହୃଦରେ ଭୂଷଣ ତାଡ଼ ତୋଡରେ ବାହୁଟି
କଣ୍ଠେ କଣ୍ଠାଞ୍ଜଳ ଶୋହେ ଭୁଜରେ କର୍ପଟି ।
କଟିମେଖଳା ବିରାଜେ ପାଦରେ ନୂପୁର
ଯେସନେ ଶୋଭା ଦିଶନ୍ତି ଦେବ ଦିବାକର
ତାଳଧ୍ୱଜ ରଥେ ଥାଇ ଦେଖନ୍ତି ମୁଷଳୀ
ଅର୍ଜୁନ କୋଳେ ବସିଛି ନନ୍ଦର ଦୁଲଳୀ ।
ବଳରାମ ବୋଇଲେ ତୁ ଦେଖରେ ଶ୍ରୀବତ୍ସ
ସୁଭଦ୍ରାକୁ ଅର୍ଜୁନ ତ ପ୍ରତ୍ୟକ୍ଷେ ନେଉଛି ।
ଆମ୍ଭଙ୍କୁ ତାହାର ଭୟ ନାହିଁ କିଛି ମନେ
ସ୍ୱରୂପ ଦେଖୁଛୁ ଏହା ସମ୍ଭବ କେସନେ ।
ଗୋବିନ୍ଦ ବୋଇଲେ ଦେବେ ଥିଲେବଳବୀର୍ଯ୍ୟ
ସମରେ ଶଙ୍କତା ଲୋକ ନ କରେ ଚଉର୍ଯ୍ୟ ।
ଏତେକ ବଚନ ଯହୁଁ ଶୁଣିଲେକ ହଳୀ
ସଉନନ୍ଦ ମୁଷଳକୁ ତୁଳାଇଲେ ତେ ଲ ।

ଆରେ ରେ ପାଣ୍ଡବା ତୁହି ଯିବୁ ଆଜ କାହିଁ
ନଷ୍ଟସ୍ୱ ପାଞ୍ଜି ପୋଛିଲା ତୋର ଜନ୍ମୁସାଇଁ ।
ମୋହର ଭଗ୍ନୀ ହରିଲୁ ତୁହି କେଉଁ ଦର୍ପେ
ଖଗେଶ୍ୱର ଆଗେ କସ କରେ କାଳସର୍ପେ ।
କେବଣ ଗୁଣରେ ତୁହି ହୋଇଛୁ ଶଙ୍କିତ
ଆଜ ଜାଣିବାରେ ତୁହି କେତେ ବଳବନ୍ତ ।
ଆରେ ରେ ପାଣ୍ଡବା ତୋର ଏତେକ ଭରସା
ତୋର ଜୀବନକୁ କରେ ନ କଲୁ ତୁ ଆଶା
ନଷ୍ଟପ୍ରେ ପଞ୍ଜି ତୋହର ପୋଛିଲା ଶମନ
ମରିବାବେଳେ ହୋଇଲୁ ବିପରୀତମାନ ।
ପ୍ରୀତି ବୁଡାଇଲୁ ତୁହି ସ୍ତ୍ରୀକାମାନ୍ଧ ସବେ
ତୋଯୋଗୁ ବିନାଶ ଗଲେ ଯେ ଗୁରୁପାଣ୍ଡବେ
କୁଳ ନାଶ କରିବାକୁ ଜନ୍ମିଲୁ ଫାଲ୍‌ଗୁନ
କେବଣ ଦର୍ପେ ଯାଉଛୁ ଭଗିନୀକୁ ଘେନି ।
ସୁମର ପାଣ୍ଡବ ତୋର ଯେ ଇଷ୍ଟଦେବତା
ଆବର ସୁମର କରେ ତୋର ପିତାମାତା ।
ବଳରାମଙ୍କ ମୁଖରୁ ଏସନକ ଶୁଣି
କୋପେ ପ୍ରତିଜ୍ଞା କରଇ ବୀର ଫାଲଗୁନ ।
ଭୋ ସ୍ୱାମି ହେ ବଳଦେବ ରେବତୀବଲ୍ଲଭ
ମୋର କିଛି ଦୋଷ ନାହିଁ ବୁଝ ଏହାଧ୍ରୁବ
ତୋ'ର ଭଗ୍ନୀକୁ ନ କଲୁ ତୁ ଦେବ ଯେ ରକ୍ଷା
ଆପେ ସ୍ୱୟମ୍ବରା ହୋଇ ମୋତେ କଲା ଇଚ୍ଛା
ଶୟନ ମନ୍ଦିରେ ମୋର ପଶି ନିଶାକାଳେ
ସ୍ତ୍ରୀକାମାନ୍ଧ ହୋଇ ମୋତେ ଧଇଲାକ ବଳେ
ତୁ ଦେବ ତ୍ରୈଲୋକ୍ୟ ନାଥ ଅଟୁ ସଂକର୍ଷଣ
ନ ବିଚାରି କୋପ ମୋତେ କରୁ ଅକାରଣ ।
ଶରଣବତ୍ସଳ ନାଥ କରୁଣା ବାରିଧି
ତୋହର ଅମାନ୍ତ କଲେ ହେବଟି ଅବିଧି ।
ଅକାରଣେ ମୋତେ ତୁମ୍ଭେ କୋପ କରୁଅଛ
ମୁହିଁ ପୁଣି ସଂଗ୍ରାମରେ ନୁହେଁ ସମକକ୍ଷ ।
ପ୍ରାଣ ଘେନି ଫୁଞ୍ଜିଯାଅ ତୁମ୍ଭେ ବେନି ଭାଇ
ଏ ସମ୍ପଦ ବୁଡ଼ିବ ଯେ ସୁଭଦ୍ରାର ପାଇଁ ।
ମିଛେ ପ୍ରତିଜ୍ଞା ତୁମ୍ଭେ ନ କର ସଂକର୍ଷଣ
ଫୁଟିକ ବିଦ୍ୟାରେ ଯିବ ଯଶ ମାନ ଜାଣ ।
ତୁମ୍ଭର ଭଗିନୀ ସିନା କଲାକ ଅମାନ୍ତ
ଫୁଞ୍ଜିଯାଅ ଏଥୁ ତୁମ୍ଭେ ନ ଭଙ୍ଗ ପୀରତି ।

ଅର୍ଜୁନର ଏ ପ୍ରତିଜ୍ଞା ଶୁଣିଣ ଯାଦବ
ହେଳିଧର ବୋଇଲେ ଯେ କୋପେ ବଳଦେବ
ଧାମନ୍ତ ପ୍ରତିଜ୍ଞା କର ସଙ୍ଗ ଯଦୁବୀରେ
ଧନୁରେ ନାରାଚ ଯୋଚି ଅତି କୋପଭରେ ।
ଛନ୍ନ ଛନ୍ନ ତୀକ୍ଷ୍ଣ ତୀକ୍ଷ୍ଣ ଶର ଅନୁକ୍ଷଣେ
ଜଳଡ଼ା ବୃଷ୍ଟି କି ଜଡି ପଡୁଅଛି ବାଣେ ।
ଝଲକନ୍ତ ନାରାଚେ କି ବିଜୁଳିର ତେଜ
ଅର୍ଜୁନ ରଥକୁ ଗୃହିଁ ବାହନ୍ତ ନାରାଚ ।
ଶରର ଗର୍ଜନ ଜଣି ଧନୁର ଟଙ୍କାର
ଧର ଧର ମାର ମାର ଶବ୍ଦେ ନିରନ୍ତର ।
ମହୀଷା ଯୁଦ୍ଧେ ଯେମନ୍ତ ଧାମନ୍ତେ ଭୈରବୀ
ତେସନେକ ଯଦୁବୀରେ ପାରୁଛନ୍ତି ବୋଦ୍ଧ ।
ବୀର ଡାକ ଶୁଣି ବଢ଼େ ଅର୍ଜୁନର ରାଗ
ପାର୍ଥଙ୍କୁ ପ୍ରଦ୍ୟୁମ୍ନ ପଛକର ହେଲ ଆଗ ।
ଶାମ୍ବ ଗଦ ପ୍ରଦ୍ୟୁମ୍ନ ଯେ ଅକ୍ରୂର ସାତ୍ୟକି
ଅର୍ଜୁନ ନିକଟରେ ଆଗ ହେଲେ ଥାଟ ଦେଖି ।
ଗଦା ଶକ୍ତି ମୁଦୁଗର ଛେଲ ଚନ୍ଦ କାଣ୍ଡ
କୁନ୍ତ ଖଡଗ ଘେନିଣ ବେଗେ ପ୍ରହାରନ୍ତି ।
ଗୋବିନ୍ଦଙ୍କ ଯୋଏ କୋପେ ଉଠିଲେ ଗରଜି
ଦେଖି ଦୁଷ୍ଟ ଯଦୁବୀରେ ପଳାଇଲେ ଭାଜି ।
ଶସ୍ତ୍ରମାନ ଥୋଇଦେଲେ ରାମଙ୍କ ଛାମୁରେ
କାହାର ଭୁଲେ ଯୁଝିବୁ ଦେବ ଏ ସମରେ ।
ଗୋବିନ୍ଦ ବୋଇଲେ ସ୍ୱାମି ଶୁଣ ନୀଳାମ୍ବର
ଲକ୍ଷେ ଷାଠିଏ ସହସ୍ର ଅଶୀଏ କୁମର ।
ସମସ୍ତେ ଆବୋରିଛନ୍ତି ଯାଇ ଅର୍ଜୁନକୁ
କେ ଯୁଦ୍ଧେ ଜିଣିବ ଶାମ୍ବ ଗଦ ପ୍ରଦ୍ୟୁମ୍ନକୁ
ବାଳକାଳେ ଯେ ଶମ୍ବର ବୀର ନାଶ କଲା
ମାୟାବତୀ ଘେନି ବାର ବରଷେ ଅଇଲା
ଯୁଗାନ୍ତର ତହେଁ ନାଶି ନ ପାରଇ ମୁହିଁ
ଯୋଗେ ମୋହର ହସ୍ତରେ ଗଦା ଚକ୍ର ନାହିଁ
ଦେବତାଙ୍କର କାର୍ଯ୍ୟ ତ ନୋହିଛି ସମ୍ପୂର୍ଣ୍ଣ
ଅବଶ୍ୟ ପରକୁ ଆମ୍ଭେ କରନ୍ତେ ପ୍ରଦାନ ।
ଶୁଣି ମହାକୋପାନଳ ହେବ ବଳରାମ
ଭଆଇଙ୍କୁ ସିନା ବାବୁ ତୁ ପୁରୁଷୋତ୍ତମ ।
ମୁଁ ଯେ ଅଣାଇଲି ଦୁର୍ଯ୍ୟୋଧନ ନୃପତିଙ୍କୁ
ହେଳନହିଁ ଭ ନାସ୍ତି କପାଁ ନ କଲୁ ଆମ୍ଭଙ୍କୁ ।

ଦଣ୍ଡି ଘେନି ବରବେଶେ ଅଇଲା ନୃପତି
ଏଣେ ସିନା ଲଜ୍ଜା ମୋତେ ହୋଇଲା ଶ୍ରୀପତି
ଗୋବିନ୍ଦ ବୋଇଲେ ସ୍ୱାମି ଶୁଣ ସଙ୍କର୍ଷଣ
କେ ଆନକରିବ ପ୍ରଜାପତିର ଘଟଣ ।
ଆମ୍ଭେ ବାଞ୍ଛା କଲୁ ବଡ଼ଜଣଙ୍କୁ ଦେବାକୁ
ଧାତା ସର୍ଜିଛି ସୁଭଦ୍ରା ସଙ୍ଗେ ଅର୍ଜୁନକୁ ।
ଯେ ଯାହାର ସ୍ୱାମୀ ସେ କି ତାକୁ ଦେବ ନାହିଁ
ଆମ୍ଭର ବିହ୍ନ କରିଲେ ସେ କାର୍ଯ୍ୟ କି ରହି ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ବରବେଶେ ଅଇଲା ସେ ଗାନ୍ଧାରୀର ସୁନୁ ।
ଅପ୍ରମିତ ବଳ ସଙ୍ଗେ ଘେନି କୁରୁନାଥ
ବଜେ ସମାରୋହେ ଆସି ରୈବତ ପର୍ବତ ।
ଏମନ୍ତ ସମୟେ ଗୁରୁଗଣ ଚଳିଯାଇ
କଉରବ ନାଥ ଆଗେ ବାର୍ତ୍ତା ଦେଲେ ନେଇ
ଶୁଣିମା କୁରୁରାଜାଧିରାଜ ଶିରୋମଣି
ଦୁରପଦ କଥା ଏକ ହେଲା ଏଥିକ୍ଷଣି ।
ସୁଭଦ୍ରାକୁ ହରିନେଲା ପାଣ୍ଡବ ଅର୍ଜୁନ
ବଳେ ଘେନି ଦ୍ୱାରକାରୁ ଯାଉଛି ଏକ୍ଷଣ ।
ସାତବଂଶ ଯୋଦ୍ଧା ସଙ୍ଗେ ବେନି କୃଷ୍ଣରାମ
ଅର୍ଜୁନର ଭୁଲେ କରୁଅଛନ୍ତି ସଂଗ୍ରାମ ।
ଶୁଣିଣ ବିଷାଦ କୁରୁକୁଳ ଅଧିପତି
ଯାବତକାଳେ ପାଣ୍ଡବେ କରନ୍ତି ଅନୀତି ।
ଆହେ ଭୀଷ୍ମ ଦ୍ରୋଣ ତୁମ୍ଭେ ବୁଝିଲ କେମନ୍ତ
ଏକଯୋଗ କରୁଥାଅ ପାଣ୍ଡବ ଆମ୍ଭନ୍ତ ।
ବସୁଦେବ ନନ୍ଦ ରାମ କୃଷ୍ଣ ଅନୁମତେ
ସୁଭଦ୍ରାକୁ ବିଭା ଦେବାପାଇଁ କଲେ ମୋତେ
ସବୁରିମତେ ହସ୍ତିନାପୁରେ ଦୂତ ପେଷି
ବଳେ ତାକୁ ନଏ ପାର୍ଥ ଦ୍ୱାରକାରେ ପଶି ।
ଭୀଷ୍ମ ବୋଲେ ଆମ୍ଭେ ସହଦେବହୁଁ ଶୁଣିଲୁ
ତେଣୁ କନକ ବେଦୀରୁ ବାହୁଡ଼ାଇ ଥିଲୁ ।
ଆମ୍ଭ ବଚନ ନ କଲୁ ତୁହି କୁରୁଦେବ
ଏବେ ଏଠାରେ କେମନ୍ତେ ବାହୁଡ଼ିଣ ଯିବ ।
ଦୁର୍ଯ୍ୟୋଧନ ବୋଇଲା ଯେ ହୋଇଲା ଏମନ୍ତ
ନିଶ୍ଚେ ପ୍ରାଣତ୍ୟାଗ ଏଥେ ହେବ ବୀରପାର୍ଥ ।
ଯେବେ ସୁରଇନ୍ଦ୍ର ଆସି ତାହାକୁ ରଖଇ
ତ୍ରୈଲୋକ୍ୟ ମଧ୍ୟରେ ଆଉ ତାର ରକ୍ଷା ନାହିଁ

ଚଳାଅ ଥାଟ ମୋହର ଅର୍ଜ୍ଜୁନ ସମୀପ
ସମରେ ଆଗ ତାହାର ଭାଙ୍ଗିବି ମୁଁ ଦର୍ପ ।
ଭୀମ ବୋଇଲା ତୁ କୋପ କରୁ ଯେ କାହାକୁ
ଜାଣି ଶୁଣିକରି କପଁ । ଅଇଲୁ ଏଠାକୁ ।
ତୋର ବଳେ ଅର୍ଜ୍ଜୁନକୁ କି କରି ପାରିବୁ
ସମସ୍ତଙ୍କ ସହ ପରାଭବ ତୁ ପାଇବୁ ।
ବାଉନ ବାଉନ ଭାର ଗଦା କରେ ଘେନ
ପ୍ରତିଜ୍ଞା କରଇ ବୀରବର ଯେ ପବନି ।
ଯୁଧିଷ୍ଠି ବୋଇଲେ ରହ ରହ ଭୀମସେନ
ଅର୍ଜ୍ଜୁନର ସଙ୍ଗେ ଯୁଦ୍ଧ କରେ ସଙ୍କର୍ଷଣ ।
ଯାବତ କାଳ ଆମ୍ଭଙ୍କୁ କୃଷ୍ଣ କରେ ରକ୍ଷା
ତାର ସଙ୍ଗେ ଆମ୍ଭେ କରି ପାରିବା କି କକ୍ଷା
ଯୁଧିଷ୍ଠିର ପଚାରିଲେ ଶୁଣ ସହଦେବ
ହରି ଅର୍ଜ୍ଜୁନ ଦୁହିଙ୍କ ଭାବ କି ଅଭାବ ।
କରପଦ ଯୋଡ଼ି ସହଦେବ ଯେ ବୋଇଲେ
ସୁଭଦ୍ରାକୁ ପାର୍ଥ କୃଷ୍ଣ ଆଜ୍ଞାରେ ହରିଲେ ।
ଦେବଙ୍କୁ ଦୁର୍ଲ୍ଲଭ ସ୍ୱାମୀ ଯେବଣ ଦ୍ୱାରକା
ଅର୍ଜ୍ଜୁନର ଦର୍ପ କାହିଁ ଏତେକ ନିଃଶଙ୍କା ।
ଯଦ୍ୟପି ସଂଗ୍ରାମ କରୁଛନ୍ତି ରାମ ଭୁଲେ
ଧନୁ ଚକ୍ର ଗଦା ହରି ଅର୍ଜ୍ଜୁନକୁ ଦେଲେ ।
ଲକ୍ଷେ ଷାଠିଏ ସହସ୍ର ଅଶୀ କୃଷ୍ଣ ବାଳ
ଅର୍ଜ୍ଜୁନ ଆବୋରି କରୁଅଛନ୍ତି ଯେ ଖେଳ ।
ସହଦେବ ମୁଖୁଁ ଶୁଣି ଏସନକ ବାଣୀ
ଅନେକ ସାନନ୍ଦ ହେଲେ ଧର୍ମ ନୃପମଣି ।
ଭୀମକୁ ବୋଇଲେ ବାଟ କଢ଼ାଅ ରେ ଭାଇ
ଅର୍ଜ୍ଜୁନ କଟକୁ ଆମ୍ଭେ ଯିବା ବେଗ ହୋଇ ।
ଭୀମ ବୋଲେ କୁରୁଥାଟ ପଡ଼ୁ ଅଛି ମାଡ଼ି
କେଉଁ ବାଟେ ଯିବା ଆମ୍ଭେ ତାହାଙ୍କୁ ଯେ ଏଡ଼ି
ହସ୍ତୀ ଏକ ଚଢ଼ି ଦେବ ସେ ମାନଗୋବିନ୍ଦ
ଥାଟ ଚଳାଇଲା ଅତିବେଗେ ସେ ନରେନ୍ଦ୍ର
ଦୁଃଶା ଶକୁନି ଯେ ଶଲ୍ୟ କର୍ଣ୍ଣ ସେନାପତି
ଅଶୀଲକ୍ଷ ଯୋଦ୍ଧା ଛନ୍ତି ତାର ପଛକତି ।
ପ୍ରଦ୍ୟୁମ୍ନ ପଚାରେ ଦେବ ଦେଖ ଫାଲଗୁନି
ପଛ କଟରେ କେବଣ ରଜାର ସଇନ ।
ପ୍ରଦ୍ୟୁମ୍ନର ବଚନେ ଯେ ଗୃହିଁଲେ ଅର୍ଜ୍ଜୁନ
ସାଗର ପ୍ରାୟେ ଆସନ୍ତି କୌରବ ସଇନ୍ୟ ।

ବଡ଼ ସମ୍ଭାରରେ ସେହୁ ଘେନ ଆସେ ଥାଟ
ବ୍ରହ୍ମାଣ୍ଡେ ଉଛୁଳି ଅଛି ସୈନ୍ୟଙ୍କ ମୁରାଟ ।
ନବଯୁଣ ମାଡ଼ି ରହିଅଛନ୍ତି ସଇନ
ଆକାଶେ ଉଚ୍ଛୁଳୁ ଅଛି ସୈନ୍ୟ ମୁଖଧ୍ୱନି ।
ଦେଖୁ ଦେଖୁ ହସ୍ତୀ ଚଳାଇଲେ କଉରବେ
ସହସ୍ର ପୁରେ ବେଢ଼ିଲେ ଅର୍ଜ୍ଜୁନକୁ ବେଗେ ।
ଶୁଣ ଆହେ ମହାରଜା ଅର୍ଜ୍ଜୁନ ଚରିତ
କ୍ଷୀରୋଦ ଉତରେ ଯେହ୍ନେ ମନ୍ଦର ପର୍ବତ ।
କ୍ଷୀରସମୁଦ୍ର ହୋଇଲା ଯେ ଦଧି ନଉତି
ମନ୍ଦରକୁ ଖୁଆଳରି ଦେବତାଏ ମନ୍ଥି ।
କଉରବ ଥାଟ କ୍ଷୀରଅବ୍ଧି ହେଲା ଜାଣ
ଅର୍ଜ୍ଜୁନର ରଥ ଖୁଆ କରିବ ମନ୍ଥନ ।
କୁରୁଥାଟର ମନ୍ଥନକାରୀ ସବ୍ୟସାଚି
ଅସଂଖ୍ୟ ଥାଟ ଦେଖିଣ ବିଷାଦ ଗ୍ରାବସ୍ତି ।
ଦୁର୍ଯ୍ୟୋଧନ ଥାଟ ଦେଖି ଧାଇଁ ବୃକୋଦର
ବାଉନ ବାଉନ ଭାର ଗଦା ଘେନ କର ।
ଘୋଟିଲାକ ବୃକୋଦର କୌରବ ସଇନ
ଶରୀର ତା ବିକାଶିଲା ମହାକୋପ ଘେନ ।
ଦୁର୍ଯ୍ୟୋଧନ କରବେଶ ଦେଖି ବଳରାମେ
ମୁଷଳ ଘେନ ଉଲ୍ଲାସେ ଧାଇଁଲେ ସଂଗ୍ରାମେ ।
ମହାବିଶ୍ୱରୂପ କୋପେ ଧଇଲେ ସେ ହଳୀ
ପାଦଘାତେ ଟଳଟଳ ହୁଏ ବସୁନ୍ଧରୀ ।
ରଡ଼ିର ଘାତେ ତରସ୍ତ ହେଲେ ଦିଗପାଳେ
ରହିଲେ ଯେ ବିଦ୍ୟାଧରେ ଗଗନମଣ୍ଡଳେ ।
କୋଟିଏ ସିଂହର ପରାକ୍ରମୀ ହଳପାଣି
ଲକ୍ଷେ ଯୋଜନ ହାସିଲେ ଦେବ ବଜ୍ରପାଣି
ବିଶ୍ୱରୂପ ବିକାଶିଲେ ଯହୁଁ ନୀଳାମ୍ବର
ବିକଳ ସୁଭଦ୍ରା ଦେଖି ରଥର ଉପର ।
ବଳରାମ ବିଶ୍ୱମୂର୍ତ୍ତି ଦେଖି ବୀର ପାର୍ଥ
ବୋଲେ ବିରୋଧ କରିବେ ଦେବ ହଳହସ୍ତ
ସମରେ କେ ନ ରହିବେ ବଳରାମ ଡାକେ
କେସନେ ଦେହ ଧରିବ ତାହାଙ୍କ ସମ୍ମୁଖେ ।
ଏହାକ୍ଷଣି ଭଗ୍ନ ହେବ ଏହି ଭୂମି ରଥ
ଏଥିକୁ କି କରି ମୋତେ କହ ପ୍ରାଣନାଥ
ଆଜ ରାମ ମୁଖେ ପଡ଼ି ନ ବର୍ତ୍ତିବେ କେହି
ସୁଲଭକୁ ଅସୁଲଭ କଲା ଆଣି ବହି ।

ଅର୍ଜୁନ ବୋଇଲେ ସଖି ହୋଇଲ୍ କ ବାଇ
ଏ କଥାରେ ଆମ୍ଭଙ୍କୁ ସେ ଜଣି ନ ପାଇଇ
ଦେଖ ଦେଖ ସୁଭଦ୍ରା ଗୋ ମୋହର ପ୍ରତାପ
କୋ ନାଶରେ ଭାଙ୍ଗିବ ରାମଙ୍କର ଦର୍ପ ।
ରାମ ସନ୍ନିଧେ ପ୍ରବେଶ ଯାଇଁ କୁରୁପତି
ଓହ୍ଲାଇଲେ ଭୀଷ୍ମ ଦ୍ରୋଣ ରଥରୁ ତଡ଼ିତ ।
କର୍ଣ୍ଣ ଶଲ୍ୟ ଭୂରିଶ୍ରବା କୃପହିଁ ଶକୁନି
ପ୍ରଣାମ କଲେ ରାମଙ୍କ ଧରି ପାଦ ବେନି ।
ଦେବ ବୋଇଲେ ହେ ଶୁଣ ତୁ ଗାଙ୍ଗେୟ
ଏମନ ଅନୀତି କଲା ପଣ୍ଡୁର ତନୟ ।
ବଳାତ୍କାରେ ହରିନେଲା ପୁରୁଁ ସୁଭଦ୍ରାକୁ
ଆମ୍ଭେ ଅଣାଇଲୁ ଦୁର୍ଯ୍ୟୋଧନ ନୃପତିକୁ ।
ଭୀଷ୍ମ ବୋଇଲେ ହେ ଦେବ କୋପ ସମ୍ବରିବା
ନ ଜାଣି ଦୋଷ ଅର୍ଜୁନ କଲା ସେ ଅବା ।
କୁରୁ ପାଣ୍ଡବେ ନୁହନ୍ତ କିଛି ଭିନ୍ନାଭିନ୍ନ
ଯେ ଦୁର୍ଯ୍ୟୋଧନ ରାଜା ସେ ପ୍ରତ୍ୟକ୍ଷେ ଅର୍ଜୁନ
ଦୁର୍ଯ୍ୟୋଧନ ବୋଲେ ଭୀଷ୍ମ ଯାହା ତୁମ୍ଭେ କହ
ମୋର ପାଖେ ଥାଇ ତୁମ୍ଭେ ପାର୍ଥେ କର ସ୍ନେହ
ଆଜ ପାଣ୍ଡବଙ୍କୁ ଜାଣ କେ କରିବ ରକ୍ଷା
ତୋର ଯେବେ ସ୍ନେହ ଅଛି କର ତୁମ୍ଭ କକ୍ଷା
ତୁମ୍ଭେ ମୋହର ସଂଗ୍ରାମ ଦେଖ ଦେବରାଜ
ଜୀବନ୍ତେ କି ପାଣ୍ଡବଙ୍କୁ ଥୋଇବି ମୁଁ ଆଜ ।
ବୋଇଲେ ଦୁର୍ଯ୍ୟୋଧନକୁ ରୁହିଁ ଜଗନ୍ନାଥ
ପାଣ୍ଡବଙ୍କ ତୁଲେ ତୁ କି ସଂଗ୍ରାମେ ସମର୍ଥ ।
ଖାଣ୍ଡବବନ ଦହନେ ଜଣି ଅମରାଦ
ଅଗ୍ନି କି ତୋଷିଲା ସେଠି ଦେଇ ମହୌଷଧି ।
ପାଣ୍ଡବାସୁର ଭକ୍ଷଣ କରୁଥିଲା ଆସି
ତୁମ୍ଭଙ୍କୁ ସେ ରକ୍ଷା କଲା ଅସୁରକୁ ନାଶି ।
ପଞ୍ଚଳ ଦେଶେ ଦ୍ରୌପଦୀ ସ୍ୱୟମ୍ବର କାଳେ
ଲକ୍ଷେକ ରାଜା ଜିଣିଲା ଲକ୍ଷବନ୍ଧ ହେଲେ ।
ଅନେକ ଶାସ୍ତି ପାଇବ ଅର୍ଜୁନର ହସ୍ତେ
ଲେଉଟି ଯାଅ ଆପଣା ପୁରେ ତୋଷଚିତ୍ତେ ।
ଦ୍ୱାପର ଯୁଗେ ଅର୍ଜୁନ କ୍ଷତ୍ରିକୁଳମଲ୍ଲ
ପୃଥିବୀର ଭାରହର ବିନାଶନେ ଶଲ ।
ରାଜ ମୂର୍ଖ ନ ଶୁଣଇ ଯେସନେ ଶାସ୍ତ୍ରବାଣୀ
ତେସନେ ନ ଶୁଣଇ କୁରୁପତି କୃଷ୍ଣବାଣୀ ।

ଅନେକ କଥା କହିଲୁ ତୁମ୍ଭ ଦେବରାଜ
କେମନ୍ତେ ରକ୍ଷା କରିବୁ ଅର୍ଜୁନକୁ ଆଜ ।
ଯେସନକ ତରଣିକୁ ତହଇ ବହନ
ତେସନେ ପାର୍ଥକୁ ଦହିବ କୁରୁସୈନ୍ୟ ସେନ ।
ତାରକ ସଂଗ୍ରାମେ ଯେସନେ ଧାମଇଁ କୁମାର
ଅର୍ଜୁନ ମହିମା ଜାଣି ତେସନ ପ୍ରକାର ।
ଯେଉଁ ଶସ୍ତ୍ର ଦେଇଥିଲେ ଅନଳ ଦେବତା
ତାହା ସୁମରଣା କଲା ପାର୍ଥ ବଳବନ୍ତା
ସେ ସମସ୍ତ ବାଣ ଆସି ହୋଇଲା ପ୍ରାପତ
ପିନାକ ଧନୁ ଆବର ଶସ୍ତ୍ର ପାଶୁପତ ।
ଅଗ୍ନିଦେବତା ଦେଲେ ଯେ ରଥେ ନନ୍ଦିଘୋଷ
ବାହୁ ମୀନକେତନ ତୁ ରଥେ ଆସି ବସ ।
ଅର୍ଜୁନ ବଚନ ଶୁଣି ଉଠିଲା ମଦନ
ରଥେ ବିଜେ କଲା ବେଗେ ରୁକ୍ମିଣୀନନ୍ଦନ ।
ସଂଗ୍ରାମର ସମାରୋହ ଦେଖାଇ ଅନଙ୍ଗ
କଉରବ ଆଠଯାକ ଆବୋରିଲେ ବେଗ ।
ଲକ୍ଷେ ଷାଠିଏ ସହସ୍ର ଅଶୀ ଏ ନନ୍ଦନ
ସବୁରି କରେ ଶୋଭନ ଶଙ୍ଖ ଚକ୍ର ଚିହ୍ନ ।
ଶ୍ରୀହସ୍ତରେ ଧନୁ ଯେନ ଛନ୍ତି କୃଷ୍ଣ ବାଳ
ମହା ଅନଳକୁ ଜିଣି ତେଜ ଅନର୍ଗଳ ।
ପେଷନ୍ତେ ସେ ଦିବ୍ୟବାଣମାନ ବାଛି ବାଛି
ବଳରାମ ଆବୋରିଲେ ରଣେ ସବ୍ୟସାଚି ।
ରାମ ବୋଲୁଛନ୍ତି ଚାହିଁ ଭୀଷ୍ମଙ୍କର ମୁଖ
ବଳସ୍ୱାର ଚେର ଏହା ପ୍ରତିଜ୍ଞା ହେ ଦେଖ ।
ଭଗ୍ନୀକି ମୋହର ହରିନଏ ବଳାତ୍କାରେ
ଆବର ଯୁଦ୍ଧ କରଇ ମୋହର ସଙ୍ଗରେ ।
କୋପେ ହଳ ମୁଷଳକୁ ବୁଲାଇଲା ତୋଳି
ଅର୍ଜୁନ ସମ୍ମୁଖରେ ବିଜେ ମହାବଳୀ ହଳୀ ।
ବଳରାମ କ୍ରୋଧେ ପୁଣି ବୋଇଲେ ପାର୍ଥକୁ
ପାଣ୍ଡବାରେ କେ ରଖିବ ତ୍ରୈଲୋକ୍ୟେ ତୁମ୍ଭଙ୍କୁ
ଅର୍ଜୁନ ବୋଇଲେ ସ୍ୱାମି ପ୍ରୀତି ବଡ଼ ଜାଣ
ସଂଗ୍ରାମ କଲେ ଦେବ କେ କାହାର ରକ୍ଷଣ ।
ପୀରତିରେ ଦାସ ମୁହିଁ ଭକତ-ବତ୍ସଳ
ଦୁଃଖୀ ଉଦ୍ଧାରଣ ସଦା ଶରଣ ସୋଦର ।
ଯଦ୍ୟପି ତୁମ୍ଭ ଆମ୍ଭର କରିବା ପୀରତି
ତୋର ପାଦତଳେ ଶତଦଣ୍ଡ ମୋ ପ୍ରଣତି ।

ତୁ ହେବେ ମୋହର ତୁଲେ କରିବୁ ଅଭାବ
ଏକା ଅର୍ଜୁନକୁ ସହସ୍ରେକ ବଳଦେବ ।
ପ୍ରସନ୍ନ ହନ୍ତୁ ମୁଁ ପାରେ ତ୍ରୈଲୋକ୍ୟ ଘୋଟି
ଦୁଷ୍ଟଜନ ନିବାରଣ କର୍ତ୍ତା ଜଗଜ୍ଜେଠି ।
ଆଜ୍ଞୁଁ ଦେବକାର୍ଯ୍ୟ ହେବ ପୃଥିବୀ ଉଶ୍ୱାସ
ଆଜ ଏଥୁଁ ଥୋକେ ଦୁଷ୍ଟଲୋକ ଯିବେ ନାଶ
ଅର୍ଜୁନ ପ୍ରତିଜ୍ଞା ଅତି ଦୁରପଦ ଦେଖି
ବଜ୍ରମୁଷଳ ଧଇଲେ ଉଦ୍ବୋଧ ଉପେକ୍ଷି ।
ଧଇଲେ ପୁଣି ସେ କୋପେ ଏକ ଲୁହାଧନୁ
କୋଟିଏ ତନୁ ବହ୍ନିଲେ ରୋହିଣୀର ସୂନୁ ।
କୋଟିଏ ନାରାଚ ବେଗେ ଯୋଚ ତତକ୍ଷଣରେ
ଅର୍ଜୁନକୁ ମାଇଲେକ ପ୍ରଭୁ ନୀଳାମ୍ବରେ ।
ଶର ସନ୍ଧାନ ବୋଲନ୍ତି ଦେବ ହଳପାଣି
ଆକର୍ଷି ନାରାଚ ପୁଣି ପେଷୁଛନ୍ତି ଟାଣି ।
ସହସ୍ର ଆଦିତ୍ୟ ତେଜ ପ୍ରାୟେ ଶରଜ୍ୟୋତି
ଏମନ୍ତେ ଲକ୍ଷେ ନାରାଚ ପେଷିଲେ ସେ ଧାତି
ଶ୍ରୀକରେ ଧନୁ ଧଇଣ ବୀର ଫାଲଗୁନ
ପ୍ରହାର କଲେ ନାରାଚ ବାଛି ବାଛି ଘେନ ।
ଶରକୁ ଯେ ପ୍ରତିଶର ଅର୍ଜୁନ ସମ୍ବାଦ
ବଳରାମଙ୍କର ଶର ପକାଉଛି ଛେଦ ।
ଯାନ ବାହନ ଚଢ଼ିଣ ଆସି ବୃନ୍ଦାରକେ
ଆକାଶେ ଥାଇ ସମର ଦେଖନ୍ତି କୌତୁକେ ।
ନାରଦ ଯେ ବଜେଇଲେ ବ୍ରହ୍ମବୀଣା ବାଇ
କଳିପ୍ରିୟ କୁତୂହଳେ ଦେଖିବାର ପାଇଁ ।
ଲଗୁରେ ସଂଗ୍ରାମ ହେଉ ରଣ ରଙ୍ଗ ଗୋଳ
ସାଧୁରେ ପାଣ୍ଡବା ଧନ୍ୟ ଧନ୍ୟ ତୋର ବଳ ।
ଅର୍ଜୁନ ବଳରାମଙ୍କ ଶର ବନ୍ଧାବନ୍ଧ
ଉଭୟେ ଆଟରେ ଦୁହେଁ ଯେଣୁ ସମଯୋଧୀ ।
ମାଧବ ଶରେ ସେ ଯହୁଁ ନ ପାରିଲେ ଜିଣି
ଦେବଶରମାନ ତହୁଁ ପେଷିଲେକ ଆଣି ।
ତ୍ରୈଲୋକ୍ୟ ଘୋଟଇ ଯେହ୍ନ ଶରଘାତ ବାଣ
କୋପରେ ତାହା ପ୍ରହାର କଲେ ସଙ୍କର୍ଷଣ ।
ଜ୍ୱାଳାବଳୀ ନାମେ ବାଣ ଧନଞ୍ଜୟ ଛନ୍ଦି
ବଳରାମଙ୍କର ବାଣ ପକାଇଲା ଛେଦ ।
ବେଗେ ପେଷିଲେ ନିର୍ଘାତ ବାଣ ସଙ୍କର୍ଷଣ
ଛଆର କଲେ ସେନ ପାଣ୍ଡବା ପବଣ ।

ତହୁଁ କୋପେ ମାରେ ଧନଞ୍ଜୟ ବଜ୍ରସୂଚୀ
ଛେଦିଲେ ବଳରାମଙ୍କ ବାଣ ସବ୍ୟସାଚୀ ।
ସହସ୍ର ଧାର ଅମୋଘ ଯେବଣ ଶକତି
ଅର୍ଜୁନକୁ ପେଷିଲେ ସେ ରେବତୀର ପତି ।
ମହା ଅନଳ ଜିଣି ସେ ଶକ୍ତି ମହାତେଜ
ଆକାଶୁଁ ଅନ୍ତର ହୋଇଗଲେ ଦେବରାଜ ।
ପାର୍ଥ ରଖ ରଖ ବୋଲି ଶୁଭିଲାକ ବାଣୀ
ବ୍ରହ୍ମାଙ୍କ ଶର ଅର୍ଜୁନ ପେଷେ ଗୁଣ ଟାଣି ।
ଅର୍ଜୁନର ଶର ତିନି ଯୋଜନକୁ ଘୋଟି
ରାମଙ୍କ ସହସ୍ର ଧାର ପକାଇଲା କାଟି ।
ଭୁଜବାଣ ନାମ ଅଟେ ଯେଉଁ ଦେବଶର
ଘେନିଲେ ଶ୍ରୀକରେ ସେହି ବାଣ ନୀଳାମ୍ବର ।
ନ ଜିଣିଲେ ନ ଫେରେ ସେ ଅପାଲଟ ଶର
ଯାହାକୁ ପେଷିବ ମୃତ୍ୟୁ ହୋଇବ ତାହାର ।
ଆକ୍ରାନ୍ତ ହୋଇଣ ରାମ ସେ ଶର ପେଷଇ
ପ୍ରଳୟକାଳ ପ୍ରାୟେକ ସେ ବାଣ ଗ୍ରାସଇ ।
ପଳାଇଲେ ବାଣତ୍ରାସ ଦେଖିଣ ସଇନ
ଏକା ରହିଅଛି ପାର୍ଥ ସୁଭଦ୍ରାକୁ ଘେନ ।
ତ୍ରିଭୁବନେ ବିକାଶିଲା ସେ ବାଣର ତେଜ
ସଚରାଚର ନଷ୍ଟୟେ ହୋଇବ ଦହସ୍ୟ ।
ଭୁଜ ବାଣର ସେ ତେଜ ଦେଖି ଜଗନ୍ନାଥେ
ମାଳବାଣ ଦେଲେ ନେଇ ଅର୍ଜୁନର ହାତେ ।
କାହ୍ନୁରେ ଥୟ ନୁହଇ ସେହି ଭୁଜବାଣ
ମାଳବାଣର ଦର୍ପେ ସେ ହୁଏ ନିବାରଣ ।
ମାଳବାଣ ପେଷିଣ ସେ ବାସବର ବଳା
ବଳରାମଙ୍କ ବାଣକୁ ଗର୍ବେ ସଂହାରିଲା ।
ଆକାଶରେ ଦେବଲୋକେ କଲେ ଜୟ ଜୟ
ଧନ୍ୟ ଅର୍ଜୁନ ଧନ୍ୟ ତୋ ନାମ ଧନଞ୍ଜୟ ।
ପୁଷ୍ପବୃଷ୍ଟି କଲେ ଦେବେ ଅର୍ଜୁନର ମାଥ
ବିଜୟ ନାମ ବହିଲେ ତହିଁ ବୀର ପାର୍ଥ ।
ପ୍ରଦ୍ୟୁମ୍ନର ତୁଲେ କଲେ ଦୁର୍ଯ୍ୟୋଧନ ଯୁଦ୍ଧ
ବହୁତ ସମର କଲେ ଦୁହେଁ ରଣମଧ୍ୟ ।
ଶାମ୍ବ କୁମରର ତୁଲେ ଯୁଝେ ଦୁଃଶାସନ
ଗଦ ତୁଲେ ଦୁର୍ଜ୍ଜୟର ଯୁଦ୍ଧ ଅନୁକ୍ଷଣ ।
ସଂଗ୍ରାମ କରନ୍ତି ଭୀମ କର୍ଣ୍ଣ ମହାରଥୀ
ଶକୁନିର ତୁଲେ ଯୁଝେ ସହଦେବ ମନ୍ତ୍ରୀ ।

ଦ୍ରୋଣଙ୍କ ସଙ୍ଗେ ସମର କରଇ ସାତ୍ୟକ ।
ଧୃଷ୍ଟଙ୍କ ତୁଲେ ଅନୁ ର ଯୁଦ୍ଧ କରେ ଡାକ
କାଳନ୍ଦୀ ନନ୍ଦନ ନାମ ଅଟେ ଯବନକ
ଭୂରିଶ୍ରବା ସଙ୍ଗେ ସେହି ଯୁଝଇ ଅନେକ ।
ସାତ୍ୟାଙ୍କର ନନ୍ଦନ ଯେ ଜମ୍ବୁ ଶମ୍ଭୁଗଣ
ଶମ୍ବର ତୁଲେ ସଂଗ୍ରାମ ତାଙ୍କ ଅପ୍ରମାଣ ।
ନକୁଳ କୃପ ଏ ଦୁହେଁ ହୋଇଲେକ ଭେଟ
ପର୍ଯ୍ୟାପ୍ତ ରଣ କରଣ ମନ୍ତୁ ଲେ ସେ ଥାଟ ।
ଗଦାଘାତ ବୁଲାଇଣ ଭୀମସେନ ଗର୍ଜି
କର୍ଣ୍ଣର ରଥକୁ ବେଗେ ପକାଇଲା ଭାଙ୍ଗି ।
ଦ୍ରୋଣଙ୍କ ରଥ ଧଇଲା ଯାଇ କୋପଭରେ
ପିଟିଲା ନେଇ ଧୃଷ୍ଟଙ୍କ ରଥର ଉପରେ ।
ଭାଙ୍ଗି ହେନରଥ ହୋଇଗଲା ମସିଗୁଣ୍ଡା
ରଣରଙ୍ଗେ ଗର୍ଜ୍ଜଇ ସେ ମାରୁତି ପ୍ରଚଣ୍ଡା ।
ଯେସନ ଗର୍ଜ୍ଜଇ ସିଂହ ହସ୍ତୀବଳ ଦେଖି
ପ୍ରହାର କରେ ମାରୁତି ଉପ୍ରୋଧ ଉପେକ୍ଷି ।
ପ୍ରଦ୍ୟୁମ୍ନ ସମର ମୁଖେ କହି ତ ନ ପାର,
ଅନେକ ସୈନ୍ୟ ମ ଇଲା ଶମ୍ବର ଅରିର ।
ଅନଙ୍ଗର ଶରେ ରଣେ ପଡ଼ନ୍ତି କୌରବେ
ରଣରଙ୍ଗେ ବିହରନ୍ତି ଆନନ୍ଦେ ପାଣ୍ଡବେ ।
ମହିଷା ଯୁଦ୍ଧରେ ଯେହ୍ନେ ବିଜେ କାତ୍ୟାୟିନୀ
ବିହରନ୍ତି ସେ ପାଣ୍ଡବେ ମାରନ୍ତି ସଇନ ।
ଶ୍ୱେତହସ୍ତୀ ଏକ ଚଢ଼ି ଦେବ ଯେ ଯୁଧିଷ୍ଠି
ଜଗନ୍ନାଥଙ୍କ ସନ୍ନିଧେ ଯାଇ ତାଙ୍କୁ ଭେଟି ।
ଯୁଧିଷ୍ଠିଙ୍କୁ ଦେଖି ଜଗମୋହନ ଯେ ସ୍ୱାମୀ
ରଥ ତେଜି ଠାକୁରଙ୍କ ପାଦତଳେ ନମି ।
ପ୍ରସନ୍ନ ହୋଇଣ ଦେବ ସୁକଲ୍ୟାଣ ବାଞ୍ଛି
ଆରୋଗ୍ୟ ଥାଅ ଆପଦ ଖଣ୍ଡରେ ଶ୍ରୀହରି ।
ଯୁଧିଷ୍ଠି ବୋଇଲେ ଶୁଣ ଶ୍ରୀଜଗମୋହନ
ତୁମ୍ଭେ ଥାଉଁ କପାଁ ଏହା କଲାକ ଅର୍ଜ୍ଜୁନ ।
ବିଶ୍ୱରକୁ ଯୋଗ ଇଲେ ଢିଅନ୍ତ କୁମାରୀ
ଅନିବାରଣେ କାହିଁକି ବଳାତ୍କାର କରି ।
ବାବୁ ତୁମ୍ଭେ ଥାଉଁ କପାଁ ଏଡ଼େକ ପ୍ରମାଦ
ତୁମ୍ଭ ତୁଲେ କପାଁ ମୋର ଏଡ଼େ ବଡ଼ ବାଦ
ଦେଖୁ ଦେଖୁ ପଡ଼ୁଛନ୍ତି ଅନେକ ସଇନ
କେତେ ଏଥୁ ଆଜ ପୁଣି ଯିବ ପ୍ରାଣ ହେନ ।

ଚଉବିଂଶ ଯୋଜନ ଯେ ରୈବତ ପର୍ବତ
ରକତ ମାଂସେ କର୍ଦ୍ଦମ ହେଲା ଅପ୍ରମିତ ।
ଧୃତରାଷ୍ଟ୍ର ପୋଏ ନକ ହୁଅନ୍ତ ପ୍ରାଣେ ନାଶ
ଅର୍ଜ୍ଜୁନଙ୍କୁ ସମାଧାନ କର ହେ ଦେବେଶ ।
ଗୋବିନ୍ଦ ବୋଇଲେ ପାର୍ଥ ହଳୀ ଶରତେଜେ
ଗତେ ବିଶୁଅଛି କବା ଉଦେ ଗ୍ରହରାଜେ ।
କେ କାହାର ପିଅବ କେ କାହାର ପୀରତ
ଯାଇ ନ ପାରଇ ବାଣଜାଳେ ତାଙ୍କ କତ ।
ଏସନ କର୍ମ କରଇ ରଣେ ତୁମ୍ଭ ଭାଇ
ନିଃଶ୍ୱାସକେ ଶତ ଶତ ନାରାଚ ପେଷଇ ।
ଏମନ ଅଛିଦ୍ରେ ସେହି କରଇ ସମର
ଛିଦ୍ର ପାଇଲେ ମାରିବେ ପ୍ରାଣେ ମଳାମ୍ବର ।
ଅର୍ଜ୍ଜୁନ ପାଶକୁ ଯିବା କେବଣହିଁ ବାଗେ
ଇନ୍ଦ୍ର ବ୍ରହ୍ମାଆଦି କେହି ଯିବ ତାହା ଲାଗେ ।
ଯେବଣ ଶସ୍ତ୍ରମାନ ସେ ବିନ୍ଧେ ସବ୍ୟସାଚି
ମୋତେ ତାହା ଅଗୋଚର ବୋଲନ୍ତି ଶ୍ରୀହରି
କେବଣ ପ୍ରକାରେ ତାର ପାଶକୁହିଁ ଯିବା
ଶସ୍ତ୍ରଙ୍କର ତେଜେ ଦେହ ଦହ୍ୟ ହୋଇବା ।
ଶାମ୍ବକୁମର ଯେ କରୁଅଛଇ ସମର
ନାରାଚ ପେଷିଲା ଦ୍ରୋଣଗୁରୁଙ୍କ ଉପର ।
ପିଠି କଣ୍ଟକ ନାରାଚ ଅଛଇ ନିକଳ
ଆଉ ଏକବାଣ ଛଇଗୁଡ଼େ ଗଲା ଗଳ ।
ଦ୍ରୋଣ ମହାକ୍ଷତୀ ତଳ ପଡ଼ିଲେକ ଭୂଇଁ
ଅଶ୍ୱଥାମା ତାହାଙ୍କୁ ଯେ ଧଇଲେକ ଧାଇ ।
ରଥପରେ ଅଶ୍ୱଥାମା ଯାଇଣ ଚଢ଼ିଲେ
ଆବର କୋଳ କରଣ ଦ୍ରୋଣଙ୍କୁ ଧଇଲେ ।
ପିତାଙ୍କୁ କୋଳରେ ଧରିଅଛି ଗୁରୁସୁତ
ପ୍ରହାରିଲେ ଗଦା ଗଦକୁମର ତୁରିତ ।
ଲକ୍ଷେଭାର ଗଦାର ସେ ଗୁରୁଭାର ପାଇ
ପିତା ପୁତ୍ର ପଡ଼ିଗଲେ ମୂର୍ଚ୍ଛାଗତ ହୋଇ ।
ରଥେକ ଚଢ଼ିଣ ଯୁଦ୍ଧ ଆବୋରିଲେ ଶଲ୍ୟ
ଗଦକୁମର ଯେ ଧାଇଁ କରେ ରଣଗୋଳ ।
ଧାଇଁଣ ଶଲ୍ୟ ବୋଇଲେ କୋପେଆରେଆରେ
ଗଦା ମୁଦ୍‌ଗର ପିଟିଲେ ଗଦର ଉପରେ ।
ଦେଖି ଗଦକୁମର ତା ବାମଭୁଜେ ଧରି
ଶଲ୍ୟ ମହାରଥୀ ହସ୍ତୁ ସେନାଲା ଉଚ୍ଛୁଡ଼ି ।

ସେହି ଗଦା ଘେନିଣ ସେ ଲେଉଟାଇ ପିଟି
ପଡ଼ିଲେ ସେ ଶଲ୍ୟ ମହାକ୍ଷତ୍ରୀ ଭୂମି ଲୋଟି ।
ଦ୍ରୋଣଗୁରୁ ଅଶ୍ୱତ୍ଥାମା ମହାରଥୀ ଶଲ୍ୟ
ରଣେ ପଡ଼ିଲେ ଭାରତେ ସେ ଭାଗୋଇ ମଲ୍ଲ
ଭୀମହିଁ ପ୍ରହାର କଲା ସେ କର୍ଣ୍ଣବୀରକୁ
ଗଦା ପଡ଼ି ଭଗ୍ନ ହେଲା ତାହାର ଯେ ବୁକୁ ।
ରଥ ସହିତେ ସା ଥି ହେଲା ମସିଗୁଣ୍ଡା
କୋପଭରେ ଧରିଣ ସେ ପୁଣି ଏକଖଣ୍ଡା ।
ଧାଇଁଯାଇ ବୃକୋଦର ହାଣନ୍ତେ କର୍ଣ୍ଣଙ୍କୁ
ସହଦେବ କୋଳକରି ଧଇଲେ ତାହାଙ୍କୁ ।
ନୁହଇ ଏ ସ୍ୱାମି ସିନା କଉତୁକ ଯୁଦ୍ଧ
ଅକାରଣେ ସହୋଦର କର୍ଣ୍ଣ କର ବଧ ।
ସହଦେବର ବଚନେ ଛାଡ଼ିଲେ କର୍ଣ୍ଣଙ୍କୁ
ଗୋଡ଼ାଇ ମାଇଲେ ସେନାପତି ସଇନ୍ୟଙ୍କୁ ।
ରଥେ ରଥ କଚଡ଼ଇ ଭୀମସେନ ତୋଳି
ବହୁତ ରଥ ସଇନ ପିଟି କଲା ଧୂଳି ।
ଶାମ୍ବ ଗଦ ପ୍ରଦ୍ୟୁମ୍ନ ଏ କୁମାର ଯେ ତିନି
ଦୁର୍ଯ୍ୟୋଧନଙ୍କୁ ଭେଟିଲେ କରେ ଅସ୍ତ୍ର ଘେନି
ଯେବଣ ଠାବରେ ଅଛି କୁରୁରାଜ ଦେବ
ପଞ୍ଚାଶତ କୋଟି ରଥୀ ହସ୍ତୀ ନିଃଶଙ୍କ ।
ଏତେକ ଯୋଦ୍ଧା ରାଜାଙ୍କୁ ଅଛନ୍ତି ଆବୋରି
ମୁକୁଟବନ୍ଧା ଅଛନ୍ତି ଯୋଦ୍ଧା ଲକ୍ଷପୂରି ।
ଅସୁମାର ଥାଟ ଦେଖି ଗଲେ ତିନିବୀରେ
ବନ୍ଧିଲେ ନାରାଚ ପୁଣି ମାଇଲେ ମୁଦ୍‌ଗରେ ।
ବଷ୍ଣୁଙ୍କର ନନ୍ଦନ ସେ ସମରେ ନିର୍ଭୟ
ଯେଣୁ ଯୁବା ସଂଗ୍ରାମେ ସେ ଅଟନ୍ତି ନିର୍ଦ୍ଦୟ ।
ରଣରଙ୍ଗରେ ମନ୍ଥନ କଲେ ସେହୁ ଥାଟ
ବେଢ଼ିଲେ ଯିବାକୁ କଉରବେ ନାହିଁ ବାଟ ।
ବିହରନ୍ତ ଥାଟ ମଧ୍ୟେ ସମସ୍ତ କୁମରେ
ନାରାଚ ଚୂର୍ଣ୍ଣ ହୁଅନ୍ତି ତାହାଙ୍କ ଶରୀରେ ।
ଗୋଳ କରନ୍ତେଣ ଥାଟେ ପଡ଼ିଲାକ ହୁରି
ଗଜ ଅଶ୍ୱ ହାବୁଡ଼ନ୍ତେ ରଥମାନ ଚୂରି ।
ସମର ବେଳୁ ବେଳ ଯେ ହେଲା ମହାଗୋଳ
ପଳାନ୍ତି ସଇନ୍ୟମାନେ ହୋଇ ଅସମ୍ଭାଳ ।
ମହାଗୋଳ କରିଣ ଯେ ଧାଇଁଲେ ପାବନି
ଯମ ଦେବତା ଧାଏଁ କି କାଳଦଣ୍ଡ ଘେନି ।

ମହାବାତେ ଭାଙ୍ଗେ ରମ୍ଭା ପାଦପ ଯେସନ
ତେସନ ଯୁଦ୍ଧେ ପଡ଼ନ୍ତି କୁରୁବଳ ସୈନ୍ୟ ।
କରିଯୂଥକୁ ଯେସନେ ସିଂହ ହୁଏ ଦଳ
ସେହିମତେ ମନ୍ଥିଦିଏ ଭୀମ ମହାବଳୀ ।
ପବନ ନନ୍ଦନ କରେ ପ୍ରତିଜ୍ଞା ଅପାର
ଗଦା ମାରି କରିଦିଏ ସମସ୍ତଙ୍କୁ ଚୂର ।
ଶାମ୍ବକୁମର ନବୀନ ସୁନ୍ଦର ତା ଦେହ
ରୂପ ଦେଖିଣ ସମସ୍ତେ ହୋଇଲେକ ମୋହ ।
ଅନେକ ଦିବ୍ୟରତନ ଆଭରଣ କାୟେ
ସବୁ କୁମରେ ଦିଶନ୍ତି ନାରାୟଣ ପ୍ରାୟେ ।
ଯେସନେକ ବିକାଶଇ ନାରାୟଣ ତେଜ
ସଂଗ୍ରାମେ ଦିଶନ୍ତି ପୁତ୍ରମାନେ ଚତୁର୍ଭୁଜ ।
ଆପଣାର ଥାଟ ଭଗ୍ନ ଦେଖି କୁରୁପତି
କୋପଭରେ ଚଳାଇଲା ମଦମତ୍ତ ହସ୍ତୀ ।
ଶାମ୍ବ ଗଦ ପ୍ରଦ୍ୟୁମ୍ନ ଏ କୁମର ଯେ ତିନି
ଥାଟ ମନ୍ଥନ କରନ୍ତି ଭୀମସେନ ଘେନି ।
ରଣଭଗ୍ନ ହୁଅନ୍ତେ ଭୟ କଲେ କଉରବେ
ଏକା ସମର କରଇ ଦୁର୍ଯ୍ୟୋଧନ ଦମ୍ଭେ ।
ଗଦା ବୁଲାଇ ପବନ କୁମର କୋପରେ
ଧାଇଁଯାଇଁ ପିଟିଲା ସେ ରାଜାର ଉପରେ ।
ହସ୍ତୀ କୁମ୍ଭସ୍ଥଳେ ବାଜ ଗଦାର ଅଘାତ
ପଡ଼ିଲା ସେ ମଦମତ୍ତ ହୋଇ ଭୂମିଗତ ।
ହସ୍ତୀ ଛାଡ଼ି ଦୁର୍ଯ୍ୟୋଧନ ହେଲା ପାଦଗାମୀ
ସତୁରି ଭାର ଗଦାକୁ ଉଭାରିଲା ଆଣି ।
ବୁଲାଇଗଦା ପିଟିଲା କୋପେ ବୃକୋଦର
ଭୂମିରେ ପଡ଼ିଲା ଧୃତରାଷ୍ଟ୍ରର କୁମର ।
ଗଦାଭାର ଧରି ବୀର ଭୂମିପରେ ଲୋଟି
ନିଶ୍ଚେଷ୍ଟ ମାନଗୋବିନ୍ଦ ନ ପାରଇ ଉଠି ।
ଶ୍ରୀକୃଷ୍ଣର ପୁତ୍ରମାନେ ହେଲେ କୋପାନଳ
ଗଦକୁମର ଧଇଲା ଦୁର୍ଯ୍ୟୋଧନ ବାଳ ।
ଛାଡ଼ି ଛାଡ଼ି ବୋଲି ତାକୁ ବୋଇଲେ ପ୍ରଦ୍ୟୁମ୍ନ
ଗଦବୋଇଲା ଏହାକୁ କରିବି ନିଧନ ।
ଆଜ୍ଞାଦେଲେ ଖଡ଼ଗରେ ପକାଇବି କାଟି
ଏହି ନାଶଗଲେ ନଷ୍ଟେଁ ସରିବ ଅରିଷ୍ଟି ।
ପ୍ରଦ୍ୟୁମ୍ନ ବୋଇଲେ ବାବୁ ନ କରିବା ନାଶ
ଧରିନେଇ ଦେବା ଆମ୍ଭେ ଠାକୁରଙ୍କ ପାଶ ।

ବଳରାମଙ୍କ ସନ୍ନିଧେ ବୋଧେ ଅନାଧୃଷ୍ଟ
ଦୁର୍ଯ୍ୟୋଧନ ରାଜା ତେତଣେ ହୁଏ ମୁଣ୍ଡ କାଟ ।
ଗଦକୁମର ଧଇଛନ୍ତି ଦୁର୍ଯ୍ୟୋଧନ କେଶ
ଲୋଡ଼ୁଅଛନ୍ତି କରିବାକୁ ତାର ପ୍ରାଣନାଶ ।
ଦ୍ୟୁସ୍ତ ମନେ କୋପିଲେ ରେବତୀରମଣ
ଜିଣି ନ ପାରିଲେ ପୁଣ ରଣେ ଶତ୍ରୁଗଣ ।
ଅର୍ଜ୍ଜୁନକୁ ନ ପାରିଲେ ରଣେ କାମପାଳ
ରାଗେ ଘେନିଲେ ସେ ଦେବ ସୌନନ୍ଦ ମୂଷଳ
ବିଶ୍ୱରୂପ ବିକାଶିଲେ ଶରୀର ଅମାପ
ତ୍ରୈଲୋକ୍ୟ ବ୍ୟାପିଲା ସେ କାମପାଳ ରୂପ ।
ବଳରାମ କୋପ ଦେଖି ପାର୍ଥ ମହାତାପେ
ନାରାୟଣ ଶସ୍ତ୍ରଗୋଟି ଯୋଚି ଗୁରୁଗୁପେ ।
ଧଇଲେକ ବଇଷ୍ଣବ ଚକ୍ର ଦକ୍ଷ କରେ
ଯାର ନାମ ସୁଦର୍ଶନ ମହାତେଜ ଧରେ ।
ବାମକରେ କୌମୋଦକୀ ଗଦା ମହାତେଜ
ରାମ ଦେଖିଲେ ହୋଇଛନ୍ତି ପାର୍ଥ ଚତୁର୍ଭୁଜ ।
ଏମନ୍ତ ସମୟେ ଧରି ଦୁର୍ଯ୍ୟୋଧନ କେଶ
ଅର୍ଜ୍ଜୁନ ଗୁମୁରେ ଦେଲେ ନ କରି ବିନାଶ ।
ମାନଗୋବିନ୍ଦର କେଶ ଗଦ ବାମପାଣି
ଖଡ଼୍ଗ ଉଞ୍ଚାଇଛନ୍ତି ତାକୁ ପକାଇବ ହାଣି ।
ବୋଲଇ କୁମର ଆଜ୍ଞା ଦେବାକ କଷଟି
ଏ ପାପୀର ମୁଣ୍ଡ ବେଗେ ପକାଇବ କାଟି ।
ଦୁର୍ଯ୍ୟୋଧନର ଏ ଶାସ୍ତି ଦେଖିଣ ଯୁଧିଷ୍ଠି
ଶସ୍ତ୍ର ତେଜ୍ୟାକରି ବେଗେ ଧାଇଁଲେ ସାଉଁଟି
ପ୍ରଦ୍ୟୁମ୍ନକୁ ବୋଇଲେକ ଧର୍ମ ଯୁଧିଷ୍ଠିର
ବାବୁ ଏ ମୋହର ପ୍ରାଣବଲ୍ଲଭ ସୋଦର ।
ଅର୍ଜ୍ଜୁନର ମୁଖ ଚାହିଁ ବୋଲେ ଭକ୍ତିଏତ
ଏ ମହାତ୍ମା କୃପା ଭକ୍ଷା ଏହାଙ୍କୁ କରନ୍ତୁ ।
ଜଗନ୍ନାଥ ବୋଇଲେ ଏ ଦେବ ଧର୍ମରାୟ
ଏହାଙ୍କ ଅନୁଜ ସିନା ଅଟେ ଧନଞ୍ଜୟ ।
ପ୍ରଦ୍ୟୁମ୍ନ ଶାମ୍ବ ଗଦ ଏ ତିନହେଁ ଆସନ୍ତି
ଧର୍ମକୁମରେ ଚରଣ ତଳେ ପ୍ରଣମନ୍ତି ।
ପ୍ରତ୍ୟକ୍ଷେ ଦେଖିଲେ ପୁଣେ ଅର୍ଜ୍ଜୁନର କାନ୍ତି
ଜଗନ୍ନାଥଙ୍କ ପରାୟେ ସ୍ୱରୂପେ ଦିଶନ୍ତି ।
କୁମରଙ୍କ ହସ୍ତ ଧରି ସେ ଧର୍ମନନ୍ଦନ
ବନ୍ଧରୁ ମୁକତ କରି ଦେଲେ ଦୁର୍ଯ୍ୟୋଧନ ।

ଏମନ୍ତ ସମୟେ ଦେବ ଦେବ ଚକ୍ରଧର
ଆପଣା ତେଜ ଥୋଇଲେ ଅର୍ଜ୍ଜୁନ ଶରୀର ।
ବଳରାମ ଦେଖିଲେ ସେ ଅର୍ଜ୍ଜୁନର ଜ୍ୟୋତି
ପ୍ରତ୍ୟକ୍ଷେ ଦିଶଇ ଜଗନ୍ନାଥଙ୍କ ମୂରତି ।
ମାୟା କଲେ ମାୟାଧର ଦେବ ହୃଷୀକେଶ
ପ୍ରତ୍ୟକ୍ଷରେ ଦିଶେ ପାର୍ଥ ନୃସିଂହ ସଦୃଶ ।
ଦେଖିଣ ଆଶ୍ଚର୍ଯ୍ୟ ହେଲେ ପ୍ରଭୁ ବଳଦେବ
ଶସ୍ତ୍ର ଧରି ନ ପାରିଲେ ପାଇ ପରାଭବ ।
ଯହୁଁ ଦେଖିଲେ ପାର୍ଥର ସେ ବିଶ୍ୱମୂରତି
କୋପ ସଂହରିଣ ଆପେ ଆପେ ହେଲେ ଶାନ୍ତ
ପରମାନନ୍ଦ ହୋଇ ସେ ଦେବ କାମପାଳ
ଦରହସିତ ବଦନ ସ୍ୱାମୀ ମତ୍ତହେଳ ।
ହଳ ମୂଷଳ ସଂହରି ଦେବ ହଳପତି
ଅର୍ଜ୍ଜୁନେ କହନ୍ତି ବହୁ ବିନୟେ ଯେ ଅତି ।
ତୁମ୍ଭେ ତ ଅର୍ଜ୍ଜୁନ କୃଷ୍ଣରୂପ ଧନଞ୍ଜୟ
ତୁମ୍ଭେ ସେ ପାର୍ଥିବ ବଂଶେ ଅଟୁ ଶୁଦ୍ଧକାୟ ।
ଉରଭର ନବାଉଣେ ଅଟୁ ଫାଲଗୁନ
ମିଛେ ମୁଁ ଦ୍ୱନ୍ଦ୍ୱ କରଇ ତୁମ୍ଭଙ୍କୁ ନ ଚିହ୍ନ ।
ପ୍ରତ୍ୟକ୍ଷେ ଦେଖିଲି ମୁହିଁ ତୁମ୍ଭର ମହିମା
ଏକ ଶରୀର ପ୍ରତ୍ୟକ୍ଷେ ତୁମ୍ଭେ ରୁଦ୍ର ବ୍ରହ୍ମା ।
କହିଲେ ବହୁତ ସାନନ୍ଦ ହୋଇ ବଳଭଦ୍ର
ଆବର କହିଲେ ପୁରଃସର ରାମଚନ୍ଦ୍ର ।
ଅର୍ଜ୍ଜୁନର ତୁଲେ ବଢ଼ାଇଲେ ପ୍ରୀତିଭାବ
ରଥୁଁ ଉତୁରି ବନ୍ଦନ୍ତି ପ୍ରଭୁ ବାସୁଦେବ ।
ତୁମ୍ଭେ ଭାରି ଉଦ୍ଧାରନ୍ତା ଅଟୁ ହୋ ଅର୍ଜ୍ଜୁନ
ତୁମ୍ଭ ଆମ୍ଭଙ୍କୁ କରିବ କେହ୍ନେ ଭିନ୍ନ ଭିନ୍ନ ।
ରାମ ବୋଇଲେ ଅନେକ ପୁଣି ପୁରଃସର
ଅର୍ଜ୍ଜୁନ ଉଭା ଯେ କରପଦ୍ମ ଯୋଡ଼ିକରି ।
ବଳରାମ ପାଦତଳେ ଅର୍ଜ୍ଜୁନ ପ୍ରଣମି
ଅଲଙ୍ଘିତ ଦୋଷ କଲି ଉଦ୍ଧରି ହେ ସ୍ୱାମି ।
ଅମୃତ ଦୃଷ୍ଟିରେ ଯହୁଁ ଚାହିଁଲେକ ରାମ
ସମସ୍ତେ ଯେ ମୋହ ଛାଡ଼ି ଉଠିଲେ ବହନ ।
ଅପମାନ ପାଇ କାନ୍ଦି କାନ୍ଦି କୁରୁରାୟେ
ଭଗ୍ନବଳ ହେନ ପୁରେ ବାହୁଡ଼ିଣ ଯାଏ ।
କହୁଛନ୍ତି ଚିନ୍ତା ନ କର ତୁହେ ଅରଜୁନ
ମୁହିଁ ତ ଶାନ୍ତ ହୋଇଲି ବୋଇଲେକ ରାମ ।

ବିନୟେ ଭାବକୁ ବନ୍ଦି ପାଣ୍ଡବ ସୁନ୍ଦର
ଅନେକ ସ୍ତୁତି କରନ୍ତି ସେ ଗାଣ୍ଡିବଧର ।
ନମସ୍ତେ ହେ କାମପାଳ ତୁ ଦେବ ସୁତଳ
ନମସ୍ତେ ହେ କାମପାଳ ରେବତୀର ବାଳ ।
ନମସ୍ତେ ଧବଳ ନୀଳ ରୂପ ନୀଳାମ୍ବର
ନମସ୍ତେ ଅନନ୍ତରୂପ ଦେବ ହଳଧର ।
ନମସ୍ତେ ହେ କାମପାଳ ଅନନ୍ତ ମଣ୍ଡଳ
ନମସ୍ତେ ସହସ୍ର ଶାଖା ସପତ କୁଣ୍ଡଳ ।
ନମସ୍ତେ ଅଜ ଅନାଦି ବୀଜ ଆଦିମୂଳ
ନମସ୍ତେ ଧାତାପୁରୁଷ କରେ ତୋ ମୁଷଳ ।
ନମସ୍ତେ ରେବତୀବର ଦେବ ବଳଭଦ୍ର
ନମସ୍ତେ ଅଭୟ ବରଦାତା ରାମଚନ୍ଦ୍ର ।
ନମସ୍ତେ ଖିଳଜଗତ ରୂପ ଆଦିନାଥ
ନମସ୍ତେ ଲଙ୍ଗଳହସ୍ତ ରେବତୀର କାନ୍ତ ।
ନମସ୍ତେ ତୁ ଶେଷଦେବ ଶିରେ ସପ୍ତଫଣି
ନମସ୍ତେ ଦେବ ସୁନ୍ଦରରୂପ ହଳପାଣି ।
ନମସ୍ତେ ଅରୁଣରୂପ ତୋହର ଜ୍ୟୋତ୍ସ୍ନା
ନମସ୍ତେ ଦୁର୍ଗତି ଦୁଃଖ ଭଞ୍ଜନ ସୁମନା ।
ନମସ୍ତେ ହେ ସଉନନ୍ଦଧାରଣ ଧବଳ
ନମସ୍ତେ କ୍ଷମନ ଦର୍ପଭଗ୍ନ ମତ୍ତଭୋଳ ।
ନମସ୍ତେ ଈଶ୍ୱର ବଳଦେବ ବଳରାମ
ଭବ ଜଳଧିରେ ନାମ ଅଟେ ତୋର ଧାମ ।
ଏକଲକ୍ଷେ କର ଯାହା ଗଢ଼ିଲେକ ବ୍ରହ୍ମା
ତାହା ଆନ କରିବାକୁ କେ ଅଛି ମହାତ୍ମା ।
ପଞ୍ଚଯୁଗ ଯାହାକୁଟି ଏକଯୁଗ ହୋଇ
ଅଣାକାର ପୁରୁଷ ସେ ନ ଜାଣନ୍ତି କେହି ।
ତୋହର ଚରଣେ ନାଥ ମୋହର ଦଇମା
ଶୁଣିମା ହେ ସୁଜ୍ଞଜନେ ଏ ଭାରତ ବାଣୀ ।
ମଧ୍ୟପର୍ବର ଏ ସନ୍ଧି ଲଗନ ଯାବତ
ଗ୍ରନ୍ଥ ସିଦ୍ଧକାଳକୁ ଏ ହେଲା ଅପ୍ରମିତ ।
ପ୍ରଥମେ ମୁହିଁ ସେବିଲି ଦେବୀ ସରସ୍ୱତୀ
ପିତାମହ ଶାପେ ହେଲା ନର୍ମଦା ଯେ ସତୀ ।
ଏକଲକ୍ଷ କର ମୁହିଁ ଭାବଇ ଯେ ତୋତେ
ଅବିରତେ ବର ଦେଉଥାଅ ତୁମ୍ଭ ନତେ ।
କଣ୍ଠଗତ ଭକ୍ତରେ ହେଉ ତୁ ବରଦାୟିନୀ
ପ୍ରଥମେ ବର ଦେଲୁ ଗୋ ଅଭୟାଯୋଗିନୀ ।
ଚଣ୍ଡୀ ଶାରଳା ଚରଣେ ଶରଣ ଯେ ମମ
ଜନ୍ମେ ଜନ୍ମେ ଶ୍ରୀଶାରଳା ଦାସ ମୋର ନାମ
ମହାଭାରତ ଅମିୟ ରସମାର କଥା
ଇହଲୋକେ ସୁଖ ପରଲୋକେ ଗତିଦାତା ।
ଅଶ୍ୱିନୀ ନନ୍ଦନୀ ପାଦପଦ୍ମେ ଅବିରତେ
ବିନୟେ ଭକତି କରେ ଏ ମହାଭାରତେ ।

## ସୁଭଦ୍ରା ପରିଣୟ

ବଦନ୍ତି ଅଗସ୍ତି ଶୁଣ ମନୁ ବୈବସ୍ୱତ
ଯାହା ପୁଚ୍ଛା କଲୁ ହୁଅ ସାବଧାନ ଚିତ୍ତ ।
ଅନେକ ସମର ହେଲା ସୁଭଦ୍ରା ନିମନ୍ତେ
ସମସ୍ତ ଜିଣିଣ ପାର୍ଥ ବିଜେ କଲା ରଥେ ।
ମୂର୍ଚ୍ଛାଗତ ହୋଇଥିଲେ ଯଦୁବଳ ସର୍ବେ
ସଚେତ ହୋଇ ଉଠିଲେ ସକଳ ଯାଦବେ ।
ଅଦମ ନେ ପଳାଇଲେ ଭୟେ କୁରୁସୈନ୍ୟ
ବଳରାମ ବିଜେ କଲେ ଘେନିଣ ଅର୍ଜ୍ଜୁନ ।
ପୁରେ ଉତ୍ସବ କରାଇ ଦେବ ଜନାର୍ଦ୍ଦନ
ବିଭାର କରନ୍ତି ବସି ବିଭାର ବିଧାନ ।
ଅର୍ଜ୍ଜୁନକୁ ସଙ୍ଗେ ଘେନି ଦେବ ଯୁଧିଷ୍ଠିର
ବିଜେ କଲେ ଆପେ ଯାଇ ରୈବତ ଉପର
ବିଦୁରକୁ ପଠାଇଲେ ଦେବ ଧର୍ମସୁତ
ଦୁର୍ଯ୍ୟୋଧନକୁ ଘେନି ତାତ ଘେନିଆସ ସାଥ ।
ଅପମାନ ପାଇ ଆସୁଅଛି କୁରୁନାଥ
ସମଦଣ୍ଡ ଘେନି ବିଜେ କରନ୍ତୁ ସେ ଏଥ ।
ସମସ୍ତ ଘେନିଆସି ଏ ସଭାରେ ବସନ୍ତୁ
ଅରଜୁନେ ସୁଭଦ୍ରାକୁ ପ୍ରଦାନ କରନ୍ତୁ ।
ବିଦୁରକୁ କହାଇଲେକ ଶୁଣି ଜଗନ୍ନାଥେ
ଦୁର୍ଯ୍ୟୋଧନକୁ ହକାରି ଆଣ ଯାଇ ଏଥେ ।
ସମଦଣ୍ଡ ଘେନି ରାଜା ବିଜେ କରୁ ଆସି
ସୁଭଦ୍ରା ଅର୍ଜ୍ଜୁନ ବିଭାଘର ଦେଖୁ ବସି ।
ଶୁଣି ବିଦୁର ମହାତ୍ମା ଗଲେ ବେଗ ହୋଇ
ମାନଭଙ୍ଗ ପର୍ବତରେ ରାଜା ଅଛି ରହି ।
ପବନୁ ବେଗରେ ଯାଇ ବିଦୁର ଯେ ଭେଟି
ଦାବୁ ମୋତେ ଆଜ୍ଞା ଦେଲେ ଶ୍ରୀକୃଷ୍ଣ ଯୁଧିଷ୍ଠି
ଦଣ୍ଡଘେନି ବାହୁଡ଼ିବା ମାନଚକ୍ରବର୍ତ୍ତୀ
ସହୋଦର ଛାଡ଼ିବାର ନୁହଇ ଯୁକତି ।

ଏତେ ଯେ ସମର କାବୁ କଲୁ ଅନମିତ୍ତେ
କାଟେ ଆସନ୍ତେ ବାବୁ ମୁଁ କହିଲଇଁ ତୋତେ
ଶକୁନି ଯେ ଦୁଃଶାସନ କର୍ଣ୍ଣ ମହାଯୋଧି
ଆମ୍ଭ ବଚନ ଉପେକ୍ଷା କଲେ କହ୍ନ ନନ୍ଦ ।
ବିଦୁରଙ୍କ ବଚନେ କହଇ କୁରୁରାଜ
କେମନ୍ତେ ଯିବଇଁ ମୁହିଁ ପାଇଲଇଁ ଲାଜ ।
ବିଦୁର ସଞ୍ଜୟ ଭୂରିଶ୍ରବା ଯେ ଗାଙ୍ଗେୟ
କୃପଆଚାର୍ଯ୍ୟ କହିଲେ ଶୁଣ ମହାରାୟ ।
ଆନର ହସ୍ତେ ନୋହିଲୁ ଆମ୍ଭେମାନେ ଧ୍ୱଂସି
ସୋଦର ସୋଦର ଆମ୍ଭେ ହୋଇଲୁ ଝିଙ୍ଗାସି
ଏଡ଼େକ ଉତ୍ସବେ ଆମ୍ଭେ କେମନ୍ତେ ନ ଯିବା
ଅର୍ଜୁନକୁ ଏବେ ଚାଲ ବରା କରାଇବା ।
ଅର୍ଜୁନକୁ ଯେବେ ରାମ ଜଣିଥାନ୍ତେ ଆଜ
ଆମ୍ଭ କୁଳକୁ ହୁଅନ୍ତା ଜାଣ ବଡଲାଜ ।
ଆପଣାର କୁଳ ଯେବେ ଉଜ୍ଜ୍ୱଳ ହୋଇବ
ଏ କଥାରେ ଲଜ୍ଜା କହ କପାଇଁ ପାଇବ ।
ଯୁଗ ଯୁଗାନ୍ତରେ ସେହି କଥା ରହିଥିବ
ବାବୁ ଅର୍ଜୁନ ମହିମା ଅଟଇ ଦୁର୍ଲ୍ଲଭ ।
ଝଗୃରେ କୁରୁ ପାଣ୍ଡବେ ନୁହ ତ ବିବାଦୀ
ରାମ ପ୍ରତିଜ୍ଞା ଭଙ୍ଗିଲା ପାର୍ଥ ହୋଇ ବାଦୀ ।
ଏହା ପରମାଣି ଏବେ ଉପରକୁ ହେଜ
ଯିବାକୁ ଝଗୃର ଏବେ କର କୁରୁରାଜ ।
ଖାଣ୍ଡବବନ ଦହନେ ଜାଣି ଅମରାଧି
ଅଗ୍ନିକୁ ତୋଷ କଲା ସେ ଦେଇ ମଉଷଧି ।
କରାତରୂପେ ଜଣିଲା ବନେ ଈଶ୍ୱରଙ୍କୁ
ଭସ୍ମେ ସଦାଶିବ ପାଶୁପତ ଦେଲେ ତାକୁ
ଏବେ ସୁଭଦ୍ରା ହରଣେ ଜାଣେ ବଳଦେବେ
ଅଭିମାନ ତେଜ ଚାଲ ଯିବା ସର୍ବେ ଏବେ ।
ଏଥିକୁ ତ ଅଭିମାନ ନ କର ହେ ବାବୁ
ପ୍ରଶଂସା ପାଇବୁ ଯେବେ ବାହୁଡ଼ିଣ ଯିବୁ ।
ମାନ ସ୍ଥାନ ଗଉରବ ରହିବ ଯେ ପଣ
ବାହୁଡ଼ି ଯିବାର ବାବୁ ନୁହେ ଅକାରଣ ।
ଯଦ୍ୟପି ରାଗ କରଣ ସେ ସ୍ଥାନେ ନ ଯିବା
ଆମ୍ଭ ନ ଗଲେ କି ରହିଯିବ ତାର ବିଭା ।
କଥା ରହିଥିବ ସିନା ସମସ୍ତ କାଳକୁ
ମୁହିଁ ବିନୟ ଭାବରେ ବୋଲଇ ତୁମ୍ଭଙ୍କୁ ।
ଗଲେ ନଷ୍ଟେଁ ଜଗନ୍ନାଥ ହୋଇବେ ସଦୟ
ବଳରାମ ଯୁଧିଷ୍ଠିର ଭୀମ ଧନଞ୍ଜୟ ।
ଏତେକ ଯେ ଭଆଇନ୍ତ ଶାନ୍ତନୁର ସୁତ
ଧଇଲେ ଯାଇ ଯେ ମାନଗୋଢଦର ହସ୍ତ ।
ସମସ୍ତେ ଯୋଦ୍ଧାଏ ତହିଁ ଶୋଇଲେ ପ୍ରଣମି
ବାହୁଡ଼ ସେଠାକୁ ଚାଲ ଯିବା ଦେବ ସ୍ୱାମି ।
ଦୁର୍ଯ୍ୟୋଧନ ବୋଇଲେକ ସମସ୍ତଙ୍କୁ ଚାହିଁ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦ ଯେତେ ଥିଲେ ତହିଁ ।
ଶକୁନି ବୋଇଲେ ଭୀଷ୍ମ କହିଲ ଯେ ବାଣୀ
ମୋହର ହୃଦରେ ତାହା ଭଲ ମୁଁ ନ ମଣି ।
ଏଡ଼େକ ଅପମାନେ ଯେ ଅଇଲୁ ପଳାଇ
ଭଗ୍ନବଳ ହୋଇ ଆମ୍ଭେ କାହା ମୁଖ ଚାହିଁ ।
ଦ୍ୱାରକାରେ କାହା ମୁଖ ଚାହିଁବା ବା ଯାଇ
କେମନ୍ତେ ରହିବୁ ଏଡ଼େ ଲଜା ଦେହ ବହି ।
ନ ଗୁଡଇ ଆବଉ ଯେ ଲଜ୍ଜ କଦାଚତେ
ମନ ଉପୁଜିଲା ପୁଣ ତହିଁର ନିମନ୍ତେ ।
ଏ ସମସ୍ତ ମନ୍ଦକର୍ମ କଲେ ବଳରାମ
ବରଣ କରାଇ ଆଣି କଲେ ଏତେ କର୍ମ ।
ଅର୍ଜୁନକୁ ବରିକରି ଦେଲେକ ଦୁଲଣୀ
ଯତନେ ଏ ଅପମାନେ ଦେଲେ ଦେବହଳୀ ।
ଶକୁନି ବୋଇଲ ଚାଲ ଯିବା ହସ୍ତିନାକୁ
ଆବର ଭାବ କାହିଁକି ଯିବା ଦ୍ୱାରକାକୁ ।
ଶକୁନି ବଚନେ ରାଜା ଚଳାଇ ସଇନ
ଯାନ ବାହନ ଚଳିଲେ ଶୁଭେ ଶଙ୍ଖଧ୍ୱନି ।
ବିଦୁର ଚଳିଲେ ଦୁର୍ଯ୍ୟୋଧନ ରାଜା ଭୁଲେ
ହସ୍ତିନା କଟକେ ଯାଇ ପ୍ରବେଶ ହୋଇଲେ ।
ସହଦେବ ମୁଖ ଚାହିଁ ପ୍ରଭୁ ଦେବରାୟେ
ବାବୁ ମନ୍ତ୍ରିବର ତୋତେ କହିବା କଥାଏ ।
ଦୁର୍ଯ୍ୟୋଧନକୁ ବିଦୁର ଗଲେ ପୁଣି ଆଣି
ଉତ୍ତର ହେଲା ନଇଲେ କର୍ପ । କୁରୁମଣି ।
କର ତଳକୁ ଅନାଇ ଦେଲେ ସହଦେବ
ଅନେକ କହିଲେ ଗଙ୍ଗାନନ୍ଦନ ହେ ଦେବ ।
ଶକୁନି କହିଲେ ଯହୁଁ ଯୁଦ୍ଧ ଅପମାନ
ଦୁର୍ଯ୍ୟୋଧନ ନ ଘେନିଲା ଭୀଷ୍ମଙ୍କ ବଚନ ।
ଦଣ୍ଡ ଘେନି ହସ୍ତିନାକୁ ଗଲା ଧାର୍ତ୍ତରାଷ୍ଟ୍ରି
ସ୍ୱନ୍ତ-ଦିବସେ ହସ୍ତିନାପୁର ଯାଇ ଭେଟି ।

କହିଲେ ବସୁଦେବଙ୍କୁ ଶୁଣି ବଳଦେବ
ରଇବତ ପର୍ବତରେ କରାଅ ଉତ୍ସବ ।
ସୀଉକାର ବରଣକୁ ସାର ବେନି ଜନ
ବୈଶାଖ ଶୁକ୍ଳ ଦ୍ୱାଦଶୀ ଧଇଲେକ ଲଗ୍ନ ।
ନକ୍ଷତ୍ର ଯୋଗ ପାଇଛନ୍ତି ନାହିଁ ପାପଗ୍ରହ
ଶନୈଶ୍ଚର କେତୁଙ୍କର ବହୁତ ସେନେହ ।
ଦୁହିଙ୍କ ହୋଇଛନ୍ତି ପୂର୍ଣ୍ଣ ପ୍ରଶସ୍ତ ଯେ ତାର
ଶୁଭବେଳେ ଲଗ୍ନ ଜାଣି କଲେ ଅନୁକୂଳ ।
ବଡ ଯେ ଅମୃତ ଯୋଗ ତାହାକୁ ଯେ ଘେନି
ବେଦୀରେ ବସିଲେ ଯାଇ ପାଣ୍ଡବ ଫାଲ୍‌ଗୁନ
ଯୁଧିଷ୍ଠିର ସୁମରିଲେ ଧୌମ୍ୟ ପୁରୋଧାଙ୍କୁ
ଋଷିବୃନ୍ଦ ଘେନି ସେହି ଅଇଲେ ସଭାକୁ ।
ବ୍ୟାସଙ୍କୁ ଯେ ସୁମରଣା କଲେ ଧର୍ମଶିଷି
ଷାଠିଏ ସହସ୍ର ଶିଷ୍ୟ ଘେନି ବ୍ୟାସଋଷି ।
ଜଇମିନି ମାର୍କଣ୍ଡେୟ ଶୁକ ବିଶ୍ୱାମିତ୍ରେ
ବିଭାଣ୍ଡକ ବସୁଦେବ ସନକ ସହିତେ ।
ପରାଶର ଗଉତମ ମୁନି କଉଶିକ
ପରମ ଆନନ୍ଦେ ବିଜେ କଲେ ଋଷିଯାକ ।
ତାହାଙ୍କ ସଙ୍ଗତେ ଥିଲେ ମୁନି ବାଳଖିଲ୍ୟ
ସପ୍ତଋଷି ଆସି ତହିଁ ହେଲେ ଏକମେଳ ।
ଦେଖି ତାଙ୍କୁ ପୂଜା ବିଧି କଲେ ଦେବରାଜ
ଅନେକ ବିନୟୀ ହୋଇ କଲେ ତାଙ୍କୁ ପୂଜା ।
ସୁଧର୍ମା ସଭାକୁ ଘେନି ବିଜୟେ ମଘବା
କେ ଜାଣି ତା ପଟାନ୍ତର ଦ୍ୱାରକାରେ ସଭା ।
ଐରାବତ ଆରୋହଣ ହୋଇ ଦିବ୍ୟ ସଜ
ଅମରକୁ ଘେନି ବିଜେ କଲେ ଦେବରାଜ ।
ଇନ୍ଦ୍ରବିଜେ କଲେ ତହିଁ ରୈବତ ପର୍ବତେ
ପାରିଜାତ ପୁଷ୍ପ ଘେନି ଅଛନ୍ତି ସଙ୍ଗତେ ।
ଚଉରାଶି କୋଟି ସ୍ୱର୍ଗପୁର ବିଳାସିନୀ
କରନ୍ତି ନୃତ୍ୟ ସୁସ୍ୱରେ ଗୀତ ଗାଇ ପୁଣି ।
ଗଗନୁ ଆସି ପର୍ବତେ ବିଳାସିନୀ ମିଳି
ସୁସ୍ୱରେ ଦେବନାୟିକା ଦେଲେ ହୁଳହୁଳି ।
ସୁଭଦ୍ରା କନ୍ୟାକୁ ବେଶ କରାଇ ବନିତା
ନନ୍ଦର କୋଳରେ ଦେଲେ ବସିଲେ ଦୁହିତା
ଗୁମ୍ଫା ମଣ୍ଡପରେ ବିଜେ କଲେ ସସ୍ରଯୋନି
ଗୋବିନ୍ଦ ମିଳିଲେ ତହିଁ କରେ ଅର୍ଘ୍ୟଘେନି ।

କନକ ରତ୍ନ ଯୋଗାଡ଼ ଦେଲେକ କୁବେର
ସର୍ବ ଦେବତାଙ୍କୁ ଅର୍ଘ୍ୟ ଦେଲେ ମୁନିବର ।
ଅର୍ଜ୍ଜୁନକୁ ସୁରନାଥ ବସାଇଲେ କୋଳେ
ଗୋବିନ୍ଦ ବୋଇଲେ ସ୍ୱାମୀ ଶୁଣ କାମପାଳେ ।
ସାଧୁ ସାଧୁ ସୁଭଦ୍ରା ଗୋ ଜୀବନ ତୋ ଧନ୍ୟ
ବର ବରିଲୁ ତୁହି ଯେ ପାଣ୍ଡବ ଅର୍ଜ୍ଜୁନ ।
ବଳେ ବଳେ ବରିଲୁ ତୁ ବର ମାହେଶ୍ୱାସ
ପୁରୁଷ ପଣେ ଏହାକୁ କେହି ନୁହେଁ ସରି ।
କ୍ଷତ୍ରିୟ ପଣରେ ଏକା ତ୍ରଇଲୋକ୍ୟଜିତା
ବ ରାମଙ୍କୁ ଜିଣିଲା ସମର ଶକତା ।
ନନ୍ଦର ମନ୍ଦିରେ ସର୍ବେ କଲେ ସାଧୁ ସାଧୁ
ଅମରାଧିନାଥର ତୁ ହେଲୁ କୁଳବଧୂ ।
ନ ଜାଣି ବର ବରିଲା ସିନା ରାମଚନ୍ଦ୍ର
ଅନ୍ଧ ରଜା ପୁତ୍ର ଅଟେ ସେ ମାନଗୋବିନ୍ଦ ।
ସଂସାର ମୁଖରେ ଶୁଭେ ସାଧୁ ସାଧୁ ବାଣୀ
ବଳରାମଙ୍କୁ ବଦନ୍ତି ପ୍ରଭୁ ଚକ୍ରପାଣି ।
ସ୍ୱାମୀ ଅର୍ଜ୍ଜୁନକୁ ତୁ ଯେ ଚିହ୍ନିଥିଲୁ ମନ୍ଦ
ଅର୍ଜ୍ଜୁନର ଚରିତ ଯେ କହନ୍ତି ଗୋବିନ୍ଦ ।
ସଂସାର ବନ୍ଧନ ଦେବେ ଭାଷନ୍ତି ଯାହାକୁ
ସୁଭଦ୍ରା ବରଣ କଲା ଦେବ ଅର୍ଜ୍ଜୁନକୁ ।
ବଳରାମ ବୋଇଲେ ତୁ ସକଳ ପ୍ରମାଣୁ
କୁଟ କପଟର କଥା ଆମ୍ଭେତ ନ ଜାଣୁ ।
କୁମରମାନେ ବସିଲେ ସଭା କରି ପୁଣି
ନନ୍ଦରାଜେ ବସିଲେକ ସୁଭଦ୍ରାକୁ ଘେନି ।
ବିଜୟେ ସେ ଫାଲଗୁନ ପୁରନ୍ଦର କୋଳେ
ମନ୍ତ୍ରାଧ୍ୟୟନ କରନ୍ତି ନନ୍ଦ ମହାଖୁଣ୍ଟେ ।
ବଜାନ୍ତି ଯାଦବେ ଶଙ୍ଖ ଶୁଭଇ ସେ ଧ୍ୱନି
ସୁସ୍ୱରେ ମଙ୍ଗଳ ଗୀତ ଗାବନ୍ତି କାମିନୀ ।
ଅର୍ଜ୍ଜୁନକୁ ଦେଖି ବାଳୀ ସକଳ ଉଷତ
ମଦନ ଶରେ ସମ୍ଭାଳି ନ ପାରନ୍ତି ତତ୍ତ୍ୱ ।
ମଦନ ଶରେ ମୋହିତ ହେଲେ ଜରଜାସି
ବୋଲନ୍ତି ପାର୍ଥ କି ବର ହୋଇବ ସବୁରି ।
ବୋଲନ୍ତି ପ୍ରୟାଗେ ଯେହୁ ଦେଇଥିବ ଝାସ
ଏମନ୍ତ ସ୍ୱାମୀ ସଙ୍ଗେ ସେ କରିବ ବିଳାସ ।
ପୂର୍ବେ ତପ ନ କରିବା କଥା ନ ସୁମରି
ପରକୁ ସୁନ୍ଦର ଦେଖି ଏବେ ମରି ଝୁରି ।

ପୁରୁଷକୁଳେ ଉତ୍ତମ ପାଣ୍ଡବ ସୁନ୍ଦର
ଅର୍ଜୁନ ତୁଲ୍ୟ ଅଛଇ କେହ୍ନ ଧନୁର୍ଦ୍ଧର ।
ପୂର୍ବେ କରିଥିବେ ଯେଉଁ ସ୍ତ୍ରୀ କି ଗାଢ଼ ତପ
ସଉଭାଗୀ ହୋଇବ ସେ ପାର୍ଥର ସ୍ୱରୂପ ।
ଯଶୋଦା ଶ୍ରୀମନ୍ତ ମାତା ସୁଭଦ୍ରାର ହୋଇ
ନନ୍ଦନ୍ତିଁ ଧନ୍ୟ ଅର୍ଜୁନ ଯାହାର ଜୁଆଇଁ ।
ନନ୍ଦନନ୍ଦନୀ ଧନ୍ୟ ସୁଭଦ୍ରା କୁମାରୀ
ବରନ୍ତିଁ ଧନ୍ୟ ଅର୍ଜୁନ ପ୍ରଣତଗ୍ରହ କର ।
ପୁରନ୍ତିଁ ଧନ୍ୟ ସୁଭଦ୍ରା ଏଥି ହେଲା ଜାତ
ସୁଭଦ୍ରା ଧନ୍ୟ ଧଇଲା ଅର୍ଜୁନର ହାତ ।
କୂଳ ଟାଇଲେ ସୋଦର ରାମ କୃଷ୍ଣ ବେନି
ଧନ୍ୟ ପାଇଲା ଏ କନ୍ୟା କୁଳ ଫାଲଗୁନ ।
ଆବର ଧନ୍ୟ ଆମ୍ଭର କୁଳକୁଟୁମ୍ବର
ଅର୍ଜୁନର ବଶ ଯେଣୁ ଦ୍ୱାରକା ନଗର ।
ଧନ୍ୟ ଦେଖିଲୁ ଏ ବର କନ୍ୟାଙ୍କର ମୁଖ
ପୁଣ୍ୟ ଫିଟିଲା ତୁଟିଲା ପୁଣି ଆମ୍ଭ ଦୁଃଖ ।
ପୁରୁଷପଣକୁ ଧନ୍ୟ ଏ ପରମରୂପ
ପୁରୁଷ ପଣରେ ଏହି କନ୍ଦର୍ପ ସ୍ୱରୂପ ।
ପିତାମାତାଙ୍କର ଧନ୍ୟ ଧନ୍ୟ ସେ ଜୀବନ
ବଂଶ ଲକ୍ଷଣେ ପୁରୁଷେ ହୁଅନ୍ତି ଉତପନ୍ନ ।
ଏସନ ସାଧୁ କହନ୍ତି ତାକୁ ପୁରଜନ
ଶ୍ରୀକୃଷ୍ଣ ସାନନ୍ଦ ଶୁଣି ପ୍ରଶଂସା ବଚନ ।
ସୋମପାନ ଗୋଷ୍ଠୀ ଅଟେ ସେ ପାକଶାସନ
ପଣ୍ଡୁ ଯେ ବଚିତ୍ରବାର୍ଯ୍ୟ ଶାନ୍ତନକୁ ଘେନ ।
ଅସ୍ୟ ପିତା ପିତାମହ ପର ପିତାମହ
ଅର୍ଜୁନର ଏହି ତିନ ପୁରୁଷକୁ କହ ।
ନନ୍ଦ ଉଦୟ ଅରୁଣ ଏ ତିନ ପୁରୁଷ
ପିତା ପିତାମହ ପରପିତାମହ ଶ୍ରେଷ୍ଠ ।
ଦେଶକାଳ ବାକ୍ୟ ଉଚ୍ଚାରିଲେ ପୁରୋହିତେ
ସମସ୍ତ ଋଷି ଅଛନ୍ତି ତାହାଙ୍କ ସଙ୍ଗତେ ।
ବ୍ରାହ୍ମଣେ କରୁଅଛନ୍ତି ବେଦମନ୍ତ୍ର ଧ୍ୱନି
ଉଚ୍ଚାରନ୍ତି ଚଣ୍ଡୀ ପୁନେ ମଙ୍ଗଳ ଯେ ଧ୍ୱନି ।
ନାରୀଗଣମାନେ ମିଳି ଗାନ୍ତି ବିଭା ଗୀତ
ହୁଳହୁଳି ଶବଦ ଯେ ଉଠଇ ବହୁତ ।
ପଢ଼ନ୍ତି ଯେ ସପତାଙ୍ଗ ପାଞ୍ଜି ଗ୍ରହପୂଜେ
ପଢ଼ନ୍ତି ଯେ ଦେଶକାଳ ବାକ୍ୟ ପୁରୋହିତେ

ବେଦଧ୍ୱନି ବାକ୍ୟ ପଢ଼ି ବେନି ଯୋଗସେନି
କୁଶଗଣ୍ଠି ପକାଇଲେ କରି ଶୁଭଧ୍ୱନି ।
ଜୟ ଜୟ ଶବଦରେ ପୂର୍ଣ୍ଣ ମହାସଭା
ଶଚୀ ଇନ୍ଦ୍ର ପ୍ରାୟ ଦୁହେଁ ପାଇଲେକ ଶୋଭା ।
ତାହାଣାବର୍ତ୍ତିକ ଶଙ୍ଖେ କୁଶ ତିଳ ପାଣି
ନନ୍ଦରାଜା ହସ୍ତେ ଦେଲେ ପୁରୋହିତ ଆଣି
ଯଉତୁକ ଦାନ ଏବେ ଯେସନ ବିଧାନ
ସମସ୍ତ ଦ୍ରବ୍ୟ ଗ୍ରାମୁକ୍ତ ବେଗକରି ଆଣ ।
ଶତେକ ରଥ ସୁବର୍ଣ୍ଣ ବେଗକରି ଆଣି
ଅଷ୍ଟରତ୍ନ ପୂରାଇଣ ଦେଲେ ନନ୍ଦରାଣୀ ।
ପଞ୍ଚାଶଲକ୍ଷ ସେ ପୁଣି ଦେଲେ ଶୁଭ ଗାଈ
ପରଶ ଲକ୍ଷ ତହିଁରେ ଦୁହାଁଳିଆ ଗାଈ ।
ଆଗେ ଯଉତୁକ ପୁଣି ଦେଲେ ଦେବରାଜ
ଅଷ୍ଟରତନରେ ଖଞ୍ଜା କୋଟିଏକ ଗଜ ।
କୋଟିଏକ ଅଶ୍ୱ ଦେଲେ ବାଛି ଶୁଭଜାତ
ଅଷ୍ଟରତ୍ନ ଚାମର ସେ ବହୁତ ବିଅନ୍ତ ।
ଲକ୍ଷେକ ରଥ ଯେ ବେନିଲକ୍ଷ ମତ୍ତଗଜ
ଦେବକୀ ଦେବୀ ଯେ ଦେଲେ ରତ୍ନ କରି ସଜ
ଉଗ୍ରସେନ ବସୁଦେବ ଦେଲେ ରତ୍ନ ଶତ
ବଳରାମ ଦେଲେ ଲକ୍ଷେ ରତ୍ନେ ଶତରଥ ।
ସୁବର୍ଣ୍ଣ ଯୋଗାଡ଼ମାନ ଅଷ୍ଟରତ୍ନ ରଞ୍ଜି
ଥୋଇଲେକ ଯନ୍ତ୍ର ତନ୍ତ୍ର କରି ସବୁ ସାଜ ।
ଜଗନ୍ନାଥଙ୍କର ପତ୍ନୀ ଆବର ରେବତୀ
ଜଣ ଜଣ କରି ଯଉତୁକ ସେ ଦିଅନ୍ତି ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ଯଉତୁକ ଦେଲେ କୃଷ୍ଣପୁତ୍ରେ ଭିନ୍ନ ଭିନ୍ନ ।
ଯେତେ ଯଉତୁକ ଆଣି ଦେଲେ ଦେବ ହରି
ପୂରିଲାକ ରଇବତ ଗିରି ଗୁଣ ଗୃହ ।
ଯଉତୁକ ଦେଇସାରି ନନ୍ଦ ମହାଖୁସି
ବେନିକର ଯୋଡ଼ି ଭଣି ଇନ୍ଦ୍ରର ଛାମୁର ।
ସ୍ୱାମି ହେ ତ୍ରୈଲୋକ୍ୟର ନାଥ ତ୍ରୈଲୋକ୍ୟର ବନ୍ଧ
ଦେବାଧିଦେବରାଜ ହେ ବିଳାସୀଙ୍କ ବଧୂ ।
ତ୍ରଇଲୋକ୍ୟ ପାଳକ ହେ ଦେବ ସୁରନାଥ
ଯଉତୁକ ଦେବାକୁ କି ମୁହିଁ ସାମରଥ ।
ଦୁହିତା ଗୋଟିଏ ଦେଇ ପଶିଲି ଶରଣ
ଦଶଦୋଷ ତାର କ୍ଷମା କରିବେ ଆପଣ ।

ପୁଣି ଜନମେଜୟେ ବୋଇଲେ ଗୋପ ଧିପ ନନ୍ଦ
ଶତ ପ୍ରଣମିଲେ ଧରି ଇନ୍ଦ୍ର ପଦ୍ମପାଦ ।
ବୋଇଲେକ ଆସ୍ଥାନରେ ଥାଇ ଆଖଣ୍ଡଳ
ଅନେକ ପ୍ରଶଂସି କଲେ ନନ୍ଦକୁ ସେ ଭୋଳ
ଗୋଧନ ଧନ ଯେତେକ ଦେଲ ତୁମ୍ଭେ ବାଣ୍ଟି
ସମସ୍ତ ପାଇଲ ନାହିଁ ବାରିବାକୁ କଣ୍ଟି ।
ପରମ୍ପର ଆସନଙ୍କ ଅନୁଗ୍ରହ ବାକ୍ୟେ
ଗୋପଶୂନ୍ୟହେଲା ନନ୍ଦ ବୋଇଲେକ ଶୋକେ
ଯଶୋଦା ଦେବକୀ ଦେଖି ଶୋକହିଁ ସମ୍ବରି
ଶ୍ରାବଣର ଧାରା ଜାଣି ବହେ ନେତ୍ରୁ ବାରି ।
କନ୍ୟା ସମର୍ପଣ କଲେ ନନ୍ଦରାଏ ଆଣି
ପୁରୋହିତେ ଲଜା ହୋମ କଲେ ତାହା ଜାଣି
ହୋମର ବିଧାନ ଯାହା ସାରିଲେ ସମସ୍ତ
ବୈଶ୍ୱାନରଙ୍କୁ ତୋଷିଲେ ବିଧାନ ଯେମନ୍ତ ।
ବର କନ୍ୟା କରନ୍ତି ଯେ ବସି ଘୃତପାନ
ଭୋଜନ ସାରି ସେ ପୁଣି କଲେ ଆଚମନ ।
ହସ୍ତ ପଖାଳି ବେଦୀରେ ଯାଇ ବିଜେ ହେଲେ
ଅର୍ଘ୍ୟଥାଳି ଘେନି ତାଙ୍କୁ ବନ୍ଦାପନା କଲେ ।
ସୁଭଗା ତୁ ସୁଲକ୍ଷଣୀ ହୁଅ ସଉଭଦ୍ରେ
ସନ୍ତାନ ଜାତକର ତୁ ସୋମବଂଶ ମଧ୍ୟେ ।
ତୋହର ଗର୍ଭୁ କୁମର ହୋଇ ଉତପତ୍ତି
ସୋମବଂଶରେ ସେ ପୁଣି ହେଉ ନରପତି ।
ଋଷିମାନେ ଅର୍ଘ୍ୟଦେଇ କଲେ ଶୁଭବାଞ୍ଛା
ମାଗୋ ତୋ ଯୋଗୁଁ ଏ ସୋମବଂଶ ହେଉ ରକ୍ଷା
ଯେ ଯାହାର ଅନୁରୂପେ ଦକ୍ଷିଣାହିଁ ନେଲେ
ସନ୍ତୋଷେ ମେଲାଣି ହୋଇ ବିପ୍ରେ ଚଳିଗଲେ
ଅନେକହିଁ ଧନବସ୍ତ୍ର ଦେଲେକ ବିଧାଇ
ଦାରିଦ୍ର୍ୟ ହରଣ ହେଲା ଇଚ୍ଛା ସୁଖେ ପାଇ ।
ଆହେ ବୁଧଜନମାନେ ହରୁ ମନୋବାଞ୍ଛା
ଆୟୁ ଧନ ଧାନ୍ୟ ପୁତ୍ର ଯାହାଙ୍କର ଇଚ୍ଛା ।
ଅନେକ ଜନ୍ମର ହୋଇବ ଦୁଷ୍କୃତ ତ୍ୟାଗୀ
ନିଶ୍ଚୟ ପ୍ରାପତ ହେବ ମନେ ଯାହା ମାଗି ।
ଅର୍ଜୁନ ସୁଭଦ୍ରା ଦେଇ କୃଷ୍ଣ ହୃଷ୍ଟମତି
ଉତ୍ସବ ମଙ୍ଗଳ ବାଞ୍ଛା ହୃଦେ ସୁମରନ୍ତି ।
ଶ୍ରୀକୃଷ୍ଣ ପୁରାଣ ମହାଭାରତର କଥା
ଶତ ଅଶ୍ୱମେଧ ଯାଗ କଲା ଫଳଦାତା ।

ମୁକତିସାଗର ଏ ଯେ ମହାପୁଣ୍ୟମୟ
ଏହା ଆଶ୍ରା କର ନରେ ଗଙ୍ଗାସ୍ନାନ ପାଅ ।
ସୁଜ୍ଞଜନେ ଶୁଣିବେକ ଏବସ୍ତୁ ଚରିତ
ଯେ ଶାସ୍ତ୍ର ଶୁଣନ୍ତେ ହୁଏ ସଂସାରେ ନର୍ଜିତ ।
ହିଷ୍ଟାପୁ ନାରାୟଣ ଯେ ଅଟଇ ଫାଲଗୁନ
ଭାର ଉଶ୍ୱାସିବାପାଇଁ ଜାତ ଦେହ ଘେନି ।
ସୁଭଦ୍ରା ପ୍ରଦାନ କାର୍ଯ୍ୟ ସାରିବାର ବେଳେ
ବହୁଦାନ ଦେଲେ ଯୁଧିଷ୍ଠିର ମହୀପାଳେ ।
ଯେତେ ଧନ ଦେଇଥିଲେ ନନ୍ଦ ନୃପବର
ଗୋ ବସ୍ତ୍ର କାଞ୍ଚନ ଆଦି ବହୁତ ସମ୍ଭାର ।
ଅଗ୍ନି ସମାପ୍ତେ ଯୁଧିଷ୍ଠି କଲେ ତାହା ଦାନ
ବରକନ୍ୟା ମନୋବାଞ୍ଛା ହୋଇଲା ପୂରଣ ।
ବିଷ୍ଣୁ ବିପ୍ରଗଣ ତହିଁ କଲେ ବେଦନାଦ
ପୁରନାରୀମାନେ କଲେ ହୁଳହୁଳି ଶବ୍ଦ ।
ବର କନ୍ୟାଙ୍କୁ ନେଇଣ ପ୍ରଭୁ ଦେବରାଜେ
ଦ୍ୱାରକାପୁରକୁ ଗଲେ ସମ୍ଭ୍ରମରେ ବିଜେ ।
ଅନେକ ଉତ୍ସବ କଲେ ଦ୍ୱାରକା ଭୁବନେ
ବିଦ୍ୟାଧର ଘେନି ବିଜେ କଲେ ମଘବାନେ
ଅମର ଆସ୍ଥାନେ ଘେନି ସୁଧର୍ମା ସେ ସଭା
ଆକାଶରେ ଚନ୍ଦ୍ରସେନ ଆସି ହେଲେ ଉଭା ।
ଅନ୍ତଃପୁରେ ବିଜେକଲେ କୁମାର କୁମାରୀ
ଆପେ ନନ୍ଦରାଏ ସବୁ ସମାଧାନ କରି ।
ଶ୍ରୀକରେ ବସନ ଅର୍ଘ୍ୟ ଘେନିଣ ସମ୍ବୋଧି
ସମର୍ପି ବିନୟ କରି କହନ୍ତି ଯେ ବିଧି ।
ନନ୍ଦବୋଇଲେ ତୁ ବାବୁ ଅଟୁ ସୋମବଂଶୀ
ଉଶ୍ୱାସ କରିବୁ ପୃଥ୍ୱୀ ଭାର ସବୁ ନାଶି ।
ନିର୍ମଳ ନିର୍ଭୟ ନିଷ୍କଳଙ୍କ ଜଗବନ୍ଧୁ
ଆନନ୍ଦର ନନ୍ଦନ ତୁ ଭୁବନର ସାଧୁ ।
ମୋହର ବଂଶରେ ଅଛି ଯେତେ ଯେତେ ଦୋଷ
ତାହା ଉପେକ୍ଷା କରିବା ମହତ ପୁରୁଷ ।
ସମ୍ବୋଧି ସେ ଅର୍ଘ୍ୟଦେଇ ବହୁତ ବିଳାପି
ଦଶଦୋଷ କ୍ଷମା କର ହେ ଶ୍ରୀ କୃଷ୍ଣରୂପୀ ।
ବହୁତ ସମ୍ବୋଧ କଲେ ନନ୍ଦ ମହାଖୁଡ଼େ
ଦୁହିତା କରକୁ ଦେଇ ପାର୍ଥ କରତଳେ ।
ସମ୍ବୋଧନା କରିଗଲେ ଯେ ଯାହା ଭୁବନେ
ବିଜୟ ଜଗମୋହନ ମଣୋହର ଆସନେ ।

ପରଷନ୍ତି ସେ ଅମୃତ ଯୋଗାଡ଼ ରୁକ୍ମଣୀ
ଅନ୍ତଃପୁରେ ଉଠଇ ଯେ ହାସରସ ବାଣୀ ।
ଚତୁର୍ଥୀ ସପ୍ତମଙ୍ଗଳା ଉତ୍ସବ ବିଧାନ
ଶେଷକରି ଗଲେ ପୁଣି ଯେ ଯାହା ଭୁବନ ।
ଭୋଜନ କରିଲେ ବସି ବରକନ୍ୟା ଘେନ
ଆଚମନ ସାରି ଚନ୍ତୁଁ ଚଳେ ଫାଲଗୁନ ।
ଅମର ପୁରକୁ ବିଜେ କଲେକ ମଘବା
ଅମୃତ ବଚନେ ତୋଷିବୋଇଲେ କ ଦେବା
କରନ୍ତି ଯେ ବିଦ୍ୟାଧରମାନେ ଉସକେଳି
କ୍ଷମଗଧିନାଥ ଗଲେ ଆକାଶକୁ ଚଳି ।
ସାରିଲେ ଚଉଦିଗର ମଙ୍ଗଳ ଉତ୍ସବ
ଚଉଦ ଦିବସେ ଚଳିଗଲେ ରାଜଦେବ ।
ଚନ୍ଦନ କାଷ୍ଠକୁ ଚୂରି ନିର୍ମାଇଲେ ଗୁଣ୍ଡି
ତାହା ଲେପନ କରାଇ ବସାଇଲେ ମଣ୍ଡି ।
ପଢ଼ି ଋକ ସାମ ଯଜୁ ଅଥର୍ବର ବାଣୀ
ବର କନ୍ୟା ବେନ ଶିରେ ଅର୍ଘ୍ୟ ଦେଲେ ଆଣି
ଆନନ୍ଦରେ ହୁଳହୁଳି ଦିଅନ୍ତେ ସ୍ତ୍ରୀଲୋକ
ବଧାଇ ଦିଅନ୍ତି ତାଙ୍କୁ ଯଶୋଦା ଅନେକ ।
କହୁଛ ଆନନ୍ଦ ତହିଁ କହିଲେ କେ ପାରି
ମହା ଆନନ୍ଦେ ଉଚ୍ଛୁଳି ପଡ଼ଇ ସେ ପୁରୀ ।
ସାତବଂଶର ଯୁବତୀ ଜନମାନେ ମିଳି
ଯାବତ ପରିହାସରେ କରନ୍ତି ଯେ କେଳି ।
କୁତୂହଳେ ହୁଅନ୍ତି କେ ତହିଁ ଧରାଧରି ।
କର୍ଦ୍ଦମ ପିଚକା କେହୁ ହେଲେ ମରାମରି
ପ୍ରଥମେ ପରିହାସରେ ଚନ୍ଦନ ଅଗୁରୁ
ଦ୍ୱିତୀୟେ ହଳଦୀ କଲେ ଲେପନ ଶରୀର ।
ତୃତୀୟେ ପରିହାସରେ ଫିଙ୍ଗାଫିଙ୍ଗି ଧୂଳି
ଚତୁର୍ଥେ କର୍ଦ୍ଦମ ଧରି ହେଲେ ମରାମରି ।
କୁତୁହଳେ ବୋଳାବୋଳି ହୁଅନ୍ତି ସର୍ବେ ରଙ୍ଗେ
କର୍ଦ୍ଦମ ଜଡ଼ିତ ହେଲା ସମସ୍ତଙ୍କ ଅଙ୍ଗେ ।
କାରଣ ନୁହଇ ତହିଁ ମାନତ ଗୌରବ
ସ୍ତ୍ରୀ ପୁରୁଷ ହୋଇଲେ ଏକଗୋଷ୍ଠୀ ସର୍ବ ।
ଆଦିତ୍ୟ ଦେବତା ଅସ୍ତ ହେଉଅଛି ଆସି
କୃଷ୍ଣବେଣୀ ଜଳେ ସ୍ନାନ କଲେ ସର୍ବେ ପଶି
ତୈଳଅଁଳା ପନୀର ପାଣି କରେ ଘେନ
ପୁରୁଷମାନଙ୍କୁ ସ୍ନାନ କରାନ୍ତି କାମିନୀ ।

ସ୍ନାନ ସାରି ଯଦୁବୀରେ ଦେବ ମଧୁହାସି
ଚଳିଗଲେ ଆନନ୍ଦରେ ଯେ ଯାହାର ପୁରୀ ।
ବର କନ୍ୟା ବନ୍ଦାପନା କଲେ ସର୍ବଦେବୀ
ଅର୍ଘ୍ୟ ବନ୍ଦାପନା କଲେ ସକଳ ସାଧବୀ ।
ଜ୍ୟେଷ୍ଠ ଶୁକ୍ଳ ତୃତୀୟା ଯେ ତିଥି ବୁଧବାର
ରୋହିଣୀ ନକ୍ଷତ୍ର ବୃଷଚନ୍ଦ୍ର ସେ ଦିନର ।
ନାରାୟଣ ସଂକର୍ଷଣ ବସୁଦେବ ଘେନି
ସମସ୍ତ ରାଜାମାନଙ୍କୁ ଅର୍ଘ୍ୟ ଦେଲେ ଆଣି ।
ପାଣ୍ଡବକୁଳର ଯେତେ ଗଉରବ ଜନ
ସମସ୍ତଙ୍କୁ ଦେଲେ ପୁଷ୍ପ ଅକ୍ଷତ ଚନ୍ଦନ ।
ସାଜିଲେକ ଅଶ୍ୱ ଗଜ ରଥ ସମଦଣ୍ଡ
ବୀରତୂର ଶବ୍ଦରେ କମ୍ପଇ ବ୍ରହ୍ମାଣ୍ଡ ।
ଯୁଧିଷ୍ଠିର ବିଚାରିଲେ ଶୁଣ ଦେବରାଜ
ହସ୍ତିନା ରାଜ୍ୟକୁ ବେଗେ ଦଣ୍ଡ କର ସଜ ।
ପରମ ଆନନ୍ଦ ହୋଇ ଆଜ୍ଞାଦେଲେ ହରି
ମଙ୍ଗଳ ଧ୍ୱନି କରନ୍ତି ଶୁଣି ବନମାଳୀ ।
ହେ ଧର୍ମଦେବ ରାଜ୍ୟକୁ ବିଜେ କର ଯିବେ
ହେ ଦେବ ଆମ୍ଭଙ୍କୁ ପୁଣି ଦୟା କରିଥିବେ ।
ସାଜିଲେକ ଯଦୁବଂଶ ସୈନ୍ୟ ଦେବ ହରି
ପାଞ୍ଚୋଟି ଆସନ୍ତି ରାମକୃଷ୍ଣ ବିଜେକରି ।
ଅର୍ଜ୍ଜୁନ ବସିଲ୍ଲ ମାୟାବତୀ ପୁଷ୍ପରଥେ
ଦେବେ ପୁଷ୍ପବୃଷ୍ଟି କଲେ ଅର୍ଜ୍ଜୁନର ମାଥେ ।
ସାତବଂଶ କନ୍ୟାମାନେ କଲେ ଶୁଭଧ୍ୱନି
ଶୁଭ ଅନୁକୂଳ ଯୋଗେ ଚଳନ୍ତି ଫାଲ୍‌ଗୁନ ।
ବାହାରିଲେ ରୈବତରୁ ଦେବ ଜଗବନ୍ଧୁ
ସୁଭଦ୍ରାକୁ କହନ୍ତି ଯେ ସର୍ବେ ସାଧୁ ସାଧୁ ।
ସାତ୍ୟକି ପ୍ରଦ୍ୟୁମ୍ନ ଶତଧନୁ ଯେ ଅକ୍ରୂର
ଏମାନେ ସମସ୍ତେ ଯାନ୍ତି ହସ୍ତିନା ନଗର ।
ଅନେକ ଯୋଗାଡ଼ ରଥ ଗଜ ଅଶ୍ୱ ଘେନି
ଭୁଲେ ଅଛନ୍ତି ଅନେକ ଗଣିକା କାମିନୀ ।
ଅନେକ ଯୋଗାଡ଼ ରଥ ଗଜ ରତ୍ନ ଧନ
ଘେନ ଅର୍ଜ୍ଜୁନ କରନ୍ତି ନଗରେ ଗମନ ।
ଅନେକ ରାଜ୍ୟ ନଗରେ ଆସନ୍ତି ଯେ ପଶି
ସକଳ ନରେନ୍ଦ୍ର ଅର୍ଘ୍ୟ ଦିଅନ୍ତି ଯେ ଆସି ।
ବହୁତ ଅକ୍ଷତ ଆଣି ଦିଅନ୍ତି ନରପତି
କୁଞ୍ଜରଗଲେ ପ୍ରବେଶିଲେ ଯୁଧିଷ୍ଠି ନୃପତି ।

ଦେଖାଉରମାନେ ତାହା ଦେଖିକରି ଗଲେ
ଧୃତରାଷ୍ଟ୍ରର ଛାମୁରେ ବାରତା କହିଲେ ।
ସ୍ୱାମୀ ସୁଭଦ୍ରାକୁ ବରି ହୋଇ ଫାଲଗୁନ
ଅନେକ ସମ୍ଭାରେ ସେହୁ ଆସେ କନ୍ୟାଘେନ
ବାରତା ପାଇଣ ତହୁଁ ଅମ୍ବିକାର ସୁତ
ବଜେ ଧୃତରାଷ୍ଟ୍ର ମାନଗୋବିନ୍ଦ ଅଗ୍ରତ ।
ବାବୁ ପାର୍ଥ ଆସେ ବରି ହୋଇ କନ୍ୟାଗୋଟି
ସମ୍ପଦଣ୍ଡ ଘେନ ବେଗେ ଯାଅ ତୁ ପାଛୋଟି ।
ତାଙ୍କ ସଙ୍ଗତେ ଅଛନ୍ତି ହରିପୁତ୍ରମାନେ
ଭଗ୍ନୀକୁ ବିଭାହ ଦେଲେ କୃଷ୍ଣ ବଳରାମେ ।
ଯେବେ ତୁ ଉତ୍ସବ କର ନ ଯିବୁ ପାଛୋଟି
ମନେ ଅନ୍ତର କରିବେ ଶ୍ରୀକୃଷ୍ଣ ଯୁଧିଷ୍ଠି ।
ମୋହର ଶପଥ ତୋତେ ନ ଧର ତୁ ଆନ
ଉଠ ଉଠ ଆସ୍ଥାନରୁ ଯାଅ ଯା ବହନ ।
ଭୀଷ୍ମ ଦ୍ରୋଣ ବୋଇଲେକ ଅନେକ ବିନୟେ
ଆସ୍ଥାନୁ ଉଠ ବାହାର ହେଲେ କୁରୁରାୟେ
ଅନେକ ହସ୍ତୀ ମଣ୍ଡନ କଲ ରଜା ଆଜ୍ଞେ
ବଜେ ସମାରୋହେ ଧୃତରାଷ୍ଟ୍ର ନୃପମଣି ।
ଚଳାଇ ମାନଗୋବିନ୍ଦ ହସ୍ତିନାକୁ ଯାଇ
ବଇଦର୍ଭ ନଗାକୂଳେ ଭେଟେ କୁରୁସାଇଁ ।
ଏକମେଳ ହେଲେ ତହିଁ ବେନିକୁଳ ସୈନ୍ୟ
ବାଦ୍ୟନାଦରେ କମ୍ପିଲ ତିନି ଯେ ଭୁବନ ।
ବହୁତ ଆନନ୍ଦ ହୋଇ ବିହରନ୍ତି ସର୍ବେ
ଅସଂଖ୍ୟ ସୈନ୍ୟସାଗର ଜାଣି ମତ୍ତଗର୍ବେ ।
କୁଞ୍ଜଗଳ କଣି ହେଲାହସ୍ତିନା ପ୍ରବେଶ
ଦେଖି ପୁରଜନ ହେଲେ ଅନେକ ହରଷ ।
ପୁରନାରୀଗଣ ପୁଣି ବରକନ୍ୟା ଦେଖି
ଧମନ୍ତି ଆନନ୍ଦ ହୋଇ ଅଶ୍ରମ ଉପେଷ ।
କୁନ୍ତୀଦେବୀ ବିଜେକଲେ ଗାନ୍ଧାରୀଙ୍କ ପାଶେ
ମାଗୋ ଉତ୍ସବ ଦେଖନ୍ତି ସଂସାରେ ହରଷେ ।
ଗାନ୍ଧାରୀ ବିଜୟ ସଙ୍ଗେ ଘେନି ଭାନୁମତି
ଅନେକ ଭ୍ରମର ପାଟଛଦ ଡାକୁଛନ୍ତି ।
ହରି ବଳରାମଙ୍କର ସୁଭଦ୍ରା ଭଗିନୀ
ଦ୍ୱାରକାମଣ୍ଡନୀ ଅମ୍ଭ କୁଳବଧୂ ପୁଣି ।
ବର କନ୍ୟାଙ୍କ ଦର୍ଶନେ ପାପ ଯାଉ କ୍ଷୟେ
ଅଲଚଳେ ତୁ ଦରଶେ ପିଠ । ମହାମାୟେ ।

ପ୍ରଦାନ କରାଇଲେ ଗୋ ରାମକୃଷ୍ଣ ପାଇ
କେମନ୍ତେ ସାଧବୀ ବାରେ ଦେଖ କନା ଯାଇ
ଗାନ୍ଧାରୀ କହିଲେ ତୁମ୍ଭେ କହିବ ଦୁର୍ଲ୍ଲଭ
ସ୍ୱାମୀ ଅନ୍ଧ ଜୀବନରେ ମୋର କି ସୁଲଭ ।
ସବୁରି ମହିମା ମୁହିଁ ଜାଣିବି କେସନ
ଧୃତରାଷ୍ଟ୍ରଙ୍କର ଯେବେ ଥାଆନ୍ତା ନୟନ ।
ସ୍ୱାମୀ ରହିଲେ ମୋହର ଯେବେ ଅନ୍ଧ ହୋଇ
ଏବେ ଏ ସମ୍ପଦୁ ମୁହିଁ କସ ଅର୍ଥ ପାଇ ।
ଯେତେ ପୂର୍ବେ ଅରଜିଛୁ ତେତେ ସିନା ଭୁଞ୍ଜି
ଆବର କପାଇଁ ମୋତେ କଟୁବାକ୍ୟ ଗଞ୍ଜି ।
କ୍ରୋଧ ଅବସ୍ଥାକୁ ପାଇ ବୋଲନ୍ତି ଗାନ୍ଧାରୀ
ଅନେକ ବିନୟେ ଦେବୀ କୁନ୍ତୀଙ୍କି ତିଆରି ।
ଗାନ୍ଧାରୀ ବୋଇଲେ ଶୁଣ କୁନ୍ତିଭୋଜସୁତା
ସମ୍ପଦ ବିପଦ ଘେନ ସିନା ଏକ କଥା ।
ତୁମ୍ଭର ଆନନ୍ଦ ସିନା ଏ ସମ୍ପଦ ଦେଖି
ଅନେକ ବିପଦ ଅଛି ଦେବ ତା ଉପେକ୍ଷି ।
ମନ୍ଦକର୍ମେ ଜାତକଲ ପୁତ୍ର ଯେତେଗୋଟି
ସମସ୍ତେ ଦୁଷ୍ଟ ପୃଥ୍ୱୀର ଭାର ହେଲେ ସେଠି
ସମ୍ପଦ ଦେଖିବୁ ତୁ ଗୋ କୁନ୍ତି ଭୋଜସୁତା
ପୁଅ ତୋର ରଜା ହେବ ହେବୁ ରାଜମାତା
ମୋ ପୁଅ ମଧୁ ପିଙ୍ଗଳ ଜାତି ଯେ ଅଟନ୍ତି
ତହିଁକି ଭାଇ ମୋହର ଶକୁନି ଯେ ମନ୍ତ୍ରୀ ।
ମାଗୋ ଅଗାଧ ନଦୀରେ ଦଦରା ଯେ ନାବ
କେତେ ବେଳଯାଏ ଭାର ସେ ସହିବ ପାଣ୍ଡବ
ନର ଚଣ୍ଡାଳ ସମସ୍ତେ ହୋଇଲେଣି ମେଳା
ଦଣ୍ଡେ ଅଛି ବୁଡ଼ିବାକୁ ସିନା ମୋର ଭେଳା
ଆମ୍ଭର ପୁଣ୍ୟ ତୁ ମାଗୋ ଜାଣିବୁ ଏସନେ
ଧୃତରାଷ୍ଟ୍ରଙ୍କୁ ମରଣ ହୁଅନ୍ତା କେସନେ ।
ତାହାଙ୍କ ନିଧନେ ମାଗୋ ମୁହିଁ ନ ବଞ୍ଚିବି
ଏ ପୁତ୍ରମାନଙ୍କ କଷ୍ଟ କର୍ଣ୍ଣେ ନ ଶୁଣିବି ।
ଆନନ୍ଦ ହୋଇବୁ ପୁତ୍ରଙ୍କର ମୁଖ ଦେଖି
ଧର୍ମରେ ପ୍ରାପତ ଯେଣୁ ତୋର ବେନି ଆଖି
ତୋର ଜୀବନ ସାର୍ଥକ ଅଟଇ ଗୋ କୁନ୍ତୀ
ସର୍ଜିଛି ଧର୍ମଦେବତା ତୋତେ ମନେ ଚିନ୍ତି ।
କୁନ୍ତୀ ବୋଇଲେ ଗାନ୍ଧାରୀ ବଚନକୁ ଶୁଣି
ଆପଣା ସମ୍ପଦ ଦେଖି ନ ପାରିଲୁ ପୁଣି ।

ତୋ ପୁତ୍ର ମାନଗୋବିନ୍ଦ ନୃପକୁଳମଣି
ଶଙ୍ଖନିଧି ପଦ୍ମନିଧି ହସ୍ତେ ଅଛି ଯେନ ।
ହସ୍ତିନା ମଉଡ଼ମଣି ଅଟଇ ଅଧିପତି
ତାହାର ସମାନ ଜଣେ କ୍ଷତ୍ରୀ ନାହିଁ ପୃଥ୍ୱୀ ।
କାଳକ ବୁଲନ୍ତି ମୋର ପୁତ୍ରେ ଘୋରବନେ
ଭିକ୍ଷାକରି କନ୍ଦମୂଳ ଭକ୍ଷି ବନେ ବନେ ।
ପର ଚିତ୍ତକୁ ପ୍ରଶଂସା ନ କରନ୍ତି ଯତି ।
ଆପଣା ସମ୍ପଦ ନିନ୍ଦା ନ କରେ ସୁମତି ।
ଏସନ ସମୟେ କନ୍ୟା ଘେନ ଧନଞ୍ଜୟେ
ପ୍ରଣାମ କଲେ ଗାନ୍ଧାରୀ କୁନ୍ତୀଦେବୀ ପାୟେ ।
ପୁତ୍ରବଧୂକୁ ଦେଖିଣ ଆନନ୍ଦିତ ମନ
ଗାନ୍ଧାରୀ କୋଳେ ଧଇଲେ ସୁଭଦ୍ରା ଅର୍ଜୁନ ।
ଦ୍ରଉପଦୀ ଭାନୁମତି କୁନ୍ତୀଦେବୀ ଭୁଲେ
ଶ୍ରୀକରେ ଅର୍ଘ୍ୟ ଘେନିଣ ଭିତରେ ମିଳିଲେ ।
ଅର୍ଜୁନ ସୁଭଦ୍ରାଙ୍କର ଶିରେ ଅର୍ଘ୍ୟ ଦିଅନ୍ତି
ଶ୍ରୀକରେ ଶୁଭ ମଙ୍ଗଳ ବାଞ୍ଛା ସେ କରନ୍ତି ।
ଅନେକ ଉତ୍ସବ କରି ହଅନ୍ତି ବଧାଇ
ପାର୍ଥ ପାଇଁ ସୁଭଦ୍ରେ ତୁ ଥିଲୁ ଜନ୍ମ ହୋଇ ।
ବହୁ ପ୍ରଶଂସା କରନ୍ତି କୁନ୍ତୀ ଯେ ଗାନ୍ଧାରୀ
ସମସ୍ତ ନାରୀଏ ଶୁଭ ମନାସନ୍ତି ଘେରି ।
ନିଜପୁରେ ପ୍ରବେଶିଲେ ବରକନ୍ୟା ଘେନ
ବିଳସନ୍ତି ଭଦ୍ରା ସହ ବୀର ଫାଲଗୁନ ।
ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ଭଦ୍ରା ଭୁଲେ ଅର୍ଜୁନର ବଢ଼ିଲା ପୀରତି ।
ଅତି ରଙ୍ଗ ରସଭର ଭୋଗ ଯେ ବିଳାସ
ହସ୍ତିନାପୁରେ ରହିଲେ ପାର୍ଥ ସାତମାସ ।
ଦ୍ରଉପଦୀ ବଚନ କଲେ ଅର୍ଜୁନର କତି
ପୀୟୂଷ ତୁଲ୍ୟ ବଚନ କହନ୍ତି ଉକତି ।
ମାୟାବତୀ କୋଲେ ତୁମ୍ଭେ ଗଲ ଅନ୍ତଃପୁରେ
ଧର୍ମରାଜାଙ୍କ ମୋହର ମେଳ ସମୟରେ ।
ସେଥିଲାଗି ଗଲ ବାରବରଷ ଯେ ବନ
ସେହିଦିନୁ ମୋ ଶରୀର ହୋଇଲାକ କ୍ଷୀଣ ।
ନିତ୍ୟେ ନିରେଖଇ ମୁହିଁ ତୋହର ଚନ୍ଦ୍ରମୁଖ
ଦିନ ନ ସରେ ବ୍ୟସନ ମଣେ ମୁହିଁ ଦୁଃଖ ।
ବନେ ଗଲାଦିନୁ କଲି ବନଦୁର୍ଗା ଓଷା
ସେ ମହେଶ୍ୱରୀ କୃପାରେ ପୂରିଲା ମୋ ଆଶା ।
ଶ୍ରୀକୃଷ୍ଣ ଭଗ୍ନୀ ହରିଲ ଜିଣି ଗଲ ଘେନ
ଆପଦ ଖଣ୍ଡିଲେ ତବ ଦୁର୍ଗତିତାରିଣୀ ।
ଦେଖି ଧନଞ୍ଜୟ ହେଲେ ହରଷିତ ମନ
କୋଳେ ବସାଇ ଦ୍ରୌପଦୀ ଦେଲେକ ଚୁମ୍ବନ
ବହୁ ହାସ୍ୟରସ ପୁଣି ପୀରତି ବିନୋଦେ
ରସକେଳି ଉପୁଜିଲା ଉଭୟଙ୍କ ମଧ୍ୟେ ।
ଏମନ୍ତ ରହିଲେ ପାର୍ଥ ହସ୍ତିନା ଭୁବନ
ସୁଭଦ୍ରା ସଙ୍ଗେ ପୀରତି ବଢ଼େ ଦିନୁଦିନ ।
ଜୟ ଜୟ ଜଗନ୍ନାଥ ଜନହିତକାରୀ
ଜଗନ୍ନାଥ ଭଜି ଭବଜଳୁ ହୁଅ ପାରି ।
ଜଗନ୍ନାଥ ଭଜ ନରେ କଷ୍ଟୁ ହୁଅ ପାର
ଜଗନ୍ନାଥ ଭଜ ନରେ ଦୁସ୍ତରୁ ନିସ୍ତର ।
ଜଗନ୍ନାଥ ଭଜ ନରେ ପ୍ରସନ୍ନ ସୁବୁଦ୍ଧି
ଜଗନ୍ନାଥ ଭଜ ନରେ ଛାଡ଼ ଶୋକବ୍ୟାଧି ।
ଜଗନ୍ନାଥ ଭଜ ନରେ ଲୋଭ ମୋହ ତେଜ
ଶ୍ରୀଜଗମୋହନ ନାମ ହୃଦପଦ୍ମେ ଭଜ ।
ଜମ୍ବୁଦ୍ୱୀପେ ଭରତଖଣ୍ଡେ ଦକ୍ଷିଣ ଉଦଧି
ତୀର୍ଥ ନୀଳ କଳ୍ପବଟ ବଇକୁଣ୍ଠ ଭେଦି ।
ମହାପର୍ବତ ସୁନ୍ଦର ନାମ ନୀଳଗିରି
ବ୍ରହ୍ମାଣ୍ଡ ମଧ୍ୟରେ ଯେହ୍ନେ ଜ୍ୟୋତ୍ସ୍ନା ଅଛି ପୂରି
ସୁରଲକ୍ଷ ଯେ ବତିଶସହସ୍ର ବର୍ଷ କଲି
ତା ଦର୍ପ ମଣ୍ଡବ ବସିଅଛି ବନମାଳୀ ।
ଶ୍ୱେତଗଙ୍ଗା ଅଟଇ ଯେ ରୋହିଣୀର କୁଣ୍ଡ
ଶ୍ରୀଯମେଶ୍ୱର ଯେ ଲିଙ୍ଗ ଆବର ମାର୍କଣ୍ଡ ।
ଗୁପତଗଙ୍ଗା ଅଟଇ ତୀର୍ଥ ବାରାଣସୀ
କୋଟିଏ ତୀର୍ଥଙ୍କୁ ଘେନ ପୁଷ୍କରହିଁ ଆସି ।
ଶ୍ରୀରାମ କୃଷ୍ଣ ସୁଭଦ୍ରା ଦେବୀ ରୂପେ ବ୍ରହ୍ମା
ଦେଖି ଉପେକ୍ଷ ଘେନନ୍ତି ଗୁଣ ମହାତମା ।
ଗୁଣସାଗର ନାଥ ଯେ ଜଗତର ବନ୍ଧୁ
ସେ ଦେବ ପାଦ ଭଜଇ ଦେବ ଦେବ ଇନ୍ଦ୍ର ।
ଧବଳ କଳା କୁଙ୍କୁମ ପୀତବର୍ଣ୍ଣ ଧରି
କାଳର ଅଭାବେ ରୂପ ଅନୁରୂପେ ଧରି ।
ଅନେକ ମହିମା କିଏ କହିବାକୁ କ୍ଷମ
ପରମ ରୂପ ଧାରଣା ଶ୍ରୀପୁରୁଷୋତ୍ତମ ।
ସକଳ ଜନ ଜୀବନ ମାନବ ଜନମ
ଯେବେଣ ରୂପ ବିଳସୀ ହରେ ଜନମନ ।

ଅପୂର୍ବ ପୁରାଣ ଅଟେ ଏ ମହାଭାରତ
ଜଗମୋହନ ଚରଣ ତଳେ କୃତ୍ୟ କୃତ୍ୟ ।
ଶ୍ରୀସ୍ୱାର ବଲ୍ଲଭ ପାଦପଦ୍ମ ହୃଦେ ଧେନ
ବଦନ୍ତି ଶାରଳାଦାସ କବି ଶୁଦ୍ରମୁନି ।

## କୁଣ୍ଡଳୀ ଦୈତ୍ୟ ବଧ

ବୈବସ୍ୱତ ଯେ ବଳଙ୍କ ଦେଶ ମହାରାଜା
କଲେ ଅଗସ୍ତି ମୁନିଙ୍କ ଚରଣରେ ପୂଜା ।
ଧୂପ ଦୀପ ନଇବେଦ୍ୟ ଗନ୍ଧ ପୁଷ୍ପ ଦେଇ
ମୁନିଙ୍କ ସମ୍ମୁଖରେ ରାଜା କହନ୍ତି ବିନସ୍ତି ।
ହେ ମହାମୁନି କହିଲ ଶ୍ରୀମହାଭାରତ
ସୁଗନ୍ଧିକା ହରଣ ଯେ କରି ଆଦ୍ୟପ୍ରାନ୍ତ ।
ହରି ଅର୍ଜୁନର ହେଲା ଯେତେ ଯେତେ କଥା
ଦେବକୀ ଯଟଶାବନ୍ତୀର ଓଷାରବ୍ୟବସ୍ଥା
ସେ କଥାମାନ ଶୁଣି ମୁଁ ହୋଇଲି କୃତାର୍ଥ
ତଦନ୍ତେ କି ହେଲା ମୋତେ କହ ଘଟସୁତ
ରାଜାର ବିନୟ ସ୍ତୁତି ଭକ୍ତିଭାବ ଦେଖି
ପୁସ୍ତକ ପେଡ଼ି କହନ୍ତି ହୋଇ ମହାସୁଖୀ
ସାବଧାନେ ଶୁଣ ତୁ ହୋ ମନୁ ନୃପବର
ଏକ ଚିତ୍ତ ଏକ ଲୟ କରିଣ ତୋହର ।
ଭାରତ ଶୁଣିଲେ ଏକଚିତ୍ତେ ପୁଣ୍ୟ ହୋଇ
ଚିତ୍ତ ବିକଳିତ ରାଜା କଷ୍ଟ ନ ରହଇ ।
ଏବେ ଯାହା କହିବା ତୁ ସାବଧାନେ ଶୁଣ
ଚୈତ୍ରମାସ କୃଷ୍ଣପକ୍ଷ ପ୍ରତିପଦା ଦିନ ।
ବିଶାଖାନକ୍ଷତ୍ର ବିଷ୍ଟି ଷାଠିଏଦଣ୍ଡ ଭୋଗ
ବାଳବ ନାମେ କରଣ ବଜ୍ର ନାମେ ଯୋଗ
ସେ ଦିନର ଦୁର୍ଯ୍ୟୋଧନ ଶତଭାଇ ଘେନି
ଦଶସହସ୍ର ରଥ ଯେ ଶଲ୍ୟ କର୍ଣ୍ଣ ବେନି ।
ବାହ୍ଲିକ ଶକୁନି ମନ୍ତ୍ରୀ ବର ସୋମଦତ୍ତ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଭୁଲେ ଜୟଦ୍ରଥ ।
ଏତେକ ଘେନି ସେ ରାଜା ଯାଉଅଛି ଚଳି
ଚଳନ୍ତେ ପଶିଲା ସମଦଣ୍ଡ ମହାବଳୀ ।
ପଦାଘାତେ କମ୍ପେ ପୃଥ୍ୱୀ ଦେବୀଙ୍କର ଶିର
ସ୍ୱଭାବେ ବୋଲାଇ ଯେଣୁ ସେ କୁରୁସାଗର ।
ଅଭୟ ବୋଲନ୍ତି ଯେଣୁ ଭୟ ତାଙ୍କ ନାହିଁ
ଛତ୍ରାଣୋଇ ସବୁ ରାଜା ଚରଣେ ଖଟଇ ।

ଇନ୍ଦ୍ରପ୍ରସ୍ଥ ଜିଣି ରାଜାବାରୁଣାକୁ ଚଳି
ଅରଞ୍ଜିକ ପର୍ବତରେ ଯାଇ ସର୍ବେ ମିଳି ।
ସେନ୍ଦ୍ରବନ୍ଦୀ ବପଘାତ ଦଇବର କୃତ୍ୟ
କଥା ଏକ ହୋଇଲା ଯେ ବଡ଼ ଆଚମ୍ବିତ ।
କୁଣ୍ଡଳୀ ବୋଲିଣ ଏକ ଦୈତ୍ୟ ମହାବୀର
କୁଳବଣ ପାଟଣାରେ ଅଟେ ତାର ଘର ।
ଅଶ୍ୱ ଗଜ ପଦାତି ତା ସଙ୍ଗେ ନାହିଁ କେହି
ଏକାକୀ ହୋଇ ଅସୁର ବନରେ ବୁଲଇ ।
ପରବତ ଶିଖେ ଯାଇ ଦୈତ୍ୟ ଦୃଷ୍ଟିକର
ମନ୍ଦର ପର୍ବତ ପ୍ରାୟେ ଶରୀର ତାହାର ।
କଉରବ ସୈନ୍ୟଙ୍କୁ ଯେ ଅଛି ଦୃଷ୍ଟି ଦେଇ
ହସି ବିଚାରେ ଏ କେଉଁଦେଶ ନରସାଇଁ ।
ବନ୍ଧୁତ ସୈନ୍ୟ ଏହାର ସଙ୍ଗତରେ ଚଳି
ଅଛନ୍ତି ଗର୍ବେ ଡାକନ୍ତି ହୋଇ କୋଳାହଳୀ
ଏହାଙ୍କ ଆଗରେ ଦେଖି ମିଳିଲାକ ଯାଇଁ
ଆମ୍ଭର ଏହାର କେତେ ବଳୀୟାନ ହୋଇ ।
ଏତେକ ବିଚାରି ଦୈତ୍ୟ ଦେଲା ଏକ ରଡ଼ି
ଆଷାଢ଼ ମାସରେ ଯେହ୍ନେ ମେଘ ଘଡ଼ଘଡ଼ି ।
କଉରବେ ବିଚାରିଲେ ଏ କେବଣ ଅର୍ଥ
ଉଡ଼ି ଏକ ଶୁଭନ୍ତେ ଯେ କମ୍ପିଲା ପର୍ବତ ।
ଏମନ୍ତ ବିଚାର କରୁଅଛନ୍ତି ଯେ ତହିଁ
ମିଳିଲା ଦାନବ ବୀରମଣି ଆଗେ ଯାଇ ।
ଚଉଦ ବ୍ରହ୍ମାଣ୍ଡେ ଅଟେ ବଡ଼ ଯା ଶରୀର
ହସି କଉରବଙ୍କୁ ସେ ପୁଛିଲା ଅସୁର ।
ପଚାରଇ କିଏ ତୁମ୍ଭେ କେଉଁ ଦେଶୁ ଆସ
କେ ତୁମ୍ଭର ତାତ ମାତ ତୁମ୍ଭ ନାମ କିସ ।
ବିଚାରୁଥାଇ ଯେ ମୋର ମନେ ମନେ ମୁହିଁ
ବୀର ତୁର ଶବଦ ମୋ ଭୟେ ଶୁଣା ନାହିଁ ।
ଭୟ କି ତୁମ୍ଭର ନାହିଁ କର ବୀର ଠାଣ
ତୁମ୍ଭର କୁଳେ କରିବା ଆମ୍ଭେ ଆଜ ରଣ ।
ସମର୍ଥପଣେ ବଜାଅ ବୀର ତୂର ବାଜା
ଜାଣଇ ସଂଗ୍ରାମେ ତୁମ୍ଭେ ଅଟ ବୀର ରାଜା ।
ଆଜ ଯୁଦ୍ଧେ ଯେବେ ବର୍ତ୍ତିଯିବ ତୁମ୍ଭେ କେହି
ଜାଣିବା ପୃଥ୍ୱୀରେ ମୃତ୍ୟୁ ତୁମ୍ଭରହିଁ ନାହିଁ
ଏସନବାକ୍ୟ କହନ୍ତେ ବୀର ଚୂଡ଼ାମଣି
ଦୁଃଶାସନ କୋପ କଲା ତା ପ୍ରତିଜ୍ଞା ଶୁଣି ।

ଆଗ କଲା ରଥ କରେ ଧରି ଗଦାବର
ପଚାରିଲା କାହିଁର ତୁ ଅଟୁରେ ଅସୁର ।
ମରଣ କଡ଼ାଇ କରେ ଆଣିଅଛୁ ତୋତେ
ତେଣୁ ଅସୁର ପ୍ରତିଜ୍ଞା କରୁଛୁ ଏମନ୍ତେ ।
ନ ଜାଣୁ କି ହସ୍ତିନାର ନୃପ ଚୂଡ଼ାମଣି
ଦ୍ୱିଜେକରି ଯାଉଛନ୍ତି ବୀର ଶିରୋମଣି ।
ସୋମବଂଶ ରାଜା ଏ ଯେ କକ୍ଷା ଜଗଜ୍ୟୋତି
ପୃଥିବୀରେ ଯାର ନାମ ମାନଗୋବିନ୍ଦଟି ।
ଛପ୍ପାଣୋଇ ସସ୍ତ୍ରରାଜା ସେ ଚରଣେ ବନ୍ଦେ
ତୁ ତାହାକୁ ପଚାରୁଛୁ ଯେହ୍ନେ ଜାତି ଅନ୍ଧେ
ରେରେକାର କରି ପୁଣି ପଚାରୁଛୁ ତୁହି
ସମର ଘରେ କି ପ୍ରାଣ ଅଛୁ କହାଦେଇ ।
ତୁ ଘୋର ଅସୁରକୁଳେ ହୋଇଅଛୁ ଜାତ
ଯେଣୁ ପଚାରିଲୁ ନଷ୍ଟେଁ ହୋଇବୁ ରେ ହତ
ଏତେ କହନ୍ତେ ଦାନବ ବୀର ଚୂଡ଼ାମଣି
ପୁଚ୍ଛ ମାଡ଼ିଲେ ଯେସନେ ସର୍ପ ଫେଁକେ ଫଣି
ଅସୁର କହଇଲା ତୁରେ ଅଟୁ ମନ୍ଦବାଇ
କୁଣ୍ଡଳୀ ଦୈତ୍ୟ ବୋଲି ମୁଁ ନ ଜାଣୁକି ତୁହି
ଏତେକ କହିଣ କୋପେ କମ୍ପେ ଦୈତ୍ୟବୀର
ପବନ ଆଘାତେ ଉନ୍ମାପର୍ବତର ଆକାର ।
କରେ କୋଦାଳ ଘେନି ସେ କୋପରେ ବୁଲାଇ
ଦୁଃଶାସନ ପଥପରେ ପ୍ରହାରିଲା ନେଇ
ଭଗ୍ନହେଲା ରଥବର ମସିଗୁଣ୍ଡା ହୋଇ
ପ୍ରଳୟ ଅଗ୍ନିର ପ୍ରାୟେ ସେଠାରେ ଜଳଇ ।
ସାରଥି ସହିତ ରଥ ହେଲା ଗୁଣ୍ଡାମୟ
ରଥୁ ଡେଇଁ ଉଭା ଧୃତରାଷ୍ଟ୍ରର ତନୟ ।
ଚଉଷଠି ଭାର ଗଦା ବୁଲାଇ ବୁଲାଇ
ଦାନବ ଉପରେ ବୀର ପିଟିଲାକ ନେଇ ।
ମୁଣ୍ଡ ପାତିକରି ତାହା ସହିଲା ରାକ୍ଷସ
ଚଉଷଠି ଭାର ଗଦା ଭାଙ୍ଗି ହେଲା ଶେଷ ।
ପୁଣିହିଁ ସେ ମୁଦ୍‌ଗର ଧଇଲାକ ବୀର
ଦାନବ ଉପରେ କଲା ବେଳେକ ପ୍ରହାର ।
ବାମହସ୍ତେ ପାଣି ତାହା ଦାନବ ଘେନିଲା
ଅମୋଘ ଶକତି ପୁଣି ଦୁଃଶାହିଁ ମାଇଲା ।
ଦାନବ ପିଠି ଉପରେ ପଡ଼ିଲାକ ଯାଇ
ଝଡ଼ି ପଡ଼ିଲା ଶକତି ଶତଖଣ୍ଡ ହୋଇ ।

ଦେଖି ଦୁଃଶାସନ ବୀର ପାଇ ଲଜ୍ଜା ଅତି
ଭାଇଙ୍କୁ ଡାକି କହିଲା ମାନଚକ୍ରବର୍ତ୍ତୀ ।
କପାଇଁ ରହିଅଛରେ ବେଢ଼ି ଧରି ମାର
ତଥର୍ଥେ ଶତ୍ରୁ ଏ ଆସି ମିଳିଲା ମୋହର ।
ରାଜା ଆଜ୍ଞା ପାଇ ଧାଇଁଗଲେ ସବୁ ଭାଇ
ନାନାଶସ୍ତ୍ର ତାହାଙ୍କର ହସ୍ତରେ ଅଛଇ ।
ଆରେ ରେ ଦାନବ ବୋଲି ବେଢ଼ି ଚଉକତି
ଗଦା ଚେଲ ଚକ୍ର ଭାଲ ମାଇଲା ଶକତି ।
ଶତହେଭାର ଗଦାବର ପିଟିଲେ ଝଟତି
ମୁଦ୍‌ଗର ଆବର ଅସି ଆବଦାୟର ଜ୍ୟୋତି ।
ହୁଂକାର ଶବଦ କରି ମାରନ୍ତି ବହନ
ପବନର ପ୍ରାୟ ସେ ଉଭା ଅସୁରରାଜନ ।
ଶସ୍ତ୍ର ପଡ଼ନ୍ତେ ହସଇ ହୋଇ ଟହ ଟହ
ବାଜନ୍ତେ ଶସ୍ତ୍ର ତାହାର ପୁଲକଇ ଦେହ ।
ଯେତେକ ଯୋଦ୍ଧାଏ ଗଦାବର ଧରିଥିଲେ
ଦାନବର ଅଙ୍ଗେ ପିଟି ନିଃଶସ୍ତ୍ର ହୋଇଲେ ।
ପୁଣ ପୁଣ ଗଦାବର ପ୍ରହାର କରନ୍ତି
ହରଷ ଦାନବ ଦେଖି ଗଦାର ଆକୃତି ।
ହସି ସେ ଦାନବବର ପଚାରଇ ତୁହିଁ
ମରିବାର ଅନୁକୂଳ ହେଲା କରେ ଭାଇ ।
ଏଣୁ ଶସ୍ତ୍ରମାନ କରେ କରେ ଧରିଥାଅ
ପ୍ରତିଜ୍ଞା କରି ସଂଗ୍ରାମ ଭୂମିରେ ଯେ କହ ।
ଆମ୍ଭର ଛାମୁରେ ପ୍ରତିବନ୍ଦ ହୁଅ ରହି
ଆମ୍ଭଙ୍କୁ ପରି ଅସୁର ଘୋର ଅଛ କହି ।
ଆମ୍ଭର ଭାଗ୍ୟରେ ଆଜ ଭେଟିଲୁ ତୁମ୍ଭଙ୍କୁ
ଦଇବ କି ମୃତ୍ୟୁଦେଲା ପିମ୍ପୁଡ଼ି ମନ୍ଦାକୁ ।
ଅଭସ୍ମ ସୋମବଂଶୀରେ ତୁମ୍ଭେ ଅଟ ପର
କାଳଦଣ୍ଡ ପରେ ଆଜ ପଡ଼ିଲ ତ ଧରା ।
କହୁଁ କହୁଁ ରାଗେ ସେହି ଦୈତ୍ୟକୁଳ ରାୟେ
ବାମହାତକୁ ବୁଲାଇ ମାଇଲା ତଥାଏ ।
ଦୁଃଶାସନ ଆଦି ଶତଭାଇ ଯୋଦ୍ଧା ଯେତେ
ଗଦା ଘେନି ବେଢ଼ିଥିଲେ ବଳଙ୍କ ସହିତେ
ଏକ ତଥାକେ ପଡ଼ିଲେ ସେ ସମସ୍ତ ବୀର
ଦେଖି କଉରବ ବୀରେ ହୋଇଲେ କାତର
ଏକ ଠାବରୁ ଦାନବ ପାଦ ନ ଚଳଇ
ମନ୍ଦର ଗିରି ପରାୟେ ଅଛି ଉଭା ହୋଇ

ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଶଲ୍ୟ ସୋମଦତ୍ତ
ଅଶ୍ୱତ୍ଥାମା ଶକୁନି ଯେ କର୍ଣ୍ଣ ଜୟଦ୍ରଥ ।
ଏହାଙ୍କୁ ଚାହିଁଣ ବୋଲେ ମାନଚକ୍ରବର୍ତ୍ତୀ
ଭାଇମାନେ ମୋହର ତ ପଡ଼ିଲେଣି ଏଥି ।
ସୈନ୍ୟପାଳ ହେନ ତୁମ୍ଭେ ଅଛ ଉଭାହୋଇ
ଜାଣିଲି ତୁମ୍ଭର ଦୟା ମୋହଠାରେ ନାହିଁ
ନୋହିଲେ କପାଇଁ ତୁମ୍ଭେ ମଉନ ହୋଇଲ
ଏ ଯୁଦ୍ଧରେ ସ୍ଥିର ହୋଇ କପାଇଁ ରହିଲ ।
ଦେଖୁ ଦେଖୁ ଶତ୍ରୁ ଆସି କରୁଅଛି ନାଶ
ତୁମ୍ଭେମାନେ ନ ଦେଉଛ କପାଇଁ ଆଦେଶ ।
ଏତେ ବୋଲି କପାଳରେ ରାଜା କର ଦେଲା
ଆହା ଭାଇ ଦୁଃଶାସନ ବୋଲି ସେ ବୋଇଲା
ଭୀଷ୍ମ ଦ୍ରୋଣ ବୋଇଲେ ହୋ ଶୁଣ ନୃପମଣି
ସନ୍ତାପ ପୁଣ କରୁଛ ହୃଦେ ମାନ ହେନ ।
ଏକା ଯୋଦ୍ଧାକୁ ବହୁତ ଲୋକେ ନୁହେଁ ମାରି
ଅଧର୍ମଯୁଦ୍ଧ ହୋଇବ ଆହେ ଦଣ୍ଡଧାରି ।
ବାବୁ ମହାଯୋଦ୍ଧା ଆମ୍ଭେ ଅଟୁ ପୃଥିବୀର
ତୋହର ଅଧର୍ମ ଜ୍ଞାନ ହେବ ନୃପବର ।
ଏହା ତୁ ଈଶ୍ୱର ଯେତେ ନ କରନ୍ତୁ ପୁଣ
ଏହିକ୍ଷଣି ଆମ୍ଭ ଯୁଦ୍ଧ ଦେଖ ନରରାଣ ।
ମାନଗେ ବନ୍ଦ ବୋଇଲା ଧର୍ମ ଅଧର୍ମହିଁ
ମୋହର ଉପରେ ସିନା ତୁମ୍ଭର କ ଯାଇ ।
ଶୁଣି କୋପେ ଗଙ୍ଗାସୁତ ଟଙ୍କାରିଲେ ଗୁଣ
ତୂଣରୁ ବାହାର କଲେ ଦଶସହସ୍ର ବାଣ ।
ଦାନବର ଉପରକୁ ବିନ୍ଧିଲେ ସେ ଟାଣି
ମୁଣ୍ଡ ପାତିଣ ସହିଲା ବୀର କୁଳମଣି ।
ମାନଗୋବିନ୍ଦ ବୋଇଲା ସଇନ୍ୟଙ୍କୁ ଚାହିଁ
ସମସ୍ତେ ବିନ୍ଧିଲେ ଏଥେ କିଛି ଦୋଷ ନାହିଁ
ଧାଇଁଲେ ରାଜାର ଆଜ୍ଞାପାଇ ସବୁଯୋଦ୍ଧା
ଘେରିଗଲେ ଅସୁରକୁ ଯେ ନାରାଚବିନ୍ଧା ।
ଭୀଷ୍ମଙ୍କ ନାରାଚମାନ ଜାଣି ବଜ୍ରାଘାତ
ଦ୍ରୋଣଙ୍କ ନାରାଚମାନ ଯେସନେ ପର୍ବତ ।
ଅଶ୍ୱତ୍ଥାମାର ନାରାଚମାନ ବଜ୍ରସୂଚି
ଶଲ୍ୟଙ୍କ ନାରାଚମାନ କ ଅନଳରାଜ ।
କର୍ଣ୍ଣର ନାରାଚମାନ ଆଦିତ୍ୟ କିରଣ
ବାହ୍ଲିକ ନାରାଚମାନ ଯମଦଣ୍ଡ ଜାଣ ।
ସୋମଦତ୍ତର ନାରାଚମାନ ଜବା ମେରୁ
ଜୟଦ୍ରଥର ନାରାଚମାନ ଅଟେ ଦାରୁ ।
ଶକୁନି ନାରାଚମାନେ ନିର୍ଘାତ ପରାୟ
ପଡ଼ଇ ଅସୁର ଦେହେ ନାହିଁ ତାର ଭୟ ।
ପୁଷ୍ପବୃଷ୍ଟି ହେଉଛି କି ପର୍ବତ ଉପରେ
ଛେଲ ଚକ୍ର ଗଦା କାତି ଅସି ମୁଦ୍ଗରେ ।
ଚଡ଼ି ଧୂଳିହୋଇ ଉଡ଼ି ଯାଉଛନ୍ତି ଶୂନ୍ୟେ
ଗଙ୍ଗାରନନ୍ଦନ ବାଣ ଯୋଚି ସରସନେ ।
ଲକ୍ଷ ଲକ୍ଷ କୋଟି କୋଟି ଛାଡ଼ୁଛନ୍ତି କୋପେ
ଦ୍ରୋଣଗୁରୁ ବର୍ଷୁଛନ୍ତି ବାଣ ସେହି ରୂପେ ।
ଅଶ୍ୱତ୍ଥାମା ବର୍ଷୁଛନ୍ତି କୋଟି କୋଟି ଶର
ଶଲ୍ୟ ଯେ ନାରାଚ ବର୍ଷୁଅଛନ୍ତି ଅପାର ।
କର୍ଣ୍ଣର ନାରାଚ ଯେତେ କେ ପାରିବ କହି
ଶ୍ରାବଣେ ଯେସନେ ଦ୍ରୋଣମେଘ ବରଷଇ
ଜୟଦ୍ରଥର ପନ୍ଦର କୋଟି ପୁଣି ଶର
ସୋମଦତ୍ତର ନାରାଚ ହଜାର ହଜାର ।
ଦାନବ ମୁଣ୍ଡକୁ ପୋତି ସହୁଅଛି ତାହା
ମୁଣ୍ଡ କ ନୁହଇ ସେହି ସାକ୍ଷାତରେ ଲୁହା ।
ପୁଣି ଗଙ୍ଗାସୁତ କୋପେ ଧରି ଅଗ୍ନିବାଣ
ଦାନବକୁ ବିନ୍ଧିଲେକ କରି ମହା ଟାଣ ।
ତୁଣ୍ଡ ପୋତି ସେ ଦାନବ ଗିଳିଦେଲା ତାହା
ଦେଖିଣ ଭୟେ କମ୍ପିଲା ଭୀଷ୍ମଙ୍କର ବାହା ।
କୁଣ୍ଡଳଚକ୍ର ବିନ୍ଧିଲେ ପୁଣି କୋପଚିତ୍ତେ
ଭାଙ୍ଗି ପକାଇଲା ଦୈତ୍ୟ ଧରି ବାମହସ୍ତେ ।
ଶରଯନ୍ତ୍ରା ବାଣ ପୁଣି ବିନ୍ଧିଲେ ସେ ଧରି
ବାମହସ୍ତ ପାତି ତାହା ଅସୁର ନବାରି ।
ବାବଲ ବାଣ ବିନ୍ଧିଲେ ପୁଣି ଗଙ୍ଗାସୁତ
ମୁଣ୍ଡ ପାତି ତାହା ପୁଣି ସହିଲା ଦଇତ୍ୟ ।
ରୁଦ୍ର ବାଣ ବିନ୍ଧିଲେକ ବୀର ଅଶ୍ୱତ୍ଥାମା
ଶତ୍ରୁକ୍ଷୟ ନାରାଚକୁ ବିନ୍ଧେ କୃତବର୍ମା ।
ଆଦିତ୍ୟ ଶର ବିନ୍ଧିଲେ ବୀରବର କର୍ଣ୍ଣ
ଶଲ୍ୟ ବିନ୍ଧିଲେକ କୋପେ ଧରି ମେଘବାଣ ।
ବ୍ରହ୍ମଅନଳ ନାରାଚ ବିନ୍ଧିଲା ଶକୁନି
ଜୟଦ୍ରଥ ବିନ୍ଧିଲେକ କାଳାନଳ ହେନ ।
ଭୂରିଶ୍ରବା ବିନ୍ଧିଲେକ ମହାମାୟା ଶର
ବାହ୍ଲିକ କୋପେ ବିନ୍ଧିଲେ ଭୈରବୀ କୁଠାର

ସୋମଦତ୍ତ ରାଜା ପୁଣି ମହାକୋପ ଚିତ୍ତେ
ଶରକ୍ଷ ନାମେ ନାରାଚ ବିନ୍ଧିଲେ ତୁରିତେ ।
ଦ୍ରୋଣଗୁରୁ ବ୍ରହ୍ମଶର ବିନ୍ଧିଲେକ ଟାଣି
ଆଉ ଯେତେ ଯୋଦ୍ଧା ଥିଲେ ସଂଗ୍ରାମରେ ପୁଣି
କୋଟି କୋଟି ଲକ୍ଷ ଲକ୍ଷ ବିନ୍ଧୁଛନ୍ତି ଶର
ପଡ଼ିଲା ସେ ସବୁ ଯାଇ ଦାନବ ଉପର ।
ଅନଳ ପର୍ବତ ପ୍ରାୟ ଦାନବର ଗାତ୍ର
ଶସ୍ତ୍ର ସବୁ ଦେହେ ପଡ଼ି ଉପୁଡ଼ି ପଡ଼ନ୍ତି ।
ପଚର କୁଣନ୍ତେ ଯେହ୍ନେ ହୁଅଇଟି ଘାଇ
ଶସ୍ତ୍ର ପଡ଼ନ୍ତେ ତେସନ ଦାନବ ମଣଇ ।
ହସି ସେ ଦାନବରାଜା କହଇ ବଚନ
ଶତ୍ରୁ ଜଣିବ କି ତୁମ୍ଭେ ମାର ଏହି ବାଣ ।
ଅପୂର୍ବ ଶସ୍ତ୍ର ପରାୟା ଥିଲେ ତୁମ୍ଭେ କର
ମରଣ ନିକଟ ଆସି ହୋଇଲା ତୁମ୍ଭର ।
ଏତେ ବୋଲି ସେ ଅସୁର କୁଦାଳ ବୁଲାଇ
ଆସେ ରଥୀମାନଙ୍କର ଉପରକୁ ଧାଇଁ ।
ଭୀଷ୍ମ ଭୂରିଶ୍ରବା ରଥେ ପିଟିଲେକ ନେଇ
ପଡ଼ିଲେ ସେ ମହାରଥୀ ଅଚେତନ ହୋଇ ।
ଶଲ୍ୟ କୃପ କୃତବର୍ମା ସୋମଦତ୍ତ ବୀର
ଅଶ୍ୱତ୍ଥାମା ଜୟଦ୍ରଥ ଶକୁନି ଆବର ।
କର୍ଣ୍ଣ ଆଦି ଥିଲେ ଯେତେ ସବୁଙ୍କୁ ପିଟିଲା
ରଥୀ ଯୋଦ୍ଧାରୁ ଗୋଟିଏ କରି ନ ରଖିଲା ।
ବୀର ମହାବୀର ହାତୀ ରଥୀ ଥିଲେ ଯେତେ
ବଳୀ ମହାବଳୀ ସୈନ୍ୟ ପଡ଼ିଲେ ସମସ୍ତେ ।
ମଲ୍ଲ ମହାମଲ୍ଲ ଯେତେ ବୀରଙ୍କର ଶଲ
ସବୁଙ୍କୁହିଁ ମାଇଲା ସେ ଦୈତ୍ୟ ମହାମଲ୍ଲ ।
ଖସିପଡ଼ନ୍ତି ଆକାଶୁ ଯେହ୍ନେ ତାରାଗଣ
ତେସନ ଶୋଭା ଦିଶିଲା ପଡ଼ିବାରେ ସୈନ୍ୟ ।
ପଦକ ମୁକୁଟ ରତ୍ନକୁଣ୍ଡଳ ଯେ ହାର
ପଡ଼ନ୍ତେ ଶୋଭା ଦିଶନ୍ତି କି ସେ ଦିନକର ।
ସବୁରି ମୃତ୍ୟୁ ହେବାର ଦେଖଇ ନୃପତି
ହାହାକାର କରି ଭାଳେ ମାନଚନ୍ଦ୍ରବର୍ତ୍ତୀ ।
ଧନ ଅର୍ଥେ ଶତ୍ରୁ କାହିଁ ମିଳିଲେକ ଏଥେ
ସବୁଙ୍କୁ ମୃତ୍ୟୁ କଡ଼ାଇ ଆଣିଲି କେମନ୍ତେ ।
ଯେବଣ ଭୀଷ୍ମ ଦ୍ରୋଣଙ୍କୁ ସୁରାସୁରେ ହାରି
ପଡ଼ିଲେ ଦାନବ ହାତେ ଏଥେ ଆସିକରି ।

ଆଉ କପାଁ ଏକାହୋଇ ବର୍ତ୍ତିବଇଁ ମୁହିଁ
ହସ୍ତିନାକୁ ଗଲେ କାହା ମୁଖ ଚାହିଁବଇଁ ।
ଘୁଞ୍ଚିବ ଜୀବନ ପଛେ କରିବଇଁ ରଣ
ଦାନବର ହସ୍ତେ ଅବା ଯାଉ ମୋର ପ୍ରାଣ ।
ଏତକ ବିଚାରି ସେହି ନୃପକୁଳଗ୍ରାସ
ଆରେ ରେ ଦାନବ ବୋଲି ଡାକେ ସିଂହପ୍ରାୟ
ଦାନବର ସମ୍ମୁଖରେ ସେ ଯାଇଣ ମିଳିଲା
ବସନ୍ତ ସାରଥିକି ସେ ଏମନ୍ତ ବୋଇଲା ।
ବିଚାରି ତୁ ବାହୁଥିବୁ ରଥକୁ ମେ ହର
ଏତେ ବୋଲି ଟଙ୍କାରିଲା ଧନୁକୁ ତାହାର ।
ବାହିଲା ଶର ବିନ୍ଧିଲା କୋପେ ଧାତବାରେ
ମୁଣ୍ଡପାତି ସହିଲା ସେ ଦୈତ୍ୟ ତା ସମରେ ।
ବଜ୍ରବାଣ ସହସ୍ରେକ ବିନ୍ଧିଲା ଆବର
ହୃଦୟ ପାତି ସହିଲା ତାହା ଦୈତ୍ୟବୀର ।
ଅଗ୍ନିବାଣ ପଞ୍ଚଶତ ବିନ୍ଧିଲା ନୃପତି
ଗିଳିଦେଲା ତାହାକୁ ସେ ଦୈତ୍ୟ ମହାରଥୀ
ଶରଜନ୍ତା ଶର ପୁଣି ବିନ୍ଧିଲା ନୃବର
ବାମଚରଣେ ତାହାକୁ ଭାଙ୍ଗିଲା ଅସୁର ।
ଲକ୍ଷେକ ଶକତି ରାଜା ପୁଣିହିଁ ମାଇଲା
ବାମହାତ ପାତି ତାହା ଦାନବ ଭାଙ୍ଗିଲା ।
କୋପେ ଗର୍ଜି ବିନ୍ଧିଲେକ ପୁଣି ଶତଶର
ହସି ଜଙ୍ଘ ପାତି ତାହା ସହିଲା ଅସୁର ।
ପୁଣିହିଁ କୋପଭରେ ସେ ମାନଚନ୍ଦ୍ରବର୍ତ୍ତୀ
ଧଇଲେକ କାଳାନଳ ଭୀଷଣ ଶକତି ।
ହୁଂକାରେ ଝମକ ତାକୁ ତିନିବେଳଯାଏ
ମାଇଲେକ ଦାନବର ହୃଦେ କୁରୁସ୍ପେ ।
ହସି ଦାନବ ଦକ୍ଷିଣ ପାଦ ଦେଲା ପାତି
ପକାଇ ଦେଲା ସେ ପାଦେ କାଳାନଳଶକ୍ତି ।
ଯଶୋହର ନାମରେ ସେ ଅପୂର୍ବେକ ଶର
ହୁଁକାରି ଗୁଣେ ବସାଇ ତାକୁ ନୃପବର ।
କର୍ଣ୍ଣ ପରଯନ୍ତେ ସେହି ଗୁଣକୁ ସେ ଟାଣି
ଅଗ୍ନି ତେଜକୁ ନାରାଚ ପାରଇ ସେ ଜିଣି ।
ମନ୍ତ୍ରକୁ ସୁମରି ରାଜା ତିନିବେଳଯାଏ
ବିନ୍ଧିଲା ନାରାଚ ସୂର୍ଯ୍ୟ ତେଜହୀନ ହୁଏ ।
ନାରାଚ ଗୋଟି ଚଳନ୍ତେ ଟଳିଲେକ ପୃଥ୍ୱୀ
ଦାନବ ଉପରେ ବାଣ ପଡ଼ିଲା ତଡ଼ିତି ।

ଅସୁର କପାଳେ ଯାଇଁ ପଡ଼ିଲା ସେ ଶର
ହୋଇଲା ଗୁଣ୍ଡାମୟ ସେ ଧୂଳିର ଆକାର ।
ଦେଖି ମନେ ବିଚାରଇ ରାଜା ଦୁର୍ଯ୍ୟୋଧନ
ନିଶ୍ଚୟ ହୋଇଲା ମୋତେ ଅକାଳ ମରଣ ।
ଏଡ଼େ ବଡ଼ ଶସ୍ତ୍ରେ ଯାର ଚର୍ମ ନ ଫୁଟଇ
ମୃତ୍ୟୁ ଏହାର ଦଇବ ରଖିଅଛି କାହିଁ ।
ବିସ୍ମରୁ ବିସ୍ମରୁ ରାଜା ବିନ୍ଧୁଅଛି ଶର
ଦାନବର କିଛି ଚିନ୍ତା ନାହିଁ ସେ ମନର ।
ଅସୁର ବୋଇଲା ନଷ୍ଟେ ଗଲୁ ତୁରେ ନାଶ
ବୀରତ୍ବର ବଜାଇଣ କରୁଥିଲୁ ଯଶ ।
ନାମ ଏଡ଼େ ବଡ଼ ବୋଲି ମିଛେ ବୋଲୁଥିଲୁ
ସେନା ସେନାପତି ନାଶି ଆପେ ନାଶଗଲୁ ।
ଆମ୍ଭର ଆଜ୍ଞା ତୁ ଯେବେ ପାଳିବୁ ହୋ ଜାଣ
ଆୟୁ ଥିବାଯାଏ ଦେହେ ରଖିଥିବୁ ପ୍ରାଣ ।
ମୁଖରେ ଅଙ୍ଗୁଳି ଦିଅ ଦନ୍ତରେ ଭରଣ
ବେକରେ କୁଠାରି ବାନ୍ଧି ପଶ ତୁ ଶରଣ ।
କେଶ ବାସ ଅସମ୍ଭାଳେ ପାଦେ ପଡ଼ି କହ
ବୋଲ ଅରକ୍ଷିତ ମୋତେ ରକ୍ଷାକରିଯାଅ ।
ଏମନ୍ତ ବୋଇଲେ ମୁହିଁ ଛାଡ଼ିବି ନିଶ୍ଚୟେ
ରହିଥିବ ପ୍ରାଣ ତୋର ଆୟୁ ଥିବାଯାଏ ।
ଶାର୍ଦ୍ଦୁଳ ଚର୍ମ ଗୁଡ଼ଣି ରଥୁ ଫିଟାଇବୁ
ଆଗ ସିଂହ ପାଲଟାଇ ପଛେ ବସାଇବୁ ।
ମାନଗୋବିନ୍ଦ ନାମକୁ ଛାଡ଼ିବୁ ତୋହର
ତେବେ ଛାଡ଼ିଦେବି ଯିବୁ ତୁମ୍ଭ ନିଜଘର ।
ଦାନବ ମୁଖରୁ ବାକ୍ୟ ଏସନେକ ଶୁଣି
କୋପେ କମ୍ପିଲେକ ନୃପ କୁଳଚୂଡ଼ାମଣି ।
ଟହ ଟହ ହୋଇ ହସି ବୋଇଲାରେ ବାଇ
ଏତେକ ଛାଡ଼ିବି ମୁହିଁ ତୋର ଗୁର ପାଇଁ ।
ଏତେ କହି ସାରଥିକି ବୋଲଇ ରାଜନ
ତୋର ବୁଦ୍ଧି ବଳେ ରଖ ତୋହର ଜୀବନ ।
ମୋହର ଏ ଜୀବନକୁ ନାହିଁ ଆଉ ଆଶ
ଶତେଭାଇ ଆଦି ମୋର ସୈନ୍ୟଗଲେ ନାଶ ।
ଭୀଷ୍ମ ଦ୍ରୋଣ ଶଲ୍ୟ ଭୂରିଶ୍ରବା ହିଁ ପଡ଼ିଲ
ଜୟଦ୍ରଥ ପଡ଼ନ୍ତି ମୋ ଭଗ୍ନୀ ରଣ୍ଡ ହେଲା ।
ଏଥେ ଯେବେ ଜାଣ ମୋର ଦେହ ଯିବ ନାଶ
ଅକାରଣ ଶତ୍ରୁ ମୋର ହୋଇଲା ରାକ୍ଷସ ।

କାହୁଁ ମିଳିଲା କେବଣ ଦେଶେ ଏହା ଘର
ସୈନ୍ୟ ସେନାପତି ମାରି କଲା ନାରଖାର ।
ମାରେ କିବା ରାକ୍ଷସକୁ ମରେ ଅବା ମୁହିଁ
କହୁଁ କହୁଁ ରଥରୁ ସେ ପଡ଼ିଲେକ ଡେଇଁ ।
ରେରେକାର କରି ଗଦା ଘେନି ବେଗ କରେ
ରତ୍ନାବଳୀ ଗଦାମାରେ ଅସୁର ଉପରେ ।
ପଡ଼ନ୍ତେ ଦାନବ ଶିରେ ଯାଇ ଉଦାକର
ଝଲକିଲା ଅଗ୍ନି ମୋହେ ପଡ଼ିଲା ଅସୁର ।
ଦେଖି କୁରୁପତି ମାଡ଼ି ବସିଲେକ ଧାତି
ମାଇଲେକ ବଜ୍ରସମ ମୁଥେ ତାର ଛାତି ।
ଦାନବ ଦେହରେ ପାଇ ବଜ୍ରମୁଥ ଘାତ
ନୟନ ଦୁଇକ ଫେଡ଼ି ଚାହିଁଲା ଦଇତ୍ୟ ।
ଝାଡ଼ିଦେଲା ଦେହ ତଳେ ପଡ଼ିଲା ନୃପତି
ହସ୍ତୀ ଝାଡ଼ିଦେଲେ ଯେସନେ ମାହୁନ୍ତେ ପଡ଼ନ୍ତି
କୋଦାଳ ଆୟୁଧ ଦୈତ୍ୟ ପିଟିଲାକ ନେଇ
ହସ୍ତେ ଧରି ରାଜା ତାହା ନେଲେକ ଛଡ଼ାଇ ।
କୋଦାଳ ଛଡ଼ାଇ ନେଇ ପକାଇଲା ତଳେ
ମାଲ ବିନ୍ଧାଣେ ଲାଗିଲେ ଦୁହେଁ କୁତୁହଳେ ।
ଆତଙ୍କେ ଚିନ୍ତଇ ରଖି ରେବନ୍ତର ପତି
ପର୍ବତ ସମାନ ଅଟେ ଦାନବ ମୂରତି ।
ସମରୁଁ ତେଡ଼େ ଶରୀର ନେଲା ନୃପବର
ବଳହିଁ ହେଲା ତାହାର ସହସ୍ରେ ସିଂହର ।
ଅଶୀ ସହସ୍ର ସିଂହଙ୍କ ଅଟେ ଯେତେ ବଳ
ତେତେକ ବଳ ବହଇ ଦାନବ ଶାର୍ଦ୍ଦୁଳ ।
ଦୁହେଁ ଦୁହିଙ୍କି ଧଇଲେ ହୋଇ ଧରାଧରି
ଦେଖାନାହିଁ ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଏପରି ।
ସମସ୍ତେ ଶୋଭି ଅଛନ୍ତି ରଣେ ମୃତ୍ୟୁ ପାଇ
ରଥରେ ଥାଇ ସାରଥି ଅଛଇ ଅନାଇ ।
ନୃପତି ମୁଖକୁ ଚାହିଁ ବିକଳ ତା ମନ
ମନରେ ଚିନ୍ତାକରଇ ରଖ ଦେବ ଧର୍ମ ।
କେଉଁ ଅନୁକୂଳେ ଘରୁ ନୃପତି ଅଇଲା
ବଂଶ ସୈନ୍ୟ ଘେନ ପୁଣି ଆପେ ନାଶଗଲା
ଆଉ କପାଇଁ ରଖିବ ମୁହିଁ ଏ ଜୀବନ
ଏହାର ହାତରେ ସିନା ମରିବ ରାଜନ ।
ହେ ଧର୍ମ କହି ଚିନ୍ତଇ ବସନ୍ତ ସାରଥି
ଦାନବ ମୁଖରୁ ରକ୍ଷାପାଉ କୁରୁପତି ।

ଏତେକ ବଚନର ଯେହ୍ନ ସାରଥି ମଉନ
ନୟନରୁ ଅଶ୍ରୁଜଳ ବହେ ଘନ ଘନ ।
ଅସୁର ଭୁଲେ ଯେ ମାଲଯୁଦ୍ଧ କରେ ରାୟେ
ଉପମା ଦେବାକୁ ଲକ୍ଷ୍ୟ ନାହିଁ ସୁରନରାୟେ ।
ହସ୍ତ ହସ୍ତ ଛନ୍ଦି ପାଦେ ପାଦ ଦେଇ ଛନ୍ଦି
ମୁଣ୍ଡକୁ ମୁଣ୍ଡ ମାରନ୍ତ କାହେ ବାହୁ ଛନ୍ଦି ।
ହୋଇଯାନ୍ତ ଗଡ଼ାଗଡ଼ି ଲାଗି ନ ଛାଡ଼ନ୍ତ
ମାରନ୍ତ ମୁଣ୍ଡ ହୁଅନ୍ତ ପୁଣି ଯନ୍ତାଯନ୍ତ ।
ଆଷାଢ଼ ମେଘ ଜାଣି ସେ କରନ୍ତ ଗର୍ଜନ
କେନ ଅନ୍ଧଙ୍କର ରଣ ହୁଅଇ ଯେସନ ।
ସ୍ୱର୍ଗେ ରହିଛନ୍ତ ସୁରଗଣ ଦୃଷ୍ଟିଦେଇ
ଏ ଦାନବ ମାରିବ କି ରାଜା କୁରୁସାଇଁ ।
ପଚାରନ୍ତ ବୃହସ୍ପତି ଗୁରୁହିଁ ମଘବାନ
ଏହାର ହସ୍ତେ କି ହେବ ଦୈତ୍ୟର ମରଣ ।
କୁରୁସାଗର ସୈନ୍ୟ ତ ସବୁ ହେଲେ ହତ
ଦୁର୍ଯ୍ୟୋଧନ ହାତରେ କି ମରିବ ଦଇତ ।
ଏହାର ଉପରବଂଶେ ଥିଲେ ଦୈତ୍ୟ ଯେତେ
ମହିଷାକୁ ଆଦି ଧୂମ୍ରଲୋଚନ ପର୍ଯ୍ୟନ୍ତେ ।
ଶୁମ୍ଭ ନିଶୁମ୍ଭ ବନ୍ଧୁର ରକ୍ତବୀର୍ଯ୍ୟ ବୀର
ଚଣ୍ଡ ମୁଣ୍ଡ କାନ୍ତମାଳା ବଗଳାକ୍ଷେଶ୍ୱର ।
ପୃଥିବୀର ଭାର ହୋଇଥିଲେ ଏହି ସର୍ବେ
ଏମାନେ ତ ନାଶଗଲେ ଏହି ମଉଗର୍ବେ ।
ଏମାନେ ତ ଦେଉଥିଲେ ଦେବତାଙ୍କୁ ତ୍ରାସ
ଏହ୍ନି ତ ଜିଣିଲା ତ୍ରିଭୁବନ ନିଦେଶ ।
ଏବେ ଯେ ଏହାର ମୃତ୍ୟୁ କହିବା ହେଉ ହେ
ଦୁର୍ବାର କୋପରେ ନାଶ ଗଲେଣି ସଭିଏଁ ।
ବୃହସ୍ପତି ବୋଇଲେକ ଶୁଣ ଦେବରାୟ
ଏହାର ଯୁଦ୍ଧେ ହାରିବ କୁରୁକୁଳ ରାୟ ।
ଏହାର ବଂଶେହିଁ ନାଶଯିବ ଏ ଅସୁର
ନକୁଳ ମହାବୀର ଯେ ପାଣ୍ଡୁର କୁମର ।
ତାହାର ହସ୍ତେ ମରିବ ନିଶ୍ଚୟ ଅସୁର
ଏ କଥା ପ୍ରମାଣ ତୋତେ କହିଲୁ ନକର ।
ଇନ୍ଦ୍ର ବୋଇଲେ ଶୁଣିମା ଆହେ ସୁରଗୁରୁ
ଦଇତ୍ୟ ନାଶକରି ସେ ସ୍ୱର୍ଗ ରକ୍ଷା କରୁ ।
ମରିବ ଏ କେତେଦିନ ଅନ୍ତେ କହ ମୋତେ
ଗୁରୁ କହିଲେ ଚଉଦ ଦିନର ଯେ ଅନ୍ତେ ।

ଏମନ୍ତ ବଚନର କରୁଛନ୍ତ ସୁରଗଣ
ଅସୁର ସଙ୍ଗତେ ରଣ କରେ କୁରୁରାଣ ।
ଦୁହିଙ୍କର ଯୁଦ୍ଧ ହୁଏ ଅତି ଭୟଙ୍କର
କହିବାକୁ ଅଗୋଚର ଅସଂଖ୍ୟ ସମର ।
ଧରନ୍ତ ପଡ଼ନ୍ତ ପୁଣି ଗଡ଼ନ୍ତ ଜଡ଼ନ୍ତ
ଏହିରୂପେ ଘୋର ଯୁଦ୍ଧ ସେ ଦୁହେଁ କରନ୍ତ
ରେ ରେକାର ବାଣୀ ତହିଁ ପଡ଼େ ନିରନ୍ତର
ହୁଂକାର କରି ଉଠାଇ ମାରନ୍ତ ପଥର ।
ଉଠନ୍ତ ଲୋଟନ୍ତ କୋପେ ମାରନ୍ତ ସେ ମୁଥ
ଘୋଟନ୍ତ ହେଠନ୍ତ ମରମର ହୋଇ ମାଥ ।
କୁରୁବଳ ଉଚ୍ଛୁଳଇ ଜାଳନ୍ତ ଜଳନ୍ତ
ଛନ୍ଦନ୍ତ ଘୁଞ୍ଚନ୍ତ ଯୁଦ୍ଧ ଫେରନ୍ତ କରନ୍ତ ।
ଏମନ୍ତେ ଯେ ଚଉଷଠି ବନ୍ଧାଣକୁ ଘେନ
ମତ୍ତ ମାତଙ୍ଗ ପରାୟେ ଯୁଝନ୍ତି ସେ ବେନ ।
ଏମନ୍ତେ ସେ ଦୁହେଁ ଯୁଦ୍ଧ କରିବାର ବେଳେ
ସପତ ଢଡ଼ି ହୋଇଲା ବେଳ ଆକାଶରେ ।
ତିନି କୋଶଯାଏ ବନ ଭାଙ୍ଗି ହେଲା ପଦା
ପାଦେ ଧୂଳି ହୋଇ ସବୁ ହେଲା ଗଦା ଗଦା ।
କୁରୁପତିକି ଯେ ମାଡ଼ି ବସିଲା ଅସୁର
ମୁଣ୍ଡରେ ମୁଥେ ମାଇଲା ହୋଇ କୋପଭର ।
ହୁଂକାରି ଉଞ୍ଚାଇ ଯହୁଁ ମାଇଲାକ ମୁଥେ
ଏକଠ ରେ ପଡ଼ିଲା କି ବଜ୍ର ହୁଁ ଅଯୁତେ ।
ତଳ କୁରୁପତି ହେଲା ମୃତଶବ ପ୍ରାୟେ
ମଲା ବୋଲି ଛାଡ଼ିଦେଇ ଉଠି ଦୈତ୍ୟରାୟେ
ଶରୀରେ ଲାଗିଥିଲା ଅଛୁ କବଚ ରତନ
କାଢ଼ି ଅସୁର ହୋଇଲା ତାହା ଆଭରଣ ।
ମଣିମୟ ମୁକୁଟକୁ ଘେନ ନିଜ ଶିରେ
ରତ୍ନାବଳୀ ଗଦାକୁ ସେ ଘେନିଲା ହସ୍ତରେ
ବୋଇଲା ଏମାନେ ଏଥେ ପଡ଼ିଥାନ୍ତୁ ସର୍ବ
ଏତେବୋଲି ଲେଉଟିଲା ଦୈତ୍ୟ କୁଳଦେବ
ରୁଧିର ଲାଗି ସିନ୍ଦୂର ଗିରିର ପରାୟେ
ମନ୍ଦାର ପୁଷ୍ପ ନିନ୍ଦଇ ଅସୁରର କାୟେ ।
ଯମୁନାର କୂଳେ କୂଳେ ଚଳେ ଧୀରେ ଧୀରେ
ଗେଲେ ଗେଲେ ଚଳଚଳ ବୁଲେ ଅହଙ୍କାରେ
ଦେଖିଲା ସାରଥି ରଥ ଉପରେ ଯେ ଥାଇ
ନିବେଦନ କରେ ସାରଥି ରାଜା ମୁଖ ଚାହିଁ ।

ହା ଦଇବ ବୋଲି ମାରେ କପାଳରେ କର
ଭୋ ଦଇବ ପୁରୁଷ ତୁ ଆଣି ଏତେ ଦୂର ।
ନିସ୍ତାରଣେ ନାଶକଲୁ ଏ କୁରୁ ସଇନ
ପୃଥ୍ୱୀ ମଣ୍ଡଳେ ଅଛଇ ନୃପ କୁରୁଗଣ ।
ଯାର ବଳେ କଲେ କର୍ମେ ଏହି ବସୁମତୀ
ଅସୁର ହାତରେ ଥିଲା ଏହା ମୃତ୍ୟୁଗତି ।
ଏତେକ ବୋଲି ଅନେକ କାନ୍ଦଇ ସାରଥି
ବପୁରେ ଏଥୁ କେମନ୍ତେ ଯିବ ନାହିଁ ରଥୀ ।
ରଥୀ ମରିଲେ ସାରଥି ଯେବେ ଜୀଇଁଥାଇ
ଧର୍ମଶାସ୍ତ୍ରେ ଅଛି ସେହି ନର୍କଗତି ପାଇ ।
ଶୂନ୍ୟରଥ ଘେନି ମୁହିଁ ଯିବ ହସ୍ତିନାକୁ
କି ବୋଲି କହିବ ଯାଇ ରାଜାଇ ଲୋକଙ୍କୁ
କି ବୋଲି ବୋଲିବେ ମୋତେ କଟକରଜନେ
କି ବୋଲି ବୋଲିବେ ମୋତେ ପାଣ୍ଡୁନନ୍ଦନେ
ଦଇବର କୃତ୍ୟ ଏଥି ହେଲା ବିପରୀତ
ପଡ଼ିଲେକ ଭୂରିଶ୍ରବା ଗଙ୍ଗାଙ୍କର ସୁତ ।
ଦ୍ରୋଣ ଅଶ୍ୱତ୍ଥାମା କୃପ ଶଲ୍ୟ ରାଧ୍ୟ କର୍ଣ୍ଣ
ସୋମଦତ୍ତ ବାହ୍ଲୀକ ଯେ ସାରଥି ନନ୍ଦନ
ଧୃତରାଷ୍ଟ୍ର ଶତପୁତ୍ର ସଙ୍ଗେ ଗଲେ ନାଶ
ଗାନ୍ଧାରି ରାଜାର ପୁତ୍ର ସଇନ୍ୟ ସବଂଶ ।
ପଡ଼ିଲେ ମୋହର ଦେଖୁ ଦେଖୁ ଏହି ରଣେ
ମଲେ ଏଥି ସର୍ବଯୋଦ୍ଧା ନ ରହିଲେ ଜଣେ
ଏତେକ ବୋଲି ରଥରୁ ଓହ୍ଲାଇ ସାରଥି
ଦେନି ହସ୍ତରେ ଧରିଣ ଟୋଳଇ ନୃପତି ।
ଟୋଳି ନ ପାରେ ସହସ୍ର ସିଂହର ଯେ ବଳ
ଭୂମିପରେ ପଡ଼ିଅଛି ଯେସନେ ଅଚଳ ।
ଜଣ ଜଣକର ହସ୍ତେ ଟୋଳେ ଏହିମତେ
ରାଜଭ୍ରାତା ପ୍ରିୟଜନ କୁଟୁମ୍ବ ସହିତେ ।
କାହାକୁହିଁ ଯତ୍ନେ ସେହି ଟୋଳି ନ ପାରିଲା
ଲେଉଟି ସାରଥି ତହୁଁ ରଥରେ ବସିଲା ।
ରାଜ୍ୟକୁ ଯିବ ବୋଲି ସେ ବାହିଲାକ ଯାନ
ଇନ୍ଦ୍ରପ୍ରସ୍ଥ ରାଜ୍ୟେ ଯାଇଁ ମିଳିଲା ବହନ ।
ମଧ୍ୟରେ ବାରୁଣାବନ୍ତ ବନ ଅଛି ଲାଗି
ଆରଣ୍ୟକ ନାମେ ବନ ପର୍ବତ ଶୃଙ୍ଗୀ ।
ଆରଣ୍ୟକ ନାମେ ତହିଁ ଅଛି ଗିରିବର
ସେ କାଟେ ସାରଥି ଘେନି ଚଳେ ରଥବର ।

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ସେ କାଟେ ଆସୁଅଛଇ ମାଦ୍ରୀର ସନ୍ତତି ।
ଖଣ୍ଡେ ଦୂରୁ ଥାଇ ସେହି ଚାହିଁଲେକ ରଥ
ଶାର୍ଦ୍ଦୂଳ ଚର୍ମ ଛାଉଣୀ ଉଡ଼େ ଧ୍ୱଜଛତ୍ର ।
ଚର୍ବଳ ପକ୍ଷୀର କେଶ ବ୍ରହ୍ମଜାତି ହାସ
ପଟାନ୍ତର ନାହିଁ ତାକୁ ବଜ୍ରଜଳ କ ତାସ ।
ଲକ୍ଷେକ ଦର୍ପଣ ସେହି ରଥେ ଶୋଭାପାଇ
କୋଟିଏ ସୁମର ତହିଁ ଦର୍ପଣ ଲମ୍ବଇ ।
ଚନ୍ଦ୍ର ସୂର୍ଯ୍ୟ ଲେଖାଥିବା ଗୁନ୍ଦୁଆ ଉପରେ
ମାଣିକ୍ୟର ଆଭରଣ ଝଟଝ ଶୋଭାରେ ।
ପୋହଳାର ଦଣ୍ଡ ମରକତର ଗୁଚ୍ଛଜ
ମାଣିକର ହାର ମାଳା ପିଙ୍ଗୁଳାର ସାଜ ।
ଝଟକ ରଥ ଦେଖିଣ ମାଦ୍ରୀଦେବୀବାଳା
ଶୂନ୍ୟରଥେ ସାରଥିକ ଗୃହିଁଣ ଚାହିଁଲା ।
ମଳୟ ସାରଥି ପିଣ୍ଡେ ଚେତନା ତ ନାହିଁ
ଶନ୍ତାଭରେ ରଥଗୋଟି ଯାଉଅଛି ବାହି ।
କେଜନ ନୟନରୁ ତାର ଅଶ୍ରୁଜଳ ବହେ
ମୃତ୍ୟୁକାଳରେ ପ୍ରାଣୀଙ୍କି କାଳ ଯେସନେ ଦହେ
ସେହିମତ ସାରଥି ସେ ହୋଇଛି ଅଚେତ
ଦିଗ ବାରି ନ ପାରି ସେ ବାହୁଅଛି ରଥ ।
ନକୁଳ ଚାହିଁ ଡାକିଲା କଏ ସେ ଆପଣ
ମଳୟ ସାରଥି କହୋ ଉଚ୍ଚେ ଉଚ୍ଚାରଣ ।
କହୋ ସାରଥି ତୁ କହ ଯାଉଅଛୁ କାହିଁ
ଆମ୍ଭେ ଡାକୁଅଛୁ ତୁ ହୋ ନ ଶୁଣୁ କପାଇଁ ।
ଶବଦ ଶୁଣି ସାରଥି ରଥ କଲା ସ୍ଥିର
ଚାହିଁଲା ସାରଥି ଏ ତ ମାଦ୍ରୀର କୁମର ।
ଚାହିଁ ରଥରୁ ଓହ୍ଲାଇ ଗଲା ଧାଡିକାରେ
ନକୁଳର ପାଦେ ପଡ଼ି କାନ୍ଦେ ଉଚ୍ଚସ୍ୱରେ ।
ନକୁଳ ବୋଇଲେ ଆହେ କାର୍ଯ୍ୟ କିସ କହ
ଅକାରଣେ କପାଁ ଭୁବି କରୁଅଛୁ କୋହ
ସାରଥି ବୋଇଲା ଦେବ ଅବଧାନ କର
ସମଦଣ୍ଡ ଘେନି ବଳେ କଲା ନୃପବର ।
ନ କହିଲି ସେ କେବଣ ଦେଶର ଯୋଦ୍ଧା ଦୈତ୍ୟ
ସଂଗ୍ରାମେ କରୁ ସୈନ୍ୟକୁ କଲାକ ନିପାତ ।
ଅର୍ଦ୍ଧ ଆକାଶରେ ତାର ଲାଗୁଅଛି ଦେହ
ଚଉଦଭୁବନେ କଢ଼ ତା କାୟା ଅଛଇ

ତୃଣାଅଗ୍ନି ଜାଣି ସୈନ୍ୟ କଲା ସେତ୍ତ ହତ
ସମସ୍ତ ମାଇଲା ଆରଡ଼କ ପରବତ ।
ତେଣୁ ଏକା ହୋଇ ମୁହିଁ ଆସେ ରଥ ବାହି
ସମ୍ପତ ସରଲା ନାଥ ଦେହେ କାର୍ଯ୍ୟ ଭାବି ।
ନକୁଳ ବୋଇଲା ଦୈତ୍ୟ କେଉଁ ମାର୍ଗେ ଗଲା
ଅଭୁ ସୋମବଂଶକୁ ଦୈତ୍ୟ ନାଶ କଲା ।
ଦେଖାଅ ପଥ ସାରଥି ଥାଉ ଏଥି ଯାନ
ଆସ ବୋଲି ଗମିଲା ସେ ମାଦ୍ରୀର ନନ୍ଦନ ।
ଯାଉଁ ଯାଉଁ ସାରଥି ଯେ ବାଟରେ କହିଲା
ଦକ୍ଷିଣକୁ ମୁଖକରି ନଇର୍ତେ ଗଲା ।
ଆରେ ରେ ଦାନବ ବୋଲି ଡାକେ ମହାବୀର
ମାର୍ଗ ଅମାର୍ଗହିଁ ନାହିଁ ଧାଏଁ ନିରନ୍ତର ।
ବେଢ଼ାଢ଼ ପରିଯନ୍ତେ ପାଦରେ ସେ ଗଲେ
ଆରଡ଼କ ପର୍ବତର ଉପରେ ଉଠିଲେ ।
ସମପ୍ରସ୍ଥର ଦକ୍ଷିଣ ଆଡ଼େ ଯେଉଁ ପଥ
ସେହି ମାର୍ଗେ ଯାଉଅଛି ପ୍ରତାପି ଦଇତ୍ୟ ।
ସାରଥି ବୋଇଲା ଦେବ ଏହିଟି ଅସୁର
ମଣିମୟ ମୁକୁଟକୁ ବାନ୍ଧିଅଛି ଶିର ।
ସାରଥି ବାକ୍ୟେ ନକୁଳ ଉଚ୍ଚେ ଡାକଦେଇ
ରହ ରହ ଦାନବ ରେ ଯାଉଛୁ କିପାଇଁ ।
ରେରେକାର ଧ୍ୱନି ଶୁଣି ରହିଲା ଅସୁର
ମନେ ଭାବେ ଯୁଦ୍ଧପାଇଁ ଆସେ କେଉଁ ବୀର ।
ଏକ କରେ ଧରିଅଛି ବିକ୍ରମୀ ଆୟୁଧ
ସଂଗ୍ରାମ କରିବା ପାଇଁ ଅଛି ତାର ସଧ ।
ନକୁଳ ମିଳିଲା ଯାଇ ଦାନବ ସମ୍ମୁଖରେ
ହସି ଦୈତ୍ୟକୁଳ ବୀର ତାହାକୁ ପଚାରେ ।
କେବଣ ଦେଶର ତୁହି କହନା ସମ୍ମୁଖର
ମରଣକୁ ଭୟ କରେ ନ ଥାଇ ତୋହର ।
ରେରେକାର କରି ପୁଣି ପଛେ ଡାକଦେଉ
କାଳ ବିକାଳକୁ ମନେ ଭୟ ତୁ ନପାଉ ।
ନକୁଳ ବୋଇଲା ମନ୍ଦ ପାମର ରେ ବାଇ
ଯମକୁ ମରଣ ପୃଚ୍ଛୁ ଭୟ ତୋର ନାହିଁ ।
ପଛ ଆଡ଼କୁ ତୋହର ଗୃହାଁରେ ନାନବ
କାଳଫାଶି ଲଗାଇଛି ସଂଯମନୀ ଦେବ ।
ଘରକୁ ଯାଇ ଆଜ କି ଦେଖିବୁ କୁଟୁମ୍ବ
ଏହି ପର୍ବତେ ପଡ଼ିବ ଆଜ ତୋର ଶବ ।

ପ୍ରତିଜ୍ଞା କରି ଦାନବ ମାଇଲା କୋଦାଳ
ବାମହସ୍ତେ ଛଡ଼ାଇଣ ନେଲା ତା ନକୁଳ ।
ତାହାର ଆୟୁଧ ଧରି ପିଟିଲା ତା ଶିରେ
ଉପୁଡ଼ି ପଡ଼ି ଆୟୁଧ ପଡ଼ିଲା ଭୂମିରେ ।
ପୁଣି ସେ ନକୁଳବୀର ପିଟେ ଆରବେଳେ
ଶାହି ରବ ଦେଇ ଦୈତ୍ୟ ଧାଏଁ ଧାଡିକାରେ
ବୃକ୍ଷେକ ସେ ଉପାଡ଼ିଣ ତହୁଁ କୋପଭରେ
ନକୁଳ ଉପରେ ନେଇ ପିଟିଲାକ ଖରେ ।
ତାହା ଦେଖିଣ ନକୁଳ ମାଇଲେକ କୋନ୍ତ
ତେଡେବଡ଼ ବୃକ୍ଷଗୋଟା ହୋଇଗଲା ଧ୍ୱସ୍ତ ।
ବୃକ୍ଷ ବିନାଶିଣ କୋନ୍ତ ମାରେ ଆଉ ବାରେ
ଦାନବର ହୃଦେ ଯାଇ ପଡେ ଅବହେଳେ
ଯେବଣ କୁନ୍ତ ବାଜନ୍ତେ ମେରୁ ଚୂର ହୋଇ
ତେତେ ଶସ୍ତ୍ରଗୋଟା ବାଜି ଉପୁଡ଼ି ପଡ଼ଇ ।
ନକୁଳ ଯେ ବିସ୍ମରଇ ଏ ତ ବିପରୀତ
ଉପୁଡ଼ି ପଡ଼ିଲା ନବନଶିତ ମୋ କୁନ୍ତ ।
ଏତେକ ବିଚାରି ପୁଣି ମାଦ୍ରୀନନ୍ଦନ ବଳା
ଦାନବର ହୃଦେ ନେଇ ମୁଥ ପ୍ରହାରିଲା ।
ବଜ୍ରାଘାତ ପ୍ରାୟେକ ଯେ ଶୁଭିଲା ଶବଦ
ହସିଣ ଦାନବ ପୁଣି କଲା ଘୋର ନାଦ ।
ବୋଇଲା ମାନବ ତୁରେ ଅଟୁ ବଡ଼ ବାଇ
ମେରୁରେ ଟେଳା ବାଜିଲେ କସ ତାର ଯାଇ
ବିକ୍ରମ ସିଂହକୁ ତୁରେ ଉଗାନ୍ତି ଶୃଗାଳ
ଯମ ଭୁବନକୁ ତୁ କି କରୁ ଅନୁକୂଳ ।
ନିରସ୍ତ୍ର ଜନକୁ ଆମ୍ଭେ ମାରିବା କେମନ୍ତେ
ହତ୍ୟା ହୋଇବ ପାତକ ଲାଗିବ ନା ମୋତେ
ବେଦମନ୍ତ୍ର ପୁରାଣରେ କେ ଲିଅଛି ଯାହା
ଶୁଣ ରେ ମାନବ ତୋତେ କହିବା ନା ତାହା
ଆପଣାର ସମାନଟି ନୋହିବାକ ଯେତ୍ତ
ତାହାଙ୍କର ତୁଲେ ଯୁଦ୍ଧ କରିବାଟି କାହୁଁ ।
ସାନଲୋକ ସଙ୍ଗେ ଯେବେ କରିବାକ ଦ୍ୱନ୍ଦ୍ୱ
ଆଖି ଥାଉଁ ଥାଉଁ ତାକୁ ବୋଲିବା ନା ଅନ୍ଧ ।
ବଚନ ତାହାକୁ ମାଡ଼ ହୁଅଇଟି ଯେତେ
ଅବଧାନ କରି ତୁହେ ଶୁଣ ଏକଚିତ୍ତେ ।
ଆମ୍ଭଙ୍କୁ ତୁ ତ ସମାନ ନୋହୁ ବୋଲିକରି
ସେ ନ୍ୟାୟରୁ ବୋଇଲି ମୁଁ ଯିବା ଅପସରି ।

ଆମ୍ଭଙ୍କ ସମାନ ଯୁଦ୍ଧ ନୋହୁ ତୁହି ବୀର
କ ଯୁଦ୍ଧ କରିବୁ ତୁହୋ ଆମ୍ଭର ଛାମୁର ।
ଏତେକ ବେଲ ଯେ ଦୈତ୍ୟ ପୁଣିହିଁ ଗର୍ଜ୍ଜିଲ
ପ୍ରାଣଧେନ ମନ୍ଦରଙ୍କୁ ଯାଅ ଯା ବୋଇଲ ।
ଯହୁଁ ସେ ଅସୁର ତାକୁ କହିଲା ଏ ବାଣୀ
କୋପେ କମ୍ପିଲା ନକୁଳ ମତ୍ତଗଜ ଜାଣି ।
କୋପେ ସେହି ମହାତମା ପଥର ଧଇଲା
ଦାନବର ମସ୍ତକରେ ନେଇ କଷ୍ଟିଲା ।
ମସ୍ତକେ ବାଜ ହୋଇଲା ସେ ପାଷାଣ ଚୂର
କୋପେ ଅସୁରକୁ ଯାଇ ଧଇଲା ନକୁଳ ।
ଗ୍ରୀବା ଧରି ନାସିକାକୁ ତାର କାମୁଡ଼ିଲା
ତୁଣ୍ଡେ ନ ପଶି ନାସିକା ଉତ୍ସର୍ଗ ହୋଇଲା ।
ଦୁଇଭୁଜେ ଧରି ତାକୁ ଦେଲାକ ପକାଇ
ନ ଛାଡ଼ିଲା ନକୁଳ ସେ ମହାତେଜ ପାଇ ।
ପର୍ବତ ପରାୟେ ସେହି ଦାନବର କାୟ
ତାହା ଆଗେ କ୍ଷୁଦ୍ର ମାତ୍ର ମାଦ୍ରୀର ତନୟ ।
ଯେସନେ ବାଳକେ ରହିଥାନ୍ତି ମାତା କୋଳେ
ତେସନ ଦିଶାଇ ସେହି ମାଦ୍ରୀର ଦୁଲାଳେ
ଦୁଇଭୁଜେ ଭିଡ଼ିଲା ସେ ଦାନବର ଗଳା
କଟିଦେଶକୁ ଭିଡ଼ିଲା ମାଦ୍ରୀଦେବୀ ବଳା ।
ଧନ୍ୟ ସେହି ପାଣ୍ଡୁସୁତ ନ ପଡ଼ିଲା ତଳେ
ଦୈତ୍ୟକୁ ପକାଇ ମାଡ଼ି ବସଇ ତା ଗଳେ ।
ହୁଂକାରି ତା ମୁଣ୍ଡେ ମୁଣ୍ଡ ପିଟିଲାକ ଧାଇ
ବଜ୍ର ପଡ଼ିଲା ପରାୟେ ଶବଦ ଶୁଭନ୍ତି ।
ଦାନବର କଟିକି ସେ ଧରି କ୍ରୋଧ ଭାବେ
କମ୍ପଇ ନକୁଳବୀର ନକୁଳ ସ୍ୱଭାବେ ।
ଗଳାକୁ ଧରି ଭିଡ଼ିଲା ଅନେକବେଳ ଯାଏ
କିଛି ନୋହି ସେ ଦାନବ ତହିଁ ରହିଥାଏ ।
ଟେକେ ବଡ଼ ଦାନବକୁ ପକାଇଲା ତୋଳି
ପୁଣି ଅସୁରକୁ ମାଡ଼ିବସେ ମହାବଳୀ ।
ଆରେ ରେ ଦାନବ ବୋଲି ଡାକଇ ନକୁଳ
ମାରିଲୁ ମୋର ଅଠର ଅକ୍ଷୌହିଣୀ ବଳ ।
ଭାଇ ବନ୍ଧୁ କୁଟୁମ୍ବ ମୋ ଗୁରୁଜନ ଯେତେ
ବଇରି ନୋହୁ ତୁ କାଟେ ମାରିଲୁ କ ଅର୍ଥେ
ତୋହର ଆମ୍ଭର ପୂର୍ବେ ବଇରତା ନାହିଁ
ଏଡେ ବଡ଼ ବଂଶକୁ ତୁ ଧ୍ୱଂସିଲୁ କପାଇଁ ।

ଯମ ଆଜ ପୋଛିଲାଣି ଆୟୁଷ ତୋହର
ଲେଉଟି ଦେଖିବୁ ତୁ କ ଆପଣା ମନ୍ଦର ।
ଏତେକ ବୋଲି ମାରିଲା ବୀର ମୁଥେ ତୋଳି
ଏକାବେଳେ କ ଅୟୁତେ ବଜ୍ର ଆସି ପଡ଼ି ।
ତଥାପି କିଛି ନୋହିଲା ଦାନବର ଶିର
କେବଳ ଅଚେତ ହୋଇ ଅଛଇ ଅସୁର ।
ସ୍ୱଭାବେ ଦାନବବର ବଳେ ଅନର୍ଗଳ
ବିବିଧ ମାଡ଼ ମାରିଲା ମାଦ୍ରୀଦେବୀ ବାଳ ।
ମନେ ବିଚାରଇ ଏହି ନ ମରଇ ନକ୍ଷ
ସାରଥି କତନେ ମୂର୍ଚ୍ଛା ଅଇଲ ଏଥିକ ।
ଦାନବକୁ ଛାଡ଼ି ଉଠିଗଲା ମହାବୀର
ମୁଣ୍ଡେ ପକାଇଲା ତାର ଅଚଳ ପଥର ।
କୁଣ୍ଡଳ ସିଂହ ପଡ଼ଣ ହୋଇଛି ଅଚେତ
ପଥର ବାଜନ୍ତେ ସେହି ହୋଇଲା ସଚେତ ।
ଉଠି ଠିଆ ହୋଇଲା ସେ ଦୈତ୍ୟକୁଳ ବୀର
ଦେଖି ମନେ ବିଚାରଇ ମାଦ୍ରୀର କୁମର ।
ମୃତ ପ୍ରାୟେକ ଏହାକୁ ଜାଣିଥିଲି ମୁହିଁ
ପୁଣି ଦାନବ ଉଠିଲା କାହୁଁ ପ୍ରାଣ ପାଇ ।
ଏତେକ ବିଚାରି ସେହି ମାଦ୍ରୀଦେବୀ ସୁତ
ଦାନବକୁ ମାରିଲାକ ତେଉଁ ପଦାଘାତ ।
ବାଜନ୍ତେ ଦାନବ ଠହଠହ ହୋଇ ହସି
ମୃତ୍ୟୁ ଦେବତାର ତୁଲେ ଘଷିହେଉ ଆସି ।
ନକୁଳ ବୋଇଲା ଦୈତ୍ୟ କହିଲୁ ତୁ ସତ୍ୟ
ତୋହର ମୃତ୍ୟୁ ମୋହର ହସ୍ତରେ ନିଶ୍ଚିତ ।
ଏତେ ବୋଲି ତାର ପାଦ ଧରି ଧାଡ଼କାରେ
ବୁଲାଇ ପିଟିଲା ନେଇ ପର୍ବତ ଉପରେ ।
ଭାଙ୍ଗିଲା ପର୍ବତ ପୁଣି ହେଲା ଧୂଳିମୟ
ଠହଠହ ହୋଇ ହସେ ଦୈତ୍ୟକୁଳ ରାୟ ।
କ୍ରୋଧେ ନକୁଳ ପର୍ବତ ଆଣି କଚାଡ଼ିଲା
ଠେଲିଲା ପର୍ବତ ଦୈତ୍ୟକାୟେ ନ ଲାଗିଲା ।
ଚଉଦ ଖଣ୍ଡ ହୋଇଣ ପଡ଼ିଲାକ ଭାଙ୍ଗି·
ବେଳକୁବେଳ ଅସୁର ଲଢ଼େ ହୋଇ ରାଗୀ ।
ନକୁଳର ଅସୁରର ଦେଖି ଘୋର ରଣ
ସାରଥି ବିଚାରି କରେ ଆପଣାର ମନ ।
ବୋଇଲା ଶୁଭ ତ କିଛି ନ ଦିଶିଲା ମୋତେ
ଦାନବ ମୃତ୍ୟୁ ନୋହିଲା ନକୁଳର ହସ୍ତେ ।

ନଷ୍ଟପ୍ରାୟ ହସ୍ତିନା ଗଲା ଆଜଠାରୁ ନାଶ
ହତଘାତ କର୍ମ ହେଲା ନ ମଲା ରାକ୍ଷସ ।
କାଟେ ଯେଉଁଠାରେ ରହିଥିଲା ତାର ଯାନ
ଏତେ ବଚନ ଚଳିଲା ସେଠାବକୁ ପୁଣ ।
ରଥ ଉପରେ ଚଢ଼ିଲା ମଳୟ ସାରଥି
କାରୁଣାବନ୍ତେ ମିଳିଲା ସେ ଯାଇ ତଡ଼ନ୍ତି ।
ଏଣେ କଣ୍ଟଳନ୍ତ ପଣ୍ଡୁ ପୁତ୍ର ଦୁଇଭାଇ
ରଥରୁ ଡେଇଁ ଭୂମିରେ ଯାଇ ଉଭାହୋଇ ।
ଆସ୍ଥାନେ ବସିଅଛନ୍ତି ଯୁଧିଷ୍ଠିର ଠାକୁର
ସାରଥି ଡାକିଲା କରି ଅତି ଉଚ୍ଚସ୍ୱର ।
ହେ ଦେବ ବୁଡ଼ିଲା ଆଜ ହସ୍ତିନା ସମ୍ପତ୍ତି
କାହୁଁ ଆସି ଶତ୍ରୁ ଏଥେ ହେଲେ ଉତପତ୍ତି ।
ଶୁଣି ତାକୁ ଯୁଧିଷ୍ଠିର ପଚାରନ୍ତି ପୁଣି
କହୋ ସାରଥି ବିକଳ ହେଉଛ କପାଇଁ ।
ଅଶୋକ ଦେଶରେ କିପାଁ ଶୋକ ଜାତ କରୁ
ହାନି ଲାଭ କଥା କହୁ କିପା ନ ବିଚାରୁ ।
ମଳୟ ବସନ୍ତ ରଥ ଆସିଅଛୁ ଘେନି
ସନ୍ତାପ ବାକ୍ୟ କହୁଛୁ କରି ଘୋର ଧ୍ୱନି ।
ସାରଥି ବୋଇଲା ଦେବ କର ଅବଧାନ
ଚତୁରଙ୍ଗ ବଳ ଘେନି ନୃପ ଦୁର୍ଯ୍ୟୋଧନ ।
ଦିଗବିଜୟ କରଣ ଯାଉଁ ଯାଉଁ ବାଟେ
କାହୁଁ ଆସି ସେ ଅସୁର ଚକ୍ରବର୍ତ୍ତୀ ଭେଟେ ।
ବାଟ ଓଗାଳିଲା ସେହି ଥିଲା ଉଭା ହୋଇ
ପର୍ବତ ପରାୟେ ଦେହ ତା ଦେହ ଅଟଇ ।
ଷାରଡୂର ଶବ୍ଦ ଶୁଣି ନ ପାରିଲା ସହି
ପଚାରିଲା ମାନବାରେ କାହିଁର ଯେ ତୁହି ।
ଶୁଣି ଦୁଃଶାସନ ବେଗେ ଧୂଆଇଲା ରଥ
ବୋଇଲା ତୋହର ଛାର ଅଟୁରେ ଦଇତ୍ୟ ।
ହସ୍ତିନାର ରାଜା ଏ ଯେ ମାନଚକ୍ରବର୍ତ୍ତୀ
ରେରେକାର ପଚାରୁ ତୁ ଏଡ଼େ ମନ୍ଦମତି ।
ଦୁହିଙ୍କର ଉଭବାତ ହୁଅନ୍ତେ ଏମନ୍ତେ
ଗଦା ଘେନି ଅସୁରକୁ ପିଟିଲେ ତୁରିତେ ।
ବାମହସ୍ତେ ଗଦା ଧରି ଛଡ଼ାଇ ସେ ନେଲା
ମାନଗୋବିନ୍ଦ ଭାଇଙ୍କୁ ଚାହିଁ ଆଜ୍ଞା ଦେଲା ।
ଭଲ ଶତ୍ରୁ ଆସି ମୋତେ ବନସ୍ତେ ମିଳିଲା
ବେଢ଼ିମାରି ଦଇତ୍ୟକୁ ନ କରରେ ହେଳା ।
ଶୁଣି ଅନେଶ୍ୱତ ଧାଇ ମିଳିଲେକ ଯାଇ
ବିଧା ହୁଧାକେ ଦଇତ ମାରେ ସବୁଙ୍କୁହିଁ ।
ଦେଖି ତାହା ନୃପବର ହୋଇଲା ଚକିତ
ସୈନ୍ୟଙ୍କୁ ବୋଇଲା ବେଢ଼ି ମାରରେ ତୁରିତ
ରାଜା ଆଜ୍ଞା ପାଇ ସୈନ୍ୟ ସେନାପତି ରଥୀ
ଲକ୍ଷପୁର କରି ତାଙ୍କୁ ବେଢ଼ିଲେ ତଡ଼ନ୍ତି ।
ଯାହାର ଯେତେକ ଶସ୍ତ୍ର ବାନ୍ଧିଲେ ସେ ବେଢ଼ି
ଦଇତ୍ୟ ଉପରେ ବାଜି ପଡ଼ିଲା ଉପୁଡ଼ି ।
ଗଦା ଢେଲ ଚକ୍ର ଖଣ୍ଡା ଶକତି ମୁଦ୍‍ଗର
ପର୍ବତ ଯେ ବଜ୍ରବାଣ କୁନ୍ତ ଅସିବର ।
ବୃକ୍ଷର ପତ୍ର ପବନେ ଝଡ଼ନ୍ତି ଯେସନ
ଦୈତ୍ୟର ଉପରେ ତେହ୍ନେ ପଡ଼ୁଅଛି ବାଣ ।
ପର୍ବତ ପରାୟ ତହିଁ ରହିଲା ଅସୁର
ଦେଖିବାକୁ ଶୁଣିବାକୁ କଥା ଅଗୋଚର ।
ଘୋର ଯୁଦ୍ଧ କରି ଦେବ ସବୁ କଲା ହତ
ଚତୁରଙ୍ଗ ବଳ ସୈନ୍ୟ କଟକ ନିପାତ ।
ପଛେ ଥିଲା ଦେବ ଏକା ମାନଚକ୍ରବର୍ତ୍ତୀ
ଦୈତ୍ୟକୁ ନାରାଚ ସେହି ମାରେ ଅପ୍ରମିତ ।
ତଥାପି ଦଇତ୍ୟ ଦେହେ ଶସ୍ତ୍ର ନ କାଟଇ
ମେରୁରେ ଯେମନ୍ତ କ୍ଷୁଦ୍ର ଟେଳା ନ ଭେଦଇ
ସହସ୍ର ଶସ୍ତ୍ରମାନ ତାର ଦେହେ ନ ଭେଦିଲା
ଗଦାଘେନି ନୃପତି ତା ଦେହେ କଚଡ଼ିଲା ।
ଶତଖଣ୍ଡ ହୋଇ ଭାଙ୍ଗିଗଲା ଗଦା ବର
ବିବିଧ ଶସ୍ତ୍ର ମାରିଲା ପୁଣି ନୃପବର ।
ବାଜନ୍ତେ ଶସ୍ତ୍ର ହସଇ ପ୍ରତାପୀ ଅସୁର
ବିଧା ଗୁରୁଧା ଯେ ଗାଲ ବିନ୍ଧାଣି ଆଦର ।
ପୁଣି କଚାଡ଼ିଲା ଧରି ଗିରିବର ମାନ
ତଥାପି ନ ମଲା ଦେବ ଅସୁର ରାଜନ ।
ନୃପତିକୁ ମୁଥ ଏକ ମାରିଲା ଦଇତ୍ୟ
ମୁଥର ଘାତେ ନୃପତି ହୋଇଲା ଅଚେତ ।
ଭୀଷ୍ମଦେବ ଭୂରିଶ୍ରବା ବାହ୍ଲିକ ଯେ ଶଲ୍ୟ
ଦ୍ରୋଣଗୁରୁ ଅଶ୍ୱତ୍ଥାମା କୃପ ମହାମଲ୍ଲ ।
ଜୟଦ୍ରଥ ବିକର୍ଣ୍ଣ ଯେ କର୍ଣ୍ଣ ଆଦିକରି
ଶକୁନି ଯେ କାଳକେତୁ ଅଙ୍ଗ ଦଣ୍ଡଧାରୀ ।
ସମସ୍ତେ ଅଚେତ ହେଲେ ପାଇ ଦୈତ୍ୟତ୍ରାସ
ସମସ୍ତଙ୍କୁ ମାରି ଗଦା ଘେନିଲା ରାକ୍ଷସ ।

ମଣିମୟ ମୁକୁଟକୁ ଷଞ୍ଜା ଶିରୁ ଫେଇ
ଆପଣା ଶିରେ ଦାନବ ବାନ୍ଧିଲାକ ନେଇ ।
ବୋଇଲାକ ଆହେ ସର୍ବେ ଥାଅ ଏହି ମତେ
କାଲି ଆସି ମୁଁ ଭକ୍ଷଣ କରିବ ତୁରିତେ ।
ଅପାର ହବ୍ୟ ମୋହର ମଧୁମାଂସେ ଇଚ୍ଛା
କାଲି ପୁରିଇବ ମୁହିଁ ମୋର ମନୋବାଞ୍ଛା ।
ଏମନ୍ତ ବୋଲି ଗଲାକ ସେ ଦାନବ ଦେବ
ତୁଚ୍ଛା ରଥଘେନ ମୁହିଁ ଆସୁଥିଲି ଦେବ ।
ବୃଭ୍ରାଙ୍ଗ ଗିରି ଉପରେ ଦେଖିଲି ନକୁଳ
ବାରତା ସେ ପଚାରିଲେ କହିଲି ସକଳ ।
ଶୁଣି କୋପମନା ହୋଇ ନକୁଳ ଧାଇଁଲେ
ମୋତେ ଘେନଣ ପର୍ବତ ବଳ ଚଳିଗଲେ ।
ଆରତ୍ତକ ପର୍ବତରେ ଯାଉଛି ଅସୁର
ରହ ରହ ବୋଲି ଡାକଦେଲେ ମହାବୀର ।
ଦାନବ ଭୁଲେ ବହୁତ କଲେ ଯାଇ ରଣ
କେତେ ମୁଁ କହିବ ସେହି ଯୁଦ୍ଧ ଅପ୍ରମାଣ ।
ଢକ ନଶି କୁନ୍ତକୁ ଯେ ଗଦା ଛେଲ ଭଲ
ଶକତି ମୁଦ୍‌ଗର ହେଳ ପାଶୁପତ ଭୁଲି ।
ଯହୁଁ ଏହି ଶସ୍ତ୍ରେ ଭେଦ ନୋହିଲା ତା କାୟ
ମାଲ୍ଲଯୁଦ୍ଧ ଆରମ୍ଭିଲେ ମାଦ୍ରୀର ତନୟ ।
ଚଉଷଠି ବନ୍ଧାଣର ମାଲ୍ଲଯୁଦ୍ଧ ଯେତେ
କେବେହେଁ ନାଶ ନୋହିଲା ଦେବ କେଉଁ ମତେ
ପର୍ବତ ପାଷାଣ ଲୌହଗିରି ତା ଉପରେ
କଚାଡନ୍ତେ ଚୂର୍ଣ୍ଣ ହୁଏ ଅସୁର ଶରୀରେ ।
ଯୁଦ୍ଧ କରନ୍ତେ ନକୁଳ ବୀର ଚିନ୍ତାପାଇ
ତେଣୁ ଶ୍ରମରେ ଦେବ ମୁଁ ଅଇଲିଇଁ କହି ।
ଶୁଣି ନୃପତି ଅନାଇ ଭାଇଙ୍କୁ ବୋଇଲେ
ଆସନ ତେଜଣ ଦେବ ଆପଣେ ଉଠିଲେ ।
ସାରଥିକୁ ଆଗକରି ଗଲେ ଭାଇ ଚାରି
ମୁହୂର୍ତ୍ତେକେ ମିଳିଲେ ସେ ଆରତ୍ତକ ଗିରି ।
ନକୁଳ ଯେ ଦଇତ୍ୟକୁ ଧରି କଚାଡ଼ଇ
ପର୍ବତ ପରାୟେ ସେହି ଦଇତ୍ୟ ଅଟଇ
ନକୁଳର ବଳ ଜାଣ ଅଟେ ଅକଳନ ।
ଯୁଦ୍ଧରେ ଅଟଇ ସେହି ମହାବଳ ରଣ ।
ଏଣେ ଏମନ୍ତ ବିଚାର କରିବାର ବେଳେ
ନକୁଳ ସେ ଦଇତ୍ୟକୁ ଧରି କଚାଡ଼ିଲେ ।
ତାଳେକ ପର୍ଯ୍ୟନ୍ତେ ଜାଣ ନଇଁଲା ସେ ମସ୍ତ
ନକୁଳ ହାତୁ ଦଇତ ଗଲା ଫିଟିକାଇ ।
ଭୀମ ବୋଇଲା ଭୋ ଦେବ ଆଜ୍ଞା ଦିଅ ମୋତେ
ଆଜ୍ଞା ହେଲେ ଯୁଝିବି ମୁଁ ଅସୁର ସଙ୍ଗତେ ।
ଯୁଧିଷ୍ଠି ବୋଇଲେ ବାବୁ ନୁହଇ ଏମନ୍ତ
ଅଧର୍ମ ଯୁଦ୍ଧ କରିବା ଅଟେ ଅସଙ୍ଗତ ।
ଏମନ୍ତ ବୋଲି ଯୁଧିଷ୍ଠି ବୃକୋଦରେ କହି
ନକୁଳକୁ ସେ ଦାନବ ଧରିଲାକ ଯାଇ ।
ବାଳପୁତ୍ର ଯେସନେ ଥାଏ ମାତାଙ୍କର କୋଳେ
କେସନେ ଦାନବକୋଳେ ଥାଇ ସେ ନକୁଳେ
ଧରନ୍ତେ ସେ ଦାନବକୁ ହୋଇଲା ଅଥୟ
ଶରୀରକୁ ଫୁଲାଉଛି ମାଦ୍ରୀର ତନୟ ।
କଟିଭାଗ ଧରି ଦେଲା ଦୈତ୍ୟକୁ କଚାଡ଼ି
ବୁକୁରେ ବସି ଛାଡ଼ିଲା ବୀର ଘୋର ରଡ଼ି
ବିବିଧ ମାଡ଼ ମାରଣ ନାକ କାମୋଡ଼ିଲା
ମୁଣ୍ଡଉପରେ ଆପଣା ମୁଣ୍ଡ କଚାଡ଼ିଲା ।
ତେବେହେଁ ସେ ଦାନବର ନୋହିଲାକ କଷ୍ଟ
ତଳେ ପଡ଼ି ସେ ଦାନବ ଅନାଇ ହସୁଛି ।
ବାମକରେ ଧରି ତାକୁ ଦେଲା ଫୋପଡ଼ାଇ
ଝିଙ୍କିକା ପ୍ରାୟ ନକୁଳ ପଡ଼େ ତଳେ ଯାଇଁ ।
ପୁଣିହିଁ ସେ ଧରାଧରି ହେଲେ ବେନି ବୀରେ
ଖାଲ ଠିକର ପାଷାଣ ସମତୁଲ ହେଲେ ।
ପଡ଼ନ୍ତି ଗଡନ୍ତି ପୁଣି ଧରି କାମୋଡନ୍ତି
ମଟନ୍ତି ମାଟନ୍ତି ଦନ୍ତ ପାଟି ରଗଡ଼ନ୍ତି ।
ଆଦିତ୍ୟ ଦେବତା ତହିଁ ଅସ୍ତ ପରିଯନ୍ତେ
ନ ଛାଡ଼ି ମାଲ ବନ୍ଧାଣ ଦୁହେଁ କୋପଚିତ୍ତେ ।
କେହି କାହାକୁ ଯେ ତହିଁ ନ ପାରନ୍ତି ଜିଣି
ଯୁଧିଷ୍ଠିର ପଚାରନ୍ତି ଶୁଣ ମନ୍ତ୍ରିମଣି ।
ଏଘୋର ଯୁଦ୍ଧ ଆରମ୍ଭ ଦେଖିଲାତ ନାହିଁ
ଦଇତ୍ୟ ମରଣ ପୁଣ ଅଛଇରେ କାହିଁ ।
ମନ୍ତ୍ରୀ ବୋଲଇ ଶୁଣିମା ଧର୍ମ ନୃପବର
କପିଳସିଂହ ବୋଲି ସେ ମହାବଳୀ ବୀର ।
ମହିଷ ସିଂହ ବୋଲି ଯେ ତାହାର ଦୁଲାଳ
ତାହାର ନନ୍ଦନ ଛାଗସିଂହ ମହାବଳ ।
ତାରପୁତ୍ର ଅଜସିଂହ ନାମେ ମହାବୀର
ତା ନନ୍ଦନ ବୀରସିଂହ ନାମରେ ଅସୁର ।

କାଳସିଂହ ଅସୁର ସେ ତାହାର ନନ୍ଦନ
ଗୋସିଂହ ଦଇତ ତାର ପୁତ୍ର ବଳବାନ ।
ସତ୍ୟଭାମା ହରଣେ ସେ ପାର୍ଥ ହସ୍ତେ ମଲା
ରାମକୃଷ୍ଣଙ୍କୁ ସେ ଅଗ୍ନି କୁଣ୍ଡେ ପୋଡ଼ିଦେଲା ।
ବୀରସିଂହହିଁ କପିଳସିଂହ ପର୍ଯ୍ୟନ୍ତେ
ନାଶଗଲେ ଦୁର୍ଗା ଦେବୀ ସମରେ ସମସ୍ତେ ।
ଗୋସିଂହର ପୁତ୍ରନାମ ଜୟସିଂହ ବୀର
ରାଜସୂୟ ଯଜ୍ଞେ ନାଶ ଯିବ ସେ ଅସୁର ।
ଏ କୁଣ୍ଡଳୀସିଂହ ଜୟସିଂହର କୁମର
କାଳିକା ଦେବୀ ମନାଇ ଅଛଇ ଅସୁର ।
ଦେବବର୍ଷେ ସାତବର୍ଷ ଏ ତପସ୍ୟା କଲା
ଏକପାଦେ ଉଭା ହୋଇ ଊର୍ଦ୍ଧ୍ୱକୁ ଚାହିଁଲା ।
ତଦନ୍ତେ ଯେ ବୀର ଘୋର ଅନଳକୁ ଜାଳି
ଅଗ୍ନି ଭିତରେ ପଶିଲା ଯାଇ ମହାବଳୀ ।
ବରଷକେ ସୁପ୍ରସନ୍ନ ହେଲେ ମାହେଶ୍ୱରୀ
ଆସ ଦଇତ୍ୟ ଡ କଲେ ଦେବୀ ଉଚ୍ଚକରି ।
ଦଇତ୍ୟ ବୋଇଲା ତୁ ହୋ କେବଣହିଁ ଜନ
ଦେବୀ ବୋଇଲେ ମୋନାମ କାଳିକାରେ ଜାଣ
ଶୁଣି ଦାନବ ଅଗ୍ନିରେ ଥାଇ ପୁଣି କହି
ନିଜ ସ୍ୱରୂପ ତୋହର ଦେଖା ମହାମାୟି ।
ଦେବୀ ବୋଇଲେ ତୁ ଏବେ ଶୁଣରେ ଅସୁର
ମୋର ରୂପ ଦେଖିଲେ କି ବର୍ତ୍ତିଇ ସଂସାର ।
ମୋର ନିଜ ରୂପ ଦେଖି ଦେବ ତ୍ରିଲୋଚନ
ସହି ନ ପାରଣ ମୋହ ଗଲେ ତୁ ହୋ ଜାଣ
ଦାନବ ବୋଇଲା କାହିଁ ମାତା ରୂପ ଦେଖି
ପ୍ରାଣ ନାଶଯାଇ କି ଗୋ ଶରଚନ୍ଦ୍ରମୁଖି ।
କାଳୀ ବୋଇଲେ ଅଗ୍ନିରୁ ତୁ ବାହାର ହୁଅ
ତେବେ ମୋହର ଦେଖିବୁ ତୁହି ନିଜ ଦେହ
ଦେବୀ ବଚନେ ଦଇତ୍ୟ ହୋଇଲା ବାହାର
ପୋଡ଼ିଲା ତମ୍ବା ପରାୟେ ଦିଶେ ଦେହ ତାର ।
କରପତ୍ର ଯୋଡ଼ି ପୁଣି ବୋଲଇ ଗୋ ମାତ
ଦେଖା ତୋର ନିଜରୂପ ହୁଏ ମୁଁ ପବିତ୍ର ।
ଶୁଣିଣ ସେ ମହାମାୟା ନିଜରୂପ ଧରି
ଚଉଦ୍ଦିଗଯାକ ଗଲା ସେ ରୂପରେ ପୂରି ।
ସପତ ପାତାଳଯାକ ଛୋଟିଲା ଚରଣ
ଶିର ଛୋଟିଲା ଆକାଶଯାକ ଯାଇ ପୁଣ ।

ଦଶଦିଗଯାକ ପୂରି ଗଲା କଳେବର
ମେରୁ ମଣ୍ଡଳକୁ ଜିଣି ଦିଶଇ ଶରୀର ।
ଅଷ୍ଟଗିରିଯାକ ରୋମଗର୍ତ୍ତରେ ଯେ ବସି
ରଟ ମଟ ଦାନ୍ତ କଟମଟ ଚାହିଁ ହସି ।
କହ କହ ଶବଦ ଯେ ଗହ ଗହ ଧ୍ୱନି
ଡରେ ଥର ଥର ହୋଇ କମ୍ପଇ ମେଦିନୀ ।
ଝଟ ଝଟ ବିଜୁଳି କି ହସିବାର ଗଣ୍ଡ
ରସାତଳେ ପଡ଼ିବ କି ଅକଣ୍ଟକ ପୃଥ୍ୱୀ ।
ଚଉଷଠି ଯୋଗିନୀ ଯେ ଲାଗିଛନ୍ତି ଦେଖି
କଳକଳା ନାଦକୁ ଯେ ପୃଥ୍ୱୀ ନ ସହଇ ।
ପଞ୍ଚ ଅର୍ବୁଦ ଦେବୀ ଯେ କୁହୁ କୁହୁ ନାଦେ
ଖେମଟା ନାଟ କରନ୍ତି ଦେବୀଙ୍କର ହୃଦେ ।
ମେରୁଗିରି ଟଳ ଟଳ କମ୍ପଇ ମନ୍ଦର
ସପତ ସମୁଦ୍ର ନୀର ହୋଇଲା ଅସ୍ଥିର ।
ପ୍ରକଟ ବିକଟ ହାସ୍ୟ ମୁଖ ଘୋର ଧ୍ୱନି
ଦେଖି କମ୍ପମାନ ହେଲା ଅସୁର ମୂର୍ଦ୍ଧନି ।
ଏଡ଼କ ହେଉ ବୋଲଇ ଯେ ଅସୁରପତି
ତାଣ୍ଡବ ନୃତ୍ୟ କରଣ କରାଇଲା ଶାନ୍ତି ।
ଶାନ୍ତରୂପେ ଉଭା ହେଲେ ପୁଣି ମହାମାୟେ
କପାଇଁ ଦାନବ ତୋର ଚିତ୍ତେ କଲୁ ଭୟେ ।
ଏବେ ବର ମାଗ ବାବୁ ଯେ ତୋହର ଇଚ୍ଛା
ଦାନବ ବୋଇଲା ମାଗୋ ଯେମୋମନୋବାଞ୍ଛା
ତିନିଯୋଜନର ଅର୍ଦ୍ଧେ ହୋଇବ ମୋ କାୟେ
ଆବର ଜିଣିବି ମୁହିଁ ବ୍ରହ୍ମଲୋକ ଯାଏ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ଆଦି ସୁରାସୁର ଗଣ
ଚନ୍ଦ୍ର ସୂର୍ଯ୍ୟ ବିଷ୍ଣୁ ଯମ ପବନ ବରୁଣ ।
ନାଗଗଣ ଯକ୍ଷଗଣ ଆବର ଭୂପାଳ
ଯମ ନୈର୍ଋତ ଆଦି ଦଶ ଦିଗପାଳ ।
କାହାର ହାତରେ ମୃତ୍ୟୁ ନ ହେଉ ଯେ ମୋତେ
ବ୍ରହ୍ମାଣ୍ଡ ଜିଣିବା ବର ମାଗିଲି ମୁଁ ତୋତେ ।
ଚଉଦ କଳପ ମୁହିଁ ହୋଇବି ଅମର
ମୋ ଜନନୀ ତୋତେ ମୁହିଁ ମାଗେ ଏହି ବର
କାଳିକା ଦେବୀ ବୋଇଲେ ଶୁଣ ରେ ଦାନବ
ଜନ୍ମ ହେଲେ ନାଶଯାନ୍ତି ଯେତେ ଦେବଦେବ
ବଇକୁଣ୍ଠ ଅଧିପତି ଦେବ ନାରାୟଣ
ଦଶ ଅବତାର ପ୍ରଭୁ ହୁଅନ୍ତି ଆପଣ ।

ଆମ୍ଭେମାନେ ପୃଥିବୀରେ ହେଉ ଅଧିପତି
ଦୈତ୍ୟ ଦାନବଙ୍କୁ ମାରି ଭାର କରୁ ଶାନ୍ତି ।
ତୋହର ଇଚ୍ଛାରେ ଏବେ ମାଗ ତୁହି ବର
ଯେଉଁରୂପେ ମୃତ୍ୟୁ ମାଗ ହୋଇବ ତୋହର ।
ଶୁଣିଣ ସେ ଦୈତ୍ୟରାୟେ ବୋଇଲା ଗୋ ମାଏ
ମୋହର ମୃତ୍ୟୁକୁ ମୁହିଁ ମାଗୁଛି ଉପାୟେ ।
ଶସ୍ତ୍ରେ ମୁହିଁ ନ ଛିଡ଼ିବି ନ ବୁଡ଼ିବି ଜଳେ
ଦଶ ସହସ୍ର ସିଂହର ତୁଲ୍ୟ ହେବି ବଳେ ।
ମୋର ମନ କଲେ ମୁହିଁ ଉପାଡ଼ିବି ଗିରି
ମୋତେ ଯେ ଉତ୍ଥାନ କରି ମାଡ଼ି ବସିପାରି ।
ରଖି ପାରିବ ଯେ ମୋର ଗ୍ରୀବା କଟି ସରି
ବଦନଯାଏ ଆଣିବ ପାଦକୁ ଓଟାରି ।
ବାମ ଚରଣ ରଖିବ ତହିଁ ମୋର ଆଣି
ତୁଣ୍ଡେ ପୁରାଇବ ମୋର ଅଙ୍ଗୁଷ୍ଠି ଯେ ଜାଣି ।
ସେ ଅଙ୍ଗୁଷ୍ଠି ଗୋଟି ମୋର ପଶିବ ତୁଣ୍ଡରେ
ଛାଡ଼ିବ ମୋହର ପ୍ରାଣ କହିଲି ତୁମ୍ଭରେ ।
ଅସ୍ତୁହେଉ ବୋଲି ତାକୁ ବୋଇଲେଯେକାଳୀ
ରହିଲେକ ସହଦେବ ମନ୍ତ୍ରୀ ଏତେ ଭାଳି ।
ମୃତ୍ୟୁଭେଦ ଯହୁଁ ମନ୍ତ୍ରୀ କହିଲେ ତାହାର
ରହିଲେକ ସାଧୁ ମନ୍ତ୍ରୀ ବୋଲି ନୃପବର ।
ଏଣେ ଚାରି ଭାଇ ବସି କରନ୍ତି ବିଚାର
ତେଣେ ଅସୁର ସଙ୍ଗରେ ଯୁଝନ୍ତି ନକୁଳ ।
ରେ ରେ କାର ଶବଦରେ ଘୋର ଧ୍ୱନିକରେ
ସିଂହ ଶାର୍ଦ୍ଦୂଳ ସମର ପ୍ରାୟେ ମହାଘୋରେ ।
ଦୁହିଙ୍କର ମହାଯୁଦ୍ଧ ବେନି ଷଣ୍ଢ ଜାଣି
ମହାଘୋର ଯୁଦ୍ଧରେ ଯେ କମ୍ପଇ ଧରଣୀ ।
ନକୁଳକୁ ଦାନବ ଯେ କହିଲାକ ହସି
ଲାଗିଲା ଗଳାରେ ତୋର ମହାକାଳ ଫାଶୀ ।
ନକୁଳ ବୋଇଲା ଦୈତ୍ୟ କହିଲୁ ତୁ ସତ
ଅପମୃତ୍ୟୁ ତୋତେ ଦେଇଅଛି ଦଇବତ ।
ଏତେ ବୋଲି ସେ ନକୁଳ ମାଇଲାକ ମୁଥେ
ହସି ଉଠିଲା ଦାନବ ନକୁଳର ଘାତେ ।
ବୋଇଲା ଏହି ଯୁଦ୍ଧ ତୁ କରି କି ଜିଣିବୁ
ଏ ଦେହ ଘେନିଣ ଯମ ମନ୍ଦିରକୁ ଯିବୁ ।
ଶୁଣି କୋପଭରି ହୋଇ ଉଠିଲା ନକୁଳ
ଦଇତ୍ୟର ପାଦଧରି କରୁଡ଼ାଇଲା ଶିଳ ।

ଦାନବର ଦେହ ବାଜି ଭାଙ୍ଗିଲା ପାଷାଣ
ତେରଦିନଯାଏ ଯୁଦ୍ଧ ହେଲା ନୃପଗଣ ।
ଯୁଧିଷ୍ଠି ବୋଇଲେ ତୁ ହୋ ଶୁଣ ମନ୍ତ୍ରୀବର
ଦଇତ୍ୟର ମୃତ୍ୟୁ କହ ନକୁଳ ଆଗର ।
ମନ୍ତ୍ରୀ ତ କହିଲା ଯେ ଯେ କରୁଛନ୍ତି ରଣ
ତରସ୍ତ ହୁଅଇ ପୃଥ୍ୱୀ ଶୁଣି ଗରଜନ ।
ମୋହର କହନ୍ତେ ସେହି ନ ପାରିବେ ଜାଣି
ବୃକୋଦର ଠାକୁର ଯେ କହନ୍ତୁ ପ୍ରମାଣି ।
ଏହାଙ୍କ ଶବଦ ତାଙ୍କ କର୍ଣ୍ଣକୁ ଶୁଭିବ
ଚେତାଇ ନକୁଳ ଦେବ ଦୈତ୍ୟ ସଂହାରିବ ।
ଭୀମକୁ ଯେ ଆଜ୍ଞା ଦେଲେ ଧର୍ମରାଜ ପୁଅ
ମନ୍ତ୍ରୀ କହିବାର କଥା ନକୁଳକୁ କହ ।
ଶୁଣି ବୃକୋଦର ହସି ଉଠେ ଠହ ଠହ
ହସନ୍ତେ ଶୁଣିଲା ତେଣେ ମାଦ୍ରୀଦେବୀ ପୁଅ ।
ଗଦା ତଳେ ଥୋଇ ଠାରି କହେ ବୀରମଣି
ଗ୍ରୀବାରେ ବାମପାଦକୁ ରଖ ବେଗେ ଆଣି ।
କନିଷ୍ଠ ଅଙ୍ଗୁଳି ଗୋଟି ମୁଖେ ଦିଅ ନେଇ
ଏହିରୂପେ ମାରି ବୋଲି ତାଙ୍କୁ ଦେଲେ କହି
ଠାରିଲେ ସେ ବୃକୋଦର ଜାଣିଲେ ନକୁଳ
ତୋଳି କଚାଡ଼ି ପକାଇ ଦେଲେ ଭୂମିତଳ ।
ଦଶସହସ୍ର ସିଂହର ବଳ ଧରେ ଯେହୁ
ଚଳି-ନ ପାରିଲା ତଳେ ପଡ଼ିଅଛି ସେହୁ ।
ଚନ୍ଦ୍ର ଆକାର ତାହାର ବୁଲଇଲା ଦେହି
ଚଉଦ କୋଶଯାଏ ଯେ ଗିରି ଚୂରି ଯାଇ ।
ନକୁଳ ମାଡ଼ି ବସିଲା ଅସୁର କଟିରେ
ଦଇତର ଚୁଟି ଧରିଅଛି ବାମକରେ ।
ମେରୁ ଶୃଙ୍ଗ ଜାଣି ଅଟେ ଦଇତ୍ୟର ଶିର
ଓଟାରନ୍ତେ ହେଲା ସେହୁ ସ୍ତମ୍ଭର ଆକାର ।
ଅଚଳ ହୋଇଲା ଯହୁଁ ନ ଚଳିଲା ସେହୁ
ନକୁଳ ଯେ କମ୍ପମାନ ହୋଇଲାକ ତହୁଁ ।
ଏ ଅସୁର ନ ମରଇ ମନେ ବିଚାରଇ
ବିନା ଅର୍ଥେ ଯୁଦ୍ଧକୁ ମୁଁ ଅଇଲି କପାଇଁ ।
ମୋହର ଟାଣନ୍ତେ ତଳେ ନ ଟଳେ ଅସୁର
ଅଚଳହୁଁ ଅଧିକ ତ ଏହାର ଶରୀର ।
ଏତେ ବୋଲି ହୃଦପଦ୍ମେ କଲା ଚିନ୍ତା
ରଖ ଜଗନ୍ନାଥ ତୁମ୍ଭେ ଜଗତ କରତା ।

ଆମ୍ଭେ ଅଟୁ ଅରକ୍ଷିତ କୁନ୍ତୀରାଣୀ ପୁତ୍ର
ଆଜ୍ଞା କରଅଛୁ ସଦା ଶଙ୍ଖ ଚକ୍ରହସ୍ତ ।
ଅନମିତ୍ତେ ଆସି କାହୁଁ ମିଳଲା ବଇର
ମାଇଲା ଏ ସୋମବଂଶ ପୁରଲା ତା ଶିଖ ।
ଏବେ ଆସି ଦୈତ୍ୟ ଭୁଲେ କଲ ମୁହିଁ ରଣ
ରଜନୀ ଦିବସ ଆସି ହେଲା ତେରଦିନ ।
ଜିଣି ନ ପାରଲି ଦୈତ୍ୟ ବୀରକୁଳରାୟ
ତେଣୁ ତୋତେ ଚିନ୍ତା ମୁହିଁ କଲି ଦେବରାୟ ।
ଏ ଲଜ୍ଜାରୁ ଉଦ୍ଧର ତୁ ବାରେ ନାରାୟଣ
ଦଇତ୍ୟର ଯେଉଁରୂପେ ହୁଅଇ ମରଣ ।
କ୍ଷତ୍ରିୟ ବୀରଙ୍କ ମୁଖେ ନ ପାଇବି ଲଜ
ଉଦ୍ଧରଣ ଧର ମୋତେ ହେ ଦେବାଧିରାଜ ।
ଏସନ ଚିନ୍ତା କରନ୍ତେ ତହୁଁ ବୀରମଣି
ଦ୍ୱାରକାରେ ଥାଇ ତାହା ଜାଣି ଚକ୍ରପାଣି ।
ନକୁଳବୀର ଆତଙ୍କ ଜାଣି ଚକ୍ରଧର
ନୃସିଂହମୂର୍ତ୍ତି ପେଷିଲେ ତହୁଁ ଧାତ୍ତକାର ।
ବୋଇଲେ ନକୁଳଅଙ୍ଗେ ବଜେ କର ଯାଇ
କୋଟିଏ ସିଂହର ବଳ ପଟାନ୍ତର ନାହିଁ ।
ଦଇତ୍ୟର କେଶ ବୀର ବାମପାଦେ ଧର
ଦୁଇ ପାଦକୁ ନକୁଳ ଆଣିଲା ଓଟାର ।
ବାମ କନିଷ୍ଠ ଅଙ୍ଗୁଳି ମୁଖେ ଦେବାବେଳେ
ପାଟି ପାରଲା ଦାନବ ଜାଣିଲା ସେ କାଳେ ।
ଦେଖି କୋପ କଲା ସେହି ଦିଗ୍ଧାୟୁ ନୃସିଂହ
ମୁଣ୍ଡ କରୁଡ଼ି ଭାଙ୍ଗିଲା ଦୈତ୍ୟ ନାସାଭାଗ ।
ବଜ୍ର ବାଜନ୍ତେ ଯେସନେ ଭାଙ୍ଗଇ ପର୍ବତ
ତେସନ ଭାଙ୍ଗି ଶୋଣିତ ହୋଇଲା ସଂଜାତ ।
ତୁଣ୍ଡ ଭିତରେ ଅଙ୍ଗୁଳି ଭରଦେଲା ନେଇ
ତତକ୍ଷଣେ ମୂର୍ଚ୍ଛା ଗଲା ଦୈତ୍ୟକୁଳ ସାଇଁ ।
ଶରୀର ପଡ଼ିଲା ପ୍ରାଣବାୟୁ ଉଡ଼ିଗଲା
ନକୁଳ ଜାଣିଲେ ଦୈତ୍ୟବର ଏବେ ମଲା ।
ମୃତପିଣ୍ଡ ଛାଡ଼ି ଉଭା ହେଲା ବୀରବର
କୁସୁମବୃଷ୍ଟି ତା ଶିରେ କଲେ ସୁନାସୀର ।
ଅନ୍ତରୀକ୍ଷେ ଡାକଲେ ସେ ସାଧୁ ସାଧୁ ତୁହି
ଚଉଦପୁର ରଖିଲୁ ଦଇତକୁ ଦହି ।
ଏତେକ ବୋଲି ଯେ ଯାହା ପୁରକୁ ସେ ଗଲେ
ପାଣ୍ଡବେ ବିଜୟୀ ହୋଇ ହରି ସୁମରିଲେ ।
ବଦନ୍ତି ଅଗସ୍ତି ମୁନି ଶୁଣ ନୃପବର
କୁଣ୍ଡଳୀଦୈତ୍ୟ ମାଇଲେ ମାଦ୍ରୀର କୁମର ।
ଯୁଧିଷ୍ଠିଙ୍କ ଚରଣରେ କଲେ ପ୍ରଣିପାତ
ଆବର ସେ ଆବୋରିଲେ ବୃକୋଦର ପାର୍ଥ
ସହଦେବ ନକୁଳର ଚରଣେ ପଡ଼ନ୍ତି
ଶ୍ରୀଶାରଳା ଦାସ ଚିତ୍ତେ ଚିନ୍ତଇ ଶ୍ରୀପତି ।

---

## କୌରବ ପାଣ୍ଡବଙ୍କ ହସ୍ତିନାପ୍ରବେଶ

ବଦନ୍ତି ଅଗସ୍ତି ମୁନି ଶୁଣ ନୃପବର
ଯେତେବେଳେ ସଂଗ୍ରାମରେ ପଡ଼ିଲା ଅସୁର ।
ଯେ ଯାହାର ପୁରେ ଚଳିଗଲେ ସୁରଗଣ
ସାରଥି ସଙ୍ଗେ ଅଛନ୍ତି ଭାଇ ପାଞ୍ଚଜଣ ।
ବୃକୋଦର ବୋଲେ ଦେବ ଯିବା ନିଜପୁରୀ
ଶୁଣିଣ ଆଜ୍ଞା ଦିଅନ୍ତି ଧର୍ମ ଦଣ୍ଡଧାରୀ ।
କେମନ୍ତେ ଯିବାରେ ବାବୁ ଭାଇ ହେଲେ ହତ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଶଲ୍ୟ ଜୟଦ୍ରଥ ।
ଶତ ସୋଦର ଆବର ଶକୁନି ସହିତ
ସଖା ବନ୍ଧୁ ସୋଦର ଯେ ସେନା ଅପ୍ରମିତ ।
ଏବେ କିସ କରିବା ଯେ କହମି ଉପାୟ
କରପଦ୍ମ ଯୋଡ଼ି କହେ ପବନ ତନୟ ।
ଭୀମ ବୋଲେ ତାହାଙ୍କର ନ ଧରିବା ନାମ
ଏ କଥା କରଅଛନ୍ତି ପୁରୁଷ ଉତ୍ତମ ।
ନିର୍ଦ୍ଦୟ କୌରବ ଦୟା ତାହାଙ୍କର ନାହିଁ
ଦଇବ ଯୋଗେ ଅଛନ୍ତି ଯେବେ ମୃତ୍ୟୁପାଇ ।
ଆମ୍ଭର ତହିଁକି ଦେବ କେବଣ ଉପାୟ
ଚାଲ ଏବେ ବାରୁଣାକୁ ଯିବା ଦେବରାୟ ।
ଯୁଧିଷ୍ଠି ବୋଇଲେ ଏହା କହିଲୁ ତୁ ମୋତେ ।
ସୋଦର ମରିଲେ ମୋର ଯିବଇଁ କେମନ୍ତେ
ନାଶଗଲା ଯେବେ ରଣେ ନୃପତି କୌରବ
ସରିଲା ବାବୁ ରେ ସୋମବଂଶର ଗୌରବ ।
ଆହା ରେ ଭାଇ ମୋହର ନୃପ ଶିରୋମଣି
ପାର୍ଥକୁ ଚାହିଁ କାନ୍ଦନ୍ତି ଶିରେ ଦେଇ ପାଣି ।
ବାବୁ ଧନଞ୍ଜୟ ରକ୍ଷା କର ତୁ ସୋଦର
ଅଭୟ ସୋମବଂଶରେ ବୋଲଉଛି ବୀର ।
ସାଧୁ ସାଧୁ ବୋଲି ସର୍ବଜନେ ଉଚ୍ଚାରିବେ
ଯେବେ ସୋମବଂଶଯାକ ସମସ୍ତେ ଜୀଇଁବେ ।

ଏବେ ଦୈତ୍ୟ ମାରିଗଲା ସଇନ୍ୟ ସହିତେ
ଦ୍ରୋଣ କର୍ଣ୍ଣ ଅଶ୍ୱତ୍ଥାମା ଆଦି ବୀର ଯେତେ ।
ଭୀଷ୍ମ ଭୂରିଶ୍ରବା ଶଲ୍ୟ ରାଜା ଦୁର୍ଯ୍ୟୋଧନ
ଲକ୍ଷେ ନୃପତି ଉପରେ ଅଟେ ସେ ରାଜନ ।
ନ ପାରିବା ଲୋକଙ୍କୁ ସେ ଯିନା ଜଣୁଥିଲେ
ଏକା ଦଇତ୍ୟର ହସ୍ତେ ସର୍ବେ ନାଶଗଲେ ।
ଉତ୍ତର କୁଳ ଲଜ୍ଜାରୁ ବାବୁ ଧନଞ୍ଜୟ
ତହୁଁ ତଳ ପଡ଼ିଲେ ସେ ଧର୍ମର ତନୟ ।
ଆହା ଭାଇମାନେ ବୋଲି ଉଚ୍ଚରେ କାନ୍ଦନ୍ତି
ଦୈତ୍ୟର ହାତରେ ମୃତ୍ୟୁ ଥିଲା କି ସବୁନ୍ତି ।
ତୁମ୍ଭେ ଯେବେ ମଲ ବାବୁ ମରିବି ନା ମୁହିଁ
ଆଉ ବାନ୍ଧୁଣୀବନ୍ଧୁଙ୍କୁ ଯିବଇଁ କପାଇଁ ।
କେମନ୍ତେ ଦେଖିବି ଅନ୍ଧ ଅନ୍ଧୁଣୀ ବିକଳ
ଛାଡ଼ିବି ଜୀବନ ଭକ୍ଷୁ ଏ ପିଣ୍ଡ ଶୃଗାଳ ।
ଅର୍ଜ୍ଜୁନ ବୋଇଲା ଦେବ କରିବା ବିଜୟେ
କେଉଁଠାରେ ପଡ଼ିଛନ୍ତି ସୋମବଂଶ ରାୟେ ।
କଡ଼ାଅ ସାରଥି ବୋଲି ଆଜ୍ଞା ତାକୁ ଦିଅନ୍ତି
ଦଇତ୍ୟ ହାତରେ ମୃତ୍ୟୁ ଥିଲାକ ସବୁନ୍ତି ।
ସାରଥି କହଇ ତହିଁ ଯୋଡ଼ି ବେନିପାଣି
ମଣିମୟ ମୁକୁଟକୁ ଦୈତ୍ୟ ଅଛି ଆଣି ।
ରତ୍ନାବଳୀ ଗଦାବର ଆଣିଥିଲା ସେହି
ଭାନୁମତୀ ଚନ୍ଦ୍ରମାଳା ସହିତେ ଗୋସାଇଁ ।
ସାରଥିର ତୁଣ୍ଡରୁ ସେ ଶୁଣିଣ ଏମନ୍ତ
ଦେଖିଲେ ପଡ଼ି ଅଛଇ ସେ ସ୍ଥାନେ ଦଇତ୍ୟ ।
ପଡ଼ିଛି ସେ ମଣିମୟ ମୁକୁଟ ପାଖରେ
ଦେଖି ବୃକୋଦର ତାହା ବାନ୍ଧିଲା ମଥାରେ ।
ଭାନୁମତୀ ଚନ୍ଦ୍ରମାଳା ତା ଗଳାରୁ କାଢ଼ି
ପଦକ ଶୋଭିତ ନବରତ୍ନ ଅଛି ଜଡ଼ି ।
ବୃକୋଦର ଗଳାରେ ତା ପକାଇଲେ ନେଇ
ରତ୍ନାବଳୀ ଗଦା ତାର ସନ୍ନିଧିରେ ନାହିଁ ।
ଯୁଦ୍ଧ ଭୂମିରେ ଯେତେକ ବୁଲିଣ ଦେଖିଲେ
ଲୋହଗିରି ମଧ୍ୟରେ ସେ ଯାଇ ଠାବ କଲେ ।
ନବଜଳ ମେଘ ଜେହ୍ନେ ବିଜୁଳିର ଧାର
ଲୋହଗିରି ମଧ୍ୟେ ତେହ୍ନେ ଦିଶେ ଗଦାବର ।
ସାରଥିଙ୍କ ବୋଇଲେ ଯେ ଘେନ ଏବେ ତୁମ୍ଭ
ଆଜ୍ଞାରେ ସାରଥି ତାକୁ ଧଇଲାକ ଯାଇଁ ।
ତଳେହେଁ ଭୂମିରୁ ଗଦା ନ ପାରିଲା ଟୁଳି
ଯେବଣ ଗଦାକୁ ବହେ ନୃପ ମହାବଳୀ ।
ସହସ୍ର ସିଂହର ବଳ ଧରେ ଦୁର୍ଯ୍ୟୋଧନ
ତା ଗଦା ତୋଳିବାକୁ କି ସାରଥି ଭାଜନ ।
ବୃକୋଦର ବୋଇଲେ ଯେ ଥାଉ ଗଦାବର
ବର୍ତ୍ତିଲେ ଘେନିଯାଉ ସେ ନୃପତି ଶେଖର ।
ହସିଣ ବୋଇଲେ ତହିଁ ଧର୍ମରାଜ ସୁତ
କପାଇଁ ରେ ବୃକୋଦର କହିଲୁ ଏମନ୍ତ ।
ଘେନ ଗଦାବର ବାବୁ ନ ଧର ବିମନ
ଆଜ୍ଞା ପାଇ ଘେନିଲା ସେ ଗଦା ଭୀମସେନ ।
ପଥ କଡ଼ାଇ ଆଗରେ ଚଳଇ ସାରଥି
ପାଣ୍ଡବ ପାଞ୍ଚଭାଇ ତା ପଛରେ ଚଳନ୍ତି ।
ଯେଉଁଠାରେ ପଡ଼ିଛନ୍ତି କୌରବ ସଇନ୍ୟ
ଚନ୍ଦ୍ରଧ୍ୱଜ ପ୍ରାୟେକ ସେ ଦିଶନ୍ତି ଶୋଭନ ।
ତିନି ଯୋଜନକୁ ମାଡ଼ି ପଡ଼ିଛନ୍ତି ବଳ
ଦେଖିଣ ସେ ଧର୍ମସୁତ ହୋଇଲେ ବିକଳ ।
ସୈନ୍ୟ ଖୋଜି ଯାଉଁ ଯାଉ ଦେଖିଲେସେଧାଡ଼ି
ଯେଉଁଠାରେ ପଡ଼ିଛନ୍ତି ମାନଚକ୍ରବର୍ତ୍ତୀ ।
ଧଇଲେ ଯେ ନୃପବର ଆପେ କୋଳକରି
ନୟନରୁ ଅଶ୍ରୁଜଳ ଅବିଶ୍ରାନ୍ତ ଗଳି ।
ବାବୁ ମାନଗୋବିନ୍ଦ ତୁ କଷା ଜଗଂଜ୍ୟୋତି
ଶରଣ ପଞ୍ଜର ଅଟେ ତୋର ନାମଗୋଟି ।
ଦିଗବିଜେ କରନ୍ତେ ରେ ଯାଉ ସୈନ୍ୟଘେନି
ବୋଲନ୍ତି କୁରୁସାଗର ଥାଟ ନୃପଶ୍ରେଣୀ ।
ଦଇତ୍ୟର ହସ୍ତେ ବାବୁ ମୃତ୍ୟୁ ଥିଲା ତୋତେ
ଚତୁରଙ୍ଗ ବଳ ଘେନି ପଡ଼ିଲୁ ତୁ ଏଥେ ।
ଭାଇବନ୍ଧୁ କୁଟୁମ୍ବ ତୋ ସବୁ ଗଲେ ନାଶ
ଭୀଷ୍ମ ଭୂରିଶ୍ରବା ଆଦି ପଡ଼ିଛନ୍ତି ପାଶ ।
ଅନେକ ରୋଦନ ତହିଁ କରନ୍ତି ନୃବର
କେବଳ ଶୁଣୁଅଛନ୍ତି ଗଙ୍ଗାଙ୍କ କୁମର ।
ଇଚ୍ଛାମୃତ୍ୟୁ ତାହାଙ୍କର ଗଙ୍ଗା ଛନ୍ତି କହି
ତେଣୁ ସେ ରକ୍ଷା ପାଇଲେ ରଣେ ଛନ୍ତି ଶୋଇ
ଆଉ ଯେତେ ଯୋଦ୍ଧା ନାହିଁ ସବୁରି ଜୀବନ
ଦଇତ୍ୟ ପ୍ରହାରେ ତହିଁ ସର୍ବେ ଅଚେତନ ।
ତେରଦିନ ହୋଇଲାଣି ପଡ଼ିଛନ୍ତି ମହୀ
କାହାର ଶରୀରେ ତିଳେ ଚେତା କାହିଁ ନାହିଁ ।

ବିଚାର କରନ୍ତି ମନ ମଧ୍ୟରେ ଅର୍ଜ୍ଜୁନ
କେମନ୍ତେ ବଞ୍ଚିବେ ଏହି କଉରବ ସୈନ୍ୟ ।
ଏମନ୍ତ ବିଚାର ତହିଁ କରଇ ଫାଲ୍‌ଗୁନ
ପୂର୍ବେ ମୁଁ ଖାଣ୍ଡବବନ ଦହିଥିଲି ପୁଣି ।
ମୃତ୍ୟୁ ସଞ୍ଜୀବନୀ ବୃକ୍ଷମାନ ତହିଁ ଥିଲା
ଅଗ୍ନି ଦହନ୍ତେ ସମସ୍ତ ବିନାଶ ହୋଇଲା ।
ମୋତେ ମାଗିଣ ଅନଳ ତୋଷ କଲେ ହିତ
ଲୁହୁବୁହୁ ବ୍ୟାଧି ନାଶ କଲେ ସ୍ୱାହାକାନ୍ତ ।
ବନ ଦହନ ଅନ୍ତେ ସେ ବିଭୂତିଏ ଯେନ
ମୋହର କରରେ ଦେଲେ ସୁପ୍ରସନ୍ନେ ବହ୍ନି
ବୋଇଲେ ବାବୁ ଆମ୍ଭଙ୍କୁ ତୁହି ରକ୍ଷା କଲୁ
ତିନିଯୁଗରେ ବ୍ୟାଧିରୁ ଆମ୍ଭେ ଭଲ ହେଲୁ ।
ତୁ ଏବେ ଏ ବିଭୂତିକି ଯତ୍ନେ ଥୋଇଥିବୁ
ମୃତ ଜୀବଙ୍କ ଉପରେ ନେଇ ପକାଇବୁ ।
ଗିରିଗୁହା କନ୍ଦରରେ ମରିଥିବେ ଯେତେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସହିତେ ।
ଏ ମନ୍ତ୍ର ପଢ଼ି ବିଭୂତି ନେଇ ପକାଇବୁ
ସମସ୍ତେ ବଞ୍ଚିବେ ତହିଁ ପ୍ରତ୍ୟକ୍ଷେ ଦେଖିବୁ ।
ଏମନ୍ତ ବୋଲି ସେ ଅଗ୍ନି ଦେଲେକ ବିଭୂତି
ତତକ୍ଷଣେ ଅନ୍ତର୍ଦ୍ଧାନେ ଗଲେ ସ୍ୱାହାପତି ।
ଯେବଣ ସେଠାରୁ ମୁହିଁ ହୁଅନ୍ତେ ବାହାର
ଇନ୍ଦ୍ରହିଁ ଆସି କହିଲେ ମୋହର ସ୍ଥିମୁର ।
ଅଗ୍ନିକି ଦେଲୁ ଖାଣ୍ଡବ ନାମେ ମୋର ବନ
ଏବେ ମୁଁ ଯାହା କହଇ ଶୁଣରେ ନନ୍ଦନ ।
ତିନିଯୁଗ ହେଲା ବୃକ୍ଷ ମାଗି ନ ପାଇଲା
ତୋତେ ମାଗି ଏବେ ତୋଟାଯାକ ସେ ଭକ୍ଷିଲା
ଅମର ମହାଔଷଧିମାନେ ଥିଲେ ତହିଁ
ସହସ୍ର ଊନବିଂଶତି ଯୋଜନ ଅଟଇ ।
ଜୀବଜନ୍ତୁ ଆଦି ଥିଲେ ସେ ତୋଟାରେ ଯେତେ
ସବୁ ସେ ଖାଇଲା ଲୋଭକରି କୋପଚିତ୍ତେ
ତୋହଯୋଗୁଁ ବାବୁ ମୋର ରାଜ୍ୟ ହେଲା ହତ,
ହତ୍ୟାର କାରଣ ତୁହି ହେଲୁ ବୀରପାର୍ଥ ।
ଏମନ୍ତ କରି ପୁତ୍ର ମୁଁ ଅରଜିଲି ତୋତେ
ଲକ୍ଷେ ବରଷ ଆରୋପ କଲି ଯହିଁ ଯେତେ ।
ତୁ ତାହା ତିନିବରଷ ମଧ୍ୟେ ହତ କଲୁ
ସାକ୍ଷାତରେ ପୁତ୍ର ତୁହି ଏଡ଼େ କଷ୍ଟ ଦେଲୁ ।

ଏବେ ଯେବେ ତୋଟାଗୋଟି ଦେଇପାରୁ କର
ତେବେ ସିନା ସବୁ ଧର୍ମ ରହିବ ତୋହର ।
ପିତାର ବଚନେ ମନ୍ତ୍ର ସୁମରିଲି ମୁହିଁ
ଅଗ୍ନିଙ୍କର କଥା ମାନ ମଧ୍ୟରେ ଚେତାଇ ।
ମନେ ବିଚାରିଲି ଅଗ୍ନି କହିଛନ୍ତି ମୋତେ
ବଞ୍ଚନ୍ତି ମଲା ପ୍ରାଣୀଏ ଭସ୍ମକୁ ପକାନ୍ତେ ।
ପରୀକ୍ଷା କରିବା ଆମ୍ଭେ ଏହିଠାରେ ଜାଣ
ବୋଇଲି ଯେ ସୁଖେ ତୁମ୍ଭେ ଯାଅ ସୁରଗଣ
କାଲି ଦେଖିବ ମୋ ପିତା ଯେନ ସୁରଗଣ
ଶୁଣିଣ ସେ ଆଖଣ୍ଡଳ ହେଲେ ତୋଷମନ ।
ପିତାଙ୍କୁ ପ୍ରବୋଧି ତହିଁ ବାହାରିଲି ମୁହିଁ
ତୋଟାର ମଧ୍ୟେ ପ୍ରବେଶ ହୋଇଲଇଁ ଯାଇଁ ।
ତୂଣୀରରୁ କାଢ଼ିଲି ଯେ ଜୀବନ୍ୟାସ ଶର
ଭସ୍ମ ବୋଳିଲି ନେଇଣ ନାରାଚ ମୂନର ।
ମନ୍ତ୍ର ସୁମରି ବସାଇ ନାରାଚକୁ ଗୁଣେ
ବୁଝାଇ କହିଲି ତାକୁ ତଆର ଏସନେ ।
ହେ ଶସ୍ତ୍ରରାଜ ତୁ ଯାଇ ତୋଟାରେ ପଡ଼ିବୁ
ଯହିଁ ଯେତେ ବୃକ୍ଷ ତହିଁ ସବୁ ଲଗାଇବୁ ।
ଶତୁ ଅଧିକ ହୋଇବ ପୁଣି ଗୁଣ ଯେତେ
ଦେବତାମାନେ ଦେଖିବେ ଆସି ଦୃଷ୍ଟି ପଥେ
ଏତେ ବୋଲିଣ କରରୁ ଛାଡ଼ନ୍ତେ ମୁଁ ଶର
ଚଳିଲା ନାରାଚ ଗୋଟି ଯୋଟିଲା ଶିଖର ।
ସବୁଠାରେ ଲାଗିଲା ସେ କାହୁଁ ନ ଛାଡ଼ିଲା
ଗଛୁଁ ଶତଗୁଣେ ତୋଟା ଗୋଟି ଉପୁଜିଲା ।
ଜୀବଜନ୍ତୁ ବୃକ୍ଷ ଆଦି ଯହିଁ ଯେତେ ଥିଲେ
ବିଭୂତି ପଡ଼ନ୍ତେ ତହିଁ ସବେ ଉପୁଜିଲେ ।
ଉପୁଜାଇ ସେ ନାରାଚ ତୂଣୀରେ ପ୍ରବେଶ
ପରୀକ୍ଷା କରିଣ ମୁହିଁ ହୋଇଲି ହରଷ ।
ସ୍ୱର୍ଗକୁ ନ ଯାଇ ତହୁଁ ଗଲି ବନଘୋର
ନିଶ୍ଚିନ୍ତେ ଭ୍ରମିଲି ମୁହିଁ ଅଟବୀ ମଧ୍ୟର ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ମନେ ତାହା ସୁମରିଲେ ବାସବ ସନ୍ତତି ।
ସେହି ଜୀବନ୍ୟାସ ଶର ତୂଣୀରୁ କାଢ଼ିଲେ
ସୋଦର ନିମନ୍ତେ ସେହି ନାରାଚ ଯେନଲେ
ଧନୁରେ ଗୁଣ ଦେଇଣ ତହିଁ ବସାଇଲେ
ନାରାଚର କର୍ଣ୍ଣେ ସେହି ମନ୍ତ୍ରକୁ କହିଲେ ।

ବୋଇଲେକ ହାତୀ ରଥୀ ଅଶ୍ୱହିଁ ପଦାତି
ଯେତେ ବାଦ୍ୟକାର ମତ୍ତ ଯହିଁ ପଡ଼ନ୍ତନ୍ତି ।
ସମସ୍ତେ ବର୍ତ୍ତିବେ ତୋର ଲାଗିକରି ମୂନ
ଏତେକ କହି ନାରାଚ ବନ୍ଧିଲେ ଅର୍ଜ୍ଜୁନ ।
ମୂହୂର୍ତ୍ତିମାନେ ଲାଗିଲେ ଯାଇ ସବୁଠାରେ
ଲେଉଟି ସେ ଶସ୍ତ୍ର ଆସି ପଶିଲା ତୂଣୀରେ ।
ନିଦ୍ରାରୁ ଉଠିବା ପ୍ରାୟେ ଶୋଇଥିବା ପ୍ରାଣୀ
ଉଠିଲେକ କଉରବେ ତେସନେକ ଜାଣି ।
ପ୍ରତିଜ୍ଞା କରି ଡାକନ୍ତି ବେଗେ ମାର ମାର
ଉଚ୍ଚେ ଡାକନ୍ତି କେଣେ ଭୁ ଗଲୁଁରେ ଅସୁର ।
ହସିଣ କହନ୍ତି ଗଙ୍ଗା ଦେବୀଙ୍କର ସୁତ
ତୁମ୍ଭର କି ଭେଟ ଆଉ ହୋଇବ ଦଇତ୍ୟ ।
ସର୍ବେ ଏକତ୍ରୁଣ୍ଡ ହୋଇ ତହୁଁ ଗଲେ ଚଳି
ନୃପତି ଛାମୁରେ ଯାଇଁ ଭୀଷ୍ମ ଦ୍ରୋଣ ମିଳି ।
ଏମନ୍ତ ବେଳେ ପାଣ୍ଡବ ବୀର ପାଞ୍ଚଭାଇ
ଭୀଷ୍ମ ଭୂରିଶ୍ରବା ପାଦେ ପ୍ରଣିପାତ ହୋଇ ।
ଦ୍ରୋଣ ଶଲ୍ୟ ଅଶ୍ୱତ୍ଥାମା ବାହ୍ଲୀକ ଯେ କର୍ଣ୍ଣ
ସୋମଦତ୍ତ କୃତବର୍ମା ନୃପ ଦୁର୍ଯ୍ୟୋଧନ ।
ଯାହାଙ୍କୁ ଯେହ୍ନ ପ୍ରଣାମ କଲେ ଯେଝାମତେ
ଏକା ଦୁର୍ଯ୍ୟୋଧନ ଛାଡ଼ି ଆବରହିଁ ଯେତେ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ପାଦେ ପ୍ରଣମିଲେ
ଶିରେ କର ଦେଇ ତାଙ୍କ ଆଗେ ଉଭା ହେଲେ ।
ପଚାରଇ ନରପତି ଥିଲ ତୁମ୍ଭେ କାହିଁ
ଏଥକୁ ଅଇଲ ତୁମ୍ଭେ କମର୍ଥେ ବୋଲଇଁ ।
ବୃକୋଦର ବୋଇଲା ଏ ସାରଥିକ ପୁଛ
କହି ତୁନ ହୋଇଲା ସେ ପବନର ବତ୍ସ ।
ଏହା ଶୁଣି ସାରଥିକ ବୁଝିଲ ସେ ସ୍ୱୟେ
କହ ହୋ ସାରଥି ଯାହା ଏ ମାରୁତି କହେ ।
ଶୁଣି ସାରଥି ଯୋଡ଼ିଲା ଶିରେ ଦେଇ କର
ଅବଧାନ କର ଶୁଣ ନୃପତି ଈଶ୍ୱର ।
ଯେଉଁ ଅସୁରକୁ ବାଟେ ଭେଟିଲ ନୃପତି
ଘୋରଯୁଦ୍ଧେ ସମସ୍ତଙ୍କୁ ମାରଇ ସେ ଧାତି ।
ଜାଣିଥିବ ଯେହ୍ନେ ଯୁଦ୍ଧହେଲା ନରନାହା
ସଂଗ୍ରାମରେ ପଡ଼ିଲୁ ତୁ ହୋଇ ନିରୁତ୍ସାହା ।
ଗୋଟିଏ ଯେ ନ ବର୍ତ୍ତିଲ ପଡ଼ିଲ ସମସ୍ତେ
ଜୟକରି ବାହୁଡ଼ିଲ ଏଠାରୁ ଦଇତେ ।

ମଣିମୟ ମୁକୁଟ ଯେ ହାର ରତ୍ନାବଳୀ
ଏକାନ୍ତ ଘେନି ଅସୁର ଗଲା ବେଗେ ଚଳି ।
ଦେଖିଣ ତରସ୍ତ ଦେବ ହୋଇଲଇଁ ମୁହିଁ
ବୋଇଲି ମୁଁ ହସ୍ତିନାରେ କହିବି ଯାଇ ।
ରଥ ଚଢ଼ି ତହୁଁ ମୁହିଁ କଲଇଁ ଗମନ
ପଥରେ ଭେଟିଲି ଦେବ ମାଦ୍ରୀର ନନ୍ଦନ ।
ଚିନ୍ତାଭରେ ମୁଁ ଯେ ତାକୁ ନ ପାରିଲି ଜାଣି
ମୋତେ ସେ ନକୁଳ ବୀର ତତକ୍ଷଣେ ଚିହ୍ନି ।
ପଚାରିଲେ କି ହୋ ତୁହି ମଳୟ ସାରଥି
କେଣିକି ତୁ ଯାଇଥିଲୁ ଶୂନ୍ୟ ରଥୀ ସାଥି ।
ତେତେବେଳେ ଚିହ୍ନିଲି ଏ ଅଟନ୍ତି ନକୁଳ
ରଥରୁ ମୁଁ ଡେଇଁଯାଇଁ ପଡ଼ି ପାଦତଳ ।
ସଂଗ୍ରାମର ବାରତା ଯେ କହିଲି ସମସ୍ତ
ଶୁଣିଣ କୋପକଲେ ସେ ମାଦ୍ରୀଦେବୀ ସୁତ ।
ମୋତେ ବୋଇଲେ କହିଅ ବାଟ ବେଗେ ତୁହି
କେବଣ ବାଟେ ଦାନବ ଯାଉଅଛି କାହିଁ ।
ରଥ ଛାଡ଼ି ଦେବ ମୁହିଁ କଢ଼ାଇଲି ପଥ
ଆରଣ୍ଡକ ପରବତେ ଭେଟିଲେ ଦଇତ୍ୟ ।
ଯୋଜନ ଦୂରୁ ଦିଶିଲା ଦଇତ୍ୟର ଦେହ
ରହ ରହ ବୋଲି ଡାକ ଦେଲେ ମାଦ୍ରୀପୁଅ
ରହ ରହ ବୋଲି ବୀରେ ଉଚ୍ଚେ ଡାକଦେଇ
ପାଲଟି ରହିଲା ସେହି ଦୈତ୍ୟକୁଳସାଇଁ ।
ନକୁଳ ଭେଟ ହୋଇଲା ଅସୁର ସଙ୍ଗତେ
ପର୍ବତ ନିକଟେ ଶ୍ରେଷ୍ଠ ପର୍ବତ ଯେମନ୍ତେ ।
ଯେତେ ଯୁଦ୍ଧ ହେଲା ତହିଁ ଦେବ ଅପ୍ରମିତ
ବଚନରେ କହିବାକୁ ନୁହଇ ସମର୍ଥ ।
ତେରଦିନଯାଏ ତହିଁ ହେଲା ଘୋରରଣ
କେହି କାହାର ନୋହିଲା ତହିଁ ହାର ଜଣ ।
ଜୟ ନ ଦେଖି ବାରୁଣାବନ୍ତେ ଗଲା ଧାଇଁ
ଶୁଣି ଧାଇଁଲେ ଠାକୁରେ ଘେନି ତିନି ଭାଇ ।
ମୁହୂର୍ତ୍ତିକେ ସେଠାବନେ ପ୍ରବେଶିଲେ ଯାଇ
ଯୁଦ୍ଧ ଦେଖି ତା କନ୍ଥକ ନ ଗଲେ ଏ କେହି ।
ମହାଘୋର ଯୁଦ୍ଧ ପୁଣି ଦେଖନ୍ତି ତାଙ୍କର
ମନରଇ ଦାନବ ଯେ ଅଟଇ ଅମର ।
ସହଦେବ ମନ୍ତ୍ରୀକି ଯେ ଗୁଣିଂ ପଚାରିଲେ
ଦଇତ୍ୟର ମୃତ୍ୟୁ ଏଥେ ଅଛି କି ବୋଇଲେ ।

ମନ୍ତ୍ରୀବର କହନ୍ତେ ଯେ ତାହାର ବ୍ୟବସ୍ଥା
ଯେଉଁରୂପେ ଦାନବର ମୃତ୍ୟୁଗତ ପନ୍ଥା ।
ତାର ମୃତ୍ୟୁଭେଦ ଜାଣି ସେ ନକୁଳ ବୀର
ମୁଥେ ମାରନ୍ତେ ଦୈତ୍ୟର କମ୍ପିଲ ଶରୀର ।
ଉତ୍ଥାନ କରି କଟିରେ ମାଡ଼ିବସି ତାର
ବାମପାଦରେ କେଶକୁ ମାଡ଼ିଲେ ଆବର ।
ଗ୍ରୀବା ବାମପାଦ ତାର ଓଠାରେ ଆଣିଲେ
ମୁଖେ ବାମପାଦ ଜାଣି ଅଙ୍ଗୁଳି ଭରିଲେ ।
ତତକ୍ଷଣେ ଅସୁରର ପ୍ରାଣ ଛାଡ଼ିଗଲେ
ସ୍ୱର୍ଗପୁର ଦେବତାଏ ଜୟ ଜୟ କଲେ ।
ଭୂଣ୍ଡେ ଅଙ୍ଗୁଳି ପଶନ୍ତେ ଛାଡ଼ିଗଲା ପ୍ରାଣ
ମେରୁ ମନ୍ଦର ଅଟଇ ସେହି ବଡ଼ ଠାଣ ।
ଦଇତର ମରଣକୁ ଦେବତାଏ ଚାହିଁ
ପୁଷ୍ପବୃଷ୍ଟି କଲେ ଶିରେ ଶଚୀଦେବୀ ସାଇଁ ।
ଦଇତ୍ୟ ମାରି ମୁକୁଟ କୁଣ୍ଡଳ ଆଣିଲେ
ରତ୍ନାବଳୀ ଗଦା ତୋର ପର୍ବତେ ପାଇଲେ ।
ଭୂମ୍ଭର ମରଣ ବାଣୀ ଶୁଣିଲେକ ଯହୁଁ
ଅନେକ ରୋଦନ କଲେ ଠାକୁର ଯେ ତହୁଁ
ଶୋକଭର ହୋଇ ତହୁଁ ଠାକୁର ଅଇଲେ
ସକଳ ସଇନ୍ୟ ପଡ଼ିଥିବାର ଦେଖିଲେ ।
ଭାଇ ଭାଇ ବୋଲି ତଳେ ପଡ଼ିଲେକ ତଳି
ସହଦେବ ମନ୍ତ୍ରୀ ତାଙ୍କୁ ଧଇଲେକ ତୋଳି ।
ଅର୍ଜ୍ଜୁନେ ଚାହିଁ ବହୁତ ରୋଦନ ସେ କଲେ
ଦେଖ ତୋହର ସୋଦରମାନେ ନାଶଗଲେ
ଏହାଙ୍କ ନିଧନ ଯେବେ ଶୁଣେ ଧୃତରାଷ୍ଟ୍ର
କେ ସହି ପାରିବଟିକ ତାହାର ଅରିଷ୍ଟ ।
ତାହାଙ୍କ ବିକଳ ଦେଖି ମୁହିଁ ନ ବଞ୍ଚିବି
ଏହାଙ୍କୁ ଛାଡ଼ି କେମନ୍ତେ ଘରକୁ ମୁଁ ଯିବି ।
ସୋଦର ଭାଇ ମୋହର ଇଷ୍ଟବନ୍ଧୁ ମଲେ
ଏହାଙ୍କ ନିଧନେ ମୁହିଁ ବଞ୍ଚିବିକ ଭଲେ ।
ଏତେ ବୋଲି ଦେବ ପଡ଼ିଗଲେ ମୂର୍ଚ୍ଛାଯାଇ
ଅର୍ଜ୍ଜୁନକୁ ଅନେକ ସେ କହିଲେ ବନସ୍ତୀ ।
ଅର୍ଜ୍ଜୁନ ବୋଇଲେ ଦଣ୍ଡେ ଧଇର୍ଯ୍ୟ ଧରିବା
ଆମ୍ଭର ଯେ ଏକବୁଦ୍ଧି ଅଛଇ କରିବା ।
ଏତେ ବୋଲି ଦେବ ଘେନି ଅମର ଔଷଧି
ଖାଣ୍ଡବ ଦହନେ ଅଗ୍ନି ଦେଇଥିଲେ ସିଦ୍ଧି ।

ସେଭସ୍ମ ଅର୍ଜ୍ଜୁନ ଶରମୁନେ ଲଗାଇଲେ
ମନ୍ତ୍ର ପଢ଼ି ସେ ନାରାଚ ଗୋଟି ଛାଡ଼ିଦେଲେ
ଯେତେ ହାସ୍ତୀ ରଥୀ ଅଶ୍ୱ ନୃପତି ପଦାତି
ସୈନ୍ୟ ସେନାପତି ଅଙ୍ଗେ ସବୁରି ଲଗାନ୍ତି ।
ସେ ବିଭୂତି ଲାଗି ଭୂମ୍ଭେ ପାଇଲ ଜୀବନ
ଏ କଥାହିଁ ତଥ୍ୟ ଦେବ ଶୁଣ ସାବଧାନ ।
ଶୁଣିଣ ହରଷ ହେଲେ ଭୀଷ୍ମ ଅଶ୍ୱତ୍ଥାମା
ଦ୍ରୋଣ କୃପ ଭୂରିଶ୍ରବା ଶଲ୍ୟ କୃତବର୍ମ୍ମା ।
ଭୀଷ୍ମ ଦ୍ରୋଣ ବୋଲନ୍ତି ରେ ସାଧୁ ଧନଞ୍ଜୟେ
ଏ ମରଣୁ ଉଦ୍ଧରିଲୁ ତୋହର ଉପାୟେ ।
ସାଧୁ ପାଣ୍ଡବେ ବୋଲି ସେ ଉପୁଜିଲା ଧ୍ୱନି
ସମସ୍ତେ ବୋଇଲେ ଯହୁଁ ଧନ୍ୟ ଧନ୍ୟ ବାଣୀ
ଶ୍ୱେତହସ୍ତୀ ଉପରେ ସେ ବିଜେ ଧର୍ମ୍ମସୁତ
ଆବର ତାହାଙ୍କ ସଙ୍ଗେ ଘେନି ଚାରିଭ୍ରାତ ।
ଭୀଷ୍ମ କର୍ଣ୍ଣ ଆଦିଙ୍କୁ ଯେ କରି ସମ୍ବୋଧନ
ଆପଣାର ଭୁବନକୁ ବିଜେ ଧର୍ମ୍ମନାନ ।
ଦୁର୍ଯ୍ୟୋଧନ ନିଜ ରଥବରେ ଆରୋହିଲା
ସମଦଣ୍ଡ ଘେନି ତହୁଁ ରାଜା ବିଜେ କଲା ।
ହସ୍ତିନା ନଗର ମଧ୍ୟେ ହୋଇଲାକ ଯାଇ
ସଞ୍ଜୟ ଯେ ଧୃତରାଷ୍ଟ୍ର ରାଜା ଆଗେ କହି ।
ଶୁଣ ସାବଧାନେ ଭୁ ଭୁହୋ ନୃପତି ଶେଖର
ଦିଗବିଜେ କରିଗଲେ ଭୂମ୍ଭର କୁମର ।
ସଙ୍ଗତରେ ଭୀଷ୍ମ ଦ୍ରୋଣ ଆଦି ଭାଇମାନେ
ଅନେକ ସମ୍ଭାର ସାଜି ସମଦଣ୍ଡ ସୈନ୍ୟେ ।
କେତେହେଁ ଦୂର ଗମନ କରି ସର୍ବେ ଗଲେ
ବାଟରେ ଯାଉଁ ଦନୁଜ ଗୋଟିଏ ଦେଖିଲେ
ମହାପ୍ରତାପୀ ଅଟଇ ଦୈତ୍ୟକୁଳପତି
ଗୋଳଯୁଦ୍ଧ କରି ସେହୁ ମାଇଲା ସବୁନ୍ତି ।
ସାରଥି କହନ୍ତେ ବୀର ନକୁଳ ଯେ ଗଲା
ଦୈତ୍ୟର ସଙ୍ଗେ ଅନେକ ଦିନ ଯୁଦ୍ଧ କଲା ।
ପୁଣି ସାରଥି କହନ୍ତେ ଶୁଣି ଧର୍ମ୍ମସୁତ
ତିନିଭାଇ ସଙ୍ଗେ ଘେନି ହେଲେ ଉପଗତ ।
ସହଦେବଙ୍କୁ ପଶ୍ଚିରେ ମୃତ୍ୟୁ ତାର ଜାଣି
ମାଇଲା ତାକୁ ନକୁଳ ବୀର ଚୂଡ଼ାମଣି ।
ତହୁଁ ଆସି ବାଟେ ଦୁର୍ଯ୍ୟୋଧନକୁ ଦେଖିଲେ
ଯୁଧିଷ୍ଠି ବ୍ୟାକୁଳ ହୋଇ ବହୁଶୋକ କଲେ

ଅର୍ଜ୍ଜୁନ ସେ ଶ୍ରୀବନ୍ୟାସ ଶରଳୁ ପେଶନ୍ତେ
ସମସ୍ତେ ବଞ୍ଚିଲେ ପୂର୍ବେ ବଳ ଥିଲେ ଯେତେ
ଏବେ ଆସି ହସ୍ତିନାରେ ହୋଇଲେ ପ୍ରବେଶ
ଯୁଧିଷ୍ଠି ବାରୁଣା ଗଲେ ତାଙ୍କ ନିଜ ବାସ ।
ଶୁଣି ରାଜା ଧୃତରାଷ୍ଟ୍ର ବହୁତ ବିସ୍ମୟେ
ସବୁଠାରେ ରଖନ୍ତି ତ ପଣ୍ଡୁ ପଞ୍ଚପୋଏ ।
ଏଥୁ ଅନନ୍ତରେ ଯାଇ ଦୁର୍ଯ୍ୟୋଧନ ବୀର
ପ୍ରବେଶ ହୋଇଲା ଆସି ଆପଣା ନବର ।
ଯେ ବିଧିରେ ନିତ୍ୟକର୍ମ ସାରିଣ ନୃପତି
ଆସ୍ଥାନ ଉପରେ ଆସି ବିଜେ କଲା ଧାଡି ।
ଭୀଷ୍ମ କର୍ଣ୍ଣ ଭୂରିଶ୍ରବା ବାହ୍ଲିକ ବିକର୍ଣ୍ଣ
ଦ୍ରୋଣ କୃପ ଅଶ୍ୱତ୍ଥାମା ବସନ୍ତେ ଆସ୍ଥାନ ।
ସମାରୋହରେ ଆସ୍ଥାନ କରି କୁରୁସାଇଁ
ସଞ୍ଜୟ ଯେ ଧୃତରାଷ୍ଟ୍ର ମିଳିଲେକ ଯାଇ ।
ଦେଖି ତାଙ୍କୁ ଯୋଦ୍ଧାମାନେ ଓଳଗିଲେ ଧାଡି
ଶତେକ ପୁତ୍ର ଆସିଣ ଦର୍ଶନ କରନ୍ତି ।
ଭୀଷ୍ମ ଯେ କହିଲେ ତହିଁ ସକଳ ବୃତ୍ତାନ୍ତ
ଶୁଣିଣ ସାନନ୍ଦ ହେଲେ ରାଜା କୁରୁନାଥ ।
ଏଥୁଅନ୍ତେ ସେ ଦିନର ସଭା ମଣ୍ଡଳିଲା
ଦୁର୍ଯ୍ୟୋଧନ ଯେ ଭିତର ପୁରେ ବିଜେ କଲା ।
ଯେ ଯାହାର ପୁରେ ଯାଇ ହୋଇଲେ ପ୍ରବେଶ
ଶ୍ରୀଜଗନ୍ନାଥ ଶରଣ ଶ୍ରୀଶାରଳାଦାସ ।
ଜୟ ଜୟ ଜଗନ୍ନାଥ ଜୟଦେବ ହରି
ଶ୍ରୀଜଗନ୍ନାଥ ସୁମରି ନରେ ଯିବ ତରି ।
ଜଗନ୍ନାଥ ବନ୍ଧୁ ମୋର ଜଗନ୍ନାଥ ପିତା
ଶ୍ରୀଜଗନ୍ନାଥ ମୋହର ଯେ ଇଷ୍ଟଦେବତା ।
ଶ୍ରୀଜଗନ୍ନାଥ ସୁମରି ଜୀବ ଥିବାଯାଏ
ଶାରଳାଦାସ ଶରଣ ଜଗନ୍ନାଥ ପାଏ ।
ଝଙ୍କଡ଼ପୁର ବସିନୀ ଶ୍ରୀଶାରଳା ଚଣ୍ଡୀ
ଶ୍ରୀମୁଖ ତୋହର ଶୋଭା ସିନ୍ଦୂରରେ ମଣ୍ଡି ।
ଦ୍ୱାପରଯୁଗେ ହିଙ୍ଗୁଳା ନାମେ ଉତପତ୍ତି
ସେ ରୂପକୁ ଚିହ୍ନାକଲେ ଯୁଧିଷ୍ଠି ନୃପତି ।
କଳିଯୁଗେ ମାଗୋ ତୋର ଦେଖାଇଲୁ କାୟେ
ଶ୍ରୀଶାରଳା ଚଣ୍ଡୀ ନାମ ବହୁ ମହାମାୟେ ।
ଜୟ ଦେବୀ ତୁ ଅନାଦି ଅଟୁ ସିଦ୍ଧକାୟେ
ଖଟନ୍ତି ତେତିଶକୋଟି ଦେବେ ତୋରପାୟେ
ମାଗୋ ଏହା ଲେଖିବାକୁ ଗୋଚର କମୋତେ
ଶାରଳାଦେବୀ ପ୍ରସନ୍ନ ହୁଅ ବାରେ ମୋତେ
ଶ୍ରୀଅନାଦି ଦେବୀର ମୁଁ ଖଟଇ ଚରଣେ
ଯେ ଗ୍ରନ୍ଥ ଶୁଣିଲେ ମୋକ୍ଷ ହୋଇଯିବେ ଜନେ
ଶ୍ରୀସିଦ୍ଧ ଶାରଳା ଦେବୀ ଚରଣେ ଦଇନୀ
ଯମଦଣ୍ଡ ଖଣ୍ଡିବାକୁ ନମେ ଶୁଦ୍ରମୁନି ।
ଜୟ ତୁ ସଦାଶିବ ହେ ପରମ ଈଶ୍ୱର
ତୁହି ସିନା ଏ ସକଳ ଜଗତଠାକୁର ।
ଅର୍ଦ୍ଧାଙ୍ଗେ ଅମ୍ବିକା ତୋର ଶୋହେ ତ୍ରିଲୋଚନ
ଅର୍ଦ୍ଧଚନ୍ଦ୍ର ମଣ୍ଡଳ ତୁ ଦିଶ ନିରଞ୍ଜନ ।
ବୃଷଭ ପିଠିରେ ଦେବ ବିଜୟ ପ୍ରତ୍ୟକ୍ଷେ
ନବଲକ୍ଷ ଡମ୍ବରୁ ତୋ ବାଜେ ଅନ୍ତରୀକ୍ଷେ ।
କଣ୍ଠରେ ଗରଳ ଭସ୍ମ ବିଲେପନ କାୟ
ଅନ୍ଧ କୁଷ୍ଠ ଦାରିଦ୍ର୍ୟ ଯା ଦରଶନେ କ୍ଷୟ ।
ଅନଳ ନୟନେ ଯାର କାମଦେବ ଜାଳି
ତ୍ରିବେଣୀ ସଙ୍ଗମେ ଗଙ୍ଗା ଜଟାଜୁଟେ ଖେଳି
ଶ୍ରୀବିଶ୍ୱନାଥ ଚରଣେ ଅଟଇ ମୁଁ ଦାସ
ଶତସହସ୍ର ପ୍ରଣାମ ଶ୍ରୀଶାରଳାଦାସ ।

---

## ନାରକାସୁରବଧ ଓ ପାରିଜାତ ହରଣ

ବୈବସ୍ୱତ ମନୁ କଲେ ଅଗସ୍ତିଙ୍କୁ ପୂଜା
ଧୂପ ଦୀପ ଦେଇ ପୂଜା କରେ ମହାରାଜା ।
ଆଦିପର୍ବ କହିଲେ ଯେ ଦିବ୍ୟରସ ବାଣୀ
ତୃପତ ହେଲା ମୋ ମନ ତବ ମୁଖୁଁ ଶୁଣି ।
କୁଣ୍ଡଳୀ ବଧ ଅନ୍ତେ କି ଚରିତ ହୋଇବ
ତହିଁର ବିଧାନ ମୋତେ ବୁଝାଇ କହିବ ।
ଅଗସ୍ତି କହନ୍ତି ତୁମ୍ଭେ ବଡ଼ ଭାଗ୍ୟବନ୍ତ
ଶୁଣ ସାବଧାନେ ମଧ୍ୟପର୍ବର ଚରିତ ।
ନାରକାସୁରକୁ ବଧ କରି ନାରାୟଣ
ତହୁଁ ହରିଲେ ସେ ପାରିଜାତ ପୁଷ୍ପ ପୁଣ ।
ତହିଁର ପ୍ରସ୍ତାବ ତୋତେ କହିବି ନୃପତି
ହେତୁକରି ଶୁଣ ହେଲା ଯେସନେକ ରୀତି ।
ନାରକା ନାମରେ ଥିଲା ଏକଇ ଦଇତ୍ୟ
ସେ ଦୈତ୍ୟର ବଳବୀର୍ଯ୍ୟ ଅଟେ ଅପ୍ରମିତ ।
ସ୍ୱର୍ଗେ ପଶି ସବୁ ଭଗ୍ନ କରଇ ଅସୁର
ଡରିଲେ ତା ତେଜ ଦେଖି ଦେବଆଖଣ୍ଡଳ ।

ସମସ୍ତ ଦେବଙ୍କୁ ନେଇ କରି ପୁରନ୍ଦର
କ୍ଷଣାକାଳେ ମିଳିଲେ ସେ ଦ୍ୱାରକା ନଗର ।
ସତ୍ୟଭାମାଙ୍କର ପୁରେ ବସେ ଭଗବାନ
ଯାଇଣ ଇନ୍ଦ୍ର ଦେବତା କଲେ ଦରଶନ ।
ଶ୍ରୀଚରଣେ ନଉସ୍ଥଳ ଶିରେ ଦେଇ କର
ନମସ୍ତେ ଜଗତବନ୍ଧୁ ଜଗତ ଆଧାର ।
ନମସ୍ତେ ଶ୍ରୀକୃଷ୍ଣରୂପ ପୃଥ୍ୱୀ ଭାରହର
ଅସୁର ନାଶନେ ଦେବ ତୋର ଅବତାର ।
କଂସକେଶୀ ନାଶକଲ ଅଷ୍ଟମଲ୍ଲ ମୁରେ
ମୁଷ୍ଟିକାର ଶିର ହର ତୁମ୍ଭେ ଭୁଜବଳେ ।
ଆମ୍ଭେ ଦେବଗଣ ଏବେ ଶରଣ ତୋହର
ଦୁଃଖ ଦିଅଇ ଆମ୍ଭଙ୍କୁ ନାରକା ଅସୁର ।
ସକଳ ଦେବତା ମିଳି ଏକମୁଖ ହୋଇ
ନିବେଦନ କରନ୍ତି ସର୍ବେ ପ୍ରଭୁ ମୁଖ ଚାହିଁ ।
ପୁଣି ପଚାରନ୍ତି ତାଙ୍କୁ କମଳନୟନ
ଦେବତାଏ ଶୋଚ କର କେବଣ କାରଣ ।
ସେ ଅସୁର ସେ କାହାର ଅଂଶେ ଜାତହୋଇ
କେତେ ବଳବନ୍ତ ସେହୁ ଗର୍ବିଷ୍ଠ ଅଟଇ ।
କେଉଁ ଦେଶ ଅଟଇ ଯେ ତାର ବାସସ୍ଥାନ
କେତେକ ବଳ ଆବର କେତେ ତାର ସୈନ୍ୟ
ଶୁଣି ପୁରନ୍ଦର କହେ ଯୋଡ଼ି ବେନିକର
ଅବଧାନ ହେଉ ଦେବ ବ୍ରହ୍ମାଣ୍ଡ ଈଶ୍ୱର ।
ସତ୍ୟଯୁଗରେ ଦକାର ନାମେ ସମ୍ବତ୍ସର
ଚଇତ ଶୁକ୍ଳ ଅଷ୍ଟମୀ ତିଥି ଗୁରୁବାର ।
ସେଦିନ ସ୍ୱର୍ଗଗନ୍ଧର୍ବୀ ମେନକା ଅପ୍ସରୀ
ଚନ୍ଦ୍ରକ୍ଷା ନଦୀକି ସେହୁ ଗଲା ସ୍ନାନ କରି ।
ବଶିଷ୍ଠ ନାମେଣ ଥିଲେ ଏକ ମହାଋଷି
ତପ କରୁଥିଲେ ସେହି ନଦୀତୀରେ ବସି ।
ଅପସରା ତାର ସ୍ନାନ ସାରିଲା ବହନ
ସଙ୍ଗତରେ ଥିଲେ ତାର ସହଚରୀ ଗଣ ।
ଅପୂର୍ବ ସୁନ୍ଦରୀ ସେ ସ୍ୱର୍ଗ ଅପସରୀ
ତାଙ୍କୁ ଦେଖି ମୁନି ହେଲେ କାମ ବାଣେ ଘାରି
ଅସାଷ୍ଟମ ହୋଇ ମୁନି ପଡ଼ିଲେ ସେଠାରେ
ରେତ ସ୍ଖଳିତ ହୋଇଲା ପୃଥିବୀ ଉପରେ
ଏମନ୍ତ ଦେଖିଲେ ଅପସର ମୁନିଗୋଟି
କୋଳକରି ତାଙ୍କୁ ଯାଇଁ ଧଇଲା ସାଉଁଟି ।

ମୁଖରେ ଜଳ ସିଞ୍ଚିଣ ଚେତା ତାଙ୍କୁ କଲା
ଅଙ୍ଗ ସମର୍ପଣ କରି ରତିଦାନ ଦେଲା ।
ଋଷିର ସଙ୍ଗେ ରହିଲା ମେନକା ଅପ୍ସରୀ
ତିନି ଦିନ ତିନିରାତି ସୁରତ ନ ସରି ।
ଅପସରୀ ସଙ୍ଗେ ଯେଉଁ ସହଚରୀ ଥିଲେ
ନିରାଶ ହୋଇ ବାହୁଡ଼ି ସ୍ୱର୍ଗପୁର ଗଲେ ।
ରେତ ସ୍ଖଳିତ ହୋଇଲା ସନ୍ଧ୍ୟା ସମୟରେ
ଯାଇଣ ପଡ଼ିଲା ପୁଣି ଭୂମିର ଉପରେ ।
ସେ ରେତୁଁ ପୁରୁଷ ଏକ ହୋଇଲାକ ଜାତ
ବଡେକ ଗୁଡ଼ିଲା ସେହୁ କମ୍ପିଲା ଜଗତ ।
ସୁରତ ଶେଷେ ମେନକା ସ୍ୱର୍ଗପୁରେ ଗଲା
ପୁନି ସେହି ମହାଋଷି ବନରେ ରହିଲା ।
ପୁତ୍ରକୁ ବୋଲନ୍ତି ଋଷି ଶୁଣରେ କୁମର
ନବଯୁବା ସ୍ୱରୂପ ତୁ ଏହିକ୍ଷଣି ଧର ।
ଋଷିଙ୍କର ବଚନ ସେ ଅନ୍ୟଥା ନୋହିଲା
ତତ୍କ୍ଷଣେ କୁମରମଣି ଯୁବକ ହୋଇଲା ।
ସନ୍ଧ୍ୟା ସମୟରେ ସେହୁଁ ହୋଇଲାକ ଜାତ
ତେଣୁ ରାକ୍ଷସ ବୁଦ୍ଧି ସେ ଧଇଲା ବାଳୁତ ।
କରଯୋଡ଼ି ମୁନିଙ୍କି ସେ ପ୍ରଣିପାତ କଲା
ଉତ୍ତମ ସ୍ଥାନରେ ମୋତେ ରଖମି ବୋଇଲା ।
ତାହା ଶୁଣି ମୁନିବର ସନ୍ତୋଷ ହୋଇଲେ
କୋଶଳ ଦ୍ୱୀପରେ ନେଇ ତାଙ୍କୁ ଠାବଦେଲେ
ଚୌବାଣୀ ସସ୍ର ଯୋଜନ ଦ୍ୱୀପ ଆୟତନ
ପାତେଶ ସ୍ରାସ୍ଥ ପର୍ବତ ରହିଛି ବେଢ଼ିଣ ।
ତହିଁର ମଧ୍ୟରେ ସ୍ୱଚ୍ଛଜଳ ଅଛି ପୁରି
ଦଶାଶତେ ଯୋଜନ ସେ ଗଭୀର ତାହାର ।
ଆବର ତହିଁ ମଧ୍ୟରେ ଅଗ୍ନି ରହିଅଛି
ଶତେକ ଯୋଜନ ଯାଏ ଶିଖା ସେ ଟେକଛି
ତହିଁର ମଧ୍ୟେ ପବନ ସର୍ବଦା ସଞ୍ଚାର
ଅଣଗୁଣ ମୂର୍ତ୍ତିଧର ରହିଅଛି ଘେର ।
ସେହି ଦ୍ୱୀପରେ ତାହାକୁ ଋଷି ଦେଲେ ସ୍ଥାନ
ଦେବଙ୍କୁ ଅଗୋଚର ସେ ଅଗମ୍ୟ ଭୁବନ ।
ସେଥିର ମଧ୍ୟେ ରହିଲା ଯାଇ ନିଶାଚର
ଅପୂର୍ବ ଭୁବନ ସ୍ୱର୍ଗେ ନାହିଁ ପଟାନ୍ତର ।
ଦେବେ ଅଗୋଚର ଯେଣୁ ନରେ କାହୁଁ ପଶି
ଏମନ୍ତ ସ୍ଥାନ ତାହାକୁ ଦେଲେ ମହାଋଷି ।

ଶୂନ୍ୟ ଅଗୋଚର ତାହା ନୁହଇ ଗୋଚର
ମାୟାରେ ଭିଆଣ ଏହା କଲେ ମୁନିବର ।
ଭୂମିରେ ଉତପନ୍ନ ସେ ହୋଇଲାକ ଯେଣୁ
ଭୂସୁତ ନାରକା ବୋଲି ନାମ ଦେଲେ ତେଣୁ
ଅର୍ବୁଦେକ ଗଜଦେଲେ ଦନ୍ତାକରିବର
ବେନଖର୍ବ ତୁରଙ୍ଗମ କହି ଅଗୋଚର ।
ବେନ ସେ ଅପୂତ ରଥ ସର୍ବ ରତ୍ନମୟ
ଆଉ ଯେତେ ସୈନ୍ୟ ତାର କହି ତ ନ ହୁଏ
ସେହି ସ୍ଥାନକୁ ଯିବାକୁ ଆଉ ପଥ ନାହିଁ
ଶୂନ୍ୟରେ ଅସୁର ଥାଇ ଚଳେ ରଥବାହି ।
ମୟ ଦଇତ୍ୟ ଦୁହିତା ନାମ ପଦ୍ମାବତୀ
ତାହାକୁ ବିବାହ କଲା ଦୈତ୍ୟ କୁଳପତି ।
ସେ ଅସୁର ବୀର୍ଯ୍ୟେ ପଦ୍ମାବତୀର ଗର୍ଭରୁ
ସପ୍ତପୁତ୍ର ଜାତହେଲେ ସର୍ବେ ମହାମେରୁ ।
ବିଶୋକ ଅଶୋକ ପୁଣି ମଳୟ ମହୀନ୍ଦ୍ର
କୃତଶ୍ରବା ମହିଷା ଯେ ହେତୁ କୁରୁଚନ୍ଦ୍ର
ଏ ଆଦି ଦୈତ୍ୟଙ୍କ ତେଜ କହି ନ ହୁଅଇ
ବୁଲନ୍ତି ଦିଗବିଜୟ କରି ସପ୍ତଶୂର ।
କାଲି ସେହି ସପ୍ତଭାଇ ସ୍ୱର୍ଗପୁରେ ଗଲେ
ଅମର ଭଣ୍ଡାର ସବୁ ଜୟକରି ନେଲେ ।
ଦକ୍ଷ ପ୍ରଜାପତି କନ୍ୟା ମୋହର ଭଗିନୀ
ଅମୂଲ୍ୟ ରତ୍ନକୁଣ୍ଡଳ କର୍ଣ୍ଣେ ଥିଲା ବେନ ।
ଗୋଳପୂର୍ବ କରି ମୋର ପୁରରେ ପଶିଲେ
ତାହାର କର୍ଣ୍ଣ କୁଣ୍ଡଳ ବଳେ କାଢ଼ିନେଲେ
ବରୁଣର ଛତ୍ର ସ୍ୱର୍ଗ ଭୁବନରେ ଥିଲା
ମୋତେ ଘଉଡ଼ାଇ ତାହା ବାହୁବଳେ ନେଲା
ରାଜାମାନଙ୍କ ଦୁହିତା ବଳେ ଆଣିକରି
ଷୋଳସହସ୍ର ରଖିଛି ଏକଠାବେ ଭରି ।
ଏକାବେଳକେ ତାହାଙ୍କୁ ବିଭାହେବ ବୋଲି
ଗୋଟିଏ ଘରେ ରଖିଛି ତାଙ୍କୁ ବନ୍ଦୀକରି ।
ଷୋଳସହସ୍ର କନ୍ୟା ଏକୁଁ ଆରେକ ସୁନ୍ଦରୀ
ଏକା ତୋତେ ଚିନ୍ତା କରୁଅଛନ୍ତି ଶ୍ରୀହରି ।
ସକଳ କଥା ଗୋଚର ଅଟେ ନାଥ ତୋତେ
ମୁଁ କିସ କହିବି ନ ଜାଣ କି ଜଗନ୍ନାଥେ ।
ବେଳୁଁ ବେଳ ଜୁର କଲା ଅମରମଣ୍ଡଳ
ହରିନେଲା ଯେତେ ଥିଲା ଅମୂଲ୍ୟ ଭଣ୍ଡାର ।

ଏତେକ କହି ପଡ଼ିଲେ ପାଦେ ଦେବଗଣ
ଆକୁଳେ ଡାକନ୍ତି ଦେବେ ତୋହର ଚରଣ
ଜୟ ଜୟ ଜଗନ୍ନାଥ ମହିମାସାଗର
ଭାର ନିବାରଣେ ନାଥ ଅବତାର ତୋର ।
ଆମ୍ଭେ ସର୍ବ ଦେବତାଏ ତୋର ଭୃତ୍ୟଜନ
କର ଅନୁଗ୍ରହ ତୁମ୍ଭେ କମଳଲୋଚନ ।
ତବ କୃପାବିନ୍ଦୁ ଦେଇ ପୂରାଅ ମାନସ
ଶୂଦ୍ରମୁନି ନିତ୍ୟ ତବ ପାଦ କରେ ଆଶ ।
ଦେବଙ୍କ ଏସନ ବାକ୍ୟ ଶୁଣି ଦଇତ୍ୟାରି
କହନ୍ତି ଦରହସିତ ବଦନେ ମୁରାରି ।
ଇନ୍ଦ୍ର ସହ ନିଜପୁରେ ଯାଅ ଦେବଗଣ
ଏଥିର ପ୍ରତିକାର ମୁଁ କରିବଇଁ ପୁଣ ।
ସକଳ ଦେବଙ୍କୁ ସଙ୍ଗେ ଘେନି ବଜ୍ରପାଣି
ଶ୍ରୀହରିଙ୍କ ପାଶୁଁ ବେଗେ ହୋଇଲେ ମେଲାଣି
ଦେବତାଙ୍କୁ ଘେନି ଇନ୍ଦ୍ର ସ୍ୱର୍ଗପୁରେ ଗଲା
ଏହିମତ ସେଦିନର ରଜନୀ ପାହିଲା ।
ନିତ୍ୟକର୍ମମାନ ସାରି ଦେବ ଭଗବାନ
ସତ୍ୟଭାମା ପୁରେ ଯାଇ କରିଲେ ଭୋଜନ ।
ଭୋଜନର ଅନ୍ତେ ପ୍ରଭୁ ଆଚମନ ସାରି
କର୍ପୂର ତାମ୍ବୁଳ ଯହୁଁ ଭୁଞ୍ଜିଲେ ଶ୍ରୀହରି ।
ସତ୍ୟଭାମାଙ୍କର ଭୁଜ ଧରି ଭଗବାନ
ମନେ ସୁମରିଲେ ପ୍ରଭୁ ବିନତାନନ୍ଦନ ।
ଜାଣିଲେ ଧ୍ୟାନେ ନଗେପି ତାହା ଖଗେଶ୍ୱର
ଧାତିକାରେ ମିଳିଲେ ସେ ଦ୍ୱାରକାମଣ୍ଡଳ ।
ଯହୁଁ ଶ୍ରୀହରି ଶ୍ରୀମୁଖେ ମିଳିଲେକ ଆସି
ଦେଖି ତାଙ୍କୁ ଦୀନବନ୍ଧୁ ବହୁତ ପ୍ରଶଂସି ।
ସତ୍ୟଭାମାଙ୍କୁ କୋଳରେ ଘେନି ଚକ୍ରପାଣି
ଗରୁଡ଼ କନ୍ଧରେ ବସି କଲେ ଶଙ୍ଖଧ୍ୱନି ।
ଶୂନ୍ୟ ରହି ଦେଖୁଛନ୍ତି ତାହା ଦିଗପାଳେ
ଗରୁଡ଼ ତହୁଁ ଉଡ଼ିଲା ଯାଇ ଅନ୍ତଗଳେ ।
ନାରକାର ବାସ ଜ୍ୟୋତିପୁର ନାମେ ଗ୍ରାମ
ଶୂନ୍ୟରେ ମିଳିଲା ଯାଇ ବିନତାନନ୍ଦନ ।
ସହସ୍ର ଯୋଜନ ଅଟେ ସେହି ଗ୍ରାମସ୍ଥଳୀ
ଦେଖି ହସନ୍ତି ତାହାକୁ ଦେବ ବନମାଳୀ ।
ଅଛଇ ଦୁର୍ଗମ ଗିରି ତାର ଚାରିପାଶ
ଗିରି ଅନ୍ତେ ଜଳପୂର୍ଣ୍ଣ ଗଭୀର ଅଶେଷ ।

ଗ୍ରହଗଣ ରହିଛନ୍ତି ତହିଁ ବହୁ ପୁର
ବେଢ଼ିଛନ୍ତି ଏକା ଗଡ଼କୁ ସହସ୍ର ଯେ ଘୁର ।
ତହିଁର ଅନ୍ତେ ଦେଖନ୍ତି ଅଛଇ ଅନଳ
ବିନା ଇନ୍ଧନରେ ଶିଖା ଉଠେ ଲକ୍ଷତାଳ ।
ଅଗ୍ନିର ଅନ୍ତରେ ପୁଣି ଅଛଇ ପବନ
ପ୍ରଚଣ୍ଡ ହୋଇଣ ସେହୁ ବହେ ଘନ ଘନ ।
ଶସ୍ତ୍ର ଦେଖିଲେ ଦୂରରୁ ବେଗେ ଯାନ୍ତି ଉଡ଼ି
ପଡ଼ନ୍ତି ଜଳେ ଅନଳେ ସୈନ୍ୟ ଯାନ୍ତି ମାଡ଼ି ।
ତହିଁର ମଧ୍ୟେ ଦେଖନ୍ତି ଅଛି ଦିବ୍ୟପୁର
ନୀଳମେଘ ପ୍ରାୟେ ଦିଶେ ଦେବେ ଅଗୋଚର
ଏମନ୍ତ ଦୁର୍ଗମ ଯେ ପୁରେକ ଭିଆଇ
ତହିଁର ମଧ୍ୟେ ନାରକାସୁର ଅଛି ରହି ।
ହେଳେ ଜିଣିଲା ଦଇତ୍ୟ ଦେବତା ଅସୁର
ଦେଖିଣ ଆଶ୍ଚର୍ଯ୍ୟ ହେଲେ ଦେବ ଚକ୍ରଧର ।
ଗଦା ପ୍ରହାରିଲେ ନେଇ ଦେବକୀ ନନ୍ଦନ
ଦୁର୍ଗମ ଗିରି ସକଳ କରିଦେଲେ ଚୂର୍ଣ୍ଣ ।
ଜଳ ଅନଳ ଆବର ସମୀର ଘେନଣ
ଚକ୍ର ପେଷି ନାଶକଲେ ଦେବ ନାରାୟଣ ।
ତହୁଁ ଶଙ୍ଖ ଶବଦ ଯେ କଲେ ନରହରି
ଶୁଭିଲା ସେହୁ ଶବଦ ଦଶଦିଗ ପୁରି ।
ଗଡ଼ର ଦୁଆରେ ରହି ଦୁର୍ଗକୁ ଆବୋରି
ବୀରମାନେ ଜଗିଥିଲେ କରେ ଶସ୍ତ୍ର ଧରି ।
ହୃଦସ୍ତ ହୋଇଲା କମ୍ପମାନ ତାହାଙ୍କର
ଶସ୍ତ୍ରମାନ ହସ୍ତରୁ ଯେ ପଡ଼ିଲାକ ଝଡ଼ି ।
ବିନତା ନନ୍ଦନ ପୃଷ୍ଠେ ବସି ଦେବହରି
ନାରକାର ସିଂହଦ୍ୱାରେ ବେଗେ ଯାଇ ମିଳି
ଅକର୍ମଶିଳା ପ୍ରାଚୀର ଥିଲା ଘୁରିବିଗେ
ଗଦା ବରି ପିଟି ଚୂର୍ଣ୍ଣ କଲେ ତାହା ବେଗେ ।
ଶଙ୍ଖ ଶବଦରେ ପୂର୍ଣ୍ଣ ହେଲା ଦଶଦିଶ
ଅସୁର ତା ଶୁଣି ପୁରେ ପାଏ ମନେ ତ୍ରାସ ।
ଯୁଗଅନ୍ତ ପ୍ରାୟେ ଘୋର ଶବଦ ସେ ଶୁଣି
ଅସୁରଶ୍ରେଷ୍ଠ ବାହାରି ହେଲା ସେହିକ୍ଷଣି ।
ପର୍ବତ ପ୍ରାୟେକ ତାରି ଦିଶଇ ଶରୀର
ନିଦ୍ରା ତେଜି ମହାବୀର ହୋଇଲା ବାହାର ।
ତ୍ରିଶୂଳ ଏକ ସେ ଧରିଅଛି ଦକ୍ଷକରେ
ଉପମା ଦେବାକୁ ତାରି ନାହିଁ ବ୍ରହ୍ମାଣ୍ଡରେ ।

ପ୍ରଳୟକାଳ ଅନଳ ଜ୍ୟୋତିକୁ ସେ ଜାଣି
ଶୂଳ ଏକ ହସ୍ତେ ଧରି ଧାଏଁ ବୀରମଣି ।
ଗିଳିବାକୁ ଏହିକ୍ଷଣି ସପତ ବ୍ରହ୍ମାଣ୍ଡ
ପାଟି ବିସ୍ତାରି ଅସୁର ଗର୍ଜ୍ଜେ ପରଚଣ୍ଡ !
ଦୂରରେ ଥାଇ ଦେଖନ୍ତି କୃଷ୍ଣ ତାହା ଆଗେ
ଗରୁଡ଼ ମୁଖେ ପଡ଼ିଲେ ଆସି ଜନା ଆଗେ ।
ଦୂରରୁ ଧାଇଁଲେ ଦୈତ୍ୟ ମରଣ ନ ଜାଣି
ଦେଖି ତାକୁ ଶଙ୍ଖନାଦ କଲେ ଚକ୍ରପାଣି ।
ରେରେକାର କରି ସେହୁ କରେ ଗରଜନ
ପଞ୍ଚ ମୁକୁଟ ତା ପାଞ୍ଚ ଶିରେ ଶୋଭାବନ ।
ତ୍ରିଶୂଳ ହସ୍ତରେ ଘେନି ଅତି ଶୀଘ୍ର ବେଗେ
ପିଟିଲେ ସେ କୋପଭରେ ଅସୁରର ଅଙ୍ଗେ ।
ଶବଦ ସେ ପାଞ୍ଚମୁଣ୍ଡେ କଲା ପରଚଣ୍ଡ
ନାଦ ପୂରି ଉଚ୍ଛୁଳିଲା ସପତ ବ୍ରହ୍ମାଣ୍ଡ ।
ଦଇତର ତେଜମୂର୍ତ୍ତି ଦେଖି ନାରାୟଣ
ଶାରଙ୍ଗ ଧନୁରେ ତହୁଁ ଚଢ଼ାଇଲେ ଗୁଣ ।
ଲକ୍ଷକୋଟି ବାଣ ହସ୍ତେ ଘେନି ଦେବହରି
ତତକ୍ଷଣେ ନାରକାର ଉପରେ ପ୍ରହାରି ।
ଆଷାଢ଼ର ମେଘ ଜାଣି କଲା ଗରଜନ
ଚଳିଗଲା ନଗର ଯେ ପ୍ରଚଣ୍ଡ ହୋଇଣ ।
ଅସୁର ଉପରେ ଯାଇ ସେହୁ ଶସ୍ତ୍ର ପଡ଼ି
ମୋହ ଯାଇଣ ପଡ଼ିଲା ଦୈତ୍ୟ ଭୂମି ମାଡ଼ି ।
ଲକ୍ଷଧାରି ହୋଇ ଦେହୁଁ ବହଇ ରକତ
ଚେତି ମହାବୀର ତହୁଁ ଧାଇଁଲା ତୁରିତ ।
ପାଟି ବିସ୍ତାରିଣ ତହୁଁ ଗିଳି ମନ କଲା
ତା ଜାଣି ବିନତା ପୁତ୍ର ଆଡ଼ ହୋଇଗଲା ।
ଉଡ଼ାଇ ଗରୁଡ଼ ତାକୁ ଧରେ ଶୂନ୍ୟେ ଯାଇ
ଚକ୍ରପେଷି ନିବାରିଲେ କମଳାର ସାଇଁ ।
ନିଜ ପୁରରେ ଅସୁର ବେଗେ ଯାଇ ମିଳି
ଲୌହ ଧନୁ ଏକ ଧରି ଧାଏଁ ମହାବଳୀ ।
ପରବତା ନାମେ ଶର ବସାଇ ଗୁଣରେ
ତାହା କରେ ଧରି ଦୈତ୍ୟ ଧାଇଁଲା ସତ୍ୱରେ ।
ଧନୁ ଧରି ବେଗେ ସେହୁ ଆମନ୍ଥନ କରି
ବଜ୍ରଶର ପେଷି ତାହା ଶ୍ରୀକୃଷ୍ଣ ନିବାରି ।
ଏପରି ବନ୍ଧିଲେ ପାଞ୍ଚଶର ଦେବ ହରି
କାବଲଶର ପେଷି ତା ଦଇତ୍ୟ ନିବାରି ।

ଲାଗିଲା ଉଭୟେ ଯୁଦ୍ଧ ଅତି ଗୁରୁଟାଣ
ଶୂନ୍ୟେ ଥାଇ ଦେଖୁଛନ୍ତି ତାହା ଦେବଗଣ ।
କୃତାନ୍ତକ ଶର ଯେବେ ଦେବ ଜଗନ୍ନାଥ
ବିଶ୍ୱରୂପ ପରକାଶି ବିନ୍ଧିଲେ ତୁରିତ ।
କାଳମେଘ ବର୍ଣ୍ଣ ପ୍ରାୟେ ବିଶେ ଶସ୍ତ୍ରଜ୍ୟୋତି
ବ୍ରହ୍ମାଣ୍ଡ ଅନ୍ଧାର ହେଲା କୃତାନ୍ତକ ମୂର୍ତ୍ତି ।
ତାହା ଦେଖିଣ ଅସୁର କରଇ ବିଚାର
ସାଧୁ ସାଧୁ ତୋ ମହିମା ଅଟେ ଷଡ଼ିବର ।
ତହୁଁ ସୂର୍ଯ୍ୟବର୍ତ୍ତି ଶର ମାଇଲେ ଶ୍ରୀଧର
ନିବାରି ନ ପାରେ ଦୈତ୍ୟ ଅଙ୍ଗେ ଭେଦି ଶର
ଘୋଟିଲାକ ସେହି ଶର ଯାଇ ତ୍ରଇଲୋକ୍ୟ
ଖାଇଲେ ଶରେ ଅସୁର ଉକତ ନିଃଶଙ୍କେ ।
ଛିନ୍ନଧାର ହୋଇ ରକ୍ତ ବହେ ଶିର ଭେଦି
ପର୍ବତ ଶିଖରୁ କିବା ବହୁଅଛି ନଦୀ ।
ଦେଖିଣ ଧାଇଁଲେ ତାହା ଅସୁର ସଇନ୍ୟ
ରେରେକାର ବିନ୍ଧିଲେ ସେ ବାଣ ଅବିଚ୍ଛିନ୍ନ ।
ମାଇଲେ ନର୍ଘାତ ନାମେ ଶର ଦେବ ହରି
ଦୂରହୁଁ ନିବାରିଲେ ସେ ଦୈତ୍ୟ ଶର ବୀର
ଶରୀରେ ଯହୁଁ ଆଘାତ ପାଇଲେ ଅସୁରେ
ଗଦା ଘେନିଣ ଧାଇଁଲେ ସେହୁ ଧିକାରେ
ଗରୁଡ଼ ଉପରେ ନେଇ କଲେକ ପ୍ରହାର
ଘାଏ ଘୂରାଇ ପଡ଼ିଲା ବିନତା କୁମର ।
ଦେଖି ତାହା ଜଗନ୍ନାଥ ତାରେ ଦୟା କଲେ
ଶଙ୍ଖ ଛୁଆଇଁ ତାହାକୁ ଜୀବଦାନ ଦେଲେ ।
ତହୁଁ ଧଇଲା ବିହଙ୍ଗ ରୂପ ପକ୍ଷୀବର
ଉଡ଼ିଲେ ତା ପକ୍ଷବାତେ ସର୍ବ ନିଶାଚର ।
ଶାର୍ଦ୍ଦୂଳ ଉଲ୍ଲୋଳ ନାମେ ଦ୍ୱେନ ସେନାପତି
ଏହାଙ୍କ ତୁଲେ ସତୁରି ସହସ୍ର ପଦାତି ।
ଗରୁଡ଼ ପକ୍ଷବାତେ କେ କେଣେ ଉଡ଼ିଗଲେ
ବାରସହସ୍ର ଯୋଜନ ଅନ୍ତରେ ପଡ଼ିଲେ ।
ନାରକା ଦଇତ୍ୟ ତୁଲେ ପାଞ୍ଚଲକ୍ଷ ହସ୍ତୀ
ଉଡ଼ିଯାଇ ସମୁଦ୍ରରେ ପଡ଼ିଲେ ଝଟତି ।
ଦେଖଣାହାରି ଆବର ଯେତେ ସୈନ୍ୟ ଥିଲେ
ଶିମୁଳତୁଳା ପ୍ରାୟେକ କେଣେ ଉଡ଼ିଗଲେ ।
ଜୟ ଶଙ୍ଖ ଶବଦ ଯେ କଲେ ଦେବହରି
ନାରକ ଦୈତ୍ୟ ଭୂକମ୍ପେ ପଡ଼ିଗଲା ଥରି ।

ସାତପୁତ୍ର ଅଟନ୍ତି ତା ଅତି ବଳୀୟାର
ଖଣ୍ଡାଶାଖେବଳ ଯେବେଣ ହୋଇଲେ ବାହାର
ପଥେ ଯାଆନ୍ତେ ବଜାଇ ଚମକ ନିଶାଣ
ପଞ୍ଚସସ୍ର ରଥୀ ଥିଲେ ତାହାଙ୍କ ସଙ୍ଗେଣ ।
ଆରେ ଆରେ ବୋଲି ଡାକି ଯୁଦ୍ଧ ଆରମ୍ଭିଲେ
ରଥ ଯେବେଣ ଶ୍ରୀକୃଷ୍ଣ ସମ୍ମୁଖରେ ମିଳିଲେ ।
ସପ୍ତପୁତ୍ର ତୁଲେ ଛନ୍ତି ପାଞ୍ଚସସ୍ର ରଥୀ
ଗୃହଦ୍ୱାରେ ବେଢ଼ି ଭଲ୍ଲ ସମର କରନ୍ତି ।
ଶରମାନଙ୍କର ଜ୍ୟୋତ୍ସ୍ନା ବିଦ୍ୟୁତ୍ତେଜ ଜିଣି
ଶ୍ରାବଣ ମାସେ ଯେମନ୍ତ ବରଷଇ ପାଣି ।
ବେଢ଼ି ସର୍ବେ ଶ୍ରୀକୃଷ୍ଣଙ୍କୁ ଶରପୀଡ଼ା କଲେ
ଆବର ସମସ୍ତେ ଯାଇଁ ତାହାଙ୍କୁ ବେଢ଼ିଲେ ।
ହିଙ୍କପକ୍ଷୀ ଜାଣି ଶର ଗରୁଡ଼ ଉପରେ
ତେଇଁଣ ନାରାଚମାନ ଅତି ପରଖରେ ।
ଡାକିଲେ ସେ ଆରେ ଆରେ ବୋଲି ଯଦୁନାଥ
ଅଗ୍ନିଶର ହସ୍ତେ ଘେନି ବିନ୍ଧିଲେ ତ୍ୱରିତ ।
ପ୍ରଳୟକାଳ ପ୍ରାୟକ ଘୋଟିଲା ସେ ଅଗ୍ନି
ଲୋଟିଲେ ଅସୁରସୈନ୍ୟ ପଡ଼ିଲେ ଧରଣୀ ।
ଗୃହସହସ୍ର ରଥୀଙ୍କ ତୁଲେ ପାଞ୍ଚପୁତ୍ର
ଶସ୍ତ୍ର ଛାଡ଼ି ଭୂମିଏରେ ପଡ଼ିଲେ ତୁରିତ ।
ଆଉ ବେନପୁତ୍ର ତେଣେ ଯୁଦ୍ଧ କରୁଥିଲେ
ସଂଗ୍ରାମ ଘୋର ହେବାର ଦେଖି ପଳାଇଲେ ।
ନାରକା ଯେ ପକ୍ଷବାତେ ଉଡ଼ି ଯାଇଥିଲା
ବିହଙ୍ଗ ଗତି କରିଣ ସଂଗ୍ରାମେ ମିଳିଲା ।
ଦେଖି ନରଘାତ ବାଣ ମାଇଲେ ମାଧବ
ନାରାଚ ପଡ଼ନ୍ତେ ଉଡ଼ି ଛାଡ଼ିଲା ଦାନବ ।
ଶରେ ଶରେ ସମ୍ଭାଷଣ କରନ୍ତେଣ ବେନି
ମହାଘୋର ଅନ୍ଧକାର ଘୋଟିଲା ଧରଣୀ ।
ସୂର୍ଯ୍ୟାବର୍ତ୍ତି ନାମେ ଶର ବିନ୍ଧିଲା ଅସୁର
ସେହି ଶସ୍ତ୍ରତେଜେ ଫିଟିଗଲାକ ଅନ୍ଧାର ।
ରଜନୀ ଭବ ପ୍ରକାଶେ ଆଦିତ୍ୟ ମଣ୍ଡଳ
ଶସ୍ତ୍ରେ ଶସ୍ତ୍ର ପଡ଼ନ୍ତେଣ କମ୍ପେ ଆଖଣ୍ଡଳ ।
ପ୍ରଳୟଅନ୍ତକ ଜାଣି କରନ୍ତେ ଶରଦ
କମ୍ପିଲେ ପାତାଳବାସୀ ସ୍ୱର୍ଗ ଦେବବୃନ୍ଦ
କରନ୍ତେ ସଂଗ୍ରାମ ଦୈତ୍ୟତୁଲେ ଦେବସ୍ୱାମୀ
ସେ ସଂଗ୍ରାମେ କମ୍ପିଲେକ ଭୁବନ ଯେ ତିନି ।

ଶବଦେ ସାଗର ତହୁଁ ହେଲା କମ୍ପମାନ
ଶୂନ୍ୟପୁରୁଷେ ଛାଡ଼ିଲେ ଦେଖି ନିଜ ସ୍ଥାନ ।
ଆରେ ଆରେ ବୋଲି କରି ଡାକଇ ଅସୁର
କାହିଁରେ ମୂଢ଼ ପ୍ରେଷିବ ତୋତେ ଯମପୁର ।
ସୁରାସୁରଙ୍କର ବାଧା ମୋହର ଜଗତେ
ତୁ ଛାର ସାମର ମୋତେ ଜିଣିବୁ କେମନ୍ତେ ।
ରହ ଯୁଦ୍ଧ ନ କର ତୁ ଏଣେତେଣେ ଯାଉ
ନ ଜାଣୁ ମହିମା କାହିଁ ଦୈତ୍ୟକୁଳ ନାହୁ ।
କହୁ କହୁ ସମର ସେ କରେ ମହାଘୋର
ତୀକ୍ଷ୍ଣ ଶର ଏକ ପୁଣି ମାଇଲା ଅସୁର ।
ଯେସନେକ ନାରାଚ ଛଡ଼ାଇ ଆକାଶୁଁ
କମ୍ପିଲା ସେ ଘନ ଘନ ଶସ୍ତ୍ର ଆସୁ ଆସୁ ।
ଗୋବିନ୍ଦ ବନ୍ଦିଲେ ନାରାୟଣ ଅସ୍ତ୍ର ଘେନି
ଘୋଟିଲା ସପ୍ତବ୍ରହ୍ମାଣ୍ଡ ସେହୁ ବ୍ରହ୍ମଅଗ୍ନି ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ଦୈତ୍ୟକୁଳେଶ୍ୱର
ପନ୍ନଗା ନାମେଣ ଶସ୍ତ୍ର ଧରିଲା ହସ୍ତର ।
ଆମନ୍ତ୍ରି ବଳିନ୍ତେ ତାହା ଆକାଶ ଘୋଟିଲା
ଗରୁଡ଼କୁ ଦେଖି ପୁଣି ଅନ୍ତର ହୋଇଲା ।
ଶ୍ରୀହରି ଶର ପ୍ରଳୟ ଅନ୍ତକ କି ଜାଣି
ପଡ଼ନ୍ତେ ଅସୁର ଅଂଗ ଲେଟିଲା ଧରଣୀ ।
କେନା ସେନାପତି ଆସି ହେଲେ ଆଗୁଁସାର
ରାଜାକୁ ପଛକରି ସେ କଲେକ ସମର ।
ତକ୍ଷଣେ ଚେତନା ପାଇ ଦୈତ୍ୟକୁଳେଶ୍ୱର
ହସ୍ତରେ ଘେନିଲା ଏକ ବୃହତ ପ୍ରସ୍ତର ।
ଭୂମି ଛାଡ଼ିଣ ପ୍ରସ୍ତର ଶୂନ୍ୟକୁହିଁ ଗଲା
ଜଗନ୍ନାଥଙ୍କ ଉପରେ ଯାଇଣ ପଡ଼ିଲା ।
ତହୁଁ ଆଡହୋଇ ଖୁଲିଗଲେ ଯଦୁସାର
ବାବଲ ସେ ଛେଦିଲେ ସେ ବଡ଼ ପ୍ରସ୍ତର ।
ପୁଣି ଭୂମିଗତ ହୋଇ ଉଠିଲା ଅସୁର
ଲୌହମୟ ଧନୁ ଏକ ଧରିଲା ହସ୍ତର ।
ରେରେକାର ଶବ୍ଦକରି ଜମ୍ବୁନାମେ ଶର
ପ୍ରହାର କଲା ସେ ଜଗନ୍ନାଥଙ୍କ ଉପର ।
ଶ୍ରୀକରେ ଚକ୍ର ଘେନିଣ ଦେବ ଭଗବାନ
ଅସୁର ଶର ଦୂରରୁ କରିଦେଲେ ଚୂର୍ଣ୍ଣ ।
ଜଗନ୍ନାଥ କରେ ଧରି ମାଳନାମେ ଶର
କୋପେ ପ୍ରହାରିଲେ ତାହା ଦାନବ ଉପର ।

ରକତେ କର୍ଦ୍ଦମ ହେଲା ଅସୁରଙ୍କ କାୟେ
ଦଷ୍ଟିଲା ଦେହ ତାଙ୍କର ମନ୍ଦରର ପ୍ରାୟେ ।
ଖେଚରୀ ନାମେ ଶରର କୋଟିସୂର୍ଯ୍ୟ ଜ୍ୟୋତି
ସେ ଶରେ ଧ୍ୱଂସିଲେ ବହୁସୈନ୍ୟ ଯଦୁପତି
ମଣ୍ଡାରେ କର୍ଦ୍ଦମ ହୋଇଗଲା ବସୁମତୀ
ଏଣ ଟିକ ପରେ ଆରେକ ପୁଣି ପଦ୍ମଉଦ୍ଭ ।
ତା ଦେଖି ନରକାସୁର ମହା କ୍ରୋଧ କଲା
ବଜ୍ରଶକତି ନେଇଣ ଗୁଣେ ବସାଇଲା ।
ମନ୍ତ୍ରିଣ ଶରକୁ ସେହୁ କରେ ଉଚାରଣ
ଯାଇ ତୁ ଜଗନ୍ନାଥଙ୍କ ପ୍ରାଣ ବେଗେ ଘେନ
ଚଞ୍ଚଳକ ଶର ପୁଣି ଘୋଟିଲା ଅନ୍ଧାର
ଶୂନ୍ୟରେ ପଡ଼ିଲା ଜଗନ୍ନାଥଙ୍କ ଉପର ।
ଚଉପାଶେ ଛଡ଼ିଲାକ ଯାଇ ମହାଶର
ଚଳି ନ ପାରି ବିନତାପୁତ୍ର ରହେ ସ୍ଥିର ।
ତା ଦେଖି ଜଗନ୍ନାଥ ଶ୍ରୀକରେ ଚକ୍ର ଘେନି
ଦାନବଶର ଛେଦିଲେ ଦୂରୁଁ ଚକ୍ରପାଣି ।
ଗରୁଡ଼ ପୃଷ୍ଠୁ ଓହ୍ଲାଇ ବେଗେ ଜଗନ୍ନାଥ
ଚକ୍ର କରେ ଘେନି ଦେବ ହେଲେ ଭୂମିଗତ
ପାଞ୍ଚଜନ୍ୟ ଶଙ୍ଖ ନାଦ କରି ଭଗବାନ
ଗୋଡ଼ାଇ ମାଇଲେ ତହୁଁ ଅସୁର ସଇନ୍ୟ ।
ଦେଖିଣ ନରକାସୁର ଆଗେ ଓଗାଳିଲା
ଧନୁ ପକାଇଣ ଏକ ଗଦା ସେ ମାଇଲା ।
ଆରେ ଆରେ ଗଉଡ଼ ବୋଲିଣ ଗଦା ତୋଳି
ତୋହର ମାଂସ କରିବ ଆଜ ପୋଡ଼ାବଳି ।
ଶ୍ରୀଜଗନ୍ନାଥ ବୋଇଲେ ଶୁଣ ରେ ଅସୁର
ଆଜି ଜନ୍ମପତ୍ର ପାଞ୍ଜି ହୋଇଲା ତୋହର ।
ଏହା କହୁ କହୁ ଦୈତ୍ୟ ଗଦା ପ୍ରହାରିଲା
ଜଗନ୍ନାଥଙ୍କ ଉପରେ ସେ ଗଦା ପଡ଼ିଲା ।
ବେଗେ ଅଙ୍ଗ ଟାଳିଦେଲେ ଦେବ ବନମାଳୀ
ଚକ୍ର ଘେନିଣ ପିଟିଲେ ଦୈତ୍ୟ ବକ୍ଷସ୍ଥଳ ।
ଚକ୍ର ପଡ଼ିଲା ଲିଟାଇ ତାକୁ ନ କାଟିଲା
ମହାଘୋର ହଉକେ ଅସୁର ଛାଡ଼ିଲା ।
ଦେଖି ଜଗନ୍ନାଥ ହେଲେ କୋପେ ପରଖର
ପୁଣିହିଁ ପିଟିଲେ ନେଇ ତାର ବକ୍ଷସ୍ଥଳ ।
ହସ୍ତୁ ଛୁଟି ଗଦା ତାର ଭୂମିରେ ପଡ଼ିଲା
ନିଶସ୍ତ୍ର ହୋଇ ସେ ଭୁଜ ତୋଳିଣ ଧାଇଁଲା ।

ଧାମଇଁ ସେ ଘୋରନାଦ କରି ମହାବୀର
ପଦଘାତରେ କମ୍ପିଲା ସପତ ସାଗର ।
ଦେଖନ୍ତି ଦେବତାମାନେ ଶୂନ୍ୟେ ସର୍ବେ ମିଳି
ପୁଣିହିଁ ଚକ୍ର ପେଷନ୍ତି ଦେବ ବନମାଳୀ ।
ଶଙ୍ଖର ନିଘାତେ ସେହୁ ହେଲା ଖଣ୍ଡଖଣ୍ଡ
ରଥଏ ଗୁଣ୍ଡିଲା ପୁଣି କମ୍ପିଲା ବ୍ରହ୍ମାଣ୍ଡ ।
ବାସବର ବଜ୍ରେ ଯେହ୍ନେ ଝଡ଼େ ଗିରିଶୃଙ୍ଗ
ଗୁଣ୍ଡିଲେ ଦୈତ୍ୟ ପଡ଼ିଲା ତାର ମୃତ୍ୟୁପିଣ୍ଡ ।
ପିତାର ମରଣ ବାର୍ତ୍ତା ଶୁଣି ବେନିସୁତ
ପିତୃରିପୁ ନାଶଲାଗି ହେଲେ ଉପଗତ ।
ନାନା ଶସ୍ତ୍ରମାନ କରେ ଦୈତ୍ୟମାନେ ଘେନି
ପୁଣିହିଁ ସାଜିଲେ ଯେତେ ଅସୁର ସଇନି ।
ସେନାପତିମାନେ ବେଗେ ହୋଇଲେକ ଆଗେ
ନାରକା ଅସୁର ସୁତ ହୋଇ ବେନିଭାଗେ ।
ବସୁ ଅରୁଣ ଏ ଦୁଇଭାଇ ପୁଣ ଥିଲେ
ବେନିଭାଗ ହୋଇ ସେହୁ ଯୁଦ୍ଧ ଆବୋରିଲେ
ବରଷନ୍ତି ଜଳମାନ ଜଳଧାରା ପ୍ରାୟେ
ପଡ଼ନ୍ତି ନାରାଚମାନ ଗୋବିନ୍ଦର କାୟେ ।
ସହସ୍ରେ ରଥୀ ଯୁଝନ୍ତି ଏକମୁଖ ହୋଇ
ଦେଖି ଗୋପୀନାଥ କରେ ଶାର୍ଙ୍ଗଧନୁ ନେଇ
ଆରେ ରେ ଅସୁର ବୋଲିକରି ଡାକଦିଅନ୍ତି
ସୁତୀକ୍ଷ୍ଣ ନାରାଚମାନ ମନ୍ତ୍ରିଣ ବନ୍ଧନ୍ତି ।
ଫୋଟିଲା ନାରାଚ ଯାଇ ଅସୁରଙ୍କ ଦେହ
ପଡ଼ିଲେ ଅସୁରବଳ ରମ୍ଭାବୃକ୍ଷ ପ୍ରାୟେ ।
ପଡ଼ନ୍ତି ଗଡ଼ନ୍ତି ପୁଣି ଲୋଟନ୍ତି ଧରଣୀ
ରକତେ କର୍ଦ୍ଦମ ହେଲେ ନାରାଚେ ସଇନ ।
ଯେତେକେତେ ସୈନ୍ୟ ବେନିଭାଗ ହୋଇଥିଲେ
ନାରାଚକେ ଯମମନ୍ଦି ପୁରରେ ସେହୁ ଗଲେ ।
ମସ୍ତକ ଭୁଜ ଚରଣ ଭୂମିପରେ ଲୋଟି
ଅସାଷ୍ଟମ ହୋଇ ସର୍ବେ ଧୂଳି ଯେ ସାଉଁଟି ।
ମେଦିନୀ କର୍ଦ୍ଦମ ହେଲା ମଡାର ଗହଳେ
ଶ୍ରୀକୃଷ୍ଣଙ୍କ ବାଣେ ସର୍ବେ ଲୋଟିଲେ ଭୂମିରେ
ବେନି ସେନାପତି ତାଙ୍କ ଦୂର ହୋଇଥିଲେ
ଧାଇଁ ଯାଇଣ ସମର ବେଗେ ଆବୋରିଲେ ।
ଅଶୀସହସ୍ର ତାଙ୍କର ଅଛି ଗଜଯୂଥ
ଜଳଧି ମନ୍ଥନରୁ ସେ ହୋଇଥିଲେ ଜାତ ।

କୁହୁଡ଼ର ସ୍ୱରୂପ ସେ ଦିଶେ ତାଙ୍କ କାୟେ
ଗର୍ଜ୍ଜନ କରିଣ ଗଜେ ଧାମନ୍ତି ନିର୍ଭୟେ ।
ମାହୁନ୍ତେ ବସିଅଛନ୍ତି ତାହାଙ୍କ ଉପରେ
ଅଙ୍କୁଶ ଆଘାତେ ଗଜେ ଧାମନ୍ତି ହରଷେ ।
ନାରକାର ପୁତ୍ରକୁ ସେ ଘେନିଣ ମଧ୍ୟରେ
ନାଦ କରିଣ ମିଳିଲେ ଶ୍ରୀକୃଷ୍ଣ ସମ୍ମୁରେ ।
ବେଢ଼ିଲେ କୁଞ୍ଜରବଳ କୃଷ୍ଣେ ଅପ୍ରମିତ
ତାହାଙ୍କୁ ଦେଖିଲେ ନୟନରେ ପଦ୍ମନେତ୍ର
କୃତକେଶୀ ଦୈତ୍ୟପୁତ୍ର ଅଟେ ସଉଦନ
ଅଙ୍ଗବଳ ଘେନିଣ ସେ ସାଜିଲାକ ସୈନ୍ୟ ।
ଏହା ଶୁଣିଣ ବଳିଙ୍କ ଦେଶ ମହୀପତି
ଅଗସ୍ତିଙ୍କ ଚରଣରେ କଲେକ ଭକତି ।
ହେ ମୁନି କହିଲ କୃତକେଶୀର ନନ୍ଦନ
ସେ କିପାଁ ଅଇଲା ନାରକାର ରଣସ୍ଥାନ ।
ଏଥିର ଚରିତ ମୋତେ କହ ମହାମୁନେ
କହନ୍ତି ଅଗସ୍ତି ଶୁଣ ବଳିଙ୍କ ରାଜନେ ।
ଏକମନ ହୋଇ ତୁମ୍ଭେ ଶୁଣ ନରପତି
କୃତକେଶୀ ରାଜାର ଯେ କେସନେକ ଖ୍ୟାତି
ପୂର୍ବେ ସୁମନ୍ତ ନାମେଣ ହେଲା ସମ୍ବତ୍ସର
ମାଘ ସପ୍ତମୀ ପୁଣି ତିଥି ଗୁରୁବାର ।
ସେ ଦିନ ନାରକାସୁର ମୃଗୟାକୁ ଗଲା
ସୁମନ୍ତ ବନେ ସେ କୃତକେଶୀକୁ ଭେଟିଲା ।
ଘେନି ବେନି ଅଙ୍ଗବଳ ସେହୁ ବେନିରାୟେ
ମୃଗୟା ବିନୋଦେ ରହିଥାଆନ୍ତି ନିର୍ଭୟେ ।
ବେନିଥାଟ ମିଳନ୍ତେଣ ଅଗମ୍ୟ ବନର
ବେନିରାଜା ମଧ୍ୟେ ତହିଁ ଲାଗିଲା ସମର ।
ନାରକା ଅସୁର ସେହୁ ଅଟେ ମହାବଳୀ
କୃତକେଶୀ ରାଜା ସୈନ୍ୟ ପକାଇଲା ଦଳି ।
ସପତଦିନ ପର୍ଯ୍ୟନ୍ତ ସମରେ ହୋଇଲା
ହାରିଣ ସେ କୃତକେଶୀ ରଣ ଉପେକ୍ଷିଲା ।
ନାରକାଅସୁର ସଙ୍ଗେ ପ୍ରୀତି ଆରମ୍ଭିଲେ
ବେନି ରାଜା ପରସ୍ପରେ ମଇତ୍ର ହୋଇଲେ ।
ଯେ ଯାହାର ପୁରକୁ ସେ କଲେକ ଗମନ
ଏଥୁ ଅନନ୍ତରେ ପୁଣି ଗଲା କିଛି ଦିନ ।
ଶ୍ରୀକୃଷ୍ଣଙ୍କର ଦ୍ରୋହୀ ହୋଇ ଶତଧନୁ
ଯେଉଁକାଳେ ପଳାଇଲା ଦ୍ୱାରକା ଭୁବନୁ ।

କୁତକେଶୀ ରାଜାରେ ସେ ପଶିଲ ଶରଣ
ତାହା ଜାଣି ଦୀନବନ୍ଧୁ ମିଳିଲେକ ପୁଣ ।
ଗୋଳଯୁଦ୍ଧ କରି ହରି କୁତକେଶୀ ନାଶି
ଆଗହୁଁ ସେ କଥା ତୋତେ କହିଲୁ ବିଶେଷି
ପିତା ନିଧନରେ ପୁତ୍ର ରାଜ୍ୟଭ୍ରଷ୍ଟ ହେଲା
ସଉଦ୍ଧନ ନାମେ ପୁତ୍ର ପଳାଇଣ ଗଲା ।
ନାରକାସୁର ଭବନେ ସ୍ନିଗ୍ଧଭାବେ ଥିଲା
ପିତାଶତ୍ରୁ ବୋଲି ଜାଣି ଯୁଦ୍ଧକୁ ଆଇଲା ।
ପଞ୍ଚାଶୋଇ ସସ୍ତ୍ର ଚାରି ଥିଲେ ଅଙ୍ଗବଳ
ସେହିଣ ମିଳିଲା ଜଗନ୍ନାଥଙ୍କ ସମ୍ମୁଖ ।
ରେରେକାର ଶବ୍ଦ କରି ଗର୍ଜ୍ଜନ କରଇ
ଧନୁଧରି ଶରସନ୍ଧି ଆକର୍ଣ୍ଣ ଟାଣଇ ।
ଦୂରହୁଁ ଡାକଇ ମୋର ବାଣକୁ ସମ୍ଭାଳ
ପିତାର ବଇରୀ ତେଣୁ ଶତ୍ରୁ ମୋହର ।
ଏତେକାଳେ ଦଇବରେ ଭେଟାଇଲା ଆଣି
ଆଜ ଏ ମାଂସ ଖାଇବ ତୋର ଗୋସାମଣୀ
ଏ କଥା ଶୁଣି ହସନ୍ତି କୃଷ୍ଣ ମନେ ମନ
ଶୁଣ ତୁ ରେ କୁତକେଶୀ ରାଜାର ନନ୍ଦନ ।
ତୋର ପିତା ଏକଦିନେ ସ୍ୱର୍ଗପୁରେ ଗଲା
ତାହାର ଆଜ ତୋତେରେ ସଙ୍ଖୋଳାପଡ଼ିଲା
ପିତାର ସଙ୍ଗରେ ଏବେ ବସ ସ୍ୱର୍ଗେ ଯାଇ
ଏବେ ତୋହର ମନରେ ହୋଇଲା ତନସ୍ପି
ଏମନ୍ତ ଭେଟ ହୋଇଣ ସେହି ବେନି ଆଟ
ଲାଗିଲେକ ସମର ଯେ ଅତି ଅମଙ୍ଗଟ ।
ବଜ୍ର ଶକତି ଅସୁର ଗୁଣରେ ବସାଇ
ଶ୍ରୀକୃଷ୍ଣଙ୍କ ଉପରକୁ ବିନ୍ଧେ ବେଗେ ବହି ।
ତାହାଦେଖି ଦୀନବନ୍ଧୁ ଶଙ୍ଖଧ୍ୱନି କଲେ
ଶାର୍ଙ୍ଗଧନୁ ଧରି ଦୃଢ଼ ମୁଷ୍ଟିରେ ରହିଲେ ।
ତେଜ ବିରାଜଇ ତାଙ୍କ କୋଟି ସୂର୍ଯ୍ୟ ଜିଣି
ନୀଳଗିମୁତ ଉଦୟ ହେଲା କି ଧରଣୀ ।
କଟିରେ କଟି ମେଖଳା ଥାଇ ପୀତାମ୍ବର
ହୃଦପୁରେ ଶୋଭାପାଏ ହେମ ପଦ୍ମମାଳ ।
କର୍ଣ୍ଣରେ କୁଣ୍ଡଳ କିବା ରବିଙ୍କର ଜ୍ୟୋସ୍ନା
କପାଳେ ଶୋଭେ ତିଳକ ପୁଣି ଗୋରଚନା
ଅପୂର୍ବ ମୁରତି ପ୍ରଭୁ ଦେବେ ଅଗୋଚର
ଶୁଦ୍ଧ ମନରେ ଭକତି ଶ୍ରୀକୃଷ୍ଣ ପୟର ।

ଝଙ୍କଡ଼ପୁରବାସିନୀ ଶ୍ରୀ ଶାରଳା ଚଣ୍ଡୀ
କରି ଅନୁଗ୍ରହ ପାପଶରେ ହେଉ ଖଣ୍ଡି ।
ମାଗୋ ମୁହିଁ ଆଶ୍ରାକରି ରହିଅଛି ତୋତେ
ଏହି ସଂସାରସାଗରୁ ତରିବା ନିମନ୍ତେ ।
ମଧ୍ୟପର୍ବର ଏହି ଯେ ଅପୂର୍ବ ଆଖ୍ୟାନ
ଶ୍ରୀ ଶାରଳା ଦାସ ନିଜେ କରଇ ଲିଖନ ।
ପରମ ସାଧ୍ୱୀ ଶ୍ରୀଚଣ୍ଡୀ ଚରଣେ ଭକତି
ଆଜ୍ଞାଦିଅ ମଧ୍ୟପର୍ବ କରିବି ଉକତି ।
ବୈବସ୍ୱତ ମନୁ ପୃଚ୍ଛା କଲେ ଅଗସ୍ତିଙ୍କି
କେବଣ ସ୍ୱରୂପେ ଯୁଦ୍ଧ ହୋଇଲା ଏତିକି ।
କହ ମହାମୁନି ସେହି ପବିତ୍ର ଆଖ୍ୟାନ
ଶରୀର ନିର୍ମଳ ମୋର କର ତହିଁ ପୁଣ ।
କହନ୍ତି କୁମ୍ଭ ଋଷିଙ୍କ ସୂତ ପରଶଂସି
ଏକମନ ହୋଇଣ ତୁ ଶୁଣ ସୋମବଂଶୀ ।
ନାରକାର ସୁତ କୁତକେଶୀର ନନ୍ଦନ
ଏହାଙ୍କର ତୁଲେ ରଣ କଲେ ଭଗବାନ ।
କୁତକେଶୀର ନନ୍ଦନ ନାମ ସଉଦ୍ଧନ
ଶକ୍ତି ଏ ମାଇଲା ଜଗନ୍ନାଥ ଉପରେଣ ।
ଚଳିଲା ଶକତି ବେଗ କରି ଘୋର ନାଦ
ଦୂରହୁଁ ଛେଦିଲେ ଚକ୍ରପେଷି ଦେବରାଜ ।
ହାବୋଡ଼ା ନାମେଣ ଶର ଗୁଣରେ ବସାଇ
ବିନ୍ଧିଲା ବିନତା ସୁତ ଉପରକୁ ବହି ।
ଚଳିଗଲା ନାରଚ ଅତି ପରଚଣ୍ଡ
ହାବୋଡ଼ ଗଲା ଗରୁଡ଼ପରେ ଯଇ କାଣ୍ଡ ।
ଦୂରେଗଲା ବୈନତେୟ ଷାଠିଏ ଯୋଜନ ।
ସମ୍ଭାଳି ନ ପାରିଲା ସେ ଶରର ତେଜେଣ ।
ପଲକମାନେ ସେ ତହିଁ ଯୁଦ୍ଧେ ଆସି ମିଳି
ଦେଖିଣ କୋପ କରିଲେ ପ୍ରଭୁ ବନମାଳୀ ।
ବଜ୍ର ଶକତିଏ ଦେବ ଗୁଣରେ ବସାଇ
ବିନ୍ଧିଲେକ ଗୋପୀନାଥ ଅସୁରକୁ ବହି ।
ଚଳିଲା ନାରଚ ଜିଣି ଆଦିତ୍ୟଙ୍କ ଜ୍ୟୋସ୍ନା
କାଟିଲେକ କୁତକେଶୀ ନନ୍ଦନର ଡେଣା ।
ରଥ ସହିତ ସାରଥି ମୁଣ୍ଡଗୋଟି ଜାଣି
ଛିଡ଼ି ଅଶ୍ୱ ଶିର ପୁଣି ଲୋଟିଲା ଧରଣୀ ।
ଏକ କରେ ଗଦା ଘେନି ଅସୁର ଧାଇଁଲା
ପାଟି ବିସ୍ତାରଣ କରିଘାତ ରଡ଼ିକଲା ।

ତାହା ଦେଖିଣ କଳୁଷି ବାଣ ଦେବ ଘେନ
ଅସୁର ପରେ ବିନ୍ଧିଲେ ଧନୁଗୁଣ ଟାଣି ।
ପ୍ରଚଣ୍ଡ ଶବଦ କରି ସେହି ଶର ଗଲା
ନୃତକେଶୀ ନନ୍ଦନର ମଉଳ କାଟିଲା ।
ଆବର ଯେତେକ ତହିଁ ସୈନ୍ୟଗଣ ଥିଲେ
ପାଶୁପତ ନାରାଚରେ ସର୍ବେ ନାଶଗଲେ ।
ନାରକାର ବେନସୁତ ବେନଭାଗ ହୋଇ
ଯୁଦ୍ଧ କରୁଥିଲେ ଦୁହେଁ ଶ୍ରୀକୃଷ୍ଣଙ୍କୁ ଚାହିଁ ।
ଦେଖି ତାଙ୍କୁ ଦାନବନ୍ଧୁ ମହାକୋପ କଲେ
ସହସ୍ରେ ନାରାଚ ନେଇ ଗୁଣେ ବସାଇଲେ ।
ରଥିକେ ପତଣ ଗଜେ ପଞ୍ଚବାଣ ମାରି
ସୈନ୍ୟପ୍ରତି କାଣ୍ଡେ କାଣ୍ଡେ ମାରିଲେ ଶ୍ରୀହରି
ପଡ଼ିଲେ ଦୈତ୍ୟ ଛିଡ଼ିଲା ତାଙ୍କ ଦେହମାନ
ପୁଣି ପେଷିଲେ ଶଂତରଜ ବାଣ ଭଗବାନ ।
ନାରକା ଅସୁର ସୁତ ଯୁଦ୍ଧ କରୁଥିଲେ
ବିଷମ ଆଘାତ ପାଇ ଛାଡ଼ି ପଳାଇଲେ ।
ଅରୁଣ ବୋଲି ଯେବଣ ସୁତ ଥିଲା ତାର
ଖଣ୍ଡେ ଦୂରକୁ ଯାଇଣ କଲା ବିଚାର ।
ଅବଶ୍ୟ ମରଣ ଆମ୍ଭ ଅଟଇ ନିଶ୍ଚିତ
ରଣ ଯୋଗ ହୋଇଅଛି ଏଥେ ପରମିତ ।
ପଳାଇଗଲେ ବଇରୀ ନିନ୍ଦନ ଦେଖିବେ
ରାଜ୍ୟ ସମ୍ପଦ ଆବର ସକଳ ନାଶିବ ।
ଏତେକ ବିଚାରି ବାହୁଡ଼ିଣ ଛନ୍ନେ କଲା
ହୟମସ୍ତ ରଥେ ଚଢ଼ି ସମରେ ମିଳିଲା ।
ଶକତି ଏକ ଧରିଣ ଗୁଣରେ ବସାଇ
ଗର୍ଜି ଘୋରନାଦ କରି ଅସୁର ତନୟି ।
ଘୋର ଶବଦ କରିଣ ଶକ୍ତି ଚଳିଗଲା
ଶ୍ରୀଜଗନ୍ନାଥ ଦେବଙ୍କ ଉପରେ ପଡ଼ିଲା ।
ସେ ଶକତି ପ୍ରହାରେଣ ଦେବ ଭଗବାନ
ଗରୁଡ଼ରେ ବସିଲେକ ନିଶ୍ଚଳ ହୋଇଣ ।
ଫୁଲମଣ୍ଡା ଏକ ଯେସନେ ନିଜ କରେ ଧରି
କୁଞ୍ଜର ଉପରେ ନେଇ ଯେସନେ ପ୍ରହାରି ।
ଶ୍ରୀକୃଷ୍ଣ ପରେ ଶକତି ତେସନେକ ବାଜି
ବେନି ଖଣ୍ଡ ହୋଇ ବେଗେ ପଡ଼ିଲାକ ଭାଜି ।
ପୁଣି ତ୍ରିଶୂଳେକ ଧରି ରେ ରେକାର କରି
ପିଟିଲା ନେଇ ତାହାକୁ ଶ୍ରୀକୃଷ୍ଣ ମନ୍ଦଲି ।

ଶୂନ୍ୟେ ଥାଇଣ ଦେଖିଣ ତାହା ସୁଦର୍ଶନର
ଚକ୍ରଦେଶି ତାହା ଛେଦ କଲେ ଚକ୍ରଧର ।
ପୁଣି ଆଉ ଥରେ ଚକ୍ର ପେଷିଲେ ଶ୍ରୀହରି
କାଟିଲେ ଅସୁର ମୁଣ୍ଡ ବେନି ଖଣ୍ଡ କରି ।
ଏନି ମୁକୁଟ ଆବର କଣ୍ଠେ କୁଣ୍ଡଳ
ଭୂମିପରେ ଛିଡ଼ିପଡ଼ି ଦିଶିଲା ସୁନ୍ଦର ।
ହାହାକାର ଶବଦ ଯେ ଅନ୍ତଃପୁରେ ପଡ଼ି
ନାରକାର ବଧୂମାନେ ଘୋର ରାବ କରି ।
ଶୂନ୍ୟେଥାଇ ଦେବଲୋକେ ତାହା ଦେଖୁଥିଲେ
ସ୍ୱର୍ଗେ ଉଚ୍ଚ ଜୟ ଜୟ ଶବ୍ଦ କଲେ ।
ଶୂନ୍ୟରୁ ଯେ ପୁଷ୍ପବୃଷ୍ଟି କଲେ ଦେବ ଉଚ୍ଚ
ନାହି ବାଜି ଶବଦରେ ଶିର କର ଦେଇ ।
ଭୂମି ନବରୂପ ଧରି ଦୈତ୍ୟପୁରେ ଥିଲା
ମୃତ୍ୟୁ ନନ୍ଦମାନଙ୍କର ମରଣ ଶୁଣିଲା ।
ସକଳ ସମ୍ପଦ ତହୁଁ ସଙ୍ଗତରେ ଘେନ
ଶ୍ରୀକୃଷ୍ଣେ ଯାଇଣ ସେହୁ ଭେଟିଲା କାମିନୀ ।
ଐରଣ୍ୟର ରତ୍ନମାଳୀ ଅମୃତ କୁଣ୍ଡଳ
ବରୁଣର ଦଣ୍ଡଛତ୍ର ଘେନିଣ ବାହାର ।
ବନମାଳା ଏକ କରେ ଧରିଣ କାମିନୀ
ଶ୍ରୀକୃଷ୍ଣଙ୍କ ଗଳେ ତାହା ଲମ୍ବାଇଲା ଆଣି ।
ସୁବର୍ଣ୍ଣ ଥାଳରେ ତହୁଁ ଷଡ଼ଅର୍ଘ୍ୟ ଘେନ
ଅଭୟ ପାଦପଦ୍ମରେ ପୂଜିଲା ରମଣୀ ।
ପୁଣି ବେନିକର ଯୋଡ଼ି ବୋଲଇ ବଚନ
ତୁମ୍ଭେ ଅଟ ପ୍ରଭୁ ଦେବ ଦେବ ଭଗବାନ ।
ଶାର୍ଙ୍ଗ ଚକ୍ରଧାରୀ ତୁମ୍ଭେ ଗରୁଡ଼ ବାହନ
ଶରଣରକ୍ଷଣ ଦେବ ପତିତପାବନ ।
ଜୟ ଜୟ ଜଗନ୍ନାଥ ଦୈତ୍ୟ ନିବାରଣ
ଭକତଜନ ରକ୍ଷଣ ଦୁଃଖ ବିମୋଚନ ।
ପର ଉପରେ ହେ ତୁମ୍ଭେ ଦେବ ଅଟ ସିନା
ସୃଷ୍ଟିଖାନ ପାଳକ ଯେ ଜଗତ ମୋହନା ।
ପାଳନ ସମୟେ ତୁମ୍ଭେ ବହିଥାଅ ତମ
ଉତ୍ପତ୍ତି କାଳେ ତୁମ୍ଭେ ବହ ରଜଗୁଣ ।
ଏବେ ତୁମ୍ଭ ପଦେ ମୁହିଁ ପଶିଲି ଶରଣ
ନାରକା ସୁତ ସୁତକୁ ରଖ ନାରାୟଣ ।
ତୁମ୍ଭ ପାଦପଦ୍ମେ ନାଥ ଅଛଇ ଯେ ଶୋଭି
ଶିର କମଳରେ ମୋର ବେନିକର ଦେଇ ।

ଏହାଙ୍କୁ ତୁ ଏବେ ରକ୍ଷାକର ଜଗନ୍ନାଥ
ଘୋଡ଼ାଞ୍ଚ ଏହୁ ନରେଖ ଜନ ପଦ୍ମମୁଖ ।
ଭୂମିର ବଚନେ ଦେବ କ୍ରୋଧ ଉପେକ୍ଷିଲେ
ଅଭୟବର ନାରକା ପୁତ୍ର ଶିରେ ଦେଲେ ।
ଆବର ତାହାକୁ ରାଜ୍ୟେ ରାଜପଣ ଦେଲେ
ସୁବର୍ଣ୍ଣ ମୁକୁଟ ଶିରେ ନେଇ ବନ୍ଧାଇଲେ ।
ରାଜାର ନଗରେ ତହୁଁ ଯାଇ ବଜେ କଲେ
ପାତ୍ର ଅମାତ୍ୟ ଗଣେ ବେଗେ ଅଣାଇଲେ
ଯେ ଯାହାର ଅଧିକାର ଦେଇ ଜଗନ୍ନାଥ
ଛତ୍ର ଧରାଇଣ ତାକୁ କଲେ ପୁରୁଷାର୍ଥ ।
ତହୁଁ ଅନ୍ତଃପୁରେ ଦେବ ପଶିଲେକ ଯାଇ
ରାଜକନ୍ୟାମାନେ ଯହିଁ ଛନ୍ତି ବନ୍ଦୀ ହୋଇ ।
କନ୍ୟାଙ୍କର ବନ୍ଦଘରେ ମିଳ ପଦ୍ମନେତ୍ର
ଷୋଳସହସ୍ର ଆବର ଛନ୍ତି ଏକଶତ ।
ଶ୍ରୀକୃଷ୍ଣଙ୍କର ରୂପକୁ ଯୁବତୀ ସର୍ବ ନାରୀ
ଦେଖିଲେ ଏକୁ ଆରେକ ହୋଇ ଆଗସର ।
ଚର୍ମଲୋଚନେ ମୋହନ ରୂପକୁ ସେ ଦେଖି
ପଲକ ନ ପଡ଼େ ସର୍ବେ ଯୁବତୀ ନରେକ୍ଷି ।
ଜଡ଼ିତ ହୋଇଲା ସର୍ବ ଚିତ୍ତ କାମବାଣେ
ନ ପାରନ୍ତି ଯିବା କେହୁ ଭେଟିବାକୁ ଚରଣେ
ଚିତ୍ତ ନଷ୍ଟକ କରିଣ ଯୁବତୀ ଯୁବକ୍ଷ
ଦଇବ ଯେ ସମ୍ପାଦନ କଲା ଆଣି ପତି ।
ହୁଳହୁଳି ଦେଇ ତହୁଁ ସକଳ କାମିନୀ
ଶ୍ରୀକୃଷ୍ଣଙ୍କ ପାଦତଳେ ହେଲେ ପରଣାମି ।
ଅପୂର୍ବ ସୁନ୍ଦରୀ ପାର୍ବତୀଙ୍କ ଅଂଶେ ଜାତ
ତଳଲେ ସେ ରୂପ ଗୁଣ ଦେଖି ପଦ୍ମନେତ୍ର
ପୂର୍ବ ପଶ୍ଚିମ ଆବର ଉତ୍ତର ଦକ୍ଷିଣ
ଯୁଦ୍ଧଗର ରାଜାଙ୍କୁ ଅସୁର ଜିଣିଣ ।
ସେମାନଙ୍କର ଦୁହିତା ଆଣି ଭୁଜବଳେ
ନଗରେ ରଖିଲା ବନ୍ଦୀ ହେବ ଏକାବେଳେ ।
କନ୍ୟାଏ ଛନ୍ତି ଶ୍ରୀକୃଷ୍ଣ ସମ୍ମୁଖରେଣ ରହି
ଚରଣ ଭୂମିରେ ଲୋଟି ଶିରେ କର ଦେଇ ।
ନମାମି ଜଗତବନ୍ଧୁ ଜଗତ ସୋଦର
ନମାମି ଦ୍ୱାପରେ ଦେବ କୃଷ୍ଣ ଅବତାର ।
ଖଳ ବିନାଶନେ ଦେବ କୃଷ୍ଣ ଅବତାର
ହେ ଦେବ କରୁଣା କର ଆମ୍ଭଙ୍କୁ ଉଦ୍ଧର ।

ଆମ୍ଭେମାନେ ତ ନରେଖ ଅଟୁ ସ୍ତ୍ରୀଗଣ
ଶ୍ରୀଚରଣ ତଳେ ପ୍ରଭୁ ରଖିବା ଶରଣ ।
ଜୟଶବ୍ଦ ଉଚ୍ଚାରିଲେ ତହୁଁ ନାରୀଗଣ
ବେଢ଼ିଲେ ଆକାଶେ ଯେହ୍ନେ ଚନ୍ଦ୍ରେ ତାରାଗଣ
ତାହା ଦେଖିଣ ଶ୍ରୀକୃଷ୍ଣ କରେ ସମ୍ଭାର୍ଜନ୍ତି
ରହ ରହ ନାରୀଗଣ ନ କର ଗୋ ଖେଦ ।
ତୁମ୍ଭର ପାଇଁ ଆସିଲି ସିନା ଏତେ ଦୂର
ଘୋରଯୁଦ୍ଧ କରିଣ ମୁଁ ମାଇଲି ଅସୁର ।
ଏବେ ଦ୍ୱାରକାପୁରକୁ ଗମନ ଗୋ କର
ମୁହିଁ ମନୋରଥ ସିଦ୍ଧ କରିବି ତୁମ୍ଭର ।
ଏତେକ ବୋଲିଣ ତହୁଁ ନନ୍ଦର ନନ୍ଦନ
ନାରକାସୁରର ଯେତେ ଅପୂର୍ବ ଧନ ।
ଅଶୀସହସ୍ର ସେଠାରେ ଥିଲେକ କୁଞ୍ଜର
ଐରାବତ ହସ୍ତୀ କି ସେ ମର୍ତ୍ତ୍ୟେ ଅବତାର ।
ଅସୁରପୁରେ ଅପୂର୍ବ ଦ୍ରବ୍ୟ ଥିଲା ଯେତେ
ଦ୍ୱାରକାକୁ ଘେନିଗଲେ କନ୍ୟାଙ୍କ ସହିତେ ।
ତହୁଁ ଦେବ ଜଗନ୍ନାଥ ଗରୁଡ଼ ଆରୋହି
ବରୁଣ ଛତ୍ର ଅମୃତ କୁଣ୍ଡଳକୁ ନେଇ ।
କଲେକ ସ୍ୱର୍ଗକୁ କଟକାଇ ଭଗବାନ
ଚଳିଯାନ୍ତେ ଶଙ୍ଖଶବ୍ଦ ହୁଏ ଘନଘନ ।
ଗୂନ୍ୟେରହି ଦେବଲୋକେ ତାହା ଦେଖିଥିଲେ
ସ୍ୱର୍ଗକୁ ଗମନ୍ତେ ସର୍ବେ ପଥରେ ଭେଟିଲେ
ଅଦିତିଙ୍କ ନବରରେ ଯାଇ ବେଗେ ପଶି
ଅମୃତ ବଚନ ଦେବ କହନ୍ତି ବିଶେଷି ।
ଅମୃତ କୁଣ୍ଡଳ ବନମାଳା ଥିଲେ ନେଇ
ଅଦିତିଙ୍କ କରେ ତାହା ସମର୍ପିଲେ ତହିଁ ।
ଦେଖିଣ ଅଦିତି ଦେବୀ ସାନନ୍ଦ ହୋଇଲେ
ଶ୍ରୀକୃଷ୍ଣଙ୍କୁ ଆସନରେ ନେଇ ବସାଇଲେ ।
ଶଚୀଦେବୀଙ୍କ ସହିତ ଦେବ ପୁରନ୍ଦର
ଆନନ୍ଦରେ ପୂଜାକଲେ ଶ୍ରୀକୃଷ୍ଣ ପୟର ।
ଦେବଲୋକମାନେ ତହୁଁ ସମ୍ମୁଖରେଣ ମିଳି
ସ୍ତୁତି ପାଠ କଲେ ସର୍ବେ କରପଦ୍ମ ଯୋଡ଼ି
ଜୟ ଜୟ ଶ୍ରୀକୃଷ୍ଣ ହେ ପ୍ରସନ୍ନ ମୂରତି
ତୁମ୍ଭ ସଙ୍କଳର ସିନା ଅଟେ ବାରସ୍ୱକ୍ଷି ।
ଯୁଗକୁ ଯୁଗ ନାଥ ଯେ ଅବତାର ତୋର
ଅସୁର ବିନାଶି ଦେବଗଣେ ରକ୍ଷା କର ।

କଂସ କେଶୀଙ୍କୁ ନାଶିଲ ଅଷ୍ଟମଲ୍ଲ ମୂଳେ
ଗୋବର୍ଦ୍ଧନ ତୋଳଥିଲ ଗୋପୀଙ୍କର ଛଳେ ।
ଦାବ ଅନଳ ଭକ୍ଷଣ କାଳୀୟନାଶନ
ନିଗୂଢ଼ ବନ୍ଧନୁ ମାତା ପିତା ଉଦ୍ଧାରଣ ।
ନାରକା ସଙ୍ଗତେ ଥିଲେ ଦୈତ୍ୟଗଣ ଯେତେ
ମାରି ରଖିଲ ଦେବତାଗଣ ଯଦୁନାଥେ ।
ତେତିଶକୋଟି ଦେବତା ଘୁମୁରେ ମିଳିଣ
ଜୟ ଶବଦ ପଢ଼ନ୍ତି ସ୍ତୁତି ସ୍ତୋତ୍ରମାନ ।
ସନ୍ତୋଷ ହୋଇଣ ତହୁଁ ପ୍ରଭୁ ଦେବରାୟେ
ମେଲାଣି ମାଗିଲେ ଦେବ ଅଦିତିଙ୍କ ପାୟେ ।
ସନ୍ତୋଷ କରାଇ ତାଙ୍କୁ ଦେବ ଭଗବାନ
ଦ୍ୱାରକାପୁରେ ଚଳଲେ ଗରୁଡ଼ ଚଢ଼ି ଣ ।
ସଙ୍ଗତରେ ଛନ୍ତି ତାଙ୍କ ସ୍ୱାଧ୍ୱୀ ଶନ୍ଦାବଣି
ତାହାଙ୍କୁ ଘେନି ବାହାରି ହେଲେ ଯଦୁପତି ।
ପଥେ ଯାଆନ୍ତେ ନନ୍ଦନ କାନନରେ ମିଳି
ଶୂନ୍ୟପଥରେ ଗରୁଡ଼ ଯାଏ ପକ୍ଷ ଗୂଳ ।
ନନ୍ଦନ ନାମରେ ବନ ଅଛି ଯେହୁ ପୁଣ
ନାନାଦି ବୃକ୍ଷ ତହିଁରେ ଦିଶେ ଶୋଭାବନ ।
ନାନାବର୍ଣ୍ଣେ ପୁଷ୍ପ ତହିଁ ପାରିଜାତ ବନ
ଗନ୍ଧ ପ୍ରକଟଇ ସ୍ୱରଗର ସର୍ବସ୍ଥାନ ।
ପୁଷ୍ପେ ପରିପୂର୍ଣ୍ଣ ସେହି ପାରିଜାତ ବନ
ତା ଦେଖି ନେବାକୁ ବଳେ ସତ୍ୟଭାମା ମନ ।
ସ୍ୱାମୀଙ୍କ ମୁଖକୁ ଚାହିଁ ବୋଲେ ସତ୍ୟାସତି
ଶୁଣ ହେ ଦେବ ଅନନ୍ତ ବ୍ରହ୍ମାଣ୍ଡର ପତି ।
ମର୍ତ୍ତ୍ୟପୁରେ ନାହିଁ ଦେବ ପାରିଜାତ ବନ
ରୋପିବା ନେଇ ସ୍ୱରଗପୁରୁ ଉପବନ ।
ଏତେ ବୋଲି କରି ଦେବୀ ଶିରେ କର ଦେଇ
ଶ୍ରୀକୃଷ୍ଣଙ୍କ ଚରଣରେ ପ୍ରଣିପାତ୍ୟ ହୋଇ ।
ଏହା ଶୁଣି ଜଗନ୍ନାଥ ଗରୁଡ଼କୁ ଚାହିଁ
ରହ ପକ୍ଷିରେ ନନ୍ଦନ ବନେ ଆମ୍ଭେ ଯାଇ ।
ଆଜ୍ଞା ପାଇଣ ଗରୁଡ଼ ଶୂନ୍ୟରୁ ଖସିଲି
ନନ୍ଦନବନ ନିକଟେ ଯାଇଣ ମିଳିଲି ।
ଗରୁଡ଼ ପୃଷ୍ଠୁ ଉତୁରି ଦେବକୀ ନନ୍ଦନ
ତୋଟାଦ୍ୱାରେ ବିଜେ କଲେ ଶ୍ରୀ ମଧୁସୂଦନ ।
ଲକ୍ଷେକ ଗନ୍ଧର୍ବେ ତହିଁ ତୋଟା ରଖିଥିଲେ
ଶ୍ରୀକୃଷ୍ଣଙ୍କୁ ଦେଖି ବେଗେ ପଥ ନିରୋଧିଲେ ।
କାହିଁର ମାନବା ପଶୁ ତୋଟାରେ ତୁ ଯାଇ
ତୋହର ମନରେ କିଛି ଭୟଭ୍ରାନ୍ତି ନାହିଁ ।
ଇନ୍ଦ୍ରରାଜା ଦୂତ ଆମ୍ଭେ ତୋଟା ରଖିଥାଉଁ
ତାହାର ବିନା ଆଜ୍ଞାରେ ପ୍ରବେଶି ନ ଦେଉଁ
ତୁ କେବଣ ଭରସାରେ ପଶୁରେ ମାନବ
ରହ ରହ ବୋଲିକରି ଓଗାଳିଲେ ସର୍ବ ।
ତାହା ଦେଖି ଜଗନ୍ନାଥ ବୋଲନ୍ତି ବଚନ
କହ ଯାଇ ତୁରେ ବେଗେ ରାଜାର ଆଗେଣ
ଏତେ ବୋଲି କରି ପ୍ରଭୁ ପଶିଲେ ଧସାଇ
ପୁଣିହିଁ ନିରୋଧ କଲେ ଗନ୍ଧର୍ବେ ଯାଇ ।
ଆରେ ଆରେ ବୋଲିକରି ପୁଣିହିଁ ଡାକିଲେ
ତାହା ଦେଖି ଦେବ ଯଦୁପତି କୋପକଲେ
ଶ୍ରୀକୃଷ୍ଣ କୁପିତ ହେବା ଜାଣି ଖଗବର
ଡେଣା ବିସ୍ତାରି ବାହିଲା ବିନତା କୁମର ।
ପକ୍ଷବାତେ ଗନ୍ଧର୍ବମାନେ ଉଡ଼ିଗଲେ
ଲକ୍ଷେ ଯୋଜନରେ କେହୁ ଦ୍ୱିଲକ୍ଷେ ପଡ଼ିଲେ
ତୋଟା ଭିତରେ ପଶିଲେ ଦେବ ଭଗବାନ
ଲୋଡ଼ନ୍ତି କେଉଁଠି ଅଛି ପାରିଜାତ ବନ ।
ଇନ୍ଦ୍ରରାଜା ଆଗେ ଯାଇ କହିଲେ ଡଗର
ଶୁଣ ଆହେ ଶଚୀପତି ସ୍ୱରଗ ଠାକୁର ।
ଶ୍ରୀକୃଷ୍ଣ ପ୍ରଭୁ ସ୍ୱରଗପୁରେ ଆସୁଥିଲେ
ଆସନ୍ତେ ନନ୍ଦନ ବନେ ପ୍ରବେଶ ହୋଇଲେ ।
ସତ୍ୟଭାମାଙ୍କ ବଚନେ ପାରିଜାତ ବନ
ମର୍ତ୍ତ୍ୟପୁରେ ଘେନିଯିବେ ପୁରୁଷୋତ୍ତମ ।
ତୋଟା ଦ୍ୱାରଦେଶେ ପ୍ରଭୁ ମିଳିଲେକ ଯାଇ
ଜାଣିଣ ଗନ୍ଧର୍ବବଳ ନିରୋଧିଲେ ତହିଁ ।
ଦେଖି ଦେବ ଦୀନବନ୍ଧୁ ତାଙ୍କୁ କୋପକଲେ
ଗନ୍ଧର୍ବେ ଗରୁଡ଼ ପକ୍ଷବାତେ ଉଡ଼ିଗଲେ ।
ତାହା ଶୁଣି ସୁରପତି ସ୍ତବଧ ହୋଇଣ
ମହା କ୍ରୋଧଭରେ ସେହୁ କହଇ ବଚନ ।
ଯାଅ ଡଗର ଦେବଙ୍କୁ କହ ବେଗେ ଯାଇ
ଆସନ୍ତୁ ତେତିଶକୋଟି ଦେବେ ସଜ ହୋଇ
ଏତେ ବୋଲି ଇନ୍ଦ୍ରଦେବ ସ୍ୱୟଂ ସଜ ହେଲେ
ଐରାବତ ହସ୍ତୀପୃଷ୍ଠେ ଯାଇଣ ବସିଲେ ।
ବଜ୍ରକରେ ଧରି ଚମକାଇ ସୁରପତି
ସାଜ ସାଜ ବୋଲିକରି ଡଗରେ ଡାକନ୍ତି ।

ବାଜେ ଝମକ ନିଶାଣ ଆଦି ଗୁରୁଝାଣ
ଚମକି ପଡ଼ିଲା ବାରସ୍ୱର୍ଗର ଭୁବନ ।
ଚନ୍ଦ୍ର ସୂର୍ଯ୍ୟଙ୍କ ସହିତେ ଘୃରମେଘ ଘେନ
ଯମ ନଇର୍ଋତ ପୁଣି ପବନ ବହ୍ନି ।
ଏକାଦଶ ରୁଦ୍ର ହୋଇଲେକ ଏକମେଳ
ସାଜିଲେ ଗନ୍ଧର୍ବ ଦିଗପାଳ ଯେ ସକଳ ।
ଯେତେ ନକ୍ଷତ୍ର ଆବର ତିଥି ଆଦିକର
ଯୋଗ କରଣ ବାହାର କରେ ଶସ୍ତ୍ର ଧରି ।
ବୈଶାଖ ଶୁକ୍ଳ ପଞ୍ଚମୀ ତିଥି ଗୁରୁବାର
ଆରଦ୍ରା ନାମେ ନକ୍ଷତ୍ର ଭୋଗ ସେ ଦିନର ।
ସିଦ୍ଧି ନାମେ ଯୋଗ ପୁଣି ବାଳବ କରଣ
ବୃଶ୍ଚିକ ଘରରେ ଚନ୍ଦ୍ର ବିଜୟ ସେ ଦିନ ।
ସାଜ ସାଜ ବୋଲିକରି ସ୍ୱର୍ଗେ ପଡ଼େ ଡାକ
ନାନା ବାଦ୍ୟ ଶବଦରେ ଆକାଶ ଚମକ ।
ମିଳିଲେ ନନ୍ଦନବନ ପାଶେ ବେଗେ ଯାଇ
ଦ୍ୱାରେ ଥାଇଣ ଦେଖନ୍ତି ତାହା ଲକ୍ଷ୍ମୀସାଇଁ ।
ବିଚାରନ୍ତି ଦେବଗଣ ଅଟନ୍ତି ଅଜ୍ଞାନ
ଦେଖିବାକୁ ଆଜ ସୁରପତି ବଡ଼ପଣ ।
ଏମନ୍ତେ ମନେ ବିଚାରି ଦେବ ଭଗବାନ
ପାରିଜାତ ବୃକ୍ଷ ଦେବ ଉପାଡ଼ି ବହନ ।
ରଖିଲେ ବୃକ୍ଷ ଗରୁଡ଼ ମସ୍ତକରେ ନେଇ
ବଇନତେୟ ଉପରେ ବିଜୟ ଗୋସାଇଁ ।
ପ୍ରିୟାଙ୍କୁ କୋଳ କରିଣ ବୋଲନ୍ତି ବଚନ
ଶୁଣ ଦେଖ ଦେବଗଣଙ୍କର ବଡ଼ପଣ ।
ପାରିଜାତ ପୁଷ୍ପବନ ପାଇଁ ପୁରନ୍ଦର
କ୍ରୋଧେ ଆସୁଅଛି ଦେଖ କରିବ ସମର ।
ମାୟାରେ ବିହ୍ୱଳ ହୋଇଅଛି ବଜ୍ରଧର
କରିବ ସମର ଆସି ମୋହର ସମ୍ମୁର ।
ଜାଣିବଇଁ ଆଜ ଦେବଙ୍କର ବଡ଼ପଣ
ଭଙ୍ଗି କରିବି ସ୍ୱର୍ଗର ସ୍ଥାନ ରଣଭଣ ।
ଏତେକ ବିଚାରି କରନ୍ତେଣ ଚକ୍ରଧର
ଆଗୁଆଣି ଆଠମାନେ ମିଳିଲେ ସମ୍ମୁର ।
ଘୂରମେଘ ଘେନିକରି ପବନ ବାହାର
ଶୂନ୍ୟରେ ଘୋଟିଲେ ଜଗନ୍ନାଥଙ୍କ ଉପର ।
ଝଟଝଟ ବିଜୁଳି ଯେ ମାରେ ଶୂନ୍ୟେ ଥାଇ
ପ୍ରଳୟ କାଳ ପ୍ରାୟେକ ଘୋଟିଗଲେ ଯାଇ ।
ବର୍ଷଣ କରନ୍ତି ଜଳ ମିଶାମିଶି କରି
ବଜ୍ର ପ୍ରାୟେକ ପ୍ରସ୍ତରମାନ ଯେ ପ୍ରହାର ।
ବହଇ ପବନ ଅଣଗୃଣ ମୂର୍ତ୍ତି ଘେନ
ଗୃହଁ ଗୃହଁ ଅନ୍ଧକାର ଘୋଟେ ଶୂନ୍ୟଭୂମି ।
କରନ୍ତି ଗର୍ଜନ ଘଡ଼ଘଡ଼ି ମେଘମାନ
ଆଜ ପ୍ରଳୟ ହେବ କି ଚଉଦ ଭୁବନ ।
ବଜ୍ର ଶବଦ କରଇ ଦେବ ମଘବାନ
ଅଠର ଖଣ୍ଡ ଘୋଟିଣ କରନ୍ତି ଗର୍ଜନ ।
ଗରୁଡ଼ର ପକ୍ଷତଳେ ରହି ଭଗବାନ
ବୋଲନ୍ତି ଦେଖିବା ଦେବତାଙ୍କ ବଡ଼ପଣ ।
ଶ୍ରୀକରେ ଚକ୍ର ଘେନିଣ ଦେବ ଦଇତ୍ୟାରି
ମେଘଙ୍କ ପରେ ପେଷିଲେ ମହାକ୍ରୋଧ କରି ।
ଚଳିଗଲା ଚକ୍ର ଯାର କୋଟିସୂର୍ଯ୍ୟ ଜ୍ୟୋତି
ଘୂରମେଘ ଭାଜି ହୋଇଗଲେ ଛିନ୍ନମୂର୍ତ୍ତି ।
ପବନ ସ୍ତମ୍ଭିତ ହୋଇ ହୋଇଲା ନଉନ
ଛୁଡ଼ିଲା ଅନ୍ଧାର ଦିଶିଗଲା ଦିଗମାନ ।
ଐରାବତ ପୃଷ୍ଠେ ବସି କରେ ବଜ୍ର ଧରି
ଶ୍ରୀକୃଷ୍ଣ ସମ୍ମୁରେ ଇନ୍ଦ୍ର ମିଳେ କୋପକରି ।
ଦୂରହୁଁ ବୋଲଇ ଆରେ ଗଉଡ଼ ବାଉଡ଼
କପାଁ ହାଲହୋଳ କରୁଅଛୁ ଆରେ ମୂଢ଼ ।
ପଶିଲୁ ମୋର ନନ୍ଦନବନେ କାହିଁପାଇଁ
ପାରିଜାତ ପୁଷ୍ପ ନେବୁ କପାଁ ମର୍ତ୍ତ୍ୟଭୂଇଁ ।
ଦେବଙ୍କ ପୁଷ୍ପ ନନ୍ଦନବନେ ସେହୁ ଥାଇ
ଦେବତାଙ୍କ ବିନୁ ତାହା ଅନ୍ୟେ ଭୋଗ ନାହିଁ
ଦେବତାଙ୍କ ପୁଷ୍ପ କାହିଁ ନରେ ଭୋଗ ହୋଇ
ନ ଜାଣି ଅନର୍ଥ କରି ଆସି ସ୍ୱର୍ଗଭୂଇଁ ।
ଛାଡ଼ିକରି ପୁଷ୍ପବନ ବେଗେ ଏଥୁ ଯାଅ
ମାନବରି ଦେହ ଧରି ଗାରିମା ନ ବହ ।
ଖାଣ୍ଡବବନ ମୋହର ପାଣ୍ଡବା ଦହିଲା ।
ନନ୍ଦନବନ ଯୋଗରୁ ପାସୋରି ତା ଗଲା ।
ତୁମ୍ଭେ କି ନ ଜାଣ ଏହା ଦେବତାଙ୍କ ବନ
କିପାଇଁ ଅନର୍ଥ କରି ଆସି ସ୍ୱର୍ଗସ୍ଥାନ ।
ଏତେକ କହିଣ ତହୁଁ ଦେବ ପୁରନ୍ଦର
ଐରାବତ କନ୍ଧେ ଥାଇ ସମରେ ବାହାର ।
ତେତିଶକୋଟି ଦେବତା କରେ ଶସ୍ତ୍ର ଧରି
ବେଢ଼ିଲେ ଯାଇଣ ଜଗନ୍ନାଥଙ୍କୁ ଆବୋରି ।

କେହୁ କାହାର ସଙ୍ଗତେ ସମର ନ କର
ସ୍ତବଧ ହୋଇଣ ରହୁ ଅଛନ୍ତି ଆବୋର ।
ଅଶୀସହସ୍ର ଅଛନ୍ତି ଇନ୍ଦ୍ରର ନନ୍ଦନ
ତାହାର ପଛରେ ଥାନ୍ତି ଶସ୍ତ୍ରକୁ ଧରଣ ।
ସୋମଶ୍ରବା ବୋଲି ଏକ ଇନ୍ଦ୍ରର ନନ୍ଦନ
ମଘବାକୁ ପଛକର ଆବୋରିଲା ରଣ ।
ତୀକ୍ଷ୍ଣନାରାଚ ଏକ ସେ ଗୁଣରେ ବସାଇ
ରେରେକାର ଶବ୍ଦକରି ବିନ୍ଧିଲା ଭୁଦାଇ
ଚଳିଗଲା କ ନାରାଚ ଘୋରନାଦ କରି
ଘୋଟିଲା ଅନ୍ଧକାର ନ ଦିଶେ ଜନପୁଷ୍ପ ।
ଶ୍ରୀକୃଷ୍ଣ ଦେବଙ୍କ କରେ ଚକ୍ର ପୁଣି ଥିଲା
ତହିଁରେ ବାଜି ସେ ଶର ବାହୁଡ଼ି ଆଇଲା ।
ତାହା ଦେଖିଣ ହସିଲେ ଦେବ ଭଗବାନ
ସମସ୍ୟା ନ ଦିଅନ୍ତି ସେ ଦେବଙ୍କୁ ଗୃହିଁଣ ।
ଇନ୍ଦ୍ରର ନନ୍ଦନ ଦେଖି ପୁଣି କୋପକଲା
ପରବତା ନାମେ ଶର ଗୁଣେ ବସାଇଲା ।
ବୋଇଲା ଆମ୍ଭର ଶତ୍ରୁ ଅଟୁରେ ପାମର
ସମ୍ଭାଳ ସମ୍ଭାଳ ଏବେ ଏ ପଞ୍ଚତାଶର ।
ଏହା ଶୁଣି ଜଗନ୍ନାଥ କୋପେ ଥରଥର
ଧଇଲେ ସାରଙ୍ଗ ଧନୁ କରେ ଦାମୋଦର ।
ପ୍ରଳୟ ଅନ୍ତକରୂପ ଧରି ଦେବ ସ୍ୱାମୀ
କୋପେ ଗୁରୁତର କବା କାଳ ସର୍ପ ଜାଣି ।
ପଞ୍ଚତାଶର ନିବାର ବଜ୍ରଶର ଧରି
ପେଷିଲେ ସେ ଗନ୍ଧର୍ବର ପରେ କୋପକରି ।
ଚଳିଗଲା ସେହି ଶର ବିଦ୍ୟୁତ୍ତେଜ ଜିଣି
ପଞ୍ଚତାଶର କାଟିଣ ଲୋଟିଲା ଧରଣୀ ।
ପଡ଼ିଲା ସୋମଶ୍ରବାର ପରେ ବାଣଯାଇ
ଫୁଟିଗଲା ବକ୍ଷସ୍ଥଳେ ଲୋଟିଲା ସେ ମହୀ ।
ଦେଖିଣ ଇନ୍ଦ୍ରଦେବତା କୋପ ପରଖର
ଅଶୀସସ୍ର ପୁତ୍ରସହ ମିଳିଲା ସମ୍ମୁର ।
ମଘବାକୁ ପଛକରି ପୁତ୍ରେ ଯୁଦ୍ଧ କଲେ
ଯେ ଯାହାର ଶସ୍ତ୍ରଧରି କୃଷ୍ଣଙ୍କୁ ବିନ୍ଧିଲେ ।
ଗୋଟିଏ ଊଣା ଅଶୀଏ ସହସ୍ର ନାରାଚ
ଏକାବେଳକେ ବିନ୍ଧିଲେ ଇନ୍ଦ୍ରର ତନୁଜ ।
ଶରେ ଦିଗ ପୂରିଗଲା ହେଲା ଅନ୍ଧକାର
ଅବା କି ପ୍ରଳୟ ହେବ ମହା ହେବ ଘୋର ।

ଦେଖି ଜଗନ୍ନାଥ ଦେବ କୋପେ ଥରଥର
ଛେଦିଲେ ଏକ ନାରାଚ ବିନ୍ଧି ସବୁ ଶର ।
କ୍ରୋଧରେ ପେଷିଲେ ଅଗ୍ନିଶର ନାରାୟଣ
ଶୋଇଲେ ଅଶୀସହସ୍ର ସୁତ ଭୂମିରେଣ ।
ତା ଦେଖି ଇନ୍ଦ୍ରଦେବର ନ ସ୍ଫୁରଇ କଣ୍ଠ
ବୋଲଇ ସମ୍ପତ୍ତି ମୋର ନାଶ ହେଉଅଛୁ ।
ଐରାବତ ଗଜେ ବସି କୋପେ ବଜ୍ରପାଣି
ଶ୍ରୀକୃଷ୍ଣ ଉପରେ ବଜ୍ର ପ୍ରହାରଇ ଆଣି ।
ଦେଖିଣ ଶ୍ରୀଜଗନ୍ନାଥ ଚକ୍ରେ ନିବାରିଲେ
ତେତିଶ କୋଟି ଦେବଙ୍କୁ ଗୃହିଁଣ ବୋଇଲେ
ଇନ୍ଦ୍ରଦେବତା ଅଟଇ ତୁମ୍ଭର ରାଜନ
ତାହାପାଇଁ ତୁମ୍ଭେ ଯୁଦ୍ଧ କରବଟି ପୁଣ ।
ଏମନ୍ତ କହିଣ ପ୍ରଭୁ ଦେବ ଭଗବାନ
ବାବଲ ଶର ପେଷିଲେ ଇନ୍ଦ୍ର ଉପରେଣ ।
ଗଜ ଉପରେ ପଡ଼ିଲା ସେହି ଶର ଯାଇ
ଅଚେତ ସେ ଗଜ ଇନ୍ଦ୍ର ପଡ଼ିଲେକ ଶୋଇ ।
ବାହନ ଅଶ୍ୱେ ପୁଣି ଦେବ ପୁରନ୍ଦର
ମହା କୋପାନଳେ ସେହି ଗଜେ ଫୁଫୁକାର ।
ତ୍ରିଦଶ ଦେବତାଗଣ ଶାଖା ପ୍ରାପ୍ତ ହୋଇ
ଦେଖନ୍ତି ଇନ୍ଦ୍ର ଗୋବିନ୍ଦ ଯୁଦ୍ଧ ତହିଁ ରହି ।
ତହୁଁ ସୁରପତି ଅଶ୍ୱ ଉପରେ ଆରୋହି
ଗୋବିନ୍ଦଙ୍କର ସମ୍ମୁରେ ମିଳିଲାକ ଯାଇ ।
କୋପେ ଗୁରୁତର ଇନ୍ଦ୍ର ପୁତ୍ରଙ୍କ ଶୋକରେ
ପୁଣି ଧନୁ କରେ ଧରି ବାହାରେ ସମରେ ।
ସହସ୍ରେକ ନାରାଚ ସେ ଗୁଣରେ ବସାଇ
ପୁତ୍ରମାନଙ୍କ ଶୋକରେ ବଜେ ଶଚୀସାଇଁ ।
ତାହା ଦେଖି ଭଗବାନ ଶଙ୍ଖନାଦ କଲେ
ବାବଲ ଶର ପେଷିଣ ତା ଶର ନାଶିଲେ ।
ମୋହନ ଶର ଶ୍ରୀକୃଷ୍ଣ ଗୁଣରେ ବସାଇ
ବିନ୍ଧିଲେ ଦେବଗଣଙ୍କୁ ଜଗନ୍ନାଥ ଗୃହିଁ ।
ଚଳିଲା ଶର ପ୍ରଳୟକାଳ ସିନ୍ଧୁ ଜାଣି
ଘୋଟିଲା ଅନ୍ଧକାର ଯେ ନ ଦିଶେ ଧରଣୀ ।
ଇନ୍ଦ୍ରଙ୍କୁ ମୁଖ୍ୟ କରିଣ ସର୍ବ ଦେବଗଣ
ଶସ୍ତ୍ର ଗୁଡ଼ିଣ ଶୋଇଲେ ଭୂମି ଉପରେଣ ।
ଇନ୍ଦ୍ର ନଇର୍ଋତ ପୁଣି ପବନ ବରୁଣ
ଦଶଦିଗପାଳ ଆଉ ନବଗ୍ରହଗଣ ।

କାହାର ଦେହରେ ଏବେ ଚଇତନ୍ୟ ନାହିଁ
ଅସାଷ୍ଟମ ହୋଇ ସର୍ବେ ଶୋଇଛନ୍ତି ଭୂଇଁ ।
ଶୂନ୍ୟେ ରହିଣ ନାରଦ ଏହା ଦେଖୁଥିଲେ
ତହୁଁ ଯଶୋବନ୍ତୀ ପୁରେ ଯାଇଣ ମିଳିଲେ ।
ବ୍ରହ୍ମାଙ୍କ ଚରଣେ ସେହୁ କରି ନମସ୍କାର
କରପଦ ଯୋଡ଼ିକରି କହନ୍ତି ଗୁମୁର ।
ଶୁଣ ଆହେ ପିତାମହ ମୋହର ବଚନ
ପ୍ରମାଦ ପଡ଼ିଲା ଦେବ ଆଜ ସ୍ୱର୍ଗସ୍ଥାନ ।
ନାରକା ପୁରକୁ ବିଜେ କଲେ ଚକ୍ରଧର
ସେହି ନଗରର ନାମ ଅଟେ ଜ୍ୟୋତିପୁର ।
ଘୋରଯୁଦ୍ଧ କରି ଦେବ ଦାନବ ନାଶିଲେ
ଷୋଳ ସହସ୍ର କନ୍ୟାଙ୍କୁ ଦ୍ୱାରକା ପେଷିଲେ ।
ଅଦିତି କୁଣ୍ଡଳ ଜଳଦେବ ଦଣ୍ଡଛତ୍ର
ଅମରପୁରେ ଦେଖିଲେ ଏହା ପଦ୍ମନେତ୍ର ।
ଅଦିତିଙ୍କ ସ୍ନେହେ ସେହି କୁଣ୍ଡଳ ଘେନିଣ
ସ୍ୱର୍ଗପୁରେ ଆସୁଥିଲେ ଗରୁଡ଼ ଚଢ଼ିଣ ।
ଅଦିତିଙ୍କର କୁଣ୍ଡଳ ସମର୍ପିଣ ଦେଲେ
ମେଲାଣି ମାଗି ଦ୍ୱାରକାପୁରେ ଆସୁଥିଲେ ।
ସଙ୍ଗରେ ଅଛନ୍ତି ଶବାଜିତ ନନ୍ଦନୀ
ନନ୍ଦନବନ କାଟରେ ଆସୁଥିଲେ ସ୍ୱାମୀ ।
ପାରିଜାତ ପୁଷ୍ପ ବନେ ଦେଖିଣ ଶ୍ରୀଧର
ପ୍ରିୟାର ବଚନେ ତାହା ନେଲେ ଚକ୍ରଧର ।
ତାହା ଦେଖି ସୁରପତି ମହାକ୍ରୋଧ କଲା
ଦେବତାଙ୍କୁ ସଙ୍ଗେ ଘେନି ଯୁଦ୍ଧ ଆରମ୍ଭିଲା ।
ଶ୍ରୀହରିଙ୍କ ସଙ୍ଗତରେ ଯୁଦ୍ଧ ସେହି କଲେ
ଅଶୀସହସ୍ର ନନ୍ଦନ ସମସ୍ତେ ବେଢ଼ିଲେ ।
ତା ଦେଖି ଶ୍ରୀକୃଷ୍ଣ ଚକ୍ର ପେଷିଲେକ ପୁଣି
ଇନ୍ଦ୍ର ସହିତ ତେତିଶକୋଟି ଦେବେ ହାଣି
କାହାର ଦେହରେ ଏବେ ନାହିଁ ଚଇତନ୍ୟ
ଏକ୍ଷଣି ଦେଖି ଆସି ମୁଁ କହେ ଗୁମୁରେଣ ।
ଏହା ଶୁଣି ପରମେଷ୍ଠି ମନରେ ବିଷାଦ
ତକ୍ଷଣେ ମିଳିଲେ ଯାଇ ଯୁଦ୍ଧଭୂମି ମଧ୍ୟ ।
ଦେଖିଲେ ଅଚେତ ଦେବଗଣ ତହିଁ ହୋଇ
ଗରୁଡ଼ ଉପରେ ବିଜେ ଜଗତର ସାଇଁ ।
ଦୂରହୁଁ ଦେଖିଣ ବ୍ରହ୍ମା ପାଦେ ପ୍ରଣମିତ
କରିଦେଇ ଲଗାଇଲେ ଶ୍ରୀଚରଣେ ମାଥ ।

କରପଦ ଯୋଡ଼ି ଯହୁଁ ବୋଲନ୍ତି ବଚନ
ଜୟ ଜୟ ଜଗନ୍ନାଥ ଜଗତ ଜୀବନ ।
ମହିମା ସାଗର ଦେବ ପ୍ରଳୟାନ୍ତକ ସ୍ୱ
ଲୀଳା ନିବାରଣେ ଅବତାର ଯେ ତୋହାର ।
ମହିମ ସାଗର ଦେବ ଭକତ ସୋଦର
ଚତୁର ମୁଖେ ମୁଁ ସ୍ତୁତି କରେ ବେଦବର ।
ତୋହର ସୃଜିଲା ନାଥ ଅଟଇ ତ୍ରିଦଶ
ତୁ ନାଥ ସକଳ ଭୁବନରେ ପରକାଶ ।
ଚନ୍ଦ୍ର ସୂର୍ଯ୍ୟ ଆଦିକରି ଦେବଗଣ ଯେତେ
ତୋହର ସୃଜିଲା ସିନା ଅଟନ୍ତି ସମସ୍ତେ ।
ସୁରପତି ଏବେ କୋପ କଲା ତୋର ତହିଁ
ତୋହର ସୃଜିଲା ଦ୍ରବ୍ୟ ନେଇଗଲୁ ତୁହି ।
ତହିଁର ଫଳ ପାଇଲା ଏବେ ପୁରନ୍ଦର
ତୁ ନାଥ ଦେବତାଗଣଙ୍କୁହିଁ ରକ୍ଷା କର ।
ପୁଣ ପୁଣ ପ୍ରଣମିତ କଲେ ଗୁମୁରେଣ
ଅଷ୍ଟକର ନିବେଶିଲେ ଶିର ଉପରେଣ ।
ପ୍ରଜାପତିର ବିନୟ ଦେଖି ଭଗବାନ
ମନ୍ଦହାସ ପରକାଶି କହନ୍ତି ବଚନ ।
ବୋଲନ୍ତି ଶୁଣ ହେ ପିତା ମୋହର ବଚନ
ଜ୍ଞାନ ହାରି ମନ୍ଦବୁଦ୍ଧି କଲା ଇନ୍ଦ୍ର ପୁଣ ।
ତୋହର ସ୍ତୁତିରେ ମୁହିଁ ଦୟା କଲି ତାରେ
ଦେବତାମାନଙ୍କୁ ଘେନି ଚଳ ନିଜପୁରେ ।
ଏତେକ ବୋଲିଣ ତହୁଁ ଦେବ ଭଗବାନ
ଚାହିଁଲେ ଅମୃତ ନୟନରେ ତତକ୍ଷଣ ।
ତ୍ରିଦଶ ଦେବତାଗଣ ଜୀବନ ପାଇଲେ
କରପଦ ଯୋଡ଼ି ଉଭା ଗୁମୁରେ ରହିଲେ ।
ଜୟ ଜୟ ଶବଦରେ ପୂରେ ସ୍ୱର୍ଗପୁର
ଯେ ଯାହାର ସ୍ତୁତିମାନ କରନ୍ତି ଗୁମୁର ।
ଶ୍ରୀଶାରଳା ଦାସ ଶୁଦ୍ରମୁନି ଭାବେ ମନ
ହେ ମହାପ୍ରଭୁ ହୋଇବା ମୋତେ ପରସନ୍ନ ।
ଝଙ୍କଡ଼ପୁର ବାସିନୀ ନାମ ହିଙ୍ଗଚଣ୍ଡୀ
ତୋହର ବିପତ୍ତି ମାଗୋ ହୋଇବାକ ଖଣ୍ଡି ।
ନାରକା ହତ ଯେ ପାରିଜାତକ ହରଣ
ଶୁଣି ଜନେ ତର ମାୟା ସଂସାରରୁ ପୁଣ ।
ପୁଣିହିଁ ବଳଙ୍କ ଦେଖର ଯେ ନରପତି
ଅଗସ୍ତିଙ୍କ ଚରଣରେ କଲ୍କ ଭକତି ।

ହେ ମୁନି କହ ଯେ ନଧିପର୍ବର ଚରିତ
ପାରିଜାତକ ହରଣ ଅଦ୍ଭୁତ ପର୍ବତ ।
ସେଠାରୁ କେବଣ କୃତ୍ୟ କଲେ ଭଗବାନ
ଏହା ମୋତେ ବୁଝାଇଣ କହିବାକ ପୁଣ ।
କହନ୍ତି ଅଗସ୍ତି ମୁନି ମହା ଜ୍ଞାନବନ୍ତ
ଶୁଣ ଏକମନେ ନଧିପର୍ବର ଚରିତ ।
ଦେବତାଙ୍କୁ ଆଶୀର୍ବାଦ ଦେଇ ଭଗବାନ
ବ୍ରହ୍ମାଙ୍କୁ ବୋଇଲେ ତୁମ୍ଭେ ଯାଅ ନିଜ ସ୍ଥାନ
ପାରିଜାତକ ଘେନିଲେ ପ୍ରିୟା ସ୍ନେହପାଇଁ
ଦ୍ୱାରକାକୁ ବିଜେ କଲେ ବ୍ରହ୍ମାଣ୍ଡ ଗୋସାଇଁ ।
ପଥରେ ଯାଆନ୍ତେ ଶଙ୍ଖ ନାଦ ଘନ ଘନ
ଦ୍ୱାରକା ସମ୍ମୁଖରେ ଯାଇ ବିଜେ ଭଗବାନ ।
ଦେଖିଣ ସାନନ୍ଦ ହେଲେ ପୁରବାସୀ ଜନ
ସାତବଂଶ ଯାଦବେ ଯେ ମିଳିଲେ ବହନ ।
ଉଗ୍ରସେନ ଆଦି ପୁଣି ଉଦ୍ଧବ ସାତ୍ୟକି
ଶ୍ରୀକୃଷ୍ଣ ସମ୍ମୁଖରେ ଆସି ଦର୍ଶନ କରନ୍ତି ।
ସମସ୍ତଙ୍କୁ ତୋଷକରି ଦେବ ଭଗବାନ
ସାତ୍ୟକିଙ୍କୁ ଚାହିଁ ପୁଣି କହିଲେ ବଚନ ।
ଶୁଣରେ ବାବୁ ସାତ୍ୟକି ମୋହର ଉଦନ୍ତ
ସ୍ୱର୍ଗରୁ ମୁଁ ଆଣିଅଛି ବୃକ୍ଷ ପାରିଜାତ ।
ଉପବନେ ଏହାକୁ ତୁ ରୋପ ବେଗେ ନେଇ
ସ୍ୱରଗର ବୃକ୍ଷ ଏହୁ ମର୍ତ୍ତ୍ୟପୁରେ ନାହିଁ ।
ଇନ୍ଦ୍ର ବିବାଦୀ ହୋଇଲା ଏହି ପୁଷ୍ପପାଇଁ
ସାତ୍ୟକିର କରେ ଦେଲେ ବ୍ରହ୍ମାଣ୍ଡ ଗୋସାଇଁ ।
ଯୁବତୀଙ୍କ ପୁରେ ବିଜେକଲେ ଭଗବାନ
ଅଷ୍ଟ ପାଟବଂଶୀ ତାଙ୍କୁ କଲେ ଦରଶନ ।
ସୁବର୍ଣ୍ଣର ଥାଳରେ ସେ ଦୂର୍ବାକ୍ଷତ ଘେନି
ଶ୍ରୀକୃଷ୍ଣଙ୍କୁ ବନ୍ଦାଇଲେ ଆନନ୍ଦେ କାମିନୀ ।
ଜୟଶବ୍ଦେ ହୁଳହୁଳି ଦେଇ ନାରୀଗଣ
ଆନନ୍ଦେ ବିଜୟ ସତ୍ୟଭାମାଙ୍କ ଭୁବନ ।
ମାଜଣା ମଣୋହି ଶେଷ କଲେ ଭଗବାନ
ଶୋଇଲେ ଶ୍ରୀସତ୍ୟଭାମା ତୁଳେ ପଲ୍ୟଙ୍କେଣ
ଏଥିଅନନ୍ତରେ ପୁଣି ପାହିଲା ରଜନୀ
ଦେବତାମାନଙ୍କ ଆଗେ ଶୁଭେ ଶଙ୍ଖଧ୍ୱନି ।
ଉଠିଲେ ନିଦ୍ରା ତେଜିଣ ବେଗେ ଭଗବାନ
ଉଦ୍ଧବଙ୍କୁ ଡାକି ପୁଣି କହନ୍ତି ବଚନ ।

ବାରୁଣାବନ୍ତେ ବହନ ହୋଇ ତୁମ୍ଭେ ଯାଅ
ମୋହର ବାରତା ବେଗେ ପାଣ୍ଡବଙ୍କୁ କହ ।
ଯୁଧିଷ୍ଠିର ଠାକୁରଙ୍କୁ ଦୂର୍ବାକ୍ଷତ ଦେଇ
ଆଣ ପାର୍ଥଙ୍କୁ ବିବାହୋତ୍ସବ ବୋଲି କହ ।
ଆଜ୍ଞା ପାଇଣ ଉଦ୍ଧବ ବେଗେ ଚଳିଗଲା
ବାରୁଣାବନ୍ତରେ ଯାଇ ପ୍ରବେଶ ହୋଇଲା ।
ଯୁଧିଷ୍ଠିରଙ୍କ ଚରଣେ ପ୍ରଣାମ କରିଲା
ଶ୍ରୀକୃଷ୍ଣଙ୍କ ଆଜ୍ଞାମତେ ଦୂର୍ବାକ୍ଷତ ଦେଲା ।
ବିବାହ ଉତ୍ସବ ହେବ ଦ୍ୱାରକା ଭୁବନ
ଅର୍ଜୁନଙ୍କୁ ପେଷ ଦେବ ମୋହ ସଙ୍ଗତେଣ ।
ଶୁଣିଣ ଯୁଧିଷ୍ଠି ସହଦେବ ମୁଖ ଚାହିଁ
କପାଇଁ ଲୋଡ଼ନ୍ତି ବାବୁ ପାର୍ଥେ ଯଦୁସାଇଁ ।
ସହଦେବ ଏସନକ ଠାକୁରହୁଁ ଶୁଣି
କରଦ୍ୱୟ ଯୋଡ଼ିକରି କହେ ଗୁଣମଣି ।
ନାରକାକୁ ମାରି ଷୋଳସହସ୍ର କନ୍ୟା ଆଣି
ଦ୍ୱାରକା ବିଜୟ କରିଛନ୍ତି ଚକ୍ରପାଣି ।
କନ୍ୟାଗଣଙ୍କର ହେବ ବିବାହ ଉତ୍ସବ
ତେଣୁକରି ପାର୍ଥେ ଲୋଡ଼ୁଛନ୍ତି ବାସୁଦେବ ।
ଶୁଣିଣ ଯୁଧିଷ୍ଠି ଦେବ ଅର୍ଜୁନକୁ ଚାହିଁ
ଶ୍ରୀହରିଙ୍କୁ ଦେଖ ବାବୁ ଦ୍ୱାରକାକୁ ଯାଇ ।
ଆଜ୍ଞା ପାଇଣ ବାହାରି ବେଗେ ଧନୁର୍ଦ୍ଧର
ଉଦ୍ଧବ ସଙ୍ଗେ ପ୍ରବେଶ ଦ୍ୱାରକା ନଗର ।
ଏଥିଅନନ୍ତରେ ଦେବ ପ୍ରଭୁ ଭଗବାନ
ସାତ୍ୟକି ମୁଖକୁ ଚାହିଁ ବୋଲନ୍ତି ବଚନ ।
ରାଜାମାନଙ୍କୁ ଯାଇଣ ନିମନ୍ତ୍ରଣ କର
ବିବାହ ଉତ୍ସବ ହେବ ଦ୍ୱାରକା ନଗର ।
ପୂର୍ବ ପଶ୍ଚିମ ଆବର ଉତ୍ତର ଦକ୍ଷିଣ
ଚାରିଦିଗେ ବେଗେ ଦୂତ ପେଷିଲେ ବହନ ।
ପ୍ରଦ୍ୟୁମ୍ନ ପୂର୍ବକୁ ଗଲା ସାତ୍ୟକି ଦକ୍ଷିଣ
ଅନିରୁଦ୍ଧ ଜାମ୍ବବେୟ ଉତ୍ତରପଶ୍ଚିମ ।
ଦୂର୍ବାକ୍ଷତମାନ ଦେଇ କଲେ ନିମନ୍ତ୍ରଣ
ଆନନ୍ଦେ ଆସନ୍ତି ସର୍ବେ ଦ୍ୱାରକା ଭୁବନ ।
ରାଜାମାନଙ୍କୁ ଆସନ ଦିଏ ଉଗ୍ରସେନ
ବସିଲେ ପୂଜା ଗୌରବ ପାଇ ରାଜାମାନ ।
ଆଜ୍ଞା ପାଇଣ ଆସନ୍ତି ସର୍ବରାଜା ପୁଣି
ଦୁହିତାମାନଙ୍କୁ ବିଭା ହେବେ ଚକ୍ରପାଣି ।

ଶମଦଣ୍ଡ ବିବାହର ଯୋଗାଡ଼ ଘେନିଣ
ଦ୍ୱାରକାପୁରେ ମିଳିଲେ ସକଳ ରାଜନ ।
ଦେଖିଣ ଆନନ୍ଦ ହେଲେ ପ୍ରଭୁ ଚକ୍ରପାଣି
ଯେ ଯାହା ଅନୁରୂପରେ ଠାବଦେଲେ ଆଣି ।
ଲାଗିଲେ ଶତ ଅର୍ବୁଦ ଦଶ ସୂପକାର
ରାନ୍ଧଣାବାଢ଼ି କରନ୍ତି ଅମୃତ ଯୋଗାଡ଼ ।
ତହୁଁ ଆରମ୍ଭିଲେ ଯେତେ ମଙ୍ଗଳ ବିଧାନ
ହୁଳହୁଳି ଦେଲେ ସର୍ବେ ପୁରନାରୀଗଣ ।
ବାଜଇ ବାଜଣାମାନ ଅତି ଗୁରୁତାଣ
ଆବର ରାଜା ମାନଙ୍କ ବାଜଣା ମିଶିଣ ।
ସ୍ୱର୍ଗ ପୂରିଲା ଶବଦେ କମ୍ପେ ବସୁମତୀ
ଦେବଗଣ ଘେନି ବିଜେକଲେ ସୁରପତି ।
ଋଷିଗଣ ସେଠାରେ ଯେ ମିଳିଲେକ ଆସି
ଦେଖି ପୂଜାକଲେ ତାଙ୍କୁ ଦେବ ହୃଷୀକେଶୀ
ଆଣିଥିଲେ ଯେଉଁ ଷୋଳସସ୍ର କନ୍ୟାଗଣ
ଯେ ଯାହାର ଅନୁରୂପେ ଦେଇଛନ୍ତି ସ୍ଥାନ ।
ଆସିଲେ ଚୌଷଠି କୋଟି ସ୍ୱର୍ଗବିଳାସିନୀ
କରୁଛନ୍ତି ନୃତ୍ୟ ଗୀତ ସୁସ୍ୱରେ ଗାୟେଣୀ
ସୁସ୍ୱରେ ସର୍ବ ନାୟିକା ହୁଳହୁଳି ଦେଲେ
ଆବର ଯେ ଜୟ ଜୟ ଶବ୍ଦ ଉଚ୍ଚାରିଲେ ।
ରତ୍ନମଣ୍ଡପେ ବିଜୟ କଲେ ଭଗବାନ
କନ୍ୟାଙ୍କୁ ସୁବେଶ କରୁଛନ୍ତି ନାରୀଗଣ ।
ଦେଲେ ରାଜାମାନଙ୍କୁ ଯେ ଯାହା କନ୍ୟା ନେଇ
ଋଷିଗଣ ବେଦବାକ୍ୟ ଉଚ୍ଚାରନ୍ତି ତହିଁ ।
ଯେଉଁପରି ଅଟେ ବେଦ ବିହିତ ବିଧାନ
ଶ୍ରୀକୃଷ୍ଣଙ୍କୁ ରାଜାମାନେ ଦେଲେ କନ୍ୟା ଦାନ
ନାନା ଯଉତୁକମାନ ଦେଲେ ରାଜାଗଣ
ଏମନ୍ତେ ଶେଷ ହୋଇଲା ବିଭାର ବିଧାନ ।
ଧରିଲେ ଷୋଳସହସ୍ର ରୂପ ଭଗବାନ
ମିଳିଲେ ଯାଇଣ କନ୍ୟାମାନଙ୍କ ଭବନ ।
ଏଥୁଅନନ୍ତରେ ପୁଣ ପାହିଲା ରଜନୀ
ଶଯ୍ୟା ତ୍ୟାଗ କରିଲେ ଯେ ପ୍ରଭୁ ଚକ୍ରପାଣି
ରାଜାଏ ଦର୍ଶନ କଲେ ଶ୍ରୀଛାମୁରେ ଯାଇ
ଅକ୍ଷତ ଦେଇ ବିଦାୟ କଲେ ଯଦୁସାଇଁ ।
ସ୍ୱରଦେଶର ଯେ ସର୍ବ ରାଜା ଆସିଥିଲେ
ମେଲାଣି ମାଗି ଯେ ଯାହା ଭୁବନକୁ ଗଲେ ।
ଅର୍ଜୁନକୁ ଗୃହିଁ କହୁଛନ୍ତି ଭଗବାନ
ଜ୍ୟୋତିଷ ପୁରେ ନାରକା ଅସୁରର ସ୍ଥାନ
ବହୁ ଯୁଦ୍ଧ ମୋର ସଙ୍ଗେ କଲାକ ଅସୁର
ଚକ୍ର ପେଷିଣ କାଟିଲି ମୁହିଁ ତାର ଶିର ।
ଅଦିତି ମାତା କୁଣ୍ଡଳ ଘେନି ସ୍ୱର୍ଗେ ଗଲି
ଲେଉଟି ନନ୍ଦନ ବନ ବାଟରେ ଅଇଲି ।
ପାରିଜାତ ପୁଷ୍ପ ଦେଖି ଦେବୀ ସତ୍ୟଭାମା
ସେ ପୁଷ୍ପ ନେବାକୁ ତାର ହୋଇଲା କାମନା
ତାହା ଆଣନ୍ତେ ବାସବ ଦେବ କୋପକଲା
ବହୁ ସମର ତାହାର ମୋହର ହୋଇଲା ।
ମୋହନା ଶରରେ ନାଶ ହେଲେ ଦେବଗଣ
ବ୍ରହ୍ମା ଆସିଣ ତାହାଙ୍କୁ ଦେଲେ ଜୀବଦାନ ।
ତହୁଁ ଦ୍ୱାରକା ପୁରକୁ ଅଇଲଇଁ ମୁହିଁ
ବହୁତ ଶରଧା ତୋତେ ଦେଖିବାର ପାଇଁ ।
ତୁହିରେ ଅର୍ଜୁନ ଅଟୁ ମୋର ପଞ୍ଚପ୍ରାଣ
ନ ଦେଖିଲେ ତୋତେ ସ୍ଥିର ନୁହେଁ ମୋର ମନ
ଦ୍ୱାରକାରେ ଦିନାକେତେ ରହିକନା ବାବୁ
ଏ ଯେତେ ସମ୍ପଦ ମୋର ତୋର ସିନା ସବୁ ।
ଶୁଣିଣ ଅର୍ଜୁନ କହେ ଯୋଡ଼ି ବେନିପାଣି
ଠାକୁରଙ୍କ ଆଜ୍ଞା ନାହିଁ ଯିବ ଏହିକ୍ଷଣି ।
ସମ୍ଭାଷଣ କରି ପ୍ରଭୁ ତାଙ୍କୁ କୋଳକଲେ
ଅକ୍ଷତ ଘେନିଣ ପାର୍ଥ ବାରୁଣାକୁ ଗଲେ ।
ଯେତେ ଯେତେ ଋଷିଗଣ ତହିଁ ଆସିଥିଲେ
ମେଲାଣି ପାଇ ଯେ ଯାହା ସ୍ଥାନକୁ ଚଳିଲେ ।
ଆବର ଇନ୍ଦ୍ର ପ୍ରମୁଖ ଦେବଗଣ ଯେତେ
ମେଲାଣି ପାଇଣ ସର୍ବେ ଚଳିଲେ ତୁରିତେ ।
ରହିଲେ ଆନନ୍ଦେ ଦ୍ୱାରକାରେ ଭଗବାନ
ଶୂଦ୍ରମୁନି ଶ୍ରୀକୃଷ୍ଣଙ୍କ ଚରଣେ ଶରଣ ।

---

## ପୁଷ୍ୟାଭିଷେକ ଓ କାମାକ୍ଷୀ ବ୍ରତ ବିଧି

ଏଥୁଅନ୍ତେ ସେ ବଳିଙ୍କ ଦେଶ ମହାରାଜା
ଅଗସ୍ତିଙ୍କ ପାଦତଳେ କଲେ ଦିବ୍ୟପୂଜା ।
ଷୋଳସହସ୍ର କନ୍ୟା ବିଭାହେଲେ ଚକ୍ରପାଣି
ତହୁଁ ଯେ କେବଣ କୃତ୍ୟ ହେଲା ମହାମୁନି
ବଦନ୍ତି ଅଗସ୍ତି ମୁନି ଆଦି ବ୍ରହ୍ମବେତ୍ତା
ଏକମନେ ଶୁଣ ମନୁ ବୈବସ୍ୱତ ଶ୍ରୋତା ।

ଧନୁମାସ ପୁଷ୍ୟା ଯୋଗ ପୂର୍ଣ୍ଣିମା ଯେ ତିଥି
ପୁଷ୍ୟା ଅଭିଷେକ ହେବେ ଦେବ ଦାଶରଥି
ଅଭିଷେକ ପାଞ୍ଚଦିନ ଥାଉଁ ଜଗନ୍ନାଥ
ବିଚାରିଲେ ଅଣାଇବା ସୁଭଦ୍ରାହିଁ ପାର୍ଥ ।
ଅକ୍ରୂରକୁ ଆଜ୍ଞାଦେଲେ ଘେନିଆସ ଯାଇ
ଆଇଲା ଅକ୍ରୂର ଜଗନ୍ନାଥ ଆଜ୍ଞା ପାଇ ।
ଅର୍ଜ୍ଜୁନକୁ କହିଲା ସେ ଶ୍ରୀକୃଷ୍ଣ ଆଦେଶ
ପୁଷ୍ୟା ଅଭିଷେକ ହେବ ପୂର୍ଣ୍ଣିମା ଦିବସ ।
ପୁଷ୍ୟା ଅଭିଷେକ ହେବେ ଦେବ ଜଗନ୍ନାଥ
ସୁଭଦ୍ରାକୁ ଘେନି ବେଗେ ଚଳସି ହୋ ପାର୍ଥ
ଅର୍ଜ୍ଜୁନ କହିଲେ ଯାଇ ଯୁଧିଷ୍ଠି ଅଗ୍ରତେ
ନାରାୟଣ ଆଜ୍ଞା ମୋତେ ଯିବାର ନିମନ୍ତେ ।
ପୁଷ୍ୟା ଅଭିଷେକ ହେବେ ପ୍ରଭୁ ଦାଶରଥି
ଆସିଅଛି ନେବାପାଇଁ ଅକ୍ରୂର ସାରଥି ।
ଯିବାପାଇଁ ସଜହେଲେ ଭୂରିତ ଅର୍ଜ୍ଜୁନ
ସୁଭଦ୍ରାକୁ ଘେନି ବିଜେ ପୁଷ୍ପକ ବିମାନ ।
ଆଗେ ବାଟ କଡ଼ାଉଛି ସାରଥି ଅକ୍ରୂର
ଦ୍ୱାରକାରେ ବିଜେକଲେ ପାର୍ଥ ଧନୁର୍ଦ୍ଧର ।
ଆସ୍ଥାନରେ ବିଜେ କରିଛନ୍ତି ରାମ ହରି
ଅର୍ଜ୍ଜୁନ ପ୍ରଣାମ କରି ପାଦପଦ୍ମ ଧରି ।
ଅନେକ କଲ୍ୟାଣ କଲେ ହରି ବଳରାମ
ଶୁଭ ଯଶ ପରାପତ ହେଉ ଯେ ସଂଗ୍ରାମ ।
ପୁଷ୍ୟା-ଅଭିଷେକ ହେବ ଯାହାର ବିଧାନ
କରାଇଲେ ଦ୍ୱାରକାରେ ରାଜା ଉଗ୍ରସେନ ।
ଶ୍ରୀରାମର ଅଭିଷେକ ଯେସନ ବିଧାନେ
ରଙ୍ଗଯାତ୍ରା ଭିଆଇଲେ ଦ୍ୱାରକା ଭୁବନେ ।
କୋଟି ତୀର୍ଥ ଘେନି ଯାହାଧିପତି ପୁଷ୍କର
ପ୍ରବେଶିଲା ଆସି ରାମକୃଷ୍ଣଙ୍କ ସ୍ଥମ୍ଭର ।
ଜଗନ୍ନାଥ ବନ୍ଦାପନା ପୁଷ୍ୟା ଅଭିଷେକ
ବାହନେ ଚଢ଼ି ଦେଖନ୍ତେ ଶୂନ୍ୟେ ବୃନ୍ଦାରକ
ଆକାଶରେ ପୁଷ୍ପବୃଷ୍ଟି କରେ ମଘବାନ
ଜୟ ଜୟ ଶବଦରେ ପୂରଇ ଗଗନ ।
ତ୍ରୈଲୋକ୍ୟର ନାଥ ପ୍ରଭୁ ଜନ ଅଧିକାରୀ
ସମ୍ମୁଖରେ ଅଭିଷେକ ହେଉଛନ୍ତି ହରି ।
ଅର୍ଜ୍ଜୁନକୁ ଘେନି ଅଭିଷେକ ଟିଶିବସି
ଜଗନ୍ନାଥଙ୍କ ଜାନୁରେ ଅର୍ଜ୍ଜୁନ ବସିଛି ।

ଦେଖି ପରମ ସନ୍ତୋଷ ପ୍ରଭୁ ବଳରାମ
ସାଧୁ ସାଧୁ ଧନଞ୍ଜୟ ତୋ ମାନବ ଜନ୍ମ ।
ମାନବ ଅବତାର ଯେ ଦେବ ଜଗନ୍ନାଥ
ତାହା କୋଳେ ବସିବାକୁ ହୋଇଲୁ ସାମର୍ଥ
କୋଟିତୀର୍ଥ ଘେନି ଦିଗପାଳ ଯେ ପୁଷ୍କର
ଅଭିଷେକ କରନ୍ତି ଶ୍ରୀଜଗନ୍ନାଥ ଶିର ।
ଅଭିଷେକ ଦେଖି ଦେବେ କଲେ ସାଧୁଧ୍ୱନି
ବେଦୀରେ ବସିଲେ କୃଷ୍ଣ ଅର୍ଜ୍ଜୁନକୁ ଘେନି ।
ଦଣ୍ଡଘେନି ଦକ୍ଷିଣରେ ସାତ୍ୟକି ଅଛଇ
ଆଗେ ଅକ୍ରୂର ସୁବର୍ଣ୍ଣ ଦଣ୍ଡଘେନି ରହି ।
ବିଜୟ ଜଗମୋହନ ଚଢ଼ି ଶ୍ୱେତହସ୍ତୀ
କୋଳରେ ବସିଅଛନ୍ତି ପାର୍ଥ ମହାରଥୀ ।
ବୁଲନ୍ତି ଦ୍ୱାରକା ପୁର ଚୌବିଂଶ ଯୋଜନ
ବିଜୟ ହସ୍ତୀ ଉପରେ ଦେବ ସଂକର୍ଷଣ ।
ଜୟ ଜୟ ଭାଷନ୍ତି ଯେ ମିଳି ମୁନିମାନେ
ଆନନ୍ଦ ଜଳରେ ବୁଡ଼ିଛନ୍ତି ପୁରଜନେ ।
ଭ୍ରମଣ ସାରି ବିଜୟ ଚନ୍ଦ୍ରଶାଳା ପୁରୀ
ଖଟନ୍ତି ବିଳାସିନୀଏ ପୁର ନରନାରୀ ।
ଆହ୍ନିକ ସାରି ସେ ଦେବ ମଣୋହିରେ ବିଜେ
ଅର୍ଜ୍ଜୁନ ଘେନି ମଣୋହି କଲେ ଦେବରାଜେ
ମଣୋହିରୁ ଉଠି ଦେବ କଲେ ଆଚମନ
ଜୟ ଜୟ ଭାଷନ୍ତି ଯେ ମୁନି ପୁରଜନ ।
କର୍ପୂର ତାମ୍ବୁଳ ବସି କରନ୍ତି ଭୋଜନ
ରାତ୍ର ପ୍ରହରକେ ଆସି ହେଲା ବର୍ତ୍ତମାନ
ସୁଭଦ୍ରାକୁ ଘେନି ବିଜେ ବୀର ଧନଞ୍ଜୟ
ଶୟନ ପୁରେ ପ୍ରବେଶ ବାସବ ତନୟ ।
ଯେସନେକ ବ୍ୟବହାର ଅଛି ପତିପତ୍ନୀ
ତେସନ ସୁଖେ ବଞ୍ଚିଲେ ସେ ଦିନ ରଜନୀ ।
ଦ୍ୱାରକାରେ କିଛି ଦିନ ରହିଲେ ଅର୍ଜ୍ଜୁନ
ଶ୍ରୀକୃଷ୍ଣଙ୍କ ଅନୁରାଗ ବଢ଼େ ଯେତେ ଦିନ ।
ଯଶୋଦା ଦେବକୀ ଏକଦିନେ ଛନ୍ତି ବସି
ଦ୍ୱାରକାରେ ବିଜେକଲେ ଶ୍ରୀ ନାରଦ ଆସି ।
ଦେବକୀ ଯଶୋଦା ବେନି ଦେଖି ନାରଦଙ୍କୁ
ପାଦ୍ୟ ଅର୍ଘ୍ୟ ଦେଇ ପାଦେ ସେବିଲେ ତାହାଙ୍କ
ବହୁ ପୂଜାବିଧି କଲେ ସେହି ଦୁଇ ମାଏ
ପୁଣ ପୁଣ ପ୍ରଣିପତ୍ୟ ହୋନ୍ତି ତାଙ୍କ ପାୟେ ।

ମୁନି ବୋଇଲେ ଗୋ ତୁମ୍ଭେ ଅଟ ମାହେଶ୍ୱରୀ
ପୂର୍ବେ ତପକରି ପାଇଅଛ ନରହରି ।
ଯଶୋଦା ବୋଇଲେ ଭଲ କହିଲ ତ ମୁନି
ମହତ ଦର୍ଶନେ ପ୍ରାଣୀ ହୁଅନ୍ତି ଯେ ଜ୍ଞାନୀ ।
ଆମ୍ଭଙ୍କୁ କାରଣ ଏବେ କର ତପୋବନ୍ତ
ଜନ୍ମେ ଜନ୍ମେ ହେବୁଁ ଆମ୍ଭେ ଗୋବିନ୍ଦର ମାତ
ନାରଦ ବୋଇଲେ ଆଗୋ ଏକବ୍ରତ ଅଛି
ତାହା କଲେ ଜନ୍ମେ ଜନ୍ମେ ପାଇବ ଶ୍ରୀବତ୍ସ
ଦେବକୀ ବୋଇଲେ ମୁନି ନ କର ସନ୍ଦେହ
ଦୟାକରି ମହାତମା ଆମ୍ଭ ଆଗେ କହ ।
ନାରଦ ବୋଇଲେ ଏବେ ଶୁଣ ଗୋ ଦେବକୀ
ପ୍ରସ୍ତାବେ କହିବା ଧର୍ମ ଥିବ ତହିଁରେ କି ।
ସକଳପୁରେ ପ୍ରବେଶି ଧର୍ମ ଅର୍ଥ ଜାଣୁ
ପଚ୍ଛରିଲେ ସେ ସମସ୍ତ କଥାହିଁ ବଖାଣୁ ।
କାମାକ୍ଷୀ ବୋଲି ଅଛଇ ଗୋଟିଏ ଯେ ବ୍ରତ
ସେ ବ୍ରତ କରିଲେ ଧର୍ମ ହୋଇବ ପ୍ରାପତ ।
ଦେବକୀ ବୋଇଲେ ତୁମ୍ଭେ ଅଭିଜ୍ଞ ପଣ୍ଡିତ
କହିଲେ ସିନା ଜାଣିବା ବିଧାନ ସମସ୍ତ ।
ଓଷାର ଯେ ଉପହାର ହୋଇବାକ କିସ
ଏହା ସଂକ୍ଷେପି କହିବା ମୋତେ ବ୍ରହ୍ମଶିଷ୍ୟ ।
କହନ୍ତି ଦେବକୀ ମୁଖ ଚାହିଁ ମୁନିଦେବ
ମକର ମାସରେ ଓଷା ସମ୍ପାଦନ ହେବ ।
ମାଘ ଶୁକ୍ଳ ତ୍ରୟୋଦଶୀ ତିଥିହିଁ ପବିତ୍ର
ବୃହସ୍ପତି ବାର ପୁଣି ପୁଷ୍ୟା ଯେ ନକ୍ଷତ୍ର ।
ତିଥିବାର ଯେବେ ଏକ ଯୋଗହିଁ ହୋଇବ
କୃଷ୍ଣ ଗଉରୀ ସେ ଓଷା ନାମ ବୋଲାଇବ ।
ଅପୋଡ଼ା ପୃଥ୍ୱୀ ଖଣ୍ଡିଏ ହେବ ଯଜ୍ଞଶାଳ
ଆହୁତି ଯେ ଆରୋପଣ ହେବ ଦିନ ଷୋଳ ।
ସାମବେଦୀ ଯେ ପଚଶ ସହସ୍ର ବ୍ରାହ୍ମଣ
ଯଜୁର୍ବେଦୀ ଯେ ପଚଶ ସହସ୍ର ପ୍ରମାଣ ।
ପଚଶ ସହସ୍ର ପୁଣି ଋକବେଦୀ ଜାଣ
ଅଥର୍ବବେଦୀ ପଚଶ ସହସ୍ର ବରଣ ।
ଏମନ୍ତ ଲକ୍ଷେ ବ୍ରାହ୍ମଣ ହେବେ ଚତୁର୍ବେଦୀ
ଅଜପା ମନ୍ତ୍ରେ ଲକ୍ଷେକ ଜପ ହେବ ସିଦ୍ଧି ।
ସୁବର୍ଣ୍ଣର ହେବ ପୁଣି ଲକ୍ଷେ ଧାପାବଳି
ଲକ୍ଷେକ ହୋଇବ ପୁଣି ସୁବର୍ଣ୍ଣ ପିତୁଳି ।

ଲକ୍ଷେକ ସୁବର୍ଣ୍ଣ ନିତି ଦେଉଥିବ ଦାନ
ଷୋଳଦିନ ପରିଯନ୍ତେ ଦେଉଥିବ ଅନ୍ନ ।
ଯେତେକ ଜନ ଭୁଞ୍ଜିବେ ଜାଣ ଯଜ୍ଞଶାଳେ
ସବୁଙ୍କୁହିଁ ବସ୍ତ୍ର ଦେବ ଭୁଞ୍ଜିବାର ବେଳେ ।
ମଣ୍ଡନ କରିବ ଅଷ୍ଟରତ୍ନେ ଲକ୍ଷେ ହସ୍ତୀ
ଲକ୍ଷେଘର ସ୍ୱର୍ଣ୍ଣଦାନ ଦେବ ଯଶୋବନ୍ତୀ ।
ଶ୍ୱେଖାର ତୁରଗ ଏକ ପୁଣି ଲକ୍ଷେ ହସ୍ତ
ଏତେକ ଦାନ ଦେବ ସେ ରତ୍ନମଣିମସ୍ତ ।
ଆପଣାର ବଂଶୁ ଏକ ସୁଲଭ କୁମାରୀ
ଏହାକୁ ଦାନ କରିବ ଅଙ୍ଗେ ରତ୍ନଭରି ।
ଏକଲକ୍ଷ ରତ୍ନଘଟ କରିବ ମଣ୍ଡିତ
ତାକୁ ଦାନଦେବ କରି ଏସନ ସଂଜାତ ।
ଏମନ୍ତ ଯେ ଦାନ ଦେବ ସମସ୍ତ ସଜାଡ଼ି
ଏକ ଲକ୍ଷ ଦେବ କୃଷ୍ଣ ଅଜିନ ଛଉରି ।
କାମ୍ୟ ଶ୍ରାଦ୍ଧ ଦେବ ଗଣ୍ଡା ଗୋଟିଏକ ମାରି
ଓଷାର ବିଧାନ ଜାଣ ଏମନ୍ତହିଁ କରି ।
ଲକ୍ଷେକ ଭାର ହୋଇବ ଜାଣ ଗୁଆଘୃତ
ଲକ୍ଷେକ ଲଙ୍ଗ ହୋଇବ ମଧୁରେ ମିଶ୍ରିତ ।
ସୁବର୍ଣ୍ଣର ଦେବ ଏକଲକ୍ଷ ଦେବୀମୂର୍ତ୍ତି
ପିଙ୍ଗଳ ନାସିକା ସବୁ କାମାକ୍ଷୀ ମୂରତି ।
ମହାଯୋଗେଶ୍ୱରୀ ସେହି ପରମ ବୈଷ୍ଣବୀ
ମୂର୍ତ୍ତି ଗୋଟିକେ ଲକ୍ଷେକ ଛାଗ ଦେବ ଦେବୀ
ଷୋଳଦିନ ପରିଯନ୍ତେ ବସି ଦିବାରାତ୍ରେ
ଆହାର ନିଦ୍ରା ମୂରୁଚ୍ଛି ମୈଥୁନ ସହିତେ ।
ମିଥ୍ୟା ଅପବାଦ କିଛି ନ କହିବ କାହିଁ
ତଇଳ ତାମ୍ବୁଳ ଆଦି ନିଷେଧିବ ତହିଁ ।
ଷଟସହସ୍ର ବ୍ରାହ୍ମଣ ବରିବ ପ୍ରଥମେ
ପୁରାଣର ଧ୍ୱନି ହେଉଥିବ ଅନୁକ୍ରମେ ।
ଷୋଳଦିନ ପରିଯନ୍ତେ ଦେବ ଅନ୍ନଦାନ
ଯେ ମାଗିବ ସେ ଲେଉଟି ନା ଯିବ ସେ ଦିନ
ପୁଷ୍ପେକ ଅଛଇ ତାର ନାମ ଯେ ସୁଗନ୍ଧ
ଷୋଳଦିନକୁ ସେ ପୁଷ୍ପ ଲକ୍ଷେକ ସମ୍ପାଦ ।
ଏହି ବ୍ରତର ଯେ ନାମ ଅଟଇ କାମାକ୍ଷୀ
ଜନ୍ମେ ଜନ୍ମେ ପୁତ୍ର ନିଶ୍ଚେ ହୋଇବ ଶ୍ରୀବତ୍ସ
ଆପେ ବିଜୟ କରିବେ ଆସି ସେ କାମାକ୍ଷୀ
ମାଗିବ ନାରାୟଣଙ୍କୁ ପୁତ୍ର ରୂପେ ବାଞ୍ଛି ।

ପୂର୍ବାପର କଥା ଯେତେ ସବୁ ଆମ୍ଭେ ଜାଣୁ
ପଚ୍ଛରିଲେ ଆମ୍ଭେ ପୁଣି ସତ୍ୟହିଁ ବଖାଣୁ ।
ଶୁଣି ସାନନ୍ଦ ହୋଇଲେ ଦେବୀ ଯଶୋବନ୍ତୀ
କରନ୍ତି ବ୍ରହ୍ମାନନ୍ଦନ ନାରଦଙ୍କୁ ସ୍ତୁତି ।
ଧାତାନନ୍ଦନ ପ୍ରତ୍ୟକ୍ଷେ ଅଟୁ ବ୍ରହ୍ମବେତ୍ତା
ପ୍ରଧାନ ପୁରୁଷ ଭୂତ ଭବିଷ୍ୟତଜ୍ଞାତା ।
ଅସଂଖ୍ୟ ସଂଖ୍ୟା କରାଇ ପାରୁ ମହାମନ୍ତ୍ରେ
ଅବୋଧ ବୋଧ ହୁଅଇ ତୋହର କହନ୍ତେ ।
ଅମାର୍ଗ ମାର୍ଗହିଁ ଦୃଶ୍ୟ ହୁଅଇ ଯାହାକୁ
ଅଜପା ଜପି ଅନାଦ୍ୟ ପୁରୁଷଙ୍କୁ ଦେଖୁ ।
କେଶ ମୁକୁଳା ତୋହର ତୁ ଉଲଗ୍ନଶାୟୀ
ଭ୍ରୂକୁଟୀ ନୃତ୍ୟ କରାଇ ବନ୍ଦକର ଗୃହିଁ ।
ଭଣ୍ଡସଣ୍ଡ କହି କହି ହେଉ ତୁ ଖଟାଇ
ବୀଣାଯେନ ନାଚ ଦେଉ ଜଗକୁ ହସଇ ।
ଡକାପାରୁ କ୍ଷଣକରେ ହସିପାରୁ ବୋଦ୍ଧ
ଭଣ୍ଡେ ତାଣ୍ଡବ କର ତୁ ଅନାଦ୍ୟଙ୍କୁ ସେବ ।
ଭର୍ତ୍ସନା କରି ଦିଅନ୍ତି ଯେବେ ତୋତେ ଗାଳି
ଗାଲଭୁର ମାରି ଆପେ ଦେଉ କରତାଳି ।
ଅବାଟରେ ଜାତ ତୋତେ କଲା ବେଦବ୍ରହ୍ମା
ତପେ ପ୍ରସନ୍ନେ ଚହ୍ନିଲ ତୋତେ ମହାତମା
କୁତୁହଳେ ତୋ ଭ୍ରମଣ ଦେଖି ସେ ପୁରୁଷ
କୁତୁହଳୀ ଯେ ପୁରୁଷ ହୋଇଲା ତୋ ବଶ ।
ଅତ ତପେ ନ ପାରନ୍ତି ଅଣାକାର ସାଧି
ମହାଭଣ୍ଡପଣେ ତୁହି କାର୍ଯ୍ୟ କରୁ ସିଦ୍ଧି ।
ତୁ ମହାଋଷି ଧନ୍ୟ ସେ ପୁରୁଷ ପାଇଲୁ
ତେଣୁ ଯେ ଧବଳ ଘର ତୁ ଚହ୍ନି ଜାଣିଲୁ ।
ପ୍ରପଞ୍ଚରୂପେ ତୁ କେତେ ପ୍ରମାଦ ଦେଖିଲୁ
ତେଣୁ ପରମ ପୁରୁଷେ ପ୍ରବେଶ ହୋଇଲୁ ।
କଲ୍ପେ ତପ କଲେ ଯାହା ନ ପାଆନ୍ତି ଲୋଡ଼ି
ନଇତେ ଥାଉ ତୁ ଯେନ କଳ ଯେ ଘୋକଡ଼ି
କଳକନ୍ଥା କଳଛତା କଳ ଆଭରଣ
କଳପ୍ରିୟ ନାମ ତୋର କଳ ଦେଖ ପୁଣ ।
ଅମୃତ ଯୋଗାଡ଼ ତୋତେ ହୋଇଲେ ପ୍ରାପତ
କଳ ନ ପାଇଲେ ନୋହୁ କଦାପି ତୃପତ ।
ଭଣ୍ଡପଣେ ତୋଷ କରୁ ସବୁଙ୍କର ଚିତ୍ତ
କଉତୁକ ଉପୁଜାଇ କରୁଥାଉ ନୃତ୍ୟ ।
ବିନା ତପେ ଅଣାକାର ଦୟା କଲ ତୋତେ
ବର୍ତ୍ତିଲୁ ତୁ ପୁଣି ତିନିଯୁଗ ପରିଯନ୍ତେ ।
ମହାମାୟା ବରେ ତୋର ପିତା ସିନା ବ୍ରହ୍ମା
କହିବାକୁ କାହୁଁ କ୍ଷମା ମୁଁ ତୋର ମହିମା ।
ସୁଜନେ ଏ କାଳ କଟେ ଜଗତକୁ ମୋହ
କାଳବାଞ୍ଛା ନାଥ ମୋତେ ଧର୍ମ ଅର୍ଥ କହ ।
ଶରଣ ଧାରଣ ତୁହି ପରମ ଯେ ବ୍ରହ୍ମ
କୃଷ୍ଣ ବଳତ୍ୟାଗୁଁ ତୋତେ କୃତାନ୍ତ ଅଗମ୍ୟ ।
ଆଦ୍ୟହୁଁ ଖଞ୍ଜିଲୁ ନାଥ କଳର ପୀରତି
ପ୍ରସନ୍ନ ତୁ କରାଇଲୁ କଳକା ମୂରତି ।
ତୁମ୍ଭର ଭକତଭାବ ମନେ କରି ଇଚ୍ଛା
ଭବସମୁଦ୍ରୁ ଉଦ୍ଧର ପୂରୁ ମନୋବାଞ୍ଛା ।
ଶ୍ରୀନାରଦଙ୍କ ବଚନ ହୃଦେ ମୋର ପଶୁ
ନାରପୂଣଙ୍କ ଆଜ୍ଞାରେ କଲ୍ପାପୁଷ୍ପ ଆସୁ ।
ଶ୍ରୀସ୍ୱାବଲ୍ଲଭ ଚରଣ ରେଣୁ ଶିରେ ଘେନି
ଗ୍ରନ୍ଥ କରେ ଶ୍ରୀଶାରଳା ଦାସ ଶୂଦ୍ରମୁନି ।
ହୃଦରେ ଚିନ୍ତଇ ଯାହା ଗୋସାମଣୀ ବୋଲେ
ପାତକ ଧ୍ୱଂସିଲେ ବିଷ୍ଣୁ ପୁରାଣ ଶୁଣିଲେ ।
ପାରିଜାତ ହରଣ ଯା କହିଲେ ଅଗସ୍ତି
ପୀରତିରସେ କହିଲ ମଧ୍ୟପର୍ବ ଖ୍ୟାତି ।
ନୁହଇ ପଣ୍ଡିତ ମୁହିଁ ଜନ୍ମରୁ ମୁରୁଖ
ନ ଧରିଲି ଖଡ଼ି ମୁଁ ନ ପଢ଼ି ଅକ୍ଷରେକ ।
ବେଦମନ୍ତ୍ର ସାଧ ମୋର ନୁହେ ଜନ୍ମେଜନ୍ମେ
ବୋଲଇ ବଚନ ମୁହିଁ ଶାରଳା ପ୍ରସନ୍ନେ ।
ଅସଂଖ୍ୟ ଏ ଅଗୋଚର ଅସମ୍ଭବ ବାଣୀ
ମଧ୍ୟପର୍ବ ଏ ଅମୃତ ଚରିତ ଯେ ପୁଣି ।
ଝଙ୍କଡ଼ପୁରବାସିନୀ ସିଦ୍ଧ ଗୋ ସାଧବୀ
ସୁଗନ୍ଧିକା ହରଣ ମୁଁ କହିବାକୁ ଭାବି ।
ବାକ୍ୟ ମୋତେ ଦିଅ ମାଗୋ ସୁପ୍ରସନ୍ନ ହୋଇ ।
ଜନ୍ମେ ଜନ୍ମେ ମୁଁ ତୋହର ସେବକ ବୋଲାଇ

## ସୁଗନ୍ଧିକା ହରଣ, ଅର୍ଜ୍ଜୁନ ଶରରେ ସାଗର ବନ୍ଧନ

ଅଗସ୍ତି କହିଲେ ଶୁଣ ମନୁ ବ୍ରହ୍ମଜ୍ଞାନୀ
ବ୍ରତର ବିଧାନ ସହୁଁ କହିଲେ ସେ ମୁନି ।

ନାରଦଙ୍କୁ ପୁଚ୍ଛା କଲେ ଦେବୀ ଯଶୋବନ୍ତୀ
ସକଳ ସମ୍ବାଦ ମୋତେ କହିବା ହେ ଯତି ।
ସୁଗନ୍ଧିକାପୁଷ୍ପ ମୁନି ଅଛି କେଉଁ ସ୍ଥାନେ
ତାହା ମୋତେ କହିଦେବା ହେଉ ଯେ ଏକ୍ଷଣେ
ନାରଦ ବୋଇଲେ ଅଛି ସେ ଦୁରାପ ଠାବେ
ଆଣିବାକୁ ଲୋକ କାହିଁ ପାଇବ ବା ତୁମ୍ଭେ ।
ଯେକଣ ଠାବରେ ଅଛି କୁସୁମ ସୁଗନ୍ଧି
ହରି ରାମ ବଚନରେ ନୁହଇ ଯେ ସିଦ୍ଧି ।
ପୁଷ୍ପ ଫୁଟିଅଛି ପୁଣି ତହିଁ ଅପ୍ରମିତ
ନିରତେ ସେ ସ୍ଥାନ ଲଙ୍କାଦମନ ଆଶ୍ରିତ ।
ବିଷାଦ ପାଇଲେ ଶୁଣି ଯଶୋବନ୍ତୀ ରାଣୀ
କାହାକୁ ବୋଲିବୁ କିଏ ପୁଷ୍ପ ଦେବ ଆଣି ।
କରପଦ ଯୋଡ଼ି ଉଭା ହୋଇଲା ଅର୍ଜୁନ
କପାଇଁ ବିଷାଦ ମାତ କରୁଅଛ ମନ ।
ହେ ପରମଗୁରୁ ଆଜ୍ଞା ମୋତେ ବେଗେଦେବା
ତବ ଆଜ୍ଞାରେ ମୁଁ ପୁଷ୍ପ ଆଣିପାରେ ଅବା ।
ଆଉ ଦ୍ରବ୍ୟମାନ ତୁମ୍ଭେ ବେଗେ ସଜ କର
ଲଗିବ ସୁଗନ୍ଧ ଯେତେ ସେ ହେଲା ମୋହର
ଯଦ୍ୟପି ଯକ୍ଷ ତାହାର ଅଛଇ ଆବୋରି
କଲଙ୍କକୁ ନିଷ୍କଲଙ୍କ କରିବ ମୁଁ ମାରି ।
ଶୁଣି ସାନନ୍ଦ ହୋଇଲେ ଯଶୋଦା ଦେବକୀ
ନାରଦହିଁ ଗଲେ ରାମକୃଷ୍ଣଙ୍କ ତହିଁକି ।
ମାତା ଦୁହେଁ ବୋଇଲେ ରେ ଶୁଣ ରାମ ହରି
କାମାକ୍ଷୀ ନାମରେ ବ୍ରତ ନାରଦେ ପଚାରି ।
ସେ ଓଷା କରିବା ଯେବେ ତୁମ୍ଭଙ୍କୁ ପାଇବୁ
ଜନ୍ମେ ଜନ୍ମେ ତୁମ୍ଭର ଯେ ମାତା ହୋଇଥିବୁ
ବୋଇଲେ ନାରଦ ମୁଖ ଚାହିଁ ନାରାୟଣ
କଳହପ୍ରିୟ ନାରଦ କି କରୁ ଭିଆଣ ।
ନାରଦ ବୋଇଲେ ତୁମ୍ଭେ ଶୁଣ ପଦ୍ମନାଭ
ଦେବସ୍ତ୍ରିରାଙ୍କ ଓଷା ଏ ନାରୀଙ୍କ ଦୁର୍ଲ୍ଲଭ ।
ବାବୁ ନାରଦଙ୍କ କଥା ନ ଭାଗରେ ହରି
ମର୍ତ୍ତ୍ୟରେ ପ୍ରଚାର ହେଉ କରନ୍ତୁ ଯେ ନାରୀ ।
ଏସନ ବୋଇଲେ ଯହୁଁ ପ୍ରଭୁ ବଳଦେବ
ଭାଙ୍ଗି ନ ପାରିଲେ ପ୍ରଭୁ କଥା ବାସୁଦେବ ।
ନାରଦ ବୋଇଲେ କହ ପାର୍ଥକୁ ଶ୍ରୀବତ୍ସି
ସୁଗନ୍ଧିକା ପୁଷ୍ପ ଆଣୁ ସରୋବରେ ପଶି ।

ଅର୍ଜୁନର ବଦନକୁ ଚାହିଁଲେ ଶ୍ରୀହରି
ପୁଷ୍ପଦେଇ ପାରିବୁ କି କହ ତୁ ବିଚାରି ।
ଅର୍ଜୁନ ବୋଇଲେ ଦେବ ଚିନ୍ତା ତୁ ନ କର
ଯେତେ ସୁଗନ୍ଧ ଲଗିବ ଦେବ ସତ୍ୟ ମୋର
ନାରଦ ବଦନ ଚାହିଁ କହିଲେ ଶ୍ରୀହରି
ବ୍ରତର ଭିଆଣ କର ଆହୋ ତପସ୍ୱୀ ।
ଦ୍ୱାରକା ଭୁବନ ପୁର ଦକ୍ଷିଣ ଆଡ଼ରେ
ନୀଳସୁନ୍ଦର ବଟର ଉତ୍ତର କୋଣରେ ।
ଅଢ଼ାଇ ହାତ ଅପୋଡ଼ା ଅଛି ଭୂମିଖଣ୍ଡି
ବିଜୟି ତହିଁ ବିଲଙ୍କା ନାମେ ମହାଚଣ୍ଡୀ ।
ବିନ୍ଧାଣିକୁ ଡାକି ଆଜ୍ଞା ଦେଲେ ନନ୍ଦବାଳ
ସେ ସ୍ଥାନ ଆବୋରି ଦିଅ ଶୁଭ ଅନୁକୂଳ ।
ଅନ୍ୟକର କି କହିବି ଘଟଣା ବିନ୍ଧାଣି
ଅନେକ ରତ୍ନ ଦେଲେ ସେ ତହିଁରେ ନିର୍ମାଣି
ଆପେ ନିଜେ ଥାଇ ସେହି ନାରଦ ମହର୍ଷି
କରନ୍ତି ସବୁ ଯୋଗାଡ଼ ଆପେ ଥାଇ ବସି ।
କୃଷ୍ଣ ବଳଦେବ ପୁଚ୍ଛା କଲେ ଅର୍ଜୁନକୁ
ତୋ ଯୋଗେ ପୁଷ୍ପ ପ୍ରାପତ ହୋଇବ ଆମ୍ଭଙ୍କୁ
ଶୁଭ ଅନୁକୂଳ ଆଣି ଦେଲେ ଚକ୍ରପାଣି
ଚଳଇ ବାସବ ସୁଗନ୍ଧିକା ପୁଷ୍ପ ଆଣି ।
ମାଘମାସ ଶୁକ୍ଳପକ୍ଷ ଦ୍ୱିତୀୟାର ଦିନ
ବୁଧବାର ଶତଭିଷା ନକ୍ଷତ୍ର ସେ ଦିନ ।
ଗର ନାମେ କରଣ ଯେ ବରିୟାନ ଯୋଗ
ସତରଦିନ ମକର ସଂକ୍ରାନ୍ତିର ଭୋଗ ।
ବେଳ ମଧ୍ୟସ୍ଥାନ ସୂର୍ଯ୍ୟ ଶୁଦ୍ଧ ଲଗ୍ନବେଳ
ତିଥି ବାର ନକ୍ଷତ୍ର ଯେ ଶୁଭ ଅନୁକୂଳ ।
ଚଳଇ ପଶ୍ଚିମ ଦିଗେ ସେ ପାକଶାସନ
ନାରଦ ବୋଇଲେ ଦେବ ଶୁଣ ଚକ୍ରପାଣି ।
ଅର୍ଜୁନ ଯାଉଛି ପକ୍ଷୀରାଜ ମଧୁବନ
ମୋହର ବଚନ ଶୁଣ ଦେବ ଜନାର୍ଦ୍ଦନ ।
ପୂର୍ବର କଥାକୁ ତୁମ୍ଭେ ହେଜୁ କର ମନେ
କାଳୀୟ ହ୍ରଦରେ ଥିଲେ ଯେଉଁ ସର୍ପମାନେ ।
ନୀଳ ଇନ୍ଦ୍ରବର ସର ଯକ୍ଷ ପ୍ରତିପାଳି
ତୋ ଭୟେ ପଳାଇ ତହିଁ ପଶିଅଛି କାଳୀ ।
ସୁଗନ୍ଧ ପୁଷ୍ପ ଆବୋରି ଅଛି କାଳସର୍ପ
ଅର୍ଜୁନ ସହି ପାରିବ କାହୁଁ ତାର ଦର୍ପ ।

ଗରୁଡ଼ଙ୍କୁ ସୁମରନ୍ତେ ଦେବ ନାରାୟଣ
ତୁରିତେ ମିଳିଲା ଆସି ବିନତା ନନ୍ଦନ ।
ବୋଲନ୍ତି ସେ ଗରୁଡ଼ଙ୍କୁ ଦେଖି ଜଗନ୍ନାଥ
ତୋହର ପିଠିରେ ବିଜେ କରୁ ବୀରପାର୍ଥ ।
ବୈନତେୟ ଅର୍ଜ୍ଜୁନଙ୍କୁ ଗଲା ତହୁଁ ଘେନି
ଖଗବରଙ୍କୁ ସେ ବୀର କରଇ ଦଇନି ।
ସ୍ୱାମୀ ନାରାୟଣ ବିଜେ କରନ୍ତି ତୋ ପିଠି
ମୁହିଁ ବହିଛୁ ମାନବ ହୀନ ଜନ୍ମଗୋଟି ।
ଗରୁଡ଼ ବୋଇଲା ତୁହୋ ନ କହ ଏମନ୍ତ
ଅଭେଦ ଶରୀର ଆତ୍ମା ଅଟେ କୃଷ୍ଣ ପାର୍ଥ ।
ନର ନାରାୟଣ ତୁମ୍ଭେ ଅଟ ଏକମୂର୍ତ୍ତି
ମେଖଳା ଅନ୍ତରେ କୋଟି ନାମରେ ଗଣନ୍ତି ।
ଅର୍ଜ୍ଜୁନ ବୋଲେ ରମ୍ୟକ ଦ୍ୱୀପେ ତୁ ରହିବୁ
ମୋତେ ଅଗୋଚର ହେଲେ ସୁମରିଲେ ଯିବୁ
ଗରୁଡ଼ ବୋଇଲା ମୋତେ ପେଷିଲେ ଶ୍ରୀହରି
ବହନ ଯିବା ମୋହର ପୃଷ୍ଠେ ବିଜେକରି ।
ଅନେକ କଠାଳ ଯହୁଁ କଲ ପକ୍ଷୀରାଜ
ପୃଷ୍ଠେ ବିଜେ କଲ ଯାଇ ବାସବ ଆତ୍ମଜ ।
ଚଳଇ ଅର୍ଜ୍ଜୁନ ଧରି ମୀନ ଲଗ୍ନବେଳା
ବାମେ ଯୋଗିନୀ ସପ୍ତମ ଘରେ ଚନ୍ଦ୍ରକଳା ।
ଲକ୍ଷେକ ବଳ ଗାଣ୍ଡୀବ ନାମେ ମହାଧନୁ
ପ୍ରତ୍ୟକ୍ଷ କି ନାରାୟଣ ବିଜୟ ଗଗନୁ ।
ସୁର ମଧୁବନ ନାମେ ମାରୁତିର ପୁର
ଏଗାର ସହସ୍ରଯୁଣ ମନ୍ଦରୁ ସେ ଦୂର ।
ପବନହୁଁ ଚଞ୍ଚଳ ତ ଅଟେ ଖଗେଶ୍ୱର
ଏକା ରାତିକେ ପ୍ରବେଶ ଯକ୍ଷରାଜ ପୁର ।
ବେଲଳ ମଳୟ ବଜ୍ର ଅନନ୍ତ ଯେ ଗିରି
ମଧ୍ୟ ସରୋବର ଲୁରିଆଡ଼େ ଗିରି ଗୁରି ।
ଯୋଜନଗନ୍ଧା ନାମରେ ଏକ କଳ୍ପବଟ
ସେ ବଟ ଅଟେ ଦକ୍ଷିଣ ଭାଗ ସିନ୍ଧୁତଟ ।
ମଧ୍ୟେ ସରୋବର ଗୋଟି ଶତେକ ଯୋଜନ
ପନ୍ଦର ଯୋଜନ ତାର ଗର୍ଭ ଆୟତନ ।
ତହିଁର ଭିତରେ ଅଛି କୁସୁମ ସୁଗନ୍ଧ
ନିରତେ ସେ ଜଳଘୋଟି ଅଛଇ ଜଳଧି ।
ପୁଷ୍ପଙ୍କର ଜ୍ୟୋତି ବାଳ ଆଦିତ୍ୟଙ୍କୁ ଜିଣି
ଦେବତାଏ କେହି ପଶି ନ ପାରନ୍ତି ପୁଣି ।

ଯମୁନା ହ୍ରଦ ପରାୟୁ ଝଳକଇ ପାଣି
ଜଳେ ଜଳପ୍ରାୟ ପୂରି ଅଛନ୍ତି ନାଗୁଣୀ ।
ଆକାଶକୁ ତାଙ୍କ ତେଜ ଲାଗେ ଜଳବିମ୍ବ
ପର୍ବତେ ଅର୍ଜ୍ଜୁନ ଥାଇ ଦେଖଇ ତା ସର୍ବ ।
ମନ୍ଦାର ପୁଷ୍ପ ଯେସନେ ପ୍ରଭାତରେ ଝଳ
ମହାପ୍ରଳୟ ତଳେ କି ଲୁଚିଅଛି କାଳୀ ।
ଅର୍ଜ୍ଜୁନ ବୋଲେ ଶୁଣିବା ବିନତାର ସୁତ
ଏହି ବଟ ଉପରେ ତୁ ହୋଇଥା ଗୁପତ ।
ଦେଖଇ ବୁଝଇ କିନା କାଳୀର ଯେ ଦର୍ପ
ମୋତେ ଦେଖିଣ ଆସନ୍ତି କିନା ଯେତେ ସର୍ପ
ବାମକରେ ଧନୁଶର ଡାହାଣରେ ଯଷ୍ଟି
ବଟର ତଳରେ ଉଭା ହୋଇଲା କିରୀଟି ।
ହରିରାଜ ବନ ସେହି ଅଟେ ଅଧିପତି
ସେ ବନ ରଖଇ ହରି ବଳ ଚକ୍ରବର୍ତ୍ତୀ ।
ସେ ଅପୂର୍ବ ପୁରୁଷଙ୍କୁ ଦେଖି କପିବୀରେ
ଅର୍ଜ୍ଜୁନଙ୍କୁହିଁ ବେଢ଼ିଲେ ଆସି ସେ ସଧୀରେ ।
କଟିକଟା ଶବ୍ଦ ଘୋର ବିକଟାଳ ମୁଖ
କାଳମୁଖ ଦଧିମୁଖ ଦୁର୍ମୁଖ ସୁମୁଖ ।
ଅଧିର ବିକାଶି ଆସି ମିଳିଲେ ସଇନ୍ୟ
ଯଷ୍ଟି କରେ ଘେନି ତାଙ୍କୁ ପିଟଇ ଅର୍ଜ୍ଜୁନ ।
ଧାଡିକାରେ ଉଠିଲେ ସେ ଧାଇଁ ବୃକ୍ଷଶିଖେ
ଗୋଡ଼ାଇ ବାସବ ତାଙ୍କୁ ପିଟନ୍ତେ ବିମୁଖେ ।
ଡାଙ୍ଗେ ପିଟନ୍ତେ ତାଙ୍କର ନାହିଁ କିଛି ଭୀତି
ବୃକ୍ଷ ବୁଲାଇ ଧାଇଁଲେ ହୋଇ କୋପମୂର୍ତ୍ତି ।
ଶିଳାମାନ କରେ ଧରି ଧାଇଁଲେ ବାନରେ
ଅର୍ଜ୍ଜୁନଙ୍କୁ ଫୋପାଡ଼ିଲେ ଥାଇ ବହୁଦୂରେ ।
ଅତ୍ୟନ୍ତ ବିମୁଖ ହୋଇ ବୀର ଫାଲଗୁନି
ଗୁଣ ଦାନକରି ବୀର ଧନୁଶର ଘେନି ।
ଗାଣ୍ଡିବ ଧନୁରେ ବୀର ସନ୍ଧି ଶର ଗୁରି
ବିନ୍ଧିଲା ଅର୍ଜ୍ଜୁନ ଦ୍ରୋଣ ଗୁରୁଙ୍କୁ ସୁମରି ।
ଅନୁକ୍ଷଣେ ଗୁଣେ ସନ୍ଧି ବୀର ଧନଞ୍ଜୟ
ବସିଲେ ନାରାଚେ ଯାଇ ବାନରଙ୍କ କାୟ ।
ପକ୍ଷୀ ପରିମାଣେ ଯାଇ ଛଇଗୁଡ଼େ ଗଳି
ପୁଣି ସେ ବିନ୍ଧିଲା ଗୁରିବାଣ ମହାବଳୀ ।
ଶର ଆଘାତକୁ ପାଇ ପଳାଇଲେ ଡରେ
ହନୁକୁ ଭେଟିଲେ କ୍ଷିଣକ୍ଷିଣା ପର୍ବତରେ ।

ବିକଳେ ଆକୁଳ ହୋଇ ପଳାନ୍ତି ସଇନ
ବୀରେକ ବିନ୍ଧଇ କରେ ଦେବଶସ୍ତ୍ର ଘେନ ।
ସୈନ୍ୟର ବିକଳ ଦେଖି ବୀର ହନୁମନ୍ତ
କୋପେଣ ଧାଇଁଲା କରେ ଘେନିଣ ପର୍ବତ ।
ବାନର ବଳକୁ ଛାଡ଼ିଯାଏ ବୀରମଣି
ଦିଶଇ ସୁନ୍ଦର କି ସେ ଦେବ ଚକ୍ରପାଣି ।
ହନୁମନ୍ତ ବିଜେ କଲା ଏମନ୍ତ ସମୟେ
ଦେଖି ବୀର ଧନଞ୍ଜୟ ରହିଲା ନିର୍ଭୟେ ।
ରେରେକାର ଶବଦରେ ସେ ବୀର ଅର୍ଜୁନ
ବାନରଙ୍କୁ ବିନ୍ଧୁଅଛି ଅସ୍ତ୍ର ଅନୁକ୍ଷଣ ।
କୋପେ ମାରୁତି ପର୍ବତ ଗୋଟିଏ ବୁଲାଇ
ଆରେ ରେ ମାନବା ତୋର ଏଡ଼େ ଦର୍ପ କାହିଁ
ପର୍ବତ ବୁଲାଇ ହନୁ ମାଇଲାକ ବେଗେ
ବଜ୍ରମୁନା ଶରେ ତାହା ପାର୍ଥ ଛେଦେଯୋଗେ
ଦେଖି ହନୁମାନଙ୍କୁ ସେ ନିଷ୍ଠୁରଇ କହି
ଏଡ଼େବଡ଼ ବୀର କେଉଁ ଭୁବନୁ ଆସିଛି ।
ପୁଣି ପର୍ବତେକ ଆଣି ମାରି ରାମଦୂତ
ବାବଲ ଶରେ ଛେଦିଲା ତାହା ବୀରପାର୍ଥ ।
କୋପେ ହନୁମନ୍ତ ବେନି ମୁଥକୁ ଉଞ୍ଚାଇ
ଅର୍ଜୁନର ଉପରକୁ ଆସୁଅଛି ଧାଇଁ ।
ହନୁର ସେ ଉଗ୍ରମୂର୍ତ୍ତି ଦେଖିଣ ବାସବି
ମାଇଲା ବାବଲ ଶର ପାର୍ଥ ଭାବି ଭାବି ।
ନାରାଚ ବସିଲା ଯାଇ ହନୁମନ୍ତ କାୟେ
ଶରୀର ଦିଶଇ ତାର କିଂଶୁକ ପରାୟେ ।
ରୋମେ ରୋମେ ଫୁଟି ଦେହୁ ଗଳଇ ରୁଧିର
ଶାନ୍ତମୂର୍ତ୍ତି ହୋଇ ତାକୁ ପୁଚ୍ଛେ ମହାବୀର ।
ରହ ରହ ବୋଲି ଉଚେ ହନୁମନ୍ତ ଡାକି
ଅମୋଘ ଶର ତୂଣୀରୁ କାଢ଼ିବାର ଦେଖି ।
ନାରାଚ ଗୋଟିକୁ ଦେଖି ବିସ୍ମୟରେ କପୀନ୍ଦ୍ର
ଏ ଶରେ ଅସୁର ବଧ କଲେ ରାମଚନ୍ଦ୍ର ।
ମହା ଯୋଦ୍ଧା ଅଟଇ ଏ ନୁହଇ ମାନବ
ଅମର ଭୁବନ ତେଜି ବିଜେ କି ବାସବ ।
କିବା କପିଳାସ ତେଜି ବିଜେ ମହାଦେବ
କି ଏ ଦେବକୀ ନନ୍ଦନ ଦେବ ବାସୁଦେବ ।
ହନୁମନ୍ତ ବୋଇଲା ହେ ମହାତ୍ମା ରହ
ନାରାଚ ସହର କଥା ପଦେ ମୋତେ କହ ।

କିସ ନାମ କହ ତୋର କିସ ତୋର କାୟା
ମୋତେ ଅସମ୍ଭବ ହେଲା ଏ ତୋହର ମାୟା ।
ମୁହିଁ ଯୋଗେଶ୍ୱର ଖିନଖିନା ଅଧିପତି
ଅସୁର ସାଗର ମୁହିଁ ପୂର୍ବେ ଥିଲି ମନ୍ଥି ।
ପର୍ବତରେ ବନ୍ଧ ମୁହିଁ କଲଇଁ ବାରିଧି
ରଣରଙ୍ଗ ରସେ ମାତି କଉଣପ ଛେଦି ।
ଅର୍ଜୁନ ବୋଇଲା ଛାର ପାମର ତୋ କଥା
ସମୁଦ୍ରକୁ ବାନ୍ଧିକରେ ହେବୁ ବଳବନ୍ତା ।
ଜାତିରେ ବାନର ତୁହି ଖାଉ ଫଳମୂଳ
ତୁ ପୁଣି ଦେଖାଉ ଆସି ମୋ ଆଗରେ ବଳ
ବିନାଦୋଷେ ମୋ ସଙ୍ଗରେ କରୁଅଛୁ କଳି
କାଟି ତୋର ଶିର ଦେବି ଏହିକ୍ଷଣି ବଳି ।
ହନୁ ବୋଲେ ଜାଣିଲି ମୁଁ ଚରିତ୍ର ତୋହର
ଧନୁଶର କରେ ଧରି କରୁ ଅହଙ୍କାର ।
କପାଇଁ ତୋଳିଲୁ ଫୁଲ ସରୋବରୁ ଆସି
ଏହି ସରୋବରେ ଇନ୍ଦ୍ର ନ ପାରଇ ପଶି ।
ଫୁଲ ନେଇ ନ ପାରନ୍ତି କେହି ମୋର ଡରେ
ଶ୍ରୀରାମଙ୍କୁ ନିତି ଏହି ଫୁଲେ ପୂଜା କରେ ।
ଅର୍ଜୁନ ବୋଇଲା କେଉଁ ରାମ କାହିଁ ଘର
କାହାକୁ ତୁ ପୂଜା କରୁ ଆରେ ରେ ବାନର
ହନୁ ବୋଲେ ନ ଜାଣୁ କି ତୁହି ସେ ରାମଙ୍କୁ
ପୁରନ୍ଦର ଭୟ କରେ ଯାହାର ଧନୁକୁ ।
ଯାହାର ଆଜ୍ଞାରେ ଗିରି ଜଳରେ ଭାସଇ
ଯାହାର ଆଜ୍ଞାରେ ମୁହିଁ ବନ୍ଧ ବାନ୍ଧିଲଇଁ ।
ତ୍ରିଦିନେ ହେଲା ଶତଚୌବିଂଶ ଯୋଜନ
ଏ ପୁଷ୍ପେ ତାହାଙ୍କୁ ପୂଜା କରେ ପ୍ରତିଦିନ ।
ଅର୍ଜୁନ କହିଲା କହୁ ତୁ ସେ ରାମ ବଳ
ଦଣ୍ଡିକ ମଧ୍ୟରେ ବାନ୍ଧିଦେବି ସିନ୍ଧୁଜଳ ।
ହନୁମନ୍ତ ବୋଇଲା ତୁ ଯାହା ବୋଲୁ ତୁଣ୍ଡେ
ବାନ୍ଧି ନ ପାରିଲେ କେହି ଚଉଦ ବ୍ରହ୍ମାଣ୍ଡେ ।
ଅର୍ଜୁନ ବୋଇଲା ତୋର ରାମର କି ବଳ
ରିଷ ମର୍କଟେ ଆଣିଲେ ମୁଣ୍ଡରେ ଶଇଳ ।
ବରଷକେ ସେହି ବନ୍ଧ ବାନ୍ଧିଲେ ସେ ପୁଣି
ରାକ୍ଷସ କେତୁଟା ରାମ ପକାଇଲା ହାଣି ।
ତା ପ୍ରଶଂସା କହୁ ତୋତେ ମାଡ଼ୁନାହିଁ ଲାଜ
ଶରରେ ସାଗର ମୁହିଁ ବାନ୍ଧିଦେବି ଆଜ ।

ହନୁ ବୋଲେ ସେ ରାମଙ୍କୁ ନନ୍ଦୁରେ ମାନବା
ତାଙ୍କୁ ଅସମ୍ଭବ ନୁହେ ଶରରେ ବାନ୍ଧିବା ।
ଯେ ଶରବନ୍ଧ କି ଦାଉ ସହିବ ଆମ୍ଭର
ଏଣୁ ସେ ପର୍ବତେ ବାନ୍ଧି ଅଛନ୍ତି ସାଗର ।
ଅର୍ଜୁନ ବୋଇଲ ମୋର ଶରବନ୍ଧେ ଯେବେ
ଯକ୍ଷ କି ଉରଗ ଦେବ ଦାନବ ମାନବେ ।
ସମର କରିବେ ରହି ସହସ୍ର ବରଷ
ତଥାପି ସେ ଶରବନ୍ଧ ନୋହିବ ବିନାଶ ।
ଛାର ଋକ୍ଷ ମର୍କଟଙ୍କୁ କସ ଅବା ଗଣେ
ତୁଟିବ କି ଶରବନ୍ଧ ତାହାଙ୍କର ରଣେ ।
ହନୁମନ୍ତ ବୋଇଲା ହୋ ଆସକନା ଭାଇ
ମିଛେ ଏତେ ଦମ୍ଭ ତୁମ୍ଭେ କରୁଛ କପାଇଁ ।
ବୋଇଲା ସେ ଫାଲଗୁନ ଭାଙ୍ଗଇ ତୋ ଗାଲ
ବାନ୍ଧଇ ସାଗର ଦେଖ ଯେନ କପିପଲ ।
ଆସ ଆସ ବୋଲି ହନୁ କଢ଼ାଇଲା ବାଟ
ଦିବସକେ ହେଲେ ଯାଇ ମହୋଦଧି ତଟ ।
ଆରେ ରେ ପାମର ତୁହି ବୋଲୁ ମହାଯୋଧି
ବାନ୍ଧିଲୁ ଗୃହ୍ରଦିବସ ମଧ୍ୟେ ଏ ବାରିଧି ।
ଶୁଣ ହୋ ମର୍କଟ ବୋଲି ବୋଲଇ ଫାଲ୍‌ଗୁନ
ମୁହିଁ ବନ୍ଧ କରିଦେବି ବେଳ ଦଣ୍ଡ ତିନ ।
ହନୁ ବୋଲେ ଚଉବଂଶ ଯୋଜନ ଏ ଦୀର୍ଘ
ବିଂଶପୂର୍ଣ ପ୍ରତି ବାର ଯୋଜନ ଉହ୍ଲଗ ।
ବୋଲଇ ଧନଞ୍ଜୟ ତୁ କହିଲୁ ନ ଜାଣି
ସମୁଦ୍ରଯାକ ନାରଚେ ବାନ୍ଧିବି ଏକ୍ଷଣି ।
ହନୁ ବୋଇଲା କହୁ ତୁ କେବଳ ବଚନେ
କରିପାରୁ ଯେବେ ମୁହିଁ ଦେଖିବି ନୟନେ ।
ହନୁମାନ ବଚନରେ କୁପିତ ଅର୍ଜୁନ
ମନଭେଦୀ ନାରାଚକୁ ମନେ କଲା ଧ୍ୟାନ ।
ଯାହା ତାଙ୍କୁ ଦେଇଥିଲେ ତୋଷେ ବୈଶ୍ୱାନର
ଭେଟିଲେ ସେ ଶର ଆସି ଅର୍ଜୁନ ପାଶରେ ।
ଅର୍ଜୁନ ବୋଇଲା ତୁହୋ ମନଭେଦୀ ଶର
କଟାଳ କରୁଛି ମୋତେ ଏ ଛାର ବାନର ।
ଏ ସାଗର ବନ୍ଧ ତୁମ୍ଭେ ହୋଇବୁ ଏକ୍ଷଣେ
ଲଙ୍କାଗଡ଼େ ହାବୋଡ଼ିବୁ ପଚାଶ ଯୋଜନେ ।
ଓସାର ହୋଇବୁ ପୁଣି ବିଂଶତି ଯୋଜନ
ବାର ଯୋଜନ ଉତ୍ସର୍ଗ ହୋଇବଟି ପୁଣ ।

ଏତେକ ଛଆର ଛାଡ଼ିଦେଲା ମନଭେଦୀ
ପବନୁଁ ବେଗେ ବାନ୍ଧିଲା ସେ ଶର ବାରିଧି ।
ଆଜ୍ଞା ପ୍ରମାଣରେ ମନଭେଦୀ ଶରଗଲା
ସମୁଦ୍ର ଭିତରେ ରହି ବନ୍ଧେକ ହୋଇଲା ।
ଏକଶତ ଚଉବଂଶ ଯୁଣେ ଲମ୍ବ ହୋଇ
ଲଙ୍କାଗଡ଼ ପାଚେରୀରେ ହାବୁଡ଼ିଲା ଯାଇ ।
ବିଂଶତି ଯୋଜନ ପ୍ରତି ବାରପୂର୍ଣ ଉଚ
ସାଗରେ ସେ ଶରବନ୍ଧ ହୋଇଲା ସୁସଞ୍ଚ ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ଅଞ୍ଜନାର ବଳା
ନିଷ୍ଟୟ ଏ ମହାମାୟା ନାରାୟଣ କଳା ।
ହନୁମନ୍ତ ବୋଇଲା ତୁ ବାନ୍ଧିଲୁ ନା ଶରେ
ସୋଲଭେଳା ଜାଣି ଉପୁଚଆଇ ଜଳରେ ।
ତୁ ମହାକ୍ଷତ୍ରୀ ମହିମା ଧନ୍ୟହିଁ ତୋହର
କେହି ବାନ୍ଧି ନ ପାରଇ ଶରରେ ସାଗର ।
ପର୍ବତରେ ବନ୍ଧ ଯେତେ ସହିଲେକ ଭାର
ଏହି ସହିବ କି ଶରବନ୍ଧ ମାନ ସାର ।
ରାମ ରାବଣର ଥିଲା ଯେତେ ପୁଣି ଥାଟ
ବନ୍ଧ ଉପରେ ସମରେ ନ ଦିଶଇ ବାଟ ।
ଏ ବନ୍ଧ ସହିବ ବୋଲି ଅର୍ଜୁନ ବୋଇଲେ
ସହିବ ଏ ମହାଭାର ମେରୁହିଁ ହୋଇଲେ ।
ହନୁମାନ ବୋଇଲାକ ବେନଥାଟ ଛାଡ଼ି
ଏକା ମୁହିଁ ଗଲେ ପୁଣ ଭାଙ୍ଗି ଏ ନ ପଡ଼ି ।
ଅର୍ଜୁନ ବୋଇଲେ ତୋରପ୍ରାୟେହେଲେଲକ୍ଷେ
ସହିବ ମୋ ବନ୍ଧ ଭାଙ୍ଗି ନ ଯିବ ପ୍ରତ୍ୟକ୍ଷେ
ଲକ୍ଷେ ରାବଣ ଯେବେବି ଲକ୍ଷେ ରାମ ହେବେ
ମୋ ବନ୍ଧକୁ ତିଳେମାତ୍ର ଭାଙ୍ଗି ନ ପାରିବେ ।
ଲକ୍ଷେ ରାମ ଉଠନ୍ତୁ ଯା ବନ୍ଧର ଉପରେ
ଲକ୍ଷେ ରାମାୟଣ ଯୁଦ୍ଧ ହେଉନା ଏଥିରେ ।
ଦେଖିବୁ କି ହୋ ବାନର ପୁଣିହିଁ ବାନ୍ଧିବ
ଆହୁରି ବନ୍ଧେକ ଏହିପରି କରିଦେବି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ସୁତଳ ଅତଳ
ବିତଳ ଭୂତଳ ମହାତଳ ରସାତଳ ।
ଦେବଲୋକ ନାଗଲୋକ କୋଟିକୋଟିଆସି
ସମସ୍ତେ ଉଠନ୍ତୁ କିନା ଏ ବନ୍ଧେ ଭରସି ।
ପ୍ରତ୍ୟକ୍ଷ ଦେଖ ବାନର ସେତୁବନ୍ଧ କଥା
କ୍ଷିତୀଶର ପ୍ରତିଜ୍ଞାହିଁ ରହଇ ସର୍ବଥା ।

ହନୁ ବୋଇଲା କହିଲୁ କରି ଭୁଜ ଗର୍ବ
ଏକା ମୋହର ଭାରକୁ ଏ ଯେବେ ସହିବ ।
ତେବେ ମୁହିଁ ତୋତେ ବୀର ମଧ୍ୟରେ ଗଣିବି
ନୋହିଲେ ଚାପଡ଼େ ମାରି ମୁଣ୍ଡ ଛିଣ୍ଡାଇବି
ଏତେକ ବୋଲି କୋପରେ ସେ ଅଞ୍ଜନା ଶିଷ୍ୟ
ଆକ୍ରୋଶି ପଶ୍ଚିମ ଦିଗେ ହୋଇଲା ପ୍ରବେଶ ।
ଗ୍ଧଗେ ହନୁମନ୍ତ ବିଶ୍ୱରୂପକୁ ଧଇଲା
ଆଦିତ୍ୟଙ୍କ ରଥେ ତାର ମସ୍ତକ ଲାଗିଲା ।
ଚଉଦଲକ୍ଷ ଯେ ଥିଲେ ବାନର ବାହିନୀ
ଲାଙ୍ଗୁଳରେ ବସାଇଲା ହନୁ ମହାଜ୍ଞାନୀ ।
ଗଳାରେ ଯେ ବନମାଳ ଲକ୍ଷେକ ପର୍ବତ
ମହା ବିଶ୍ୱରୂପ ହେଲା ଅଞ୍ଜନାର ସୁତ ।
ଲୋମକେ ପର୍ବତ ଲକ୍ଷେ ବାନ୍ଧିଅଛି ବୀର
ଚତୁର୍ଦ୍ଦିଗ ବ୍ରହ୍ମାଣ୍ଡ ତା ଗର୍ଭର ଭିତର ।
ଗରୁଡ଼ ପୃଷ୍ଠରେ ଥାଇ ଦେଖଇ ପ୍ରତ୍ୟକ୍ଷେ
ଭଇରବ ରୂପ ଦେଖି ଅର୍ଜ୍ଜୁନ ସମକ୍ଷେ ।
ବିସ୍ମରଇ ଗରୁଡ଼ ଏ ପାର୍ଥ ନାଶଗଲା
ହନୁର ସଙ୍ଗେ କପାଇଁ ବିବାଦୀ ହୋଇଲା ।
ସୁମରଇ ସେ ଗରୁଡ଼ ଭୟେ ନାରାୟଣ
ଚାହିଁ ନ ପାରିଲା ସେହି ରୂପକୁ ଅର୍ଜ୍ଜୁନ ।
ଘନ ଘନ ଭୟେ ତାର ଶରୀର କମ୍ପଇ
ହସ୍ତରେ ସେ ଧନୁଶର ଧରି ନ ପାରଇ ।
ବିସ୍ମରଇ କି ଯୋଗେ ମୁଁ ହୋଇଲି ବାହାର
ତ୍ରେତାଯୁଗ ମଲ୍ଲ ଯେଉଁ ହନୁ ମହାବୀର ।
ସାକ୍ଷାତରେ ରୁଦ୍ରରୂପୀ ପବନ ନନ୍ଦନ
ନିଶ୍ଚୟେ ଘେନିବ ଆଜ ମୋହର ଜୀବନ ।
ପୃଥ୍ୱୀଦେବୀ ଯାର ଭାର ସହି ନପାରଇ
ଗ୍ଧର ଶରବନ୍ଧ କାହୁଁ ପାରିବ ତା ସହି ।
କି ବୁଦ୍ଧି କରିବି ପାର ହୋଇବି କେମନ୍ତ
ଗୋବିନ୍ଦ ଆମ୍ଭର ବନ୍ଧୁ ଜାଣନ୍ତି ସମସ୍ତ ।
କେତେ କେତେ ଆପଦରୁ ରଖିଛନ୍ତି ହରି
ବେଳେ ରକ୍ଷାକର ମୋତେ ପ୍ରଭୁ ଦଇତ୍ୟାରି
ଏତେ ଭାଳି ପଦ୍ମପାଦେ ଲଗାଇଲା ଲୟ
ଅର୍ଜ୍ଜୁନ ଗରୁଡ଼ ମନ ଜାଣି ଦେବରାୟ ।
ଦ୍ୱାରକାରୁ ଆସି ବେଗେ ହେଲେ ତତକ୍ଷଣେ
ହନୁମାନ ଅର୍ଜ୍ଜୁନର ଅନ୍ୟୋଅନ୍ୟ ସ୍ଥାନେ ।
ଗରୁଡ଼ ଆଗେ ବିଜୟେ ହେଲେ ଭବଗ୍ରାହୀ
ଭାଳନ୍ତି ସେ ନାରାୟଣ ଗରୁଡ଼କୁ ଚାହିଁ ।
ତ୍ରେତାଯୁଗ ମଲ୍ଲ ଏହି ବୀର ହନୁମନ୍ତ
ଏହାର ପ୍ରତିଜ୍ଞାକୁ କି ଅର୍ଜ୍ଜୁନ ସମର୍ଥ ।
କଳ୍ପେ କଳ୍ପେ ଯୁଗେ ଯୁଗେ ବହିଛି ଶରୀର
ରାମାୟଣ ଭୋଗ କଲା ଏକସ୍ତରି ବାର ।
ଏକ ଶରୀର ମୋହର ଅଟେ ବେନି ଆତ୍ମା
ମୋତେ ଆଶ୍ରେ କରି ଥିନା ଏହାଙ୍କ ମହିମା ।
ରାମ ଅବତାରେ ମୋର ସଖା ହନୁମନ୍ତ
ଦ୍ୱାପର ଯୁଗରେ ମୋର ସଖା ବୀରପାର୍ଥ ।
ଅର୍ଜ୍ଜୁନ ଯେବେଟି ଆଜ ହାରିବ ଯୁକତ
ରଖିବ କି ଅର୍ଜ୍ଜୁନର ପ୍ରାଣ ହନୁମନ୍ତ ।
ମୋହର କାର୍ଯ୍ୟେ ଅର୍ଜ୍ଜୁନ ଅଟେ ବଡ଼ ଦୁଃଖୀ
ଏହାର ପ୍ରତିଜ୍ଞା ଆଜ କେମନ୍ତେ ମୁଁ ରଖି ।
ଏସନକ ବିସ୍ମରଣ ଦେବକୀର ବତ୍ସ
ସମୁଦ୍ରେ ପଶିଲେ ହୋଇ ଏକ ମହାମତ୍ସ୍ୟ ।
ଯେଉଁ ବିଶ୍ୱରୂପ ଧରି ଅଛନ୍ତି ପାବନି
ଭାଙ୍ଗିବ ସେ ବନ୍ଧ ଲଜ୍ଜା ପାଇବ ଫାଲ୍ଗୁନି ।
ଏସନ ବିସ୍ମରି ମନେ ଦେବ ଚକ୍ରଧାରୀ
ମୀନରୂପ ହୋଇ ସିନ୍ଧୁ ଜଳେ ଅବତରି ।
ମହା ମୀନରୂପ ହୋଇ ଦେବଦେବ ହରି
ଜଳର ଭିତରେ ପଶି ଶରବନ୍ଧ କରି ।
ପିଠିରେ ବସାଇ ଦେବ ଆବୋରିଲେ ବନ୍ଧ
ବିଶ୍ୱରୂପ ଧଇଲେ ତ ଏହି ସେ ଗୋବିନ୍ଦ ।
ଶରବନ୍ଧ ରହିଲାକ ନାରାୟଣ ପିଠି
ହୁଙ୍କାରି ସେ ହନୁମାନ ଶରବନ୍ଧେ ଉଠି ।
କହନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ମହାବିଶ୍ୱରୂପ ବୀର ଯୋଡିଲା ସେ ହନୁ ।
ଏସନ ରୂପେ ଉଠିଲା ବନ୍ଧେ ମହାବଳୀ
ପାଦେକ ଦେଇ ପାଦେକ ପକାଇଲା ତୋଳି
ମତ୍ସ୍ୟ ନାରାୟଣ ମୁଖୁଁ ଗଳିଲା ରୁଧିର
ତ୍ରୈଲୋକ୍ୟ ଆନ୍ଦୋଳ କଲା ବିଶ୍ୱରୂପ ତାର ।
ସପ୍ତଦ୍ୱୀପ ସହିତରେ କମ୍ପେ ବସୁମତୀ
ସମୁଦ୍ର ରୁଧିର ଜଳ କୂଳକୁ ଉଠନ୍ତି ।
ଆକାଶେ ଥାଇ କମ୍ପିଲେ ସର୍ବ ବୃନ୍ଦାରକେ
ହାସେ ରହି ନ ପାରିଲେ ସ୍ୱର୍ଗେ ଦେବଲୋକେ ।

ଅସମ୍ଭାଳ ହୋଇଲେ ସେ ଦେବ ପଦ୍ମ ଅକ୍ଷ
ଶୋଣିତ ବାହାର ବହେ ନାଟ୍ୟପୂଣ ମୁଖ ।
ଯେଉଁରୂପ ଧରିଅଛୁ ସେ ବୀର ପାବନ
ଶୋଣିତମୟ ହୋଇଲା ସମୁଦ୍ରର ପାଣି ।
ସମୁଦ୍ରପାକ ହୋଇଲା ଯହୁଁ ସେ ରକତ
ଶୋଣିତ ଦେଖି ପୁଚ୍ଛଇ ବୀର ହନୁମନ୍ତ ।
ଏ କିସ ଦିଶଇ ରକ୍ତ ଜଳର ଭିତରେ
ଅର୍ଜ୍ଜୁନ ବୋଇଲା ଶୁଣ ଆହେ କପିବୀରେ ।
ଗୁଳନ୍ତେ ଶସ୍ତ୍ର କଳଙ୍କି ଧୋଇ ହୋଇଗଲା
ତେଣୁଟି ରୁଧିର ବର୍ଣ୍ଣ ସମୁଦ୍ର ଦିଶିଲା ।
ସମୁଦ୍ରର ଜଳ ତେଣୁ ହେଲା ରକ୍ତବର୍ଣ୍ଣ
ହନୁମନ୍ତ ବୋଇଲା ରେ ମାନବ ତୁ ଧନ୍ୟ ।
ଅଗସ୍ତିଙ୍କି ପୁଚ୍ଛାକଲେ ମନୁ ବୈବସ୍ୱତ
ଅର୍ଜ୍ଜୁନ ବୋଲ ଚହ୍ନିଲ କେହ୍ନେ ହନୁମନ୍ତ ।
ଶୁଣ ହେ ମନୁ ପୁରୁଷ ବୋଲନ୍ତି ଅଗସ୍ତି
ବିଶ୍ୱରୂପ ବିକାଶିଲା ଯେକାଳେ ମାରୁତି ।
ପ୍ରଚଣ୍ଡ ବାୟୁରେ ସେହି ଘୋଟିଲା ବ୍ରହ୍ମାଣ୍ଡ
ବିଶ୍ୱରୂପ ବିକାଶିଲା ପୃଥ୍ୱୀ ନବଖଣ୍ଡ ।
ଦିବ୍ୟ ଚକ୍ଷୁ ବିକାଶିଲା ସେ ଭୁବନ ତିନ
ଜାଣିଲା ସେ ହନୁମନ୍ତ ପାଣ୍ଡବ ଫାଲ୍‌ଗୁନ ।
ବନ୍ଧରୁ ଓହ୍ଲାଇ ସେହି ପବନର ବାଳ
ଅର୍ଜ୍ଜୁନଙ୍କୁ ବସାଇଲା ନେଇକରି କୋଳ ।
ପ୍ରତ୍ୟକ୍ଷେ ତୁ ନାରାୟଣ ଅଟୁ ଆହେ ପାର୍ଥ
ମୁଁ ନ ଜାଣଇ ମାନବ ହୋଇଛୁ ତୁ ଜାତ ।
ଶ୍ରୀରାମଙ୍କ ପାଇ ତୁହି ଅଟୁ ଭ୍ରାତ ବୀର
ଯୋଗେ ଦିଶିଲୁ ତୁ ବିଷ୍ଣୁ ଅର୍ଦ୍ଧ ଯେ ଶରୀର
ଏବେ ଜାଣିଲଇଁ ତୁହି ସ୍ୱୟଂ ବିଷ୍ଣୁ ନାଥ
ମୋତେ ଅନୁଗ୍ରହ କରିଥିବ ବୀରପାର୍ଥ ।
ଏରୂପେ ହନୁ ଅର୍ଜ୍ଜୁନ ହୋଇଲେ ପୀରତି
ବନ୍ଧତଳୁ ପ୍ରବେଶିଲେ ଆସି ଶିବିପତି ।
ଦୁଇଜଣଙ୍କ ମିଳନ ହୋଇବାର କାଳେ
ଆଗରେ ଉଭା ହୋଇଲେ ମଦନ ଗୋପାଳେ
ଶ୍ରୀକୃଷ୍ଣଙ୍କୁ ଦେଖି ବେନି ବୀର ପରଣାମି
ଅନେକ ସ୍ତୁତି କରନ୍ତି ମନେ ମନେ ଗୁଣି ।
ହନୁମନ୍ତଙ୍କୁ ଚାହିଁଣ ଜଗତ ଅଧିପ
ବହୁତ ରୂପେ କହନ୍ତି ପ୍ରଭୁ ବିଧିରୂପ ।

ତୁ ହନୁମନ୍ତ ନ ଜାଣୁ ଧନଞ୍ଜୟ ବୋଲି
କ୍ଷତ୍ରୀମଧ୍ୟେ ବୀରବର ତୋତେ ମୁଁ କହିଲି ।
ଖାଣ୍ଡବବନ ଦହଣ ଅଗ୍ନି ତୋଷ କଲେ
ଈଶ୍ୱର ତୋଷ ହୋଇଣ ଶସ୍ତ୍ର ତାକୁ ଦେଲେ
ସୁଭଦ୍ରା ହରଣେ ବଳଦେବଙ୍କୁ ଏ ଜିଣି
ଏହାର ମହିମା ତୁ ନ ଜାଣୁ କପି ପୁଣି ।
ଦ୍ୱାପର ଯୁଗେ ଅଟଇ ଏ ଘଗେଇମଲ୍ଲ
ଏହାର ସଙ୍ଗରେ କିସ ତୋହର ଯେ ଗୋଳ
ଏମନ୍ତ କହି ସେ ହନୁମନ୍ତଙ୍କୁ ପ୍ରବୋଧି
ଏକାନ୍ତେ ହକାରି ନେଇ ବୋଲେ ଜମ୍ଭଭେଦି
କାହିଁକି ପାର୍ଥ ହନୁରେ ବିବାଦୀ ହୋଇଲୁ
ତାହାର ମହିମା କର୍ଣ୍ଣେ ଶୁଣି କି ନଥିଲୁ ।
ତୁ କି ନ ଜାଣୁ ତ୍ରେତୟାଯୁଗେ ଯା ଚରିତ
ଯେବଣ କଲା ରାବଣ ରାମ ଯୁଦ୍ଧଗତ ।
ଯେବଣ ଅସୁର ସ୍ୱର୍ଗ ମର୍ତ୍ତ୍ୟ ଆଦି ଜିଣି
ସେହି ଦୈତ୍ୟଙ୍କୁ ସଂହାର କଲା ଏହି ପୁଣି ।
ଏହା ଭୁଲେ କି ବୈରତା ତୋର ଫାଲଗୁନ
ଏହି ହନୁମନ୍ତ ବାବୁ ଅଟଇ ସୁଜ୍ଞାନୀ ।
ମାତା ଗର୍ଭୁ ଜାତ ହୋଇ ସୂର୍ଯ୍ୟଙ୍କୁ ବାନ୍ଧିଲା
ତେତିଶ କୋଟି ଦେବତା ବଳ ଏ ବହିଲା ।
ଏବେ ଏହାର ସହିତ ପ୍ରିୟ ଭାବ କର
କହି ଅନ୍ତର୍ଦ୍ଧାନ ହେଲେ ଦେବ ଚକ୍ରଧର ।
ନିଶ୍ଚିନ୍ତ ଶୁଣି ବଚନବୀର୍ଯ୍ୟଙ୍କର ନାଥ
ହନୁମନ୍ତ ସହିତରେ କଲେକ ସେ ପ୍ରୀତି ।
ହନୁମନ୍ତ ଅର୍ଜ୍ଜୁନର ଅନେକ ପୀରତି
ହୋଇଗଲା ତହୁଁ ଖିନଖିନା ଅଧିପତି ।
ଜାମ୍ବବ ଅଙ୍ଗଦ ଆଦି ବାନର ଯେତେକ
ଆନନ୍ଦରେ ପୂଜାକଲେ ପାର୍ଥଙ୍କୁ ଅନେକ ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣିମା ମାରୁତି
ମୋର ଜ୍ୟେଷ୍ଠ ଭ୍ରାତା ଭୀମ ପବନୁ ଉତ୍ପତ୍ତି ।
ତିନି ପୁତ୍ରଜାତ ଆମ୍ଭେ କୁନ୍ତୀଦେବୀ ଗର୍ଭୁ
ତୁମ୍ଭେ ଆମ୍ଭର ସୋଦର ଏକା ଆମ୍ଭେ ସବୁ
ମୋର ଦୋଷ ନ ଘେନିବ ମୁହିଁ ତୁମ୍ଭ ସାନ
ଜାତିରେ ମାନବ ମୋର କେତେ ଅବା ଜ୍ଞାନ
ହନୁମନ୍ତ ବୋଇଲା ତୁ ଶୁଣ ଫାଲଗୁନ
ମାହେଶ୍ୱରୀ ଅଞ୍ଜନା ଯେ ଗୌତମନନ୍ଦିନୀ
ପବନ ଦେବତାର ଯେ ଅଟେ ମହାତେଜ
ସେହି ସିନା ସହିପାରେ ତାହାଙ୍କର ବୀର୍ଯ୍ୟ ।

ତ୍ରେତାଯୁଗେ ନାମ ତାର ଅଟଇ ଅଞ୍ଜନା
ଏ ଦ୍ୱାପରଯୁଗେ ସେହି କୁନ୍ତୀଦେବୀ ସିନା ।
ତୁମ୍ଭର ଆମ୍ଭର ଅଟେ ଏକଇ ଜନନୀ
ଭାର ନିବାରଣ ଅର୍ଥେ ଜାତ ଫାଲଗୁନି ।
ତୋର ପୂର୍ବଜନ୍ମ କଥା ଶୁଣ ଦେଇ ମନ
ସତ୍ୟଯୁଗେ ଥିଲେ ବ୍ରହ୍ମା ତା ନାମ କଞ୍ଜନ ।
ବୃଷ କୃଷ୍ଣ ଚତୁର୍ଦ୍ଦଶୀ ତିଥି ରବିବାରେ
କୃତ୍ତିକା ନକ୍ଷତ୍ର ବେଳ ନବଘଡ଼ିଠାରେ ।
ବିଷ୍ଟି ନାମେ କରଣ ଯେ ଅତିଗଣ୍ଡ ଯୋଗେ
ମରାଳ ବାହନେ ଧାତା ବିଜେ କଲେ ସ୍ୱର୍ଗେ ।
ଚୃରବେଦ ଉଚ୍ଚାରଇ ଚୃରଗୋଟି ମୁଖେ
ବ୍ରହ୍ମାନନ୍ଦନ ବରଷି ଅଛି ତାଙ୍କ ପାଖେ ।
ବାମଭାଗ ମୁଖେ ଧାତା ଋକବେଦ ପଢ଼େ
ଦକ୍ଷିଣ ପାଖ ବଦନୁ ସାମବେଦ ଝଡ଼େ ।
ପୂର୍ବ ବଦନରୁ ଧାତା ଯଜୁର୍ବେଦ ସଞ୍ଚି
ପଶ୍ଚିମେ ଅଥର୍ବ ବେଦ କରଇ ବରଷି ।
ଏମନ୍ତ ସେ ଚତୁର୍ବେଦ ଉଚ୍ଚାରି ଚଳଇ
ସାଧନାବଳେ ସେ ଧାତା ପଢ଼ଇ ମିଶାଇ ।
ଯୋଗବେଦ ସାଧିଲେକ ଧାତା ଯେତେବେଳେ
ଶିବ ଆସନ କମ୍ପିଲା କୈଳାସ ଅଚଳେ ।
ସାଧନା ଭାଙ୍ଗିଲା ଯୋଗ ଭାଙ୍ଗିଲା ତୁରତେ
ବୃଷଭ ଆରୂଢ଼ ହୋଇ ବିଜେ ପଞ୍ଚବକ୍ତ୍ରେ ।
ଅତ୍ୟନ୍ତ ବେଗେ ବିଜୟ କଲେ ସେ ଧୂର୍ଜ୍ଜଟି
ବାରସ୍ୱର୍ଗ ଭୁବନରେ ପିତାମହ ଭେଟି ।
ଈଶ୍ୱର ଦେବତା ରାଗେ ବ୍ରହ୍ମାଙ୍କୁ ସମ୍ଭାଷି
ଅନୀତି କଲୁ ତୁ ବ୍ରହ୍ମା ହୋଇ ଯୋଗାଭ୍ୟାସି
ବ୍ରହ୍ମା ବୋଇଲେ ମୁଁ ଅଟେ ସର୍ବଦେବ ସାଇଁ
ଦେବଙ୍କ ଉପରେ ମୁହିଁ ଜାଣ ପାଣିଗ୍ରାହୀ ।
ବେଦ ସର୍ଜିବା ନିମନ୍ତେ ଉତ୍ପତ୍ତି ହୋଇଛି
ଗୁଣ ଅବଗୁଣ ଦେବ ମୁହିଁ ସର୍ବ ବାଛି ।
ଈଶ୍ୱର ବୋଇଲେ ତୋର ଚୃରି ଯେ ବଦନ
ତେଣୁ ଚୃରିଗୋଟି ବେଦ କରୁ ଅଧ୍ୟୟନ ।
ମୁହିଁ ଯେ ପଞ୍ଚବଦନ ଅଟଇ ଯୁକତେ
ପଞ୍ଚବେଦ ଅଧ୍ୟୟନ କରେ ପଞ୍ଚବକ୍ତ୍ରେ ।
କରତାପୁରୁଷ ହୋଇ ମନେ ନ ବିଚାରୁ
ପଞ୍ଚମ ବେଦକୁ କିପାଁ ଅଧ୍ୟୟନ କରୁ ।

ସଦ୍ୟ ବାମ ଅଘୋର ଯେ ସତ୍ତ୍ୱ ଈଶ ମୁଖେ
ଆପୁ ଜ୍ୟୋତି ଧନୁ ଶିଷ୍ୟ ଗନ୍ଧର୍ବଙ୍କୁ ଲେଖେ
ଚତୁର୍ମୁଖରେ ତୁ ଚତୁର୍ବେଦହିଁ ପଢ଼ିବୁ
ଆମ୍ଭେ ପଞ୍ଚମୁଖେ ପଞ୍ଚବେଦ ଉଚ୍ଚାରିବୁ ।
ସଞ୍ଚିତ ତପ ବିନାଶେ ହୋଇଲା ଅନୀତି
ବ୍ରହ୍ମା ବୋଇଲେ ତୁ ଗର୍ବ କଲୁ ପଶୁପତି ।
ବଞ୍ଚବନ୍ଧ ହୋଇଲେ ଯେ ମୋତେ ଖଣ୍ଡସ୍ୱର୍ଗେ
ସେ ଅଧିକ ବଦନେ ମୁଁ ପଢେ ବେଦଯୋଗେ
ରାଗେଣ କହିଲେ ସେହି ସ୍ୱାମୀ ସଦାନନ୍ଦ
ଈଶ୍ୱର କମ୍ପଇ ଶୁଣି ବ୍ରହ୍ମା ଯୋଗ ବେଦ ।
ରାଗ ସମ୍ଭାଳି ନ ପାରି ଦେବ ଶୂଳପାଣି
ବ୍ରହ୍ମାଙ୍କୁ ବୋଇଲେ ପୁଣି କଟୁକୂଟ ବାଣୀ ।
ଧାତା ବୋଇଲେ ତୁ ଶୁଣ ଆହେ ତ୍ରିଲୋଚନ
ଆଜହୁଁ ହୋଇଲି ମୁହିଁ ଦେଖ ପଞ୍ଚାନନ ।
ତୋହର ପଞ୍ଚବଦନ ହରିବଇଁ ସାଧି
ମୁହିଁ ସିନା ବେଦବର ବେଦର ପ୍ରସିଦ୍ଧି ।
କି ନିମନ୍ତେ ଧାତା ତୋର ଏ ପଞ୍ଚବଦନ
ନଟକାର ଲେକଙ୍କର ବେଶର ଏସନ ।
ମୁଣ୍ଡର ଉପରେ ପୁଣି ମୁଣ୍ଡେ କିସ ଜାତ
ବିଚାରନ୍ତେ ଜାଣ ତୁହେ ହୋଇବୁ କି ସତ୍ୟ
ଈଶ୍ୱର ବଚନେ ଧାତା କରଇ ଅବଜ୍ଞା
ବେଳୁବେଳ ବହୁତର ବଢ଼ିଲା ପ୍ରତିଜ୍ଞା ।
ମତ୍ତହେଲ ପୁରୁଷ ସେ ହୋଇ ମହାରାଗୀ
ତତକ୍ଷଣେ ହେଲେ ସେହି ଉପରୋଧ ତ୍ୟାଗୀ
ବ୍ରହ୍ମାମୁଣ୍ଡେ ପ୍ରହାରିଲେ ନେଇ ଭୁଜଦଣ୍ଡ
ଧାତକାରେ ଛିଡ଼ିଗଲା ପିତାମହ ମୁଣ୍ଡ ।
ଆଗେ ଈଶ୍ୱର ପ୍ରହାର କଲେ ବାମକରେ
ବ୍ରହ୍ମାର ମୁଣ୍ଡ ଲଗିଲା ସେ ବାମ ହସ୍ତରେ ।
ଉପୁଡ଼ି ପକାଇ ଦେଲେ ଧାତାମୁଣ୍ଡ ଗୋଟି
ନ ଗଲା ହସ୍ତୁ ବ୍ରହ୍ମାର ଶିର କେଉଁଭେ ଫିଟି ।
ଶୂଳେ ପ୍ରହାରେଣ ଦେବ କଲେ ଖଣ୍ଡ ଖଣ୍ଡ
ତେବେହେଁ ନ ଗଲା ଛାଡ଼ି ବ୍ରହ୍ମାର ସେ ମୁଣ୍ଡ ।
ବ୍ରହ୍ମାର ରୁଧିର ଯହୁଁ ପଡ଼ିଲାକ କ୍ଷିତି
ସେ ରୁଧିରୁ ପୁରୁଷେକ ହେଲା ଉତପତ୍ତି ।
ମଧ୍ୟଭୁବନେ ତା ପାଦ ଆକାଶେ ତା ମଥା
ଭ୍ରମସ୍ତ ନାମ ତାହାର ଦେଲେ ତହୁଁ ଧାତା ।

ସ୍ୱର୍ଗଭୁବନ ଆଦ୍ୟ ସେ ଘୋଟିଲା ବ୍ରହ୍ମାଣ୍ଡ
ସ୍ୱର୍ଗ ମର୍ତ୍ତ୍ୟ ପାତାଳର ଅଟେ ତାର ତୁଣ୍ଡ ।
ପିତାଙ୍କୁ ପୁଚ୍ଛିଲା ମୋତେ କଲୁ ଉତ୍ପତ୍ତି
ଜଳୁଅଛୁ କ୍ଷୁଧାରେ ମୋ ପେଟ ପ୍ରଜାପତି ।
ପିତାମହ ଦେଖାଇଲେ ତର୍ଜ୍ଜନୀ ଅଙ୍ଗୁଳି
ଆରେ ରେ ପ୍ରଶସ୍ତ ତୁହି ଭକ୍ଷ ଏ କପାଳି ।
ପିତାମହର ବଚନ ଶୁଣି ସେ ପ୍ରଶସ୍ତ
ଈଶ୍ୱର ଦେବତାଙ୍କୁ ସେ ଭେଟିଲା ତୁରିତ ।
ଦେଖି କୋପାନଳ ହୋଇ ଦେବ ତ୍ରିପୁରାରି
ପ୍ରଶସ୍ତ ଉପରେ ନେଇ ଶୂଳକୁ ପ୍ରହାରି ।
ସଦାନନ୍ଦ ଶୂଳକୁହିଁ ନ କଲା ସେ ଖାତି
ଈଶ୍ୱର ହସ୍ତରୁ ଶୂଳ ଘେନଲା ତଡ଼ିତି ।
ସେହି ଶୂଳକୁ ବୁଲାଇ ପିଟିଲା ତାହାଙ୍କୁ
ଭୟେ ଈଶ୍ୱର ଘୁଞ୍ଚିଲେ ନ ଯାଇ ଆଗକୁ ।
ପଳାନ୍ତେ ଈଶ୍ୱର ପଛେ ଗୋଡ଼ାଇଲା ସେହି
ତିନିପୁରେ ମହାଦେବ ନ ପାରିଲେ ରହି ।
ମୁଖ ନ ଚାହିଁଲେ କେହି କଲେ ବ୍ରହ୍ମହତ୍ୟା
ବ୍ରହ୍ମଦୈତ୍ୟ ଗୋଡ଼ାଇଛି ବହ୍ନିଣ ଅହନ୍ତା ।
ତ୍ରିଭୁବନ ଭ୍ରମି ଭ୍ରମି ବେଗେ ପଳାଇଲେ
ବ୍ରହ୍ମହତ୍ୟା ଦୋଷେ କେହି ମୁଖ ନ ଚାହିଁଲେ
ପଳାନ୍ତି ସେ ବିଶ୍ୱନାଥ ନ ଚାହିଁ ଲେଉଟି
କଙ୍କାଳ ବ୍ରହ୍ମରାକ୍ଷସ ପଛେ ଅଛି ଘୋଟି ।
ନିରାଶେ ଈଶ୍ୱର ତହୁଁ ହେଲେ ପାଦଗତି
ଆକାଶ ଭୁବନୁ ଡେଇଁପଡ଼ି ପଶୁପତି ।
ମେରୁ ପର୍ବତକୁ ଡେଇଁଗଲେ ସମୁଦ୍ରକୁ
ସମୁଦ୍ରକୁ ଡେଇଁ ଗଲେ ଅଗାଧ ଜଳକୁ ।
ସପ୍ତଦ୍ୱୀପ ସ୍ୱାମୀ ଡେଇଁଗଲେ ଏକପାଦେ
ପଡ଼ିଲେ ସେ ନୀଳକଣ୍ଠ ଗଭୀର ଅଗାଧେ ।
ଗୋଡ଼ାଇଛି ପଛେ ପଛେ ସେ ବ୍ରହ୍ମରାକ୍ଷସ
ସେହି ଏକପାଦ ହୋଇ ଡେଇଁଲା ପ୍ରତ୍ୟକ୍ଷ ।
ଈଶ୍ୱର ଯେ ପଳାଇଲେ ମହାଜଳେ ବୁଡ଼ି
ବିଷ୍ଣୁନାଥ ରଖ ବୋଲି ଦେଲେ ଘୋରରଡ଼ି
ମହାଘୋର ରଡ଼ି ଯହୁଁ ଦେଲେ ମହାଦେବ
ଆସନ କମ୍ପୁଁ ଜାଣିଲେ ଦେବ ପଦ୍ମନାଭ ।
ଯୋଗଲୟ ତେଜ ଧୀରେ ଚାହିଁଲେ ଅନାଦି
ଈଶ୍ୱରଙ୍କୁ ଆଣୁଅଛି ବ୍ରହ୍ମଦୈତ୍ୟ ଖେଦି ।

ଶ୍ରୀଭୁଜକୁ ବଢ଼ାଇଣ ଦେଲେ ଦେବହରି
ବିଷ୍ଣୁନାଥ ଭୁଜ ବଢ଼ିଗଲା ଯୁଣ ଚାରି ।
ଈଶ୍ୱରଙ୍କୁ ଧରିଆଣି ବସାଇଲେ କତି
ହସ୍ତେ ଚକ୍ର ଦେଖି ବ୍ରହ୍ମଦୈତ୍ୟ କଲା ଭୀତି ।
ସହସ୍ର ଯୋଜନେ ଥାଇ ହେଲା ସ୍ତମ୍ଭୀଭୂତ
ବିଷ୍ଣୁଙ୍କ ପାଖକୁ ଆସି ନ ପାରେ ପ୍ରଶସ୍ତ ।
ନାରାୟଣ ସନ୍ନିଧିରେ ଦେଖେ ବିଶ୍ୱନାଥ
ପାଖେ ଆସି ନ ପାରଇ ଭୟେ ବ୍ରହ୍ମଦୈତ୍ୟ ।
ପଚାରିଲେ ବ୍ରହ୍ମାମୁଣ୍ଡ ଅଛି କପାଁ ହସ୍ତେ
ଏତେ କଷଣ ପାଇଲ କହ କି ନିମନ୍ତେ ।
ଈଶ୍ୱର ବୋଇଲେ ମୁହିଁ ଧାତା ସଙ୍ଗେ ବାଦ
କଟୁବାକ୍ୟେ ମୋତେ ଧାତା ଏସନ ସମ୍ବାଦ
ଅଦଭୁତେ ମୁଣ୍ଡେକ ସେ ସମ୍ବାଦିଲା କାହୁଁ
ଅଦ୍ଭୁତ ବଚନ ସେହୁ ବୋଇଲାକ ଯହୁଁ ।
କୋପେ ପ୍ରହାର କଲଇଁ ମୁହିଁ ଭୁଜଦଣ୍ଡ
ଛିଡ଼ିଗଲା ବ୍ରହ୍ମାର ସେ ଜାତକଲା ମୁଣ୍ଡ ।
ସେ ବ୍ରହ୍ମାର ମୁଣ୍ଡ ଛିଣ୍ଡି ଲାଗିଲା ମୋ କରେ
ସେ ବ୍ରହ୍ମାରୁଧିରୁ ଜାତ ଏ ବ୍ରହ୍ମଅସୁରେ ।
ଭକ୍ଷିବାକୁ ଏ ରାକ୍ଷସ ମୋତେ ଗୋଡ଼ାଇଛି
ତେଣୁ ତ୍ରାସପାଇ ମୁହିଁ ପଳାଇ ଆସୁଛି ।
ଆକାଶରେ କେହି ମୋର ନୋହିଲେ ରଖନ୍ତା
ସମସ୍ତେ ବୋଇଲେ ତୁହୋ କଲୁ ବ୍ରହ୍ମହତ୍ୟା
ମୁହିଁ ତୋହର ଶରଣ ଦେବ ଦାମୋଦର
ଏ ଦୁରପକଷ୍ଟୁ ମୋତେ ବେଗେ ପାରିକର ।
ତୁଣ୍ଡେ ହସ୍ତଭରି କେଶ ମୁକୁଳିତ କରି
ଏମନ୍ତ ହୋଇ ସେ ଦେବ ଶରଣ ପୁକାରି ।
ହସ୍ତର ମୁଣ୍ଡ ତାଙ୍କର ତୁଣ୍ଡକୁ ବିସ୍ତାରି
ଦେ ଦେ ବୋଲି ମାଗଇ ମୋ ବାକ୍ୟ ଅନୁସରି
ନାରାୟଣ ବୋଇଲେ କି ମାଗେ ଶୂଳପତି
ପ୍ରେତ ପିଶାଚ ରୁଧିରେ ହୋଇବ ତୃପତି ।
ଶୁଣି ନାରାୟଣ ଚକ୍ର ଧଇଲେକ କରେ
ଆପଣା ଭୁଜରୁ ଚିରିଦେଲେ ତିନିଗାରେ ।
ମେରୁ ଫୁଟି କି ଯମୁନା ଗଙ୍ଗା ସରସ୍ୱତୀ
ରୁଧିର ବାହାରେ ବାମଭୁଜୁଁ ତିନିମୂର୍ତ୍ତି ।
ବ୍ରହ୍ମାର ମୁଣ୍ଡ ତୁଣ୍ଡରେ ରୁଧିର ବରଷେ
ସହସ୍ରେ ବର୍ଷ ବରଷି ଲିତାଏ ନ ବିଶେ ।

ଏତେ ଶୋଣିତ ତାହାର ତୃଷ୍ଣା ନ ପୂରିଲା
ବେଦେ ବୋଲୁଅଛୁ ସେହି ଶାନ୍ତ ନ ଭଜିଲା ।
ସେ ବ୍ରହ୍ମରାକ୍ଷସ ରହିଅଛି ଖଣ୍ଡଦୂରରେ
ସଂଗ୍ରାମ ଦିଅ ବୋଲି ସେ ଡାକେ କୋପଭରେ
ଶିବେ ଖାଇବାକୁ ବ୍ରହ୍ମା ଆଜ୍ଞା ଦେଇଅଛି
ତୁ କପାଇଁ ତାକୁ ରଖୁ ମୁଁ ଆଶା କରୁଛି ।
ଆହେ ମହାତ୍ମା ରୁଧିରେ ହେଉ ତୁ ଯେ ଶାନ୍ତ
ଏହିକ୍ଷଣି ଦେବା ତୋତେ ହୋଇବୁ ତୃପତ ।
ବ୍ରହ୍ମାର ମୁଣ୍ଡରେ ବିଷ୍ଣୁ ରୁଧିର ଲଗଇ
ଈଶ୍ୱର ବିଭୂତି ତହିଁ ଭିତରେ ପୂରଇ ।
ରୁଧିର ବିଭୂତି ପିତାମହ ମୁଣ୍ଡେ ଭେଦି
ପୁରୁଷେକ ହେଲା ହସ୍ତ ଚରଣ ସମ୍ପାଦି ।
ବିଷ୍ଣୁଙ୍କର ଜୀବ ପୁଣି ସଦାଶିବ ଜୀବ
ତୋଳିଲେ ବ୍ରହ୍ମାର ମୁଣ୍ଡେ ନେଇ ଆଦିଦେବ
ବ୍ରହ୍ମାର ମୁଣ୍ଡରେ ଯେଉଁ ଜୀବ ରହିଥିଲା
ସେହି ପ୍ରତିମା ଭିତରେ ଯାଇ ସମ୍ଭାଇଲା ।
ସେ ତିନିଜୀବକୁ ନେଇ ଦେବ ବନମାଳୀ
ଅମୃତ ଦୃଷ୍ଟିରେ ଚାହିଁଦେଲେ ଦେବ ତାଳ ।
ବ୍ରହ୍ମା ବିଷ୍ଣୁ ଶିବ ଏହି ତିନିତେଜେ ଝଳ
ଉଠିଲା ସେହି ପୁରୁଷ ହୋଇ ମହାବଳୀ ।
ବ୍ରହ୍ମାର ରୁଧିରୁ ଜାତ ହୋଇଲା ପ୍ରଶସ୍ତ
ନାରାୟଣଙ୍କ ଅଂଶରୁ ଜାତ ହେଲା ଶସ୍ତ ।
ନାରାୟଣ ଆଜ୍ଞା ଦେଲେ ତାହାକୁ ହକାରି
ଏ ବ୍ରହ୍ମରାକ୍ଷସକୁ ତୁ ବେଗେ ପକାମାରି ।
ବିଷ୍ଣୁ ଆଜ୍ଞା ପାଇ ବେଗେ ଗଲା ଶସ୍ତ ବୀର
ଆକର୍ଷି ଧଇଲା ତାକୁ ପ୍ରଶସ୍ତ ଅସୁର ।
ଶସ୍ତ ପ୍ରଶସ୍ତର ତହିଁ ଲାଗିଲା ସମର
ଆକାଶ ବ୍ୟାପିଲା ସେହି ଦୁହିଙ୍କ ଶରୀର ।
ମୁଖରଡ଼ି ଶବଦ ଯେ ମୁଥ ମରାମର
ପାଦେ ଆନ୍ଦୋଳିତ ହେଲା ସମୁଦ୍ରର ବାରି ।
କର ଶିର ତାଡ଼ନ୍ତି ଯେ ମହାବିଶ୍ୱରୂପୀ
ବେଲୁବେଲ ଗଲେ ସେହି ସମୁଦ୍ରରେ ବ୍ୟାପି
ସବ ଦଶ ଦେବତା ଦେଖି ଚାଟକା ହୋଇଲେ
ସହସ୍ରେ ବରଷ ସେହି ସଂଗ୍ରାମ ଯେ କଲେ ।
ନିତ୍ୟକର୍ମ ବନ୍ଦକରି ମୁନି ବୃନ୍ଦାରକେ
ଦୈତ୍ୟଙ୍କ ରଣ ଦେଖନ୍ତି ଶୂନ୍ୟେ କଉତୁକେ

ଦ୍ୱାପରର ଯୁଦ୍ଧ ଜାଣ ହୋଇଲା ଏମନ୍ତ
ବହିଗଲା ସହସ୍ରେକ ବର୍ଷ ପର୍ଯ୍ୟନ୍ତ ।
ସଂସାର ପ୍ରଳୟ ହେବା ଦେଖି ଜନାର୍ଦ୍ଦନ
ଆପେ ଯାଇ କରାଇଲେ ତାଙ୍କୁ ସମାଧାନ ।
ସମସ୍ତେ ହାସିଲେ ଦୁହିଙ୍କର ଯୁଦ୍ଧ ଦେଖି
କେଶବ ବଚନେ କଲେକ ଦୁହିଁଙ୍କ ରହିକି ।
ଏ ଯୁଗେ ତୁମ୍ଭ ସଂଗ୍ରାମ ଏତିକ ଯେ ହେଉ
ତ୍ରେତାଯୁଗକୁ ତୁମ୍ଭର ଥୋକାଏକ ଥାଉ ।
ଦୁହିଙ୍କ ମଧ୍ୟରେ କଲେ ନାରାୟଣ ବଚେ
ରହ ରହ ବୋଲି ତାଙ୍କୁ ଧରି ବେନି ଭୁଜେ
ବୋଇଲେ ବ୍ରହ୍ମାର ତହୁଁ ଏ ପ୍ରଶସ୍ତ ଜାତ
ଏହାଙ୍କୁ ତୁ ସଂହରଣ କର ହେ ଆଦିତ୍ୟ ।
ଦିନକର ନାଥ ତାହା ଗର୍ଭେ ସଂହରିଲା
ଶସ୍ତ ନାରାୟଣଠାରୁ ଉତ୍ପତ୍ତି ହୋଇଲା
ନାରାୟଣ ବୋଇଲେ ହେ ଦେବ ପୁରୁହୂତ
ତୁହି ସଂହରଣ କର ନେଇ ଏହି ଶସ୍ତ ।
ଶସ୍ତକୁ ନେଇ ବାସବ ସଂହରିଲେ ଗର୍ଭେ
ଯୁଦ୍ଧ ଶେଷକରି ତହୁଁ ଗଲେ ବାସୁଦେବେ ।
ହନୁମାନ କହିଲା ହେ ଶୁଣ ଫାଲଗୁନ
ସତ୍ୟଯୁଗେ ତୁମ୍ଭେ ଶସ୍ତ ପ୍ରଶସ୍ତ ଏ ବେନି ।
ତ୍ରେତାଯୁଗେ ଗଉତମ ଋଷିଙ୍କ ଘରଣୀ
ସ୍ୱୈରପ୍ରୀତି କଲେ ଆସି ସୂର୍ଯ୍ୟ ବଜ୍ରପାଣି ।
ଅହଲ୍ୟା ଗର୍ଭରେ ଶସ୍ତ ପ୍ରଶସ୍ତ ରହିଲେ
ଏମନ୍ତରେ ଦୁହେଁ ତାଙ୍କ ଗର୍ଭୁ ଉପୁଜିଲେ ।
ସେ ବେନି ବାଳକ ଦେଖି ମୁନି ଗଉତମ
ଶ୍ୟାମଶୀଳ ସବଶୀଳ ଦେଲେ ତାଙ୍କ ନାମ ।
ସ୍ୱୈରଶୃଙ୍ଗାରର କଥା ନ ଜାଣନ୍ତି ମୁନି
ସ୍ନାନକୁ ଗଲେ ପୁତ୍ରଙ୍କୁ ସ୍ନେହେ କୋଳେ ଘେନି
ଗଉତମଙ୍କ ବୀର୍ଯ୍ୟରୁ ଜାତ ସେ ଅଞ୍ଜନା
ତାହାଙ୍କୁ ସଙ୍ଗରେ ନେଲେ ମୁନି ମହାମନା
ସ୍ନାନ ଆହ୍ନିକ କହିଁ ସାରି ଗାୟତ୍ରୀ ସୁମରି
ବାହୁଡ଼ନ୍ତି ମହାତମା ବେଳ ସାତ ଘଡ଼ି ।
ବଇଶାଖ ମାସ ଖରା ତାତିଅଛି ବାଲି
ଗୋଡ଼ ପୋଡ଼ିଗଲା ପୁତ୍ରେ ନ ପାରିଲେ ଚାଲି
ଶ୍ୟାମଶୀଳ ସବଶୀଳ ପୁତ୍ର ଦୁଇ ଧରି
କାନ୍ଧେ କାଖେ ବସାଇଲେ ମୁନି ତପସ୍ୱୀ ।

ଖଣ୍ଡଦୂରେ ଆସି ତାଙ୍କୁ ଅଞ୍ଜନା କହିଲା
ସ୍ଥଳ ନ ପାଇଲ ପିତା ଗୋଡ଼ ମୋଡ଼ିଗଲା ।
ଗଉତମ ବୋଇଲେ ଗୋ ତୁ ବିକଳ ନୁହ
ତୋତେ କାଖେ ବସାଇବି ଓହ୍ଲାଇଲେ ପୁଅ
ଶୁଣି ଗଗକର କୋପେ ବୋଇଲା ଅଞ୍ଜନା
ଏମନ୍ତ ବୋଇଲୁ ତାତ ହୋଇ ମହାତମା ।
ମୁହିଁ ଯେ ତୋହର ବୀର୍ଯ୍ୟ ହୋଇଲଇଁ ଜାତ
ମୋତେ ଉପେକ୍ଷି ଘେନିଲୁ ଏ ଜାରଜ ପୁତ୍ର
ଅଞ୍ଜନା ବଚନେ ଗଉତମ ମହାଋଷି
ସନ୍ଦେହ ବୃଟିଲେ ଆମ୍ବଗଛ ତଳେ ବସି ।
ଅହଲ୍ୟାକୁ ଦେଖି ଆମ୍ଭେ ଅତ୍ୟନ୍ତ ସୁନ୍ଦର
କାଢ଼ି ଆଣିଥାଉ ପ୍ରାଣ ଶରୀରୁ ତାହାର ।
ମୃତପିଣ୍ଡହିଁ କେବଳ ଆମ୍ଭେ ଥୋଇଥାଉଁ
ତର୍ପଣୁ ଯାଇ ତାହାକୁ ପୁଣିହିଁ ବଞ୍ଚାଉଁ ।
ଯେତେବେଳେ ପ୍ରାଣ ଥାଏ ଅହଲ୍ୟା ଶରୀର
ଦଣ୍ଡେକ ନ ଛାଡ଼ୁ ଆମ୍ଭେ ସଙ୍ଗକୁ ତାହାର ।
ଥାଇଁ ଏମନ୍ତେ ଅନେକ କାଳ ବହିଗଲା
କେମନ୍ତେ ସେ ପରସଙ୍ଗେ ପ୍ରୀତି କରାଇଲା ।
ଅଞ୍ଜନା ବୋଇଲା ଶୁଣ ତୁ ମୋହର ପିତା
ଏମନ୍ତେ ସେ ପରପ୍ରୀତି କରେ ମୋର ମାତା ।
ମୃତପିଣ୍ଡ ଗୋଟି ମୁହିଁ ଜଗିଥାଇ ନିତ୍ୟ
ଇନ୍ଦ୍ର ଆଦିତ୍ୟ ଅଇଲେ ଦିନେ ସେ ଅଭ୍ରତେ
ଇନ୍ଦ୍ର ପ୍ରାଣ ହୋଇଲେ ସେ ଅହଲ୍ୟା ପିଣ୍ଡରେ
ଶୃଙ୍ଗାର କଲେ ଆଦିତ୍ୟ ଇଚ୍ଛା ଅନୁସାରେ ।
ପୁଣି ଦିନକର ପ୍ରାଣ ହୋଇଣ ପଶଇ
ଇନ୍ଦ୍ର ଦେବତା ତାହାକୁ ରମଣ କରଇ ।
ବୋଇଲେ ସେ ହନୁମାନ ଶୁଣ ହେ ଅର୍ଜ୍ଜୁନ
ଅଜ୍ଞାନଭାବେ ଅଞ୍ଜନା କହିଲା ଏସନ ।
ଗଉତମ ବୋଇଲେ ତୁ ଦେଖିବୁ ପ୍ରତ୍ୟକ୍ଷେ
ପରୀକ୍ଷା କରିବା ଆମ୍ଭେ ଏହା ତୋ ସମକ୍ଷେ ।
ପୁତ୍ରଘେନି ବାହୁଡ଼ିଲେ ମୁନି ସମୁଦ୍ରକୁ
ସେ ପୁତ୍ରକୁ ଫିଙ୍ଗିଦେଲେ ସାଗର ଜଳକୁ ।
ଯେବେ ତୁମ୍ଭେ ଦୁଇପୁତ୍ର ମୋର ବୀର୍ଯ୍ୟ ଜାତ
ଏହିରୂପରେ ଆସିବ ତୁମ୍ଭେ ବେନିପୁତ୍ର ।
ଅନ୍ୟବୀର୍ଯ୍ୟ ଜାତ ଯେବେ କରିଥିବ ଜାୟା
କପିରୂପ ହେଉ ବାଳୁ ତୁମ୍ଭ ବେନିକାୟା ।

ସମୁଦ୍ରୁ ବାହାର ହୋଇ ନ ଆସ ଲେଉଟି
ନିରାଶରେ ଫିଙ୍ଗିଦେଲେ ପୁତ୍ର ଦୁଇଗୋଟି ।
କପିରୂପ ହେଲେ ଜଳେ ସେ ବେନି କୁମରେ
ପଡ଼ିଲେ ସମୁଦ୍ରମାରେ ଅଗାଧ ଗଭାରେ ।
ଋଷି ଡାକଦେଲେ ଶ୍ୟାମଶୀଳ ସବଶୀଳ
ମୋରବୀର୍ଯ୍ୟଜାତ ଯେବେ ତୁମ୍ଭେ ବେନିବାଳ
ଜଳରୁ ବାହାର ହୋଇ ଆସକନା ବେଗେ
ଡାକନ୍ତି ସେ ମୁନି ତାଙ୍କୁ ଅତିପ୍ରିୟଭାବେ ।
ଅନେକ ବେଳ ଡାକିଲେ ମୁନି ତପୋଧନ
ସମୁଦ୍ର ଜଳୁଁ ବାହାର ନୋହିଲେ ନନ୍ଦନ ।
ବେଳ ଅଢ଼ାଇ ପ୍ରହର ହେଲା ଦିନକର
ଅଞ୍ଜନା ବଚନ ସତ କଲେ ମୁନିବର ।
ମୋର ପୁତ୍ର ହୋଇଥିଲେ ଆସନ୍ତେନା ଭଲେ
ଆନବୀର୍ଯ୍ୟ ଜାତ ଯେଣୁ ଜଳେ ନାଶ ଗଲେ
ଅଞ୍ଜନାକୁ ମୁନିବର ଘେନି ନିଜ କାଖେ
ଆଶ୍ରମେ ପ୍ରବେଶ ହେଲେ ଯାଇ ମନଦୁଃଖେ ।
ପାଣିଝର ଘେନି ଘରୁ ବାହାର ଅହଲ୍ୟା
ପୋଏ ତ ନାହାନ୍ତି ଗଉତମଙ୍କୁ ବୋଇଲା ।
କୋପେ ମହାମୁନି ଗୃହିଁ ପ୍ରଜ୍ୱଳିତ ହେଲେ
ଅହଲ୍ୟାର ମୁଖ ଗୃହିଁ ବଚନ ବୋଇଲେ ।
ପୋଡ଼ୁ ପୋଡ଼ୁ ସ୍ତିରୀଜନ୍ମ ନୋହୁ ସ୍ତିରୀଜାତି
ବିଧାତା କିପାଇଁ କଲା ତାଙ୍କୁ ଉତପତ୍ତି ।
ଏତେ ବାରେ ରକ୍ଷା ଯେବେ କଲୁ ଅବିରତେ
ତଥାପି ରକ୍ଷା ନୋହିଲା ସେହି କଦାଚିତେ ।
ପର ପୁରୁଷରେ ଜାତ କଲୁ ପୁତ୍ରବେନି
କହିଲା ସବୁ ମୋ ଆଗେ ଅଞ୍ଜନା ନନ୍ଦିନୀ ।
ଦୋଶ୍ଚରଣୀ ଗର୍ଭୁଁ ଜାତ ସେ ଜାରଜାତକ
ବିମୁଖ ହୋଇ ପୁତ୍ରକୁ ରାଗେ କଲୁଁ ତ୍ୟାଗ ।
ଅଗାଧ ସମୁଦ୍ରେ ଦେଲ ସେ ଦୁହିଙ୍କୁ ଫିଙ୍ଗି
ସମୁଦ୍ରରେ ନାଶଗଲେ କୂଳରେ ନ ଲାଗି ।
ଶୁଣି ଅହଲ୍ୟା ସୁନ୍ଦରୀ ଭୟରେ ଥରଇ
ଅଞ୍ଜନା ତୁ ଏହା ମୋତେ କଲୁ ଯେ ବୋଲଇ
ତୋରମାତାହୋଇଯେବେହୋଇଲି ଦୋଶ୍ଚୃଷ
ନ ପାରିଲୁ ତୁ ଦୁହିତା ହୋଇ ତା ସମ୍ଭର ।
ଅଭେଦ ଆତ୍ମାକୁ ତୁ ଲୋ ଏବେ ଭେଦ କଲୁ
ପୁତ୍ରହିଁ ମଲେ ଅନ୍ତରବାସ ମୋତେ କଲୁ ।

ତୋହର ଗର୍ଭେ ଅବଶ୍ୟ ହୋଇବ ସନ୍ତତି
ସେହି କପିମୁଖ ହେଉ ମୁହିଁ ଯେବେ ସତୀ ।
ମୋହର ଇଚ୍ଛାରେ ମୁହିଁ ନ କଲଇଁ ପ୍ରୀତି
ସେଥିପାଇଁ ମୁହିଁ କପାଁ ହୋଇବି ଅସତୀ ।
ଗୌତମ ବୋଇଲେ ଦେବୀ ନ କରବା ରୋଷ
ଇନ୍ଦ୍ର ଆଦିତ୍ୟ ରମିଲେ କିସ ତୋର ଦୋଷ ।
ଜ୍ଞାନେ କି ଅଜ୍ଞାନେ ତୁ ଗୋ ନ କରୁ ପୀରତି
ହରିଲେ ସେ ଦିଗପାଳ ହୋଇ ଗୁରୁପତ୍ନୀ ।
ସତୀଙ୍କ ଦୂଷିଲେ ପର ଘର ନାଶ କଲେ
ଯାବତ କାଳକୁ ପୁଣି କଥା ରୁହାଇଲେ ।
ଆନର ପାପ କରନ୍ତେ ଆନକୁ ନରୋଧି
ପରଦାର କଲେ ସେହି ଏ କେବଣ ବିଧି ।
ଦିଗପାଳ ହୋଇ କଲେ ଏଡ଼େକ ଅଧର୍ମ
କୋପେ ତାଙ୍କୁ ଶାପ ଦେଲେ ମୁନି ଗଉତମ
ଆଦିତ୍ୟଙ୍କୁ ବୋଇଲେ ତୁ ଦିଗପାଳ ହୋଇ
ଏଡ଼େ ଅନୀତି କପାଇଁ କଲୁ ଫଙ୍କାସାଇଁ ।
ଜଗତର ନାଥ ହୋଇ ପରଘରେ ପଶୁ
ମୋହର ଶାପେ ତୋତେ ରେ ରାହୁ ଯେ ଗରାସୁ
ଇନ୍ଦ୍ରକୁ ବୋଇଲେ ତୁହି ହରିଲୁ ମୋ ପତ୍ନୀ
ଶରୀରେ ହେଉ ତୋହର ସହସ୍ରେକ ଯୋନି ।
ଆଗୋ ଅହଲ୍ୟା ତୋହର ଭ୍ରଷ୍ଟ ହେଲା କାୟା
ଇନ୍ଦ୍ର ଆଦିତ୍ୟ ତୋଠାରେ କଲେ ଘୃଣି ମାୟା ।
ଆମ୍ଭେ କି ଛୁଇଁବା ଆଉ ଏ ତୋହର ଅଙ୍ଗ
ପଷାଣ ରୂପରେ ଥାଅ ତୁହି ଯୁଗ ଯୁଗ ।
ଶ୍ରୀରାମଙ୍କ ପାଦ ଯେବେ ଲାଗିବ ତୋ ଅଙ୍ଗେ
ମୁକତ ହୋଇ ରହିବୁ ଯାଇ ଆମ୍ଭ ସଙ୍ଗେ ।
ହନୁମନ୍ତ ବୋଇଲା ତୁ ଶୁଣ ଫାଲଗୁନି
ଋଷିଶାପେ ନାଶ ଗଲେ ଇନ୍ଦ୍ର ସୂର୍ଯ୍ୟ ବେନି ।
ହନୁକୁ ସେ ପୁଣ ପୁଚ୍ଛା କଲେ ଧନଞ୍ଜୟ
ସମୁଦ୍ରେ ପଡ଼ି କି କଲେ ସେ ବେନି ତନୟ
ବୋଲନ୍ତି ମାରୁତି ତୁ ହେ ଶୁଣ ଫାଲଗୁନି
ବଡ଼ବା ଅନଳେ ପଡ଼ି ସେହି ପୁନବେନି ।
ଆଦିତ୍ୟ ଦେବତା ରହିଥିଲେ ମଧ୍ୟସ୍ଥାନେ
କୋଳକରି ଧରି ପୁଣି ସେ ବେନି ନନ୍ଦନେ ।
ଗଉତମ ମୁନି ଶାପ ଫଳିଲା ପ୍ରତ୍ୟକ୍ଷ
ଶ୍ୟାମଶୀଳ ସବଶୀଳ ହେଲେ କପିମୁଖ ।

ବିକୃତ ସ୍ୱଭବ ମୁଖ ଦେଖି ତାହାଙ୍କର
ବାହୁଡ଼ି ଅଇଲେ ମୁନି ରହିଲେ କୁମର ।
ଏହିରୂପେ ଦେଖୁଥାନ୍ତି ମୁନି ତାଙ୍କୁ ନିତ୍ୟେ
ସମୁଦ୍ର କୂଳ .ର ରହିଥାନ୍ତି ବେନିପୁତ୍ରେ ।
ବସୁରଣ କାର୍ଯ୍ୟକର ଆହେ ସ୍ତିରୀଜନେ
ସ୍ତିରୀ ଜନ୍ମକୁ ବିନାଶ ନ କର କୁକର୍ମେ ।
ପରପୁରୁଷକୁ ଦେଖି ନ କର ଯେ ଆଶ
ସ୍ୱେର ଶୃଙ୍ଗାର ନ କର କଦାପି ପୁରୁଷ ।
କ୍ଷଣକପାପେ ଗୋ ଏତେଲୋକହେଲେଦୋଷୀ ।
କଳ୍ପିତ ଦୋଷେ ବହୁତ ପାପେ ଗଲେ ପଶି ।
ଆଦି ଅପର୍ଣ୍ଣା ଯେ ସ୍ତିରୀ ତାଙ୍କ ବଡ଼ପଣ
ସମସ୍ତ ନାଶ ଯାଇଛି ଏତ୍ରି ଦୋଷେ ଜାଣ ।
ବୃହସ୍ପତିଙ୍କ ଭାରିଯା ତାରା ମହାସତୀ
ପରପୀରତି କରି ସେ ହୋଇଲା ଅଜାତି ।
ଅନେକ ଦୋଷ ଏ ପରଦାର ପରପ୍ରିୟ
କହନ୍ତି ହନୁମନ୍ତ ଶୁଣ ଧନଞ୍ଜୟ ।
ଆକାଶରେ ଅପସରା ପରପ୍ରୀତି ଦୋଷେ
ପୁଣ୍ୟସ୍ତିରୀ ହୋଇ ଆସି ମଧ୍ୟସ୍ୱର୍ଗେ ବସେ ।
ଗଉତମ ଋଷିଙ୍କର ଭାରିଯା ଅହଲ୍ୟା
ପରପ୍ରୀତି ଦୋଷେ ଦେଖ ପଥର ହୋଇଲା ।
ଶଙ୍ଖତଳ ପରପ୍ରୀତି ଦୋଷ ପରଘରେ
ବିଶ୍ୱାମିତ୍ର ଶାପେ ନିତ୍ୟ ମୁଖେ ରେତ ଭରେ
ମଧୁକର୍ଣ୍ଣଙ୍କର ଦେହି ଭାରିଯା ଊର୍ମିଳା
ପରପ୍ରୀତି ଦୋଷେ କାମକ୍ଷୟ କରାଇଲା ।
ଜନ୍ମ ଜନ୍ମର ସୁକୃତ ହରେ ପରଦାର
ଖଣ୍ଡନ ନ ଯିବ ସେହି ପାପ ଭୟଙ୍କର ।
ପରଦାର ଦୋଷେ ଶାସ୍ତି ଦିଏ ଯମଦେବ
ପରପୀରତି ନିମନ୍ତେ ନାଶ ଯାଏ ଧ୍ରୁବ ।
ପର ସଙ୍ଗମେଟି କେହି ନ ହୁଅନ୍ତି ରକ୍ଷା
ବସ ପୂରାଇ ଦିଅନ୍ତି ସ୍ତିରୀ ପାଇ ଶିକ୍ଷା ।
ପରମ ମାହେଶ୍ୱରୀ ତୁ ଝଙ୍କଡ଼ବାସିନୀ
ପରଦାର ଦୋଷ ମୋର ଅଙ୍ଗୁ ପକା ଛିହ୍ନି ।
ତୋହର ପ୍ରସାଦେ ମୁହିଁ ନ କଲି ତ କିଛି
ତୋହର ଦେଖି ମାତ ମୋରଠାରେ ଦୟାଅଛି
ପ୍ରସନ୍ନ ହୋଇ ଖଣ୍ଡନ କର ମୋର ପାପ
ପ୍ରସନ୍ନ ଆନନ୍ଦେ ମୋର ବାଞ୍ଛା କର ତପ ।

ପରମ ମାହେଶ୍ୱରୀ ଗୋ ଶ୍ରୀଚଣ୍ଡୀ ଶାରଳା
ତୋ ଦାସକୁ ଦିଅ ଶୁଦ୍ଧ ମତି ଅନର୍ଗଳା ।
ଅର୍ଜୁନ ବୋଇଲେ ତୁ ହୋ ଶୁଣସି ମାରୁତି
ଶ୍ୟାମଶୀଳ ସବଶୀଳ ଗଲେ କେଉଁକତି ।
କହନ୍ତି ଯେ ହନୁମନ୍ତ ପବନର ବାଳ
ଲାଗିଲେ ସେ ଆସି ସିନ୍ଧୁ ଉତ୍ତର ଯେ କୂଳ ।
ଟଙ୍କରାଜବଂଶେ ଜାଣ ସୁଜାଣ ନୃପତି
ତାହାର ନନ୍ଦନ ନାମ ଅଟେ ଶରଜାତି ।
ଶରଜାତିର ନନ୍ଦନ ଅଶ୍ୱ ନରପତି
ଜମ୍ବୁନନ୍ଦ ନାମେ ଜାଣ ତାହାର ସନ୍ତତି ।
ଜମ୍ବୁନନ୍ଦର ନନ୍ଦନ ଦିଗମ୍ବର ବୀର
ତାହାର ନନ୍ଦନ ନାମ ଅଟେ ସୁରେଶ୍ୱର ।
ମାଳଶ୍ରୀ ମାଧବ ନାମେ ତାହାର ନନ୍ଦନ
ତାହାର ପୁତ୍ରର ନାମ ଅଟେ ଭଗବାନ ।
କରୁଣାକର ବୋଲି ଯେ ତାହାର ତନୁଜ
କରୁଣାକରର ପୁତ୍ର ଜନେଶ୍ୱର ରାଜ ।
ମାଳଶ୍ରୀ ଅଞ୍ଜନ ନାମେ ତାହାର ସନ୍ତତି
ତାର ନନ୍ଦନ ଉଦୟ ନାମେ ଚକ୍ରବର୍ତ୍ତୀ ।
ବିଳାକ୍ଷ ନାମରେ ଜାଣ ଏହାର ତନୟ
ବିଳାକ୍ଷର ପୁତ୍ର ଜାଣ ଶଶଧର ରାୟ ।
ବିଡ଼ାଳାକ୍ଷ ନାମେ ହେଲା ତାହାର ସନ୍ତତି
ତାର ନନ୍ଦନ ଖଡ୍‌ଗଦ ନାମେ ଚକ୍ରବର୍ତ୍ତୀ ।
ସେ ଖଡ୍‌ଗଦ ରାଜାର ଯେ ନ ଥିଲା ସନ୍ତାନ
ସମୁଦ୍ରକୁହିଁ ସେ ସେବାକରେ ପ୍ରତିଦିନ ।
ସମୁଦ୍ରଠାରୁ ସହସ୍ର ଯୋଜନର ଅନ୍ତେ
କିଷ୍କିନ୍ଧ୍ୟା ବସଇ ନଉଯୋଜନ ପର୍ଯ୍ୟନ୍ତେ ।
ସେ ରାଜା ସମୁଦ୍ରେ ପଶି ସ୍ନାନ କରେ ନିତ୍ୟ
ସମୁଦ୍ରକୁ ସେବାକରି ମାଗୁଥାଏ ପୁତ୍ର ।
ବୃଷଭ ଶୁକ୍ଳ ପକ୍ଷ ଦ୍ୱିତୀୟା ଯେ ତିଥି
ଅର୍କବାର ମୃଗଶିରା ନକ୍ଷତ୍ର ପାହାନ୍ତି ।
ଯେ ରାଜା ସେ ଦିନ କରେ ସମୁଦ୍ରକୁ ସେବା
ହେ ରତ୍ନାକର ତୁ ମୋତେ ପୁତ୍ରଦାନ ଦେବା
ପୁତ୍ର ବାଞ୍ଛାକରି ରାଜା କରଇ ନଇମି
ଏମନ୍ତ ବେଳେ ମିଳିଲେ ଆସି ପୁତ୍ର ବେନି ।
କପି ମୁଖହିଁ ସୁନ୍ଦର ଆପଣାର କାୟ
ବଳବନ୍ତ ନନ୍ଦନ ସେ ଅନଙ୍ଗର ପ୍ରାୟ ।
ବୋଇଲେ ବରଅଛି ନାରାୟଣ ସ୍ୱର୍ଗବାଣୀ
ଏ ଦୁହିଁଙ୍କୁ ପ୍ରତିପାଳ ତୁ ହୋ ନୃପମଣି ।
ସେ ପୁତ୍ର ବେନି ଆସଇ ଗୃହେ ଦଣ୍ଡଧାରୀ
ତାଙ୍କ ନାମ ଦେଲା ବାଳି ସୁଗ୍ରୀବ ବିଗ୍ରହ ।
ପ୍ରଶସ୍ତ ଆଦିତ୍ୟ ଗର୍ଭେ ସତ୍ୟଯୁଗେ ଥିଲା
ତ୍ରେତାଯୁଗେ ତାର ନାମ ସୁଗ୍ରୀବ ହୋଇଲା ।
ଶସ୍ତ ରହିଥିଲା ଇନ୍ଦ୍ର ଦେବତାର ତହିଁ
ତ୍ରେତାଯୁଗେ ତାର ନାମ ବାଳି ଯେ ହୁଅଇ ।
ପ୍ରଳୟେ କେତୁ ମଙ୍ଗଳ ନାମ ତାହାଙ୍କର
ଶସ୍ତ ପ୍ରଶସ୍ତ ରୂପରେ ସତ୍ୟ ଅବତାର ।
ତ୍ରେତାଯୁଗେ ହେଲେ ବାଳି ସୁଗ୍ରୀବ ଭୂଭାଗେ
ଅର୍ଜୁନ ହୋ ଶୁଣ ତୁହି ଏବେ ଏହି ଯୁଗେ ।
ଏ ଦ୍ୱାପରଯୁଗେ ଜାଣ ଆଦିତ୍ୟର ବୀର୍ଯ୍ୟ
ଉପୁଜିଲେ କନ୍ୟା କାଳେ କର୍ଣ୍ଣ କୁନ୍ତୀରଜେ
ବାସବର ଅଂଶେ ତୁହି ଜାତ ଫାଲଗୁନ
ଜଗନ୍ନାଥଙ୍କର ଆତ୍ମାରୂପ ଅଛୁ ବେନି ।
ପ୍ରଳୟ କାଳରେ ତୁମ୍ଭେ କେତୁ ଯେ ମଙ୍ଗଳ
ସତ୍ୟ ଶସ୍ତ ପ୍ରଶସ୍ତ ଯେ ଅଟ ମହାବଳ ।
ତ୍ରେତାଯୁଗେ ତୁମ୍ଭେ ବାଳି ସୁଗ୍ରୀବ ଉତ୍ପନ୍ନ
ଦ୍ୱାପରେ ଜାତ ହୋଇଲେ କର୍ଣ୍ଣ ଅରଜୁନ ।
ବାଳୀ ସୁଗ୍ରୀବଙ୍କର ମୁଁ ଅଟଇ ଭଣଜା
ଖଡ୍‌ଗଦ ରାଜନ ମୋର ଅଟଇ ଯେ ଅଜା ।
ପବନର ପୁତ୍ର ମୁହିଁ ଅଞ୍ଜନା ମୋ ମାତା
ଶ୍ରୀରାମଚନ୍ଦ୍ରଙ୍କ ବରେ ହୋଇଲି ମୁଁ ଧାତା ।
ଅନେକ କାଳର କଥା କହିଲା ପାବନ
ଶୁଣି ସାନନ୍ଦ ହୋଇଲା ବୀର ଫାଲଗୁନ ।
ଅନେକ ଦାରାକ୍ଷ ଫଳ ଦେଲେ ହନୁମନ୍ତ
ଭୁଞ୍ଜିଣ ତୃପତ ହେଲେ ପଣ୍ଡୁ ରାଜସୁତ ।
କରପତ୍ର ଯୋଡ଼ି ଶୁଣି ବୋଲେ ଧନଞ୍ଜୟ
ପରମଯୋଗୀ ନାଥ ତୁ ହୋଇଲୁ ସଦୟ ।
ଉଠି ଅର୍ଜୁନକୁ କୋଳ କରି ହନୁମାନ
ପ୍ରସନ୍ନ ହୋଇଲି ବର ମାଗ ହୋ ଅର୍ଜୁନ ।
ସାଧୁ ମହିମା ତୋହର ଜନମହିଁ ସାର୍ଥ
ଆଜଠାରୁ ତୋର ନାମ ପୁଣି ହେଲା ପାର୍ଥ ।
ଅର୍ଜୁନ ବୋଇଲେ ସ୍ୱାମୀ କର ଅନୁଗ୍ରହ
ନନ୍ଦିଘୋଷ ରଥେ ମୋର କପି ଚିହ୍ନେ ଥାଅ ।

ସଂଗ୍ରାମକୁ ଯିବାବେଳେ ଶୁଣିବ ତୋ ମୁଖ
ସମସ୍ତ ସିଦ୍ଧି ହୋଇବ ମୋହର ପ୍ରତ୍ୟକ୍ଷ ।
ହେ ପଣ୍ଡିତେ ବଶ ଯାହା ଅନୁକୂଳ ବିଧି
ହନୁମନ୍ତ ପ୍ରସାଦରେ ସବୁକାର୍ଯ୍ୟ ସିଦ୍ଧି ।
ଯେବଣ ଭୁବନେ ଭଜେ କରିଥାଇ ହନୁ
ପଶି ନ ପାରଇ ତହିଁ ପାପ ରବିସୂନୁ ।
ଯେବା ପଣ୍ଡିତ ହୋଇବ ଜ୍ଞାନୀ ଶାନ୍ତିମନ୍ତ
ପ୍ରତିମା ଗୋଟିଏ ଦ୍ୱାରେ ଥିବ ହନୁମନ୍ତ ।
ଅସୁରକୁଳ ଅନ୍ତକ ସେ ପରମ ଯୋଗୀ
ଯାହା ଦ୍ୱାରେ ଥାଇ ନୁହେଁ ସେ ଅସୁରଭୋଗୀ
ଅନ୍ତଃକାଳେ ସୁମରଇ ଯେହୁ ହନୁମନ୍ତ
ଆକର୍ଷି ନ ପାରେ ତାକୁ କେବେ ଜନ୍ତୁନାଥ
କରପଦ୍ମ ଯୋଡ଼ି ପୁଣି ବୋଲଇ ଫାଲ୍‌ଗୁନ
ପାପେ ଦୂଷିତ ହୋଇଲି ତୋତେ ମୁଁ ନ ଚାହିଁ
ଶ୍ରୀରାମ ପ୍ରସନ୍ନେ ବର ଦେଲେଟି ଯାହାକୁ
ପୂର୍ବ ପୁଣ୍ୟେ ମହାତମା ଭେଟିଲି ତୁମ୍ଭଙ୍କୁ ।
ଅନୁଗ୍ରହ ନାଥ ମୋତେ ଦୟା କରିଥିବା
ନନ୍ଦିଘୋଷ ରଥେ ମୋର ଧ୍ୱଜସ୍ଥ କରିବା ।
ଶୁଣିଣ ସନ୍ତୋଷ ହେଲା ବୀର ହନୁମନ୍ତ
କପିକେତନ ହେବ ତୋ ନନ୍ଦିଘୋଷ ରଥ ।
ବେନିକର ଯୋଡ଼ି ହନୁପାଦେ ପାର୍ଥ ଲାଗି
ଅନେକ ବିନୟେ କହେ ଅର୍ଜୁନ ବିରାଗୀ ।
ଜୟ ତୁ ଜୟ ତୁ ନାଥ ତୁ ରୁଦ୍ର ମୂରତି
ଜୟ ଜୟ ଦାଶରଥି ଭକ୍ତ ମହାମତି ।
ଜୟ ଜୟ ଲଙ୍କାଧ୍ୱଂସି ବୀର ଦର୍ପଶୂଳ
ଜୟ ତୁ ଜୟ ତୁ ତ୍ରେତାଯୁଗ ମହାମଲ୍ଲ ।
ଜୟ ତୁ ପରମାନନ୍ଦ ଗଉତମ ନାତି
ଜୟ ଅଜର ଅର୍ଗଳ ଭଙ୍ଗା ତୁ ମାରୁତି ।
ଜୟ ଜୟ ଶ୍ରୀରାମର ଭକ୍ତ ଦୁଷ୍ଟଶ୍ରେଷ୍ଠ
ଜୟ ନିଶାଚର ସିଂହ ଦର୍ପ କଲୁ ନଷ୍ଟ ।
ଜୟ ତୁ ଜୟ ତୁ ଭକ୍ତଜନଙ୍କ ବତ୍ସଳ
ଜୟ କରୁଣାସାଗର ଜୟ ମତିଭୋଳ ।
ଜୟ ପ୍ରସନ୍ନ ମୂରତି ଜଗତର ବନ୍ଧୁ
ଜୟ ଶରଣ ବତ୍ସଳ ନାଥ କୃପାସିନ୍ଧୁ ।
ଜୟ କାଳନେମି ଗନ୍ଧକାଳୀ ଦର୍ପ ଗଞ୍ଜା
ଜୟ ତୁଜୟ ଦାନବକୁଳ ଦର୍ପଭଞ୍ଜା ।

ଜୟ ତୁ ଜୟ ମାନବ ତୁ ମାନଗୋବିନ୍ଦ
ଜୟ ଭୁବନ ଉତ୍ସବ ତୁ ପରମାନନ୍ଦ ।
ଜୟ ମହାଯତି ମହାପଣ୍ଡିତର ବୁଦ୍ଧି
ଜୟ ଜୟ ଗିରିବରେ ବାନ୍ଧିଲୁ ବାରିଧି ।
ଶ୍ରୀ ହନୁମନ୍ତ ଚରଣେ ଶରଣ ମୋ ସେବା
ଶୂଦ୍ରମୁନି ଶ୍ରୀଶାରଳା ଦାସେ ମୁକ୍ତି ଦେବା ।
ମଧ୍ୟପର୍ବେ ସୁଗନ୍ଧିକା ହରଣ ଆଶ୍ଚର୍ଯ୍ୟ
ଶୁଣନ୍ତେ ଯେ ଧନ ଜନ ପ୍ରାପତ ଐଶ୍ୱର୍ଯ୍ୟ ।
ହନୁମାନ ଦରଶନେ ଆପଦରୁ ବଞ୍ଚି
ହନୁମାନ ଦରଶନେ ମୁକ୍ତିଗତି ଇଚ୍ଛି ।
ସୁମରିବୁ ପାର୍ଥ ତୁହି ମୋତେ ଯେତେବେଳେ
କପିକେତନ ତୋ ରଥେ ଥିବ ତେତେବେଳେ
ସାରଥି ହୋଇବେ ଯେବେ ରଥେ ଦେବରାଜେ
ସଂଗ୍ରାମେ ରଥ ସହିତ କରିବ ମୁଁ ବଜେ ।
ହନୁ ଅର୍ଜୁନ ଏ ଦୁହେଁ ଚଳିଗଲେ ପଥେ
ପ୍ରବେଶ ହୋଇଲେ ଯାଇ ଅନ୍ତନ୍ନ ପର୍ବତେ ।
ଦେଖିଲେ ସେଠାରେ ରହି ସରୋବରସ୍ଥଳ
ବେନି ଯୋଜନ ଆୟୁତ କୋଶହୁଁ ଉଗ୍ରଳ ।
ଅନେକ ବିକାଶ ତହିଁ କୁସୁମ ସୁଗନ୍ଧ
ଉରଗବଳ ଅଛନ୍ତି ଶରଧାରେ ସାଧି ।
ବିଷ ଲହରୀ ପରାୟେ ଆନ୍ଦୋଳଇ ପାଣି
କଜ୍ଜ୍ୱଳ ପ୍ରାୟେ ପୂରିଛି ନାଗଙ୍କର ଫଣୀ ।
ହନୁମାନ ବୋଇଲା ତୁ ଶୁଣସି ହୋ ବାବୁ
ଏ ବିଷଲହରୀକୁ ତୁ କେସନେ ସାଧିବୁ ।
ନାରାୟଣ ଅବତାର ଶ୍ରୀରଙ୍ଗା ସ୍ୱରୂପେ
କରନ୍ତେ ସେ ଜଳକ୍ରୀଡ଼ା ଯମୁନାରେ ଗୋପେ
କଂସର ଅଗ୍ରତେ ଯାଇ କହିଲେ ନାରଦ
ଶ୍ରୀକୃଷ୍ଣର ହସ୍ତେ ତୁହି ହୋଇବୁ ଯେ ବଧ ।
କହ୍ନାଇ ନାମେ ନନ୍ଦନ ଯେଉଁ ପୁତ୍ରଗୋଟି
ଅନାଦି ନାଥ ଶ୍ରୀକୃଷ୍ଣ ଅବତାର ସେଟି ।
ନାରଦ ବଚନେ ସେହି ଦୁର୍ମିଳାର ବଳା
ଲାଗିଲା ବିଷ୍ଣୁର ଭୟ ନିରତେ ଭାବିଲା ।
ବାଳକାଳେ ଆଦ୍ୟେ ଦେଲା ପୂତନାକୁ ପେଷି
କ୍ଷୀରପାନେ ସେ ତାହାକୁ ପକାଇଲେ ଶୋଷି
ଦ୍ୱିତୀୟେ ବଧିଲେ ଦେବବୃକ୍ଷ ଯେ ଯାମଳା
ତୃତୀୟେ ଶକଟ ଭଙ୍ଗିଦେଲେ ନନ୍ଦବଳା ।

ଷଣ୍ଢାସୁରକୁ ମାଇଲେ ଗୋପପୁରର ପଶି
ତାହା ଶୁଣି କଂସ ରହେ ମନରେ ତରସି ।
ପୁରେକ ରଚିଲା ପୁଣି ପ୍ରଳମ୍ବା ବଚନେ
ମାଗିଲା ସେ ପଦ୍ମଫୁଲ ତାଙ୍କୁ କୂଟମନେ ।
କାହ୍ନୁ ସଙ୍କର୍ଷଣ ଗଲେ ପଦ୍ମଫୁଲ ତୋଳି
ପଛରେ ଯାନ୍ତି ସକଳ ଗୋପପୁଏ ବଳି ।
କାଳୀୟ ହ୍ରଦେ ପଶିଲେ ଦେବ ଚକ୍ରପାଣି
ନାଗବଳ ଘେନିଥିଲା କାଳୀୟ ନାଗୁଣୀ ।
ପଦ୍ମ ତୋଳନ୍ତେ କଟାଳ କଲା ଆସି କାଳୀ
ପାଦେ ମର୍ଦ୍ଦିଲେ ତାହାର ଦର୍ପ ବନମାଳୀ ।
ଗରୁଡ଼ ଧ୍ୱଜେ କରନ୍ତେ ପଳାଇଲା ଡରେ
ଶରଣ ପଶିଲା ଆସି କେଶବ ପୟରେ ।
ତୋଷେ ତାକୁ ଆଜ୍ଞା ଦେଲେ ପ୍ରଭୁ ଭଗବାନ
ବସାଇଲେ ତାର ଶିରେ ଶଙ୍ଖ ଚକ୍ର ଚିହ୍ନ ।
ପ୍ରଣିପାତ କଲା ଖଗେଶ୍ୱରଙ୍କୁ ହିଁ ଦେଖି
ଶରଣପଞ୍ଜର ନାଥ ତା ଦୋଷ ଉପେକ୍ଷି ।
ପଳା ଯା କାଳୀ ତୋହର ଅଦୃଶ୍ୟ ସ୍ଥାନକୁ
କହି ଅନୁଗ୍ରହ କଲେ ନାରାୟଣ ତାକୁ ।
ଶୁଣ ହେ। ଅର୍ଜ୍ଜୁନ ଖଗବରଙ୍କ ବଚନେ
ଏହି ସରୋବରେ ଆସି ରହିଲା ଗୋପନେ ।
ବହୁତ ବୃନ୍ଦ ଅଛନ୍ତି ବଳ ତା ସଙ୍ଗରେ
ଗରୁଡ଼ ପଶି ନ ପାରେ ତହିଁର ଭିତରେ ।
ଆହେ। ଅନୁସର ବୋଲି ଏକ ସତ୍ୟଯୁଗେ
ଗରୁଡ଼ ମାଇଲା ନାଗବଳ ମାତା ରାଗେ ।
ଅରୁଣ ପର୍ବତେ ଆସି ଦିନେ ବିଶ୍ରାମିଲେ
ସେ ପକ୍ଷୀରାଜ କଚ୍ଛପ ଗୋଟିଏ ଦେଖିଲେ ।
ଆକର୍ଷି ଧାଇଁଲେ ତାକୁ ଭକ୍ଷିବା ନିମନ୍ତେ
ଅଣ୍ଟରେ ମାରି ତାହାକୁ ଆଣି ଶୂନ୍ୟପଥେ ।
କଚ୍ଛପକୁ ହିଁ ଭକ୍ଷନ୍ତେ ବିନତାର ବଳା
ଭୂମି ମଧ୍ୟରେ ପକାଇ କରି କେଳା କେଳା
ସନ୍ଧ୍ୟା କରୁଛନ୍ତି ବସି କଶ୍ୟପ ମହର୍ଷି
ତାହାଙ୍କ ଉପରେ ପୃଷ୍ଠ ପଡ଼ିଲାକ ଆସି ।
ଦେଖିଲେ କଶ୍ୟପ ଋଷି କୂର୍ମରର ପୃଷ୍ଠ
ରାଗେ ଗରୁଡ଼କୁ ଶାପ ଦେଲେ ତପୋନିଷ୍ଠ
ଆରେ ଆମ୍ଭର ବାହନ ଅଟଇ କଚ୍ଛପ
ଏହା ଭକ୍ଷିଲେ ପିତାର ସରିସମ ପାପ ।

ଏହା ପକାଇଲୁ ଆଣି ଆମ୍ଭର ଉପରେ
ଆଉ ବେଳେ ନ ପଶିବୁ ଏହି ସରୋବରେ ।
ଆମ୍ଭ ପାପ ମେଣ୍ଟି ଯେବେ ଏଥିରେ ପଶିବୁ
ଦହନ ହେବ ଶରୀର ଧୂଳି ପାଂଶୁ ହେବୁ ।
ରାଗେ ଶାପ ଦେଲେ ଯହୁଁ କଶ୍ୟପ ମହର୍ଷି
ତେଣୁ ଗରୁଡ଼ ଏଥିରେ ନ ପାରଇ ପଶି ।
ଶୁଣିଲୁ ବାବୁ ପୂର୍ବର କଥା ସବ୍ୟସାଚୀ
କାଳି ନାଗବଳ ଘେନି ଏଥେ ରହିଅଛି ।
ନାରାୟଣ ଅଙ୍ଗେ ଘାତ କଲା ଏ ଉରଗ
ଜାଣ ତୁ ଅର୍ଜ୍ଜୁନ ଏଥି କରି ହେ। ସଂସର୍ଗ ।
ହନୁମାନର ବଚନ ଶୁଣି ଫାଲଗୁନି
ସରୋବର ପାଶେ ପାର୍ଥ କରେ ଗୃପ ଘେନି ।
ପ୍ରଧାମ୍ର ମାରାଗ ଜଣି ଦଶେ ହେମବର୍ଣ୍ଣ
ବେନି ଚରଣ ପ୍ରକାଶେ ଜାଣି ପଦ୍ମ ଚିହ୍ନ ।
ପଦେ ପଦେ ଯାଇ ସରୋବର ମଧ୍ୟେ ଉଠି
କାଳୀ ନାଗୁଣୀ ବଳକୁ ଦେଖଇ କିରୀଟି ।
ଛନଶତ ଫଣା ତାଙ୍କ ଶିରରେ ବିରାଜେ
ଜୀମୂତପଟଳ ଯେସନେ ମିଥୁନରେ ସାଜେ ।
ବିଶେଷ ଅମ୍ବୁଦବର୍ଣ୍ଣ ଅଗାଧ ଗମ୍ଭୀର
କାଳୀ ନାଗୁଣୀ ଗର୍ଜନ ଘନ ଘୋରତର ।
ବିଷ୍ଣୁକୃଷ୍ଣ ଅବତାର ଅଟେ ଧନଞ୍ଜୟ
ନାଗବଳ ଦେଖି କିଛି ନ କରଇ ଭୟ ।
ତୋଳଇ କୁସୁମ କରେ ପଦେ ପଦେ ଉଠି
ପିଟଇ ନାଗବଳଙ୍କୁ ହସ୍ତ ଧରି ଯଷ୍ଟି ।
ଫଣାରେ ବାଜୁଁ ହୁଅନ୍ତି ନାଗେ ମର୍ଦ୍ଦିଗୁଣ୍ଡା
ନାଗୁଣୀ ବଳକୁ ଦେଖି କୋପେଣ ପ୍ରଚଣ୍ଡା
ହୃଦକୁ ଶୋଭଇ ତାର ଗଳା ରତ୍ନମାଳା
ଜଗତଜନ ମୋହନ ବାସବର ବଳା ।
ଏକ ପ୍ରହାରେ ଅନେକ ନାଗବଳ ଲୋଟି
କୋମଳ ଫଣା ଉପରେ ହୁଏ ରକ୍ତବୃଷ୍ଟି ।
ମହାବିଶ୍ୱରୂପ ଧରି ମାରି ଯାଉ ବେଗେ
ଜଳର ଭିତରେ କୁଡ଼ କୁଡ଼ ହେଲେ ନାଗେ
କଜ୍ଜ୍ୱଳ ବରଣ ପାଣି ହେଲା ରକ୍ତମୟ
ବହୁତ ନାଗ ମାଇଲେ ବୀର ଧନଞ୍ଜୟ ।
ବାମେ କୁସୁମ ତୋଳଇ ଡାହାଣେ ଖଡ଼୍ଗ
ଅର୍ଜ୍ଜୁନ ବିଘାତ ପାଇ ଛୁଡ଼ିଲେ ଉରଗ ।

ଖଡ଼ଗେ ନାଗୁଣୀବଳ ମାଇଲା ଫାଲଗୁନ
ନିର୍ଭୟେ ତୋଳିଲେ ଫୁଲ କରେ ଯତ୍ନ ଯେନ
ପଳାଇଯାଇ ଉରଗେ କହିଲେ କାଳୀକି
ତୋହର ଥାଆନ୍ତେ ଆମ୍ଭେ ହେଲୁ ନିରମାଷୀ
ପୁରୁଷେକ ପ୍ରବେଶିଲା କାହୁଁ ଅଦଭୁତେ
ସୁଗନ୍ଧପୁଷ୍ପ ତୋଳଇ ଆମ୍ଭର ଦେଖନ୍ତେ ।
କୋମଳ ପଦରେ ସେହି ବେନିପାଦ ଦେଇ
କେମନ୍ତ ଉଶ୍ୱାସ ପୁଣି ଜଳେ ନ ବୁଡ଼ଇ ।
ତୋଟା ଭାଙ୍ଗନ୍ତେ ଧାଇଁଲୁ ମିଳି ସର୍ବସର୍ପେ
ଆକ୍ରୋଶି ଘୋଟିଲୁ ଯାଇ ଯେ ଯାହାର ଦର୍ପେ
ଅକାଟ ଅଭୁଟ ଅଟେ ତାହାର ଯେ କାୟ
ନୁହଇ ମାନବ କେଉଁ ଦେବତା ନିଶ୍ଚୟ ।
ତାହାର ନାମ ଧରନ୍ତେ ନାସନ୍ତ ଦିକ୍‌ପାଳେ
ଏଡ଼େବଡ଼ ଫୁଲତୋଟା ଏକା ଧ୍ୱଂସେ ବଳେ
ବନ ବିକାଶ ବାରତା ବଳ ମୁଖୁଁ ଶୁଣି
ଆଗେ ବିଜେକଲେକୋପେସେକାଳୀନାଗୁଣୀ
ମନ୍ଦର କନ୍ଦର ପରି ତାର ସପ୍ତଫେଣା
ଗର୍ଜ୍ଜନ ଶବଦ ଶୁଣି ଜନେ ହେଲେ ବଣା ।
ଜଳଭୁବନୁ ଆସଇ ଆକାଶକୁ ଘୋଟି
ହନୁମାନ ବୋଇଲା ତୁ ଶୁଣରେ କିରୀଟି ।
କାଳୀର ଯେ ବିଶ୍ୱରୂପ ଦେଖରେ ଫାଲ୍‌ଗୁନ
କୋପେ ପେଷିଲା ଫାଲ୍‌ଗୁନ ଦିବ୍ୟଶର ଯେନ
ତୁଣ୍ଡ ବିସ୍ତାରି ଆସୁଛି କୋପଭରେ କାଳୀ
ଭୟେ କଳଙ୍କ ଦିଶିଲେ ଦେବ ଅଂଶୁମାଳୀ ।
ଅର୍ଜ୍ଜୁନ ପେଷି ବିନ୍ଧିଲା ସାତଗୋଟି କାଣ୍ଡ
ସମସ୍ତ ପଶିଲା କାଳୀ ନାଗୁଣୀର ତୁଣ୍ଡ ।
ଶରସାଗର କରଇ ବୀର ଧନଞ୍ଜୟ
ନାଗୁଣୀ ଗର୍ଭରେ ପଡ଼ି ସବୁ ଗଲା କ୍ଷୟ ।
ପର୍ବତା ଶରେକ ଯେନି ବିନ୍ଧିଲା ଫାଲ୍‌ଗୁନ
ହେଲେ ଭକ୍ଷିଲା ତାହାକୁ ସେ କାଳୀନାଗୁଣୀ
ଅଗ୍ନି ବାଣ ବିନ୍ଧିଲାକ ଆଣି ବୀରମଣି
ନାଗୁଣୀ ଗର୍ଭରେ ପଡ଼ିନାଶଗଲା ପୁଣି ।
ଅଗ୍ନିଦେବତାଏ ଦେଲେ ଯେଉଁ ମଉଷଧି
ତାହାକୁ ଆଧାନ କଲା ପାର୍ଥ ମହାଯୋଧୀ ।
ପେଷିଲା ସେ ମଉଷଧି ଶର ଯହୁଁ ପାର୍ଥ
ତାହାର ଗନ୍ଧ ବାଜିଲା ନାଗୁଣୀର ମାଥ ।

ଆଉଷଧି ଗନ୍ଧ ଲାଗି ଭାଙ୍ଗିଲା ତା ଦର୍ପ
ବନ ଭୁବନକୁ ତେଜି ପଳାଇଲେ ସର୍ପ ।
କାଳୀ ଉପରେ ପଡ଼ିଲା ଖଗବର ଶର
ଅର୍ଜ୍ଜୁନ ବିନ୍ଧିଲା ଯହୁଁ ହୋଇ କୋପଭର
ଫେରୁ ମର୍ଦ୍ଦନ ହୋଇଲା ଯହୁଁ ସେହି କାଳୀ
ସମର ତେଜ୍ୟା କରିଣ ଯାଇ ପାଶେ ମିଳି ।
ସର୍ପଧ୍ୱସନ ମାନସେ ବାସବ ଆକର୍ଷି
ଗୋଡ଼ାଇ ଗରୁଡ଼ ଶସ୍ତ୍ର ବାରମ୍ବାର ପେଷି ।
ଗରୁଡ଼ ତେଜ ଲାଗିଲା ଯହୁଁ ମହାତଳେ
ଅନ୍ତରୀକ୍ଷେ ଜଳେ ପଡ଼ି ମଲେ ନାଗବଳେ ।
ଅନେକ ନାଗ ଧ୍ୱଂସିଲା ବୀର ଧନଞ୍ଜୟ
ଥୋକେପାତାଳେପଶିଲେ ଥୋକେଗଲେ କ୍ଷୟ
ମଉଷଧି ଶରବଳେ ଅସାଷ୍ଟମ କାଳୀ
ବଇଷ୍ଣବୀ ଚନ୍ଦ୍ରପାର୍ଥ ମାଇଲାକ ତୋଳି ।
ଚନ୍ଦ୍ରାଘାତେ ବେନିଖଣ୍ଡ ହୋଇଲାକ ଛୁଡ଼ି
ବେନିଖଣ୍ଡ ହୋଇ କାଳୀ ତଳେ ଗଲା ପଡ଼ି ।
ନାଗୁଣୀର ବଳ ନାଶଗଲେ ସେତେବେଳେ
ହନୁ ଯାଇ ଅର୍ଜ୍ଜୁନକୁ ଧଇଲାକ କୋଳେ ।
ସାଧୁ ଅର୍ଜ୍ଜୁନ ମହିମା ତୋର ଧନ୍ୟ ଧନ୍ୟ
ସାଧୁ ସାଧୁ ଅର୍ଜ୍ଜୁନରେ ତୋହର ଜୀବନ ।
ସାଧୁ ସାଧୁ ଅର୍ଜ୍ଜୁନରେ ତୋର ପିତାମାତା
ସାଧୁ ସାଧୁ ଅର୍ଜ୍ଜୁନ ରେ ତୋ ଗୁରୁ ଦେବତା
ସାଧୁ ସାଧୁ ଅର୍ଜ୍ଜୁନ ତୁ ଭାରତର ମଲ୍ଲ
ସାଧୁ ସାଧୁ ଅର୍ଜ୍ଜୁନ ତୁ ଦୁର୍ଜ୍ଜନର ଶଲ
ସାଧୁ ସାଧୁ ଅର୍ଜ୍ଜୁନ ତୁ ସୋମବଂଶ ଧର୍ମ
ସାଧୁ ସାଧୁ ଅର୍ଜ୍ଜୁନରେ ତୋର କୁଳଜନ
ବହୁତର ସାଧୁ ସାଧୁ କଲା ହନୁମାନ
ବୋଇଲା ଦ୍ୱିତୀୟ କୃଷ୍ଣ ସାକ୍ଷାତେ ଅର୍ଜ୍ଜୁନ ।
ହନୁମାନ ଆଶ୍ୱାସଇ ବାସବକୁ କୋଳେ
ବିଜୟ ସେ ଧନଞ୍ଜୟ ପୁଣି ଯାଇ ଜଳେ ।
ସୁଗନ୍ଧ ପୁଷ୍ପ ତୋଳଇ ହସ୍ତରେ ବହୁତ
ସେହି ସରୋବରେ ପୁଣି ଅଛଇ ଦଇତ୍ୟ ।
ତୋଟା ବିଧ୍ୱଂସନ୍ତେ ସେହି ଭୂତର ରୂପରେ
ଅର୍ଜ୍ଜୁନ ବେନି ଚରଣ ଧଇଲା ପାଟିରେ ।
କୋପେ ଧରି ଆକର୍ଷଇ ଦୈତ୍ୟ ମହାବଳୀ
ଅର୍ଜ୍ଜୁନ ବେନି ଚରଣ ଧରି ଯାଏ ଗିଳି ।

କଟିଭାଗ ପର୍ଯ୍ୟନ୍ତେ ଗିଳିଯାନ୍ତେ ରକ୍ଷ
ଅର୍ଜ୍ଜୁନ ଡାକଇ ମୋତେ ହନୁମାନ ରଖ ।
କାଳୀନାଗଙ୍କର ବଳ ଧ୍ୱଂସିଲି ମୁଁ ବଳେ
କେ ମୋର ଚରଣ ଗିଳି ବୁଡ଼ାଉଛି ଜଳେ ।
ନଖ ମୂଳ ନାସା କର ଚରଣହିଁ ନାହିଁ
ଶୂନ୍ୟ ଦେବତା ପରାୟେ ଗିଳି ସେ ଆସଇ ।
କଟିଯାଏ ଗିଳିଲାଣି ଅଛି ମୁଖ ପାଣି
ହନୁ ତେଜିଁ ପଡ଼ିଲାକ ପାର୍ଥ ବାକ୍ୟ ଶୁଣି ।
ଅର୍ଜ୍ଜୁନଙ୍କୁ ସେ ଆକର୍ଷି ଧରୁ ବାମକରେ
ଛାଡ଼ି ପଳାଇଲା ଦୈତ୍ୟ ହନୁମନ୍ତ ଡରେ ।
ହନୁମାନ ବୋଇଲାକ ଶୁଣରେ କଂସାରି
ମୋହରି ଆଡ଼କୁ ବାବୁ ଚାହିଁରେ ଲେଉଟି ।
ହନୁ ବଚନେ ଲେଉଟି ଚାହେଁ ସବ୍ୟସାଚୀ
ଦୁରନ୍ତ ଦଇତ୍ୟ ଛାଡ଼ି ପଳାଇ ଯାଉଛି ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣିମା ପାବନ
ଏ କେବଣ ଚରିତ ମୁଁ ନପାରିଲି ଜାଣି ।
ବଡ଼ହିଁ ଆଗୋଚର ଏ ଅସମ୍ଭବ ମାୟା
କି ଯେନ ଗିଳିଲା ମୋତେ ନ ଦେଖିଲି କାୟା ।
ହନୁମାନ ବୋଇଲା ହେ ଶୁଣ ମହାରଥୀ
ତ୍ରେତାଯୁଗର ବହୁତ କାଳର ଏ କଥା ।
ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ଆଦର
ଦଶରଥ ରାଜାଙ୍କର ଏ ଚାରି କୁମର ।
ରାମଙ୍କ ଭାରିଯା ହରିନେଲା ଦଶକନ୍ଧ
କପିବଳ ଘେନ ରାମ ବାନ୍ଧିଲେକ ବନ୍ଧ ।
ରାମ ରାବଣର ହେଲା ବହୁତ ସମର
ଅସୁର ଅନେକ ବଧ କଲେ ରଘୁବୀର ।
କୁମ୍ଭକର୍ଣ୍ଣ ବୋଲି ଏକ ବଳିବାର ସୂନୁ
ରାବଣ ଅନୁଜ ଜାତ ଗିରି ପ୍ରାୟେ ତନୁ ।
ଦନୁଜ ବଳ ପଡ଼ନ୍ତେ କୁମ୍ଭକର୍ଣ୍ଣ ବୀର
ସଂଗ୍ରାମେ ପ୍ରବେଶ ହେଲା ଆସି ଏକେଶ୍ୱର ।
ଦୁର୍ଦ୍ଦାନ୍ତ ଅସୁର କପିବଳ ଦେଲା ଗିଳି
ନାସିକା ଶ୍ରବଣ ବାଟେ କପିଏ ନିକଳି ।
ଦଧିମୁଖ ସେନାପତି ନଳ ନୀଳ ବୀର
ଅସୁରକୁ ଫୋପାଡ଼ିଲେ ଧରି ଗିରିବର ।
କଲେକ ସେହି ଅନେକ ପର୍ବତ ପ୍ରହାର
ତାର ଶିରେ ପଡ଼ି ସବୁ ହେଲା ଶତଚୂର ।

କେବେହେଁ ବଧ ନୋହିଲା ସେହି ମହାଦୈତ୍ୟ
ମାରି ମାରି ଫୁଟିଲେ ସେ ବାନର ସମସ୍ତ ।
ଆପେ ଶ୍ରୀରାମ ଅଇଲେ କରେ ଧରି ଧନୁ
ଗୁଣ ଟଙ୍କାର ଶବଦେ କମ୍ପାଇଲେ ସାନୁ ।
ବେନିଭୁଜେ ଧରି କପି ଗିରି ବଳବନ୍ତ
ନାରାଚ ପେଷି ଶ୍ରୀରାମ କାଟିଲେ ତା ହସ୍ତ ।
ଭୁଜ ଛିଡ଼ନ୍ତେ ଅସୁର ବଡ଼ହିଁ ପ୍ରଚଣ୍ଡା
ଡାଳ ବହୁନେ ଯେସନେ ଦଶେବୃକ୍ଷ ମୁଣ୍ଡା ।
କୋପେ ସେ ଅସୁର ଦେଲା ତୁଣ୍ଡକୁ ବିସ୍ତାରି
କାମୁଡ଼ି କରି ଗିଳଇ କପିବର ଧରି ।
ଶ୍ରୀରାମ ନାରାଚ ଘେନି ପେଷିଲେ ପ୍ରଚଣ୍ଡ
ଶରୀର ଛକୋଡି ତାର ଛେଦିଲେକ ମୁଣ୍ଡ ।
ସେତୁବନ୍ଧର ଉପରେ ପଡ଼ିଲା ତା କାୟ
ଉତ୍ସର୍ଗେ ଦିଶିଲା ଆନ ବନ୍ଧର ପରାୟ ।
ଛିଣ୍ଡିଲା ମୁଣ୍ଡ ତାହାର ଗିଳେ ହରିବଳ
ପୁଣି ଶ୍ରୀରାମ ତାହାକୁ କଲେ ବେନିଫାଳ ।
ଫାଳେକ ଉଡ଼ି ସମୁଦ୍ରେ ପଡ଼ିଲାକ ଯାଇ
ଉପର ମୁଣ୍ଡ ଫାଳକ ଆସୁଅଛି ଧାଇଁ ।
ଯେବଣ ଠାବେ ପଡ଼ଇ ତାହାର କପାଳ
ଧୂଳି ହୋଇଯାନ୍ତି ଶତ ଶତ କପିବଳ ।
ଦୁଃସହ ହେବାର ଦେଖି ରଘୁକୁଳ ରାଣ
ତହୁଁ ସେ ଚାହିଁଲେ ବିଭୀଷଣ ମୁଖ ପୁଣ ।
ଅସୁର ରାଜା ବୋଇଲା ଶୁଣ ରଘୁପତି
ବ୍ରହ୍ମାଙ୍କୁ ଅନେକ ତପ କଲାକ ପ୍ରହେତି ।
ତିନଶତ ଅଇବ୍ରତ ବରଷ ପର୍ଯ୍ୟନ୍ତ
ମହାତପେ ମନାଇଲା ବିଧାତା ଦୈବତ ।
କଠୋର ତା ତପ ଦେଖି ବିଜୟ ବିରଞ୍ଚି
ବର ମାଗରେ କୁମର ମନେ ତୋର ପାଞ୍ଚି ।
କରପତ୍ର ଯୋଡ଼ିକରି ବୋଲେ କୁମ୍ଭକର୍ଣ୍ଣ
ଭୁଞ୍ଜିଣ ନିଦ୍ରାଯିବି ମୁଁ ନ ମଣଇ ଆନ ।
ଯେବା ମାରିବାକୁ ମୋତେ କରିବ ବିଚାର
ଶତ୍ରୁର ପିଠ ଦେଖିଲେ ଛାଡ଼ିବି ସମର ।
ବିଭୀଷଣ ବୋଇଲା ଏ ଦୁର୍ବାର ବଳଟି
ଧନୁ ଧରିଣ ସମର କରି ହିଅ ପିଠି ।
କାର୍ଯ୍ୟ ସମୟରେ ଦେବ ନାହିଁ କିଛି ଦୋଷ
ଯେବଣ ବାଟରେ ହେଲେ ଶତ୍ରୁ ଯାଉ ନାଶ

ଅନେକ ନାଗର ତହୁଁ ଶ୍ରୀରାମ ବନ୍ଧିଲେ
କେବେହେଁ ସେ ରାକ୍ଷସକୁ ପିଠିହିଁ ନ ଦେଲେ
ବିଭୀଷଣ ତହୁଁ ଏକ ଉପାୟ ଆଚରି
ଆଣିଲେ ଲକ୍ଷ୍ମଣ ଠାକୁରଙ୍କୁ ଦୂରକରି ।
ଶ୍ରୀରାମ ଲକ୍ଷ୍ମଣେ ଶର ମାରିଲେ ଲେଉଟି
ସମରେ ଦନୁଜ ଦେଖେ ଶ୍ରୀରାମର ପିଠି ।
ଯେଣୁ ତାଙ୍କର ପିଠି ଏ ଦେଖିଲା କପଟି
ତେଣୁ ପଡ଼ିଲା ରାକ୍ଷସ ଏଥି ମହୀ ଲେଟି ।
ମୋତେ ଦେଖିଣ ଅସୁର କରଇ ସେ ଭୟ
ତେଣୁ ତୋତେ ବିରୋଧ ନ କଲା ଧନଞ୍ଜୟ ।
ହନୁବଚନେ ସାନନ୍ଦ ହୋଇଲା ଫାଲ୍‌ଗୁନ
ଏତେଦୂର କେମନ୍ତେ ଏ ଅଇଲା ତ ପୁଣି ।
ହନୁମନ୍ତ ବୋଇଲା ଏ ଶ୍ରୀରାମ ସ୍ୱଶରେ
ପବନା ଶରେ ଉଡ଼ାଇ ପକାଇଲେ ଦୂରେ ।
ଶ୍ରୀରାମଙ୍କ ମୁଖ ଚାହିଁ ଅସୁର ବୋଇଲା
ମୁଁ କିସ ଭକ୍ଷିବି ବୋଲି କପାଳୀ କହିଲା ।
ରଘୁନାଥ ବୋଇଲେ ତୁ ସରୋବରେ ଥିବୁ
ଯେ ମୁଖେ ପଡ଼ିବ ତାକୁ ଆହାର କରିବୁ ।
ଏସନକ ବର ସେହୁ ମାଗି ଦୈତ୍ୟନାଥ
ସେହିଦିନୁ ଏହି ସ୍ଥାନେ ରହେ ବୀରପାର୍ଥ ।
ତୁ ମୋହଠାରେ ଶରଣ ଯେବେ ନ ପଶନ୍ତୁ
ନିଶ୍ଚୟ ଏ ଅସୁରର ଭୋଜ୍ୟ ହୋଇଥାନ୍ତୁ ।
ହନୁମନ୍ତ ବାକ୍ୟେ ତୋଷ ହେଲା ଫାଲଗୁନ
ମାରୁତିର ଚରଣରେ କଲାକ ଦଇମି ।
ବୈନତେୟ ସୁମରଣ କଲେ ସବ୍ୟସାଚ
ପକ୍ଷୀରାଜ ବିଜେ କଲେ ସରୋବରେ ଆସି ।
ଦେଖଇ ଯେ ନାଗବଳ ଉମୁଚ୍ଛନ୍ତି ଜଳେ
ମନେ ବିଚାରେ କଶ୍ୟପବାଳ ତେତେବେଳେ
ନାଗପୁଣ ଏହାକୁହିଁ କରିଥିଲେ ରକ୍ଷା
ତହିଁଚାହିଁ ଦେଖ ମୁହିଁ କଲଇଁ ଉପେକ୍ଷା ।
ମୋତେ ଅଦୃଶ୍ୟ ହୋଇ ଏ ଏଥେ ଥିଲେ ଲୁଚି
ମରି ପଡ଼ିଲେ ତୋ ହସ୍ତେ ଏବେ ସବ୍ୟସାଚ
ଶୁଣି ଅର୍ଜୁନ ବିନତା କୁମର ବଚନ
ଅମୃତ ଶରକୁ ପାର୍ଥ ପେଷିଲା ବହନ ।
ଆକାଶ ମାର୍ଗୁ ଅମୃତଶର କଲା ବୃଷ୍ଟି
ଜୀବନ ପାଇଣ ସର୍ବ ନାଗବଳ ଉଠି ।

ଦେଖି ତାହା ଧନ୍ୟ ଧନ୍ୟ କଲେ ହନୁମନ୍ତ
ସୁଗନ୍ଧ ପୁଷ୍ପ ରଖିଲେ ବୈନତେୟ ପୃଷ୍ଠ ।
ସୁଗନ୍ଧିକା ପୁଷ୍ପ ଘେନି ବେଗେ ତହୁଁ ଉଠି
ଗରୁଡ଼ ପିଠିରେ ବିଜେ କଲାକ କପିଟି ।
ହନୁମନ୍ତ ଚରଣରେ ଅର୍ଜୁନ ପ୍ରଣମି
ଅନୁଗ୍ରହ କରି ମୋତେ ଆଜ୍ଞାଦେବା ସ୍ୱାମି ।
ହନୁମାନ ସୁମରଇ ଶ୍ରୀଦଧିବାମନ
ଶୁଭଯୋଗେ ଗମନ ତୁ କର ହେ ଅର୍ଜୁନ ।
ଆଜ୍ଞା ମାଗିଣ ଚଳଇ ବୀର ଧନଞ୍ଜୟ
ଆକାଶ ମାର୍ଗେ ଉଡ଼ଇ କଶ୍ୟପ ତନୟ ।
କୁଶସ୍ଥଳୀ ଦ୍ୱାରକା ଯେ ସମୁଦ୍ର ନିକଟେ
ଜଗତିରେ ବିଜେ କରିଛନ୍ତି ନନ୍ଦସୁତେ ।
ଦେବର୍ଷି ରାଜର୍ଷି ବ୍ରହ୍ମର୍ଷିମାନେ
ବିଜେ ସମାରୋହେ ସେହି ଦ୍ୱାରକା ଭୁବନେ
ଏମନ୍ତ ସମୟେ ଯାଇ ବାସବର ବଳା
ଅନ୍ତରେ ଥାଇ ସେ ରାମ କୃଷ୍ଣଙ୍କୁ ଦେଖିଲା ।
ଖଗେଶ୍ୱର ପିଠିରୁ ଯେ ଉଭୁରି ଫାଲ୍‌ଗୁନ
ରାମକୃଷ୍ଣଙ୍କର ପାଦେ କରଇ ଦଇମି ।
ବିଳମ୍ବ ଦେଖି ପୁଚ୍ଛନ୍ତି ତାହାଙ୍କୁ ଅଚ୍ୟୁତ
କହେ ଫାଲ୍‌ଗୁନ ତହିଁର ବାରତା ସମସ୍ତ ।
ଶୁଣିଣ ହରଷ ହେଲେ ଦେବ ମଧୁରିପୁ
ତୁ ଭାଙ୍ଗିଲୁ ସିନା କାଳୀ ନାଗୁଣୀର ବପୁ ।
ଦେଖିଲେ ସେ ସୁଗନ୍ଧିକା କୁସୁମ ଅମ୍ଳାନ
ହିଶନ୍ତି ସେ ବାଳଅର୍କ ହିଶଇ ଯେସନ ।
ଅମ୍ଳାନ ପୁଷ୍ପ ସୁଗନ୍ଧ ଅଛଇ ଯୁକତେ
ଗନ୍ଧ ଆମୋଦଇ ପଞ୍ଚକୋଶ ପରିଯନ୍ତେ ।
ପୁଷ୍ପକ ଘେନି ବିଜୟ ହେଲେ ରାମକୃଷ୍ଣ
ଋଷିମାନେ ଅର୍ଜୁନକୁ ଦେଖି ହେଲେ ତୁଷ୍ଟ ।
ଧନ୍ୟ ଧନ୍ୟ ଅର୍ଜୁନ ଏ ତୋହର ମହିମା
ଏ ସଂସାରେ ରୁହାଇଲୁ ତୁହି ଯଶସୀମା ।
କାଳିଆ ନାଗର ଦର୍ପ ଗଞ୍ଜିଲୁ ତୁ ହେଲେ
ରହିଲା ମହିମା ତୋର ଜାଣ ଚିରକାଳେ ।
ବହୁତ ହରଷ ଧ୍ୱନି ଶୁଭେ ପୁରେ ପୁରେ
ବହୁତ ପ୍ରଶଂସା ପାର୍ଥ ପାଇଲା ସେଠାରେ ।
ସର୍ବଭୁବନ ଜିଣିଲୁ ବିଷ୍ଣୁ ତୋ ଭରସା
ନାରଦ ପ୍ରତିଷ୍ଠା କଲେ ଦେବକୀର ଓସା ।

ଦେବକୀ ଯଶୋଦାଙ୍କର ପୂରିଲା ମାନସ
ବାହୁଡ଼ିଲେ ଯେ ଯାହାର ହୋଇଣ ସନ୍ତୋଷ
ଅନେକ ଉତ୍ସବ ଦାନ ଦକ୍ଷିଣା ବଧାଇ
ଅଷ୍ଟରତ୍ନରେ ନିର୍ମିତ ଦେଲେ ଲକ୍ଷେ ଗାଈ ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ସୁଭଦ୍ରାକୁ ଘେନି ବିଜେ ବାସବର ସୂନୁ ।
ବହୁତ ରତ୍ନ ଅକ୍ଷତ ଦେଲେ ଜଗନ୍ନାଥେ
ସୁଭଦ୍ରା ପାର୍ଥଙ୍କୁ ଘେନି ନନ୍ଦିଘୋଷ ରଥେ ।
ଦାରୁକ ସାରଥି ରହୁବର ବାହୁଅଛୁ
ହସ୍ତିନା ଭୁବନେ ବିଜେ କୃଷ୍ଣ ସବ୍ୟସାଚ ।
ରଥରୁ ଓହ୍ଲାଇ ବେଗେ କୃଷ୍ଣ ଧନଞ୍ଜୟ
ପ୍ରଣିପାତ କଲେ ଯାଇ ଯୁଧିଷ୍ଠିଙ୍କ ପାଏ ।
ଆସ୍ଥାନେ ବିଜୟ ରାଜା ଶ୍ରୀମାନଗୋବିନ୍ଦ
ତହିଁ ବିଜୟ ଅର୍ଜୁନ ପରମ ଆନନ୍ଦ ।
ବିଦୁର ବୋଇଲେ ଶୁଣ ଆହେ ଜଗନ୍ନାଥ
ଦ୍ୱାରକାକୁ ଗଲ ଏ ଯେ ବୀରବର ପାର୍ଥ ।
କେବଣ କୃତ୍ୟ ତହିଁରେ କଲ ଧନଞ୍ଜୟ
ଏଥିର ବାରତା କହି ଫେଡ଼ିବା ସଂଶୟ ।
ସ୍ୱରୂପ ବାରତା ତାଙ୍କୁ କହନ୍ତି ଶ୍ରୀହରି
ହନୁମାନଙ୍କୁ ଭେଟିଲା ଖିନଖିନା ଗିରି ।
ସରୋବରେ ପଶି ପାର୍ଥ ତୋଳଇ ସୁଗନ୍ଧ
ହନୁର ଭୁଲେ ଯେ ପାର୍ଥ ହୋଇଲା ବିବାଦ ।
ପ୍ରତିଜ୍ଞା କଲେକ ତହିଁ ପବନର ସୂତ
ବାରିନିଧି ବାନ୍ଧିଅଛୁ ଆମ୍ଭେ ରାମଦୂତ ।
ଅନେକ ଦୁର୍ଗମ ଗିରି ଆଣିଲ ଉପାଡ଼ି
ସାତଦିନ ମଧ୍ୟେ ସେତୁ ବନ୍ଧହିଁ ନବାଡ଼ି ।
ପ୍ରତିଜ୍ଞା କରି ବୋଇଲା ତାହାକୁ ଅର୍ଜୁନ
ନିମିଷକେ କରିବି ମୁଁ ସାଗର ବନ୍ଧନ ।
ହନୁ ବୋଇଲା ତୁ ବନ୍ଧ ବାନ୍ଧୁକନା ଦେଖି
ନୋହିଲେ ତୁ ନାଶଗଲୁ କେ ପାରିବ ରଖି ।
ବନ୍ଧିଲା ବାସବି ଶର ସମୁଦ୍ରକୁ କାଡ଼ି
ଏକା ନିମିଷକେ ସିନ୍ଧୁ ମଧ୍ୟେ ବନ୍ଧ ପଡ଼ି ।
ଶରେ ସାଗର ବାନ୍ଧିଲା ଅର୍ଜୁନ ତଡ଼ତ
ତିନିଶତ ଯୋଜନ ଯେ ଉଚ୍ଚ ଦୀର୍ଘପ୍ରତ ।
ପାଞ୍ଚଶତ ଯୋଜନ ଯେ ହୋଇଲା ଉତ୍ସର୍ଗ
ବାରିନିଧି ମଧ୍ୟରେ କି ହେଲା ମଧ୍ୟସ୍ୱର୍ଗ ।

ବହୁ ଯେ ପ୍ରଶଂସା କଲା ସାଧୁରେ କଷ୍ଟି
ତୋ ବନ୍ଧ ଉପରେ ମୁହିଁ ଯାଇଁକନା ଉଠି ।
ଏତେ ବୋଲି ହନୁମାନ ମହାବିଶ୍ୱରୂପେ
ଶରବନ୍ଧ ଉପରେ ସେ ଉଠିଲା ପ୍ରତାପେ ।
ବିଶ୍ୱରୂପେ ଚପିଲା ସେ ଅଞ୍ଜନାର ବଳା
ମାଡ଼ିଲେ ଯେସନ୍ତେ ଉକୁଟ ଉଠେ ସୋଲଭେଲା
ବହୁତ ପ୍ରଶଂସା ତାକୁ କଲା ହନୁମନ୍ତ
ତୋଷେ ହନୁ ନାମ ଦେଲା ଶ୍ୱେତବାହ ପାର୍ଥ
ସରୋବରେ ଲୁଚିଥିଲା ବଳ ଘେନି କାଳୀ
ସୁଗନ୍ଧ ପୁଷ୍ପ ତୋଳିଲା କାଳୀଦର୍ପ ଦଳି ।
ଅନନ୍ତ ମୂରତି ଧରି ନାଗବଳ ଧ୍ୱଂସି
କାଳୀକୁ ଯେ ବିଦାରିଲା କୋପେ ଶର ପେଷି
ବହୁତ ପ୍ରତିଜ୍ଞା ତାର କହିଲେ ସଭାୟେ
ନ ଶୁଣନ୍ତି କଉରବେ ବଧିରଙ୍କ ପ୍ରାୟେ
ଶୁଣି ସାନନ୍ଦ ବିଦୁର ଶଲ୍ୟ ଧୃଷ୍ଟ ଦ୍ରୋଣ
ଅଭିମାନେ ଉପହାସ କଲା ବୀରକର୍ଣ୍ଣ ।
ଏମନ୍ତ ସମୟେ ରାଜା ଗାନ୍ଧାରୀର ସୂନୁ
ଉଠିଣ ମାନଗୋବିନ୍ଦ ଚଳଇ ଆସ୍ଥାନୁ ।
ବଟେ କଉରବେ ଯାଇ ଆପଣା ଭୁବନ
ଦ୍ୱାରକାରେ ବିଜେ କଲେ ଶ୍ରୀଜଗମୋହନ ।
ଯେସନେ ବିଧାନ ଅଛି ଶାସ୍ତ୍ରେ ଗ୍ରନ୍ଥ ଆଦି
ଶ୍ରୀନାରାୟଣ ପ୍ରସାଦେ ସେ ହୁଏ ସମ୍ପାଦି ।
ଅନୁକୂଳ ସାଧକୀ ଯେ ପ୍ରସନ୍ନ ଭବାନୀ
ସତେ ଅନୁଗ୍ରହ ମୋତେ କଲ ମହାମ୍ବାଣୀ ।
ମାନବର ଦୃଷ୍ଟି କାହିଁ ଅଦୃଷ୍ଟି ଅଶ୍ରୁତି
ଆଜ୍ଞା ଦିଅନ୍ତି ସେ ଯାହା ସୁପ୍ରସନ୍ନେ ନିତି ।
କଳିକାଳ ଧ୍ୱଂଶିନୀ ଗୋ ଅଭୟ ମଙ୍ଗଳେ
ତୋ ପାଦ ଧ୍ୟାୟି ସେବିଲ ମୁହିଁ ବୁଦ୍ଧିବଳେ
ମନ ବଚନେ କର୍ତ୍ତବ୍ୟ ଅଜପା ସାଧିଲି
ବାକ୍ୟଦେବୀ ଭଣ୍ଡାରକୁ ସୁଖେ ବିଧ୍ୱଂସିଲି ।
ସେବି ଶ୍ରୀଚଣ୍ଡୀଶାରଳା ଦେବୀ ପଦପଦ୍ମ
ସେ ଦେବୀର ସୁପ୍ରସନ୍ନେ ପରମ ଆନନ୍ଦ ।
ସଦା ଅନୁଗ୍ରହ ମୋତେ କର କାତ୍ୟାୟିନୀ
ସଂସାରଜନ ବୋଧିଲି ତୋର ଆଜ୍ଞାଘେନି ।
ସଂସାର ପାରିବାରକୁ ନ ପାରିଲି ମେଣ୍ଟି
ହୃଦରେ ଜପିଲି ନାରାୟଣ ନାମଗୋଟି ।

ହର ଉଦ୍ୟାନ ବନେ ମୁଁ କଲି ତପସ୍ଥାନ
କାଶୀନଦୀ ତୀରେ ସେବା କଲି ପଞ୍ଚାନନ ।
ଜନ୍ମରୁ ମୂରୁଖ ମୁହିଁ ନ ପଢ଼ିଲି ବିଦ୍ୟା
ବିନା ତପେ ବାଞ୍ଛା ସିଦ୍ଧ କଲେ ଯୋଗସିଦ୍ଧ ।
କୃପାଜଳ ନନ୍ଦିନୀ ସେ ଦେବୀ ସରସ୍ୱତୀ
କଳିକାଳେ ବିକାଶିଲେ ଶାରଳାମୂରତି ।
ଖଣ୍ଡିଲି ଦୁଷ୍କୃତ ମୁହିଁ ସେ ଦେବୀ ପ୍ରସନ୍ନେ
ଧନ ପୁତ୍ର ଆୟୁଯଶ ଦିଅନ୍ତି ସୁମନେ ।
ଶରଣ ରକ୍ଷିଣୀ ଭକ୍ତବତ୍ସଳା ହିଙ୍ଗୁଳା
ପ୍ରସନ୍ନେ ବର ଦେଉ ଗୋ ଶ୍ରୀଚଣ୍ଡୀ ଶାରଳା
ଜୟ ଜୟ ଶୁଭ ଅବଧାରଣୀ ମଙ୍ଗଳେ
ଆପଦ ଦୁରିତମାନ ହର ସର୍ବକାଳେ ।
ଶୈଳନନ୍ଦିନୀ ପଦ୍ମପାଦ ଭକ୍ତିଭାବେ
କହିଲି ମଧ୍ୟ ପର୍ବ ମୁଁ ଭାରତ ପ୍ରସ୍ତାବେ ।
ଶ୍ରୀଚଣ୍ଡୀ ଶାରଳା ଧ୍ୟାନଙ୍କର ପଞ୍ଚାନନେ
କାଳଭୟ ମେଣ୍ଟିଲି ମୁଁ ହିଙ୍ଗୁଳାପ୍ରସନ୍ନେ ।
ଶ୍ରୀଜଗନ୍ନାଥଙ୍କର ଚରଣେ ଶରଣ
ଶାରଳାଦାସ ମୁଁ ଶୂଦ୍ର ନୁହଇ ବ୍ରାହ୍ମଣ ।
ଶ୍ରୀବାକ୍ୟଦେବୀଙ୍କ ପଦ୍ମପାଦେ ଅନୁରାଗେ
ମୁହିଁ ଏହାକୁ ସର୍ଜ୍ଜନା କଲି ଶାସ୍ତ୍ରଯୋଗେ ।
ଶ୍ରୀମହାଭାରତ ଆଦ୍ୟପର୍ବର ଏ ଅଙ୍ଗ
ମଧ୍ୟପର୍ବହିଁ ଅଟଇ କଲଇଁ ସଂଯୋଗ ।
ବେଦ ପୁରାଣ ବାକ୍ୟରେ ଯେଉଁ ଫଳଶ୍ରୁତି
ତହିଁର ସମାନ ଏହି ମଧ୍ୟପର୍ବ ଖ୍ୟାତି ।
ପଢ଼ନ୍ତେ ଶୁଣନ୍ତେ ସାର୍ଥ ହେବ ମହାଯୋଗ
ଖଣ୍ଡନ ହେବ ଅନେକ ଜନ୍ମ ପାପରୋଗ ।
ଜୟ ଜୟ ନାରାୟଣୀ ବିଜୟ ଶବର
ବନକ୍ରୀଡ଼ା କଉତୁକେ ବନେ ବେଣୁକାର ।
ଅଙ୍ଗମୀଡ଼ି କରାତର ଝିଅ ସେ ମରୁଛି
ତାହାକୁ ତୁ ବିଭାହେଲୁ ମେଳକର ମତି ।
ମଉଳରେ ଶୋଭାବନ ଖାଙ୍କର କବରୀ
ଝୁଞ୍ଜ ଗୁଞ୍ଜ ମାଳ ଯାର ଲଲାଟେ କସ୍ତୁରୀ ।
ମାଳତୀର ବଲ୍ଲଭ ଯେ ପ୍ରଭୁ ନାରାୟଣ
ଶାରଳାଦାସ ତାହାର ପାଦରେ ଶରଣ ।
ଜୟ ତୁ ନାରାୟଣୀ ଗୋ ଅନାଦି ଶକତି
ପରମ ବଇଷ୍ଣବୀ ତୁ ଜଗତର ଧାତ୍ରୀ ।

ତୋର ବୁଦ୍ଧିବଳେ ହେଲା ରକ୍ତବୀର୍ଯ୍ୟ ଧ୍ୱଂସ
ତୋହର ଚକ୍ରରେ ହେଲେ ଅସୁର ବିନାଶ ।
ଧନୁଶର ଧରି ଚଣ୍ଡୀଯୁଦ୍ଧରେ ଗୋ ମାଏ
ଦୈତ୍ୟକୁଳେ ଯୁଦ୍ଧ ଚଉବଂଶ ଦନଯାଏ ।
ରକତବୀର୍ଯ୍ୟକୁ ଯହୁଁ କଲୁ ତୁ ବିନାଶ
ତା ରୁଧିରୁ ଉପୁଜିଲେ ଅନେକ ତା ଅଂଶ ।
ଚିନ୍ତା କଲୁ ବସି ନାଶ ନୋହିଲେ ସେ ଯହୁଁ
ଚଉଦ ଅର୍ବୁଦ ମାତ୍ର ଜାତକଲୁ ତହୁଁ ।
ରକ୍ତବୀର୍ଯ୍ୟବାହିନୀ ଯେ ବୋଲନ୍ତି ତୋତେ
ଦାନବ କୁଳଧ୍ୱଂସିନୀ ଦୟାକର ମୋତେ ।
ତୋହର ଚରଣ ଆଶ୍ରା କଲି ଯହୁଁ ମୁହିଁ
ଏ ଭାରତ ରଚିବାକୁ ହୃଦେ ବିସ୍ତରଇ ।
ତୁ ଦେବୀ ଦୟାକଲେ ଗୋ ପାଇବି କାରଣ
ମନୁଷ୍ୟ ଯୋନିରେ ମୁହିଁ ହୋଇଛି ଜନମ ।
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ତୋହର ଚରଣକୁ ମୁଁ ଆଶ୍ରା କରିଅଛି ।
ଏବେ ତୁ କରୁଣା କଲେ କହିବି ଭାରତ
ଅଗୋଚର ହେଲା ମଧ୍ୟପର୍ବର ଚରିତ ।
ଏଣୁ ଆଗୋ ନାରାୟଣୀ ଆଶ୍ରେ କଲି ତୋତେ
ମୂର୍ଖ ଅପଣ୍ଡିତ ବୋଲି ଡରଉଛି ମୋତେ ।
ତୋହର ସୁଦୟାରୁ ଗୋ ନର୍ଭର ମୋ ଚିତ୍ତ
ଶୁଦ୍ରମୁନି ଏ ଶାରଳାଦାସ ତୋ ଭକତ ।

---

## ନୀଳେନ୍ଦ୍ରୀ ହରଣ

ବନ୍ଦଇ ଶ୍ରୀ ଲମ୍ବୋଦର ଗଉରୀ ନନ୍ଦନ
କପାଳରେ ଶୋଭାବନ ଶ୍ରୀଖଣ୍ଡୀ ଚନ୍ଦନ ।
ଥୋରହସ୍ତ ଏକଦନ୍ତ ମୁଖ ଶୋଭାବନ
ଅନନ୍ତ ବାସୁକୀ ନାଗେ ଶ୍ରୀହସ୍ତେ ବେଢ଼ଣ ।
ଅଯୋନି ସମ୍ଭୂତ ତୋତେ ହର କଲେ ଜାତ
ପାର୍ବତୀ ଜନନୀ ତୋର ସଦାଶିବ ତାତ ।
ଦକ୍ଷିଣ ଦ୍ୱାରରକ୍ଷକ ଅଟୁ କାଳେ କାଳେ
ସୁମରନ୍ତେ ନିବାରୁ ତୁ ବିଘ୍ନ ଅବହେଳେ ।
ପରଶୁ କୁଠାର ତୋର ସୂର୍ଯ୍ୟର କିରଣ
ଜଟା ମୁକୁଟ ତୋହର ଲଲାଟ ଭୂଷଣ ।
ପୟରେ ନୂପୁର ତୋର ବାଜେ ରୁଣୁଝୁଣ
ନୃତ୍ୟରଙ୍ଗେ ମୋହିଲୁ ତୁ ଯେତେ ସୁରଗଣ

ତୁମ୍ଭର ଚରଣ ତଳେ ଲୋଟୁ ମୋର ମାଥ
ଅବ୍ୟକ୍ତ ବ୍ୟକତ ମୋତେ ଦିଅ ଗଣନାଥ ।
କାହ୍ନୁ ସଂକର୍ଷଣ ବାସୁଦେବ ଘରେ ଜାତ
ଜଗନ୍ନାଥଙ୍କର କଥା ଜଗତ ବିଖ୍ୟାତ ।
ତାଙ୍କର ବତିଶସହସ୍ର ଅଟେ ପାଟବଂଶୀ
ଏହାଙ୍କ ସ୍ୱାମୀ ଅଟନ୍ତି ପ୍ରଭୁ ହୃଷୀକେଶୀ ।
କାହାଠାରୁ କେତେ ପୁତ୍ର ହୋଇଥିଲେ ଜାତ
ଏହା ମୋତେ ସଞ୍ଚପିଣ କହ କୁମ୍ଭସୁତ ।
ଏତେ ବୋଲି ମନୁ ତାଙ୍କୁ ପୁଚ୍ଛିଲେ ବଚନ
କହନ୍ତି ଅଗସ୍ତି ଏହା ପାପ ବିଧ୍ୱଂସନ ।
ଗୋପପୁରେ ଅବତାର ଷୋଳସହସ୍ର ନାରୀ
ଷୋଳସହସ୍ର କନ୍ୟା ନେଲେ ନାରକାକୁ ମାରି ।
ଏହାଙ୍କଠାରୁ ଜନ୍ମିଲେ କନ୍ୟା ଯେ କୁମର
ପ୍ରତି କନ୍ୟାଠାରୁ ଦଶପୁତ୍ର ଅବତାର ।
ଅଷ୍ଟପାଟବଂଶୀଙ୍କର ଦଶ ଦଶ ସୁତ
ଲକ୍ଷେ ଷାଠିସହସ୍ର ଅଶୀ ଅଟନ୍ତି ସମସ୍ତ ।
ଏକକୁ ଏକ ସୁନ୍ଦର କୃଷ୍ଣରୂପ କଳା
ସମ୍ପୂର୍ଣ୍ଣ ଚନ୍ଦ୍ରମା ଜିଣି ମୁଖ ଯେ ସୁତଳା ।
ଲକ୍ଷେ ଷାଠିଏ ସହସ୍ର ଅଶୀ ଯେ ନନ୍ଦନ
ଏହାଙ୍କ ମଧ୍ୟରେ ଶ୍ରେଷ୍ଠ କୁମର ପ୍ରଦ୍ୟୁମ୍ନ ।
ଅଗସ୍ତି ବୋଇଲେ ତୁ ଯେ ଶୁଣ ନୃପବର
ଏତେକ କୁମର ଜାତ କଲେ ଚକ୍ରଧର ।
ତାଙ୍କ ଜ୍ୟେଷ୍ଠ ଭାଇଙ୍କର ଯେତେ ଯେ କୁମର
ସଞ୍ଚପିଣ ଏହା ମୋତେ କହ ମୁନିବର ।
ଅଗସ୍ତି ବୋଇଲେ ତୁ ହୋ ଶୁଣ ନୃପନାଥ
ବଳରାମଙ୍କର ସର୍ବେ ଦୁଇଗୋଟି ପୁତ୍ର ।
ଆନନ୍ଦ ସାନନ୍ଦ ବୋଲି ପୁତ୍ରଙ୍କର ନାମ
ସୁର ନର ମୋହନ ଯେ ସାକ୍ଷାତରେ କାମ ।
ଯଦୁ ଭୋଜ ବଂଶରେ ସେ ଅଟନ୍ତି ଉତ୍ତମ
ତେଜ ବୀର୍ଯ୍ୟରେ ସେ ବଳରାମଙ୍କର ସମ ।
ସର୍ବ ଗୁଣରେ ନିର୍ଜିତ ସେହି ଭାଇ ବେନି
ଇନ୍ଦ୍ର ଚନ୍ଦ୍ର କି ମାନବ ତନୁଛନ୍ତି ଯେନି ।
ଅଗସ୍ତି ବୋଇଲେ ତୁ ହୋ ଶୁଣ ନରନାଥ
ତାହାଙ୍କର ମହିମା ଯେ ତ୍ରୈଲୋକ୍ୟରେ ଖ୍ୟାତ
ବିଭା ହୋଇଲେ ସେ ପୁଣ କାହାର ନନ୍ଦିନୀ
ଏହା ମୋତେ ସଞ୍ଚପିଣ କହ ମହାମୁନି ।

ମୁନି ବୋଇଲେ ହୋ ଶୁଣ କଥା ମହାରଙ୍ଗ
ମହାଘୋର ଦ୍ୱନ୍ଦ୍ୱ ହେଲା ଦେବଙ୍କର ସଙ୍ଗ ।
ନୃପତି ବୋଇଲେ କଳି ହେଲା କି ନିମନ୍ତେ
ଅନୁଗ୍ରହ କରି ମୋତେ କହ ମୁନିସୁତେ ।
କେବଣ କାରଣେ ପୁଣି କେବଣ ବିଧାନେ
ହରି ହରଙ୍କର ଯୁଦ୍ଧ ହୋଇଲା କେସନେ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ମହୀପତେ
ଯାହା ପଚାରିଲ ତାହା ବଢ଼ାଇ ବୃତ୍ତାନ୍ତେ ।
ସନ୍ତୁ ସୁଶୀଳ ଅଟଇ ଜଳଧି ନୃପତି
ଲୀଳାବତୀ ନାମେ ତାର ଅଟଇ ଯୁବତୀ ।
ତାହାର ଗର୍ଭରୁ ଜାତ ଦୁହିତାଏ ହେଲା
ତାହାର ଜାତକ ଗଣି ଗଣକ କହିଲା ।
ଅଶ୍ୱିନୀ ନକ୍ଷତ୍ର ତାହାର ଯୋଗ ମିଶାଇଲା
ଶେଷଚନ୍ଦ୍ର ମେଷଯୋଗ ଗଣନ୍ତେ ପାଇଲା ।
ବାଳବ ନାମେ କରଣ ଭୋଗ ତେର ଲିତା
ଏସନ ସମୟେ ଜାତ ହୋଇଲା ଦୁହିତା ।
ବରୁଣ ଅଗ୍ରତେ ଯାଇ ଜଣାଇଲା ଦାସୀ
କନ୍ୟା ଏକ ଜାତ ଦେବ ରୂପେ ଗୁରୁହଂସୀ ।
ଶୁଣିଣ ହରଷ ରାଜା ମନ୍ତ୍ରୀକୁ ସମ୍ଭାଷି
କନ୍ୟା ଜାତ ଦୋଷାଦୋଷ ବୁଝିଣ କହସି
ଜଳଧି ମନ୍ତ୍ରୀ ବୋଇଲେ ଶୁଣ ନୃପମଣି
ଅଶ୍ୱିନୀ ନକ୍ଷତ୍ରେ ଜାତ ହୋଇଲା ନନ୍ଦିନୀ ।
ଦିବସକୁ ପାଇଲା ଏ ଭୋଗ ତେରଦଣ୍ଡ
ଷୋଳ ବରଷେ ଏହାର ନିରେଧିଲେ ଗଣ୍ଡ ।
ଏହା ଶୁଣିଣ ନୃପତି ମନେ ଦୁଃଖ ପାଏ
ଷୋଳ ବରଷ କନ୍ୟାକୁ ହୋଇବାର ଯାଏ
ଏହାର ବଦନ ନ ଚାହିଁବି ବିଶେଷରେ
ଦଇବ କଷଣ ଦେଲା ଆସି ଏ କାଳରେ ।
ଏହା ଶୁଣି ଆଜ୍ଞା ଦେଲେ ତହୁଁ ନୃପମଣି
ଜମ୍ବୁଦ୍ୱୀପେ ଛାଡ଼ିଆସ ନେଇଣ ଦୁଲଣୀ ।
ନୃପତିର ଆଜ୍ଞା ପାଇ ଦାସୀମାନେ ଗଲେ
ଶୁଣ ଗୋସାମଣି ଯାହା ନୃପତି ବୋଇଲେ ।
କନ୍ୟା ଜମ୍ବୁଦ୍ୱୀପେ ଛାଡ଼ିବାକୁ ଆଜ୍ଞାଦେଲେ
ରାଣୀବୋଲେ ମନ୍ତ୍ରୀ ତାରେ ସେବ ବଢ଼ାଇଲେ
ରାଜା ଦେଖି ନ ଯୋଗାଇ ଦ୍ୱି ଅଷ୍ଟ ବରଷ
ଏହା ଶୁଣି କରି ରାଣୀ ମନରେ ହରଷ ।

ଏତେ ବୋଲନ୍ତେ ଲୋକେ କହିଲେ ଅପାର
ଦୁହିତାକୁ ଘେନ ରାଣୀ ହୋଇଲା ବାହାର ।
ଗର୍ଭଧାରୀ ଜନନୀ ସେ ନ ପାରେ ମୁଁ ଛାଡ଼ି
ଦୁହିତାକୁ କୋଳେ ଧରି ଶୋକ କରୁଅଛି ।
ରାଜାର ହୁକୁମ କେବା କରିପାରେ ଆନ
ମାତା ଦୁହିତାକୁ ନେଇ ନିବାସିଲେ ବନ
ଏମନ୍ତ ସମୟେ ପୁଣି ଦେବ ତ୍ରିଲୋଚନ
ପାର୍ବତୀଙ୍କ ସହିତରେ କରନ୍ତେ ଗମନ ।
ବୃଷଭ ପୃଷ୍ଠରେ ଦେନି କରନ୍ତି ଭ୍ରମଣି
ପାର୍ବତୀ ଦେଖିଲେ ବନେ କାନ୍ଦେ ସୁଲକ୍ଷଣୀ
ବିଶ୍ୱନାଥ ବୋଇଲେ ସେ ଅଟେ କିସ ଜାତି
ତାହାର ଆମ୍ଭର କିବା କିସ ଯେ ଯୁକତି ।
ସ୍ତ୍ରି ଶୀଏ ରୋଦନ ଶୁଣି ସ୍ତ୍ରି ଶୀଏ ନ ଗଲେ
ଶତେ ଜନ୍ମ କାଠବେଙ୍ଗ ହୁଅନ୍ତି ବୋଇଲେ ।
ଏସନ ଶୁଣି ରହିଲେ ଦେବ ଦେବଈଶ
ଉମା ବିଜେ କଲେ ବରୁଣର ରାଣୀ ପାଶ ।
ବୋଲନ୍ତି ଜଗତମାତ ଶୁଣସି ଗୋ ଆଇ
କାହାର ନନ୍ଦନୀ କୁ ଯେ କଏ ତୋର ସାଇଁ
ତା ମୁଖରେ ବସ୍ତ୍ରଦେଇ ପୁଛାଇଲେ ଉମା
ତହୁଁ ଶୋକ ସମ୍ଭାଇଲେ ରତ୍ନାକର ବାମା ।
ଧୈର୍ଯ୍ୟ ଧରିଣ ପୁଣ ବୋଇଲା ସେ ବାଣୀ
ବରୁଣ ନୃପତିର ମୁଁ ଅଟେ ପାଟରାଣୀ ।
ସର୍ବର ନିମନ୍ତେ ମୁହିଁ କାନ୍ଦେ ଗୋସାମଣୀ
ମୋହର ଗର୍ଭରୁ ଜାତ ହୁଏ ସେ ଦୁଲଣୀ ।
ଅଶ୍ୱିନୀ ଗଣ୍ଡ ନକ୍ଷତ୍ର ହେଲା ଯେ ଏହାକୁ
ପିତାଙ୍କୁ ଲାଗିଲା ଗଣ୍ଡ ଷୋଳ ବରଷକୁ
ତେଣୁ ଲୋଡ଼ିଲେ ନୃପତି ଏହାକୁ ଯେ ମାର
ମୂର୍ଛି ବ କେମନ୍ତେ ମୁହିଁ ହୋଇ ଗର୍ଭଧାରୀ ।
ଏହାକୁ ଦେଖିଣ ବହେ ନୟନରୁ ବାର
ଦୁହିତାକୁ ଘେନ ମୁହିଁ ହେଲି ବନଚର ।
ଏହା ଶୁଣି ପୁଚ୍ଛିଲେ ଶ୍ରୀ ଉମା ଦେବହର
ସେ ସ୍ୱାମୀ ଏ ହୋଇଅଛି ନଗରରୁ ବାହାର ।
ଦୁର୍ଗାଙ୍କ ବଚନେ ହର ହୋଇଲେ ପ୍ରସନ୍ନ
ଲୀଳାବତୀ ରାଣୀକୁ ସେ କହିଲେ ବଚନ ।
ଏ ତୋହର ଦୁହିତାର ଦୋଷ କ୍ଷୟଯାଉ
ତ୍ରୈଲୋକ୍ୟରେ ମୀନେନ୍ଦ୍ରୀ ନାମ ଏହି ବହୁ ।
ବହୁତ ସନ୍ନେହ କନ୍ୟାକୁ ପାଳିବୁ ହରଷେ
ଗଣ୍ଡଦୋଷୁ ପାର ହେଉ ତ୍ରିଅଷ୍ଟ ବରଷେ ।
ଆନକୁ ଏ କନ୍ୟା ବିଭା ନ ଦେବୁ ତୋହର
କାର୍ତ୍ତିକେଶ୍ୱରକୁ ତୁହି ଦେବୁ ହରଷର ।
ମାଳା ଦେଇଣ ଈଶ୍ୱର ତହୁଁ ଚଳିଗଲେ
ବରୁଣ ଭୁବନେ ରାଣୀ ଗୁପତେ ମିଳିଲେ ।
ହାଣ୍ଡୋଳାରେ ବସାଇଣ ଦାସୀଗଣ ନେଲେ
ଅନ୍ତଃପୁରେ ନେଇ ତାକୁ ଗୁପତେ ରଖିଲେ
ଯହୁଁ ସେ ଆସି ପ୍ରବେଶ ହୋଇଲେ ଭୁବନ
ଦାନ ଧ୍ୟାନ କଲେ ମହାଦେବଙ୍କ ତୋଷମନ ।
ଦିନୁ ଦିନ ବଢ଼େ କନ୍ୟା ଉତ୍ତର ଆକାର
ହୃଦୟୁ ମଧ୍ୟଭାଗ ତା ଡମ୍ବରୁ ପ୍ରକାର ।
କେବଣ ଦଇବ ସେହି ଘଟାଇଲା ଏହା
ଧନ୍ୟ ଜନନୀ ତୋହର ଅଟେ ପୁଣ୍ୟଦେହା
ଏମନ୍ତେ ପ୍ରଶଂସା କରୁଛନ୍ତି ନରନାରୀ
ଏବେ ଆପଣେ ଜାଣିଲେ ତାହା ଦଣ୍ଡଧାରୀ ।
ଜଳକ୍ରୀଡ଼ା ବିନୋଦରେ ନୃପତି କୁମାରୀ
କନ୍ୟାମାନଙ୍କ ସଙ୍ଗରେ ଦନରୁ ବାହାର ।
ଦୁହିତା ବୋଲି ନ ଚିହ୍ନେ ବରୁଣ ରାଜନ
କନ୍ୟାରୂପ ଦେଖି ତାର ତୋଷ ହେଲା ମନ ।
ଜଳଧି ମନ୍ତ୍ରୀକୁ ତହିଁ ପୁଚ୍ଛେ ନରସାଇଁ
ଆମ୍ଭର ପୁରେ ଏ କନ୍ୟା ଦେଖିଲି ତ ନାହିଁ
ମନ୍ତ୍ରୀ ବୋଇଲେ ରାଜା ହୋ ଯାହା ପୁଚ୍ଛାକଲ
ଗଣ୍ଡଦୋଷୁଁ ସେ ଦୁହିତା ତୁମ୍ଭେ ଉପେକ୍ଷିଲ ।
ସେହି ଦୁହିତା ମୀନେନ୍ଦ୍ରୀ ନାମେ ଏହି ବାଳୀ
ଏ ଭୁବନ ମଧ୍ୟରେ ଏ ଅଟେ ଶୁଦ୍ଧଶାଳୀ ।
ବରୁଣ ବୋଇଲେ ଏ କ ମୋହର ଦୁଲାଳୀ
କାହାରେ ପ୍ରଦାନ ମନ୍ତ୍ରୀ କରିବା ଏ ବାଳୀ ।
କରପତ୍ର ଯୋଡ଼ି ମନ୍ତ୍ରୀ ବୋଲଇ ବଚନ
ବିଭା ଅର୍ଥେ ବର ଲୋଡ଼ ଶୁଣ ସାବଧାନ ।
ଦ୍ୱାରକାପୁର ଠାକୁର ଦେବ ଭଗବାନ
ତାହାଙ୍କର ଏକପୁତ୍ରେ କର ହେ ପ୍ରଦାନ ।
ଶଙ୍ଖାସୁର ମାରିଲେ ସେ ମହାଜଳେ ପଶି
ବେଦ ଉଦ୍ଧାରିଲେ ଜନ୍ତୁ ବ୍ରହ୍ମା ମନତୋଷି ।
କୂର୍ମରୂପେ ବହିଲେ ସେ ଚରାଚର ମହୀ
ବରାହ ରୂପରେ ପୃଥ୍ୱୀ ଦନ୍ତଅଗ୍ରେ ବହି ।

ପ୍ରହଲାଦ ଅପମାନ ସହି ନ ପାରିଲେ
ନରସିଂହ ରୂପେ ହିରଣ୍ୟକୁ ବିଦାରିଲେ ।
ପର୍ଶୁରାମ ରୂପେ ମାରି ସହସ୍ରାର୍ଜ୍ଜୁନ
ପୃଥିବୀ ଭାର ଉଶ୍ୱାସ କଲେ ଭଗବାନ ।
ପୁଣି ରାମ ଅବତାରେ ବାନ୍ଧି ସେତୁବନ୍ଧ
ଲଙ୍କାପୁର ଧ୍ୱଂସି ଛେଦିଥିଲେ ଦଶକନ୍ଧ ।
ଏହିପରି ଦୈତ୍ୟ ଦାନବଙ୍କୁ କରି ହତ
ବାରେ ବାରେ ଆମ୍ଭଙ୍କୁ ସେ ରଖନ୍ତି ଅଚ୍ୟୁତ
ଗୋବିନ୍ଦଙ୍କ ଜ୍ୟେଷ୍ଠଭାଇ ଦେବ ବଳରାମ
ଆନନ୍ଦାନନ୍ଦ ଅଟନ୍ତି ତାଙ୍କର ନନ୍ଦନ ।
ତାହାଙ୍କୁ ଏ କନ୍ୟାଗୋଟି କରିବା ପ୍ରଦାନ
ବିଚାରିଣ କାର୍ଯ୍ୟ କର ଜଳଧି ରାଜନ ।
ହରଷ ହୋଇଲା ରାଜା ମନ୍ତ୍ରୀର ବଚନେ
ତକ୍ଷଣେ ବିଜୟ କଲା ପୁଷ୍ପକ ବିମାନେ ।
ପ୍ରବେଶ ହୋଇଲା ଯାଇ ଦ୍ୱାରକା ଭୁବନ
ଦେଖିଣ ପରମ ତୋଷ କାହ୍ନୁ ସଙ୍କର୍ଷଣ ।
ପୂଜା ବିଧି କଲେ ତାଙ୍କୁ ଦେବ ଭଗବାନ
ଆସ୍ଥାନରେ ବିଜେ କଲେ ବରୁଣ ରାଜନ ।
ଅମୃତ ଯୋଗାଡ଼ି ତାଙ୍କୁ ଦେଲେ ଭାଇ ବେନି
ମଣୋହି କରିଲେ ଦେବ ବରୁଣଙ୍କୁ ଘେନି ।
ପୁଚ୍ଛନ୍ତି କେବଣ ହେତୁ ଆଗମନ ରପ୍ୟେ
ଗନ୍ଧ ପୁଷ୍ପମାଳା ତାର ଲମ୍ବାନ୍ତି ଗଳାପ୍ୟେ ।
ବରୁଣ ବୋଲେ ଶୁଣିମା ହେଉ ଦେବରାଜ
ଯେବଣ କାରଣେ ମୋର ଆଗମନ ଆଜ ।
ମୋହର କନ୍ୟା ମାଳେନ୍ଦ୍ରୀ ନାମେ ଯେଉଁ ବାଳୀ
ଆନନ୍ଦାନନ୍ଦେ ବରିବା ମନେ ମନେ ଭାଳି ।
ପୁରୋହିତ ରାଇ ସେହୁ ଉଚ୍ଚାରିଲେ ସତ୍ୟ
ପ୍ରଦାନ କରିବା କନ୍ୟା ଆନନ୍ଦାନନ୍ଦେତ ।
ଏତେକ ବୋଲିଣ ସେହୁ ବାକ୍ୟ ଉଚ୍ଚାରଣ
ଚନ୍ଦନ ଅକ୍ଷତ ଦେଇ କଲେକ ବରଣ ।
ମେଷମାସ ଶୁକ୍ଳପକ୍ଷ ଚଉଠିର ଦିନ
ରୋହିଣୀ ନକ୍ଷତ୍ର କ୍ଷେମ ତାର ବିଦ୍ୟମାନ ।
ବରଣ ସାରି ବାହୁଡ଼େ ଜଳଧି ରାଜନ
ପ୍ରବେଶ ହୋଇଲେ ଯାଇ ଆପଣା ଭୁବନ ।
ବିଶ୍ୱକର୍ମାଙ୍କୁ ଡାକିଣ ବିଧି ଆଜ୍ଞା ଦେଲେ
ଘୃତସ୍ତମ୍ଭମଣ୍ଡପ ତିଆଅ ବୋଲିଣ ବୋଇଲେ ।

ଆଜ୍ଞା ପାଇଣ ସେ ସ୍ତମ୍ଭ ମଣ୍ଡପ ରଚିଲା
ସୁଧର୍ମା ସଭା ପ୍ରାୟେକ ସଭା ନିର୍ମାଣିଲା ।
ବିଭାର ସମ୍ଭାର କଲେ ପରମ ସାନନ୍ଦେ
ବ୍ରହ୍ମାର ନନ୍ଦନ ତାହା ଜାଣିଲେ ନାରଦେ ।
କେହି ନ କହିଲେ ସେହି ଜାଣେ ସର୍ବକଥା
ଯୋଗବଳେ ଜାଣନ୍ତି ସେ ସକଳ ବାରତା ।
ମନେ ବିଚାରି ନାରଦ ପାଇ ବଡ଼ ବ୍ୟଥା
ହରିହର ଅଟନ୍ତି ସେ ଦୁହେଁ ସାମରଥ ।
ଏକାଇ ଆମ୍ଭ ଏ କଳି କରିବେ କେମନ୍ତେ
ଉଚିତ ବେଭାର ଏହୁ ନ ଯୋଗାଇ ମତେ ।
ଏସନକ ବିଚାରି ସେ କରି ଅନୁମାନେ
କଳି ଉପଗତ ହେଲା ତାହାଙ୍କର ମନେ
କି ପ୍ରକାରେ କଳି ହେବ ଦେଖିବା ଆନନ୍ଦେ
ମହାକଳି ହୋଇବ ସେ ହରିହର ଯୁଦ୍ଧେ ।
ଏହାଙ୍କ କଳି ଦେଖିଲେ ପୂରିବ ମୋ ପେଟ
ତକ୍ଷଣେ ବିଜୟ କଲେ ବରୁଣ ନିକଟ ।
ମନ ଯାନ ଆରୋହିଣ କଣ୍ଡୁକା ନନ୍ଦନ
ଦେଖି ଆସନ ଚେକିଲା ବରୁଣ ରାଜନ ।
ଗଉରବ କରି ତହୁଁ କଲା ପାଦପୂଜା
ବସିଲେ ଆସନ ପରେ ବ୍ରହ୍ମାଙ୍କ ତନୁଜା ।
ନାରଦ ବୋଇଲେ ଶୁଣ ଜଳଧି ରାଜନ
ରାଜ୍ୟରେ ଉତ୍ସବ ତୋର କେବଣ କାରଣ ।
ବରୁଣ ବୋଇଲା ତୁମ୍ଭେ ଶୁଣ ବ୍ରହ୍ମାବଂଶି
ମାଳେନ୍ଦ୍ରୀ ନାମେଣ ମୋର ଦୁହିତାଏ ଅଛି ।
ଆନନ୍ଦାନନ୍ଦ ଯେ ବଳରାମଙ୍କର ପୁତ୍ର
ତାହାଙ୍କୁ ଦେବି ଦୁହିତା କରିଅଛି ସତ୍ୟ ।
ନାରଦ ବୋଇଲେ ରାଜା ମନ୍ଦ କୃତ୍ୟ କଲୁ
ରାଣୀଙ୍କୁ ନ ବୋଲି କପାଁ ଆପଣେ ବରିଲୁ
କାର୍ତ୍ତିକଙ୍କ ପାଇଁ କନ୍ୟା ବରିଛନ୍ତି ହର
ମଣିରତ୍ନମାଳା ଦେଇଅଛନ୍ତି କଣ୍ଠର ।
ତାଙ୍କୁ ହୁଡ଼ି କରିଲୁ ତୁ କେତେହେଁ ଆନ ବର
କାର୍ତ୍ତିକେ ନ କଲୁ କପାଁ ବରଣ ବେଭାର ।
ବ୍ରହ୍ମହତ୍ୟା କରି ହର ବାରାଣସୀ ଗଲେ
ବିଶ୍ୱେଶ୍ୱର ଈଶ୍ୱର ପଦ କାର୍ତ୍ତିକଙ୍କୁ ଦେଲେ ।
ଏହା ଜାଣିଲେ କରିବେ କୋପ ଷଡ଼ାନନ
ମୁନିଙ୍କୁ ବୋଲେ ବରୁଣ ଦୋଷମାନ ହେନ ।

ନ ଜାଣି ବରିଲି ବଳରାମଙ୍କ ନନ୍ଦନ
ଏବେ ପ୍ରତିକାର ଦେବ କରିବା ଆପଣ ।
ରାଣୀଙ୍କି ନ ପଚାରି ମୁଁ କଲି ଏଡ଼େ ଦ୍ରୋହ
କାର୍ତ୍ତିକେଶ୍ୱରଙ୍କୁ ଏହି ସନ୍ଦେଶ ନ କହ ।
ବରୁଣ ବଚନେ କହୁଛନ୍ତି ବ୍ରହ୍ମାସୁତ
ଦ୍ୱିତୀୟ ବରଣ ବିଧି ନୁହଇ ଉଚିତ ।
ଏତେକ କହି ନାରଦ ଗଲେ ଶୂନ୍ୟପଥେ
କପିଳାସ ପୁରେ ଯାଇ ମିଳିଲେ ତୁରିତେ ।
କାର୍ତ୍ତିକେଶ୍ୱର ଅଗ୍ରତେ ମିଳି ବ୍ରହ୍ମାସୁତେ
ବୋଇଲେ ତୋ କନ୍ୟା ଅନ୍ୟ ନେଉଛନ୍ତି ଯୁକତେ
ବରୁଣ କନ୍ୟା ମୀନେନ୍ଦ୍ରୀ ନାମେ ସେତୁବାଳୀ
ତୋହର ବିବାହ ଅର୍ଥେ ବରିଲେ କପାଳୀ ।
ସନ୍ତକ ଦେଇ ଅଛନ୍ତି ମଣିରତ୍ନମାଳୀ
ଏବେ ସେ ଆନେ ବରିଲ ଏହା ନ ବିଚାରି ।
ବ୍ରହ୍ମହତ୍ୟା କରିଥିଲେ ଯେଣୁ ତୋର ପିତା
ତେଣୁ ବରୁଣ ନ ଦେଲା ତାହାର ଦୁହିତା ।
ଦ୍ୱିତୀୟ ଈଶ୍ୱର ପଦ ଦେଇଛନ୍ତି ତୋତେ
ଆବର ସମର୍ପିଣ ସେ ଯାଇଛନ୍ତି ମୋତେ ।
କେସନେକ ଏ କଥା ମୁଁ ନ କହିବି ଜାଣି
ପଶ୍ଚାତେ କୋପ କରିବ ମୋତେ ଶୂଳପାଣି ।
ନାରଦଙ୍କ ମୁଖୁଁ ଏହା ଶୁଣି ଦ୍ୱିଜକାଶୀ
କୋପେ ପ୍ରଜ୍ୱଳିତ ହୋଇ ବଚନ ପ୍ରକାଶି ।
ବରୁଣ ପୁରେ ଯିବାକୁ ସଜ ହେଲେ ବୀର
ବିଜୟ କଲେ କାର୍ତ୍ତିକ ମୟୂର ପିଠିର ।
ତ୍ରିଶୂଳ ଡମ୍ବରୁ ତାଙ୍କ ଶୋହେ ବେନିକର
ବୋଇଲେ ବାଟ କଡ଼ାଅ ବ୍ରହ୍ମାଙ୍କ କୁମର ।
ଡିବ ଡିବ ଡମ୍ବରୁ ସେ ଡାକ ଶୁଣାମାନ
ଦେଖିଣ ସନ୍ତୋଷ ହେଲେ ବରୁଣ ରାଜନ ।
ସୁବର୍ଣ୍ଣ ଥାଳରେ ପୂରାଇଣ ଅର୍ଘ୍ୟ ପୂଜା
ଉପହାର ଦେଲେ ତାଙ୍କୁ ରତ୍ନାକର ରାଜା ।
ପରମ ଜ୍ୟୋତି ପୁରୁଷ ଦିଶି ନିରଞ୍ଜନ
ପରମ ଯୋଗୀ ପୁରୁଷ କୋଟି ମହାତମ ।
କାଳାନ୍ତକ ପୁରୁଷ ତୁ ମୃତ୍ୟୁ ଯେ ଆସନ
ବିସ୍ଫୁର୍ତ୍ତିତ ଲୋଚନ ତୋ ପଦ୍ମ ଦଳ ବର୍ଣ୍ଣ ।
କାମଦେବ ପୁରୁଷ ତୁ ଅଟୁ ଜଗଜ୍ଜିତା
ଅଦ୍ଭୁତେ ଜାତ ହୋଇଲୁ ଦୁର୍ଗା ତୋର ମାତା ।

ତୋର ରୂପ ଦେଖି ଭୟ କରେ ତୋର ପିତା
ଦ୍ୱିତୀୟ ଈଶ୍ୱର ତୁମ୍ଭ ଜଗତ ବିଖ୍ୟାତା ।
ଅବ୍ୟୟ ଅଜ ତୁମ୍ଭ ଯେ ଅସୁରଭଞ୍ଜନ
ହାସେ ନାଶକଲୁ ନାଶକର ଭୟମାନ ।
ଦେବଲୋକ ରଖି ଅସୁରଙ୍କୁ କଲୁ କ୍ଷୟ
ଷଡ଼ମୁଖ ମଉଳି ତୋ ହୈମବତୀ ମାୟେ ।
ଯୋଗବଳରେ ଧରିଲୁ ବ୍ରହ୍ମାଣ୍ଡ ସପତ
ଅଜପା ଜପି ତୋଷିଲୁ ତୁମ୍ଭ ଜଗନ୍ନାଥ ।
ରବି ଦିବସ ତୋହର ଅଟଇ ଏକାନ୍ତ
ଦେବ ପ୍ରସାଦେ ଅକ୍ଷୟ କ୍ଷୟ ଜାତ ବ୍ରତ ।
ଶତେ ତେଜ ମୂର୍ତ୍ତି ତୋର ଅଟଇ ଅନଙ୍ଗ
ପିନାକୀ କୋଦଣ୍ଡ ପୁଣି ଶାରଙ୍ଗ ଅଜଗ ।
ଦ୍ୱାଦଶ ଭୁଜ ତୋହର ମୂରତି ପ୍ରଚଣ୍ଡ
ତୁମ୍ଭ କୋପକଲେ ଦେବ କମ୍ପଇ ବ୍ରହ୍ମାଣ୍ଡ ।
ପୂର୍ବେ ଶ୍ରୀରାମଚନ୍ଦ୍ର କଲେ ତୋତେ ସ୍ତୁତି
ଋକ୍ଷ ବାନର ସେନାଙ୍କ ହେଲୁ ସେନାପତି ।
ତୋର ସାହାଯ୍ୟେ ଶ୍ରୀରାମ ଦୈତ୍ୟକଲେ ସାଧି
ଦେବତାଙ୍କ ଲାଗି ଦଶାନନେ କଲେ ବଧ ।
ଭକତବତ୍ସଳ ଦେବ ଅଟୁ ସୁରହଂସି
ଏତେ ବୋଲିଣ ବରୁଣ ବନ୍ଦୁ ପରଶଂସି ।
ଅଢ଼ାଇ ବରଷ ପୁଅ ଦୈତ୍ୟ ନାଶକଲୁ
ଗିରିଜା ଦେବୀ ଧରମ ପୁତ୍ର ତୁ ହୋଇଲୁ ।
ଏତେକ ସ୍ତୁତି କରିଣ ବରୁଣ ରାଜନ
ବୋଲେ କେବଣ ନିମନ୍ତେ ଦେବ ଆଗମନ ।
ଆଜ ମୁଁ ଦେଖିଲି ତୋତେ ସଫଳ ଜୀବନ
ଏହା ଶୁଣି ଆନନ୍ଦିତ ହେଲେ ଷଡ଼ାନନ ।
କୁମାର ବୋଇଲେ ତୋର ମୀନେନ୍ଦ୍ରୀ ଦୁହିତା
ବାଳକାଳୁ ବରିଛନ୍ତି ମୋ ନିମନ୍ତେ ପିତା ।
ସେ କନ୍ୟା ମୋତେ ପ୍ରଦାନ କର ଜଳସାଇଁ
ଯୁବା କନ୍ୟା ଘରେ ରଖିବାର ନ ଯୋଗାଇ
ରତ୍ନାକର ବୋଇଲେ ତ ମୋର ଜ୍ଞାନ ନାହିଁ
କୁମର ପିଅର ତାକୁ ବରିଛନ୍ତି କାହିଁ ।
ନ ଜାଣି ଆନନ୍ଦାନନ୍ଦେ ଆଣିଲି ମୁଁ ବର
ମାଳା ଦେଇ ନିମନ୍ତ୍ରିଲି ସତ୍ୟବାକ୍ୟ କରି ।
ତୁମ୍ଭେ ମୋତେ କୋପ ଯେ ନ କର ଷଡ଼ାନନ
ବଳରାମଙ୍କ କୋପକୁ ନୁହଇ ରାଜନ ।

କାଦମ୍ବରୀ ପାନେ ସଦା ବଳରାମ ଘେନ
ତାହାଙ୍କ ସଙ୍ଗରେ ତୁମ୍ଭେ ନ କର ଯେ ଗୋଳ
କୁମାର ବୋଲେ କି ରୂପେନେବେ ସେ ଦୁଲଣୀ
ଏକ୍ଷଣି ତୋ ଦଶବର୍ଗ ନାଶିବଇଁ ପୁଣି ।
ଏହା ଶୁଣି ବରୁଣର ନେତ୍ର ବହେ ବାରି
ଷଡ଼ାନନ କୋପ ଦେଖି ଡରେ ଜଳଧାରୀ ।
କରପତ୍ର ଯୋଡ଼ିକରି କହଇ ଉତ୍ତର
ଦୋଷାଦୋଷ କ୍ଷମାକର ଧୂର୍ଜଟି କୁମର ।
ନାରଦ ବୋଇଲେ ତୁ ହୋ ଶୁଣ ନୃପବର
ତିନିପୁରେ ଯା ମହିମା ଅଟେ ଅଗୋଚର ।
ତାହାକୁ କପାଇଁ ନାହିଁ କରୁ ନ ବିଚାରି
ଏକ୍ଷଣି ଭୁବନ ତୋ ଭାଙ୍ଗିଣ ସେ ପାରି ।
ପଶ୍ଚାତେ ଯାହା କହିବେ ସିନା ହଳପାଣି
କେମନ୍ତେ କରିବୁ ଏବେ କହସି ହୋ ପୁଣି ।
ମାଳାଦେଇ ଏବେ ତୁ କାର୍ତ୍ତିକେଶ୍ୱରେ ବରି
ଏହୁ ବିବାହର ଦିନ ଆସିବେ ତୋ ପୁରି ।
ଦୁଇ ବର ଉଭାହୋଇ ଥିବେ ଦୁଇକତି
ମଧ୍ୟରେ ସମର୍ପିବୁ ତୁ ତୋହର ଦୁହିତା ।
ଯେହୁ ପାରିବ ସେ ବଳେ ସେହି କନ୍ୟାନେଉ
ମନରୁ ଭ୍ରାନ୍ତି ଫିଟିବ ତୋର ଦୋଷ ଯାଉ ।
କାର୍ତ୍ତିକ ବୋଲେ ତୁମ୍ଭର ଏହି ଯେ ବିଚାର
ଦେଖିବା ରାମକୃଷ୍ଣ ଯେ କେତେ ବଳସାର
ଏସନ ବିଚାର ଯହୁଁ ଦେଲେ ବରୁଣକୁ
ଏହା ଶୁଣି ବରିଲେ ସେ କାର୍ତ୍ତିକେଶ୍ୱରଙ୍କୁ ।
ଏସନ ବିଚାର ଯହୁଁ ବରୁଣ ବରିଲା
ତୋଷେ କାର୍ତ୍ତିକେୟ କପିଳାସପୁରେ ଗଲା ।
ଏଥୁଅନ୍ତେ ଯାହା ହେଲା ଶୁଣ ହେ ରାଜନ
ଗୋବିନ୍ଦଙ୍କୁ ପଚାରିଲେ ରୋହଣୀନନ୍ଦନ ।
ଚାଲ ଶୀଘ୍ରେ ଯିବା ବାବୁ ବରୁଣ ଭୁବନ
ସମଦଣ୍ଡ ସହ ବିଭା ଯୋଗାଡ଼ି ଘେନିଣ ।
ଗୋବିନ୍ଦ ବୋଇଲେ ଦେବ ଏହା ନଯୋଗାଇ
ଆମ୍ଭେ ସେ ପୁରକୁ ଯିବା ଉଚିତ ନୁହଇ ।
କୁରୁପାଣ୍ଡବେ ନ କହି ଯିବାକି କେମନ୍ତେ
ଏ କଥା ବିଚାର ସ୍ୱାମି କର ହୃଦଗତେ ।
ଏହାଙ୍କ ଗମନେ ପୁରିଯିବ ସେହି ସ୍ଥାନ
କେବଣଠାରେ ରହିବେ ଜଳଧି ଭୁବନ ।

ପ୍ରଦ୍ୟୁମ୍ନ ବିବାହ କରି ଆସି କନ୍ୟା ଘେନି
ତା ଭୁବନେ କପାଁ ଆମ୍ଭ ସୈନ୍ୟଙ୍କ ପଲଣି ।
ପ୍ରଦ୍ୟୁମ୍ନ ହକାରି ଆଜ୍ଞା ଦେଲେ ଯେ ଶ୍ରୀହରି
ଭାଇଙ୍କୁ ସଙ୍ଗରେ ନେଇ ଯା ବରୁଣ ପୁରୀ ।
ଶୁଣି ପ୍ରଦ୍ୟୁମ୍ନ ମନରେ ହୋଇଣ ହରଷ
ଆନନ୍ଦାନନ୍ଦକୁ ତହୁଁ କଲେ ବରବେଶ ।
ବାଜଇ ଶଙ୍ଖ ମହୁରୀ ଝମକ ନିଶାଣ
ଭେରୀ ମର୍ଦ୍ଦଳ ଶବଦ ଉଠେ ଘନ ଘନ ।
ହାନ୍ଦୋଳାରେ ବସାଇଲେ ଆନନ୍ଦାନନ୍ଦନ
ବିମାନ ଆରୋହି ଯାନ୍ତି ସେ ମୀନକେତନ ।
ବିରାଜଇ ସେ ବିମାନ ସୂର୍ଯ୍ୟ ତେଜ କାନ୍ତି
ଥୋପା ଥୋପା ବିରାଜଇ ତହିଁ ଗଜମୋତି ।
ଶିରେ ସୀମନ୍ତ ବାହୁଟି ଶୋହେ ଜଗଦ୍‌ବଳା
କଣ୍ଠରେ ଲମ୍ବେ ମୁକୁତା ମାଳ ଚଉସରା
ପ୍ରଭାତ ଆଦିତ୍ୟ ଜିଣି ତେଜ ଅନର୍ଗଳ
ନାନା ରତ୍ନେ ଆଭରଣ ଶ୍ରୀକୃଷ୍ଣଙ୍କ ବାଳ ।
ତ୍ରୈଲୋକ୍ୟେ କେହୁ ସୁନ୍ଦରପଣେ ତା ସମାନ
ପୁରୋହିତ ରାଇ ଆଜ୍ଞା ଦେଲେ ଭଗବାନ
ପୁତ୍ରଙ୍କୁ ଘେନିଣ ତୁମ୍ଭେ ଚଳ ହୋ ତୁରିତ
ବିଭାକରି ଘେନି ଆସ ବରୁଣ ଦୁହିତ ।
ଆଁନନ୍ଦାନନ୍ଦ କଣ୍ଠରେ ବରମାଳ୍ୟ ଭରି
ଆଜ ବିଭା ବୋଲି ସେହି ଲଗ୍ନ ଅଛୁ ଧରି ।
ଏସନକ ଶ୍ରୀହରି ଯେ ଆଜ୍ଞାଦେଲେ ଯହୁଁ
ପୁତ୍ର ଘେନି ପୁରୋହିତ ଚଳିଗଲେ ତହୁଁ ।
ପ୍ରବେଶ ହୋଇଲେ ଯାଇ ବରୁଣ ଭୁବନ
ଦେଖିଣ ଆନନ୍ଦ ହେଲେ ଜଳଧି ରାଜନ ।
ଛାମ୍ନା ମଣ୍ଡପେ ବିଜୟ କଲେ ପୁତ୍ର ଘେନି
ଆରମ୍ଭ କଲେ ବିବାହ ବିଧି ନୃପମଣି ।
ବଡ଼ ପବିତ୍ର ଅଟଇ ଦେବ ଯେଉଁ ପୁର
ସ୍ୱର୍ଗ ପାସୋରନ୍ତି ଯହିଁ ବିଜେ କଲେ ସୁର ।
ବସିଲେ ତହିଁ ପୁରୋଧା କୁମରକୁ ଘେନି
ସ୍ୱର୍ଣ୍ଣବେଦୀ ବିଶ୍ୱକର୍ମା ଯା ଥିଲା ନିର୍ମାଣି ।
ଉପରେ ବାନ୍ଧିଲେ ସେହୁ ଝୀନ ପାଟଛତ
ବିଭା ବିଧାନ ଆରମ୍ଭେ ବିପ୍ରେ ବେଦପଢ଼ ।
ନାରଦ ତାହା ଜାଣିଲେ ମନେ ଧ୍ୟାନ କରି
ବିବାହର ବିଧାନ ତ ଯାଇଅଛୁ ସରି ।

ଏଣୁ ଠାବରେ ହୋଇବ ବଡ଼ କୁତୂହଳ
ହରହର ବେନି ମଧ୍ୟେ ହୋଇବ ଯେ ଗୋଳ
ଏତେ ବିଚାରି ଗମନ କଲେ ମୁନିବର
ପ୍ରବେଶ ହୋଇଲେ ଯାଇ କପିଳାସ ପୁର ।
ଦୃଷ୍ଟିଲେଣି ନି ପଣ୍ଡତାନ୍ତ୍ର ଗଳଇ ଶରୀର
କାର୍ତ୍ତିକ ଆଗରେ ଉଭାହେଲେ ମୁନିବର ।
ଏଠେ ଦେବ ବାହନ ଚଳ ବରୁଣର ପୁରେ
ବିବାହ ଉତ୍ସବ ଏବେ ହେଉଛୁ ସେଠାରେ
ଯଦୁବଂଶ ଆବର ଯେ ରାଜା ଉଗ୍ରସେନ
ସୈନ୍ୟ ସଖା ଘେନିଆସି ଅଛଇ ପ୍ରଦ୍ୟୁମ୍ନ ।
ତୋତେ ପଠାଇ ବରୁଣ ଅଛୁ କନ୍ୟା ଥୋଇ
ବିଳମ୍ବ ହୋଇଲେ ସେହୁ ଯିବ ବିଭା ହୋଇ
ନାରଦ ବାକ୍ୟେ କାର୍ତ୍ତିକେଶ୍ୱର ମହାସତ
ଦ୍ୱାଦଶ ନେତ୍ର ବୁଲାଇ ଅତି କୋପମୂର୍ତ୍ତି ।
ତକ୍ଷଣେ ମୟୂର ପୃଷ୍ଠେ ଦେବ ବିଜେକଲେ
ବରୁଣ ରାଜାର ପୁରେ ବହନ ମିଳିଲେ ।
ମନଯାନ ଚଢ଼ି ମୁନି ଯାନ୍ତି ପଛ ପଛ
କହୁଁ କହୁଁ ବରୁଣର ଭୁବନେ ପ୍ରବେଶ ।
ମୟୂର ମୁଖୁଁ ଶୁଣିଣ କାର୍ତ୍ତିକ କୁମାର
ମୟୂର ପିଠିରେ ବିଜେ କଲା ମହାବୀର ।
ବରୁଣ ପୁରକୁ ସେହୁ ଚଳାଇ ବହନ
ଦେଖିଣ ନଗର ଜନେ ହେଲେ ତୋଷମନ
ଗମନ୍ତେ ପୃଥିବୀ ଦେବୀ ହୁଏ ଟଳମଳ
ଶିବଗଣଙ୍କର ଡାକ ସମୁଦ୍ର ଉଚ୍ଛୋଳ ।
ନବଲକ୍ଷ ଡମ୍ବରୁ ଯେ ବାଜେ ଅନ୍ତରୀକ୍ଷେ
ସମାରୋହେ ବିଜେ ଯାଇ କଲେ ବରୁଣପାଖେ
ବାଦ୍ୟନାଦ ଶବଦରେ କମ୍ପେ ମହୀସ୍ଥଳୀ
ପ୍ରଦ୍ୟୁମ୍ନ ବୋଇଲେ କାହିଁ ଅଇଲେ କପାଳୀ
ବରୁଣ ବୋଇଲେ କାହିଁ ବିଜେ ଶୂଳଧର
ତାହାଙ୍କର ପୁତ୍ର ଆସେ କାର୍ତ୍ତିକ କୁମର ।
ପ୍ରଦ୍ୟୁମ୍ନ ବୋଇଲେ ଯେବେ ଅଇଲେକ ଶୂଳୀ
ବିଭାଘରହିଁ ସଫଳ ହୋଇଲା ଆମ୍ଭର ।
ଆଣିବା ଗୁଲ ହୋ ପୂଜାକର ମହାସତ
ଏତେକ ବୋଲି ଚଳିଲେ ତହୁଁ ରନ୍ତିପତି ।
ବରବେଶେ ବସିଅଛୁ ସେ ଆନନ୍ଦାନନ୍ଦ
ବିପ୍ରେ ବେଢ଼ି ଗୁରୁପାଶେ ପଢ଼ୁଛନ୍ତି ବେଦ ।

ଗାର୍ଗ୍ୟ ପୁରୋହିତ ନାମ ଗୋତ୍ର ଉଚ୍ଚାରନ୍ତି
ବରୁଣ ଦୁହିତା ଘେନି ବସିଛନ୍ତି କତି ।
ଯଜ୍ଞମଣ୍ଡପେ କରନ୍ତି ସ୍ୱୀକାର ବରଣ
କାର୍ତ୍ତିକେୟ ଅଗ୍ରତରେ ମିଳି କାମଗଣ ।
ସୁବର୍ଣ୍ଣ ଥାଳରେ ପଞ୍ଚରତନ ପୂରାଇ
କାର୍ତ୍ତିକେୟ କୁମରଙ୍କୁ ପାଦ୍ୟ ଅର୍ଘ୍ୟ ଦେଇ ।
ଓଳଗି ଶୋଇଲେ ଶତ ଦଣ୍ଡବତ ହୋଇ
ପ୍ରଣାମ କରି ବୋଇଲେ ଅପସରି ଯାଇ ।
ଆଜ ମୋର ସର୍ବକାର୍ଯ୍ୟ ହୋଇବ ସଫଳ
ପ୍ରତ୍ୟକ୍ଷ ଦେଖିଲି ଆଜ ହିଁ ଶୂଳଧର ।
ଏବେ ଆପ ବରୁଣର ପୁରେ ଦେବ ଯିବା
ଆନନ୍ଦାନନ୍ଦକୁ ଦେବ ବିଭା କରାଇବା ।
ମଙ୍ଗଳ ମନାସି ତାଙ୍କୁ ପୂଜାଅର୍ଘ୍ୟ ଦେବା
ଶୁଭେ ଶେଷ ହେଲେ ସ୍ୱାମି କରିବଇଁ ସେବା
ଏ ବଚନ ଶୁଣି କୋପ ଧୂର୍ଜଟି ନନ୍ଦନ
ମୁକୁଟ କମ୍ପାଇ ଶିର ଝୁଣି ଘନ ଘନ ।
ପ୍ରଦ୍ୟୁମ୍ନ ମୁଖକୁ ଗୃହିଁ ବୋଇଲେ ବଚନ
କେମନ୍ତେ କରୁଛ ପରକନ୍ୟାକୁ ହରଣ ।
କେଉଁ ବିଚାରରେ ତୁମ୍ଭେ କରୁଅଛ ଏହା
ରାଜକୁମାରୀ ନେବାକୁ ବଳିଅଛୁ ସ୍ପୃହା ।
ମୋ ପାଇଁ ଆଗହୁଁ ପିତା କନ୍ୟା ଛନ୍ତି ବରି
ଏ ମୋହର ଯୁବତୀକି ବଳେ ନେବ ହରି ।
ଆନଠାରୁ କନ୍ୟା ଯେବେ ଆଣ ସ୍ନେହକରି
ତେମନ୍ତ ପରା ବୁଝିଲି ତୁମ୍ଭେ ଏହି ପୁରୀ ।
ପ୍ରଦ୍ୟୁମ୍ନ ବୋଇଲେ ସ୍ୱାମି ମିଛେ କୋପ କରୁ
ନ ବିଚାରି କପାଇଁ ତୁ ତମ ମନେ ଧରୁ ।
ପ୍ରଦ୍ୟୁମ୍ନ ପ୍ରଶଂସା ଏଣେ କରୁଅଛୁ ସ୍କନ୍ଦେ
ବାଜଣର ଶବଦେ ତେଣେ ପୁରଇ ଆନନ୍ଦେ ।
ତାହା ଶୁଣି କୁମର ଯେ ବିଚାରଇ ମନେ
ବୋଇଲେକ ବିଭାଘର ହେଉଅଛୁ ତେଣେ ।
ଏସନକ ବଚନ ଶୁଣ ମୟୂରୁ ଉପର
ବିଭାସ୍ଥାନେ ପ୍ରବେଶିଲା ବୀର ଶକ୍ତିଧାରୀ ।
ମୟୂର ରହିଲା ଯଜ୍ଞ ମଣ୍ଡପର ତଳେ
ବେଦୀରେ ଉଠିଲେ ଯାଇ ଅତି କୋପାନଳେ
ଋଗେଣ ପଶିଲେ ଯାଇ କୁମରଙ୍କ ମେଳେ
ଆନନ୍ଦାନନ୍ଦ ଯେ ହସ୍ତ ଯୋଡ଼ିବାର ବେଳେ ।

କନ୍ୟାକୁ କୁମରମଣି ଧରି କ୍ରୋଧଭରେ
ବିଜେ କର୍ଣ୍ଣିକଣ୍ଟାଗ୍ରକୁ ଧଇଲେ ଶ୍ରୀକରେ ।
ଆନନ୍ଦାନନ୍ଦର ବେଗେ ଧଇଲେକ ବାଳ
ବଜମ୍ଭୁ କର୍ଣ୍ଣିକଣ୍ଟାଗ୍ରୀ ମାଇଲେ ତତ୍କାଳ ।
କଣ୍ଟାଗ୍ରୀ ବାଜନ୍ତେ ବେନିଖଣ୍ଡ ତାର ଶିର
କନ୍ୟାକୁ ବସାଇ ବୀର ମୟୂର ପିଠିର ।
ଯେତେ ଧନରତ୍ନ ଥିଲା ସର୍ବ କଲେ ଜୁର
ବରୁଣ ଲୁଚିଲା ଯାଇ ଜଳମଧ୍ୟପୁର ।
ତାହା ଦେଖି ଅଯାଷ୍ଟମ ରୁକ୍ମିଣୀ ନନ୍ଦନ
ସୁମରଇ ପ୍ରଭୁ ବାସୁଦେବ ମନେ ମନ ।
ହେ ସ୍ୱାମୀ ଗୋବିନ୍ଦ ତୋର କଲି କି ବିଦ୍ରୋହ
କିମର୍ଥେ ଛାଡ଼ିଲୁ ସ୍ୱାମୀ ଆମ୍ଭଠାରୁ ସ୍ନେହ ।
ଏବେ ମୁଁ କିସ କରିବି ପୁଣ ଚଉନାହା
ଆପଦ ପଡ଼ିଲା ସ୍ୱାମୀ କେହ୍ନି ନାହିଁ ସାହା ।
ଆପଣେ ନ ମାରି ଦେବ ମରାଇଲୁ ପରେ
ନିର୍ମାକ୍ଷୀ ହୋଇଲୁ ସ୍ୱାମୀ ବରୁଣର ପୁରେ ।
ଆନନ୍ଦାନନ୍ଦ ପରାମ୍ଭ ମରାଇଲ ଭାଇ
ବଳରାମଙ୍କର ମୁଖ ଚାହିଁବି କି ଯାଇ ।
ମୋହର ଜୀବନ ରହିଅଛଇ କପାଇଁ
ରଣଯାଗ କରି ମୁହିଁ ଏଥେ ମରିବଇଁ ।
ଏତେକ ବୋଲି ପ୍ରଦ୍ୟୁମ୍ନ ଧାଇଁଲେକ ବେଗେ
କାର୍ତ୍ତିକେଶ୍ୱରଙ୍କୁ ଯାଇ ଓଗାଳିଲା ଆଗେ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏକ ଭାଇ
ତନପୁର କରି ଆଗେ ଓଗାଳିଲେ ଯାଇ ।
ଯେ ଯାହାର ଅସ୍ତ୍ର ଘେନି ମାରନ୍ତି ଗୋଡ଼ାଇ
ତାହା ଦେଖି କାର୍ତ୍ତିକେଶ୍ୱ ବେଗେ ଆଗେ ଧାଇଁ
ତ୍ରିଶୂଳ ବୁଲାଇ ବୀର ପିଟିଲା ଉଡ଼ନ୍ତ
ଏକା ପ୍ରହାରେ ପଡ଼ିଲେ ତହିଁ ରକ୍ତପନ୍ତ ।
ଶାମ୍ବ ଗଦ ମିଳି ତହିଁ କରନ୍ତି ସମର
ଶର ଏକ ପ୍ରହାରିଲା ଧୂର୍ଜଟି କୁମର ।
ଜ୍ଞାନ ହାରଣ ପଡ଼ିଲେ ବିଷ୍ଣୁ ଦୁଇବାଳ
ଆବର ବାଳକମାନେ ହେଲେ ଅସମ୍ଭାଳ ।
କପିଳାସ କନ୍ଦରରେ ଥିଲେ ରୁଦ୍ରଗଣ
ତହିଁ କାର୍ତ୍ତିକେଶ୍ୱରଙ୍କୁ ଖୋଜି ନ ପାଇଣ ।
ଖୋଜନ୍ତି ସେ କେଣେ ଗଲେ ବୋଲି ଜଣେଜଣ
କାଳ ବିନାୟକ ଚଣ୍ଡ ପରଚଣ୍ଡ ପୁଣ ।

ଖୋଜନ୍ତେ ଦେଖିଲେ ଆସି ବରୁଣ ଭୁବନ
ଦେଖିଲେ କାର୍ତ୍ତିକେଶ୍ୱର ସମର ଅଗଣ ।
ମହାଯୋଦ୍ଧା ଶ୍ରୀହରିଙ୍କ ପୁତ୍ରମାନେ ମିଳି
ତାହାଙ୍କର ସଙ୍ଗତରେ କରୁଛନ୍ତି କଳି ।
ମହାକାଳ ବିନାୟକ ଚଣ୍ଡ ଯେ ପ୍ରଚଣ୍ଡ
ଭୃକୁଟି ନନ୍ଦିକେଶ୍ୱର ସମ କାଳଦଣ୍ଡ ।
ମହାଯୋଦ୍ଧା ଅଟନ୍ତି ଏ ପୁଣି ମହାବଳୀ
ତାହାଙ୍କ ସଙ୍ଗେ ଜିଣିବେ କେହ୍ନୁ କରି କଳି
ଯାହାଙ୍କର ଶସ୍ତ୍ର ଯାଏ ପର୍ବତରେ ଫୁଟି
ଦିଗପାଳେ ନ ପାରନ୍ତି ଯାହାଙ୍କୁଟି କର୍ଣ୍ଣି ।
ତାହାଙ୍କୁ ସମରେ କିସ କରିବେ ବାଳୁତ
ଶାମ୍ବ ଗଦ ପ୍ରଦ୍ୟୁମ୍ନ ଏ ହେଲେ ପ୍ରାଣେ ହତ
ଭୟେକରି ବିଷ୍ଣୁ ପୁତ୍ରମାନେ ପଳାଇଲେ
ଗୋଡ଼ାଇ ପ୍ରହାର କଲେ ଈଶ୍ୱର ଦୂଳନେ ।
ମୋହେ ପଡ଼ିଲେ ସମରେ ବିଷ୍ଣୁ ପୁତ୍ରଗଣ
ଏକାବେଳେ ହେଲା ତାଙ୍କୁ ଅକାଳ ମରଣ ।
ନିଃଶେଷ ହୋଇ ସମସ୍ତେ ଗଲେ ତହିଁ ନାଶ
କନ୍ୟା ଘେନି କାର୍ତ୍ତିକେଶ୍ୱ ଗଲେ କଇଳାସ
ତାହା ଦେଖି ବିସ୍ମରନ୍ତି ନାରଦ ଯେ ତପୀ
ନିଷ୍ଟେ ଏହାଙ୍କୁ ନାଶିଲି ମୁହିଁ ମହାପାପୀ ।
କାର୍ତ୍ତିକଙ୍କୁ ଦେଖାଇଲି କଲି ମନ୍ଦକୃତ୍ୟ
ଅଦୋଷେ ମୁଁ ମରାଇଲି ବାଳୁତ ପୁତ୍ରନ୍ତ ।
କି ବୋଲି ବୋଲିବେ ମୋତେ କୃଷ୍ଣ ହଳପତି
ଦଣ୍ଡ ଚଢ଼ି ନାରଦ ଯେ ଗଲେ ଦ୍ୱାରାବତୀ ।
ପ୍ରବେଶ ହୋଇଲେ ଯାଇ ପୁରୀ କୁଶସ୍ଥଳ
ତହିଁ ବିଜେ କରିଛନ୍ତି କୃଷ୍ଣ କାମପାଳ ।
ତାହାଙ୍କର ସନ୍ନିଧିରେ ମିଳି ତପଶାଳୀ
ନାରଦଙ୍କୁ ଦେଖି ପୂଜା କଲେ ବନମାଳୀ ।
ପାଦ୍ୟ ଅର୍ଘ୍ୟ ଦେଇ ପୂଜା କଲେ ହୃଷୀକେଶ
ନାରଦ ବୋଇଲେ ଥିଲୁ ବରୁଣର ଦେଶ ।
ପୀତାମ୍ବର ବୋଇଲେ ଯେ ଥିଲ ସେହି ସ୍ଥାନେ
ବିଭାଅର୍ଥେ ଗଲେ ତହିଁ ଆମ୍ଭର ନନ୍ଦନେ ।
ଦେବଋଷି ବୋଇଲେ ହେ ଶୁଣ ସାବଧାନେ
କହିବାଲୁ ଅଇଲୁ ମୁଁ ଏ ତବ ବିଦ୍ୟମାନେ ।
ବରୁଣଦେବତା ଦେବ ମନ୍ଦକୃତ୍ୟ କଲା
କୁମ୍ଭର ପୁତ୍ରଙ୍କୁ ଆସି ନିମନ୍ତ୍ରିଣ ନେଲା ।

ତାହାର ଶରଯା ପୂର୍ବେ ବରିଥିଲା ସ୍କନ୍ଦ
ସ୍ୱୟଂକାଳେ ଯାଇ ଭେଦ କଲା ମହାଦ୍ୱନ୍ଦ୍ୱ ।
ହାତଯୋଡ଼ି ହୋଇଥିଲା ସେ ଆନନ୍ଦାନନ୍ଦ
ସ୍କନ୍ଦେ କର୍ଣ୍ଣିକଣ୍ଠାଗ୍ରେ ଛେଦିଲା ତା କନ୍ଧ ।
ଆନନ୍ଦାନନ୍ଦକୁ ମାରି କନ୍ୟା ଘେନିଗଲା
ପ୍ରଦ୍ୟୁମ୍ନ ଗୋଡ଼ାଇ ତାର ସଙ୍ଗେ ଯୁଦ୍ଧ କଲା ।
କୋପାନଳେ ଚକ୍ର ଘେନି ମାଇଲା ସକଳ
ଶୂଳଘାତେ ନାଶଗଲେ ତୋର ପୁତ୍ରବଳ ।
ନାରଦ ବଚନେ ରାମକୃଷ୍ଣ ସେ ଶୁଣିଲେ
ମୂର୍ଚ୍ଛା ଯାଇ ପଡ଼ିଲେକ ରାମ ସମ୍ବିତଲେ ।
କୋଳକରି ହରି ଧରୁଁ ଉଠି କାମପାଳ
ଉଚ୍ଚରେ ଶୋକଧ୍ୱନି କଲେ ନନ୍ଦବାଳ
କାନ୍ଦନ୍ତି ସେ ହା ହା ପୁତ୍ର ବୋଲି ଚକ୍ରପାଣି
ଦ୍ୱାରକାପୁରେ ଶୁଣିଲା ଉଚ୍ଚେ ଶୋକବାଣୀ
ଷୋଳସହସ୍ର ସେ ଅଷ୍ଟପାଟବଂଶୀ ରାଣୀ
ସମସ୍ତେ ପଡ଼ିଲେ ଛଳ ବଜ୍ରାଘାତ ଜାଣି ।
ଉଚ୍ଚସ୍ୱରେ କାନ୍ଦନ୍ତି ମାତା ପୁତ୍ରକୁ ସୁମରି
ସମର ନାଶି ଆଣିଲୁ ମାୟାବତୀ ହରି ।
ଲକ୍ଷ୍ମୀ ଯାହାର ଜନନୀ ପିତା ଭଗବାନ
ଅକଳିତ ପରାକ୍ରମ ବନ୍ଧୁ ତୁ ପ୍ରଦ୍ୟୁମ୍ନ ।
ତ୍ରୈଲୋକ୍ୟ ଭିତରେ ତୋତେଅଛୁକେ ସମାନ
ତୋର ବାବୁ ଫୁଲବାଣ ଫୁଲ ଶରାସନ ।
ଅପୂର୍ବ ସୁନ୍ଦର ବାବୁ କନ୍ଦର୍ପ ମୂରତି
ରିପୁମର୍ଦ୍ଦନ ତୁ ବୀରବର ଚକ୍ରବର୍ତ୍ତୀ ।
ସତ୍ୟବତୀ ଜମ୍ବୁବତୀ କାଳନ୍ଦୀ କମଳା
ଏ ସର୍ବ ଯୁବତୀ ମୋହେ ପଡ଼ି ହେଲେ ଭୋଳା
ରୋଦନ ଶବଦ ଘୋଟେ ବ୍ରହ୍ମାଣ୍ଡ ଉଛୁଳି
ପୁତ୍ର ସୁମରି କାନ୍ଦନ୍ତି ପ୍ରଭୁ ବନମାଳୀ
ସମ୍ବୋଧନ କରି ରାମ ବୋଲନ୍ତି ବଚନ
ଜୀଆଇଁ ଆଣିବା ଏହିକ୍ଷଣି ପୁତ୍ରମାନ ।
ଏତେ ବୋଲି ଆଜ୍ଞାଦେଲେ ରେବତୀର ପତି
ରଥ ଗଜ ଅଶ୍ୱ ସୈନ୍ୟ ସାଜ ହୋ ଝଟତି ।
ଯଦୁବଂଶ ଭୋଜବଂଶ ବୃଷ୍ଣିବଂଶ ମୋର
ଅନ୍ଧକବଂଶ ସେ କୁକୁରବଂଶହିଁ ମୋହର ।
ହଇହୟ ବଂଶ ଘେନି ହୋଇଲେ ବାହାର
ସାତବଂଶ ଯାଦବଙ୍କୁ ଘେନି ସତ୍ୱର ।

ନନ୍ଦିଘୋଷ ରଥ ଚଢ଼ି କୃଷ୍ଣ ହେଲେ ସଜ
ବଳରାମ ଆରୋହିଲେ ରଥ ତାଳଧ୍ୱଜ ।
ଉଗ୍ରସେନ ରାଜା ଘେନି ସକଳ ସଇନ
ରଥ ଗଜ ତୁରଙ୍ଗମ ରେଖାବାଜୀ ଘେନ ।
ଦ୍ୱାରକାପୁରୁଁ ବାହାରି ହେଲେ ସର୍ବେ ତୂର୍ଣ୍ଣ
ବାଦ୍ୟନାଦ ଶବଦରେ କମ୍ପଇ ବ୍ରହ୍ମାଣ୍ଡ ।
ତାହା ଦେଖି ଭାଳନ୍ତି ସେ ନାରଦ ମହର୍ଷି
ପୃଥ୍ୱୀ ଘୋଟି ଯାଉଛନ୍ତି ଯଦୁ ଭୋଜବଂଶୀ ।
ଏହାଙ୍କ ମୁଖେ ପଡ଼ିଲେ ହେବେ ସର୍ବେ ଧ୍ୱଂସ
ନ ପୁଣ ଏ କାର୍ତ୍ତିକକୁ କରନ୍ତି ବିନାଶ ।
ବେଗେ କହିବି ଯାଇ ମୁଁ ଷଣ୍ମୁଖର ପାଶେ
ଏମନ୍ତ ବିଚାରି ଗଲେ ମନର ହରଷେ ।
ଏତେ ଭାଳି ନାରଦ ସେ ଚଳିଲେ ତୁରିତେ
କାର୍ତ୍ତିକକୁ ଦେଖିଲେ ସେ କୈଳାସ ପର୍ବତେ
ନାରଦ ବୋଇଲେ ଶୁଣ ଈଶ୍ୱରଙ୍କ ପୁତ୍ର
ସମଦଳ ଘେନି କୋପେ ଆସନ୍ତି ଅଚ୍ୟୁତ ।
ପୁତ୍ରଛଳେ ରାମଙ୍କର କୋପ ଅପ୍ରମିତ
ଅକାରଣେ କପାଇଁ ତୁ ମାଇଲୁ ତା ପୁତ୍ର ।
ତାଙ୍କ କୋପେ ଆବର କି ଧରିବୁ ଜୀବନ
କେବଣ କାରଣେ ବାବୁ କଲୁ ରେ ନିଧନ
ସାତବଂଶ ଘେନି ଏବେ ଆସୁଛନ୍ତି ବାହି
କର ଉପାୟ ତୁ କନ୍ୟା ସହ ଯିବୁ କାହିଁ ।
ବନ ଗିରି କନ୍ଦରରେ ଠାବ ଟିକେ ନାହିଁ
ଏ କନ୍ୟାକୁ ଘେନି ଏବେ ସମ୍ଭାଳିବୁ କାହିଁ ।
ପାଞ୍ଚକୋଶ ବେଢ଼ି ଥାଟ ଆସନ୍ତି ଗୋଡ଼ାଇ
ତାହା ଦେଖି କାର୍ତ୍ତିକେୟ ମୟୂର ଉଡ଼ାଇ ।
ନାରଦ ବୋଇଲେ ତୋର ଏକ ବିପରୀତ
ରାମକୃଷ୍ଣ ଦେଖି କମ୍ପି ହୋଇଲୁ ନିସତ ।
ଦ୍ୱିତୀୟ ଈଶ୍ୱର ପଦ ହରି ଦେଲେ ତୋତେ
ବୋଲିବେ ପଳାଇ ଗଲା ଛଦ୍ରମେ ନିସତେ ।
ପ୍ରାକର୍ମେ ଜିଣିଲେ କିନା ନେବୁ ତୁ କୁମାରୀ
ଚଉର୍ଯ୍ୟ ପଣେ ନେଲେଟି ହୁଏ ହତ୍ୟାସର ।
କନ୍ଦର ସହିତେ ସ୍ୱର୍ଗ କଇଳାସ ନେବେ
ଶିବଗଣଙ୍କୁ ବହୁତ ଶାସ୍ତି ପୁଣ ଦେବେ ।
ରାମ କୃଷ୍ଣଙ୍କୁ ଦେଖିଣ ନ ଯୁଝିବେ କେହି
ତୋର ପଳାନ୍ତେ ସମସ୍ତେ ନାଶଯିବେ ତହିଁ ।

ପ୍ରମାଦ ଚନ୍ଦ୍ରଲୁ ତାଙ୍କ ପୁତ୍ରଙ୍କୁ ମାଇଲୁ
କୋପେ ତୁ ଆଗେ ଅନର୍ଥ ଗୋଟି ଜାତକଲୁ
ନାରଦଙ୍କ ବଚନରେ ରହିଲେ ସେ ସ୍କନ୍ଦ
ହସ୍ତେ ଗଦାବର ଧରି ଆରମ୍ଭିଲେ ଦ୍ୱନ୍ଦ ।
ଚଉଦକୋଟି ଯେ ଶିବଗଣ ଘେନି ଯିବ
ଉଗ୍ରସେନ ବଳରାମ ଗୋବିନ୍ଦ ମାରିବ ।
ଯଦୁ ଭୋଜବଂଶଙ୍କୁ ମୁଁ ମାରିବି ସକୋଡି
ଘାଲଟିଲେ କାର୍ତ୍ତିକେୟ ଦକ୍ଷିଣ ମୂରତି ।
ଗୋବିନ୍ଦ ଭେଟିଲେ ବାଟେ ଶିବର କୁମର
ଆଗରେ ବିଜୟ ଦେବ ସ୍ୱାମୀ ହଳଧର ।
ଶ୍ରୀକୃଷ୍ଣ ବୋଇଲେ ଦେବ ଶୁଣ ହଳହସ୍ତ
କାର୍ତ୍ତିକେଶ୍ୱରଙ୍କୁ ତୁମ୍ଭେ କୋପ ନ କର ତ
ବୁଝିବା ନା ପୁଅଙ୍କୁ ସେ ମାଇଲ କପାଇଁ
ତୁମ୍ଭେ ରହିଥାଅ ମୁହିଁ ବୁଝେଁ ଏହା ଯାଇ ।
ନ ବୁଝି କୋପ କଲେଟି ଜୁଝିବେ ନା ହର
ବ୍ରହ୍ମହତ୍ୟା କରି ଗଲେ ବାରଣସୀ ପୁର ।
ଏ କଥା ଯେବେ ଜାଣିବେ ଦେବକାର୍ଶବାସୀ
ପଛେ ଦୂଷଣ କଷଣ ଦେବେ ଏଥେ ଆମ୍ଭି ।
ଏ ବଚନ ଶୁଣି ରାମ ସମ୍ବରିଲେ କୋପ
ଗୋବିନ୍ଦ ମିଳିଲେ ଯାଇ କାର୍ତ୍ତିକ ସମୀପ ।
ବୋଲନ୍ତି ଶ୍ରୀ ଜଗନ୍ନାଥ ଶୁଣ ମହାସେନ
କମନ୍ତେ ପୁତ୍ରମାନଙ୍କୁ କଲୁ ତୁ ନିଧନ ।
ଏହା ଶୁଣି କାର୍ତ୍ତିକେୟ ମହାକୋପମନ
ଅଧର କମ୍ପାଇ ସେହି ବୋଇଲେ ବଚନ ।
ବରୁଣ ଦୁହିତା ନାମ ମାଳେନ୍ଦ୍ରୀ ସୁନ୍ଦରୀ
କମନ୍ତେ ତୋ ପୁତ୍ର ନେଉଥିଲେ ତାକୁ ହରି ।
ବାଳକାଙ୍କୁ ବରିଛନ୍ତି ଈଶ୍ୱରେ ଯାହାକୁ
କପାଁ ନେଉଥିଲେ କହ ତୋ ପୁତ୍ରେ ତାହାକୁ
ଆଗହୁଁ ବରିଛି ମୋତେ ବରୁଣ ଆତ୍ମଜା
ତୁମ୍ଭେ କେଉଁମତେ ବଶ ହୁଅ ନାହିଁ ଲଜ୍ଜା ।
ପୁତ୍ରଙ୍କୁ ପଠାଇଦେଲେ ନ ପାଇଲ ଲାଜ
ମୋ ପତ୍ନୀ ନେବାକୁ ପୁଣି ଧାଇଁଅଛ ଆଜ ।
କଷ୍ଟପୁରେ ମରାଇବି ଯଦୁବଂଶ ସୈନ୍ୟ
ମଣିଛ କି ମୋତେ ଆନ ନୃପତି ସମାନ ।
ତାହାଙ୍କୁ ମରାଇ କିବା ଆପେ ଯିବ ବର୍ତ୍ତି
ଭାଇ ବନ୍ଧୁ ସଙ୍ଗତରେ ମାରିବି ସକୋଡି ।
ଏମନ୍ତକ ବୋଲି କୋପ କଲା ମହାକ୍ଷତ୍ରୀ
କରେ ଧରି ବୁଲାଇଲା ତ୍ରିଶୂଳ ଶକତି ।
କୋପେଣ ନେଇ ପିଟିଲା ଶ୍ରୀକୃଷ୍ଣ ଉପର
ନାଦଘୋଷ ରଥେ ବାଜି ହେଲା ଶତଚୂର ।
ପରନାରୀ ହରି ନେଉଥିଲ ପରା ଆଜ
କେମନ୍ତେ ତୁ କରି ଏହା କହୁ ରେ ନିର୍ଲଜ୍ଜ
ବିରଥ ହୋଇଲେ ଯହୁଁ ଦେବ ଚକ୍ରଧର
ରମ୍ଭକ ଦ୍ୱୀପରେ ଥିଲା ବିନତା କୁମର ।
ଜଗନ୍ନାଥ ସୁମରନ୍ତେ ମିଳିଲା ଗ୍ରାମ୍ଭରେ
ମଧୁହାରୀ କଲେ ବିଜେ ଗରୁଡ଼ ପିଠିରେ ।
କାର୍ତ୍ତିକ ରହିଲା ରଥେ ମୟୂର ଉପରି
ଗରୁଡ଼ ପୃଷ୍ଠରେ ବିଜେ ଦେବ ଚକ୍ରଧାରୀ ।
ତାହା ଦେଖି ବଳରାମ ନ ପାରିଲେ ସହି
ଯେସନେକ କାଳାନଳ ବହ୍ନି ଯାଏ ଦହି ।
ତାଳଧ୍ୱଜ ରଥରୁ ସେ ପଡ଼ିଲେକ ଡେଇଁ
ମୁଷଳ ପିଟିଲେ ଦେବ କାର୍ତ୍ତିକଙ୍କୁ ନେଇ ।
ମୟୂର ଲୋଟି ପଡ଼ିଲା ମୁଷଳର ଘାତେ
କଦଳୀ ତରୁ ଲୋଟଇ ଯେସନେ ବାତାଘାତେ
ତ୍ରିଶୂଳ ପିଟିଲା ସ୍କନ୍ଦ ହୋଇ କୋପମୂର୍ତ୍ତି
ଶୂନ୍ୟରେ ଭ୍ରମି ଆସନ୍ତେ ତ୍ରିଶୂଳ ଶକତି ।
ବାମଭୁଜେ ଧଇଲେ ତା ରେବତୀର ପତି
ହିଦରଣ ସେ ମହା ଘୋରନାଦେ କଲେ ଖିତି
କୋପେ ତାହା ମହାସେନ ପିଟିଲା ବଠାଇ
ଉପୁଡ଼ି ପଡ଼ିଲା ବାଣ ତୃଣପ୍ରାୟ ହୋଇ ।
ତାହା ଦେଖି ବଳରାମ କୋପେ ଗଲେ ଧାଇଁ
ସେ ତ୍ରିଶୂଳ ଶକ୍ତି ଘେନି ପିଟିଲେ ତୁହାଇ ।
ପଡ଼ିଲା କାର୍ତ୍ତିକେଶ୍ୱର ତଳେ ମୂର୍ଚ୍ଛା ଯାଇ
କନ୍ୟାକୁ ଧଇଲେ କୋଳକରି ଯଦୁସାଇଁ ।
ଗୋଡ଼ାନ୍ତି ଯାଦବ ସୈନ୍ୟ ପଛେ ମହାଘୋଟି
ଶିବଗଣମାନଙ୍କୁ ଯେ କରି ଶରବୃଷ୍ଟି ।
ଗଦା ବୁଲାଇ ମୁଷଳ ଘେନି କେହୁ ପିଟି
ପଡ଼ିଲେ ସେ ଅସାସ୍ତମ ହୋଇ ମହାଲୋଟି ।
ଗୋବିନ୍ଦ ପାଶେ ମିଳିଲେ ରୋହିଣୀ ତନୟ
କରେ ଶସ୍ତ୍ର ଧରି କରେ ସଂଗ୍ରାମେ ବିଜୟ ।
ସହସ୍ର ସହସ୍ର ଶର କୋପେଣ ପ୍ରହାରି
ଏକ ପ୍ରହାରକେ ହରି ଚଉବଂଶ ମାରି ।

ଚତୁର୍ଦ୍ଦଶ କୋଟି ଶିବଗଣଙ୍କୁ ସଂହାରି
ମକେନ୍ଦ୍ରୀ କନ୍ୟାକୁ ଯାଇ ଆଣିଲେ ମୁରାରି ।
କନ୍ୟା ଘେନି ଆସି ବଜେ ଗରୁଡ଼ ପିଠିରେ
ବରୁଣ ଭୁବନେ ବଜେ କଲେ ଦାମୋଦରେ
ତାହା ଦେଖି ଭାଳନ୍ତି ସେ ମନେ ମୁନିବର
କି ବୋଲି ବୋଲିବେ ମୋତେ ତ୍ରିପୁରାନ୍ତକର
ବ୍ରହ୍ମହତ୍ୟା କରି ହର ଗଲେ ତପକରି
କାର୍ତ୍ତିକଙ୍କୁ ସମର୍ପିଲେ ମୋର କର ଧରି ।
ବୋଇଲେ ଲାଗଇ ତୋତେ ଏହା ପ ପୁଣ୍ୟ
ଦେବଙ୍କର ଉପରେ ତୁ ଦେବଋଷି ପୁଣ ।
ଏସନକ ବୋଲି ମୋତେ ଗଲେ ତ୍ରିଲୋଚନ
ଏବେ ମୋହର ଦେଖନ୍ତେ କାର୍ତ୍ତିକ ନିଧନ
ଏହା କପାଁ ନ କହିବ ଈଶ୍ୱରଙ୍କ ଆଗେ
କେମନ୍ତେ ବଞ୍ଚିବ ମହାଯୋଗୀଙ୍କର ରାଗେ ।
ଏତେ ବୋଲି ମନଦଣ୍ଡ ଉଡାଇଲେ ଖରେ
ପ୍ରବେଶ ହାଟକେଶ୍ୱର ପୁରେ ମୁନିବରେ ।
ନାରଦଙ୍କୁ ଈଶ୍ୱର ଯେ ଦେଖି କଲେ ପୂଜା
ମଣିମୟ କଙ୍କଣ ଯେ ଅର୍ଘ୍ୟରତ୍ନ ଖଞ୍ଜା ।
କୁଣ୍ଡଳ ଦେଇଣ ପୁଚ୍ଛାକଲେ ତ୍ରିଲୋଚନ
କୁଶଳ ବାରତା କହ ବ୍ରହ୍ମାଙ୍କ ନନ୍ଦନ ।
କ୍ଷେମେ ଅଛନ୍ତି କି କହ ମୋତେ ମୋର ଗଣ
କଷ୍ଟ କାହାରି ମନରେ ନାହିଁ ତ କି ପୁଣ ।
ଉତ୍ପାତ ଅରିଷ୍ଟି କିଛି ନାହିଁ ନା ଭୁବନେ
କ୍ଷେମେ ଅଛନ୍ତି ଦେବତାମାନେ କି ଗଗନେ ।
କ୍ଷେମେ ବାସବ ଦେବତା କରୁଛି କି ବୃଷ୍ଟି
ଦୈତ୍ୟ ଦାନବାଦି ଭୟ ନାହିଁ ତ ଅରିଷ୍ଟି ।
ପୃଥ୍ୱୀରେ ହେଉଛି ନା ଶସ୍ୟ ଉତପତ୍ତି
ଭଲେ ଅଛନ୍ତି କି ମୋର ସ୍କନ୍ଦ ଗଣପତି ।
ଶୋକେ ଗଦଗଦ ସ୍ୱରେ ବୋଲନ୍ତି ନାରଦ
କାର୍ତ୍ତିକେଶ୍ୱରକୁ ତୋର ପଡ଼ିଲା ପ୍ରମାଦ ।
ଈଶ୍ୱର ବୋଇଲେ ମୁନି ଦୁର୍ଲ୍ଲଭ କହିଲୁ
ପରମାନନ୍ଦକୁ ମୋର କାହିଁ ହରାଇଲୁ ।
ଏଡ଼େ ଶତ୍ରୁ ପଣ ନେଇ କାହିଁ କରାଇଲୁ
ତାରକାନ୍ତକକୁ ମୋର କାହିଁ ନିବାସିଲୁ ।
ଯାହାର ବାହୁଲେ ଦେବେ ସ୍ୱର୍ଗେ ସୁସ୍ଥ ରହି
ତାକୁ ମାରିବାକୁ କେହୁ ଉପୁଜିଲା ମହୀ ।

ନାରଦ କହିଲେ ତୁମ୍ଭେ ଶୁଣ ଆଦିକର୍ତ୍ତା
ବାଳକାଳେ ବରିଲୁ ତୁ ବରୁଣ ଦୁହିତା ।
ବଳରାମ ପୁତ୍ରକୁ ବରିଲା ସେ ବରୁଣ
ତାର ବିଭାକାଳେ ଯାଇ ତୋହର ନନ୍ଦନ ।
ଆନନ୍ଦାନନ୍ଦର ଶିର ଛେଦି ଖଡ଼ଗରେ
କନ୍ୟା ଘେନି ଆସୁଥିଲା କପିଳାସ ପୁରେ ।
ସୈନ୍ୟ ଘେନି ଗୋଡ଼ାଇଲେ କୃଷ୍ଣ କାମପାଳ
ମୂଷଳ ଘେନି ମାଇଲେ ତୋହର ଯେ ବାଳ
ଚଉଦକୋଟି ଯେ ଶିବଗଣଙ୍କୁ ସଂହାରି
ମକେନ୍ଦ୍ରୀ କନ୍ୟାକୁ ନେଲେ ଜଳେଶ୍ୱରପୁରୀ
କାର୍ତ୍ତିକ ନିଧନ ଶୁଣି ଦେବ ଶୂଳଧର
ଅଶ୍ରୁଜଳ ନୟନରୁ ବହେ ଝର ଝର ।
ପାଇଲେ ବହୁତ ଦୁଃଖ ଦେବ ତ୍ରିପୁରାରି
ଶୋକଜଳେ କାର୍ତ୍ତିକେୟ ଗୁଣମାନ ସ୍ମରି ।
ଆହା ପୁତ୍ର ସ୍କନ୍ଦରେ ତୁ ମଣିଭଦ୍ରା ସରି
ଦେବତାଙ୍କୁ ରଖିଲୁ ତୁ ତାରକାକୁ ମାରି ।
ତ୍ରୈଲୋକ୍ୟେ ଅସଂଖ୍ୟ ଯାର ଅଛି ପରାକ୍ରମ
ବାରେ ଉପେକ୍ଷା ନ କଲେ ତାକୁ ବଳରାମ ।
କରନ୍ତି ରୋଦନ ପୁତ୍ରକଷ୍ଟେ ଶୂଳଧାରୀ
ନାରଦ ତାହାଙ୍କୁ ବହୁ ସମାର୍ଜ୍ଜନା କରି ।
ଏଡ଼େ ବଡ଼ ଦୋଷ କପାଁ ସହିବ ତାଙ୍କର
ଅସଂଖ୍ୟ ଦୋଷ କଲେଣି ସେମାନେ ମୋହର
ଗଣପୁତ୍ରମାନଙ୍କୁ ଯେ ମାଇଲେକ ରୋଳେ
ତୋତେ କି ମାରନ୍ତେ ଥିଲେ ମୁହିଁ ଯୁଦ୍ଧକାଳେ
ନାରଦ ବୋଇଲେ ଯାହା କଲେ କାମପାଳ
ତା ତହୁଁ ଅଧିକ ତେଜବୀର୍ଯ୍ୟ ନନ୍ଦବାଳ ।
ଜଗତଜନେ ତାହାର ଦୁଷ୍ଟପଣ ଜାଣି
ତୋର ଭୁଲେ ଦ୍ୱନ୍ଦ୍ୱ ଆସି କରେ ପୁଣି ପୁଣି ।
ଘରଭର ନିବାରି ତୁ ପାରୁ ବିଶ୍ୱେଶ୍ୱର
ତ୍ରିପୁର କନକ ନାମେ ନାଶିଲୁ ଅସୁର ।
ତୋତେ କାହିଁ ଜିଣିବେ ସେ ହଳୀ ଜଗନ୍ନାଥ
କୈଳାସ ବାସୀ ବୋଇଲେ କହିଲ ଯଥାର୍ଥ ।
ସକଳ ପୁରକୁ ତୁହି ଭ୍ରମିଯାଉ ନିତ୍ୟେ
ଏବେ ସେ ଜାଣିଲି ଥାଉ ତୁହି ଆମ୍ଭ ହିତେ ।
ନାରଦ ବଚନ ଶୁଣି ପାର୍ବତୀଙ୍କ ବର
ପଞ୍ଚବଦନ ମଉଳ କମ୍ପେ ଥରହର ।

ନନ୍ଦକେଶ୍ୱରକୁ ଆଜ୍ଞା ଦେଲେ ଦେବ ହର
ବୃଷଭବାହନ ମୋର ବେଗେ ସଜକର ।
ମାଧବଇଁ ଯଦୁବଂଶ କାହ୍ନୁ ସଙ୍କର୍ଷଣ
ଯାବତ ଚନ୍ଦ୍ରାର୍କେ କଥା ରହିଥିବ ଜାଣ ।
ମୃଗସେନ ବସୁବୀର ଏ ଦୁଇ ରାଜନ
ଈଶ୍ୱରଙ୍କୁ ସେବା କରୁଥାନ୍ତି ପ୍ରତିଦିନ ।
ବର ମାଗ ବୋଲି ତାଙ୍କୁ ବୋଇଲେ ତ୍ରିଶୂଳୀ
ସେ ବେନଦୈତ୍ୟ ବୋଇଲେ ଶୁଣହୋ କପାଳି
ଶ୍ରୀହରି ଅଟନ୍ତି ସିନା ଆମ୍ଭର ବଇରୀ
ତାହାଙ୍କୁ ସଂଗ୍ରାମେ ଆମ୍ଭେ ଜିଣିବୁ ନା ଧରି ।
ଏସନକ ବର ଦିଅ ସ୍ୱାମି କୃତ୍ତିବାସ
ଧୂର୍ଜଟି ବୋଇଲେ ତୁମ୍ଭେ ଆମ୍ଭ ସଙ୍ଗେ ଆସ ।
ତୁମ୍ଭର ଆଗେ ତାହାଙ୍କୁ କରିବଇଁ ନାଶ
ଆମ୍ଭର ବଇରୀ ହେଲେ ଯିବେ ଯମପାଶ ।
ଅନେକ କାଳରୁ ସେବା କରିଛ ଆମ୍ଭଙ୍କୁ
ତାହାଙ୍କୁ ଧରିଣ ଦେବା ଆମ୍ଭେ ଯେ ତୁମ୍ଭଙ୍କୁ ।
ଶିବଙ୍କର ଆଜ୍ଞା ପାଇ ରାଜା ବସୁବୀର
ଅଷ୍ଟକୋଟି ଯୋଦ୍ଧା ସେହୁ ଘେନିଲା ସଙ୍ଗର
ପାଞ୍ଚକୋଟି ଯୋଦ୍ଧା ମୃଗସେନ ସଙ୍ଗେ ଘେନ
ଦୁଷ୍ଟ ରାଜାଙ୍କର ତେରକୋଟି ଯେ ସଇନ ।
ଆଣିଲା ନନ୍ଦକେଶ୍ୱର ବୃଷଭକୁ ଯାଇ
ବିବିଧ ରଙ୍ଗରେ ଘଣ୍ଟି ଘାଗୁଡ଼ି ସଜାଇ ।
ବୃଷଭ ପିଠିରେ ବିଜେ ଦେବ କାଶୀବାସୀ
ପାତାଳ ଭୁବନୁ ତେଜ ବିଜେକରି ଆସି ।
ତେରଲକ୍ଷ ଡମ୍ବରୁ ଯେ ତ୍ରିପୁର ନାଶି
ନାରଦଙ୍କୁ ବୋଲନ୍ତି ଯେ ଦେବ ବିଶ୍ୱବାସୀ ।
ଯେବଣଠାରେ ମୋହର ପୁତ୍ର ପଡ଼ିଅଛି
ତହିଁକି ବାଟ କଢ଼ାଅ ବ୍ରହ୍ମାଙ୍କର ବହି ।
ନାରଦେ ବୋଇଲେ ତୋର ପୁତ୍ରକୁ ଦେଖନ୍ତେ
ହସ୍ତ ପାଦ ନ ଚଳିବ ନିଜ ପ୍ରାଣ ଥାନ୍ତେ ।
ଯେବଣଠାବେ ଅଛନ୍ତି ହରି ବଳରାମ
ତାହାଙ୍କର ସଙ୍ଗେ ତୁମ୍ଭେ କରିବ ସଂଗ୍ରାମ ।
ଈଶ୍ୱର ବୋଇଲେ ମୁନି କହିଲ ଯଥାର୍ଥ
ଆଗ କଷ୍ଟ ପାଇବି ନା ଦେଖି ପୁତ୍ର ହତ ।
କେବଣଠାବେ ଅଛନ୍ତି ବସୁଦେବ ସୁତେ
ତହିଁକି ବାଟ କଢ଼ାଇ ନିଅ ତପୋବନ୍ତେ ।

ହରଷରେ ଆଗୁଁ ସବ ଯାନ୍ତି ତପୋନିଷ୍ଠ
ଚନ୍ଦ୍ରଭାଗା କୂଳେ ହେଲ ଧୂର୍ଜଟିର ଭେଟ ।
ଅନ୍ତର୍ଦ୍ଧାନ ହୋଇ ତହୁଁ ଗଲେ ମହାମୁନି
ରାମକୃଷ୍ଣଙ୍କର ସନ୍ନିଧିରେ ବିଜେ ପୁଣି ।
ଦେଖିଣ ପୁଛିଲେ ସ୍ୱାମି ଶ୍ରୀମଧୁସୂଦନ
ଭିଆଇ ଅଇଲ କସ ବ୍ରହ୍ମାଙ୍କ ନନ୍ଦନ ।
ହଳୀମୁଖ ଗୃହିଁ ମୁନି ବଚନ ବୋଇଲେ
ଯୁଦ୍ଧ କରିବାକୁ ଦେବ ଈଶ୍ୱର ଅଇଲେ ।
ମୃଗସେନ ବସୁବୀର ଏ ଦୁଇ ରାଜନ
ଅଞ୍ଜନ ଦୈତ୍ୟର ସେହି ଅଟନ୍ତି ନନ୍ଦନ ।
ଈଶ୍ୱରଙ୍କ ବର ପାଇ ସେ ବେନି ଦନୁଜ
ଘୋର ସଂଗ୍ରାମ କରିବେ ଦନ୍ତ ମହାତେଜ ।
ନାରଦ ବଚନେ ରାମ କ୍ରୋଧରେ ପ୍ରଜ୍ୱଳି
ହସ୍ତେ ତୋଳି ବୁଲାଇଲେ ଲଙ୍ଗଳ ମୁଷଳୀ ।
କୋଟି କୋଟି ସିଂହ ପ୍ରାୟେ ଯାର ପରାକ୍ରମ
ଗଣ୍ଡାଏ ଯୁଗ ଯାହାର ନିମିଷକେ ଭ୍ରମ ।
ନିରାକାର ପୁରୁଷ ସେ ନାହିଁ କୁଳଗୋତ୍ର
ଶିରରେ ସପତଫଣୀ ଧବଳିତ ଗାତ୍ର ।
କାଦମ୍ବରୀ ପାନେ ସ୍ୱାମୀ ଅହର୍ନିଶି ଭୋଳା
ପରମ ଯୋଗୀ ଜ୍ଞାନୀ ସେ ନିରାକାର ବଳା ।
ଘୋର ନାଦ କରି ରାମ କଲେ ସିଂହରଡ଼ି
ମେରୁ ମନ୍ଦର ପର୍ବତ ପଡ଼ିଲାକ ଝଡ଼ି ।
ଉପରୁ ଉଲ୍କାପାତ ହେଲା ଘନ ଘନ
ପୃଥିବୀ କମ୍ପିଲା ବଜ୍ର ପଡ଼ିଲା ସମାନ ।
ଦଶଦିଗ କମ୍ପି ଗଲା ସ୍ୱର୍ଗ ବଜ୍ରଧାରୀ
ସିନ୍ଧୁଘୋଷ ପ୍ରାୟେ ଶୁଭେ ନାଦ ଦଗଗୃର ।
ସଦାଶିବ ବିଜେକଲେ ତହିଁ ମହାଯତ
କୃଷ୍ଣ ବଳରାମ ହେଲେ ଦକ୍ଷିଣ ମୂରତ ।
ରାମଙ୍କୁହିଁ ତିଆରନ୍ତି କମଳାରମଣ
ଈଶ୍ୱରଙ୍କୁ କୋପ ଦେବ ନ କରିବ ପୁଣ ।
ମୁହିଁ ଆଗ ଯାଇ ବାରେ ପଚାରଇ କଥା
ଅନାଦି ନାଥ କପାଇଁ ପାଇବେ ସେ ବ୍ୟଥା
ନାରଦ ବହୁତ ମନେ କରଛନ୍ତି ଦ୍ୱନ୍ଦ୍ୱ
ତାହାଙ୍କ ବଚନେ ଆସିଛନ୍ତି ସଦାନନ୍ଦ ।
ଆବର ମରିଛି ତାଙ୍କ ତନୟ ଯେ ସ୍କନ୍ଦ
ତେଣୁ ବିଶ୍ୱନାଥଙ୍କର ବଡ଼ ଅଛି କ୍ରୋଧ ।

କୋପଶାନ୍ତ କରିବା ନା ଯୁଗଧାରୀ ମଲ୍ଲ
କଳହାନ୍ତ ନୋହୁ ନାଥ ସବୁ ହେଉ ଭଲ ।
ଏତେକ କହି ରାମଙ୍କୁ ଭିଆର ମୁରାରି
ସଦାଶିବ ସନ୍ନିଧିକୁ ଗଲେ ମଧୁହାରି ।
ଯଦୁ ଭୋଜବଂଶେ ପଛେ ଅଛନ୍ତି ଉଭାରି
ରଥ ରଥୀ ଗଜ ଅଶ୍ୱ ସୈନ୍ୟ ପଚ୍ଛୁଆରି ।
ବଜାଇ ଅନେକ ଢୋଲ ଦମା ଶଙ୍ଖ ବାଦ୍ୟ
ରଥ ଗଜ କବା ତହିଁ ଅଗାଧ ସମୁଦ୍ର ।
ଶମ୍ଭୁମାନ ନନ୍ଦୁଛନ୍ତି ରବର କରଣ
ବୃଷଭ ପିଠିରେ ବିଜେ ପନ୍ନଗ ଭୂଷଣ ।
ପଞ୍ଚମୁଖର ମଉଳ ଘୋଟେ କି ଗଗନ
ଶିରେ ଜଟାଜୁଟ ଅଙ୍ଗେ ପାଂଶୁ ବିଲେପନ ।
ଖଟ୍ୱାଙ୍ଗ ପିନାକ ଧନୁ ତ୍ରିଶୂଳ ଶକତି
ଭସ୍ମ ଆଭରଣ ନାଥ ଚନ୍ଦ୍ରମୌଳି ମୂର୍ତ୍ତି ।
ଦେଖି ମାଧବ ଗରୁଡ଼ ପିଠିରୁ ଓହ୍ଲାଇ
ପାଦ୍ୟ ଅର୍ଘ୍ୟ ଘେନ ନାଥ ବେଗେ ଚଳିଯାଇ
ଯେବଣ ଠାରେ ଅଛନ୍ତି ଅନାଦି ଗୋସାଇଁ
ଅର୍ଘ୍ୟ ପୂଜା ଦେଉଁ ଦୂରୁ ଓଳଗି ମେଲାଇ ।
ଯେସନେକ ଘୋଟେ ରାହୁ ଯାଇ ନିଶାକର
କୋପେ ଉତ୍ତର ଦିଅନ୍ତି ଉମାଦେବୀ ବର ।
ଆରେ ଆରେ ଗଉଡ଼ ତୁ ଏଡ଼େ ବଡ଼ ଜଣ
ମାନବ ରୂପରେ ମର୍ତ୍ତ୍ୟେ ଜନମିଲୁ ପୁଣ ।
ମାଇଲୁ ତୁ ବିଶ୍ରବାର ନନ୍ଦନ ରାବଣ
ମୁଖ ତୋଳ ନ ଚାହିଁଲେ ତୋତେ ଦେବଗଣ
ପ୍ରତ୍ୟକ୍ଷେ ତୁ ବ୍ରହ୍ମହତ୍ୟା କଲୁ ରେ ଅଜାତ
ପାଇଲୁ ତୁ ଦେବସବୁ ମଧ୍ୟେ ଅପଖ୍ୟାତ ।
ଦ୍ୱାପରେ ଜାତ ହୋଇଲୁ ବସୁଦେବ ଘରେ
ପୁତନାକୁ ବଧିଲୁ ତୁ ସ୍ତନ୍ୟପାନ କ୍ଷୀରେ ।
ସ୍ତ୍ରୀହତ୍ୟା କେମନ୍ତେ ତୁ କରୁ ରେ ପାମର
ଅବଧ ଷଣ୍ଢ ମ.ଇଲୁ ପଶି ଗୋଗୋଷ୍ଠର ।
ଗୌରବ ସ୍ତିରୀଙ୍କ ସଙ୍ଗେ ଆଚରିଲୁ କାମ
ଗଉଡ଼ ବାଉଡ଼ ପୁଣି ହାଉଡ଼ ତୋ ନାମ ।
ଏତେ ପାପ କରି ମୂଢ଼ ଅଛୁ ଦେହବହି
ଯାମଳା ଭାଙ୍ଗି ଭୋଜନ କଲୁ ତୁ ରେ ଦହି ।
ଈଶ୍ୱର ବୋଲନ୍ତେ ହରି ନ ପାରିଲେ ସହି
କୋପେ କମ୍ପିଲେ ଯେସନେ ହୁଏ କାଳ ଅହି

ବୋଲନ୍ତି ଗୋବିନ୍ଦ ସ୍ୱାମୀ କୋପେ ପରଶଂସି
ପରକୁ ଧିକ୍କାରୁ ଆପେ ହୋଇ ମହାଦୋଷୀ
ତୁମ୍ଭେ ଯେ ବୋଇଲ ସ୍ୱାମୀ ଗଉଡ଼ ବାଉଡ଼
ଯୋଗୀ ତପସ୍ୱୀ ଆମ୍ଭେ ତ ନୋହୁ ନା ରାଉଳ
ତୁମ୍ଭେ ଯେ ବୋଇଲ ମୋତେ ବ୍ରହ୍ମହତ୍ୟାକଲୁ
ବିଶ୍ରବା ଋଷିର ପୁଅ ରାବଣ ମାରିଲୁ ।
ଦେବ ସଭା ମଧ୍ୟରୁ ତୁ ଯଶ ନ ପାଇଲୁ
ଦେବ ଇନ୍ଦ୍ର ନ ଚାହିଁଲା ସ୍ୱର୍ଗେ ନ ରହିଲୁ ।
ସେ ରାବଣ କୁମ୍ଭକର୍ଣ୍ଣ କଲେ କେଉଁ କୃତ୍ୟ
ତୁମ୍ଭେ ଯେ ତାହା ଆଗରେ କରୁଥିଲ ନୃତ୍ୟ
ଲେପନ କରନ୍ତି ଚତୁଃସମ ବେଦବର
ତାଳ ଧରି ଗାଉଥାନ୍ତି ଗନ୍ଧର୍ବ କିନ୍ନର ।
ବୈଶ୍ୱାନର ଅନଳରେ ଧୁଅନ୍ତି ତା ଲୁଗା
ମର୍ଦ୍ଦଳ ବଜାନ୍ତି ହୋଇ ଦିଗପାଳେ ପୁଙ୍ଗା ।
ଗଡ଼କ ନିଶାଣ ଜାଣି ଦିଅନ୍ତି ବିଧାତା
ସର୍ବଦାହିଁ ଖଟିଥାନ୍ତି ଇନ୍ଦ୍ରର ବନିତା ।
ଦେବଋଷି ବଖାଣନ୍ତି ପୁରାଣ ବାରତା
ବିନାୟକ ଭାଟପଣେ ଥାଇଟି ସର୍ବଥା ।
ବୃହସ୍ପତି କହୁଥାଇ ଗ୍ରହଯୋଗ କଥା
ମେଘମାନେ ପଖାଳନ୍ତି ନିତି ତାର ମଥା ।
ସଂଯମନୀ ନାଥ ଥାଇ ବୈଦ୍ୟପଣେ ଖଟି
କୁବେର ସଭାମଣ୍ଡପେ ଦିଏ ଝାଟିମାଟି ।
ଆବର ଯୋଗାଇ ଦିଏ ନେଇ ଦାନ୍ତକାଠି
ଦ୍ୱାଦଶ ଆଦିତ୍ୟତେଜେ ଜଗାଣିକ ଉଠି ।
ବଳେ ହରିନେଲା ସେହି ଦେବ କନ୍ୟାମାନ
ସବୁ ନେଇ ଭୋଗକଲା ଅଳଙ୍କାର ଧନ ।
ମୋହର ପତ୍ନୀ ସୀତାକୁ ନେଲା ପୁଣି ହରି
ସେ ଦୋଷେ ମାଇଲି ମୋର ସେ ଦାରବଇରି
ସଂଗ୍ରାମରେ ଗୋ ବ୍ରାହ୍ମଣ ଶିରଚ୍ଛେଦ କରି
ବ୍ରହ୍ମହତ୍ୟା ଦୋଷ ମୋତେ ଦେଲେନବଗୃର
ତୁ ପୂର୍ବେ ବ୍ରହ୍ମାଙ୍କୁ ଦେବ ମହାକୋପ କଲୁ
ଗୃପୋଡ଼େ ମାରି ତାହାର ଶିର ଛିଣ୍ଡାଇଲୁ ।
ସାକ୍ଷାତେ ତୁ ବ୍ରହ୍ମହତ୍ୟା କଲୁ ମହାଭୋଳେ
ଅଦ୍ୟାପି ହସ୍ତରେ ତୋର ଲାଗିଛି କପାଳେ
ସେ ମୁଣ୍ଡ ଗୋଟିକ ତୁ କି ନ ଦେଖୁ ଛୁଡ଼ୋଳେ
ତୁ ସେ ବ୍ରହ୍ମହତ୍ୟା ପାପୀ ହିନା କାଳେକାଳେ

ମୋତେ ବୋଲିବାକୁ କପାଁ ନ ପାଇଲୁ ଲାଜ
ମିଥ୍ୟାହତ୍ୟା କଲୁ ବୋଲି କହିଲୁ ତୁ ଆଜ ।
ତହିଁର ଚରିତ ତୁ କି କର୍ଣ୍ଣେ ନାହିଁ ଶୁଣି
କହିବା ସେ କଥା ଏବେ ଶୁଣ ଶୂଳ ପାଣି
ମାୟା ରୂପରେ ଅଇଲା କଂସର ଭଉଣୀ
ବେନି ସ୍ତନେ ବିଷ ଭରି ଆସିଥିଲା ପୁଣି ।
ମୋତେ ମାରିବା ନିମନ୍ତେ କରିଥିଲା ଛନ୍ଦ
ତାହାକୁ ମାଇଲି ମୋତେ ବୋଇଲୁ ସେ ମନ୍ଦ
ଗୋହତ୍ୟା କଲି ବୋଲି ସେ ବୋଇଲୁ ତୁ ହର
ତାହା କିଛି ନ ଜାଣୁ କି ଅନାଦି ଈଶ୍ୱର ।
ନାନା ରୂପ ଧରି ତହିଁ ଅଇଲେ ଅସୁରେ
ଯାମଳା ଶକଟା ବକା ଅଘା ସ୍ୱରୂପରେ ।
ଷଣ୍ଢରୂପୀ ଦଇତ୍ୟଙ୍କୁ ମାଇଲି ମୁଁ ଧରି
ତହିଁକି ଗୋବଧ ଦୋଷ ଦେଲୁ ନ ବିଚାରି ।
ତୋହର ଗୋବଧ ଦୋଷ କହିଣ ନ ଯାଇ
ସତ୍ୟଯୁଗ କଥା ଏବେ ଦେଉଛୁ ଚେତାଇ ।
ଯୋଗଲୟେ ବସିଥିଲୁ ତୁ ମେରୁ ଶିଖରେ
ବେଦମାତା କପିଳା ଯେ ଥାଇ ସେ ଠାବରେ
ତାହାର ବାଛୁରି ବୁଲି ବୁଲି ଯେ ଆସନ୍ତେ
କୁଶବଢ଼ି ଭକ୍ଷିଲା ଯେ ଆହାର ନିମନ୍ତେ ।
ଅଳପ ଦୋଷ ବହୁତ କୋପ ତୁ ଯେ କଲୁ
କପିଳା ଗାଈର ଅଙ୍ଗେ ତ୍ରିଶୂଳ ମାଇଲୁ ।
ଗୋମାତାର ଶିର ଦେବ ଛେଦି ପକାଇଲୁ
ମୋତେ ବୋଲିବାକୁ କପାଁ ଲାଜ ନ ପାଇଲୁ
ଭଇରବ ମୂରତି ତୁ ଧଇଲୁ ହୋ ହର
ସେ ମୁଣ୍ଡ ଗୋଟି ଲାଗିଛି କପାଳେ ତୋହର
ତୁ ପୁଣ ବୋଇଲୁ ମୋତେ ଦେବ ଶୂଳପାଣି
ଗୋପରେ ହରିଲୁ ତୁହି ସର୍ବ ଗୋପାଳୁଣୀ ।
ମାନବତା ଅଟନ୍ତି ସେହି ହେବେ ମଉଳାଣୀ
ତାହାଙ୍କୁ ରମିଲି ସତ୍ୟ ଦେଲେ କୁଶପାଣି ।
କହ୍ନା ଅବତାରେ ମୋତେ କରାଇଲେ ଜାତ
କଂସର ବଧ ନିମନ୍ତେ ଗୋପରେ ଉଦିତ ।
ଅନନ୍ତ ଶଯ୍ୟାରେ ମୋତେ ଦେବ ସ୍ତୁତିକଲେ
ବ୍ରହ୍ମା ଇନ୍ଦ୍ର ସର୍ବଭରେ ଏହା କହିଗଲେ ।
ଷୋଳସହସ୍ର ଗୋପକନ୍ୟା ରମିବ ବୋଇଲେ
ଗୋପପୁରେ କନ୍ୟାଗଣ ଜାତ କରାଇଲେ ।
ଗୋପୀଙ୍କି ହରଣ ମୁହିଁ କଲି ଦେବ କାର୍ଯ୍ୟ
ଏଥିକୁ ଜିଜ୍ଞାସ ମୋତେ କଲୁ ଦେବରାଜ ।
ତ୍ରିପୁର ବଧକାଳେ ତୁ କଲୁ ଯେତେ ସ୍ତୁତି
କହିଲେ ଯେ ନ ସରଇ ତୋହର ଅନୀତି ।
କେତୁକା ନାମେ ଯେ ଦେବୀ ଅନାଦି ଶକତି
ଆମ୍ଭର ଜନନୀ ସେହି ଅଟେ ମହାସତୀ ।
ତାହାଙ୍କ ଗର୍ଭେ ଜନ୍ମିଲୁ ଆମ୍ଭେ ତିନମୂର୍ତ୍ତି
ହରି ହର ବ୍ରହ୍ମାନାମେ ଲୋକେ ହେଲୁ ଖ୍ୟାତି
ତୁ ଦେବ ତାହାକୁ ପୁଣି ହରିଲୁ କେମନ୍ତେ
ମାତୃହରଣ ଦୋଷ କି ନ ଲାଗିଲା ତୋତେ ।
ପାର୍ବତୀ ଯେ ବାଟ ଗୃହିଁ ପଶିଲା ବହ୍ନି
ପ୍ରାଣ ବିସର୍ଜିଲା ତୋତେ ନ ଦେଖି ଭବାନୀ ।
ତୁହି ସେ ସକଳ ପାପ କରିଅଛୁ ଭଣ୍ଡ
ଗଳାରେ ଅଛି ତୋହର ପାର୍ବତୀର ମୁଣ୍ଡ ।
ତୁ ଯେ ସ୍ତ୍ରୀହତ୍ୟା ପାପ କଲୁ ସାକ୍ଷାତରେ
ଆପେ ଯେ ଅନୀତି କରି ନିନ୍ଦା କରୁ ପରେ ।
ମାତାଙ୍କ ଦୋଷ କହନ୍ତେ ପାର୍ବତୀଙ୍କ ବର
ତ୍ରିଶୂଳ ପିଟିଲେ ନେଇ ଶ୍ରୀକୃଷ୍ଣ ଉପର ।
ମୂର୍ଚ୍ଛା ଯାଇଁ ପଡ଼ିଲେକ ତହିଁ ଦେବ ହରି
ତା ଦେଖି କୋପେ ଧାଇଁଲେ ଦେବ ହଳଧାରୀ
ଗରୁଡ଼ ପିଠିରେ ନେଇ ଶୁଆଇଲେ ହରି
ସୌନନ୍ଦ ମୂଷଳ ରାମ ବେନିଭୁଜେ ଧରି ।
ସଦାନନ୍ଦଙ୍କ ସମ୍ମୁଖେ ମିଳିଲେ ସେ ଯାଇ
ନୀଳାମ୍ବର କୋପ ଦେଖି ଈଶ୍ୱର ଗୋସାଇଁ
ଶକତିଏ ପ୍ରହାରିଲେ ରାମଙ୍କୁ ସେ ନେଇ
ମାରନ୍ତେ ଧଇଲେ ସେହି ଶକ୍ତି ହଳସାଇଁ ।
କ୍ରୋଧଭରେ ଶକତିହିଁ ବୁଲାଇ ବୁଲାଇ
ସଦାନନ୍ଦଙ୍କୁ ମାଇଲେ ତାହା ଲେଉଟାଇ ।
ପ୍ରଚଣ୍ଡ ଶକତି ଦେଖି ଦେବ ତ୍ରିପୁରାରି
ଅବହେଳା କ୍ରମେ ସ୍ୱାମୀ ତ୍ରିଶୂଳେ ନିବାରି ।
ଶକତି ବିଅର୍ଥ ଦେଖି ରୋହିଣୀ ତନୟ
ପ୍ରଚଣ୍ଡ କାଳଅନଳ ଜାଣି ତେଜୋମୟ ।
ବାହୁଡ଼ି ଆସିବାବେଳେ ଦେବ ଶୂଳ ହସ୍ତ
ସମର୍ଥକ ହଳକୁ ସେ କରି କରଗତ ।
ରେଷେଣ ପିଟିଲେ ନେଇ ରେବତୀର ନାଥ
ତା ଦେଖି ବୃଷଭ ନେଇ ପାତିକଲ ମାଥ ।

ଶତଖଣ୍ଡ ହଳ ହୋଇ ପଡ଼ିଲାକ ଖଡ଼୍ଗ
ମୁଦ୍‌ଗର ଧରି ପିଟିଲେ ହର ଗୁଢ଼ ରଢ଼ ।
ପିଟନ୍ତେ ତା ସଂହାରିଲେ ରେବତୀର ପତି
ହୃଦରେ ପଡ଼ି ମୁଦ୍‌ଗର ଭାଙ୍ଗିଲା ତଡ଼ିତି ।
ସହସ୍ରେକ ଶର ହର ମୁଣରେ ବସାଇ
ନୀଳାମ୍ବର ଉପରକୁ ବନ୍ଧିଲେ କଠାଇ ।
ନୀଳାମ୍ବରଙ୍କ ଉପରେ ପଡ଼ିଲା ନାରାଚ
ତନେ ନ ଭେଦି ପଡ଼ନ୍ତି ପାଇଣ ସଂକୋଚ ।
ବିନ୍ଧିଲେ ପୁଣି ଲକ୍ଷେକ ଶର ତ୍ରିଲୋଚନ
ବଳରାମ ଦେହେ ପଡ଼ି ହୋଇଲା ଦହନ ।
ପୁନରପି କୋଟି କୋଟି କଲେ ଶରବୃଷ୍ଟି
ଦହିଲେ ତା ବଳରାମ ଚାହିଁ କୋପଦୃଷ୍ଟି ।
ନୀଳାମ୍ବର ହୃଦେ ଯହୁଁ ନ ଭେଦିଲା ଶର
ପେଷିଲେକ ଦେବଅସ୍ତ୍ରମାନ ଦେବହର ।
କୋପେ ପର୍ବତ ଶସ୍ତ୍ରକୁ ପେଷନ୍ତି ଶଙ୍କର
ତ୍ରୈଲୋକ୍ୟ ଭେଦିଲା ସେହି ମହାଭୟଙ୍କର
ଦେଖି ବକ୍ଷସ୍ଥଳ ପାତିଦେଲେ ଦେବହଳୀ
ହୃଦେ ପଡ଼ି ସେ ପର୍ବତ ହୋଇଗଲା ଧୂଳି ।
ପବନାଶର ମାଇଲେ ତ୍ରିପୁର ଅନ୍ତକ
ଦଗ୍‌ଧ ହେଲା ଯାଇ ରାମ ଚକ୍ଷୁର ଆଲୋକ ।
ଅଗ୍ନିବାଣ ମାଇଲେ ଯେ ପୁଣ ଉମାକାନ୍ତ
ଲାଗିଲା ସେ ବହ୍ନିଜ୍ୱାଳା ଆକାଶ ପର୍ଯ୍ୟନ୍ତ ।
ସଂସାର ଦହିବ କିବା ଏ ପ୍ରଳୟ କାଳ
ଶଙ୍କ ଦେଖି ଦେବଲୋକ ହୋଇଲେ ବିକଳ
ସ୍ତୁତି କରଣ ବୋଲନ୍ତି ସ୍ୱର୍ଗେ ସୁରଗଣ
ଅନଳ ନୟନ ବାଣ କର ସଂହାରଣ ।
ଦେବଲୋକଙ୍କ ବ୍ୟାକୁଳ ଦେଖି ସଂକର୍ଷଣ
ଆକର୍ଷି ଅନଳ ବାଣ କଲେ ସଂହରଣ ।
ଅଗ୍ନି ବିନାଶ ହେବାର ଦେଖି ପଶୁପତି
ପରଶୁ କୁଠାର ଯେନି ମାରନ୍ତି ବିକୋତି ।
ବିଇସ୍ତ୍ରବ ମୂର୍ତ୍ତି ଚାହିଁ ଧଇଲେକ ରାମ
କୋଟି କୋଟି ସିଂହ ପ୍ରାୟ ଯାର ପରାକ୍ରମ ।
ତାହାର ତୁଲେ କେ ରହି କରିବ ସଂଗ୍ରାମ
ଯାହାର ମହିମା ଦେବ ଦାନବେ ଅଗମ୍ୟ ।
ଈଶ୍ୱର ତୁଲେ ରାମର ଯୁଦ୍ଧ ଅଗୋଚର
ଆନ କେ ରହିବ ରଣେ ତାହାଙ୍କ ଆଗର ।

ପରମ ଯୋଗ ଲୟରେ ଯାର ମୂଳବନ୍ଧ
ତାହାକୁ ସମ ନୁହନ୍ତି ଦେବ ସଦାନନ୍ଦ ।
ଦୁଇ ଜଣ ଏକ ମୁଖେ କରୁଛନ୍ତି ଦ୍ୱନ୍ଦ
ଆକାଶେ ଥାଇ ଦେଖନ୍ତି ବୃନ୍ଦାରକବୃନ୍ଦ ।
ଅଲଘ୍ୟ ବାଣ ମାଇଲେ ସଦାଶିବ ନେଇ
ତାଳଧ୍ୱଜ ରଥୁ ରାମ ପଡ଼ିଲେକ ଡେଇଁ ।
ଯେସନେକ ମତ୍ତଗଜ ଗମଇ ମନ୍ଥରେ
ବିକ୍ରମି ଉଠିଲେ ଯାଇ ବୃଷଭ ପୃଷ୍ଠରେ ।
ମାଳବନ୍ଧେ ଶିବଙ୍କୁ ସେ ଧରି ବାମକରେ
ବିନ୍ଧାଣ ଗତରେ ଚାହିଁ ପଶିଲେ ସମରେ ।
ଧରାଧର ମରାମରି ପାଦେ ପ୍ରହାରନ୍ତି
ଏକକୁ ଆରେକ କେହି ଶଙ୍କା ନ କରନ୍ତି ।
ଅଶେଷ ଶେଷ ଅଟନ୍ତି ସେହି ବେନି ଜନ
ମହାଯୋଗ ମୂରତି ସେ ଗଗନଶୋଭନ ।
ବର୍ତ୍ତିରୂପେ ପ୍ରତ୍ୟକ୍ଷେ ସେ ଦେବ ନିରଞ୍ଜନ
ଅନାଦି ଯୋଗାଧ୍ୱି ଦ୍ୱିଲୋଚନ ତ୍ରିଲୋଚନ ।
ଅମର ପୁରୁଷଙ୍କର ଯୁଦ୍ଧେ ଅନ୍ୟୋଅନ୍ୟ
ଦେଖି ମହାଭୟ ପାଇ କମ୍ପିଲା ମେଦିନୀ ।
ବିମ୍ଭର ବୋଇଲା ଦେହ ଛାଡ଼ିବଇଁ ମୁହିଁ
ଏହାଙ୍କର ପାଦଘାତ କେ ପାରିବ ସହି ।
ବୃଷଭୁଁ ପଡ଼ିବେ ଯେବେ ହର କାମପାଳ
ଏ ମୋର ଦେହ ପଡ଼ିବ ଯାଇ ରସାତଳ ।
ଏସନ ବୋଲି କାନ୍ଦନ୍ତି ଦେବୀ ବସୁମତୀ
ବୃଷଭର ମୁଖ ଚାହିଁ ବଖାଣନ୍ତି ସ୍ତୁତି ।
ଆହେ ମହାବଳଦ ତୁ ଅଟୁ ଯୁଗପତି
ପ୍ରଚଣ୍ଡ ଅନଳ ଜାଣି ତୋହର ମୁରତି ।
ସଂସାର ମଣ୍ଡନ ହୁଏ ତୋର ପାଦତଳେ
ତ୍ରୈଲୋକ୍ୟ ତୁ ରଖିପାରୁ ତୋର ବୁଳବଳେ
ତୋହର ଯେ ପରାକ୍ରମ ଦେବେ ଅଗୋଚର
ସମାନ ନୋହିଲା ତୋତେ ମେରୁ ଗିରିବର
ଯେବେ ପ୍ରକାଶ କରିବେ ବିଶ୍ୱରୂପ ହର
ମହାରୁଦ୍ରଙ୍କର ଦେହ ହେଲା ମହାଭାର ।
ଦେବାସୁର ବ୍ରହ୍ମରେ ସେ ନୁହଇ ଆୟତ୍ତ
ନିଃଶ୍ୱାସରେ ଉଡ଼ିଯିବେ ଯେତେକ ପର୍ବତ ।
ସତ୍ୟ ତ୍ରେତା ଦ୍ୱାପର ଯେ କଳି ଚାରିଯୁଗ
ଚଉଦ୍ଦଶ ଗଣ୍ଡାରେଣ ମନୁ ଏକ ଭୋଗ ।

ବ୍ରହ୍ମକଳ୍ପେ ଏକଦିନ ହୁଅଇ ଯେ ଯୋଗ
ଚଉଦ ମନୁରେ ଏକ କଳ୍ପ ହୁଏ ଭୋଗ ।
ଏବେ କାଳେ ତୋ ବୟସ ଅଟେ ବ୍ରହ୍ମଯୁଗ
ପରମକାଷ୍ଠା ଯେ ତୋର ଦିଶ ସଦାଶିବ ।
ମହାପ୍ରଳୟରେ ନ ତୁଟଇ ତୋର କାୟେ
ଅଦ୍ଭୁତେ ମୁଖରୁ ଶୁଭେ ଶବଦ ହେ ମାଏ ।
ନିଦ୍ରା ମଇଥୁନ ଆଦି ସର୍ବ କଲୁ ତ୍ୟଜ୍ୟା
ଯେମକେ ଦେବତା ତୋତେ କରନ୍ତି ଯେ ପୂଜା
ଅନ୍ଧକ ଲୁଚିଲା ଯାଇ ମେରୁର ଭିତରେ
ଅଚଳ ପର୍ବତ ତୁହି ଖୋଳିଲୁ ଶୃଙ୍ଗରେ ।
ଅନ୍ଧକ ବାହାର ହେଲା ତୋ ଶୃଙ୍ଗରେ ଫୁଟି
ତ୍ରିଶୂଳ ପ୍ରହାର କରି ମାଇଲେ ଧୂର୍ଜଟି ।
ତୋତେ ଆଗ ପୂଜା ତାହାପରେ ସଦାଶିବ
ତୋତେ ସେବା କଲେ ସଦା ହୁଅଇ ଯେ ଶିବ ।
ବୃଷଭ ଛୁଇଁଲେ ଦେବ ହୁଅଇ ମୁକତି
କୋଟିତୀର୍ଥର ଫଳକୁ ଜନମାନେ ପାନ୍ତି ।
ସବୁକାଳରେ ଈଶ୍ୱର ପାଦେ ତୋର ମତି
ଅନନ୍ତ କୋଟି ଶିବ ଯେ ତୁ ଏକ ମୂରତି ।
ନିଃଶ୍ୱାସ ପବନ ତୋର ଚନ୍ଦ୍ର ସୂର୍ଯ୍ୟ ଆଖି
କୋଟିଏ ବ୍ରହ୍ମାଣ୍ଡ ତୋର ତେଜ ପ୍ରକାଶୁଛି
ଅଦ୍ଭୁତେ ବିଜୟ କରୁ ଘୁଡ଼ୁ ମନଖେଦ
କପିଳାସ ଗିରି ତୋର ଜନ୍ମ ଅଙ୍ଗ ଭେଦ ।
ମନ୍ଦର ସମାନ ତୋର ବଡ଼ି ଲୀଳ ମଳ
ସମସ୍ତେ ବୋଇଲେ ଏ ଅନାଦି ଯୋଗଫଳ ।
ମହାପ୍ରଳୟ କାଳରେ ତୁହି କଳ୍ପତରୁ
ସର୍ବଶସ୍ୟ ଚଳିଗଲା ତୋହର ମୁଖରୁ ।
କାଳକୂଟ କାମଦେବ ଭକ୍ଷିଲେକ ଯେବେ
ଧୂର୍ଜଟି ହେନ ଗଙ୍ଗାରେ ପଶିଲୁ ତୁ ତେବେ ।
ଅନେକ ବାହନ ଚଢ଼ିଯାନ୍ତି ନାନା ଦେବେ
ତୋହର ତୁଲ୍ୟରେ ପୂଜା ନପାନ୍ତି ସେ କେବେ
କାଳାନଳକୁ ନିନ୍ଦିଲା ତୋହର ସ୍ୱରୂପ
କାଳ ବଶ କରି କଲୁ ଶରୀରକୁ ଗୋପ୍ୟ ।
ତୋର ପିଠିରେ ଚଢନ୍ତି ଦେବଦେବ ଶୂଳୀ
ତୋହର ଶକ୍ତି କି ସହିପାରେ ମୋହ ଭଳି
ବଳରାମ ଈଶ୍ୱର ଯେ ଦୁହେଁ ମହାବଳୀ
ସହିବି କି ପଡ଼ିଲେ ସେ ମୋ ଉପରେ ଢଳି ।

ସଂଗ୍ରାମ ଦେଖି ମୋହର କମ୍ପୁଛି ହୃଦୟ
ନ ପୁଣ ମାଡ଼ ବସନ୍ତି ମୋତେ ହେନ କାୟ
ତେଣୁ ଭୟ ବ୍ୟାକୁଳରେ କରୁଅଛୁ ସ୍ତୁତି
ବ'ରେ ରକ୍ଷା କର ମୋର ଘେନଣ ଭକତି
ତାହାଙ୍କ ପଡ଼ନ୍ତେ ମୋର ଥିବ କି ଜୀବନ
ବାରେ ରକ୍ଷା କର ମୋତେ ଗୋକୁଳରାଜନ
ପୃଥିବୀ ବ୍ୟାକୁଳ ଦେଖି ବୃଷଭ ପ୍ରସନ୍ନ
ପିଠି ବିସ୍ତାରିଲା ଏକବିଂଶତି ଯୋଜନ ।
ତହିଁର ଉପରେ ରହି କରନ୍ତି ସେ ଯୁଦ୍ଧ
ନାନା ଗତିରେ ବିନ୍ଧାଣି ବଚନ ପ୍ରବନ୍ଧ ।
ଭୁଜେ ଭୁଜେ ଭିଡ଼ାଭିଡ଼ି ପାଦେ ଛନ୍ଦାଛନ୍ଦି
ବୃଷଭ ସହିଲା ମଲ୍ଲବିନ୍ଧା ଯୁଦ୍ଧ ବିଧି ।
ରୁଧିର ଗଳିଲା ତହୁଁ ରୋମେ ରୋମେ ଫୁଟି
କାହାର ହାତେ କାହାର ଜୀବନ ନ ତୁଟି ।
ଏକୁଁ ଏକ ମହାଯୋଦ୍ଧା ରୁଦ୍ର କାମପାଳ
ଅମର ପୁରୁଷେ ଦେଖି ହେଲେ ଅସମ୍ଭାଳ ।
ଶିରେ ଶିରେ କୋଡ଼ାକୋଡ଼ି କରି ପରିତାଳ
ଉଠିଲା ବହ୍ନି ଜ୍ୱାଳା ପାଇଲା କି ଜଳ ।
ଆକାଶେ ଲାଗିଲା ଯାଇ ଅଗ୍ନି ତେଜୋମୟ
ରବି ଶଶୀ ସହିତରେ ଦେବେ କଲେ ଭୟ ।
ଏକକୁ ଆରେକ ଯହୁଁ ନ ପାରିଲେ କେହି
ମେରୁଗିରି କମ୍ପିଲେକ ଚରାଚର ମହୀ ।
ଏଡ଼େବଡ଼ ମହାଭର ସେ ବୃଷଭ ସହି
ମେରୁ ପରାୟେ ଅଚଳ ହୋଇଅଛୁ ରହି ।
ସଂଗ୍ରାମ କରନ୍ତି ମହାଘୋର ବାରମ୍ବାର
ଆଣ୍ଠୁ ପିଠି ଗୃହନ୍ତି ସେ ହୁଆ ଦଣ୍ଡଧର ।
ଶସ୍ତ୍ରର ଘର ପଡ଼ନ୍ତେ ଶସ୍ତ୍ର ହେନ ଭିଡ଼ି
ପାଦେ ପାଦ ଭିଡ଼ନ୍ତି ସେ ହସ୍ତେ ହସ୍ତ ଭିଡ଼ି
ହୁଙ୍କାର ଶବଦ କରି ଉଠେ ଦେଲେ ରଡ଼ି
ରାମ ଉପରେ ବସିଲେ କାମଦେବ ମାଡ଼ି ।
ମହାକୋପ ପ୍ରକାଶିଲେ ହେନ ଯୋଗମୂର୍ତ୍ତି
ବଳରାମଙ୍କୁ ମାଇଲେ ବଜ୍ରସମ ମୁଷ୍ଟି ।
ବଳରାମଙ୍କର ବଳ ସିଂହ କୋଟି କୋଟି
ସେ ରାମ ସଦାଶିବଙ୍କୁ ଯୁଦ୍ଧେ ଗଲେ ହଟି ।
ଶୁଣ ମନୁ ନୃପତି ହୋ କହନ୍ତି ଯେ ମୁନି
ସମରେ ଅଚେତ ଯହୁଁ ହେଲେ ହଳପାଣି ।

ବୃଷଭ ଉପରୁ ପେଲି ପକାଇଲେ ହର
ନମସ୍କରିଲେ ରାମକୃଷ୍ଣ କୋପେ ରୁଦ୍ରଙ୍କର ।
ଯଦୁବଂଶ ଭୋଜବଂଶ ପଳାଇଲେ ଡରେ
ପ୍ରହାର କରନ୍ତି ଶିବଗଣ କୋପଭରେ ।
ମାର ମାର ବୋଲି ଯହୁଁ ବୋଇଲେ କପାଳୀ
ମୃଗସେନ ଦୈତ୍ୟଙ୍କୁ ଯେ ଦେଲେ ହର ଗାଳି
ତୋହର ଶତ୍ରୁଙ୍କୁ ମୁହିଁ ସଂହରିଲି ହେଲେ
ସୈନ୍ୟ ନ ମାରୁ କପାଇଁ ଗୋଡ଼ାଇ ଏବେ ଟେଳେ
ଶୁଣି ଦାନବେ ଧାଇଁଲେ ମହା କୋପଭରେ
ଯଦୁ ଭୋଜ ବଂଶକୁ ଯେ ଓଗାଳିଲେ ବଳେ ।
ନନ୍ଦୀ ଭୃଙ୍ଗୀ ଦୁହେଁ ଶିବଗଣ ସେନାପତି
ଓଗାଳି ମାଇଲେ ଧରି ମୁଷଳ ଶକତି ।
ମହାଘୋର ସଂଗ୍ରାମ ଯେ କରନ୍ତି ଗରଜି
ରଥୀ ରଥୀକୁ ମାରନ୍ତି ଅଶ୍ୱ, ଗଜ ସାଜି ।
ଯଦୁବଂଶୀ ଭୋଜବଂଶୀ ଯେତେ ଆସିଥିଲେ
ରାମକୃଷ୍ଣ ପଡ଼ନ୍ତେ ଯେ ଯାଇ ନ ପାରିଲେ ।
ସମରେ ପଡ଼ିଲେ ଥାଟ ନ ବର୍ତ୍ତିଲେ କେହି
ଯଦୁବଂଶ ସୈନ୍ୟମାନେ ମାରି ଘଉଡ଼ାଇ ।
ମଳେନ୍ଦ୍ରୀ କନ୍ୟାକୁ ଦେବ ଆଣିଲେ ଛଡ଼ାଇ
ବୃଷଭ ଉପରେ ତାକୁ ବସାଇଲେ ନେଇ ।
ବାହୁଡ଼ନ୍ତି ମହାଦେବ ଜୟନାଦ କରି
ସଂଗ୍ରାମ ଭୂମିରୁ ରୁଦ୍ର ଗଲେ ବିଜେକରି ।
କାର୍ତ୍ତିକ କୁମର ପଡ଼ିଅଛି ଯେଉଁଠାବେ
ତହିଁକି ବିଜୟ କରି ଯାନ୍ତି ସଦାଶିବେ ।
ବାହୁଣାରେ ବିଜେ କରିଅଛନ୍ତି ଯୁଧିଷ୍ଠି
ବେନି ପାଶେ ବସିଛନ୍ତି ଭୀମ ଯେ କିରୀଟି ।
ମିଳିଲେ ନାରଦ ମୁନି ଏମନ୍ତ ସମୟେ
ପାଦ ପୂଜା କଲେ ତାଙ୍କୁ ପାଣ୍ଡୁଙ୍କ ତନୟେ ।
କୃତାଞ୍ଜଳି ହୋଇ ରାଜା କହନ୍ତି ବଚନ
ସ୍ୱାଗତ ହୋଇ କପାଇଁ ହୋଇଲେ ମଉନ ।
କହ ହେ ମୁନି ଅମୃତ ରସମୟ କଥା
ଦ୍ୱାରକା ନଗର ରାମକୃଷ୍ଣଙ୍କ ବାରତା ।
କ୍ଷେମେ ଅଛନ୍ତି ନା ତହିଁ ହରି ବଳରାମ
ସମସ୍ତ କୁଶଳ କିନା କହ ତପୋଧନ ।
ନାରଦ ବୋଇଲେ ଶୁଣ ଧର୍ମଙ୍କ ତନୟ
ରାମକୃଷ୍ଣ ପାଇଲେ ତ ରଣେ ଅପଚୟ ।

ବିଭା ଅର୍ଥେ ଗଲେ ସେହି ବରୁଣ ନଗରେ
ପଡ଼ିଲେ ସେ ରାମକୃଷ୍ଣ ରୁଦ୍ର କୋପଭରେ ।
ପୁତ୍ର ବନ୍ଧୁ ସହିତରେ ସର୍ବେ ନାଶଗଲେ
ତାହା ଶୁଣି ଅଜ୍ଞାନରେ ଯୁଧିଷ୍ଠି ପଡ଼ିଲେ ।
ଟେକି ଧଇଲେକ କୋଳକରି ଭାଇବେନି
ଉଚ୍ଚେ ରୋଦନ କରନ୍ତି କୃଷ୍ଣ ଗୁଣ ଗୁଣି ।
ଶୋକଭର ହେଲେ ନର ନାରୀଏ ସକଳ
ସମୁଦ୍ର ମନ୍ଥନ ପ୍ରାୟେ ଶୁଭିଲା ଚହଳ ।
ନାରଦ ବୋଇଲେ ମୁହିଁ ମନ୍ଦକୃତ୍ୟ କଲି
ଏହା କହିବାକୁ କପାଁ । କପିଳାସ ଗଲି ।
କାର୍ତ୍ତିକ ପ୍ରଦ୍ୟୁମ୍ନ ଭେଟ କପାଁ କରାଇଲି
ରାମକୃଷ୍ଣ ସହିତରେ ସବୁ ହରାଇଲି ।
ଏଡ଼େ ଦ୍ୱନ୍ଦ୍ୱ ହେବ ବୋଲି ନାହିଁ ମୋର ଜ୍ଞାନ
ଏତେକ ବୋଲି ନାରଦ ହେଲେ ଅନ୍ତର୍ଦ୍ଧାନ
ଈଶ୍ୱରଙ୍କ ଦର୍ପ କେହୁ ପାରିବଟି ନାଶି
ଅର୍ଜ୍ଜୁନ ଜିଣି ପାରିବ ଏକା କାଶୀବାସୀ ।
ଏସନକୁ ଭାଳି ମୁନି ଶୀଘ୍ର ଚଳିଗଲେ
ହସ୍ତିନା କଟକେ ଯାଇ ପ୍ରବେଶ ହୋଇଲେ
ଆସ୍ଥାନରେ ବିଜେ କରିଅଛି ଦୁର୍ଯ୍ୟୋଧନ
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା କର୍ଣ୍ଣ ଦୁଃଶାସନ ।
ଶକୁନି ବାହ୍ଲିକ ଭୂରିଶ୍ରବାଙ୍କ ସହିତେ
ସାତ ସହସ୍ର ନୃପତି ଅନନ୍ତ ସମସ୍ତେ ।
ଅଷ୍ଟାଦଶ ଅକ୍ଷୌହିଣୀ ବଳହିଁ ସକଳ
ଲକ୍ଷେକ ଚାମର ଢାଳୁଛନ୍ତି ବୃନ୍ଦବାଳ ।
ଲକ୍ଷେ ପାଟଛତ୍ର ତହିଁ ଅଛଇ ଉପର
କୋଟିଏକ ବାଦ୍ୟକାର ବାଦ୍ୟନାଦକାରୀ ।
ଶବଦ ଶୁଭୁଛି ସପ୍ତସିନ୍ଧୁ ଘୋଷ ଘୋର
ଦକ୍ଷିଣ ଚମ୍ପ ଆଉଜି ବସିଛି ନୃବର ।
ନାରଦ ମିଳିଲେ ଯାଇଁ ଏହି ସମୟରେ
ପାଦ୍ୟଅର୍ଘ୍ୟ ଦେଇ ପୂଜା କଲେ କୁରୁରାରେ
କୃତଅଞ୍ଜଳି ପୁଟରେ ପୁଚ୍ଛନ୍ତି ବଚନ
କହ ମୁନିବର କିସ ଅର୍ଥେ ଆଗମନ ।
ଦ୍ୱାରକାପୁର ବାରତା କହ ସୁବଧାନେ
କ୍ଷେମେ ଅଛନ୍ତି ନା ତହିଁ ହରି ବଳରାମେ ।
ନାରଦ ବୋଇଲେ ଭୂହୋ ଶୁଣ କୁରୁରାୟେ
ରାମକୃଷ୍ଣ କ୍ଷୟ ଗଲେ ବରୁଣ ଆଳୟେ ।

ରୁଦ୍ର କୋପେ ନାଶଗଲେ ଯଦୁ ଭୋଜବଂଶ
ଶୁଣି ଦୁର୍ଯ୍ୟୋଧନ ମୂର୍ଚ୍ଛା ଗଲା ପାଇ ତ୍ରାସ ।
ନାରଦ ବୋଇଲେ କେତେ କାନ୍ଦୁ ଶୋକଭରେ
ରାମ କୃଷ୍ଣଙ୍କୁ ବଞ୍ଚାଇ ଆଣ ଯାଇ ବାରେ ।
ରୋଦନ ତେଜ ନୃପତି ବୋଲେ କୋପକରି
କେମନ୍ତେ ନ ଯିବା ଆମ୍ଭେ ରାମ କୃଷ୍ଣ ମରି ।
ବଳରାମ ବଧେ ମୋର ପୋଡ଼ୁଛି ଜୀବନ
ସଦାଶିବ ସଙ୍ଗେ ଯୁଦ୍ଧ କରିବା ବହନ ।
ଏ କାଳେ ଯୁଧିଷ୍ଠି ଆସି ମିଳିଲେକ ତହିଁ
ଦୁର୍ଯ୍ୟୋଧନ ରାଜା ବୋଲେ ଯୁଧିଷ୍ଠିଙ୍କୁ ଚାହିଁ
ତୁମ୍ଭେ ଦଣ୍ଡ ସାଜ ଆସ ଯିବା ହୋ ତୁରିତ
ରାମକୃଷ୍ଣ ବର୍ତ୍ତିଲେଟି ରହିବ ଭାରତ ।
ଯୁଦ୍ଧରେ ଜିଣିବା ଯେବେ ହରିବନା ଭାଗ୍ୟ
ନୋହିଲେ କରିବା ତାଙ୍କ ସଙ୍ଗେ ଉଦ୍‌ଯୋଗ
ତେବେ ଆମ୍ଭର ହରିବ ଯିନା ଉପକାର
ଯୁଧିଷ୍ଠି ବୋଇଲେ ଏହା ଆମ୍ଭର ବିଚାର ।
ଏତେ ବୋଲି ସମଦାଣ୍ଡି ସାଜିଲେ ଅପାର
ତୁରଙ୍ଗମ ସଜ କଲେ ଷଉଣୀ ଅଠର ।
ଲକ୍ଷ ଲକ୍ଷ ଉଡ଼ାଇଲେ ରଥେ ଧ୍ୱଜଚିହ୍ନ
ନୃପତିର ସଙ୍ଗେ ସାତସହସ୍ର ସଇନ୍ୟ ।
ମର୍ଦ୍ଦଳ କଂସାଳ ଶତସହସ୍ରର ଧ୍ୱନି
ବାଦ୍ୟ ନାଦ ଶବଦରେ କମ୍ପିଲା ମେଦିନୀ ।
ଅନେକ ଥାଟ ସମ୍ଭାର ସଙ୍ଗତରେ ଦେନି
ଅଙ୍ଗଛଲେ କଉରବ ପାଣ୍ଡବ ଏ ବେନି ।
ବନ କନ୍ଦର ପୂରିଣ ଥାଟ ଚଳିଗଲେ
ତାହା ଦେଖିଣ ନାରଦ ଅନ୍ତର୍ଦ୍ଧାନ ହେଲେ ।
ବେଗେ ଯାଇଁଣ କହିଲେ ଈଶ୍ୱରଙ୍କୁ ଚାହିଁ
କୁରୁ ପାଣ୍ଡବ ଅଇଲେ ନିଜ ବଳ ବାହି ।
ତାହା ଶୁଣି ସଦାଶିବ ପଚ୍ଚରନ୍ତି ରହି
କୌରବେ ଅଇଲେ ଯେବେ ରାମକୃଷ୍ଣ ପାଇଁ
ତାହାଙ୍କ ନିମନ୍ତେ ଶଙ୍କା ନାହିଁ ମୋର ମନ
ଥାଟରେ ଅଛଇ କିନା ପାଣ୍ଡବ ଅର୍ଜ୍ଜୁନ ।
ନାରଦ ବୋଇଲେ ସେହି କୃଷ୍ଣ ପଞ୍ଚଭୂତ
ସେ ମଧ୍ୟ ଆସୁଅଛଇ ଘେନି ଧର୍ମସୁତ ।
ସଂଗ୍ରାମ କରିବ ନିଶ୍ଚେ ତୁମ୍ଭ ସଙ୍ଗେ ଆଜ
କୃଷ୍ଣ ବଳଦେବଙ୍କର ଉଦ୍ଧାରିବ ଲାଜ ।

ନାରଦ ବଚନ ଶୁଣି କପାଳୀ ଆଶ୍ଚର୍ଯ୍ୟ
ଷଣ୍ଢୀପଣ ଛାଡ଼ିଲଇଁ ଗଲା ବଳବୀର୍ଯ୍ୟ ।
ବୃଷଭ ପିଠିରୁ ବେଗେ ଓହ୍ଲାଇଲେ ଖରେ
ଧନୁଶର ପକାଇଲେ ଅର୍ଜ୍ଜୁନର ଡରେ ।
ତ୍ରିଶୂଳ ଶକତି ଦେବ ନ ଧଇଲେ କରେ
ନିଶସ୍ତ୍ର ହୋଇଣ ଊଭା ହୋଇଲେ ଭୂମିରେ ।
ନାରଦ ବୋଇଲେ ତୋର ଏ କି ବିପରୀତ
ଧନୁଶସ୍ତ୍ର ପକାଇଲେ କମ୍ପା ହୋଇ ଭୀତ ।
ସଂସାର ସୁନ୍ଦର ତୁ ଯେ ମାଇଲୁ ମଦନ
ତ୍ରିପୁର ଅନ୍ଧକାସୁର କଲୁ ନିସୂଦନ ।
ପାତାଳ ପୁରେ କେତୁକାସୁରକୁ ତୁ ବଧି
ଦଇତଙ୍କ ଶର ତୋର ଶରୀରେ ନ ଭେଦି
ଦର୍ପିଷ୍ଟ ଦାନବଗଣ କଲୁ ତୁହି ହତ
ଅଦ୍ଭୁତ ଦେବତା ତୋତେ ବୋଲନ୍ତି ଜଗତ
ଏବେ କିପାଇଁ ନିସତେ ଚମକିତ ତୋ ମନ
ଅର୍ଜ୍ଜୁନ ଆଗମେ କମ୍ପା ହେଲୁ ବଳହୀନ ।
ସଦାଶିବ ବୋଇଲେ ତୁ ଶୁଣ ମହାମୁନି
ସଂଗ୍ରାମେ ପାର୍ଥକୁ ସରି ନୁହଇ ମୁଁ ଜାଣି ।
ନାରଦ ବୋଇଲେ କେବେ ତୋତେ ଅଛି ଜାଣି
ମନୁଷ୍ୟ ମାନଙ୍କେ ଅଛି ଏଡ଼େ ଭୟ ଘେନି ।
ଏହାର କାରଣ ମୋତେ କହ ସଦାନନ୍ଦ
ଈଶ୍ୱର ବୋଲନ୍ତି ଏବେ ଶୁଣ ହୋ ନାରଦ
ବିନୋଦ କରନ୍ତେ ନିଦ୍ରା ଯାଇଲି ମୋ ଘଟେ
ଜଳ ଖାଇବାକୁ ଗଣ୍ଡା ଗଲା ଜଳତଟେ ।
କିରାତ ରୂପରେ ପାର୍ଥ ଜଗିଥିବା ଘାଟେ
ଦେଖିଲା ସେ ଗଣ୍ଡାଗୋଟି ଯାଉଅଛି ବାଟେ ।
ଧାମଣା କାଠର ଧନୁ ଧରିଣ କୀଭଯ
ହସ୍ତରେ ଧରି ଅଛଇ ଫିରିକ ନାରାଚ ।
ସେହି ନାରାଚ ଧନୁରେ ବସାଇଲା ବୀର
ଉପରେ ପଡ଼ନ୍ତେ ଗଣ୍ଡା ପଡ଼ିଲା ଭୂମିର ।
ତାହା ଦେଖି ପାର୍ବତୀର ଅସ୍ଥିର ଜୀବନ
ରୋଦନ ଶୁଣନ୍ତେ ମୋର ବସିଲା ଚେତନ ।
ଉମାକୁ ବୋଇଲି କିପାଁ କାନ୍ଦୁ ଭୂମି ଲୋଟି
ପାର୍ବତୀ ବୋଇଲେ ମଲା ମୋର ଗଣ୍ଡାଗୋଟି
ତାହା ଦେଖିଣ ମୋହର ଅସ୍ଥିର ଜୀବନ
ଗଣ୍ଡା କେ ମାଇଲା ମୋର ଦେଖ ତ୍ରିଲୋଚନ

ତାହା ଶୁଣି ମୁହିଁ ଗଲି ହୋଇ ଅନ୍ତରାଳ
ଦେଖି ବୋଇଲି ଶବର ପୂରିଲା ତୋ କାଳ
ଏ ମୋହର ଗଣ୍ଡାକୁ ରେ ମାଇଲୁ ଚଣ୍ଡାଳ
ନିଜ ପହୀଠାରୁ ମୁହିଁ ପାଇଲି ଜଞ୍ଜାଳ ।
ତୁକାର ବଚନ ପାର୍ଥ ନ ସହିଲା ରାଗେ
ମୁହିଁ ମାଇଲି ବୋଲି ସେ ମିଳିଲା ମୋ ଆଗେ
ପ୍ରତିଜ୍ଞା ବଚନ ଶୁଣି କୋପେ ମୁଁ ପ୍ରଚଣ୍ଡ
ବଜ୍ରପ୍ରାୟ ମାଇଲି ମୁଁ ନେଇ ଭୁଜଦଣ୍ଡ ।
କୋପେ ପାର୍ଥ ପ୍ରଜ୍ୱଳିତ ହୋଇ ଲଣ୍ଡଭଣ୍ଡ
ଲଗାଇଲା ମୋର କଣ୍ଠତଟରେ କୋଦଣ୍ଡ ।
କଣ୍ଠତଟେ ମଲ୍ଲଦଣ୍ଡ ଦେଇ ବୁଲାଇଲା
ଏ ମୋହର ପଞ୍ଚମୁଖୁ ରୁଧିର ଗଳିଲା ।
ସଂଗ୍ରାମେ ଯହିଁ ହୋଇଲି ମୁଁ ଅତି କାତର
ତରେ ବୋଇଲି ରେ ବୀର ମାଗ କିନା ବର ।
ଆମ୍ଭେ ଅଟୁ ଆରେ ତ୍ରିପୁରାନ୍ତକ ଈଶ୍ୱର
ମନର ସନ୍ତୋଷେ ମୁହିଁ ଯାଚିଲଇଁ ବର ।
ତାହା ଶୁଣି କମ୍ପମାନ ହେଲା ଧନୁର୍ଦ୍ଧର
ଧନୁ ଶରକୁ ପକାଇ ଯୋଡ଼ି ବେନିକର ।
ନ ଜାଣି ଦୋଷ କଲଇଁ ମୁହିଁ ଦେବସ୍ୱାମି
ସଂସାର ସମ୍ପଦ ମୋହେ ପଡ଼ି ମୁହିଁ ଭ୍ରମି ।
ପାର୍ଥକୁ ବୋଇଲି ତୋର କିଛି ଭୟ ନାହିଁ
ଆମ୍ଭଙ୍କୁ ଜିଣିଲୁ ବୀର ସମର୍ଥ ପଣେହିଁ ।
କିସ ନାମ ତୋହର ତୁ କାହାର ନନ୍ଦନ
ପୁଚ୍ଛନ୍ତେ କହିଲା ମୁହିଁ ପାଣ୍ଡବ ଅର୍ଜ୍ଜୁନ ।
ଶଙ୍କର ବୋଇଲି ମୋତେ ଜିଣିବ କେ ଆନ
ବହୁତ ପ୍ରଶଂସା କରି କଲି ସନମାନ ।
ସନ୍ତୋଷେ ବର ମାଗ ତୁ ପଣ୍ଡୁର ନନ୍ଦନ
ତାହା ଶୁଣିଣ ବୋଲଇ ଯୁଧିଷ୍ଠିର ସାନ ।
ସତେ ଯେବେ ବର ମୋତେ ଦେବୁ କୃତ୍ତିବାସ
ସ୍ନାନ ଶୁଦ୍ଧମନ୍ତ ହୋଇ ବେଗେ ତେବେ ଆସ
ଶଉଚବନ୍ତ ହେବାକୁ ବେଗେ ମୁହିଁ ଯାନ୍ତେ
ପାର୍ବତୀ ତହିଁ ତାହାକୁ ବୋଇଲେ ଏକାନ୍ତେ
କି ବର ଅର୍ଜ୍ଜୁନ ତୁହୋ ମାଗିବୁ ଯୁକତେ
ମୁହିଁ କିଛି ନ ଜାଣଇ ମାଗିବ କେମନ୍ତେ ।
ପାର୍ବତୀ ବୋଇଲେ ତୁ ହୋ ଶୁଣ ବୀର ପାର୍ଥ
ଈଶ୍ୱର ଦେବଙ୍କୁ ମାଗ ଅସ୍ତ୍ର ପାଶୁପତ ।

ସ୍ୱାମୀ ହୋଇ ନ ଜିଣିବେ ତୋତେ ଭୂମିଭାଗେ
ହରିହର ବ୍ରହ୍ମା ଆଦି ନ ଜିଣିବେ ସ୍ୱର୍ଗେ ।
ଏସନକ ଉମା ତାକୁ କହିଲେ ମଣାଇ
ସ୍ନାନ ସାରିକରି ଆମ୍ଭେ ହୋଇଲୁ ଯେ ତହିଁ ।
ବୋଇଲୁ ବର ମାଗ ହୋ ଯୁଧିଷ୍ଠିର ଭାଇ
ହସିଲେ ପାର୍ବତୀ ଦେଖି କରତାଳି ଦେଇ ।
ଯୁଦ୍ଧେ ହାରି ଆସି ବର ଯାଚୁଛ ଗୋସାଇଁ
ଏପରି ପୁରୁଷସିଂହ କାହିଁ ଦେଖା ନାହିଁ ।
ଅର୍ଜ୍ଜୁନ ବୋଇଲା ତହିଁ ଯୋଡ଼ି ବେନିକର
ପାଶୁପତ ଦେବ ମୋତେ ତ୍ରିପୁର ଈଶ୍ୱର ।
ତାହା ଶୁଣି ଶଙ୍କର ମୁଁ କଲଇ ମନର
ନିଶ୍ଚୟ ପାର୍ବତୀ କହିଦେଲେ ଏହି ବର ।
ନାସ୍ତିକରି ନ ପାରି ମୁଁ ଦେଲି ସେହି ବାଣ
ମୁହିଁ ଯେ କୂଟ ରଚିଲି ନାରଦ ହୋ ଶୁଣ ।
ପାର୍ବତୀ ମୁଖକୁ ଚାହିଁ ବୋଲଇ ଏସନ
ଅର୍ଜ୍ଜୁନ ହେଲା ଆମ୍ଭର ଧର୍ମର ନନ୍ଦନ ।
ଆମ୍ଭେ ଦେଲୁ ବର ଏବେ ତୁମ୍ଭେ ଦିଅ ବର
ଯାବତକାଳକୁ କଥା ଥିବ ନା ଆମ୍ଭର ।
ହସି ସେ ଦୁର୍ଗା ବୋଇଲେ ମାଗୁକିନା ବର
ଶଉଚ ହୋଇ ଆସନ୍ତୁ ବୋଇଲାକ ବୀର ।
ସ୍ନାନ କରିବାକୁ ଦୁର୍ଗା ଗଲା ନଦୀ ତୀର
ମୁଁ ବୋଇଲି ପାର୍ବତୀଙ୍କୁ ମାଗିବୁକ ବର ।
ଅର୍ଜ୍ଜୁନ ବୋଇଲା ଦେବ ଶୁଣ ଶୂଳଧର
ମୁଁ କିସ ମାଗିବି ମୋର ଅଜ୍ଞାନ ଶରୀର ।
ତୁମ୍ଭଙ୍କୁ ମାଗିଲି କହିଦେଲେ ମାହେଶ୍ୱରୀ
ତୁମ୍ଭେ ଏବେ କହିଦିଅ ମାଗେ ହେତୁକରି ।
ପୁଚ୍ଛନ୍ତେ କହିଲୁ ତାକୁ ନରଖି ସଂଶୟ
ତୁ ଯାହା ମାଗିବୁ ଏବେ ଶୁଣ ଧନଞ୍ଜୟ ।
ସତ୍ୟଯୁଗେ ଅଗ୍ନିରୁ ଏ ହେଲା ପୁଣି ଜାତ
ତ୍ରିଦଶ ଦେବତା ନାମ ଦେଲେ ଦୁର୍ଗାମାତ ।
ଶତ ସୂର୍ଯ୍ୟ ଜ୍ୟୋତି ଘେନି ବହିଲା ଶରୀର
ମଣିକୁଣ୍ଡଳର ଏହା ହୃଦୟର ହାର ।
ଏସନ ରୂପେ ଅଗ୍ନିରୁ ଏହି ଅବତରି
ଅସୁର ସୈନ୍ୟକୁ ଦେବଶସ୍ତ୍ର ଏ ପ୍ରହାରି ।
ଏସନକ ଶର ସବୁ କଲା ସେ ଆଧାନ
ଦଇତ୍ୟକୁ ନ ଅଣ୍ଟିଲା ଦେବଶରମାନ ।

ଅକ୍ଷୟ ତୂଣୀର ଦେଖି ଅଙ୍ଗୁ କଲେ ଜାତ
ଅନୁକ୍ଷଣ ଶରବୃଷ୍ଟି କଲେ ଶତ ଶତ ।
ତେଣେ ସେ ଅସୁରବଳ କଲେକ ନିପାତ
ଚଉରାଶୀ ଅକ୍ଷୌହିଣୀ ସବୁ କଲେ ହତ ।
ଚଉରାଶୀ ଦିବସରେ ମହୀଷା ସେ ମଲ
ଅକ୍ଷୟ ତୂଣୀରୁ ବାଣ ତେବେ ନ ସରଲା ।
ସେ ଅକ୍ଷୟ ତୂଣୀ ଏବେ ମାଗ ଧନଞ୍ଜୟ
ଦେବାସୁର ବ୍ରହ୍ମାଙ୍କୁ ନ ଥାଉ ତୋର ଭୟ ।
ସ୍ମାନସାର ଦେଖି ମିଳି ଏସନ ସମୟେ
ବୋଇଲେ ତୁ ବର ମାଗ ଇଚ୍ଛା ଯାହା ହୁଏ
ପ୍ରଣାମ କରଣ ପାର୍ଥ ଯୋଡ଼ି ବେନିକର
ଅକ୍ଷୟ ତୂଣୀର ଦିଅ ମାଗେ ଏହି ବର ।
ଶୁଣି ଦୁର୍ଗା ବୋଇଲେ ଯେ କର ଦୁଃଖମନ
ଏଡ଼େ କୁଟ କଥା କପାଁ କହିଲ ଈଶାନ ।
ପରକୁ ଯେ ଦେଉଅଛ ଆପଣାର ବଳ
ଉମାଙ୍କୁ ବୋଇଲୁ ତୁମ୍ଭେ ଆଗେ କଲ ଖଳ
ଲଜ୍ଜାପାଇ ଦେଖି ସେହି ତୂଣୀରକୁ ଦେଲେ
ଶତେକ ଈଶ୍ୱର ତୋତେ ନ ଜାଣୁ ବୋଇଲେ
ଅକ୍ଷୟ ତୂଣୀର ପାଶୁପତ ସେ ପାଇଲା
ତିନିପୁରେ କ୍ଷତ୍ରୀ ତାକୁ ଜଣନ୍ତା ନୋହିଲା ।
ଅନ୍ୟୋଅନ୍ୟ ହୋଇ ତାକୁ ଦେଇଅଛୁ ବର
ତେଣୁ ସିନା ନାରଦ ହୋ ଅର୍ଜୁନକୁ ଡର ।
ଦେବର୍ଷି ବୋଇଲେ ବର ଦେଇଛ ଆପଣ
ତେଣୁ ସଂଗ୍ରାମେ ଛାଡ଼ିଲୁ ଶସ୍ତ୍ର ତେଜ ପଣ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ପାର୍ଥ ହିଁ ଧାରଣ
ନିସତ ହୋଇ ଭାବିଲୁ ନ କରିବୁ ରଣ ।
କେବା ତାର ମୁଖେ ପଡ଼ି ଯିବାକୁ ଉବୁଜ
ବ୍ରହ୍ମାଣ୍ଡ ମଧ୍ୟରେ ପାର୍ଥ ଏକା ଧନୁର୍ଦ୍ଧାରୀ ।
ବିଶ୍ୱନାଥ ବୋଇଲେକ ଏସନକ କଥା
ତାହାକୁ ସମରେ ଆମ୍ଭେ ନୋହୁ ସାମରଥା ।
ଏସନ ବଚନ ଶୁଣି ରାଜା ବସୁବୀର
ମୃଗସେନ ଆଦି ଥିଲେ ଯେତେକ ଅସୁର ।
ବୋଇଲେ ତାହାକୁ ଭୟ ନ କରିବା ହର
ଆମ୍ଭେ ତାହା ଆଗେ ରହି କରିବୁ ସମର ।
ଅସୁରଙ୍କର ଭରସା ପାଇ ଦେବଶୂଳୀ
ବୃଷଭରେ ବଜେକଲେ ନିଜଟା ମଉଳି ।

ଏଥୁଅନ୍ତେ କଉରବେ ପାଣ୍ଡବ ଏ ବେନି
ରହିଲେ ଶିବଙ୍କ ଆଗେ ଯାଇ ସୈନ୍ୟ ଘେନି
ଦେଖନ୍ତି ଅମ୍ବରେ ରହି ଦେବେ ସର୍ବ ମୁନି
ଖୁରରେଣୁ ଘାତେ କମ୍ପୁଅଛଇ ମେଦିନୀ ।
ଯେ ଯାହାର ମୁଖେ ଭେଟ ହେଲେ ସୈନ୍ୟଦଣ୍ଡ
ଆକାଶେ ଲୁଚିଲେ ଶରତେଜ ମାରତଣ୍ଡ ।
କୁରୁଥାଟେ ଆଗୁଆଣି ରାଜା ଦୁର୍ଯ୍ୟୋଧନ
କୋଟିଏକ ଯୋଦ୍ଧା ଘେନି ଧାଇଁ ମୃଗସେନ
ଦୁର୍ଯ୍ୟୋଧନ ଜୁଝିଲେ ତାର ଯୁଦ୍ଧ ଗୁରୁତର
ଦଶସହସ୍ର ଯୋଦ୍ଧାଙ୍କୁ ଘେନି ଦୁଃଶାବୀର ।
ସହସ୍ରେ ନାରାଚ ଘେନି ରାଜା ମୃଗସେନ
ଦୁଃସାଶନ ଉପରକୁ ବିନ୍ଧିଲା ବହନ ।
କଳାମେଘ ଯେସନ୍ତେ ବେଗେ ଗମିଯାନ୍ତି ଶୂନ୍ୟେ
ଅପ୍ରମିତହିଁ ନାରାଚ ଦିଶଇ ତେସନେ ।
ବାରିଲ ଶରକୁ ବେଗେ ଦୁଃଶାସନ ସନ୍ଧି
ପୁଣି ତୀକ୍ଷ୍ଣ ବାଣ ରାଜା ମୃଗସେନ ବିନ୍ଧି ।
ହେଲେ ନିବାରିଲା ତାହା ଦୁଃଶାସନ ବୀର
କୋପେ ଅନ୍ଧକାର ଶର ବିନ୍ଧିଲା ଅସୁର ।
ଶରୀରେ ପଡ଼ି ସେ ବାଣ ରୋମେ ରୋମେ ଫୁଟି
ପଡ଼ିଲାକ ଦୁଃଶାସନ ପ୍ରାଣ ଗଲା ଛୁଟି ।
ଦୁର୍ଯ୍ୟୋଧନର ସୋଦର ପ୍ରାଣ ବିସର୍ଜନ୍ତେ
ଭୀଷ୍ମ ମହାରଥୀ ଦେଖି କୋପକଲେ ଚିତ୍ତେ ।
ଦୈତ୍ୟର ପାଖକୁ ବୋଲି ରଥବାହି ନେଲେ
ଆରେ ଆରେବୋଲିକୋପେବାଣଛାଡ଼ିଦେଲେ
ଅସଂଖ୍ୟ ନାରାଚ ଭୀଷ୍ମ କୋପେଣ ମାଇଲେ
ଅସୁରଙ୍କ ହୃଦେ ପଡ଼ି ଅଗ୍ନି ଝଲକଲେ ।
ମୁଦ୍‌ଗର ପିଟିଲେ ନେଇ ଦୁର୍ବାର ଅସୁର
ଭୀଷ୍ମଙ୍କର ରଥ ଭାଙ୍ଗି କଲା ଶତଚୂର ।
କୋପେଣ ଦୈତ୍ୟ ଗୋଡ଼ାଇ ଗଲା କଷ୍ଟ ଦୂର
ବେଗେ ଗଦା ପ୍ରହାରିଲା ସାରଥି ଉପର ।
ସାରଥି ନିଧନ ଦେଖି ଭୀଷ୍ମ ରଣେ ଭଙ୍ଗ
ଦ୍ରୋଣ ତପୋଧନ ଆସି ମିଳିଲେ ଗରଜି ।
ଡାକ ହାକ ଦେଇ ଗୁରୁ କରନ୍ତି ସମର
ଯେସନେକ ଜଳବୃଷ୍ଟି କଲେ ସୁରେଶ୍ୱର ।
ତେସନ ନାରାଚ ବୃଷ୍ଟି କଲେ ନିରନ୍ତର
ଦିଶନ୍ତି ଅନଳ ପ୍ରାୟେ ଦ୍ରୋଣଙ୍କର ଶର ।

ଭଗ୍ନହେଲେ ଶରସବୁ ଦୈତ୍ୟ ଅଙ୍ଗେ ବାଜି
ଧାମନ୍ତି ଦଇତେ କୋପେ ସଂଗ୍ରାମେ ଗରଜି
ପାଞ୍ଚକୋଟି ଯୋଦ୍ଧା ମୃଗସେନ ବୀର ଜୁଟଲେ
ଦ୍ରୋଣଙ୍କ ମୁଖେ ପଡ଼ିଲେ ଆସି ରଣଗୋଳେ
କର୍ଣ୍ଣ ମହାରଥୀ ଦେଖି ଧାଇଲେକ ଖଙ୍ଗ
ସଂଗ୍ରାମେ ମିଳିଲେ ଯାଇ ନୃପତିର ଆଗ ।
ବଇଷ୍ଟଖି ଗଦା ଘେନ ରାଜା ବସୁବୀର
କୋପେଣ ପିଟିଲା ଦୁଇ ରଥୀଙ୍କ ଉପର ।
ରଥ ଭାଙ୍ଗି ଗଲା ଭୂମିଗତ ବେନ ବୀରେ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଯହୁଁ ପଡ଼ିଲେ ସମରେ ।
ଯୁଦ୍ଧକୁ ଅସୁର ବୀର ନ କରନ୍ତି ଭୟ
ରଥୀ ହାତୀ ପଦାତିଙ୍କୁ ମାରି କଲେ କ୍ଷୟ ।
ନସୈନ୍ୟବଳ ହତ ଦେଖି ଦ୍ରୋଣଙ୍କ ତନୟ
ସୈନ୍ୟ ପଛ କରି ଆଗେ ଚଳାଇଲା ହୟ ।
ବାହ୍ଲୀକ ସେ ସୋମଦତ୍ତ ଶଲ୍ୟଙ୍କ ସହିତେ
ଅସୁରଙ୍କ ଭୁଲେ ଯୁଦ୍ଧ କଲେ କୋପଚିତ୍ତେ
ଏମନ୍ତ ସମୟେ ଯାଇ ରାଜା ବସୁବୀର
ଶୃଳଶ ଲକ୍ଷ ଯୋଦ୍ଧାଙ୍କୁ ଘେନ ସଙ୍ଗତର ।
ଗାଢ଼େଣ ପଶିଲା ଯାଇ ସଂଗ୍ରାମ ଭିତର
ରହି ଗୋଳଯୁଦ୍ଧ କଲେ ମିଳି ନିଶାଚର ।
ଛତ୍ରିଙ୍କୁ ଖଡ଼ଗ ଧରି ବେଗେ ପ୍ରହାରନ୍ତି
କଉରବ ବଳଙ୍କୁ ସେ ଭୟ ନ କରନ୍ତି ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ହେ ରାଜନ
ହରିହର ଚରିତକୁ ହୁଅ ସାବଧାନ ।
ହରିହର ଚରିତ ଏ ଯେ ପବିତ୍ର ଆଖ୍ୟାନ
ଶୁଣନ୍ତେ ମୁକତ ହେବୁ ଭାରତ ପୁରାଣ ।
ଅପାର ରଣ ହୋଇଲା ହରିହରଙ୍କର
ଶୂନ୍ୟପଥେ ରହିଛନ୍ତି ଦେବ ଦିବାକର ।
ଅପ୍ରମିତ ଯୁଦ୍ଧ ଦେଖି ଦେବ ଦେବରାୟ
ବଜ୍ର ପେଷି ବଜ୍ର କଲେ ଦୈତ୍ୟଙ୍କର କାୟ
ଦ୍ୱିଗୁଣ ଅସୁର ସୈନ୍ୟ ତେଜ ଗଲା ବଢ଼ି
ରଣ ରସକ୍ରୀଡ଼ା କଲେ ହୋଇ ସିଂହରଡ଼ି ।
କୁରୁବଳ ସେନାପତି ପଡ଼ିଲେ ସମରେ
ଧନୁ ଧରେଣ ନାଗର ବନ୍ଧିଲେ ଅସୁରେ ।
ସ୍ୱର୍ଗପୁରେ ରହି ଚାହିଁଅଛନ୍ତି ବବୁଧେ
ପଳାଇଲେ କୁରୁସୈନ୍ୟ ନ ରହିଲେ ଯୁଦ୍ଧେ ।

ସୈନ୍ୟଭଗ୍ନ ଦେଖି କୋପେ ଧାଇଁଲେ ରାଜନ
ରୁହ ରୁହ ବୋଲି ଗୋଳକଲେ ଦୈତ୍ୟସୈନ୍ୟ
କୁରୁପତି ସଙ୍ଗତରେ ଅଛନ୍ତି ଭୂପାଳେ
ରଣ ଭୂମିକୁ ଆବୋର ପଶିଲେ ସେ ବେଳେ
ପନ୍ଦର ଅର୍ବୁଦ ଯୋଦ୍ଧା ରଥେ ରଥେ ଚଢ଼ି
ତେତିଶ ସହସ୍ର ଯୋଦ୍ଧା ଯାନ୍ତି ହସ୍ତୀ ଚଢ଼ି ।
ଅଶୀଏ ଅର୍ବୁଦ ସୈନ୍ୟ ତୁରଗ ସୁଖାର
ଏକାଦଶ ଅକ୍ଷୌହିଣୀ ନୃପତି ସଙ୍ଗର ।
ଏକକୁ ଆରେକ କରି ପ୍ରତିଜ୍ଞା ଅପାର
ଯୁଦ୍ଧେ ପଞ୍ଚଭୂତ ଜାଣି ବିଚରନ୍ତେ ବୀର ।
ପଡ଼ି ଉଠି ଯୁଝନ୍ତି ସେ ଉଭୟଙ୍କ ସୈନ୍ୟ
ହୁଂକାର ଶବଦେ ବାଣ ବର୍ଷି ଘନ ଘନ ।
ବସୁବୀର ଅସୁର ସେ ଧାଏଁ ହୋଇ ରାଗୀ
ହଣମି ମାଇଲା ବଳ ରଥମାନ ଭାଙ୍ଗି ।
ଭାଙ୍ଗି ସୈନ୍ୟବଳ ହୋଇଗଲେ ବେନଭାଗେ
ତୁରିତେ ମିଳିଲା ଯାଇ ଦୁର୍ଯ୍ୟୋଧନ ଆଗେ ।
ବଜ୍ରସମ ଗଦା ଘେନ ରାଜା ବସୁବୀର
ରୋଷେଣ ପିଟିଲା ନେଇ ନୃପତି ଉପର ।
ହସ୍ତୀ ଚଢ଼ି ନରପତି ହୋଇଥିଲେ ଆଗ
ଗଦାର ଆଘାତେ ଲୋଟି ପଡ଼େ ମତ୍ତନାଗ ।
ବାହନ ନିଧନ ହେବା ଦେଖି ନୃପବର
ଗଦାଏ ପିଟିଲା ନେଇ ଅସୁର ଉପର ।
ଅସୁର ବୀର ପାତିଲା ନିଜ ବକ୍ଷସ୍ଥଳ
ବାଜି ଗଦାବର ପଡ଼େ ଆସି ଭୂମିତଳ ।
ପୁଣି ଅସୁର ଗଦାଏ ପ୍ରହାରିଲେ ନେଇ
ମୂର୍ଚ୍ଛା ଯାଇ ପଡ଼ିଲେକ ରଣେ କୁରୁସାଇଁ ।
ଅଶ୍ୱତ୍ଥାମା ରଥରୁ ସେ ପଡ଼ିଲା ଓହ୍ଲାଇ
କୋଳକରି ନୃପତିକ ଧଇଲେକ ଯାଇ ।
ହଣମି ଅସୁର ଗଦା ପ୍ରହାରିଲା ଶରେ
ଏକଠାବେ ଅଚେତନ ହେଲେ ଦୁଇବୀରେ ।
ଦୁର୍ଯ୍ୟୋଧନ ଅଶ୍ୱତ୍ଥାମା ନେଇ କଲା ବନ୍ଦୀ
ଆପଣାର ରଥେ ନେଇ ପକାଇଲା ବାନ୍ଧି ।
ଯୁଧିଷ୍ଠିରଙ୍କ ଆଗେ ଚରେ କହିଲେକ ଯାଇ
ରାଜା ଅଶ୍ୱତ୍ଥାମା ବନ୍ଦୀ ପଡ଼ିଲେ ଗୋସାଇଁ ।
ଭୀମର ମୁଖକୁ ଚାହିଁ ଯୁଧିଷ୍ଠିର କାନ୍ଦି
ଆମ୍ଭେ ଥାଉଁ ଦୁର୍ଯ୍ୟୋଧନ ରାଜା ହେଲେ ବନ୍ଦୀ

ବୃଦ୍ଧକାଳେ ପିତାକୁ ମୋ ହେଲା ସୁତକଷ୍ଟ
ଦୁର୍ଯ୍ୟୋଧନ ବନେ ନାଶଯିବ ଧୃତରାଷ୍ଟ୍ର ।
ଗାନ୍ଧାରୀର ମୁଖ ମୁହିଁ ଚାହିଁବି କେମନ୍ତେ
ରଣଯୋଗ କରିବି ମୁଁ ଭାଇର ନିମନ୍ତେ ।
ଏତେ ବୋଲି ଆରୋହିଲେ ରଥେ ଧର୍ମସୁତ
ତାହାଦେଖି ମାରୁତିର ହେଲା କୋପଚିତ୍ତ ।
ଉଚ୍ଚସ୍ୱରେ ଡାକଦେଇ ପଶିଲା ସମରେ
ବୃକୋଦର ମୂର୍ତ୍ତି ଦେଖି କମ୍ପନ୍ତି ଅମରେ ।
ଭୀମ ଦେଖି ବସୁଭୀରେ କୋପେଣ ପ୍ରଚଣ୍ଡ
ଉପରେ ଗଦାକୁ ନେଇ ପିଟିଲା ଦୁର୍ଦ୍ଦଣ୍ଡ ।
ଭୁଜତେ ପବନସୁତ ବାମଅଙ୍ଗ ପାତି
ବାଜି ଗଦାବର ଭାଙ୍ଗି ପଡ଼ିଲାକ କ୍ଷିତି ।
ପିଟିଲା ତା କାଳଦଣ୍ଡ ଗଦା ବୃକୋଦର
ଶତଖଣ୍ଡ ହୁଏ ପଡ଼ି ଦୈତ୍ୟର ଉପର ।
ଧୂମମୟ ହଣିଲାକ ନବଖଣ୍ଡ ମହୀ
ପୁଣିହିଁ ପିଟିଲା ଗଦା ଭୀମ କୋପ ବହି ।
ଅସୁର ନୃପତି ତଳେ ପଡ଼ିଲା ଗରଜି
ଯେସନେ ମନ୍ଦରଗିରି ପଡ଼ିଲାକ ଭାଜି ।
ଦୈତ୍ୟର ଉପରେ ଭୀମ ବସିଲାକ ଡେଇଁ
କଟିଭାଗେ ବକ୍ଷସ୍ଥଳେ ବେନିପାଦଦେଇ ।
ଅସୁରର ସୈନ୍ୟ କେହି ନ ରହିଲେ ଆଗେ
ମୁଣ୍ଡକୁ ମୋଡ଼ିଲା ଭୀମ ମୁଷଳ ସଂଯୋଗେ ।
ହୁଂକାର କରିଣ ଭୀମ ଫିଙ୍ଗିଦେଲା ବେଗେ
ଶିବଙ୍କ ଆଗେ ପଡ଼ିଲା ଯାଇ ମୁଣ୍ଡ ବେଗେ ।
ନୃପତି ପଡ଼ିଲା ସୈନ୍ୟ ଭାଙ୍ଗି ପଳାଇଲେ
ଭୀମସେନ ଆଗେ କେହି ଜଣେ ନ ରହିଲେ
ରଥେ ରଥ ଗଜେ ଗଜ କଚୁଡ଼ାଇ ନେଇ
ସକଳ ସୈନ୍ୟ ମାଇଲା ହାଡ଼ମ୍ବିକା ସାଇଁ ।
ମୁଖରେ ପଡ଼ି ପଳାଇ ନ ପାରିଲେ କେହି
ରଣ ଦେଖିଣ ହସନ୍ତି ଗୌରଭାଇ ରହି ।
ଅସୁର ସୈନ୍ୟ ନିପାତ ଦେଖି କାଶୀପତି
ବୃଷଭ ଆରୋହି ରଣେ ମିଳିଲେ ତଡ଼ନ୍ତି ।
ହସ୍ତରେ ପିନାକ ଧନୁ ବିଜଟା ମଉଳି
ଅଗ୍ରୁଧାର ପ୍ରାପ୍ତ କଲେ ବାଣ ଜ୍ୱାଳାବଳୀ ।
ହାବୋଡ଼ା ଶରେକ ଘେନି ମାଇଲେ କପାଳୀ
ଘାଏ ମାରୁତି ପଡ଼ିଲା ମହୀପରେ ଢଳି ।

ଭୀମର ପଡ଼ିବା ଦେଖି ଦେବ ଶୂଳଧର
ଅନୁକ୍ଷଣେ ଶରବୃଷ୍ଟି କଲେ ନିରନ୍ତର ।
ଗୋଡ଼ାଇ ମାରନ୍ତି ଶିବ କୁରୁ ପାଣ୍ଡୁ ବଳ
ମହାବାତେ ଯେସନ୍ତେ ଖସିପଡ଼େ ବୃନ୍ତଫଳ ।
ରକତେ କର୍ଦ୍ଦମ କଲେ ବାଣେ ମହୀତଳ
ରଣ ଛାଡ଼ି ପଳାଇଲେ ସୈନ୍ୟହିଁ ସକଳ ।
ଥାଅ ନିସୂଦନ ଦେଖି ବୀର ଧନଞ୍ଜୟ
ରଥେକ ଆରୋହି କଲା ସଂଗ୍ରାମେ ବିଜୟ ।
ଶଙ୍ଖ ନାମ ଗ ।ଷୀର ଏ ଗୃର ହସ୍ତବର
ସାତ୍ୟକି ବାହାର ରଥ ପବନହୁଁ ଖର ।
କପିଧ୍ୱଜର ପତାକା ଉଡ଼େ ଫର ଫର
ମିଳିଲେ ସେ ସଦାଶିବ ଆଗେ ଧନୁର୍ଦ୍ଧର ।
ଅର୍ଜୁନକୁ ଦେଖି କୋପ କଲେ ଦେବରାଜ
ଅକ୍ଷୟ ତୂଣୀରୁ ଦେବ କାଢ଼ିଲେ ନାରାଚ ।
ସେ ନାରାଚ ଅର୍ଜୁନର ଉପରେ ପ୍ରହାରି
ଗଉରବ ଛାଡ଼ି ହର ଶର ବୃଷ୍ଟି କରି ।
ନାରାଚ ଆସନ୍ତେ ତାହା ସଂହାରିଲେ ପାର୍ଥ
ଅତି କ୍ରୋଧଭର ହୋଇ ପ୍ରଭୁ ବିଶ୍ୱନାଥ ।
ଦେଖି ବୀର ଧନଞ୍ଜୟ ମନେ ଧ୍ୟାନକଲା
ଅର୍ଜୁନ ହସ୍ତକୁ ବାଣ ଶୂନ୍ୟେ ଚଳିଗଲା ।
ଶିବ ମାଇଲେ ଶକତି ବାଣ କାଳାନଳ
ଅର୍ଜୁନ ଶକତି ଏକ କଲେ ପରତାଳ ।
ଦୁଇବାଣ ଏକହୋଇ ଗଲେ ଅନ୍ତର୍ଦ୍ଧାନେ
ନିଶବ୍ଦ ହୋଇଲେ ଦେବତ୍ରୈଲୋକ୍ୟ ଭୁବନେ
ଏକମାତ୍ର ପିନାକ ଯେ ଅଛି ହର ଠାଇଁ
ତୂଣୀରେ ଦେଖିଲେ ବାଣ ଗୋଟିଏ ଯେ ନାହିଁ
ମହାମନ୍ତ୍ର ସୁମରିଲେ ଦେବ ଉମାସାଇଁ
ପର୍ବତାଶର ପ୍ରହାର କଲେ ବେଗେ ନେଇ ।
ପୃଥିବୀକି ଘୋଟି ଆସେ ଲକ୍ଷେକ ପର୍ବତ
ସ୍ୱର୍ଗ ମର୍ତ୍ତ୍ୟ ପାତାଳହିଁ ଶୂନ୍ୟ ସ୍ୱର୍ଗପଥ ।
ତା ଦେଖି ପେଷିଲା ବଜ୍ରଶର ଧନଞ୍ଜୟ
ଲକ୍ଷେକ ପର୍ବତ ଧୂଳି ହୋଇଗଲା କ୍ଷୟ ।
ପର୍ବତକୁ ଚୂର୍ଣ୍ଣ ଦେଖି ହର କୋପକଲେ
ଯୋଗଲୟ କରି ଅଗ୍ନି ବାଣେକ ପେଷିଲେ
ତ୍ରୈଲୋକ୍ୟ ବିକାଶି ଆସେ ପ୍ରଳୟ ବହ୍ନି
ଦିଗଦହନ ହେବାର ଦେଖି ଫାଲଗୁନ ।

ମେଘାଶର ପ୍ରହାରିଲେ ବିରୂପ କରିଣି
ଅଗ୍ନିବାଣ ଉପରେ ସେ କଲେ ଜଳବୃଷ୍ଟି ।
ସାଧୁ ସାଧୁ କଲେ ତାଙ୍କୁ ବ୍ରହ୍ମାର ନନ୍ଦନ
ଧନ୍ୟ ଧନ୍ୟ ଅର୍ଜୁନ ତୋ ମହିମାହିଁ ଧନ୍ୟ ।
ଈଶ୍ୱରଙ୍କୁ ସରି କେହୁ ଅଛଇ ତ୍ରୈଲୋକ୍ୟେ
ରଣରଙ୍ଗ ସହିଲୁ ତୁ ଷନୀ ହୋଇ ଏକେ ।
ଏସନ ବୋଲି ନିଦଣ୍ଡ ଗୋଟି ବୁଲାଇଲେ
ଜଳ ଧୋକଡ଼ିରୁ ଭସ୍ମ ମୁଠାଏ ମାଇଲେ ।
ରୁଦ୍ରଚକ୍ରକୁ ସ୍ମରଣ କଲେ ବିଶ୍ୱନାଥ
ନୀଳଚକ୍ରେ ଛେଦିଲା ତା ବୀରବର ପାର୍ଥ ।
ମାଇଲେ ସେ ନାଗପାଶ ବାଣ ବିରୂପାକ୍ଷ
ଗର୍ଜିଣ ପନ୍ନଗମାନେ ଧାଇଁଲେ ପ୍ରତ୍ୟକ୍ଷ ।
ଗରୁଡ଼ ଶସ୍ତ୍ର ମାଇଲା ଦେଖି ଧନଞ୍ଜୟ
ପନ୍ନଗ ଶରକୁ ସେହି କଲା ଯାଇ କ୍ଷୟ ।
ନାରାୟଣ ଶରଗୋଟି ପେଶିଲା ଅର୍ଜୁନ
ମୋହେ ମୂର୍ଚ୍ଛାଗତ ହେଲେ ଦେବ ତ୍ରିଲୋଚନ
ରଥ ଶଶୀପୁରେ ପଶି ଉହାଡ଼େ ରହିଲେ
ପର୍ବତ ସହିତେ ଚରାଚରହିଁ କମ୍ପିଲେ ।
ସମୁଦ୍ରହିଁ ଗଲା ଘୂର୍ଣ୍ଣି କୁରୁମ ଚମକ
ପାତାଳପୁର କମ୍ପିଲା ମହୀ ଗଲା ବାଙ୍କି ।
ମରୁତ କୁବେର ବସୁ ବାସବ ଅନଳ
ବୃହସ୍ପତି ଆଦି ଗ୍ରହ ଦଶଦିଗପାଳ ।
ନାରାୟଣ ଶସ୍ତ୍ର ଦେଖି ଗଲେ ଭୟ ମନେ
ପଳାଇ ପଶିଲେ ଯାଇ ବ୍ରହ୍ମାର ଭୁବନେ ।
ଈଶ୍ୱରହିଁ ନାଶଗଲେ ଯାହାର ଆଧାନେ
ତେଣୁ ଭୟେ ପଳାଇଲେ ଦେବାସୁରମାନେ
ଆରତ ହୋଇ ପଳାଇ ଗଲେ ଶିବଗଣ
ପଞ୍ଚମନରେ ଘାଲେଣି କରନ୍ତି ରୋଦନ ।
କପାଳୀର ନିଧନରେ ପଳାଇଲେ ବଳ
ହାତୀ ରଥୀ ଯେତେ ଥିଲେ ଗଲେ ଯମଆଳ ।
ନଦୀଏ ତହିଁ ବହିଲା ଦୈତ୍ୟଙ୍କ ରକତେ
ବୃକ୍ଷମୂଳୁଁ ଭାଙ୍ଗି ପଡ଼େ ଯେହ୍ନେ ମହାବାତେ ।
ତେସନ ହୋଇ ପଡ଼ିଲେ ଅସୁର ସଇନ୍ୟ
ସମସ୍ତ ହୋଇ ପଡ଼ିଲା ରାଜା ମୃଗସେନ ।
ଯୁଝିବା ଶକତ ତହିଁ ନାହିଁ ଏକ ଜଣେ
ସମସ୍ତଙ୍କୁ ସଂହାରିଲା ପାର୍ଥ ଏକବାଣେ ।

ମାଳେନ୍ଦ୍ରୀ କନ୍ୟାକୁ ପାର୍ଥ ରଥରେ ବସାଇ
ବାହୁଡ଼ି ଆସଇ ଜୟ ଶଙ୍ଖକୁ ବଜାଇ ।
ସୁର ଇନ୍ଦ୍ର ସମାନେ ବିକାଶଇ ତେଜ
ଯୁଧିଷ୍ଠି ପାଶେ ମିଳିଲେ ବାସବ ଆତ୍ମଜ ।
କହନ୍ତି ଯୁଧିଷ୍ଠି ଦେବ ଅର୍ଜୁନକୁ ଚାହିଁ
ଦେଖ ବାବୁ ପଡ଼ିଛନ୍ତି ଅନ୍ଧସୁତେ ତହିଁ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା ହୋଇଲେ ନିଧନ
ଆବର ପଡ଼ିଲେ ରଣେ କର୍ଣ୍ଣ ଦୁଃଶାସନ ।
ଭୀମସେନ ହାତକୁ ତ ଶଙ୍କା ନାହିଁ ମନେ
ଦୁର୍ଯ୍ୟୋଧନ ହାତେ ରହି ନ ପାରେ ଜୀବନେ
ଗାନ୍ଧାରୀ ବଦନ ମୁହିଁ ଚାହିଁବି କେମନ୍ତେ
ଅର୍ଜୁନ ବୋଇଲେ ଶୋକ ନ ଘେନ ହେ ତାତେ
ସଂଗ୍ରାମରେ ପଡ଼ିଛନ୍ତି କୃଷ୍ଣ ହଳଧର
ଯଦୁବଂଶ ଭୋଜବଂଶ ଘେନି ସଙ୍ଗତର ।
ସୋଦର ସ୍ୱରକୁ କପାଁ କର ଏତେ ଶୋକ
ଜଗତର ଜୀବନ ଯେ ତ୍ରୈଲୋକ୍ୟପାଳକ ।
ଅବଶ୍ୟ କଥାଏ ଏଥେ ହୋଇବ ଗୋସାଇଁ
ଯୁଧିଷ୍ଠି ବୋଇଲେ ଏହା କହୁ କାହିଁପାଇଁ ।
ଦୁର୍ଯ୍ୟୋଧନ ନାମଧାରୀ ଯେବଣହିଁ ଲୋକ
ତାହାର ନିଧନେ ମୋର ହୃଦ ଦକ ଦକ ।
ତୁ ବାବୁ ସୁମରୁ ଜନା ଦେବମଘବାନ
ଅମୃତ ବରଷୁ ସର୍ବେ ପାଆନ୍ତୁ ଜୀବନ ।
ଯୁଧିଷ୍ଠିଙ୍କ ବଚନରେ ପାର୍ଥ ତୋଷ ହୋଇ
ଇନ୍ଦ୍ରଙ୍କୁ ଯେ ସ୍ତୁତିକଲେ ସ୍ୱର୍ଗକୁହିଁ ଚାହିଁ ।
ହେ ଦେବ ଅମରନାଥ ସୁରପୁର ସାଇଁ
ସଙ୍କଟେ ସ୍ମରଣ ନାଥ କର ମୋତେ ସାହି ।
ସଂହାର ପାଳକ ନାଥ ଜଗତ ତାରଣ
ପ୍ରସନ୍ନେ ଅଭୟବର ଦେଉ ମଘବାନ ।
ଜମ୍ଭଭେଦୀ ନାମ ତୋର କୋଟି ଅପସରୀ
ଦିଗପାଳମାନେ ତୋର ସଦା ଆଜ୍ଞାକାରୀ ।
ଦିଗପାଳମାନେ ତୋର ସଦା ଆଜ୍ଞାକାରୀ
ନିର୍ଘାତ ଥିବାରୁ ହସ୍ତେ ନାମ ବଜ୍ରଧାରୀ ।
ଗଉତମ ମୁନି ଶାପେ ତୁ ସହସ୍ର ଯୋନି
ସହସ୍ର ଲୋଚନ କଲୁ ଶୁଦ୍ଧଯୋଗ ଘେନି ।
ଜନ ଜନ୍ତୁ ପାଳୁ ତୁହି ସଂସାର ତାରଣ
ପାରିଜାତ ଫୁଲମାନ ତୋର ଆଭରଣ ।

ସର୍ବଜନ୍ତୁଙ୍କ ଉପରେ ଦେବଙ୍କ ଉତ୍ତମ
ତୋହର ବଚନ ଭାଙ୍ଗି ନ ପାରଇ ଯମ ।
ହେ ଇନ୍ଦ୍ର ଦେବତା ତୁମ୍ଭେ ପ୍ରତିକାର କର
ଏ ମୋହର ଦାଇମା ତୁ ଦେନ ସୁନାସୀର ।
ତୋ ସଙ୍ଗେ ବିବାଦ କଲା ହିମବାନ ଯହୁଁ
ପର୍ବତଙ୍କ ପକ୍ଷ ଛେଦ ପକାଇଲୁ ତହୁଁ ।
ଦେବଙ୍କ ଉପରେ ତୁହି ଦେବ ନାମ ବହୁ
ଗୋବିନ୍ଦର ଅପମାନ ଦଣ୍ଡେହେଁ ନ ସହୁ ।
ତୋହର ଦେଖନ୍ତେ ରାମ କୃଷ୍ଣ ହେଲେ ହତ
ସମସ୍ତେ ବଞ୍ଚନ୍ତୁ ବୃଷ୍ଟି କର ତୁ ଅମୃତ ।
ଏତେ ବୋଲି ପାର୍ଥ ତାଙ୍କୁ ସୁମରଣ କଲା
ଇନ୍ଦ୍ରଙ୍କୁ ଯେ ସ୍ତୁତି କରି ଓଳଗି ଶୋଇଲା ।
ତଥାପି ଅମୃତବୃଷ୍ଟି ବାସବ ନ କଲା
କୋପେ ବୀର ଧନଞ୍ଜୟ ପ୍ରଜ୍ୱଳିତ ହେଲା ।
ଅଧର ଦଶନେ ଚାପି ବୋଇଲା ଉତ୍ତର
ମୁହିଁ ତୋହର ନନ୍ଦନ ତୁ ମୋର ପିଅର ।
ଏ ମୋହର ଭକତି ନ ଦେଲୁ ଏତେବେଳେ
ଭକତବତ୍ସଳ ତୋତେ ବୋଲନ୍ତି ସକଳେ
ଶ୍ରୀକୃଷ୍ଣଙ୍କ ସ୍ନେହ ତୋତେ ଥାଇ ସବୁକାଳେ
ନିର୍ଦ୍ଦୟ ପୁରୁଷ ଦୟା ନାହିଁ ତୋର ତଳେ ।
ସଂସାର ତାରଣ ନାଥ ହରାଇଲେ ଜ୍ଞାନ
ଦୁଃଖକାଳେ ବନ୍ଧୁ ଯେବେ ନୁହନ୍ତି ପ୍ରସନ୍ନ ।
କି କରିବେ ବଞ୍ଚିଥାଇ ସେମାନେ ସଂସାରେ
ଏହା କହି ଗାଣ୍ଡୀବକୁ ଧଇଲେ ସେ କରେ
ଭୂମିଗତ କରିବି ମୁଁ ଅମର ଭୁବନ
ଅମୃତ ଆଣି ରଖିବି ଶ୍ରୀହରି ଜୀବନ ।
ପୁତ୍ରବନ୍ଧୁ ଦେନ ଯେବେ ଗୋବିନ୍ଦ ମରିବ
ତୁ କପାଇଁ ସମ୍ପଦେ ଥିବୁ ନିର୍ଭୟେ ବାସବ ।
ଐରାବତକୁ ଯେ ଶରେ ବାସବକୁ ଶରେ
ସ୍ୱର୍ଗ ପୁର ଛେଦିବାକୁ ମାରେ ମୁଦୁଗରେ ।
ତିନବାଣ ଏକବେଳେ ଧନୁରେ ଯୋଖିଲା
ସ୍ୱର୍ଗ ଛାଡ଼ି ସୁରେଶ୍ୱର ଶୂନ୍ୟରେ ରହିଲା ।
ପଚାରଇ ବୃହସ୍ପତି ଗୁରୁହିଁ ସୁରପତି
କିପାଇଁ କମ୍ପୁଅଛଇ ପୁର ବାରସ୍ୱତୀ ।
ଦେବଗୁରୁ ବୋଇଲେ ହେ ଶୁଣ ସହସ୍ରାକ୍ଷ
ରାମ କୃଷ୍ଣ ସହିତରେ ମଲେ ସର୍ବଲୋକ ।

ତେଣୁ ଅର୍ଜୁନର ଅତି ବିଚଳିତ କାୟ
ତୋତେ ଯେ ବହୁତ ସ୍ତୁତି କଲା ଧନଞ୍ଜୟ ।
ଯହୁଁ ଅମୃତ ନ ଦେଲୁ ତୁ ହୋ ସୁରରାଣ
କୋପେ ଅର୍ଜୁନ ତୋ ପାଇଁ ଯୋଚିଅଛି ବାଣ
ସଂଗ୍ରାମେ ପଡ଼ିଥିବାରୁ ରାମ ନାରାୟଣ
ଉପରୋଧ ଛାଡ଼ିଲା ସେ ସୁଭଦ୍ରା ରମଣ ।
ଅମୃତବୃଷ୍ଟି ତୁ କରି ରହୁ ସ୍ୱର୍ଗ ବାସ
ଏ ଅମର ଭୁବନକୁ ନ କର ବିନାଶ ।
ଦେବଗୁରୁ ବଚନରେ ସହସ୍ରାକ୍ଷ ତୁଷ୍ଟି
ରାମ କୃଷ୍ଣଙ୍କ ଉପରେ କଲା ସୁଧାବୃଷ୍ଟି ।
ଅମୃତ ପାଇଣ ଚେତି ଉଠିଲେ ସକଳ
ମାର ମାର ବୋଲି ତହୁଁ ପାରିଲେ ଚହଳ
ବଳରାମ ଉଠି କୋପେ ଗଲେ ପୁନହଟଳେ
କଇଲାସ କନ୍ଦରକୁ ଉପାଡ଼ିଲେ ହେଳେ ।
ପକାଇ ଦେବି ମୁଁ ନେଇ ମହାସିନ୍ଧୁ ଜଳେ
କଥାଗୋଟି ରହିଥିବ ଏ ମହୀମଣ୍ଡଳେ ।
କଇଲାସ ଉପାଡ଼ନ୍ତେ ଦେଖି ଗଣେଶ୍ୱର
କୋପେଣ ଧାଇଁଲେ ଏକଦନ୍ତ ଲମ୍ବୋଦର ।
ନନ୍ଦିଘୋଷ ରଥେ ଥିଲା ପବନର ସୁତ
ଡେଙ୍ଗାଇଲେ ଯାଇ ଗଣନାଥଙ୍କୁ ତୁରିତ ।
ତାହାଦେଖି କୋପ କଲେ ଗଉରୀ ନନ୍ଦନ
ପରଶୁ କୁଠାର ଦେନ ଧାଇଁଲେ ବହନ ।
ବିକ୍ରମି ଯାଇଣ ଗଦା ପ୍ରହାରିଲେ ଖରେ
ଉଚ୍ଛୁଡ଼ି ଉଡ଼ିଲା ବାଜି ହନୁର ଉପରେ ।
ପରଶୁହସ୍ତ ତା ଦେଖି ହୋଇ କୋପମୂର୍ତ୍ତି
ହନୁକୁ ଧଇଲେ ଥୋରହସ୍ତେ ଗଣପତି ।
ଶ୍ରୀରାମଙ୍କୁ ସୁମରଣା କଲା ହନୁ ସତ
ଯୋଜନ ପର୍ଯ୍ୟନ୍ତେ ଲାଞ୍ଜ ବଢ଼ାଇଲା ଧାତ ।
ଗଣନାଥଙ୍କୁ ବାନ୍ଧିଲା ସେହି ଲାଙ୍ଗୁଳରେ
ବନ୍ଧାହୋଇଲେ ସେ ଦୁହେଁ ସଂଗ୍ରାମ ଭୂମିରେ
ଧରାଧରି ହୋଇ ପଡ଼ିଗଲେ ମାଲବନ୍ଧେ
କେହୁ ବା ତଳେ ପଡ଼ନ୍ତି କେ ଉଠନ୍ତି କନ୍ଧେ
ଗଡ଼ାଗଡ଼ି ଘାତେ କଲେ ପର୍ବତକୁ ଚୂର
ମୁଖ ବାଟରେ ରୁଧିର ବହେ ଝରଝର ।
କୈଳାସ କମ୍ପନ୍ତେ କୋପ କଲେ ଯେ ପାର୍ବତୀ
ପିଶାଚୁଣୀବୃନ୍ଦ ଘେନ ସେ ଧାଇଁ ଆସନ୍ତି ।

କେ ବ୍ୟାଘ୍ର ବାହନେ କେହୁ ମରାଳ ବାହନେ
ଶାର୍ଦ୍ଦୂଳ ଚଢ଼ି ଗମନ କରନ୍ତି କେ ରଣେ ।
ଏମନ୍ତେ ସେ ନବକୋଟି ଚାମୁଣ୍ଡା ଆଇଲେ
ଚଉପୁର କରି ବଳରାମଙ୍କୁ ବେଢ଼ିଲେ ।
ଘୋର କଳକଳା ଶବ୍ଦ କରନ୍ତି ସେ ଚଣ୍ଡୀ
ଊର୍ଦ୍ଧ୍ୱକେଶୀ ମୁଣ୍ଡମାଳ ସିନ୍ଦୁରେଣ ମଣ୍ଡି ।
ହସ୍ତରେ ଧରିଅଛନ୍ତି ନରଶିର ଗଣ୍ଡି
ରୁଧିର ପାନରେ ମତ୍ତ ଶୋଭେ ନାଚଖଣ୍ଡି ।
ଏସନ ରୂପ ଦେଖାଇ କରନ୍ତି ସେ ଭୟ
ଫୁଫୁକାର ଉଠେ ମହାଅଗ୍ନି ତେଜୋମୟ ।
ମୃତସଞ୍ଜୀବନୀମନ୍ତ୍ର ପଢ଼ିଲେ ପାର୍ବତୀ
ଈଶ୍ୱର ସଙ୍ଗେ ଚଉଦକୋଟି ଗଣବର୍ତ୍ତୀ ।
କପିଳାସ ଉପାଡ଼ିବା ଦେଖି ପଶୁପତି
ବୃଷଭ ଆରୋହି ଦେବ ଆଗରେ ହୁଅନ୍ତି ।
ବିଶ୍ୱନାଥ କୋପ ଦେଖି ଦେବ ନାରାୟଣ
ସୁଦର୍ଶନ ଚକ୍ର ଧରି ବିଜୟ ଆପଣ ।
ସଦାଶିବ ବିଶ୍ୱରୂପ ଦେବେ ଅଗୋଚର
ଅର୍ଜ୍ଜୁନର କୋପାନଳେ କମ୍ପନ୍ତି ଅମର ।
ବଳରାମର ପ୍ରତିଜ୍ଞା ମହା ପରାକ୍ରମ
ଅନ୍ୟୋଅନ୍ୟରେ କରନ୍ତି ସେଠାରେ ସଂଗ୍ରାମ
ହରି ହର ଯୁଦ୍ଧ ଯହୁଁ ବାସବ ଜାଣିଲେ
ଐରାବତ ଚଢ଼ି ଇନ୍ଦ୍ର ତହୁଁ ବିଜେକଲେ ।
ଦେବ କିନ୍ନର ଗନ୍ଧର୍ବ ଯେତେଣ ଆକାଶେ
ବୃହସ୍ପତି ବିଜେକଲେ ବ୍ରହ୍ମାଙ୍କର ପାଶେ ।
ତ୍ରିଦଶ ଦେବତା ଯେତେ ବିଶ୍ୱଦେବା ଗଲେ
ଦକ୍ଷପ୍ରଜାପତି ସହ ସମସ୍ତେ ମିଳିଲେ ।
ନାରଦ ବୋଇଲେ ପିତା ବେଗ ରୁହା କଳି
ଏକ୍ଷଣି ରସାଗତ ହେବ ମହୀସ୍ଥଳୀ ।
ବ୍ରହ୍ମା ବୋଇଲେ ରେ ବାବୁ ତୁହି ମୂଳମନ୍ଦ
ତୁହି ସିନା ଭିଆଇଲୁ ଏଡ଼େକ ପ୍ରମାଦ ।
ନାରଦ ବୋଇଲେ ପିତା ସଂସାରର ହିତେ
କୁତୁହଳ ଭିଆଇଲି ଦେଖିବା ନିମନ୍ତେ ।
ବସୁଧାର ମୃଗସେନ ପାଇଁ ସିନା ହନ୍ତ
ସଂସାର କି ରଖିଥାନ୍ତେ ସେ ଅସୁର ମନ୍ଦ
ବିଶ୍ୱନାଥଠାରୁ ସେହି ପାଇଥିଲେ ବର
ଲୁଟି କରି ନେଇଥାନ୍ତେ ଏହି ସୁରପୁର ।

ହରି ହର ଏକ ଆତ୍ମା ବୋଲନ୍ତି ଜଗତେ
ସହି ନ ପାରିଲେ କଳି କଲେ ଅନିମିତ୍ତେ ।
ଏବେ ପିତା ଯାଇ ତୁମ୍ଭେ ସନ୍ଧି ବେଗେ କର
ନ ବୁଡ଼ୁ ସଂସାର ନୋହୁ ନୋହୁ ଏ ସମର ।
ନାରଦ ବଚନେ ବ୍ରହ୍ମା କରନ୍ତି ଗମନ
ତୁରିତେ ମିଳିଲେ ଯାଇ ରଣ ସନ୍ନିଧାନ ।
କୁଶହସ୍ତ ହୋଇ ବ୍ରହ୍ମା ମଧ୍ୟରେ ପଶିଲେ
ଦୁଇ କତକ ସେ ଦୁଇ ଦୁଇ ମୁଖ କଲେ ।
ଦୁଇ ବଦନେ କରନ୍ତି ଶ୍ରୀକୃଷ୍ଣଙ୍କୁ ସ୍ତୁତି
ଦୁଇ ମୁଖେ ସ୍ତୁତି ମହାଦେବଙ୍କୁ କରନ୍ତି ।
ଜୟ ଜୟ ନୀଳକଣ୍ଠ ଉମା ପ୍ରାଣନାଥ
ଜୟ ତୁ ଅନାଦିନାଥ ସପ୍ତଫଣୀ ମାଥ ।
ସମର୍ଥ ହଳ ସୌନନ୍ଦ ମୂଷଳ ତୋ ହସ୍ତେ
ଜୟ ତୁ ପରମଯୋଗୀ ଜୟ ବିଶ୍ୱନାଥେ ।
ଦେବଙ୍କ ଦୁର୍ଲ୍ଲଭ ଅଟେ ତୁମ୍ଭର ମହିମା
ଯାହାର ଘଡ଼ିକେ ହୁଏ ଦିବସକ ବ୍ରହ୍ମା ।
ଚାରି ସହସ୍ର ଯୁଗରେ ବ୍ରହ୍ମାଙ୍କ ଦିବସେ
ବ୍ରହ୍ମାଙ୍କର ଚାରିଯୁଗେ ବିଷ୍ଣୁଙ୍କୁ ନିମିଷେ ।
ବ୍ରହ୍ମାବିଷ୍ଣୁଙ୍କର ଚାରିଯୁଗେ ହୁଏ ଜାଣ
ଈଶ୍ୱରଙ୍କ ନିମିଷ ଏ କଥାହିଁ ପ୍ରମାଣ ।
ତୋ ମହିମା କହିବାକୁ ଅଛି କେ ସୁଜନ
ଯାହାକୁ ଚିନ୍ତନ୍ତି ମୁନିଜନେ କରି ଧ୍ୟାନ ।
ତୋର ଚାରିଯୁଗେ ପୃଥ୍ୱୀ କୋଟିବର ନାଶ
ଅନାଦି ପୁରୁଷ ତୁହି ଅଟୁ ବିଶ୍ୱବାସ ।
ସିଦ୍ଧ ପୁରୁଷ ଯୋଗୀନ୍ଦ୍ର ଜନ ତୁ ଶ୍ରୀରାମ
ଭକତବତ୍ସଳ ଅନ୍ତରାତ୍ମା ପରଂବ୍ରହ୍ମ ।
ଯୁଗାନ୍ତକ ପୁରୁଷ ତୁ ମହା ସିଦ୍ଧଯୋଗୀ
ଗୁଣଦୋଷରେ ସହାରୁ ତୁହି ମହାରାଗୀ ।
ପୃଥ୍ୱୀର ନିମନ୍ତେ ତୋର କଳ୍କି ଅବତାର
ଜନମି ନାଶିଲୁ ଦୈତ୍ୟଗଣ ତୁ ଅପାର ।
ବିଷ୍ଣୁ ଯେନ ପେଡ଼ିଲୁ ତୁ ବିଶ୍ୱ ଭରାଭର
କାଳ କାମ ନାହିଁ ଦିନ ରାତି ନାହିଁ ତୋର ।
ଏସନକ ସ୍ତୁତି ଯହୁଁ କଲେ ବେଦପତି
ଶୁଣି ବଳରାମଙ୍କର ତୋଷ ହେଲା ମତି ।
ବ୍ରହ୍ମା ମୁଖ ଚାହିଁ ରାମ ବୋଲନ୍ତି ଏମନ୍ତ
କିପାଁ ମୋତେ ସ୍ତୁତି କରୁ କହ ଲୋକନାଥ

ବ୍ରହ୍ମାଏ ବୋଇଲେ ରାମ କୋପ ତୁ ସମ୍ବର
ନିଜସ୍ଥାନେ ଥୁଅ ନେଇ କୈଳାସ କନ୍ଦର ।
କେବଣ ଚରିତ ଶୁଣି ବୁଝିବ ନା ଭାବ
ଦୁଇଜଣଙ୍କର କଥା କହ ଦୁଇଦେବ ।
ଏ ବଚନ ଶୁଣି ରାମ ସମ୍ବରିଲେ ରାଗ
କପିଳାସ କନ୍ଦରକୁ କଲେ ଭୂମିଭାଗ ।
ବ୍ରହ୍ମାଙ୍କ ଆଗେ ମିଳିଲେ ଯାଇ ହରିହର
ନୀଳାମ୍ବର ସହିତରେ କରନ୍ତି ଉତ୍ତର ।
ସଦାଶିବ ବୋଲନ୍ତି ହେ ଶୁଣ ପଦ୍ମଯୋନି
ଗଣ୍ଡମୂଳ ପାଇଲା ଏ ବରୁଣନନ୍ଦିନୀ ।
ବନସ୍ତେ ମାତା ତାହାର କାନ୍ଦୁଥିଲା ଘେନି
ବନେ ଭ୍ରମି ଯାଉଥିଲୁ ଦୁଗା ଆମ୍ଭେ ବେନି ।
ଦେଖିଲେ ପାର୍ବତୀ ତାର ବାଳିକା ବେଦନ
ବୃଷଭୁଁ ଓହ୍ଲାଇ ତାକୁ ପୁଚ୍ଛନ୍ତେ କାରଣ ।
ସେ ବୋଲେ ଘୋର ହୋଇଛି ଗଣ୍ଡମୂଳ ଦୋଷ
ଯେବେ ରଖିବୁ ଦୁହିତା ଦେବଇଁ ଅବଶ୍ୟ ।
ସତ୍ୟ କରିବାରୁ ତାକୁ ଆମ୍ଭେ ରକ୍ଷାକଲୁ
କାର୍ତ୍ତିକ ନିମନ୍ତେ ମଣି ଦେଇଣ ବରିଲୁ ।
ବିଭା ହେବାବେଳେ ମୋର ଗଲା ପୁତ୍ର ସ୍କନ୍ଦ
ଏହାଙ୍କର ପୁତ୍ରେ ଆସି କଲେ କଳି ଦ୍ୱନ୍ଦ୍ୱ ।
ନୀଳାମ୍ବର ବୋଇଲେ ତୁ ଶୁଣ ବେଦବର
ବରୁଣ ଯାଇ ବରିଲା ମୋହର କୁମର ।
ବିଭା କରୁଥିଲା ବସି ଶୁଭଲଗ୍ନ ଧରି
ଏହାର ପୁତ୍ର ତହିଁକି ଆସେ କି ବିଚାରି ।
ମୋର ପୁତ୍ରକୁ ମାଇଲା ହସ୍ତଗ୍ରନ୍ଥି ବେଳେ
ବେଦୀରୁ କନ୍ୟାକୁ ଘେନି ଗଲା ଧରି ବଳେ
ବିଷ୍ଣୁର ପୁତ୍ରମାନଙ୍କୁ ମାରି ଠାବେ ଠାବେ
ଏ କଥା ବିଚାରି ବ୍ରହ୍ମା ମଧ୍ୟସ୍ଥ ପ୍ରସ୍ତାବେ ।
ବୋଇଲେକ ବ୍ରହ୍ମଯୋନି ବୁଝିବା ପ୍ରମାଣ
ବରୁଣ ଦେବଙ୍କୁ ଏଥେଁ ବେଗକରି ଆଣ ।
ସମକ୍ଷେ ବୁଝିବା ଆମ୍ଭେ ତାହାକୁ ପଚାରି
ଆଜ୍ଞାଦେଲେ ବେଦବ୍ରହ୍ମା ନାରଦ ହକାରି ।
ଶୀଘ୍ରଯାଇ ଘେନିଆସ ବରୁଣକୁ ଏଥେ
ଅଜ୍ଞାମାତ୍ରେ ଚଳିଗଲେ ତହୁଁ ତପୋବନ୍ତେ
ସମୁଦ୍ର ହ୍ରଦେ ବରୁଣ ରାଜା ଲୁଚିଥିଲା
ନାରଦ ବୋଇଲେ ଯିବା ବ୍ରହ୍ମା ଆଜ୍ଞାହେଲା ।

ମନରୁ ଫେଡ଼ିଲା ଚିନ୍ତା ଶୁଣି ଏ ବଚନ
ନାରଦ ସଙ୍ଗେ ଚଳିଲା ବରୁଣ ରାଜନ ।
ଯେବଣଠାରେ ଅଛନ୍ତି ବ୍ରହ୍ମାଦି ତ୍ରିଲୋଚନ
ତାହାଙ୍କ ଆଗେ ମିଳିଲେ ରାଜା ତପୋଧନ
ପ୍ରଣମି ଉଭା ହୋଇଲା ଯୋଡ଼ି ବେନିକର
ନମିଲା ସେ ନୀଳାମ୍ବର ଶ୍ରୀକୃଷ୍ଣ ପୟର ।
ବ୍ରହ୍ମାଏ ବୋଇଲେ ତୁମ୍ଭେ ଶୁଣ ହେ ବରୁଣ
ବିଭାର ଚରିତ କହ ଆମ୍ଭ ଆଗେ ପୁଣ ।
ଶୁଣି ବରୁଣ ରାଜନ କହେ କରଯୋଡ଼ି
ଆନନ୍ଦାନନ୍ଦକୁ ଯାଇ ଆଣିଲି ମୁଁ ବରି ।
ବିଭାଦର କରାଉଛି ବର କନ୍ୟା ଘେନି
ବହ୍ନଜ୍ଜନ ସୀଉକାରେ ଘେନିଣ କାମିନୀ ।
ହସ୍ତଗ୍ରନ୍ଥି ବେଳେ କାହୁଁ କାର୍ତ୍ତିକ ଅଇଲେ
ଆନନ୍ଦାନନ୍ଦକୁ ମାରି କନ୍ୟା ଘେନିଗଲେ ।
ସଂଗ୍ରାମେ କୁମରମାନେ ପଡ଼ିଲେକ ସହୁଁ
ପଳାଇ ଡରେ ଲୁଚିଲି ହ୍ରଦେ ଯାଇ ତହୁଁ ।
ବ୍ରହ୍ମାଏ ବୋଇଲେ ତୁମ୍ଭେ ଶୁଣ ନୀଳାମ୍ବର
ବରୁଣ ବରିଲା ଯେବେ ତୁମ୍ଭର କୁମର ।
ବିଶ୍ୱନାଥ କୁମରକୁ ବରିଲା ତା ନାରୀ
ଦୁହିଙ୍କ ବରଣ ଆମ୍ଭେ ଭଙ୍ଗି ତ ନପାରି ।
ଏ ମୋହର ବଚନକୁ ଶୁଣ ତ୍ରିପୁରାରି
ମଧ୍ୟସ୍ଥ ପଣେ କହିବୁ ଆମ୍ଭେତ ବିଚାରି ।
କାର୍ତ୍ତିକ ଆନନ୍ଦାନନ୍ଦେ ବରବେଶ କରି
ଚାଲ ଘେନିଯିବା ଆମ୍ଭେ ବରୁଣର ପୁରି ।
ଦୁଇବର ବସାଇବା ବେଦୀର ଉପରେ
ଅଳଙ୍କାରମାନ ଦେବ କନ୍ୟାର ଶରୀରେ ।
ବରଣମାଳା କନ୍ୟାର ହସ୍ତେ ନେଇ ଦେବ
ଯାହାର କଣ୍ଠରେ କନ୍ୟା ମାଳା ଲମ୍ବାଇବ ।
ତାହାର ହୋଇବ କନ୍ୟା ଆମ୍ଭର ବିଚାରେ
ଶୁଣି ସନମତ କଲେ ହରି ନୀଳାମ୍ବରେ ।
ତୁରିତେ ମିଳିଲେ ଯାଇ ବରୁଣ ଭୁବନେ
ବ୍ରହ୍ମା ବିଷ୍ଣୁ ସହିତରେ ଘେନି ପରିଜନେ ।
ଆନନ୍ଦାନନ୍ଦ ଯେ ବେନିଖଣ୍ଡ ହୋଇଥିଲେ
କମଣ୍ଡଳୁ ପାଣି ସିଞ୍ଚି ବ୍ରହ୍ମା ଜୀଆଇଲେ ।
ଦେଖି ନୀଳାମ୍ବର ନେଇ କୋଳେ ବସାଇଲେ
ଆଲିଙ୍ଗନ କରି ରାମ ମୁଖେ ଚୁମ୍ବ ଦେଲେ ।

କାର୍ତ୍ତିକ ଆନନ୍ଦାନନ୍ଦେ ବରବେଶ କରି
କୋଳକରି ଘେନିଗଲେ ତହୁଁ କୁଶଧାରୀ ।
ରତ୍ନବେଦୀର ଉପରେ ତହୁଁ ବସାଇଲେ
ବରୁଣ ରାଜାକୁ ଚାହିଁ ବ୍ରହ୍ମାଏ ବୋଇଲେ ।
କନ୍ୟାକୁ ଆଣ ସୁବେଶ ବେଗେ ତୁ କରାଇ
ଆଜ୍ଞାଦେଲେ ବ୍ରହ୍ମା ତହୁଁ ବରୁଣକୁ ଚାହିଁ ।
ବ୍ରହ୍ମା ଆଜ୍ଞାପାଇ ତହୁଁ ଗଲା ଦଣ୍ଡଧାରୀ
ଅର୍ଜୁନ କୋଳରୁ ବେଗେ ଆଣିଲା କୁମାରୀ ।
ଦିବ୍ୟବେଶ କରାଇଣ କନ୍ୟା ରତ୍ନ ନେଲେ
ବେଦୀ ଘୁମୁଡ଼ିଆ ତଳେ ନେଇ ଉଭା କଲେ
ବରୁଣ ବୋଇଲେ ମାଗୋ ଶୁଣ ମୋ ଉତ୍ତର
ଦଇବକୁ ବିଚାରିଣ ଯାହାକୁ ତୁ ବର ।
ପିତାର ବଚନେ ବାଳୀ କଲାକ ଗମନ
ପ୍ରବେଶ ହୋଇଲା ଯାଇ ରତ୍ନବେଦୀ ସ୍ଥାନ ।
ପ୍ରଥମେ ଚାହିଁଲା ବାଳୀ କାର୍ତ୍ତିକର ମୁଖ
ଏହାକୁ ବରିଲେ ମୋର ନାହିଁ କିଛି ସୁଖ ।
ଏକମୁଖ ପୁରୁଷକୁ ମନାଇ ନୁହଇ
ଷଡ଼ଗୋଟା ମୁଖ କେହ୍ନେ ମୁହିଁ ବୋଧିବଇଁ
ଆନନ୍ଦାନନ୍ଦକୁ ଦେଖି ବରୁଣ ଦୁହିତା
କନ୍ଦର୍ପ ସମ ସୁନ୍ଦର ଦେଖି ବଳବନ୍ତା ।
ବିଚାରି ବୋଇଲା ବାଳୀ ଏହି ମୋର କାନ୍ତ
ଏହାର ରୂପହିଁ ମୋର ମନରେ ସିଦ୍ଧାନ୍ତ ।
ଏତେକ ବିଚାରି ବାଳୀ ମନେ ମନେ ଭାଳି
ଆନନ୍ଦାନନ୍ଦ କଣ୍ଠରେ ଲମ୍ବାଇଲା ମାଳ ।
ଦେଖିଣ ସନ୍ତୋଷ ହେଲେ କାହ୍ନୁ ସଙ୍କର୍ଷଣ
ବ୍ରହ୍ମା ବୋଇଲେ ରୁଚିଲା ଯାକୁ କନ୍ୟା ମନ
ନ ବିଚାରି କପାଁ ତୁମ୍ଭେ ଜୁଝ ଅନ୍ୟୋଅନ୍ୟେ
ସମସ୍ତେ ମିଳିବା ଚାଲ ବରୁଣ ଭୁବନେ ।
ଦୁହିତା ଗୋଟିକୁ ଚାରି କରାଇବା ଦାନ
କୈଳାସେ ଯିବାକୁ ମନ କଲେ ତ୍ରିଲୋଚନ
ବ୍ରହ୍ମାଏ ବୋଇଲେ ମନ ଆନ କି ହୋଇଲା
ଆମ୍ଭ ବିଚାର କି ତୁମ୍ଭ ମନକୁ ନଇଲା ।
ସଦାଶିବ ବୋଇଲେ ହେ ମରାଳବାହନ
ଯୁକ୍ତି କଥାରେ ଆମ୍ଭର କପାଁ ଆନ ମନ ।
ବ୍ରହ୍ମା ବୋଇଲେ ଏ କଥା ନୁହଇ ତ ଭଲ
କୈଳାସ ଯିବା ବୋଲି କପାଇଁ ବୋଇଲ ।

ଶୁଭଯୋଗେ ରାମ ପୁତ୍ର ତୁମ୍ଭେ ବିଭା କର
ତେବେ ବୋଲିବା ନା ଏକ ଆମ୍ଭେ ହରିହର
ଶୁଣି ପରମ ସନ୍ତୋଷ ହୋଇଲେ ଶଙ୍କର
ବରୁଣଙ୍କୁ ବୋଇଲେ ହେ ଶୀଘ୍ର ବିଭା କର
ସମସ୍ତ ଯୋଗାଡ଼ମାନ କଲା ଜଳପତି
ବିଚାରି ବିଧି ଯେତେକ ଆଣିଲେ ଝଟତି ।
ବଳରାମ ବସିଲେକ ପୁତ୍ର କୋଳେ ଧରି
ମଙ୍ଗଳ ବିଧି ସ୍ୱୀକାରି ବରଣ ଉଚ୍ଚାରି ।
ଯଥା ଅନୁମତେ ସାରି ବିଭାର ବିଧାନ
ବେନି ହସ୍ତକୁ ବାନ୍ଧିଲେ ଗାର୍ଗ୍ୟ ଯେ ବ୍ରାହ୍ମଣ
ଯଉତୁକ ଦେଲା ରାଜା ଅନେକ ସମ୍ଭାର
ରଥ ଗଜ ତୁରଙ୍ଗମ ଅନେକ ପ୍ରକାର ।
ଥାଳି ଗରୁଆ ଅନେକ କୁଣ୍ଡ କଂସା ଗିନା
ଆଲଟ ଆଲମ ପାଟଛତ୍ର ରୂପା ସୁନା ।
ନାନାବିଧ ଯଉତୁକ ଅପାରୁ ଅପାର
ଦାସୀ ପରିବାରୀ କେତେ ଦାସ ପରିଚାର ।
କର ଯୋଡ଼ିଣ ବରୁଣ ବହୁତ କାନ୍ଦିଲା
କନ୍ୟାରତ୍ନ ସହିତରେ ସମର୍ପିଣ ଦେଲା ।
ଦେଖି କାହ୍ନୁ ବଳରାମ ସନ୍ତୋଷ ହୋଇଲେ
ବିଭାର ବିଧାନ ସାରି ଗୃହକୁ ଚଳିଲେ ।
ବେଦବ୍ରହ୍ମା ଚଳିଗଲେ ଆପଣାର ଦେଶ
ବିଚିତ୍ର କୁତୁହଳ ଏ ବିଭାଘର ରସ ।
କପିଳାସେ ବିଜେ କଲେ ଦେବ ତ୍ରିଲୋଚନ
ଯେ ଯାହା ସ୍ଥାନକୁ ବିଜେ କଲେ ସର୍ବଜନ
ଦୁର୍ଯ୍ୟୋଧନ ଭୀଷ୍ମ ଦ୍ରୋଣ ଦୁଃଶାସନ କର୍ଣ୍ଣ
ସୈନ୍ୟବଳ ଘେନିଗଲେ ଆପଣାଭୁବନ ।
ରାମକୃଷ୍ଣ ଆଦି ଯେତେ ଭୋଜ ଯଦୁସୈନ୍ୟ
ଯୁଧିଷ୍ଠି ସହିତେ ଭୀମ ନକୁଳ ଅର୍ଜୁନ ।
ବରକନ୍ୟା ଘେନି ଯାଇ ଦ୍ୱାରକାରେ ମିଳି
ଦେଖି ପାଟବଂଶୀ କନ୍ୟା ଦେଲେ ହୁଳହୁଳି
ବରକନ୍ୟା ଘେନି ହେଲେ ଭିତରେ ପ୍ରବେଶ
ଦେଖିଣ ଯୁବତୀମାନେ ହୋଇଲେ ହରଷ ।
ଶୀତଳ ମଣୋହି ତହିଁ ବରକନ୍ୟା ସାରି
ଆସ୍ଥାନେ ବିଜୟ କଲେ ରାମ ବଂଶୀଧାରୀ ।
ଯୁଧିଷ୍ଠି ଭୀମ ନକୁଳ ସହଦେବ ମିଳି
ଅର୍ଜୁନ ବସିଲେ ଯହିଁ ବିଜେ ବନମାଳୀ ।

ଆପଣରେ ବସାଇଣ ପୂଜନ୍ତି ଗୋବିନ୍ଦ
ଦ୍ୱାରକାରେ ପୁରଜନ ସମସ୍ତେ ଆନନ୍ଦ ।
ନିତ୍ୟକର୍ମମାନ ସାରି ରାମ ଭଗବାନ
ପାଣ୍ଡବଙ୍କୁ ସଙ୍ଗେ ଘେନି କରନ୍ତି ଭୋଜନ ।
ଆଚମନ ସାରି ତାଙ୍କୁ ତାମ୍ବୁଳ ଭୁଞ୍ଜାଇ
ସୁବର୍ଣ୍ଣ ଆସନେ ପାଞ୍ଚଭାଇଙ୍କୁ ବସାଇ ।
ବଳରାମ ବୋଇଲେ ହୋ ଶୁଣ ତୁ ଯୁଧିଷ୍ଠି
ବହୁ ଆପଦୁଁ ଆମ୍ଭଙ୍କୁ ରଖିଲ କରିଟି ।
ଯୁଧିଷ୍ଠିଦେବ ବୋଇଲେ ତୁ ଯେ ନିରାକାର
ତୋ ତହୁଁ ବଡ଼ ଆଉ କେ ଅଛଇ ସଂସାର
ତୁହି ଯେ ଅନାଦିପତି ଜଗତ କରତା
ତୁହି ଯେ ଅନାଦି ମୂଳ ଜଗତର ପିତା ।
ତୁହି ଯେ ଅନାଦି ବ୍ରହ୍ମ ପରଂବ୍ରହ୍ମଜ୍ଞାନୀ
ଭାରତର ଉଦ୍ଧରିବୁ ତୁ ଯେ ଦେବସ୍ୱାମି ।
ଶ୍ରୀନୀଳାମ୍ବର ଦେବଙ୍କ ଚରଣେ ମୋ ସେବା
ଶ୍ରୀଶାରଳା ଦାସକୁ ଯେ ଗତିମୁକ୍ତି ଦେବା ।
ଯୁଧିଷ୍ଠିଙ୍କୁ ସଙ୍କର୍ଷଣ କରାଇ ଶୟନ
ଯାଇ ମିଳିଲେ ସେ ଦେବ ଆପଣା ଭୁବନ ।
ପାଦେଶ ଖଟିଲେ ରେବତୀ ବାରୁଣୀ ତାଙ୍କର
କହିଲେ ସେ ବେନିଜନ ଆଗେ ନିଳମ୍ବର ।
ଶୁଣିଣ ସବୁ ରେବତୀ କହିଲେ ଗ୍ରମୁର
ବହୁତର ଅପମାନ ପାଇଲେ ତହିଁରେ ।
ପାଇଲେ କାର୍ତ୍ତିକେଶ୍ୱର ମନେ ଗୁରୁବ୍ୟଥା
ରାମ ବୋଇଲେ କାହିଁକି କହିଲ ଏ କଥା ।
ସଦାନନ୍ଦ ଆମ୍ଭେ ଦୁହେଁ ଏକ ଆତ୍ମା ସିନା
କାହିଁକି ଆନନ୍ଦାନନ୍ଦ ଭିନ୍ନ ନୁହନ୍ତି ନା ।
ଲଜ୍ଜିତ ହୋଇ ରେବତୀ ବାରୁଣୀ ରହିଲେ
ପ୍ରଭୁଙ୍କୁ ଖଟିଣ ଅବକାଶେ ସେବା କଲେ ।
ଶ୍ରୀକୃଷ୍ଣଚନ୍ଦ୍ର ମିଳିଲେ ଆପଣାର ପୁରୀ
ପାଟବଂଶୀମାନେ ମିଳି ଅବକାଶ କରି ।
ଉପୁଜିଲା ଯେତେ ଯେତେ କଥାନ୍ତ ବେଭାରେ
ସମସ୍ତ କହିଲେ ପ୍ରିୟବତୀଙ୍କ ଆଗରେ ।
ରୁକ୍ମିଣୀ ଯେ ସତ୍ୟଭାମା କାଳିନ୍ଦୀ ତୁଳସୀ
ଜାମ୍ବବତୀ ବ୍ରହ୍ମବତୀ ଅଷ୍ଟପାଟବଂଶୀ ।
ସମସ୍ତେ ହସିଣ ତହିଁ ବ୍ରହ୍ମାଙ୍କୁ କହିଲେ
ଶଙ୍କର ଅନେକ ଅପମାନ ତ ପାଇଲେ ।
ଶୁଣି ତାହାଙ୍କୁ କହିଲେ ପ୍ରଭୁ ପୀତବାସ
ହରିହର ଏକ ଆତ୍ମା ନାହିଁ କିଛି ଦୋଷ ।
ବ୍ରହ୍ମା ନିଜେ ଆସି ଯାହା କରିଗଲେ ଭଲ
ସେ କଥାକୁ ତୁମ୍ଭେମାନେ ଆନ ଯେ ନବୋଲ
ଶୁଣି ସମସ୍ତେ ମସ୍ତକେ କର ନେଇ ଦେଲେ
ବେନିପାଦେ ପଡ଼ି ଶୋଇ ମଉନେ ରହିଲେ
ଏ ପ୍ରକାରେ ଏ ମିଳେନ୍ଦ୍ରୀ ଷଭାଘର ରସ
ସୁଜନ ଜନେ ମୋହର ନ ଘେନିବା ଦୋଷ
ଶ୍ରୀହରି ଚରିତ ଏହି ବଚନ ଆଖ୍ୟାନ
ସୁମରିଲେ ଲଭିବ ଯେ ବୈକୁଣ୍ଠ ଭୁବନ ।
ଶ୍ରୀକୃଷ୍ଣଚନ୍ଦ୍ର ଚରିତ ସୁଧାମୟ ରସ
ଶ୍ରୀହରି ଚରଣ ଧ୍ୟାୟେ ଶ୍ରୀଶାରଳା ଦାସ ।

---

## କୁଣ୍ଡାଳସେନ ବଧ

ବଦନ୍ତି ଅଗସ୍ତି ମନୁ ବୈବସ୍ୱତ ଶ୍ରୋତା
ଏ ଯେ ମହାଭାରତର ମଧ୍ୟପର୍ବ କଥା ।
ବହୁତ ଆଦର ପାଇ ଧର୍ମର ନନ୍ଦନ
ରହିଲେ ସପତଦ୍ଦିନ ଦ୍ୱାରକା ଭୁବନ ।
ବାରୁଣାବନ୍ତକୁ ସେହି ଆସିବାର ବେଳେ
ଅସୁରେକ ମାଇଲେଟି ମାଦ୍ରୀର ଦୁଲାଳେ ।
ଶୁଣି ବୈବସ୍ୱତ ମନୁ ପ୍ରଣମିଲେ ଉଠି
ପୁଣ ପୁଣ ଅଗସ୍ତିଙ୍କ ପାଦତଳେ ଲୋଟି ।
ହେ ମହାମୁନି ତୁ ମୋତେ ଅନୁଗ୍ରହ କର
ମହାଭାରତ ଶ୍ରବଣେ ଶରଧା ମୋହର ।
ତୁମ୍ଭେ ମହାମୁନି ପୁଣି ଅଟ ମହାଜ୍ଞାନୀ
କହିବା ଅସୁର ବଧ ମୋତେ ମହାମୁନି ।
ବଦନ୍ତି ଅଗସ୍ତି ମୁନି ଶୁଣ ମନୁ ଶ୍ରୋତା
ସାବଧାନେ ଶୁଣ ସେହି ଅସୁର ବାରତା ।
କୁଣ୍ଡଳୀ ଦୈତ୍ୟ ମରଣ ଅନ୍ତେ ତାର ସୁତ
କର୍ଣ୍ଣିକେଶରୀ ମନ୍ତ୍ରୀକୁ ପୁଚ୍ଛଇ ଏମନ୍ତ ।
ସାତମାସ ଭୋଗ ହେଲା ନୃପତି ନଇଲେ
ଥାଟ ସୈନ୍ୟ ସଙ୍ଗେ ନାହିଁ ଏକାହୋଇ ଗଲେ
ମନ୍ତ୍ରୀ ବୋଇଲା ଏବେ ହୋ ପେଷିବାନାଥର
ତେବେ ପାଇବା ନା ଆମ୍ଭେ ବାର୍ତ୍ତା ନୃପତିର
ଏତେକ କହି ପାଶକୁ ଅଣାଇଲେ ଦୂତ
ନୃପତି କେଉଁଣେ ଅଛନ୍ତି ବୁଝ ହେ ତଦନ୍ତ ।

ଆଜ୍ଞାପାଇ ଦୂତମାନେ ଗଲେ ଗୃଦ୍ଧବେଗେ
ଖୋଜନ୍ତି ପଶି ଦୁର୍ଗମ ବନଗିରି ଲଗେ ।
ଆରକତ ପର୍ବତରେ ଉଠିଲେକ ଯାଇଁ
ଶୃଗାଳ ଗୃଧ୍ର ସେଠାରେ ଛନ୍ତି ରୁଣ୍ଡ ହୋଇ ।
ଅସୁର ମାଂସ ସରବେ ଖାଉଛନ୍ତି ମିଳି
ଭୟଙ୍କର ମୁଖ ଦିଶୁଅଛି ବିକଟାଳି ।
ଡଗରେ ଯେ ବିଶୃରନ୍ତି ଏ କାହାର ଶବ
କେବଣ ମହାତ୍ମା ଏଥେ ନାଶ ହୋଇଥିବ ।
ଏତେ ବିଶୃର ମିଳିଲେ ଯାଇଁ ତାର କତି
ଦେଖିଲେ ପଡ଼ି ଅଛଇ କୁଣ୍ଡଳୀ ନୃପତି ।
ଅନେକ ଯେ ବନଗିରି ହୋଇଅଛି ଚୂନା
ସମରେ କେ ମାଇଲା ଏ ଦୈତ୍ୟକୁଳ ସେହ୍ନା
ଏତେକ ବିଶୃରି ରହି ଲୋଡ଼ନ୍ତି ଡଗରେ
ପ୍ରବେଶ ହୋଇଲେ ଯାଇଁ ହସ୍ତିନା ନଗରେ ।
ଶୃପତି ପ୍ରଦ୍ଧଟ ତହୁଁ ପାଇଲେ ବାରତା
ଧୃତରାଷ୍ଟ୍ର ନୃପତି ଯେ ଦୁର୍ଯ୍ୟୋଧନ ପିତା ।
ଦୁର୍ଯ୍ୟୋଧନର ସୋଦର ଯୁଧିଷ୍ଠି କନିଷ୍ଠ
ନାମ ନକୁଳ ମାଇଲା ଅସୁର ଗରିଷ୍ଠ ।
କର ଯୋଡ଼ିଣ କହନ୍ତି ଯେ କୁଦ୍ଦାଳସେନ
ହସ୍ତିନା ନଗରବାସୀ ରାଜା ଦୁର୍ଯ୍ୟୋଧନ ।
ମୃଗୟା ବିନୋଦେ ଆସିଥିଲେ ସେ ନୃପତି
ଭ୍ରମନ୍ତେ ଦେଖିଲା ତାଙ୍କୁ କୁଣ୍ଡଳୀ ଭୂପତି ।
ବେନି ଜଣଙ୍କର ହେଲା ବହୁତ ସମର
ଦୁର୍ଯ୍ୟୋଧନ ସହି ଥାଟ ପଡ଼ିଲେ ତାହାର ।
ଶତଭାଇ ସଙ୍ଗେ ବେନି ନୃପତି ପଡ଼ିଲେ
କୁଣ୍ଡଳେଶ୍ୱର ନୃପତି ରଣ ଜୟ କଲା ।
ସଂଗ୍ରାମକୁ ଜୟକରି ଆସନ୍ତେ ରାଜନ
ନକୁଳ ବୋଲିକରି ସେ ଯୁଧିଷ୍ଠିର ସାନ ।
ସେ ଆସି ସଂଗ୍ରାମ ରାଜା ସହିତ କରିଲେ
ଚଉଦ ଦିବସ ଯୁଝି ରାଜାକୁ ମାଇଲେ ।
ଶୁଣିଣ କୁଦ୍ଦାଳେଶ୍ୱର ବୋଇଲା ମନ୍ତ୍ରୀକି
ଆମ୍ଭ ଥାଟ ସଜକରି ଯିବା କି ତହିଁକି ।
ପିତାଙ୍କର ବଇରୀକୁ ଯେବେ ମାରିପାରି
ତେବେ ସାର୍ଥକ ଜୀବନ ହୋଇବ ମୋହର ।
ଏତେକ ବୋଲି ଅସୁର ହୋଇଲେକ ସଜ
ଲୁହାର ରଥରେ ବିଜେ କଲେକ ଦନୁଜ ।

ମନ୍ତ୍ରୀକୁ ବୋଇଲା ମୋର ସାଜ ରେ ସଇନ
ମଦିରା ରସେ ଖାଇବା ମଧୁମାଂସ ବେନି ।
ଆଜ୍ଞା ପ୍ରମାଣେ ସାଜିଲେ ଚତୁରଙ୍ଗ ବଳ
ଧାଇଁଲେ ଅସୁରମାନେ କରି କୋଳାହଳ ।
ମହା ପ୍ରତିଜ୍ଞା କରଇ କୁଦ୍ଦାଳେଶ ବୀର
କୁଦ୍ଦାଳ ଗୋଟିଏ ବେନି ଅଛଇ ହସ୍ତର ।
ହସ୍ତିନାକୁ ଆସଇ ସେ କୋପେ ଦଣ୍ଡ ସାଜି
ଗର୍ଜ୍ଜନଘାତେ କି ମେରୁ ପଡ଼ୁଅଛି ଭାଜି ।
ଅସୁରର ପାଦଭରା ନ ସହେ ମେଦିନୀ
ନବ ଅକ୍ଷୌହିଣୀ ଥାଟ ଅଛଇ ପଳାଣି ।
ଧାମନ୍ତି ଅସୁରବଳ ଗର୍ଜି ଘନଘନ
ଅନୁକ୍ଷଣେ ଚଳନ୍ତି ସେ ଅସୁର ସଇନ୍ୟ ।
ବନଗିରି କନ୍ଦର ଯେ ଜିଣି ଚଳିଗଲେ
ଅନେକ ଦେଶ ପରଜା ବାଟେ ନାଶ କଲେ
ନୃପତିମାନେ ଶୁଣିଣ ପଳାଇଲେ ଡରେ
କେହି ରହି ନ ପାରିଲେ ଅସୁର ଆଗରେ ।
ଅପୋଗେ ଅସୁର ଆସି ପଶିଛନ୍ତି ରାଜ୍ୟ
ଗୋ ବିପ୍ର ସ୍ତ୍ରୀ ଶି ବାଳକ କରନ୍ତି ଗ୍ରାହିଧ୍ୟ ।
ରଜନୀ ଦିବସ ନାହିଁ ଚଳିଗଲେ ଥାଟେ
ପ୍ରବେଶ ହୋଇଲେ ଯାଇଁ ହସ୍ତିନା ନିକଟେ ।
ଡଗର କହିଲା ଯାଇଁ ଶୁଣ କୁରୁରାୟ
କୁଦ୍ଦାଳସେନ ଅଟଇ କୁଣ୍ଡଳୀ ତନୟ ।
ଯେ କୁଣ୍ଡଳକୁ ନକୁଳ ବୀର ବଧ କଲେ
ତାର ପୁତ୍ର ଥାଟ ବେନି ଏଥକୁ ଅଇଲେ ।
ଅନେକ ଅସୁର ଅଛି ସଙ୍ଗରେ ତାହାର
ହସ୍ତିନା ନଗ୍ରକୁ ହୋଇଛନ୍ତି ଆଗୁସାର ।
ଅନେକ ରାଜ୍ୟ ନାଶି ସେ ପ୍ରଜା ଜନ ଖାଇ
ପନ୍ଦର ଯୋଜନ ମାଡ଼ି ଆସନ୍ତି ଗୋସାଇଁ ।
ବଡ଼ ପ୍ରତାପୀ ଅଟଇ ଅସୁର ଗରିଷ୍ଠ
ସ୍ୱର୍ଗେ ରହି ନ ପାରନ୍ତି ଭୟେ ସୁରଶ୍ରେଷ୍ଠ ।
ଅସମ୍ଭାଳ ହୋଇ ତୋର ରାଜ୍ୟେ ଏବେ ପଡ଼ି
ଯମର ଉପରେ ଯମ ଦିଅଇ କି ଧାଡ଼ି ।
ଶୁଣିଣ ତରସ୍ତ ହେଲା କୁରୁକୁଳ ରାୟ
କମ୍ପନ୍ତି ଯୋଦ୍ଧାଏ ପାଇ ଅସୁରଙ୍କ ଭୟ ।
ଭୀଷ୍ମ ବୋଇଲେ ହୋ ଉଠ କୁରୁବୀରମାନେ
ସଜ ହୁଅ ଅସୁରକୁ ମାରିବା ସସୈନ୍ୟେ ।

ଆମ୍ଭେ ଦଣ୍ଡ ସାଜି ଚାଲି ଥୋକେ ଦୂର ଯିବା
ବାଟରେ ସେ ଅସୁରଙ୍କୁ ଓଗାଳି ଯୁଝିବା ।
ନ ପଶିବେ ସେ ଆମ୍ଭର ରାଜ୍ୟରେ ଯେମନ୍ତେ
ପଥ ଓଗାଳି ମାରିବା ବାଟରେ ସମସ୍ତେ ।
ସମରେ ଆମ୍ଭେ ତାହାଙ୍କୁ ନ ପାରିଲେ ଜିଣି
ବନସ୍ତକୁ କଢ଼ାଇଣ ଘେନିଯିବା ପୁଣି ।
ଆନ ଦେଶକୁ ନେଇଣ ଲଗାଇବା ଯୁଦ୍ଧ
ବନସ୍ତେ ବୁଲାଇ ତାଙ୍କୁ କରିବାକ ବଧ ।
ଭୀଷ୍ମଙ୍କର ବଚନହିଁ ସଭିଙ୍କୁ ଯୋଗାଇ
ଦ୍ରୋଣ କୃପ ବୋଇଲେ ଏ ଉଚିତ ନୁହଇ ।
ସଞ୍ଜୟ ବିଦୁରେ ଚାହିଁ କହେ କୁରୁରାୟେ
ନଗ୍ର ରଖିଥିବ ତୁମ୍ଭେ ବିବିଧ ଉପାୟେ ।
ଯୋଦ୍ଧା ଘେନି ଆମ୍ଭେମାନେ ଯାଉଛନ୍ତୁ ଆଗକୁ
ରାଜା ପ୍ରଜାଜନ ଏବେ ଲାଗିଲା ତୁମ୍ଭଙ୍କୁ ।
ଆମ୍ଭଙ୍କୁ ବଳାଇ ଯେବେ ସେ ଅସୁରେ ଆସି
ଧନ ପ୍ରଜା ଘେନି ତୁମ୍ଭେ ବନେ ଯିବ ପଶି ।
ଏତେକ କହି ନୃପତି ହୋଇଲା ବାହାର
ସଙ୍ଗତରେ ଶତ ଭାଇ ଅଛନ୍ତି ତାହାର ।
ଭୀଷ୍ମ ଦ୍ରୋଣ ଶଲ୍ୟ କୃପ କର୍ଣ୍ଣ ଅଶ୍ୱତ୍ଥମା
ଜୟଦ୍ରଥ ଶକୁନି ସେ ରାଜା କୃତବର୍ମା ।
ରଥ ଆରୋହି ଚଳନ୍ତି କୁରୁ ଯୋଦ୍ଧାମାନେ
ପ୍ରବେଶ ହୋଇଲେ ଯାଇଁ ଆରଡ଼ିକ ବନେ ।
ବିଚାର କରନ୍ତି ଆମ୍ଭେ ଏହିଠାରେ ଥିବା
ଅସୁରେ ଆଇଲେ ଏଥେ ସମର କରିବା ।
ଏସନକ ସମୟେ ସେ ଦୈତ୍ୟସୈନ୍ୟ ଦିଶି
ମହାପ୍ରଳୟ କାଳ କି ଘୋଟିଲାକ ଆସି ।
ବହୁତ ଦୂରରୁ ସହିଁ ଦେଖିଲେ ଅସୁରେ
ଶସ୍ତ୍ର ଧରି ନ ପାରିଲେ ଭୟେ କୁରୁବୀରେ ।
ସୈନ୍ୟ ବହୁତର ଦେଖି ତ୍ରସ୍ତ ଯୋଦ୍ଧାମାନେ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଗ ହେଲେ ବିଦ୍ୟମାନେ
ରେରେକାର କରି ଚାପେ ନାରାଚ ପୂରାଇ
ଅସୁରଙ୍କ ଉପରକୁ ବିନ୍ଧିଲେ ଉଡ଼ାଇ ।
ମାଇଲେ ସେ ବଜ୍ରସମ ବାଣ ଏକୁଁ ଏକ
ମାଇଲେ ଯୁଦ୍ଧରେ ସେହି ଅସୁର ଅନେକ ।
ରହିଲେ ଅସୁରସୈନ୍ୟ ସହିଲେକ ଯୁଦ୍ଧ
ମାରନ୍ତି ଅସୁର ଘେନି ଯେ ଯାହା ଆୟୁଧ ।

ମୂଷଳ ମୁଦ୍‌ଗର ଶୂଳ ପରିଘ ଶକତି
ମହାଯୁଦ୍ଧକୁ ସେ କେହି ନ କରନ୍ତି ଖାନ୍ତି ।
ଦେଖି କର୍ଣ୍ଣବୀର କୋପେ ହେଲେ ଆଗସରି
ବଜ୍ରସମ ଶକତିଏ ମାଇଲେକ ଧରି ।
ତିନିଗୋଟି ଅସୁରହିଁ ପଡ଼ିଲେ ତ ଘାଏ
ଦେଖିଣ ଅସୁର ସେନାପତି କୋପେ ଧାଏଁ ।
ବଜ୍ରଅଙ୍ଗ ଭାସକର୍ଣ୍ଣ ମେଧାବୀ ଅସୁର
କର୍ଣ୍ଣ ତୁଲେ ଏ ତିନିହେଁ କଲେକ ସମର ।
ଏକ କର୍ଣ୍ଣକୁ ବିନ୍ଧିଲେ ଏହି ତିନି ସେନା
ଅସୁରର ସୈନ୍ୟ କେବେ ନ ଯାଇ କଳନା ।
ଶସ୍ତ୍ରମାନ ନ ଭେଦଇ ତାହାଙ୍କର କାୟେ
ଏକ ପଡ଼ନ୍ତେ ଆରେକ ବେଗେ ଆଗ ହୁଏ ।
କର୍ଣ୍ଣବୀରହିଁ ତହିଁକି ଅଟେ ମହାଯୋଦ୍ଧୀ
ନିମିଷକେ କୋଟି କୋଟି ଶର ବିନ୍ଧେ ସନ୍ଧି ।
ଅସୁରଙ୍କ ଶରୀରକୁ ବାଣେ ଦେଲା ଗୁନ୍ଥଇ
ବଜ୍ରାଙ୍ଗ ବୀର ପରିଘ କରେ ଘେନି ଧାଇଁ ।
କର୍ଣ୍ଣ ଉପରକୁ ବେଗେ ମାଇଲା ଅସୁର
ବେଢ଼ରେ ପଡ଼ି ଅଛଇ ରାଧାର କୁମର ।
ଦୁର୍ଯ୍ୟୋଧନ କହଇ ଯେ ଦ୍ରୋଣମୁଖ ଚାହିଁ
ସମସ୍ତେ ସମର କରି ଏକଧାନ୍ତ ରହି ।
ଗୋଳଯୁଦ୍ଧ କରି ଆମ୍ଭେ ମାରିବା ଅସୁର
ଧର୍ମ ଅଧର୍ମ ବୋଲି ଯେ ବିଚାର ନ କର ।
ଦୁଃଶାସନକୁ ବୋଇଲା ଅନାଉଁ ନା ଭାଇ
ଅସୁରେ ଯୁଝନ୍ତି କର୍ଣ୍ଣ ସଙ୍ଗେ ପରିଘାଇ ।
ମାର ଅସୁରଙ୍କୁ ବାବୁ ପିଟି ଗଦା ଘେନି
ମରନ୍ତୁ କିନା ସଂଗ୍ରାମେ ଦର୍ପିଷ୍ଟ ସଇନ ।
ଶୁଣିଣ କୁମରମାନେ ଗଦା ଘେନି ଉଠି
ଅସୁରଙ୍କୁ ପିଟନ୍ତି ସେ କରି କୋପଦୃଷ୍ଟି ।
ରେରେକାର କରି ଧାଏଁ ଦୁଃଶାସନ ବୀର
ଭାସକର୍ଣ୍ଣକୁ ପିଟିଲା ନେଇ ଗଦାବର ।
ଗଦା ବାଜି ସେ ଅସୁର ପଡ଼ିଲା ଧରଣୀ
ମେଧାବୀ ମହାବୀର ଯେ ଧାଇଁଲାକ ପୁଣି ।
ଗର୍ଜିଣ ମାଇଲା ସେହୁ ଶକତିଏ ପୁଣି
ଦୁଃଶାସନର ଉପରେ ପଡ଼ି ହେଲା ଚୂର୍ଣ୍ଣ ।
ଗର୍ଜିଣ କୋପେ ଉଠିଲା ଦୁଃଶାସନ ବୀର
ଅସୁର ଉପରେ ଗଦା କଲାକ ପ୍ରହାର ।

ପଡ଼ିଲା ସେ ଗଦାବର ଭାଙ୍ଗି ଗଲା ମୁଣ୍ଡ
ଗର୍ଜି ଉଠନ୍ତେ ଅସୁର କମ୍ପିଲା ବ୍ରହ୍ମାଣ୍ଡ ।
ଘୋର ନାଦକରି ଯହୁଁ ସେ ଅସୁର ମରି
ସୈନ୍ୟ ଉପରକୁ ଧାଏଁ ଦୁଃଶା କୋପକରି ।
ଚଉଷଠି ଚଉଷଠି ଭାର ତାର ଗଦା
ବାଜନ୍ତେ ଅସୁରସୈନ୍ୟ ହେଉଛନ୍ତି ପଦା
କର୍ଣ୍ଣର ଭୁଲେ ବଜ୍ରାଙ୍ଗ ବୀର ଯୁଝୁଥିଲା
କର୍ଣ୍ଣର ଶରାଘାତେ ସେ ଦୈତ୍ୟବୀର ମଲା ।
ବୃଷକର୍ଣ୍ଣ ନାମେ ଥିଲା ଏକଇ ଅସୁର
କର୍ଣ୍ଣକୁ ଘେନଲା କରେ ଧରି ଗଦାବର ।
ମାରନ୍ତେ ଅସୁର ଗଦା କର୍ଣ୍ଣ କାଟି ବେଗେ
ପାଶୁପତ ବାଣ ତାକୁ ମାଇଲାକ ରାଗେ ।
ପଡ଼ିଲା ଅସୁରବୀର କମ୍ପିଲାକ ମହୀ
କର୍ଣ୍ଣର ସ୍ମୁରେ ଦୈତ୍ୟ ନ ପାରିଲେ ରହି ।
ପଳାଇଲେ ସଂଗ୍ରାମରୁ ଦୈତ୍ୟ ସୈନ୍ୟମାନେ
ଅସୁର ରାଜନ ଦେଖେ ଥାଇ ସନ୍ନିଧାନେ ।
ରଥରୁ ଓହ୍ଲାଇ ଆସି କର୍ଣ୍ଣକୁ ଓଗାଳି
କୁଠାର ଘେନି ପିଟିଲା ଦୈତ୍ୟ ମହାବଳୀ ।
କର୍ଣ୍ଣବୀର ରଥ ଭାଙ୍ଗି ହୋଇଗଲା ଚୂନା
କୁନ୍ଦାଳ ଘେନି ଧାମଇ ଦୈତ୍ୟକୁଳ ସେହ୍ନା
ସେ କୁନ୍ଦାଳ ଘେନି ବୀର ମାଇଲା କର୍ଣ୍ଣକୁ
ବାଜିଲା କର୍ଣ୍ଣର ଅଙ୍ଗେ ଭାଙ୍ଗିଲା ତା ବୁକୁ ।
ଦୁଃଶାସନ ତାର ଆଗେ ଓଗାଳିଲା ଧାଇ
ଘେନି ଗଦାବର ନେଇ ମାଇଲା ହଠାଇ ।
ଧନ୍ୟ ସେହି ଅସୁରର କଣ୍ଠୁହିଁ ନୋହିଲା
ହସ୍ତରେ କୁନ୍ଦାଳ ଘେନି ଅସୁର ଧାଇଁଲା ।
ଦେଖି ଦ୍ରୋଣଗୁରୁ ତାକୁ ଓଗାଳେ ଆଗର
କି ଅବା ମେରୁର ଆଗେ ରହିଛି ମନ୍ଦର ।
ସମ୍ଭାଳ ଅସୁର ବୋଲି ମାଇଲେକ ଶର
ଏ ବଧରେ ବନ୍ଦୁଛନ୍ତି ଗଙ୍ଗାଙ୍କ କୁମର ।
ମାରନ୍ତି ଶତେକ ଭାଇ କରେ ଗଦା ଘେନି
ବାଜନ୍ତି ସେ ଶସ୍ତ୍ରମାନେ ଝଲକନ୍ତି ବହ୍ନି ।
ମୁଣ୍ଡକୁ ପାତିଅଛଇ ପ୍ରତାପୀ ଅସୁର
ଗଦାମାନ ଭାଜି ଦେହେ ହେଉଛନ୍ତି ଚୂର ।
ମେରୁ ଅଙ୍ଗେ ପଡ଼ି ଯେସନେ ପଡ଼ଇ ଉଚ୍ଛୁଡ଼ି
ତେସନ ଶର ଦଇତ୍ୟ ଦେହେ ପଡ଼େ ଝଡ଼ି ।

ସାଷ୍ଟାମ ହୋଇ ଉଠିଲା ପୁଣ ରାଧାସୁତ
ସମର କରଇ ସେହି ଚଢ଼ି ଆନ ରଥ ।
କୋଟିଏ ପର୍ବତଶର ବର୍ଷିଲାକ କର୍ଣ୍ଣ
ଅସୁରର ଦେହେ ପଡ଼ି ସବୁ ହେଲା ଚୂର୍ଣ୍ଣ ।
ଅବୁଦେ ଶର ପେଷିଲା ପୁଣି ରାଧାସୁତ
ମୁଣ୍ଡ ପାତିଣ ସହିଲା ତାହାକୁ ଦଇତ୍ୟ ।
ବର୍ଷିଲାକ ଅଗ୍ନି ଶର ପୁଣି ଘେନି କର୍ଣ୍ଣ
ଏହିକ୍ଷଣି ଜଗତ କି ହୋଇବ ଦହନ ।
ପ୍ରଳୟର ଦାବାନଳ ଜଣି ତାର ତେଜ
ପାଟି ବିସ୍ତାରି ଗିଳିଲା ତାହାକୁ ଦନୁଜ ।
ବଜ୍ରଶକ୍ତି କର୍ଣ୍ଣ ପୁଣ ଅସୁରେ ପ୍ରହାରି
ତହିଁରେ ସେ ଦାନବକୁ ନ ପାରିଲା ମାରି ।
ଗଙ୍ଗାର ନନ୍ଦନ ପୁଣ ବିନ୍ଧେ ଶର ଯେତେ
ସମସ୍ତ ଚୂର ହୁଅଇ ସେ ଅସୁର ଗାତ୍ରେ ।
ଦ୍ରୋଣଙ୍କର ଶରସବୁ ବ୍ୟର୍ଥ ହୋଇଲା
ମୁଣ୍ଡ ପାତି ସେ ଦାନବ ସମସ୍ତ ସହିଲା ।
ଦୁଃଶାସନ ଗଦା ତାର ଦେହେ ନ କାଟଇ
ଜୟଦ୍ରଥ ଭୂରିଶ୍ରବା ଶରେ କିବା ହୋଇ ।
ଧୃତରାଷ୍ଟ୍ରର ପୋଏତ ସମରେ ବିମୁଖ
ଦୈତ୍ୟର ସୈନ୍ୟ ମରନ୍ତି ତେଣେ ଲକ୍ଷ ଲକ୍ଷ
ଅସୁରର ବଳ ପାଞ୍ଚକ୍ଷଉଣୀ ପଡ଼ିଲା
ଚୂରି ଅକ୍ଷୌହିଣୀ ଘେନି ଦୈତ୍ୟ ଗୋଡ଼ାଇଲା
କୁନ୍ଦାଳ ବୁଲାଇ ଦୈତ୍ୟ ଧାଏଁ ଅତିବେଗେ
କେହି ନ ରହି ପାରିଲେ ଦାନବର ଆଗେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ପଛଘୁଞ୍ଚା ଦେଇଯାଇ
କୁନ୍ଦାଳ ଘେନି ଅସୁର ଅଛଇ ଗୋଡ଼ାଇ ।
ପଳାନ୍ତି କୁରୁସାଗର ନ ରହନ୍ତି ଜଣେ
ଭୀଷ୍ମଙ୍କୁ ଚାହିଁ କହନ୍ତି ତାକ ଗୁରୁ ଦ୍ରୋଣେ ।
କ୍ଷୁଦ୍ର ହୋଇଣ ପଳାଇଁ ଆମ୍ଭେ ଯେବେ ଯିବା
କେତେଦୂରେ ଯାଇ ଅବା କାହିଁରେ ରହିବା
ହାରିବା ଜାଣିବା ଏହି ଷଣ୍ଢ ସୁଙ୍କ ବୃତ୍ତି
କେତେକାଳହିଁ ବର୍ତ୍ତିବା କରି ଆମ୍ଭେ ଖ୍ୟାତି ।
ରହିଣ ଯୁଝିବା ଏବେ ସମସ୍ତେ ଯେ ଆସ
ଅସୁରକୁ ଅବା ପୁଣ କରିବା ବିନାଶ ।
ଭୀଷ୍ମ ବୋଇଲେ ହୋ ରହ ରହ ସର୍ବବୀର
ଅସୁରଙ୍କ ସଙ୍ଗେ ଦ୍ରୋଣ କରିବେ ସମର ।

ଭୀଷ୍ମଙ୍କ ବଚନେ କର୍ଣ୍ଣବୀରହିଁ ରହିଲା
କରେ ଧନୁ ଧରି ବୀର ଶରବୃଷ୍ଟି କଲା ।
ବନ୍ଧୁଚନ୍ଦ୍ର ଭୀଷ୍ମ ଦ୍ରୋଣ କର୍ଣ୍ଣ ଅନୁକ୍ଷଣ
ଆକାଶେ ଅଦୃଶ୍ୟ ହେଲେ ଗ୍ରହ ତାରାଗଣ ।
ଦୁର୍ଯୋଧନ ପଚ୍ଚାରଇ ହେ ମନ୍ତ୍ରି ଶକୁନି
ଦିବସ ଯେ ଷୋଳଦଣ୍ଡ ହୋଇଲାଣି ପୁଣି ।
ଆଦିତ୍ୟ ଅସ୍ତ ହେଲା କି ରାତ୍ର ପ୍ରାପ୍ତ ହୋଇ
ମୁହିଁ ଜାଣଇ ପ୍ରବେଶ ହୋଇଲାକ ନିଶି ।
ଶକୁନି ବୋଇଲା ରାଜେ ରହିକରି ଦେଖ
ଅସୁର ସଙ୍ଗତେ ଭୀଷ୍ମ ଦ୍ରୋଣ କର୍ଣ୍ଣ ହାକ ।
ବରଷା ପ୍ରାପ୍ତ କରି ସେ ବନ୍ଧୁଚନ୍ଦ୍ର ଶର
ତେଣୁ ଅଦୃଶ୍ୟ ହୋଇଲେ ହିନେ ହିନକର ।
ମନ୍ତ୍ରୀବର ବଚନରେ ବୋଲେ କୁରୁସାଇଁ
ଅସୁର ଯୁଦ୍ଧ ଦେଖିଣ ମୁଁ ରାତ୍ର ବୁଝଇ ।
କର୍ଣ୍ଣ ଯେ ମାଇଲା ବଜ୍ରାବଳି ମୁଦ୍ଗର
ସେ ବାଣ ପଡ଼ିଲା ଯାଇ ଅସୁର ଉପର ।
ତେଡ଼େ ଶସ୍ତ୍ରଗୋଟା ତାର ଉପୁଡ଼ି ପଡ଼ିଲା
ଲେଉଟି ତରକ ବୀର ଦକ୍ଷିଣକୁ ଗଲା ।
ଶତେକବାଣ ଅସୁରକୁ ବାଛିକରି ମାରି
ସାଧୁ କର୍ଣ୍ଣ ବୋଲୁ ଦୈତ୍ୟ ପ୍ରଶଂସା ଉଚ୍ଚାରି
କୁହାଳ ବୁଲାଇ ପୁଣି ମାଇଲା କଠାରି
ଭାଙ୍ଗିଲା କର୍ଣ୍ଣର ରଥ ଏକା ଅଛି ରହି ।
ତହୁଁ ଏ ଯେ ନେଲା ନାମ ଧୂମକେତୁ ତାର
ମାଇଲା ସେ ଅସୁରକୁ ରାଜସୁତ ବୀର ।
ଗଦା ପଡ଼ନ୍ତେ ଅସୁର ବୀର ହାତ ପାତି
କର୍ଣ୍ଣର ଗଦା ଉଚ୍ଛୁଡ଼ି ଯେନେଲା ଉଡ଼ନ୍ତି ।
ବାହୁଡ଼ି କର୍ଣ୍ଣର ଗଦା ମାଇଲା କର୍ଣ୍ଣକୁ
ପଡ଼ନ୍ତେ ସେ ଗଦା କର୍ଣ୍ଣ ପାତିଦେଲା ଲୁଲୁ
ଧନ୍ୟ କର୍ଣ୍ଣବୀର ବୋଲି ଅସୁର କହିଲା
ପୁଣି ପରିଘେକ ଯେନି ବୁଲାଇ ମାଇଲା ।
ଅସୁର ଉପରେ ଯାଇ ପଡ଼ିଲା ସେ ଶର
ଝଟଝଟ ହୋଇ ତହିଁ ହସିଲା ଅସୁର ।
ବୋଇଲା ପାମର ତୁମ୍ଭେ ଅଟ ଆମ୍ଭ ଭକ୍ଷ୍ୟ
ଆମ୍ଭଙ୍କୁ ମାରିବାକୁ ତୁ ଆସିଛୁ ପ୍ରତ୍ୟକ୍ଷ ।
ଜାଣିଲି ଅଜ୍ଞାନ ତୁମ୍ଭେ ସମସ୍ତେ ରେ ଅଟ
ଘରକୁ ଯିବ କି ଆଜ ପଡ଼ିଛ ମୋ ଭେଟ ।

କର୍ଣ୍ଣବୀର ବୋଇଲା ତୁ ଶୁଣ ରେ ଅସୁର
ତୋହର ବାପ ଯେ ମଲା ହସ୍ତରେ ଆମ୍ଭର ।
ତୋହର ବଳେ ଆମ୍ଭର ପାରିବୁ କି କରି
ବୃଥାତ ତୁଆଇ ଅଛୁ ଆମ୍ଭ ହସ୍ତେ ମରି ।
ଯାହାର ବାପ ଆମ୍ଭଙ୍କୁ ସଂଗ୍ରାମେ ହାରିଲା
ତାହାର ପୁତ୍ର ମରଣେ ଧାଇଁଣ ପଡ଼ିଲା ।
ଶୁଣିବାକୁ ଏ କଥା ତ ଅଟେ ଆଚମ୍ବିତ
ଏବେ ପିତା ପାଶେ ଯିବା ହେଲା ତୋ କପୃତ
ଅସୁର ବୋଇଲା ଜାଣି ଅଇଲଇଁ ମୁହିଁ
ମୋ ପିତା ମାରିଛ ଆଜ ଯିବ ତୁମ୍ଭେ କାହିଁ ।
ପାଞ୍ଚ ଯୋଜନ ଯାଏ ରେ ନ ରହି ଅଇଲ
କାହାର ବୋଲେ ପୁଣି ରେ ସମରେ ପଶିଲ
ଏତେକ ବୋଲି ସେ ଦୈତ୍ୟ ବଧାଏ ମାଇଲା
ଜାଣି କର୍ଣ୍ଣବୀର ତାହା ଆଡ଼ ହୋଇଗଲା ।
ଦ୍ରୋଣ ମହାରଥୀ ଆସି ମିଳିଲେ ତା ଆଗେ
ପାଞ୍ଚଶତ ନାରାଚ ଯେ ବିନ୍ଧି ଦେଲେ ବେଗେ
ଅସୁର ଦେହରେ ବାଜି ଭାଙ୍ଗି ଗଲା ଶର
ପୁଣି ସେ କୋଡ଼ିଏ ଶର କଲେକ ପ୍ରହାର ।
ନିଃଶ୍ୱାସକେ ହିନନ୍ତି ସେ ଶର ଦଶଦିଗନ୍ତ
ଅସୁର ଦେହେ ପଡ଼ିଣ ସବୁ ନାଶଯାନ୍ତି ।
ସୂର୍ଯ୍ୟାବର୍ତ୍ତ ନାମେ ଶର ବିନ୍ଧିଲେକ ଗୁରୁ
ପୃଥ୍ୱୀ ଛନ୍ନଛନ୍ନ ଭାଙ୍ଗି ପଡ଼ିଲା କି ମେରୁ ।
ଅସୁର ଶରୀରେ ବାଣ ପଡ଼ିଲାକ ଯାଇ
କିଛିହିଁ ନୋହିଣ ଦୈତ୍ୟ ଅଛି ଉଭା ହୋଇ
ପୁଣି ଏକ ପବନାସ୍ତ୍ର ମାଇଲେକ ଦ୍ରୋଣ
ଅସୁର କର୍ଣ୍ଣରେ ଯାଇ ପଡ଼ିଲା ସେ ବାଣ ।
ପାଞ୍ଚ ପହଣ୍ଡ ପଛକୁ ଦୈତ୍ୟ ଘୁଞ୍ଚିଗଲା
ଅସୁର ଦେହରେ ବାଜି ଉପୁଡ଼ି ପଡ଼ିଲା ।
ପୁଣି ଦ୍ରୋଣ ବିନ୍ଧିଲେକ ଅର୍ଦ୍ଧଚନ୍ଦ୍ର ବାଣ,
ଅସୁର ଦେହରେ ବାଜି ହୋଇଲା ସେ ଚୂର୍ଣ୍ଣ
ନୈଋତ ପବନ ମେରୁ ବାଣ କାଳଫାଶି
ଅଗ୍ନିଶର ମୁଦ୍ଗର ପଡ଼ି ହେଲେ ଧ୍ୱଂସି ।
ଦ୍ରୋଣଙ୍କର ପାଶେ ଗଲେ ଭୀଷ୍ମ ମହାରଥୀ
ବିନ୍ଧନ୍ତି ନାରାଚ ହୋଇ ଅତି କୋପ ମୂର୍ତ୍ତି ।
ପୁଣିହିଁ ଆରେକ ରଥ କର୍ଣ୍ଣ ସେ ଆରୋହି
ଦୈତ୍ୟକୁ ବିନ୍ଧଇ ବାଣ କୋପଭର ହୋଇ ।

ଦୁର୍ଯ୍ୟୋଧନ ଶତଭାଇ ଗଦା କରେ ଘେନି
ଅନୁକ୍ଷଣେ ମାରନ୍ତି ସେ ଅସୁର ସଇନ ।
ପଡ଼ନ୍ତି ଅସୁରମାନେ ଲୋଟନ୍ତି ଧରଣୀ
ଶେନ ପୁରାଉଅଛି ମୂଟଗାବ ଧ୍ୱନି ।
କେ ବୋଲଇ ମାର ମାର କେ ବୋଲଇ ଧର
କେ ବୋଲଇ ଆଜ ନଂଷ୍ଟ ମାରବା ଅସୁର ।
କେ ଡେଉନ୍ତେ ଆରେକ ଉଠଇ ଗରଜି
ଅସୁର ସଇନ୍ୟ ଭୟେ ପଳାଇଲେ ଭାଜି ।
ଘୋଡ଼ାଇ କୌରବ ଘନେ ମାରୁଛନ୍ତି ଶସ୍ତ୍ର
ଜୟଦ୍ରଥ ଭୂରିଶ୍ରବା ଶକୁନି ସହିତ ।
ଏକମୁଖ ହୋଇ ସର୍ବେ ମାରୁଛନ୍ତି ଶର
ଧୃତବଷ୍ଟ୍ର ପୁତ୍ରେ ଗଦା କରନ୍ତି ପ୍ରହାର ।
ଅପର୍ଯ୍ୟାପ୍ତ ଶର କୋପେ ମାଇଲେକ ଯହିଁ
ଅନେକ ଅସୁର ମରି ପଡ଼ିଲେକ ତହିଁ ।
ଦେଖିଣ କୁଦ୍ଦାଳେଶ୍ୱର ବିଚାରଇ ମନେ
ମୋହର ସୈନ୍ୟଙ୍କୁ ନାଶ କଲେ ତ ଏମାନେ
ଏତେ ବିଚାରି ଉଠିଲା ବୀର ମୁଣ୍ଡି ଆଇ
ଦ୍ରୋଣଙ୍କର ରଥ ବେଗେ ଧଇଲାକ ଯାଇ ।
ବୁଲାଇ ପିଟନ୍ତେ ସେହି ବହୁଦୂର ଗଲେ
ରଥୀ ସାରଥି ଅନେକ ଦୂରରେ ପଡ଼ିଲେ ।
ମାଇଲା ଭୀଷ୍ମଙ୍କ ରଥେ ନେଇ ଭୁଜଦଣ୍ଡ
ଭାଙ୍ଗିଲା ସେ ରଥ ଗୋଟି ହେଲା ଖଣ୍ଡ ଖଣ୍ଡ ।
ସତ୍ୟେ ଭୀଷ୍ମ ପଳାଇଲେ ମହାଭୟ ପାଇ
କର୍ଣ୍ଣଙ୍କୁ କୁଦ୍ଦାଳ ଘେନି ମାଇଲା ନଠାଇ ।
ଅଶ୍ୱ ସାରଥି ରଥ ଏ ସମସ୍ତ ପଡ଼ିଲା
ଦୁଃଶାକୁ ଦେଖି କୁଦ୍ଦାଳ ଈଶ୍ୱର ଧାଇଁଲା ।
କୁଦ୍ଦାଳ ବୁଲାଇ ନେଇ ପିଟିଲା ଅସୁର
ଦୁଃଶାସନ ଆଡ଼ଆଇ ହାତେ ଗଦାବର ।
ଅସୁର କୁଦ୍ଦାଳ ପଡ଼ି ଗଦା ଗଲା ଭାଙ୍ଗି
ମାଇଲା ଅସୁର ବୀର ହୋଇ ମହାରାଗୀ ।
ଏକ ପ୍ରହାରକେ ଦଶ ବଂଶ ସଂହାରଇ
ଦୁର୍ଯ୍ୟୋଧନ ଶତ ଭାଇ ଉଗାଳିଲେ ଯାଇ ।
ଦୁର୍ଯ୍ୟୋଧନ ରାଜା ତହିଁ ରହିଅଛି ଆଗେ
ଅତି ଆବେଗେ ତା ରଥକୁ ଧଇଲାକ ବେଗେ ।
ମହାପ୍ରତାପୀ ଅଟନ୍ତି ଦୁରନ୍ତ ଦନୁଜ
କରନ୍ତି ସମର ତେଜ ଯଥା ଚନ୍ଦ୍ର ସୂର୍ଯ୍ୟ ।

ଆପଣା ସୈନ୍ୟଙ୍କୁ ଗୃହିଁ କହେ କୁରୁପତି
ପଳାଇ ଯାଇ ଲୁଚ ରେ ସେ ତହିଁ ତଡ଼ିତ ।
ଶୁଣି ସୈନ୍ୟମାନେ ଯାନ ବାହନକୁ ଛାଡ଼ି
ବନସ୍ତ ମଧ୍ୟେ ଲୁଚିଲେ ଅତି ଦୁଃଖେ ଦଡ଼ି ।
ଦୁର୍ଯ୍ୟୋଧନ ଅସୁର ଏ କରୁଛନ୍ତି ରଣ
ଅନୁକ୍ଷଣେ ବାଣ ଧରି ବର୍ଷେ କୁରୁରାଣ ।
ନିମିଷକେ ଲକ୍ଷ ଲକ୍ଷ ବର୍ଷୁଅଛି ଶର
କୋଟି କୋଟି ମାରୁଅଛି ମୁଷଳ ମୁଦ୍‌ଗର ।
ଅନୁକ୍ଷଣେ ବାଣ ବର୍ଷେ ଚକ୍ଷୁର ନିଟକେ
ଦୁର୍ଯ୍ୟୋଧନ ଯୁଦ୍ଧକୁ ସେ ସାରି ଦେବଲୋକେ
ଏମନ୍ତ ସମର କଲେ ଦୁଇ ମହାବଳ
ଗଗନୁ ଅସ୍ତ ହୋଇଲେ କଶ୍ୟପର ବାଳ ।
କୁମ୍ଭମାସ କୃଷ୍ଣପକ୍ଷ ଚଉଠି ସେ ତିଥି
ବିଶାଖାନକ୍ଷତ୍ର ଭୁଜ ପାଞ୍ଚଦଣ୍ଡ ରତି ।
ଚନ୍ଦ୍ର ବାସର ସେ ଦିନ ସମର ଅନେକ
ଦୁର୍ଯ୍ୟୋଧନ ଭୁଲେ କଲା ଅସୁର ନାୟକ ।
ମହାଘୋର ନିଶା ତହିଁ ନ ଦିଶନ୍ତି କିଛି
ଦୁର୍ଯ୍ୟୋଧନ ଅସୁରର ସମର ଲାଗିଛି ।
କୁଦ୍ଦାଳେଶ୍ୱର ମାଇଲା କୋପେ ବଜ୍ରମୁଷ୍ଟି
ରଥୀ ସାରଥି ସେ ଭୁଲେ ଗୁଣ୍ଡାହୋଇ ଉଠି ।
ପାଦଗାମୀ ହୋଇ ମାନଗୋବିନ୍ଦ ସେ ବୀର
ଅସୁର ଭୁଲେ କରଇ ବିଷମ ସମର ।
ଗଦା ଘେନି ଧାଇଁଲା ସେ କୁରୁକୁଳ ରାୟେ
ପଡ଼ିଲାକ ଗଦାବର ଅସୁରର କାୟେ ।
ମେରୁଗିରି ଚୂର ହୁଏ ଯେଉଁ ଗଦା ବାଜି
ଅସୁର ଦେହେ ସେ ଗଦା ପଡ଼ି ଗଲା ଭାଜି ।
ଆନ ଗଦା ବୁଲାଇଣ ମାନଚକ୍ରବର୍ତ୍ତୀ
ଅସୁର ଉପରେ ବୀର ପିଟିଲା ତା ଧାତି ।
ଗର୍ଜି ଉଠିଲା ଦାନବକୁଳ ବୀରବର
କୁଦ୍ଦାଳ ଘେନି ମାଇଲା ନୃପତି ଉପର ।
ଘାଏ ଘୁମାଇଲା ତହିଁ ମାନଚକ୍ରବର୍ତ୍ତୀ
ସାଉଁଟି ଧଇଲା ବୀର ଉଠିଯାଇ ଧାତି ।
ରଥରେ ପକାଇ ମନେ ବିଚାରେ ଅସୁର
ହସ୍ତିନାର ରଜା ଏହି ଅଟେ ନୃପବର ।
ବହୁତ ସ୍ୱାଦୁ ଏହାର ମାଂସରେ ତ ଅଛି
ଏହା ସଙ୍ଗେ ଯୁଦ୍ଧକରି ମୋ ପିତା ମରିଛି ।

ଏତେକ ବିଚାରେ ସେହି ଦୈତ୍ୟକୁଳଯାଇଁ
ରନ୍ଧନ କରି ଏହାକୁ ଖାଇବାଇଁ ମୁହିଁ ।
ରଜନୀ ପାହିଲେ ଏହା ରାଜ୍ୟକୁ ମୁଁ ଯିବି
ଆଜ ଏହିଠାରେ ରହି ଏ ନିଶି ବଞ୍ଚିବି ।
ଏମନ୍ତେ ଅସୁର ବୀର ରହିଲାକ ତହିଁ
ମନରେ ବିଚାରୁଁ ଗଲା ସେ ରଜନୀ ପାହି ।
ଅସୁର କୁଦାଳେ କର୍ଣ୍ଣ ପଡ଼ିଲାକ ମୋହେ
ସୂର୍ଯ୍ୟ କିରଣ ପଡ଼ିଲା ଯହୁଁ ତାର ଦେହେ ।
ଅମୃତ କୁଣ୍ଡଳୁ ଯହୁଁ ଝରିଲା ଅମୃତ
ଚେତନା ପାଇ ଉଠିଲା ତହୁଁ ରାଧାସୁତ ।
ମୁଖରେ ଅମୃତ ପଶୁଁ ପାଇଲା ସେ ଜ୍ଞାନ
କରେ ଶସ୍ତ୍ର ଧରି ବେଗେ ଧାଇଁଲା ବହନ ।
କେହି ତେତେବେଳେ ତାର ପାଶରେ ନାହାନ୍ତି
ବିଚାରଇ କେଣିକି ସେ ଗଲା ଦୈତ୍ୟପତି ।
କାହାରଠାରୁ ନ ପାଏ କିଛିହିଁ ସନ୍ଦେଶ
କିବା ସମସ୍ତଙ୍କୁ ରଣେ ମାଇଲା ରାକ୍ଷସ ।
ଏସନ ବିଚାରି ବୀର ହସ୍ତିନା ଗମଇ
ବାଟେ ଅସୁରକୁ କର୍ଣ୍ଣ ଭେଟିଲାକ ଯାଇ ।
ହସ୍ତିନାକୁ ମୁଖକରି ଅସୁର ଚାଲଇ
ବୋଲଇ ଅସୁର କେଣେ ଯାଉଅଛୁ ତୁହି ।
ଏତେକ ବୋଲି ବିନ୍ଧିଲା ସହସ୍ର ନାରାଚ
ଗର୍ଜି ଆସଇ ନାରାଚ ଯେହ୍ନେ ସୂର୍ଯ୍ୟତେଜ ।
ବାଜନ୍ତେ ଅସୁର ଦେହେ ତିଳେ ନ ଭେଦିଲା
ପୁଣି କୋଡ଼ିଏକ ଶର ବୀରହିଁ ବିନ୍ଧିଲା ।
ଅପ୍ରମିତ ଶର ମାରେ ବୀର ଅନୁସରି
ହସ୍ତର ଚଟକ ତାର କହି ତ ନ ପାରି ।
ଅସଂଖ୍ୟ ନାରାଚ ସେହି ଟେକେ ନିମିଷକେ
ଦେଖନ୍ତି ସ୍ୱର୍ଗ ଭୁବନେ ଥାଇ ବୃନ୍ଦାରକେ ।
ଆଖି ନ ପିଟୁଣୁ ଶର ଶତେବେଳ ପେଷେ
ପ୍ରଳୟ ମେଘ ପରାୟେ ନାରାଚ ବରଷେ ।
କେବଣ ଶର ବ୍ୟଗ୍ରରେ ହୁଏ ଟେର ଆଗ
କେବଣ ଟେର ଚଳନ୍ତେ କମ୍ପଇ ଭୂଭାଗ ।
ପବନୁ ବେଗେ କେ ଅବା ମନୁ ବେଗେ ଯାଇ
ବାଣରେ ଅସୁର ଦେହେ ହୋଇଲାକ ଘାଇ ।
ଦୁର୍ଯ୍ୟୋଧନର ନିଧନେ କର୍ଣ୍ଣବୀର ରାଗେ
ଅନୁକ୍ଷଣେ ନାରାଚ ସେ ପେଷେ ବେଗେ ବେଗେ
ଅସୁରର ଦେହ ଶରେ ହୋଇଲା ବିଦୀର୍ଣ୍ଣ
ନାରାଚ ମାଇଲା ପୁଣ ପୁଣ ବୀର କର୍ଣ୍ଣ ।
ଅତ୍ୟନ୍ତ ବିମୁଖ ହେଲା ଦୈତ୍ୟକୁଳ ଶତ୍ରୁ
ରଡ଼ିଏକ ଛାଡ଼ିଲା ସେ କମ୍ପିଲା ବ୍ରହ୍ମାଣ୍ଡ ।
କୋଦାଳ ଯେହ୍ନଣ କରେ ମୁଣ୍ଡିଆଇ ପଶି
କର୍ଣ୍ଣର ଉପରେ କ୍ରୋଧେ ପିଟିଲା ନିରାଶି ।
ଦେଖି ଆଡ଼ ହୋଇଗଲା ତହୁଁ ରାଧାବାଳ
କୋପରେ ଗର୍ଜ୍ଜଇ ତହିଁ ଦୈତ୍ୟ ଅନର୍ଗଳ ।
କୁଦାଳ ଯେହ୍ନଣ ପୁଣି କର୍ଣ୍ଣକୁ ଗୋଡ଼ାଇ
ନ ରହଣ କର୍ଣ୍ଣବୀର ଅଛଇ ପଳାଇ ।
କେତେହେଁକ ଦୂରେ ଯାଇ ଦେଖିଲାକ କର୍ଣ୍ଣ
ଦ୍ୱାରକାରୁ ଆସୁଛନ୍ତି ଭୀମ ଅରଜୁନ ।
ଯୁଧିଷ୍ଠି ନକୁଳ ସହଦେବହିଁ ଅଛନ୍ତି
ଦେଖିଲେ ଯୁଧିଷ୍ଠି କର୍ଣ୍ଣବୀର କରି ଭ୍ରାନ୍ତି ।
ପଳାଉଛି ଅସୁରେକ ଗୋଡ଼ାଇ ଅଛଇ
କୁଦାଳ ଗୋଟିଏ ହସ୍ତେ ଧରିଅଛି ସେହି ।
ଯୁଧିଷ୍ଠି ବୋଇଲେ ଭୀମସେନକୁ ଅନାଇଁ
କର୍ଣ୍ଣ ପଳାଉଛି କେହି ଅଛଇ ଗୋଡ଼ାଇ ।
ଭୀମ ବୋଲେ ମନ୍ତ୍ରୀ ସହଦେବକୁ ପଚାର
କର୍ଣ୍ଣକୁ ଗୋଡ଼ାଇଅଛି କେବଣ ଅସୁର ।
କାହାର ହାତରେ ଅଛି ଅସୁର ମରଣ
ସେ ବିନା ଅସୁର ସଙ୍ଗେ କରିବ ଯେ ରଣ ।
ଆନ ଯୁଦ୍ଧ କଲେ ତାକୁ ହୋଇବ ତ ହାନି
କେବଣ ଶରେ ଅସୁର ମୃତ୍ୟୁ ଅଛି ଯେନି ।
ଭୀମର ବଚନେ ସହଦେବଙ୍କୁ ପୁଚ୍ଛିଲେ
କେମନ୍ତେ ମରିବ କହ ମନ୍ତ୍ରୀବର ଭଲେ ।
ସହଦେବ ବୋଇଲେ ଏ କୁଣ୍ଡଳୀର ସୁତ
ନକୁଳ ଠାକୁର କଲେ ଯାହା ପ୍ରାଣହତ ।
ପିତାର ନିଧନ ଶୁଣି ହସ୍ତିନା ଆଇଲା
ନବ ଅକ୍ଷୌହିଣୀ ବଳ ସଙ୍ଗେ ଆଣିଥିଲା ।
ଜାଣି ଦୁର୍ଯ୍ୟୋଧନ ଦୈତ୍ୟ ସଙ୍ଗରେ ଯୁଝିଲେ
ନବ ଅକ୍ଷୌହିଣୀ ବଳ ସମରେ ପଡ଼ିଲେ ।
ସୈନ୍ୟ ନାଶ ଦେଖି ଦୈତ୍ୟ ଆକ୍ଷେ ଯୁଦ୍ଧକଲା
କୁଦାଳ ଯେହ୍ନଣ ଦୈତ୍ୟ କର୍ଣ୍ଣକୁ ମାଇଲା ।
ଦ୍ରୋଣଙ୍କର ରଥ ଧରି ଦେଲା ଫୋପାଡ଼ାଇ
ତିନି ଯୋଜନେ ଅଛନ୍ତି ଦ୍ରୋଣ ମୋହଯାଇ ।

ତାହାଦଣ୍ଡ ମାତ୍ର ଶ୍ରେଷ୍ଠ ରଥ ଦେଲା ଭାଙ୍ଗି
ବ୍ୟସ୍ତେ ଆଉ ହୋଇ ସେହୁ ହେଲେ ରଣତ୍ୟାଗୀ
ଦୁଃଶାସନ ସଙ୍ଗତରେ ଶତେ ଭାଇ ଥିଲେ
ଅସୁର ହସ୍ତରେ ଦେବ ସର୍ବେ ନାଶ ଗଲେ ।
ଦେଖି ଦୁଃଶାସନ ରାଜା ଭାଇଙ୍କ ମରଣ
ଆପେ ଦନୁଜର ସଙ୍ଗେ କଲେ ଘୋରରଣ ।
ଅନେକ ଯୁଦ୍ଧ କଲେ ସେ ଅସୁର ସଙ୍ଗରେ
ବନ୍ଦ ହୋଇଥିଲା ଦେବ ଅଡ଼ାଇ ପ୍ରହରେ ।
କୋପେ ଦୁର୍ଯ୍ୟୋଧନଙ୍କୁ ସେ କୁଦାଳରେ ପିଟି
ବାଜନ୍ତେ ମାନଗୋବିନ୍ଦ ଭୂମିପରେ ଲୋଟି ।
ଧରିଣ ଅସୁରବୀର ରଥରେ ପକାଇ
ଆପଣା ରାଜ୍ୟେ ଖାଇବ ବୋଲି ତାକୁ ନେଇ
ରଜନୀ ପ୍ରଭାତେ ଦେଲା ହସ୍ତିନାକୁ ଧାଡ଼
ଅସୁର କୁଦାଳ ବାଜି କର୍ଣ୍ଣ ଥିଲେ ପଡ଼ି ।
ସୂର୍ଯ୍ୟର କିରଣ ଅଙ୍ଗେ ଲାଗିଲାକ ଯହୁଁ
ଅମୃତ କୁଣ୍ଡଳୁଁ ସୁଧା ଝରିଲାକ ତହୁଁ ।
କ୍ଷଣରେ ପଶନ୍ତେ ସେହୁ ପାଇଲେ ଚେତନ
ଗୋଡ଼ାଇଲେ କରେ ଶସ୍ତ୍ର ଧରି ବୀରକର୍ଣ୍ଣ ।
ଅସୁରଙ୍କୁ ଓଗାଳିଣ ଘୋରଯୁଦ୍ଧ କଲେ
କେବେହେଁ ସେ ଅସୁରକୁ ଜିଣି ନ ପାରିଲେ
ଅସୁର ମାରନ୍ତେ ତହୁଁ ପଳାଇଲେ ଭୟେ
ହୋଙ୍କ ହସ୍ତେ ଅସୁର ନ ମିବନ୍ତି କ୍ଷୟେ ।
ଯୁଧିଷ୍ଠି ବୋଇଲେ ଶୁହୋ ସହଦେବ ଶୁଣ
କାହାର ହସ୍ତେ ଅଛଇ ଅସୁର ମରଣ ।
କାହାଠାରୁ ବର ପାଇ ଏଡ଼େ ବଳବାନ
ମରିବ କି ନ ମରିବ ଅସୁର ରାଜନ ।
ସହଦେବ ବୋଇଲେ ହୋ ଶୁଣ ଧର୍ମରାୟେ
ବଡ଼ ପ୍ରତାପୀ କୁଦାଳେଶ୍ୱର ଦୈତ୍ୟରାୟେ ।
କାଳିକାଙ୍କୁ ସେବାକରି ସେ କୁଣ୍ଡଳେଶ୍ୱର
ଇଷ୍ଟଦେବତା କରି ସେ ରଖି ନିଜପୁର ।
ଭୋଗରାଗ ବଳିଦେଇ ସେବା କରୁଥିଲା
ତହୁଁ କାଳିକା ତାହାକୁ ପ୍ରସନ୍ନ ନୋହିଲା ।
ଦିନେ ସେ କୁଦାଳେଶ୍ୱର ନିଶି ଭ୍ରମି ଆସି
ମଣ୍ଡପରେ ପ୍ରବେଶିଲା ନାହିଁ ନଟି ବେଶୀ ।
କାଳିକା ସେ ଭ୍ରମି ଯାଇଥିଲେ ଯେତେ ଦୂରେ
ବେସ ଆସି ପ୍ରବେଶ ହେଲେ ସେହି ମଣ୍ଡପରେ

ଅସୁର ବିଚାରଇ ଏ କେବଣ ମୂରତ
ଏହୁ କାହାର ସେ ପୁଣ ଅଟଇ ଯୁବତୀ ।
ସ୍ୱଭାବେ ବାଳବୟସ ନ ଜାଣଇ କିଛି
ଦେଉଳ ଦ୍ୱାର କପାଟଁ ଆବୋରି ରହିଛି ।
କାଳିକା ବୋଇଲେ ଆରେ ଅଟୁ ତୁ ପାମର
କି ନିମନ୍ତେ ବସିଅଛୁ ଦ୍ୱାରେ ମୋହର ।
ଶୁଣିଣ ସେ ଏ ବଚନ ଖଡ଼ଗ ବୁଲାଇ
କାଳିକାଙ୍କ ଉପରକୁ ଗଲା ବେଗେ ଧାଇଁ ।
କାହିଁର ପାମରୀ ତୁଲେ କାହିଁ ତୋର ଘର
ମିଛେହେଁ ତୁ ବୋଲୁଅଛୁ ଦୁଆର ମୋହର
ଏତେ ବୋଲି ଧରିଲା ସେ କାଳିକାର ବାଳ
କାଳିକା ବୋଇଲେ ଶୁଣ ଅସୁର ଦୁର୍ବଳ
ତୋ ପିଅର ମୋତେ ସେବା କରେ ନିରନ୍ତର
ତେଣୁକରି ସଂସାରେ ସେ ଅଟେ ବଳସ୍ୱାର
ପିତା ସେବାରେ ମୁଁ ତୋତେ ହୋଇଲି ପ୍ରସନ୍ନ
ମାଗରେ କୁମର ଯାହା ଇଚ୍ଛା ତୋର ମନ ।
କୁଦାଳସେନ ବୋଲେ ମୁଁ ନ ଜାଣଇ କିଛି
ତୋହର ଇଚ୍ଛାରେ ମାଖୋ ବର ଦିଅ ଯାଚି ।
ତୋହର ଏ ନିଜ ଦେହ ହୋଇବ ଅକ୍ଷୟ
ଶସ୍ତ୍ରେ ବାଧିତ ନୋହିବ ଏ ତୋହର କାୟ
ଦେବେ ନ ମରିବୁ ତୁହି ନରେ ନ ମରିବୁ
ଯେହୁ ଅବତରି ଥିବ ଦେବତା ମାନବୁଁ ।
ସେ ପୁଣି ସଂଗ୍ରାମେ ତୋତେ ନ ପାରିବ ଜିଣି
ଦେବ ମାନବ ହୋଇବ ଆଗତହିଁ ଜାଣି ।
ଅନିମିତ୍ତେ ଝିଙ୍କିଲୁ ତୁ ମୋତେ କେଶ ଧରି
ଏରୂପେ ତୁ ନାଶଯିବୁ ବୋଇଲେ ଈଶ୍ୱରୀ ।
ତେଣୁ ସେ ଅସୁର ଗୋଟି ଅଟେ ବଳସ୍ୱାର
ଯୁଧିଷ୍ଠି ବୋଇଲେ ହସ୍ତେ ମରିବ ତୋହର ।
ସୋଦର ନିଧନ କଲା ଗରିଷ୍ଟ ଅସୁର
ବେଗେ ସହଦେବ ଏହି ପାପିଷ୍ଟକୁ ମାର ।
ଶୁଣି ମାଦ୍ରୀସୁତ ହେଲା ଯୁଦ୍ଧଅର୍ଥେ ବେଗ
କର୍ଣ୍ଣହିଁ ମିଳିଲା ଆସି ଯୁଧିଷ୍ଠିଙ୍କ ଆଗ ।
ଅସୁର ଗୋଡ଼ାଇ ଅଛୁ ଧାର ପଛକତ
ସହଦେବ ଦେଖି ତାକୁ ଓଗାଳିଲେ ଧାଡ଼ ।
ଅସୁର ବୋଇଲା ଶୁହୋ ଆଉ ଥୁଅ ଘଇ
ମୋହର ଶତ୍ରୁକୁ ମୁହିଁ ଅଛଇ ଗୋଡ଼ାଇ ।

ମରଣକୁ ଭୟ କରେ ନାହିଁ କି ତୁମ୍ଭର
ମୋତେ ଜିଣିବୁ ବୋଲି କି ବଳୁଛୁ ପାମର
ସହଦେବ ବୋଇଲା ରେ ଶୁଣ ତୁ ଦନୁଜ
ପଳାଇବା ଶତ୍ରୁକୁ ତୁ ଗୋଡ଼ାଉ କି କାର୍ଯ୍ୟ ।
ପଳାଇବା ଶତ୍ରୁକୁ ତୁ ଗୋଡ଼ାଉନ୍ତୁ ମାର
ବିଧାତା ତୋତେ ସହିବ କହ ରେ କପର
ଶୁଣି ଅସୁର କୁଦ୍ଦାଳ ଘେନି ବେଗେ ପିଟି
ଭାଙ୍ଗି ପକାଇଲା ସହଦେବ ରଥଗୋଟି ।
ବିସ୍ମରଇ ପାଦଗାମୀ ହୋଇ ସହଦେବ
ଅସୁରର ଦେହେ ବାଜି ଶସ୍ତ୍ର ନାଶଯିବ ।
କାଳକାର ଶାପ ଆସି ପଡ଼ିଲା ତାହାକୁ
ବଳବପୁ କ୍ଷୀଣ ହେଲା ଦେଖିଣ ମନ୍ତ୍ରୀକୁ ।
କୁଦ୍ଦାଳ ଘେନିଣ କୋପେ ମାଇଲା ଦନୁଜ
ସହଦେବ ବିଜେ ବାଣ କୋଟିସୂର୍ଯ୍ୟ ତେଜ
ଅସୁର ଆୟୁଧ ତେଣେ ହେଲା ଭଗ୍ନଗତ
କୁଦ୍ଦାଳ ଭାଙ୍ଗନ୍ତେ ଦୈତ୍ୟ ହେଲା ଶୂନ୍ୟହସ୍ତ
ପର୍ବତ ଏକ ଉପାଡ଼ି ବୁଲାଇ ଫିଙ୍ଗିଲା
ବକ୍ରଶରେ ତାହା ସହଦେବ ନିବାରିଲା ।
କୋପେ ସେ ଅସୁରବର ଆସେ ବେଗେ ଧାଇଁ
ଧନୁ ଶରକୁ ହସ୍ତରୁ ନେଲା କି ଛଡ଼ାଇ ।
ଶୂନ୍ୟହସ୍ତ ହୋଇଲା ସେ ମାଦ୍ରୀର କୁମର
ମଲ୍ଲଯୁଦ୍ଧ ଆରମ୍ଭିଲା ଦୈତ୍ୟ ସଙ୍ଗତର ।
ରେରେକାର କରି ସେହି ଦୈତ୍ୟ ମହାବୀର
ବଜ୍ରମୁଷ୍ଟି ପ୍ରହାରିଲା ସଙ୍ଗତେ ତାହାର ।
ମୁଷ୍ଟି ମାରନ୍ତେ ଧଇଲା ମନ୍ତ୍ରୀ ତାର ହସ୍ତ
ଘୂଟି ପକାଇଲା ତାକୁ ମାଦ୍ରୀଦେବୀ ସୁତ ।
ସମ୍ଭାଳି ନ ପାରି ଦୈତ୍ୟ ପଡ଼େ ମୁଖ ମାଡ଼ି
ତା ଉପରେ ସହଦେବ ବସିଲା କି ଚଢ଼ି ।
ଘୂଟି ପକାଇଲା ସନ୍ତୁ ମାଦ୍ରୀଦେବୀ ସୁତ
ସମ୍ଭାଳି ନ ପାରି ତଳେ ପଡ଼ିଲା ଦଇତ୍ୟ ।
ବିଧାତା ପୁଣି ଯାହାକୁ ଆସି ବାମ ହୋଇ
ତାହାର ଯେ ବୁଦ୍ଧିବଳ ସବୁ ନାଶଯାଇ ।
ଯେତେବେଳେ ଯାକୁ ହୁଏ ଶୁଭ ଫଳପତ
ଦୂରର ପଦାର୍ଥ ଆସି ମିଳଇ ତା ହସ୍ତ ।
ବସିଲା ଠାବରେ ତାର ସବୁ ସିଦ୍ଧ ହୋଇ
ବିଧାତା ବଳକୁ ଆନକର ନାହିଁ କେହି ।

ଯେତେବେଳେ ଯାଏ ତାର ସୁଦଶାହିଁ ଥିଲା
ଭୀଷ୍ମ ଦ୍ରୋଣ ଯୁଝିଗଲେ ସମସ୍ତ ମାଇଲା ।
କର୍ଣ୍ଣ ପଳାଇ ଅଇଲା ନ ରହିଲା ଆଗେ
ବିଧାତା ନିର୍ଦ୍ଦ କରନ୍ତି ଏସନକ ବାଗେ ।
ସହଦେବର ହସ୍ତରେ ମରଣହିଁ ଥିଲା
କାଳକାର ଶାପ ଆସି ଏକାଳେ ପଡ଼ିଲା ।
ସହଦେବ ବାଣେ ତାର ଭାଙ୍ଗିଲା କୁଦ୍ଦାଳ
ସନ୍ତୁ ଅସୁରକୁ ଆସି ଘୋଟିଲା କି କାଳ ।
ମୁଷ୍ଟି ମାରନ୍ତେ ଧଇଲା ସହଦେବ ହସ୍ତ
ଘୂଟନ୍ତେ ପୁଣି ଦଇତ୍ୟ ହେଲା ଭୂମିଗତ ।
ଉପରେ ମାଡ଼ି ବସିଲା ମାଦ୍ରୀଦେବୀ ସୁତ
ଅସୁର କେଶରେ ଦେଇଅଛି ବାମହସ୍ତ ।
ନଟାଇ ଝିଙ୍କିଲେ ତାର ପ୍ରାଣ ଚୂଲିଗଲା
କଳିକା ଦେବୀ ଶାପରେ ସେ ଅସୁର ମଲା ।
ତିନି ଯୋଜନକୁ ମାଡ଼ି ସେ ଅସୁର ପଡ଼ି
ମଲା ସେ ଅସୁରବୀର ଗଲା ପ୍ରାଣ ଛାଡ଼ି ।
ଦେଖିଣ ଦେବତାମାନେ ଆନନ୍ଦ ହୋଇଲେ
ସହଦେବ ଶିରେ ନେଇ ପୁଷ୍ପ ବରଷିଲେ ।
ଅସୁରକୁ ମାରିଣ ସେ ମନ୍ତ୍ରୀ ବୀରବର
ଯୁଧିଷ୍ଠିରଙ୍କ ପାଦେ ଆସି କଲେ ନମସ୍କାର ।
ଭୀମ ଅର୍ଜ୍ଜୁନ ନକୁଳ ପାଦେ ମାନ୍ୟ କଲା
କର୍ଣ୍ଣକୁ ବହୁତରୂପେ ବିନୟୀ ହୋଇଲା ।
କୋଳକରି ଧଇଲେ ସେ ବୀର ରାଧାସୁତ
କଲ୍ୟାଣ କରନ୍ତି ତାକୁ ଶିରେଦେଇ ହସ୍ତ ।
ମୁଖରେ ଚୁମ୍ବନ ଦେଇ ଆଉଁଷନ୍ତି ଦେହ
ଦୁର୍ଯ୍ୟୋଧନ ମଲା ବୋଲି କର୍ଣ୍ଣ କରେ କୋହ
ବାବୁ ସହଦେବ ତୋର ମହିମାହିଁ ଧନ୍ୟ
ସର୍ବଜ୍ଞାତା ପୁରୁଷ ତୁ ମନ୍ତ୍ରୀବର ମାନ୍ୟ ।
ବାବୁ ଭୀଷ୍ମ ପଳାଇଲେ ଦ୍ରୋଣ ହେଲେ ହତ
ମାନଗୋବିନ୍ଦ ପଡ଼ିଲା ଘେନି ଭାଇଶତ ।
ତିନିବେଳ ରଥ ମୋର ଭାଙ୍ଗି ପକାଇଲା
କୁଦ୍ଦାଳ ମାରି ମୋହର ଜ୍ଞାନହତ କଲା ।
ଭୟେ ପଳାଇ ଅଇଲି ହୋଇ ମୁହିଁ ଏକା
ସୈନ୍ୟ କେଣେ ଗଲେ ମୁଁ ଯେନପାଇଲି ଦେଖା
ଅଶ୍ୱତ୍ଥାମା ବାହ୍ଲିକ ଯେ ନୃପ ଜୟଦ୍ରଥ
ଶକୁନି ପଳାଇ ଗଲା ଛାଡ଼ି ତାର ରଥ ।

ଏତେ ଦର୍ପିଷ୍ଟ ଅସୁର ତୋର ହସ୍ତେ ମଲା
ଦୁର୍ଯ୍ୟୋଧନ ପାଇଁ କର୍ଣ୍ଣବୀର ଶୋକ କଲା ।
ଧର୍ମର ନନ୍ଦନ ଦେବ ଯୁଧିଷ୍ଠିର ରାୟେ
ଦୁର୍ଯ୍ୟୋଧନଙ୍କୁ ନ ଦେଖି ତାପିତ ହୃଦୟେ ।
ଆହା ଭାଇ ମୋର ତୁ ରେ ମାନଚକ୍ରବର୍ତ୍ତୀ
ସଙ୍କଟକରେ ତୁହି ଅଟୁ ଅଧିପତି ।
ବାବୁ ତୋର ହତ ଦେଖି ନ ସହଇ ଦେହ
ପାର୍ଥଙ୍କୁ ଚାହିଁ ଯୁଧିଷ୍ଠିଦେବ ଗଲେ ମୋହ ।
ଭୂମିରେ ପଡ଼ନ୍ତେ ରାୟେ ମୃତପିଣ୍ଡ ଜାଣି
କୋଳ କରିଣ ଅର୍ଜ୍ଜୁନ ଧଇଲେକ ଆଣି ।
ଶୀତଳ ଜଳ ନକୁଳ ମୁଖେ ଆଣି ସିଞ୍ଚି
ଆଲଟ ଚାମର ଦେନି ସହଦେବ ବଞ୍ଚି ।
ଚରଣ ଚାପଲ ଧୀରେ ପବନ କୁମର
ଚେତନା ପାଇ ଉଠିଲେ ଧର୍ମ ନୃପବର ।
ଯୁଧିଷ୍ଠି ବୋଇଲେ ଆରେ ଶୁଣ ମୋର ଭାଇ
ଦୁର୍ଯ୍ୟୋଧନର ନିଧନେ ମୁହିଁ ନ ବଞ୍ଚିଇ ।
ଅନ୍ଧସୁତ ହତରେ ମୁଁ କି ବୁଦ୍ଧି କରିବି
ଧୃତରାଷ୍ଟ୍ର କଷ୍ଟ ଦେଖି ନିଷ୍ଟୟ ମରିବି ।
ଚଣ୍ଡାଳ ଅସୁର ମଲା ହୋଇଲା କି ଅବା
ସୋଦର ନିଧନେ ବାବୁ କେମନ୍ତେ ବଞ୍ଚିବା
ଅର୍ଜ୍ଜୁନ ବୋଇଲେ ଦେବ ମତି ସ୍ଥିର କର
ଅମର ମହୌଷଧି ସେ ଅଛଇ ମୋହର ।
ଯେବେଟି ଆୟୁଷ ଥିବ ବଞ୍ଚି କୁରୁରାୟେ
ଖାଣ୍ଡବବନ ଦହନେ ଅଗ୍ନିର ଉପାୟେ ।
ଅମର ମହାଔଷଧି ବୃକ୍ଷ ଭସ୍ମସାର
ମୋର କରେ ଦେଇଛନ୍ତି ଦେବ ବୈଶ୍ୱାନର
ସେ ଭସ୍ମ ପକାଇଦେଲେ ମଲା ଲୋକ ବଞ୍ଚେ
ମନ୍ତ୍ରକି କହିଅଛନ୍ତି ଅଗ୍ନି ଦଇବତେ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ରେ ଅର୍ଜ୍ଜୁନ
ସମସ୍ତେ ବର୍ତ୍ତିବେ ଦେନି ଗାନ୍ଧାରୀ ନନ୍ଦନ ।
ମନ ଶୁଦ୍ଧକରି ବୈଶ୍ୱାନରଙ୍କ ବିଭୂତି
ଜୀବନ୍ୟାସ ଶରେ ପାର୍ଥ ଲଗାଇଲେ ଧାତି ।
ମନ୍ତ୍ର ସୁମରଣ ବାନ୍ଧିଦେଲେ ଏହି ଶର
ବୋଇଲେ ଯେତେକ ପଡ଼ିଅଛନ୍ତି ସୋଦର
ସମସ୍ତେ ବର୍ତ୍ତିବେ କେହି ନ ରହିବେ ଜଣେ
ତ୍ରସନ୍ତେ ଅନଳ ଦେଇଅଛନ୍ତି ଆପଣେ ।

ଏତେକ କହି ସେ ମନ୍ତ୍ର ସୁମରଣ ପେଷି
ସବୁର ଅଙ୍ଗେ ସେ ଶର ପଡ଼ିଲାକ ଆସି ।
ନିଦ୍ରାରୁ ଉଠିଲା ପ୍ରାୟେ ଉଠିଲେ କୌରବେ
କରେ ଅସ୍ତ୍ର ଧରି ସେହୁ ଧାଇଁ ଘୋର ରବେ
ଅସୁରକୁ ନ ଦେଖି ସେ ବହୁତ ଖୋଜିଲେ
ବଞ୍ଚିବା ଲୋକଙ୍କୁ ବାଟେ ଯାଉଁ ସେ ଦେଖିଲେ
ଦ୍ରୋଣଗୁରୁ ବର୍ତ୍ତିଲେ ସେ ମହୌଷଧି ବାୟେ
ଗଙ୍ଗାପୁତ୍ର ଲୁଚିଥିଲେ ଦାନବର ଭୟେ ।
ସମସ୍ତେ ଠୁଳ ହୋଇଲେ ଆସି ଏକ ମେଳେ
ଲୁଚିଲା ସୈନ୍ୟ ମିଳିଲେ ସେଠାରେ ସକଳେ
ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ଯେ ନ ଦେଖିଣ ଭାଳ
ହସ୍ତିନା ନଗରେ ଯାଇ ମନଦୁଃଖେ ମିଳ ।
ଦେଖିଲେ ନଗରେ ଜନ ଗୋଟିଏ ଯେ ନାହିଁ
ବନସ୍ତେ ସେ ଲୁଚିଥିଲେ ମହାଭୟ ପାଇ ।
ଅର୍ଜ୍ଜୁନର ମହୌଷଧି ପାଇ କୁରୁପତି
ଚେତି ଉଠିଣ ମନରେ କରି ମହାଭ୍ରାନ୍ତି ।
ଦେଖିଲା କର୍ଣ୍ଣ ଯୁଧିଷ୍ଠି ଭୀମ ଅରଜୁନ
ଏହାଙ୍କୁ ପୁଚ୍ଛଇ ସେହି ହସ୍ତିନା ରାଜନ ।
ଅସୁର ସମର କଲା ଆସି ମୋର ତୁଲେ
ଦୁଃଶାସନ ମୂଳେ ସବୁ ଭାଇ ମୋର ମଲେ ।
ଭୀଷ୍ମ ଘୁଞ୍ଚିଗଲେ ଦ୍ରୋଣ ପଡ଼ିଲେ ଯେ କାହିଁ
ସୈନ୍ୟ ପଳାଇ ପଶିଲେ ବନସ୍ତରେ ଯାଇ ।
ତୁମ୍ଭେ ହୋ ମଇଷ ପରା ମୋହ ଯାଇଥିଲ
କେବଣ ପ୍ରକାରେ ତୁମ୍ଭେ ହୋଇଲ ଯେ ଭଲ
ଅସୁରକୁ କେ ମାଇଲା କହ କେଉଁମତେ
ସମରେ ହାରିଲୁ ଆମ୍ଭେ ନ ରହି ଜୀବତେ ।
କର୍ଣ୍ଣ ବୋଇଲେ ଶୁଣିମା ମାନଚକ୍ରବର୍ତ୍ତୀ
ବଡ଼ ପ୍ରତାପୀ ଅସୁରକୁଳ ମହାକ୍ଷତ୍ରୀ ।
ତୁମ୍ଭଙ୍କୁ ମାରିଣ ସେହି ରଥରେ ପକାଇ
ହସ୍ତିନା ନଗର ମୁଖେ ଯାଉଅଛି ଧାଇଁ ।
ରଜନୀ ପ୍ରଭାତେ ଯାଉଁ ଦେଖିଲଇଁ ମୁହିଁ
ଅସୁର ତୁଲେ ସଂଗ୍ରାମ କଲୁ ପୁଣି ଯାଇ ।
ବହୁତ ସମର କରି ଜିଣି ନ ପାରିଲ
ମହାଭୟ କରି ତହୁଁ ପଳାଇ ଅଇଲ ।
ଏହାଙ୍କୁ ଦେଖିଲି ଦ୍ୱାରକାରୁ ଆସୁଥିଲେ
ଅସୁର ସଙ୍ଗତେ ଯାଇ ସେହୁ ଯୁଦ୍ଧ କଲେ ।

ମରଣ ତାର ଜାଣଇ ସହଦେବ ମନ୍ତ୍ରୀ
ଅସୁର ସଙ୍ଗତେ ଯୁଦ୍ଧ ଯାଇ ସେ କରନ୍ତି ।
କେଶ ଛିଣ୍ଡନ୍ତେ ଅସୁର ପ୍ରାଣ ଛାଡ଼ିଗଲା
ପୂର୍ବେ ତାକୁ ଶାପ କାଳୀଦେବୀ ଦେଇଥିଲା ।
ସଇନ୍ୟ ନିଧନ ଯହୁଁ ଯୁଧିଷ୍ଠି କହିଲେ
ଅର୍ଜୁନ ଶର ପେଷନ୍ତେ ସମସ୍ତେ ବଞ୍ଚିଲେ ।
ଭୀମଙ୍କୁ ରଥେ ପକାଇ ଦୈତ୍ୟ ନେଇଥାନ୍ତା
ସ୍ୱାଦୁ ମାଂସ ବୋଲି ପୋଡ଼ି ଅବଶ୍ୟ ଭକ୍ଷନ୍ତା ।
ଏଥିଅନ୍ତେ ସେ ପାଣ୍ଡବ ଉଠି ଶୀଘ୍ରହୋଇ
ଦୁର୍ଯ୍ୟୋଧନଙ୍କୁ ପ୍ରଣାମ କଲେ ବେଗେ ଯାଇଁ
କଲ୍ୟାଣ ବାଞ୍ଛା କରି ସେ ଧୃତରାଷ୍ଟ୍ର ସୁତ
ସହଦେବଙ୍କୁ ଧରିଣ କଲେ କୋଳାଗତ ।
ଅର୍ଜୁନଙ୍କୁ ଆଶ୍ୱାସି ସେ ମୁଖେ ଚୁମ୍ବ ଦେଲା
ଯୁଧିଷ୍ଠି ଭୀମ ନକୁଳେ ଗଉରବ କଲା ।
ଆନନ୍ଦେ ସେ ବେନିକୁଳ ହୋଇ ଏକ ସଙ୍ଗେ
ଉତ୍ସବ କରି ପତାକା ବାନ୍ଧିଲେ ରଥାଙ୍ଗେ ।
ହସ୍ତିନା ନଗରେ ଯାଇଁ ହୋଇଲେ ପ୍ରବେଶ
ଭୀଷ୍ମ ଦ୍ରୋଣ ଶକୁନି ସେ ମିଳିଲେକ ପାଶ ।
ବହୁତ ପ୍ରଶଂସା କଲେ ତାଙ୍କୁ ଭୀଷ୍ମଦ୍ରୋଣ
କର୍ଣ୍ଣଠାରୁ ଶୁଣି ଦୁଷ୍ଟ ଅସୁର ମରଣ ।
ନୃପତି ବୋଇଲା ରାଜ୍ୟେ ଘୋଷଣା ଦିଆଅ
ଅସୁରକୁ ମାଇଲା ସେ ମାଦ୍ରୀ ଦେବୀପୁଅ ।
ଯେ ଯେଣେ ଅଛ ସମସ୍ତେ ନଗରକୁ ଆସ
ଭୀମର ଶତ୍ରୁକୁ କଲା ସହଦେବ ନାଶ ।
ଜୟ ଘୋଷଣା ଶୁଣିଣ ସର୍ବଜନ ମିଳି
ଆସ୍ଥାନରେ ଦୁର୍ଯ୍ୟୋଧନ କର୍ଣ୍ଣ ଦେନି ଭଲି ।
ଅସୁର ଭୟୁ ରଖିଲେ ଆମ୍ଭଙ୍କୁ ପାଣ୍ଡବ
ରାଜ୍ୟରେ ହୋଇବ ଯେତେ ପାଣ୍ଡବ ଉତ୍ସବ
କୋଟିଏ ସୁବର୍ଣ୍ଣ ଦେଇ ସହଦେବ ଶିରେ
ଆପେ ଦୁର୍ଯ୍ୟୋଧନ କଲେ ଅଭିଷେକ ନୀରେ
ମୁକୁଟ କୁଣ୍ଡଳ ଦେଲେ କଣ୍ଠକୁହିଁ ହାର
ହସ୍ତରେ କଙ୍କଣ ପୁଣ ପୟରେ ନୂପୁର ।
ଚତୁଃସମ ସୁଗନ୍ଧିକା ଗନ୍ଧ ପୁଷ୍ପ ଦେଇ
ଅନେକ ସମ୍ମାନେ ତାକୁ ରାଜ୍ୟରେ ଚଳାଇ ।
ଅନେକ ସେ ପୁରୁଷାର୍ଥ କଲେକ ନୃପତି
କୋଟିଏକ ଅଶ୍ୱ ଦେଲେ କୋଟିଏକ ହସ୍ତୀ ।
ସହଦେବଙ୍କ ରଥେ ପାଣିଦ୍ରବ୍ୟହିଁ ପୂରାଇ
ଯୁଧିଷ୍ଠିଙ୍କି ପୂଜନ୍ତି ସେ ବହୁତ ବିନୟୀ ।
ମର୍ଦ୍ଦନ ମାର୍ଜଣା ଶେଷକରି କୁରୁପତି
ଅମୃତ ଭୋଜନ କରି ବଞ୍ଚିଲେ ସେ ରାତି ।
ରାଜ୍ୟରେ ଉତ୍ସବ ପ୍ରଜାମାନଙ୍କ ହରଷ
ହସ୍ତିନାରେ ପାଣ୍ଡବ ସେ ରହି ଦିନାଦଶ ।
ଧୃତରାଷ୍ଟ୍ରଙ୍କ ଚରଣେ ବହୁତ ବିନୟୀ
ବାରୁଣାବନ୍ତକୁ ବିଜେକଲେ ପାଞ୍ଚଭାଇ
ବାଜଇ ସେ ବୀରତୂର ଝମକ ମହୁରୀ
ଆଲମ୍ବି ସେ ପାଟଛତ୍ର ଅଛନ୍ତି ଉଭାରି ।
ବାଟ ବଳାଇ ଦେବାକୁ ଆସେ କୁରୁସାଇଁ
ଅନେକ ଉତ୍ସବ ତହିଁ କଳଣା ନ ଯାଇ ।
ବାରୁଣାବନ୍ତରେ ଯାଇଁ ହୋଇଲେ ପ୍ରବେଶ
ରଜନୀ ବଞ୍ଚନ୍ତି କରି କଉତୁକ ରସ ।
ପ୍ରଭାତେ ପୁଣି ହସ୍ତିନା ଆସେ କୁରୁସାଇଁ
ଧୃତରାଷ୍ଟ୍ରଙ୍କ ଅଗ୍ରତେ ସମସ୍ତ କହଇ ।
ଦୁର୍ଯ୍ୟୋଧନ ପାଣ୍ଡବଙ୍କ ଅନେକ ବିଶ୍ୱାସ
ପାଣ୍ଡବେ ଆସନ୍ତି ନିତ୍ୟ ଦୁର୍ଯ୍ୟୋଧନ ପାଶ ।
ପାଣ୍ଡବେ ଶ୍ରୀକୃଷ୍ଣ ପାଦେ କରିଥାନ୍ତି ଧ୍ୟାନ
ଜୟ ଜୟ ଜଗନ୍ନାଥ ଜୟ ଭଗବାନ ।
ଶ୍ରୀକୃଷ୍ଣଙ୍କ ଚରଣରେ ମନକୁ ନିବେଶି
ଶ୍ରୀ ଶାରଳା ଦାସ ଜନ୍ମେ ଜନ୍ମେ ତା ଅଭ୍ୟାସି

---

## କୁନ୍ତୀ ଓ ଗାନ୍ଧାରୀର ବିବାଦ

ବନ୍ଦଇ ଶ୍ରୀ ଗଜମୁଖ ଦେବ ଗଣପତି
ସୁରସିଦ୍ଧଗଣେ ଯାର ଚରଣେ ସେବନ୍ତି ।
ଜୟ ଜୟ ଲମ୍ବୋଦର ବିକ୍ରମ ମୂରତି
ପରଶୁଧର ସୁନ୍ଦର ତୁହି ଗଣପତି ।
ସଦା ବିଘ୍ନ ନାଶ କରୁ ବିଘ୍ନରାଜ ତୁ ଟି
ଆପଦଖଣ୍ଡନ ନାଥ ହରୁ ତୁ ଦୁର୍ଗତି ।
ଲଲାଟେ ମୁକୁଟ ତୋର ଶିରରେ ସିତାଂଶୁ
ଅନଳ ତେଜ ହରଣ ଶ୍ରୀକରେ ପରଶୁ ।
ଅମୃତାକ୍ଷ ନୟନ ସେ ଦେବାଙ୍ଗ ତୋ ମୂର୍ତ୍ତି
ଇହ ପରଲୋକ ନାଥ ଦେଉ ସଦଗତି ।
ସେ ଦେବ ଅଭୟ ପାଦେ ମୁଁ ହୀନ ଆରାଧି
ଯାର ପ୍ରସନ୍ନେ ପ୍ରସର ହୁଅଇ ସେ ବୁଦ୍ଧି ।

ଗିରିଜା ଦେବୀ ନନ୍ଦନ ଚରଣ ପଙ୍କଜେ
ଯାର ବନ୍ଦନା କରନ୍ତି ସ୍ୱୟଂ ଦେବରାଜେ ।
ଶ୍ରୀବଘ୍ନରାଜ ଦେବଙ୍କ ଚରଣ କମଳେ
ଶାରଳା ଦାସ ମୁଁ ହୀନଭାବେ ନରନ୍ତରେ ।
ନମସ୍ତେ କାତ୍ୟାୟିନୀ ଗୋ ଜଗତର ଧାତ୍ରୀ
ତବ ଚରଣ ସରୋଜେ ସଦା ମୋ ଭକତି ।
ପରମ ସାଧବୀ ମାଗୋ ଶୈଳ ନନ୍ଦନୀ
ଦନୁଜବଳ ଧ୍ୱଂସିନୀ ପୃଥ୍ୱୀ ଉଦ୍ଧାରଣୀ ।
କୃପାଜଳ ମହାଋଷି କୋଳେ ତୁହି ଜାତ
ନମସ୍ତେ ଭବାନୀ ମାଗୋ ଜଗଜ୍ଜନ ମାତ ।
ପିତାର ଆଜ୍ଞାରେ ତୋର ମର୍ତ୍ତ୍ୟପୁରେ ସ୍ଥିତି
ଝଙ୍କଡ଼ପୁରେ ଶାରଳା ବିଜେ ସିଦ୍ଧମୂର୍ତ୍ତି ।
ତୋହର ଚରଣ ମାଗୋ ନିତ୍ୟ ମୁହିଁ ଭାବି
ମଧ୍ୟପର୍ବ କହନ୍ତି ଯେ ଶୂଦ୍ରମୁନି କବି ।
ମୁନି ପୁଚ୍ଛା କଲେ ଭୁ ହୋ ଶୁଣ ତପୋବନ୍ତ
ଏଥୁ ଅନନ୍ତରେ ପୁଣ କିସ ଯେ ଚରିତ ।
ବଦନ୍ତି ଅଗସ୍ତି ଶୁଣ ମନୁ ନରପତି
କୁନ୍ତୀ ଗାନ୍ଧାରୀ ଦୁହିଙ୍କ କଳର ଉକତି ।
ମନୁ ପୁଚ୍ଛା କଲେ ପୁଣ ଅଗସ୍ତି ଅଗ୍ରତେ
କିମର୍ଥେ ସେ କଳି କଲେ କହ ତପୋବନ୍ତେ
ବୋଲନ୍ତି ଯେ ମୁନିବର ଶୁଣ ନରପତି
ମହାଭାରତ ଶୁଣିଣ ଖଣ୍ଡେ ତୁ ଦୁର୍ଗତି ।
ଏଥୁ ଅନନ୍ତରେ ଭାଗୀରଥୀ ନାମେ ଗଙ୍ଗା
ନୀଳ ଉତ୍ପଳ ଗିରିକୁ ଅଛେ ସେହି ଲଗା ।
ବିରାଜେଶ୍ୱର ନାମରେ ବିଜେ ଦେବକାଶୀ
ପ୍ରତ୍ୟକ୍ଷରେ ଅଛଇ ସେ ଜାଣ ବାରାଣସୀ ।
ବାଳବୃଦ୍ଧ ତରୁଣ ସେ ତ୍ରିରୂପ ବହନ୍ତି
ଯାଚଣ ବର ଦିଅନ୍ତି ଯେ ଯାହା ବାଞ୍ଛନ୍ତି ।
ଇନ୍ଦ୍ରପ୍ରସ୍ଥ ରାଜ୍ୟ ତେଜ ଆସି ବନେ କୁନ୍ତୀ
ସେହି ଈଶ୍ୱରଙ୍କୁ ପୂଜା କରନ୍ତି ଯେ ନିତି ।
ପ୍ରହରେକ ରାତ୍ର ଥାଉଁ ପୂଜାବିଧି ସାରି
ବିମାନ ଆରୋହି ଦେବୀ ଆସନ୍ତି ଯେ ଫେରି ।
କନକର ଚମ୍ପାଫୁଲ ସହସ୍ରେକ ଦେଇ
ନିତି କୁନ୍ତୀ ପୂଜା ସାରି ଲେଉଟି ଆସଇ ।
ଗାନ୍ଧାରୀ ସ୍ନାନାଦି ସାରି ଯାଇ ପ୍ରାତଃକାଳେ
ପୂଜନ୍ତି ବିରାଜେଶ୍ୱର ସେହି ଅବଳୀଳେ ।

ନିତ୍ୟ ଆସନ୍ତି ଗାନ୍ଧାରୀ ଶିବ ପୂଜିବାରେ
ପୂଜା ସାରିଣ ଯାଆନ୍ତି ଅଢ଼ାଇ ପ୍ରହରେ ।
କୁନ୍ତୀଙ୍କର ପୂଜା ଯେ ଗନ୍ଧାରୀ ନ ଜାଣନ୍ତି
ଗାନ୍ଧାରୀର ପୂଜା ନ ଜାଣଇ ଦେବୀକୁନ୍ତୀ ।
ରାଜଭୋଗେ ଗରିଷ୍ଠ ଯେ ଦୁର୍ଯ୍ୟୋଧନ ମାତା
ଲିଙ୍ଗପୂଜା ଭଗ୍ନ ଦେଖି ହୋନ୍ତି ପ୍ରଜ୍ୱଳିତା ।
କୋପରେ ବୋଲନ୍ତି ଦେବୀ ପରିଜନ ଆଗେ
ମୋଠାରୁ ଗରିଷ୍ଠ କେହି ଜମ୍ବୁଦ୍ୱୀପ ଭାଗେ ।
ଶୁକ୍ଳ ବରନ ଚମ୍ପା ଶତଗୋଟି ଘେନି
ପୂଜା ମୁଁ କରଇ ନିତ୍ୟ ସୁଲଭ କାମିନୀ ।
ପ୍ରହରେକ ପର୍ଯ୍ୟନ୍ତେ ନିଷ୍ଠାପରେ ଜଗି
ଖଟିଣ ମନାଇବି ମୁଁ ସଦାଶିବ ଯୋଗୀ
ଯାହା ମୁଁ ମନେ ପାଞ୍ଚଇ ସିଦ୍ଧହେବାପାଇଁ
ଜମ୍ବୁଦ୍ୱୀପରେ ମୋ ପୁତ୍ର ଚକ୍ରବର୍ତ୍ତୀ ହୋଇ ।
ଅନେକ ସମ୍ପଦ ମୋତେ ଦେଇଛନ୍ତି କାଶୀ
ତାହାଙ୍କ ପାଦତଳେ ମୁଁ ସଦାକାଳେ ଦାସୀ
ବହୁତ ସୁଦାସ୍ୟା ମୋତେ କରନ୍ତି କପଳୀ
ସେବା କରୁଥାଇ ମୁହିଁ ଶରୀର ପଖାଳି ।
ମୋହର ଭକତି ଭାଙ୍ଗି କେ କରଇ ପୂଜା
ଲିଙ୍ଗପୂଜା କଲେ ସପ୍ତଦ୍ୱୀପେ ହେବେ ରାଜା
କେସନେକ ପୂଜା ଅବା ଭାଙ୍ଗିବ ଏହାର
ଏମନ୍ତ ବିଚାରି ଗଲେ ହସ୍ତିନା ନଗର ।
ବିସ୍ମୟ ହୋଇଣ ପୁରେ ବିଜୟେ ଗାନ୍ଧାରୀ
ଆଜ୍ଞାଦେଲେ ଦୁର୍ଯ୍ୟୋଧନେ ପୁଣି ଡାକକରି
ବିରାଜେଶ୍ୱର ଲିଙ୍ଗକୁ ପୂଜଇ ମୁଁ ନିତି
ଯେ ଲିଙ୍ଗ ପୂଜିଲେ ସପ୍ତଦ୍ୱୀପ ନରପତି ।
ସହସ୍ର ଚମ୍ପକ ଆବର ବିବିଧ କୁସୁମ
ନିତି ମୁହିଁ ଉପହାର ଦିଏ ଅନୁପମ ।
ମୋର ପୁଷ୍ପ କେ ପକାଇ ଦିଏ ପ୍ରତିଦିନ
କନକ ଚମ୍ପାରେ ପୂଜିଆସେ ତୋଷମନ ।
ତେଣୁଟି ବିରସ ବାବୁ ମୋର ପଞ୍ଚମତି
ନିଷ୍ଫଳ ପୂଜାକୁ ଘେନନ୍ତି ସେ ପଶୁପତି ।
ତୁହି ମୋର ପୁତ୍ର ଆରେ ଏକାଙ୍ଗ ରାଜନ
ତୋହର ପ୍ରସାଦେ ମୋର ସର୍ବ ଶୁଭମାନ ।
କାଶୀପତି ପ୍ରସାଦେ ମୁଁ ମାଗିବି ସଦ୍‌ଗତି
ସେ ଈଶ୍ୱର ପରସନ୍ନେ ହେବୁ ଚକ୍ରବର୍ତ୍ତୀ ।
କନକଚମ୍ପା ବୋଲି ସେ ଅଛଇ କେମନ୍ତ
ଏହା ବିଚାରିଣ ମୋତେ କହିବୁ ରେ ପୁତ୍ର ।

ଦୁର୍ଯ୍ୟୋଧନ ବୋଲେ ମାଗୋ ଶୁଣ ମୋ ବଚନ
ପାଣ୍ଡବଙ୍କ ମାତା ତାଙ୍କୁ ପୂଜେ ପ୍ରତିଦିନ ।
ରାତ୍ର ପ୍ରହରେକ ଥାଉଁ ପୂଜେ ଦେବୀ କୁନ୍ତୀ
କନକର ଚମ୍ପା ସହସ୍ରେକ ଦେଇ ନିତି ।
ତାହାଙ୍କ ପୂଜାରେ କିସ ଅଭିମାନ ତୋର
ଅଭିମାନ ଯୋଗୁ ନଷ୍ଟେଁ ଛୁଡ଼ିବ ଶରୀର ।
ମାତାଙ୍କ ଅଗ୍ରତେ କହେ ମାନଚକ୍ରବର୍ତ୍ତୀ
ସୁବର୍ଣ୍ଣ ଚମ୍ପକ ଶତେ ଚଢ଼ାଅ ତୁ ନିତି ।
ଅଳପ ଦିନର ରାଜ୍ୟ ସେ ପାଣ୍ଡବଙ୍କର
କିସ ଅବା ଅଛୁ ତାଙ୍କ କଣସ୍ଥ ଭଣ୍ଡାର ।
ନିତି କାହୁଁ ସ୍ୱର୍ଣ୍ଣଚମ୍ପା ପାଇବ ସେ କୁନ୍ତୀ
ବଳ କ୍ଷୀଣ କରେ ସିନା ଈଶ୍ୱର ଭକତି ।
ଦୁର୍ଯ୍ୟୋଧନ ବାକ୍ୟେ ମାତା ହେଲେ ତୋଷମନ
ସୁବର୍ଣ୍ଣ ଚମ୍ପକ ନେଇ ଗଲେ ଆରଦିନ ।
ଆରଦିନ ପୂଜାକରି ବସୁଁ ଦେବୀ କୁନ୍ତୀ
ସୁବର୍ଣ୍ଣ ଚମ୍ପାକୁ ଦେଖି ବିସ୍ମୟ ସେ ଅତି ।
ପୂଜାକରି ଦେବୀ ଯହୁଁ ବାହୁଡ଼ିଣ ଗଲେ
ଆରଦିନ ଚମ୍ପାନେଇ କୁନ୍ତୀ ଯେ ଅଇଲେ ।
ଦୁଇଦିନ ପୂଜାକୁ ଯେ ଯେତେ ଚମ୍ପାଲଗି
ପ୍ରଭାତୁଁ ପୂଜା କରନ୍ତି କୁନ୍ତୀ ବେଗି ବେଗି ।
ଏମନ୍ତ ସମୟେ ଆସି ଦୁର୍ଯ୍ୟୋଧନ ମାତ
ସେ ବରଜେଶ୍ୱର ପାଶେ ମିଳିଲେ ତୁରିତ ।
କୁନ୍ତୀକୁ ଦେଖି ଗାନ୍ଧାରୀ ହେଲେ କୋପଚିତ୍ତ
ମନ ବିରସ କଲା ସେ ଦୁର୍ଯ୍ୟୋଧନ ମାତ ।
ରାଗେ ଗାନ୍ଧାରୀ ଯେ ତାଙ୍କୁ ବୋଇଲେ ବଚନ
ମୁଁ ସେ ଲିଙ୍ଗ ପୂଜିବାକୁ ଅଟଇ ଭାଜନ ।
ତୁ ଯେ ପୂଜା ଭାଙ୍ଗୁ ମୋର କିପରି କହତ
ଏତେବୋଲି କୋପେଯେବୋଇଲେ ରାଜମାତ
ଅନେକ ଝିଙ୍ଗାସ କରି ଗାନ୍ଧାରୀ ବୋଇଲେ
ଅପମାନ ପାଇ କୁନ୍ତୀ ଦୁଃଖେ ବାହୁଡ଼ିଲେ ।
କୁନ୍ତୀ ଯେ ବୋଇଲେ ମୁହିଁ ପୂଜେ ନିତିନିତି
ତୁମ୍ଭେ କିପାଇଁ କହିଲ ଏବେ ଗୋ ଅନୀତି ।
ଗାନ୍ଧାରୀ ବୋଇଲେ ନିତ୍ୟ ହୁଏ ମୋର ପୂଜା
ଚମ୍ପାଲଗି କରି ମୁହିଁ ପୂଜେ ଦେବରାଜା ।
ତୋହର ଅନୀତି ହୋଇଲା ଯେ ଅବିଗ୍ରହ
ତୁ ସେ ପୂଜା ନିତି ନିତି ଭାଙ୍ଗୁ ଗୋ ମୋହର

ଏସନକ ଉଚ୍ଚବାଚ ହେଉ ବେନି ବାମା
ଦୁହିଙ୍କ ନିକଟେ ବିଜେ ଦେବ ମହାତ୍ମା ।
ମଧ୍ୟରେ ଯେ ଉଭା ହୋଇ ବୋଲେ ଦେବହର
ତୁମ୍ଭେ ବେନିବାମା ଶୁଣ ମୋହର ଉତ୍ତର ।
କି ନିମନ୍ତେ ତୁମ୍ଭେ ଦୁହେଁ ହୁଅ ଅନ୍ୟୋଅନ୍ୟ
କୁରୁ ପାଣ୍ଡବଙ୍କ ତୁମ୍ଭେ ପରା ଯେ ଜନନୀ ।
ବୋଲନ୍ତି ଗାନ୍ଧାରୀ ତୁମ୍ଭେ ଶୁଣ ଆହେ ଦ୍ୱିଜ
ନିତିପ୍ରତି ସେବଇ ମୁଁ ଏହି ଦେବରାଜ ।
ଆଜ ଆସି ମୋର ସଙ୍ଗେ କଳି ଉଆଛିଲା
କି ନିମନ୍ତେ ମୋର ସଙ୍ଗେ କଳି ସେ ଯେ କଲା
ବୋଲନ୍ତି ଧୂର୍ଜଟିଦେବ ନ କର ଯେ ଗୋଳ
ଏବେ ତୁମ୍ଭେ ମୋର ବୋଲେ ବେଗେ ଏଥୁଚଳ
କାଲି ରାତ୍ର ପ୍ରଭାତରେ ସହସ୍ରଚମ୍ପା ଦେଇ
ଯେ ପୂଜି ପାରଇ ସେହି ପ୍ରଭାତ ରଜନୀ ।
ତାହାର ଏ ଲିଙ୍ଗ ସେହି ପୂଜିବ ଯୁକତେ
ଯାଅ ଯାଅ ଦୁହେଁ ନୁହ ବିମୁଖ ଯେ ଚିତ୍ତେ ।
ଗାନ୍ଧାରୀ ବୋଲେ ଏତେ କେ ହୋଇବ ସମର୍ଥ
କାଲି ଆମ୍ଭେ ଏହି ପୂଜା କରିବୁ ଯୁକତ ।
ସହସ୍ରେ ଚମ୍ପାଦେଇ ଯେ ଆଗେ ପୂଜାକରି
ଯୁକତେ ନିଷ୍ଟସ୍ଥ ଲିଙ୍ଗ ହୋଇବ ତାହାରି ।
ଏଥକୁ ଭାଜନ ଅବା ହୋଇବୁ କେମନ୍ତେ
ଏତେବୋଲିକୋପ କଲେ ଦୁର୍ଯ୍ୟୋଧନମାତେ
ଗାନ୍ଧାରୀ ବଚନେ କୁଇନ୍ତା ଏ ବାହୁଡ଼ିଲେ
ନିଜ ଘରେ ଯାଇ ଉପବାସେ ଯେ ଶୋଇଲେ
ପଞ୍ଚ ପାଣ୍ଡବେ ନମନ୍ତି କୁନ୍ତୀଙ୍କ ଚରଣ
ପ୍ରଣାମ କରନ୍ତି ନିତ୍ୟକର୍ମ ଯେ ସାରିଣ ।
ଯୁଧିଷ୍ଠିର ପଚାରନ୍ତି କିପାଇଁ ବିମନ
କିଛି ଜଣାପଡ଼ୁ ନାହିଁ ଏଥିର କାରଣ ।
ତୁମ୍ଭର ମନରେ ମାଗୋ ବିସ୍ମୟ କିମର୍ଥେ
ଏ କି ଅସମ୍ଭବ କଥା କହିବାନା ମୋତେ ।
କୁନ୍ତୀ ବୋଇଲେ ବାବୁ ରେ ଶୁଣ ପଞ୍ଚମନ
ଶିବ ପୂଜି ପାଇଲି ମୁଁ ବହୁ ଅପମାନ ।
ମୋର ପୂଜାପୁଷ୍ପକୁ ଗାନ୍ଧାରୀ ପକାଇଲେ
ସୁବର୍ଣ୍ଣର ଶତେ ଚମ୍ପା ଦେଇ ପୂଜା କଲେ ।
ମୋର କି ଶକତି କହିବାକୁ ସେହିକଥା
ତେଣୁକରି ପାଇଲି ମୁଁ ଲଜ୍ଜା ଅପ୍ରମିତା ।

ଆକାଶ ପରଶ୍ୟା କଲେ କଥା କୁତୂହଳେ
ସହସ୍ର ସୁବର୍ଣ୍ଣଚମ୍ପା ଦେବ ଯେ ପ୍ରଭାତରେ ।
ତାହାର ଯେ ସୁଫଳ ହୋଇବ ପୂଜା ଧ୍ୟାନ
ଏମନ ପ୍ରତିଜ୍ଞା କରେ ଗାନ୍ଧାରୀ ଯେ ପୁଣ ।
ମାତାଙ୍କ ବଚନ ଶୁଣି ବୋଲଇ ଅର୍ଜ୍ଜୁନ
ଏ ସ୍ତ୍ରୀର କଥାକୁ ଯେ ବିସ୍ମୟ ତୁମ୍ଭ ମନ ।
କୁନ୍ତୀ ବୋଲେ ବାବୁ ଗାନ୍ଧାରୀ ଯେ କୋପକଲା
ସହସ୍ରେ ସୁବର୍ଣ୍ଣଚମ୍ପା ପୁତ୍ରଙ୍କୁ ମାଗିଲା ।
ମୁହିଁ ପ୍ରତିଜ୍ଞା କଲୁ ଯେ କରିବାକୁ ପୂଜା
ଯୁକତେ ତାହାର ସେହି ହେବେ ଦେବରାଜ
ବାବୁ ଶତ ପୁତ୍ରବନ୍ତୀ ଅଟଇ ଗାନ୍ଧାରୀ
ପ୍ରତି ପୁତ୍ର ଦଶ ପୁଷ୍ପ ଦେଲେ ସହସ୍ରେ ପୂରି ।
ଅମ୍ଭେ ଦୁଇଜଣ ଗାଢ଼ ପ୍ରତିଜ୍ଞା ଯେ କଲୁ
ଜିତିବାର ହେଉଁ ହେଉଁ କଳି ଆରମ୍ଭିଲୁ ।
ସହସ୍ରେ ଚମ୍ପା ଦେଇ ଆଗେ ଯେ କରିବ ପୂଜା
ସେବେ ତାହାର ନିଶ୍ଚୟ ହେବେ ଦେବରାଜା ।
ରଜନୀ ପ୍ରଭାତୁ ପୂଜା ଯେ କରିବ ଆଗେ
ମୁଁ କିସ କରିବି ବୋଲି ହୋଇଲି ବିବେଗେ ।
ତୁମ୍ଭେ ପୁତ୍ର ଶୁଭବନ୍ତ କହିବି ମୁଁ କିସ
ଅବଶ୍ୟ ଗାନ୍ଧାରୀ କାଲି ନେବ ପୂଜା ଯଶ ।
ଶତ ପୁତ୍ର ଜାତ କଲା ସେହି ମହାବଳୀ
ସବେ ପାଞ୍ଚଗୋଟି ପୁତ୍ର ମୁଁ ଉପୁଜାଇଲି ।
କାହୁଁ ଏତେ ଚମ୍ପା ଏହୁ ଦେବେ ମୁଁ ଘାଳଇ
ଏତେକ କହିଣ ଦେବୀ କ୍ରନ୍ଦନ କରଇ ।
ମାତାଙ୍କ ବିକଳ ଦେଖି ପାର୍ଥ ମନେ ଭାଳି
ଜନନୀଙ୍କ ବିକଳ ନୁହଇ ତ ସମ୍ଭାଳି ।
ଅର୍ଜ୍ଜୁନ ବୋଲେ ମଣୋହି କର ତୁ ଗୋ ମାଏ
ତୁମ୍ଭ ବାଞ୍ଛା ପୂରଣ ମୁଁ କରିବି ନିଶ୍ଚୟେ ।
କାଲି ପ୍ରଭାତେ ପୂଜାକୁ ଯାଅ ଆଗ ହୋଇ
ସୁବର୍ଣ୍ଣ ପୁଷ୍ପେ ଦେଉଳ ଦେବି ମୁଁ ଘୋଡ଼ାଇ
ଅର୍ଜ୍ଜୁନର ଏ ବଚନ ଶୁଣି ଦେବୀ କୁନ୍ତୀ
ସ୍ନାନ ଷଟକର୍ମ କରି ମଣୋହି କରନ୍ତି ।
ରବି ଅସ୍ତେ ପଲ୍ଲଙ୍କରେ ଯାଇ ସେ ଶୁଅନ୍ତେ
ମନ ଉଦବେଗେ ନିଦ୍ରା ନ ମାଡ଼ଇ ନେତ୍ରେ
ଶେଷରେକ ରାତ୍ର ଥାଉଁ ନିତ୍ୟକର୍ମ ସାରି
ଶିବ ପୂଜିବାକୁ ପାଣ୍ଡବଙ୍କ ଗର୍ଭଧାରୀ ।

ବମନରୁ ଉତ୍ତରି ଯେ ପାଣ୍ଡବଙ୍କ ମାତ
ଭକତରେ ପୂଜା କରନ୍ତି ସେ ବିଶ୍ୱନାଥ ।
ଲକ୍ଷ୍ୟ କରିଣ ଅର୍ଜ୍ଜୁନ ପୂଜାବେଳ ଜାଣି
କରେ ଧରି ଗାଣ୍ଡୀବକୁ ଧନୁର୍ଗୁଣ ଟାଣି ।
ମନଭେଦୀ ନାରାଚକୁ ପୂରାଇଣ ପାର୍ଥ
ବୋଇଲା ବାସବ ଆଗେ ପଡ଼ିବୁ ତୁରିତ ।
କଭୁରୀ ଶର ଆବର ବନ୍ଧିଲେକ ପୁଣି
ଦେଉଳ ଅର୍ପଣା ଶିରୀ ପୂରାଇଣ ଆଣି ।
ପବନ ଶରକୁ ଆଡ଼କରି ଦେଲା ଥୋଇ
ମନଭେଦୀ ପଡ଼ିଲା ଯେ ଇନ୍ଦ୍ର ଆଗେ ଯାଇ ।
ଅର୍ଜ୍ଜୁନର ସଙ୍କେତକୁ ଜାଣି ସୁରନାଥ
କୁବେରକୁ ଡାକି ଆଜ୍ଞା ଦେଲେକ ତୁରିତ ।
ଆହେ କୁବେର ଆମ୍ଭର ବୋଲ ତୁମ୍ଭେ କର
ସ୍ୱର୍ଣ୍ଣଚମ୍ପା ବୃଷ୍ଟି କର ଶିବଙ୍କ ମନ୍ଦିର ।
ଇନ୍ଦ୍ରଙ୍କ ଆଜ୍ଞାରେ ଦିଗପାଳ ଯେ କୁବେର
ତତକ୍ଷଣେ ବଜେ କଲେ ଗଗନ ମଣ୍ଡଳ ।
କୁନ୍ତୀଦେବୀ ଶିବ ପୂଜା କରିବାର ବେଳେ
ସ୍ୱର୍ଣ୍ଣଚମ୍ପା ବୃଷ୍ଟି କଲେ ସେହି ଦିଗପାଳେ ।
ପାରେଶି ଦେଉଳ ସବୁ ପୂର୍ଣ୍ଣ ହୋଇଗଲା
କୁନ୍ତୀଙ୍କର ମନୋବାଞ୍ଛା ସମ୍ପୂର୍ଣ୍ଣ ହୋଇଲା ।
ସନ୍ତୋଷରେ ବର ଦେଲେ ଈଶ୍ୱର ଅଇରି
ପଞ୍ଚନରେ ତୋର ପୁତ୍ର ହେବେ ଦଣ୍ଡଧାରୀ ।
ନାମ ଆମ୍ଭର ଅଟଇ ଯେ ବାରିକେଶ୍ୱର
ଆଜୁଁ କୁନ୍ତୀଶ୍ୱର ବୋଲି ବୋଲାଇବ ଯେ ନର
ବାଞ୍ଛା ପୂରାଇଣ କୁନ୍ତୀ ପୁରକୁ ଆସିଲେ
ପଛେ ଗାନ୍ଧାରୀ ଯାଇଣ ଦେଉଳେ ପଶିଲେ ।
ସୁବର୍ଣ୍ଣ ଚମ୍ପାରେ ଦେଉଳକୁ ବାଟ ନାହିଁ
ବାହୁଡ଼ିଲେ ଗାନ୍ଧାରୀ ଯେ ବହୁ ଲଜ୍ଜା ପାଇ ।
ତ୍ରୈଲୋକ୍ୟରେ ପାଣ୍ଡବଙ୍କ ମହିମା ଏସନ
ଜଗତେ ଉଦିତ ହେଲେ ପଣ୍ଡୁର ନନ୍ଦନ ।
ସୁପୁତ୍ର ଉପୁଜାଇଣ କୁନ୍ତୀ ସାଧ୍ୱୀ ହେଲେ
ଲଜ୍ଜା ପାଇଣ ଗାନ୍ଧାରୀ ନିଜପୁରେ ଗଲେ ।
କୁନ୍ତୀ ପଞ୍ଚପୁତ୍ର କଲେ ଜଗତ ଉଦ୍ଧାର
ଗାନ୍ଧାରୀର ଶତପୁତ୍ର ଥାଇ ଲଜ୍ଜାଭର ।
ତୁ ଯେଣୁଟି ପୂଜା କଲୁ ମନୁ ମହାରାଜା
ସନ୍ତଜନଙ୍କୁ ସମସ୍ତେ କରନ୍ତି ଯେ ପୂଜା ।

ତହୁଁ ଏସନ ପରନ୍ଦେ । ସାର ବେଦ ନାସ
ଜଇବାକୁ ଗଲେ କୁନ୍ତୀ ହସ୍ତିନା ଗାନ୍ଧାରୀ ।
ବଦନ୍ତ ଅଗସ୍ତି ମୁନି ଆଦ୍ୟ ବ୍ରହ୍ମବେଷ୍ଟା
ଶୁଦ୍ଧ ଚିତ୍ତରେ ଶୁଣନ୍ତୁ ବୈବସ୍ୱତ ଶ୍ରୋତା ।

ଶ୍ରୀମହାଭାରତ ଏହୁ ଅଟ୍ଟ ଶାବମାନ
ଶୁଣନ୍ତେ ପାପନାଶନ ବର୍ଦ୍ଧିତ ସନ୍ତାନ ।
ଶ୍ରୀଚଣ୍ଡୀ ଶାରଳା ଦେବୀ ଚରଣେ ବସ୍ତିନ
ଶାରଳା ଦାସ କହଇ ପାଦେ ଲଯ୍ୟ ଦେଇ ।



## ଚନ୍ଦ୍ରାବତୀ ହରଣ

ବୋଇଲେକ ବୈବସ୍ୱତ ଶୁଣ ଅଗସ୍ତି ହେ
ଗୁପତ କଥାଏ ଅଛୁ ଫେଡ଼ିବା ସନ୍ଦେହେ ।
ଜମ୍ବୁଦ୍ୱୀପ ମଧ୍ୟେ ଛନ୍ତ ଲକ୍ଷେ ନୃପବର
ସମସ୍ତଙ୍କ ମୁଖ୍ୟ ମାନଗୋବନ୍ଦ ନୃବର ।
ହସ୍ତିନା ନଗରେ ତାର ସିଂହଦ୍ୱାର ବାଙ୍କ
ବଙ୍କପଣେ ଯାର ନାମେ ପଡ଼ଇ ଚମକ ।
ଏଥିର ଚରିତ ମୁହିଁ କରୁଅଛୁ ପୃଚ୍ଛା
ଶୁଣିବାକୁ ଶରଧା ଏ ମୋର ବଡ଼ ଇଚ୍ଛା ।
ବଦନ୍ତ ଅଗସ୍ତି ଶୁଣ ହେ ମନୁ ପୁରୁଷ
ମହାଗୁପତ କଥାଏ କରିବା ପ୍ରକାଶ ।
ପଞ୍ଚ କଟକର ରାଜା ମାନଚକ୍ରବର୍ତ୍ତୀ
ତାହାର ଭାରିଯା ନାମ ଅଟେ ଭାନୁମତୀ ।
ତା ଗର୍ଭୁଁ ପୁତ୍ରେକ ଜାତ ହେଲ ସୁଲକ୍ଷଣ
ଜାଣି ପିତା ମାତା ନାମ ଦେଲେ ତା ଲକ୍ଷ୍ମଣ ।
ଦୁହିତାଏ ଉପୁଜିଲା ସର୍ବ ସୁଲକ୍ଷଣୀ
ଜାଣି ପିତାମାତା ନାମ ରଖିଲେ ଲକ୍ଷଣା ।
ଚନ୍ଦ୍ର କିରଣକୁ ଜିଣି ଦିଶେ ତାର ଜ୍ୟୋତି
ତେଣୁ ଶ୍ରଦ୍ଧାରେ ତା ପିତା ଡାକେ ଚନ୍ଦ୍ରାବତୀ
ତ୍ରୈଲୋକ୍ୟ ମଧ୍ୟରେ ସେହି ଅଟେ କ୍ଷତ୍ରିବର
ମାନେ ମାନଗୋବନ୍ଦଟି ବୀରଧୂ ଯାହାର ।
ଡରସି ରାଜାଏ ତାକୁ କନ୍ୟା ନ ମାଗନ୍ତି
ହୃଦୟ ମଧ୍ୟରେ ଥାଇ ତାହାଙ୍କର ଭୀତି ।
ଭାନୁମତୀ ବୋଇଲେ ହେ ଶୁଣ ନୃପବର
ବାଳକୁ ବଳାଇଲାଣି କନ୍ୟା ଯେ ଆମ୍ଭର ।
ଆହେ ନୃପବର ଏବେ କର ସ୍ୱୟମ୍ବର
ସମସ୍ତ ଦେଶରୁ ବର ଆଣ ନୃପବର ।

କନ୍ୟାର ହସ୍ତରେ ଦେବ. ମାଳା ରତ୍ନମାଳୀ
ଇଚ୍ଛାରେ ବରିବ ଯେହ୍ନ ମନେ ମନେ ଭାଳି ।
ଏମନ୍ତ ବଚନ ଗୋଟି ତୁଟିଲା ମନକୁ
ଡାକଇ ରାଜା ଏକାନ୍ତେ ଘେନଣ ମନ୍ତ୍ରୀଙ୍କୁ ।
ସ୍ୱୟମ୍ବରର ବିଧାନ କର ବେଗକରି
ନୃପତିମାନଙ୍କୁ ବେଗେ ଆଣିବାକୁ କରି ।
ରାଜାର ଆଜ୍ଞାରେ ଗୃହ ଭଣ୍ଡାରରୁ ଫିଟି
ଭୀଷ୍ମ ଦ୍ରୋଣ ଘେନି ବସେ ରାଜା ଧୃତରାଷ୍ଟ୍ରି
ଭୂରିଶ୍ରବା ସୋମଦତ୍ତ କୃପ କୃତବର୍ମା
ସଞ୍ଜୟ ବିଦୁର ଧୃତରାଷ୍ଟ୍ର ଅଶ୍ୱତ୍ଥାମା ।
ସମସ୍ତେ ବସିଲେ ଆସି ଏକଇ ଆସନେ
କର୍ମମାନ କରନ୍ତି ଯେ ବିଧି ବିଧାନେ ।
ମାନଗୋବିନ୍ଦ ବୋଇଲେ ଶୁଣିମା ସମସ୍ତେ
ସ୍ୱୟମ୍ବର ହୋଇବା କନ୍ୟାର ନିମନ୍ତେ ।
ସ୍ୱୟମ୍ବରେ ମିଳିବେକ ଲକ୍ଷେ ଦଣ୍ଡଧାରୀ
ତାର ଇଚ୍ଛାଏ ବର ବରୁ ସେ କୁମାରୀ ।
ଭୀଷ୍ମ ଦ୍ରୋଣାଦି ବୋଇଲେ ବିଚାର ଉତ୍ତମ
ସ୍ୱୟମ୍ବର ଲାଗି ତେବେ କର ହେ ଉଦ୍ୟମ ।
ରାଜା ଆଜ୍ଞାଦେଲେ ସର୍ବ ବିନ୍ଧାଣୀ-ମାନନ୍ତ
ସ୍ୱୟମ୍ବମଣ୍ଡପ ଗୋଟିଏ ହୋଆଅ ତୁରିତ ।
ସ୍ୱୟମ୍ବମଣ୍ଡପ ହୋଇଲା ବେନି ଯେ ଯୋଜନ
ଯମୁନା ନଦୀର କୂଳେ ରାଜାଙ୍କ ଆସ୍ଥାନ ।
ସ୍ଥଳୀ ଯେ ବାରୁଣାବନ୍ତ ନଗ୍ରଯାଏ
ସ୍ୱୟମ୍ବରକୁ ଆସିବେ ସମସ୍ତ ରାଜାଏ ।
ରଚିଲେକ ବିଶ୍ୱକର୍ମା ଗଠନ ବିନ୍ଧାଣୀ
ସେ ସ୍ଥାନେ ମିଳିଲେ ଯାଇ କୁରୁକୁଳମଣି ।
ସୁବର୍ଣ୍ଣ ଯୋଗାଡ଼ମାନ ସମସ୍ତ ରାଜାଙ୍କୁ
ପ୍ରତେକ ଘର ଚନ୍ଦନ ଲେପନ ହେବାକୁ ।
ଯେନଙ୍କ ଆଜ୍ଞା ତହିଁ ଦେଲେ ଧାର୍ତ୍ତରାଷ୍ଟ୍ରି
ରାଜାଙ୍କ ମୂଳେ ରହ୍ୟେ ଦେଲେ ଧନବାଣ୍ଟି ।
ଅଶ୍ୱଶାଳ ଗଜଶାଳ ନିର୍ମାଣ କରନ୍ତି
ଚନ୍ଦ୍ରଶାଳା ଭୁବନ ଯେ ସୁବର୍ଣ୍ଣ ଜଗତି ।
ଅଷ୍ଟରତନ କଳସ ସୁବର୍ଣ୍ଣ ପତାକା
ଘର ଘର ଉଡ଼ନ୍ତି ସେ ଶୂନ୍ୟେ ଲାଗେ ଶିଖା
ହସ୍ତିନା ରାଜ୍ୟ ଅନେକ ସମାରୋହେ ପୂରି
ସେନାପତିମାନଙ୍କୁ ସେ ଆଜ୍ଞା ଅବଧାରି ।

ସଞ୍ଜୟଙ୍କୁ ବୋଇଲେ ତୁ ଯିବୁ ପଶ୍ଚିମକୁ
ପଞ୍ଚାଶସହସ୍ର ରାଜାଗଣ ବରିବାକୁ ।
ତୋର ସଙ୍ଗେ ଥିବେ ଦଶସହସ୍ର ଯେ ରଥୀ
ସଙ୍ଗତେ ଥିବ ବହୁତ ପୁଣି ଘୋଡ଼ା ହାତୀ ।
ଚାରି ଦିଗକୁ ପେଷିଲେ ଦୂତ ଗୋଟି ଚାରି
ରାଜାମାନଙ୍କୁ ଆଣିବ ନିମନ୍ତ୍ରଣ କରି ।
ଅକ୍ଷତ ପାଦ୍ୟାର୍ଘ୍ୟ ଦେବ ଗୋଟିଏ ଗୋଟିଏ
ମଙ୍ଗଳ ବିଧାନେ ଯିବ ସବୁ ଦେଶ ରହ୍ୟେ ।
ଦୁଷ୍ଟରାଜାଙ୍କୁ ସନ୍ତୋଷି କରିବ ବରଣ
ସମସ୍ତ ରାଜାମାନଙ୍କୁ ନିମନ୍ତ୍ରିଣ ଆଣ ।
ଜୟଦ୍ରଥ ତୁଲେ ଗଲେ ସହସ୍ର ଯେ ହସ୍ତୀ
ସଞ୍ଜୟର ତୁଲେ ଦଶସହସ୍ର ଯେ ରଥୀ ।
ଦଶସହସ୍ର ଯୋଦ୍ଧା ଯେ ବିକର୍ଣ୍ଣର ତୁଲେ
ଅଯୁତେକ ଯୋଦ୍ଧା ଗଲେ ସାମନ୍ତର ମୂଳେ
ନିମନ୍ତ୍ରଣ ପାଇ ଚାରିଦିଗେ ବିଜେକରି
ରାଜା ମନ ତୋଷ କଥା କହିତ କେ ପାରି
ସାହା ମଙ୍ଗଳ ଯେମନ୍ତ ଉତ୍ସବ ବିଧାନେ
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ଦିନେ ।
ବୃହସ୍ପତି ବାର ଉତ୍ତରଷାଢ଼ା ନକ୍ଷତ୍ରେ
ଶୋଭନ ଯୋଗକୁ ଘେନି ଗମିଲେ ସେ ଦୂତେ
ରାଜାଙ୍କର ନିମନ୍ତ୍ରଣ ଅର୍ଥେ ସେନାପତି
ଯାନ୍ତେ ମାନଗୋବିନ୍ଦର ଆନନ୍ଦିତ ମତି ।
ତୋଳନ୍ତି ଯେ ନବଶାଳମାନ ଗଙ୍ଗାକୂଳେ
ମଙ୍ଗଳ ବିଧି କରନ୍ତି ଯେ ସାହାର ମୂଳେ ।
କାଷ୍ଠ ପାଷାଣ ବିନ୍ଧାଣୀ ଗଲେ ଦଶଲକ୍ଷ
ଭୀଷ୍ମଙ୍କୁ ବୋଇଲେ ତୁମ୍ଭେ ଭଣ୍ଡାରକୁ ରଖ ।
ବିନ୍ଧାଣୀଙ୍କ ଅଧିପତି ଶଲ୍ୟ ମହାରଥୀ
ଦ୍ରୋଣ ହେଲେ ପାଞ୍ଚଲକ୍ଷ ସୂପକାର ପତି ।
ସନଶାଳା ଅଧିପତି ଭୂରିଶ୍ରବା ହୋଏ
ଏହାଙ୍କ ପାଶେ ଅଛନ୍ତି ପାରିଦଣ୍ଡ ଶଏ ।
ତୁଳମାସ ଶୁକ୍ଳପକ୍ଷ ଦ୍ୱିତୀୟାର ଦିନ
ନାରଦ ଯେ ବିଜେକଲେ ହସ୍ତିନା ଭୁବନ ।
ଦଣ୍ଡକମଣ୍ଡଳୁ ଗୁଳ କକ୍ଷା କଉପୁନ
କଳଧୋକଡ଼ି ମୁଣିକ ମୁନ୍ଦ କାଖେ ଘେନି ।
ସଭାରେ ଯେ ବିଜେକଲେ ଆସି ମହାଋଷି
ଦେଖି ଦୁର୍ଯ୍ୟୋଧନ ପୂଜା ବିଧିରେ ସନ୍ତୋଷି

ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଭୂରିଶ୍ରବା ରଥୀ
ନାରଦଙ୍କ ପାଦତଳେ ପ୍ରଣାମ କରନ୍ତି ।
କନକର ଝରି ଘେନି ରାଜା ଦୁର୍ଯ୍ୟୋଧନ
ଚରଣ ପଖାଳଇ ସେ ଆନନ୍ଦିତ ମନ ।
ଚରଣ ପଖାଳି ପୁଣି ପାଦ୍ୟ ଅର୍ଘ୍ୟ ଦେଇ
ଶତଦଳ ଚନ୍ଦନ ସେ ଶରୀରେ ଲେପଇ ।
ସୁବର୍ଣ୍ଣର ପଲଙ୍କରେ ନେତର ସୁପାଟ
ତହିଁର ଉପରେ ବିଜେକଲେ ବ୍ରହ୍ମସୁତ ।
ଦୁର୍ଯ୍ୟୋଧନ ବୋଇଲା ହୋ ଶୁଣ ତପସ୍ୱୀ
ଅନେକ ଉତ୍ସବ ଆଜ ମୋ ହସ୍ତିନାପୁରୀ ।
ଯେ ଅବା ପାତକ ମୋର ପୂର୍ବଜନ୍ମେ ଥିଲା
ଏ ତୋ ପାଦରଜ ଲାଗି ସବୁ ନାଶଗଲା ।
ନାରଦ ବୋଇଲେ କ୍ଷେମେ ଅଛୁ କି ନା ରାଜା
ସାବଧାନେ ଅଛନ୍ତି ନା ତୋତେ ଜନ ପ୍ରଜା ।
ତାହାଙ୍କୁ ରଖି ପାଳନ କରୁଛୁ ନୃପତି
ଯାଗ ଯଜ୍ଞ କରି ରାଜା ପାଳୁଛୁ ନା କ୍ଷିତି ।
ଋଷିମାନେ ନିର୍ଭୟରେ ଅଛନ୍ତି ନା ବର୍ତ୍ତି
ମେଘମାନେ ଦିବ୍ୟବୃଷ୍ଟି କରନ୍ତି ନା ପୃଥ୍ୱୀ ।
ଦୋଷୀରେ ତୁ ସାବଧାନ ହେଉ କି ନା ନୃପ
ଯାଗଯଜ୍ଞ ହେଉଥିଲେ ଖଣ୍ଡେ ଅପଚୟ ।
ଚୋରଦସ୍ୟୁ ଉତପାତ ନାହିଁ ନା ବଇରୀ
ଏ ମହୀମଣ୍ଡଳେ ତୋତେ କେହି ନାହିଁ ସରି ।
ମାନଗୋବିନ୍ଦ କହଇ ହେ ମୁନି ନାରଦେ
ସମସ୍ତ କୁଶଳ ମୋର ତୋହର ପ୍ରସାଦେ ।
ନାରଦ ସେ ପଚାରିଲେ ଏ କିସ ଉତ୍ସବ
ବଡ଼ ସମାରୋହ ଏ ତ ବଡ଼ ଅସମ୍ଭବ ।
କେବଣ ଶତ୍ରୁକୁ ରଣେ ଜିଣିଲୁ ନୃପତି
ଯେଣୁ ଏ ଉତ୍ସବେ ତୋର ରାଜ୍ୟେ ସର୍ବେ ମାତି
କହଇ ସେ ମୁନିବର ଆଗେ ମହାରାୟେ
କରପଦ୍ମ ଯୋଡ଼ିକରି ବହୁତ ବିନୟେ ।
ମୋହର ଦୁହିତା ଏକ ହେଲା ଉତପତ୍ତି
ତାହାର ନାମ ହେ ମୁନି ଦେଲି ଚନ୍ଦ୍ରାବତୀ
କନ୍ୟା ଅନୁରୂପେ ମୁନି ନ ପାଇଲି ବର
ତେଣୁ ଏଥେ କରୁଅଛି ମୁଁ ସେ ସ୍ୱୟମ୍ବର ।
ଲକ୍ଷେକ ନୃପତିଙ୍କି ମୁଁ ଆଣିବି ନିମନ୍ତ୍ରି
ଉତ୍ସବ ମୋହର ରାଜ୍ୟେ ହେବ ବ୍ରହ୍ମସୁତ ।

ନାରଦ ବୋଇଲେ ରାଜା ମନ୍ଦକୃତ୍ୟ କଲୁ
ଆମ୍ଭଙ୍କୁ ତୁ ନ ବରିର ସଭା ତିଆରିଲୁ ।
ତୋହର ଭୁବନେ କେହ୍ନେ ପଶିବା ଭରମି
କେହୁ ତୋତେ କନ୍ୟାଗୋଟି ମାଗିବ ବା ଆସି
ଏହିକ୍ଷଣି ଯେ ଦ୍ୱାରକାପୁରେ ଆମ୍ଭେ ଥିଲୁ
କୃଷ୍ଣର ପୁତ୍ର ଯେତେକ ସମସ୍ତ ଦେଖିଲୁ ।
ସମସ୍ତେ ଦିଶନ୍ତି ଯେହ୍ନେ ମକର କେତନ
ତହିଁରୁ ଗୋଟିକୁ କିପାଁ ନ କଲ ପ୍ରଦାନ ।
ତ୍ରୈଲୋକ୍ୟର ଠାକୁର ଯେ ଅଟନ୍ତି ଶ୍ରୀହରି
ଗତକାଲୁ ତୁମ୍ଭର ତ ବନ୍ଧୁ ପଣ ଅଛି ।
ଶୁଣି ଉପହାସ କଲା ସେ ମାନଗୋବିନ୍ଦ
ଏ ଭବିଷ୍ୟ କଥା କିପାଁ କୁହ ହେ ନାରଦ ।
ମୋହର କନିଷ୍ଠ ଭାଇ ଅଟଇ ଫାଲ୍‌ଗୁନି
ତାଙ୍କୁ ଦେଇଛନ୍ତି ରାମ କୃଷ୍ଣହିଁ ଭଗିନୀ ।
ଯେହୁ ମୋହର ଭାଇର ପାଦ ପଖାଳିଲେ
ଅନେକ ବିନୟ କରି ଭଗିନୀକି ଦେଲେ ।
ମୁଁ ଅଟଇ ନିଷ୍କଳଙ୍କ କୁଳ ସୋମଗୋତ୍ରୀ
ବିଶେଷ କଳଙ୍କୀ ରାମ କୃଷ୍ଣ ଯେ ଅଟନ୍ତି ।
ସଚରାଚର ପୃଥ୍ୱୀର ମୁଁ ଅଟେ ଧାରଣ
ଗୋପାଳେ ଦୁହିତା ଦେଲେ ଲଜ୍ଜା ହେବ ଜାଣ
ବହୁତ ଲଜ୍ଜା ପାଇଲେ ତହୁଁ ମହାମୁନି
ଆସ୍ଥାନୁ ଉଠିଲେ ବେଗେ ବୀଣାଦଣ୍ଡ ଘେନି
ବିନୟ କରି କହିଲା ପୁଣି କୁରୁରାଜା
ବସ ବସ ମହାମୁନି ପାଇଲ କି ଲଜ୍ଜା ।
ସ୍ୱୟମ୍ବର ଅଷ୍ଟାଦଶ ଦିବସ ପର୍ଯ୍ୟନ୍ତେ
ଅଛି ମହାତ୍ମା ଲୋଡ଼ିବି କାହିଁ ମୁହିଁ ତୋତେ
ବଶିଷ୍ଠ ଦୁର୍ବାସା ବ୍ୟାସ ବାଲ୍ମୀକି ଅଗସ୍ତି
ଏମାନଙ୍କୁ ମୁହିଁ ଏଥେ ଆଣିବି ନିମନ୍ତ୍ରି ।
ତୋହର ନ ଥିଲେ ମୋର ସ୍ୱୟମ୍ବର କାହିଁ
ସଂସାର ଜନଟି ମୋକ୍ଷହେବେ ତୋତେ ଚାହିଁ
ରାଜାମାନଙ୍କୁ ନିମନ୍ତ୍ରି ଗଲେ ମୋର ଦୂତେ
ସମସ୍ତେ ପ୍ରବେଶ ହେବେ ଚତୁର୍ମାସ୍ୟା ଅନ୍ତେ
କରିବ ନା ମୁନି ତୁମ୍ଭେ ଥାଇ ସ୍ୱୟମ୍ବର
ଯେ ତହିଁକି ଲୋଡ଼ା ହେଉଥିବ ତା ସମ୍ଭାର ।
ରାଜା ବଚନେ କହିଲେ ତହିଁ ମହାମୁନି
ଏବେ ଯିବୁ ରାଜା ଆମ୍ଭେ ପୁରି ସଂଯମନୀ ।

ସ୍ୱୟମ୍ବର କାଳେ ଏଥେ ଅବଶ୍ୟ ଆସିବୁ
ତେତେଦିନ ଯାଏ ପୁଣି ରହି ନ ପାରିବୁ ।
ଏତେ ବୋଲି ବିଜେ କଲେ ତହୁଁ ବ୍ରହ୍ମର୍ଷି
ଆକାଶ ପଥେ ମହାତ୍ମା ପ୍ରବେଶିଲେ ଆସି ।
ଏଥୁଅନନ୍ତରେ ଶୁଣ ଦୂତଙ୍କର କଥା
ପୃଥିବୀ ରାଜାମାନଙ୍କ ଆସିବା ବ୍ୟବସ୍ଥା ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଏ ଚାରି
ଦେଶେ ଦେଶେ ରାଜାଙ୍କୁ ଏ ନିମନ୍ତ୍ରଣ କରି ।
ନିମନ୍ତ୍ରଣ ଘେନି ପୂର୍ବ ରାଜାଏ ଆସନ୍ତି
ଶୁଭଯୋଗେ ହସ୍ତିନାରେ ପ୍ରବେଶ ହୁଅନ୍ତି ।
ରଥ ଗଜ ଅଶ୍ୱ ଘେନି ସଇନ୍ୟ ପଦାତି
ସମାରୋହେ ଆସନ୍ତି ଯେ ସମସ୍ତ ନୃପତି ।
ପଶ୍ଚିମ ଦିଗକୁ ବିଜେ କଲେକ ସଞ୍ଜୟ
ନିମନ୍ତ୍ରିଲେ ସେ ପଚିଶ ସହସ ଯେ ରାୟ ।
ଚନ୍ଦ୍ରାବତୀ ସ୍ୱୟମ୍ବର ବୋଲି ସେ ଜାଣନ୍ତି
ରାଜ୍ୟ ରାଜ୍ୟେ ପଶି ଗୁଆ ଅକ୍ଷତ ଚଳାନ୍ତି ।
ସ୍ୱୟମ୍ବର ପୁଣି ମାନଗୋବର୍ଦ୍ଧନର ଆଜ୍ଞା
ମର୍ତ୍ତ୍ୟ ମଣ୍ଡଳରେ କେହୁ କରିବ ଅବଜ୍ଞା ।
ଏକୁ ଆରେକ ଆସନ୍ତି ମହାସମାରୋହେ
ରଥ ଗଜ ଅଶ୍ୱ ଘେନି ଆସନ୍ତି ଯେ ରାୟେ ।
ଉତ୍ତର ଦିଗକୁ ଗଲେ ନିମନ୍ତ୍ରି ବିଦୁରେ
ନିମନ୍ତ୍ରଣ ଦେଲେ ତାଙ୍କୁ ଯେ ବିଧି ବେଭାରେ
ବଡ଼ ପ୍ରତାପୀ ଚାଳିଶ ସହସ୍ର ଯେ ରାଜା
ବହୁ ସମାରୋହେ ଜଣେ ଜଣେ କଲେ ପୂଜା
ସମସ୍ତ ସଇନ୍ୟ ସଙ୍ଗେ ସମଦଣ୍ଡ ଥାଟ
ଆସନ୍ତେ ରାଜାଙ୍କ ସୈନ୍ୟ ନ ମିଳଇ ବାଟ
ଭୁଲମାସ ଶୁକ୍ଳପକ୍ଷ ପଞ୍ଚମୀର ଦିନେ
ପାଣ୍ଡବେ ଯେ ଥିଲେ ରହି ଜୟନ୍ତା ଭୁବନେ
ଆସନ୍ତି ଧୃତରାଷ୍ଟ୍ରଙ୍କୁ ଦେଖି ପାଞ୍ଚଭାଇ
ହସ୍ତିନାପୁରେ ପ୍ରବେଶ ହେଲେ ତହୁଁ ଯାଇ
ଧୃତରାଷ୍ଟ୍ରଙ୍କ ଚରଣେ ପ୍ରଣାମ କରନ୍ତି
ଆସ୍ଥାନରେ ବସ ବୋଲି ରାଜା ଆଜ୍ଞା ଦ୍ୟନ୍ତି
ସମାରୋହେ ଆସ୍ଥାନରେ ଅଛି ଧାର୍ତ୍ତରାଷ୍ଟ୍ରି
ସେଠାରେ ଯାଇ ପ୍ରବେଶ ହୋଇଲେ ଯୁଧିଷ୍ଠି.
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଚରଣେ ପ୍ରଣମି
ପ୍ରୀତିଭାବେ ଆସ୍ଥାନରେ ବିଜେ କଲେ ସ୍ୱାମୀ

ଯୁଧିଷ୍ଠି ଦେବ କହନ୍ତି ଆସ୍ଥାନରେ ବସି
ଦୁର୍ଯ୍ୟୋଧନଙ୍କୁ ଚାହିଁଣ ବଚନ ପ୍ରକାଶି ।
ଶୁଣି ଯେ ମାନଗୋବର୍ଦ୍ଧନ ନୃପଚୂଡ଼ାମଣି
ସ୍ୱୟମ୍ବର କଥା ଆମ୍ଭେ ନ ପାରିଲୁ ଜାଣି ।
ରାଜା ବୋଲେ ତୁମ୍ଭେ ଭ୍ରାତାମଧ୍ୟେ ଅଟ ଶ୍ରେଷ୍ଠ
ଏହା ଜାଣିକରି ତୁମ୍ଭେ ହୋଇଲ ଯେ ତୁଷ୍ଟ ।
ଦୁହିତା ହୋଇଲେ ପିତାଘରେ ରଜୋବତୀ
ଏକାବନ ପୁରୁଷ ତା ନରକେ ପଡ଼ନ୍ତି ।
ଚନ୍ଦ୍ରାବତୀ ବାଳୀ ଅଟେ ମୋହର ନନ୍ଦିନୀ
ଏହାକୁ ବିଭା ନ କରି ହେଲ ତୁମ୍ଭେ ତୁନି ।
ସହୁଁ ମୁଁ ତଦନ୍ତ କରି ନ ପାଇଲି ବର
ରାଜାମାନଙ୍କୁ ଲୋଡ଼ିଣ କରି ସ୍ୱୟମ୍ବର ।
ତୁମ୍ଭେ ଜ୍ୟେଷ୍ଠଭ୍ରାତା ହୋଇ ମଉନ ହୋଇଲ
ମୋହର ଦୁହିତା ବୋଲି କଥା ନ କହିଲ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ସହଦେବ
ଚନ୍ଦ୍ରାବତୀର ବଲ୍ଲଭ କେ ପୁଣି ହୋଇବ ।
ଦକ୍ଷିଣ କରକୁ ଚାହିଁ ବୀର ସହଦେବ
ବିନୟି ହୋଇ କହଇ ବହି ସଦଭାବ ।
ମନେ ମନେ ପୁଣି ବୋଲେ ମାଦ୍ରୀଦେବୀ ବାଳ
ଏଡ଼େ ବଡ଼ ସ୍ୱୟମ୍ବର ହୋଇବ ନିଷ୍ଫଳ ।
ଯୁଧିଷ୍ଠି ଦେବ ବୋଇଲେ ସହଦେବେ ଚାହିଁ
କି ବିଚାର କରୁ ମନେ ମନେ ପୁଣି ତୁହି ।
ସହଦେବ ବୋଲେ ଦେବ ବିଚାର ଏଥିକି
ବର ନାହିଁ ଏଥେ ଜାଣ ଏ ଚନ୍ଦ୍ରାବତୀକି ।
ଆହେ ଦେବ ଏହା ଅଟେ ଲଲାଟ ଘଟଣ
ଦକ୍ଷିଣ ଦିଗ ଭାଗରେ ଅଛି ଏକ ଜଣ ।
ମହୋଦଧିର ଉତ୍ତର ଦ୍ୱାରବତୀ ଗ୍ରାମ
ବାସୁଦେବର ନନ୍ଦନ ଶାମ୍ବ ତାର ନାମ ।
କର୍ମିଲି କପାଳ ପାଟି ଧର୍ମ ନନ୍ଦନର
ପ୍ରତିବାକ୍ୟ ଦେଲେ ପୁଣି ବିଚାର ହୃଦର ।
ତୁ ଦୁର୍ଯ୍ୟୋଧନ ଆମ୍ଭଙ୍କୁ ଏହା ନ ପୁଚ୍ଛିଲୁ
ତୋହର ଇଚ୍ଛାରେ ସ୍ୱୟମ୍ବର ଭିଆଇଲୁ ।
ଆମ୍ଭ ସପକ୍ଷ ଅଟନ୍ତି ସଦା ରାମକୃଷ୍ଣ
ତାହାଙ୍କୁ ଅବଜ୍ଞା କଲୁ ହୋଇ ଜ୍ଞାନଭ୍ରଷ୍ଟ ।
ବଳରାମ ଦେବଙ୍କର ହନ୍ତି ବେନିସୁତ
ଆନନ୍ଦ ସାନନ୍ଦ ନାମ ଅଟଇ ତାହାନ୍ତି ।

ତହିଁ ଆଣିଥାନ୍ତି ତୁମ୍ଭେ ଗୋଟିଏକ ସୁତ
ଚନ୍ଦ୍ରାବତୀକୁ ପ୍ରଦାନ ତାକୁ କରିଥାନ୍ତି ।
ଏବେ ବର ଆଣିଲୁଣି ରାଜାଙ୍କୁ ତୁ ଆଜ
ଲାଜ ପାଇବୁ ନୋହିବ ତହିଁ କିଛି କାର୍ଯ୍ୟ ।
ମାନଗୋବିନ୍ଦ ବୋଇଲା ସେ ଯେ ବଳଦେବ
ସକଳ ଭଲ ଯିବ କି କଳଙ୍କର ଭାବ ।
ମନୁଷ୍ୟ ଗଣଇ କେହୁ ଶ୍ରୀକୃଷ୍ଣଙ୍କୁ ଅବା
କଳଙ୍କ ବଂଶରେ କନ୍ୟା କେଉଁପରି ଦେବା ।
ଉପର ବଂଶେ ତାହାର ଯଦୁନାମେ ଋଷି
ନିଷ୍କଳଙ୍କ ନିଷ୍ଠାପର କହନ୍ତି ପ୍ରଶଂସି ।
ଏବେ ଆସି ବଢ଼ିଲା ସେ ଗୋପାଳଙ୍କ ମେଳେ
ଜ୍ଞାନ ବୁଡ଼ାଇଲା ରସ କାଦମ୍ବରୀ ଭୋଳେ ।
ଆବର ବିଶେଷେ ଆମ୍ଭେ ଅଟୁ କୁଳଜ୍ୟେଷ୍ଠ
ପୁଣି କେମନ୍ତେ ହୋଇବୁ ତାଠାରୁ କନିଷ୍ଠ ।
ଅର୍ଜ୍ଜୁନର ପାଦ ଧୋଇ ଦେଇଅଛୁ ଭଗ୍ନୀ
ନନ୍ଦ ମହାଖୁଣ୍ଡ଼ ଦାନ କଲାକ ନନ୍ଦନୀ ।
ମୋହର ଦୁହିତା ତାକୁ କେମନ୍ତେ ବା ଦେବି
ସ୍ୱହସ୍ତରେ ଗଉଡ଼ର ପାଦ ପଖାଳିବି ।
ଯୁଧିଷ୍ଠିର ବୋଇଲେ ତୁମ୍ଭେ ଯା କହିଲ ସତ
ବଳାତ୍କାରେ ନ୍ୟନ୍ତ ଯେବେ ରାମକୃଷ୍ଣ ସୁତ ।
ତୁମ୍ଭେ କହିଲେ ଅବଶ୍ୟ ଉପୁଜିବ ଦ୍ୱନ୍ଦ୍ୱ
ଆସ୍ଥାନରେ ଥିବେ ପୁଣି ଲକ୍ଷେକ ନରେନ୍ଦ୍ର
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଅଶ୍ୱତ୍ଥାମା ଥିବେ
ଯଦ୍ୟପି ସେ ଏହାଙ୍କର ସମ୍ମୁଖରେ ମିଳିବେ ।
ଆବର ବିଶେଷେ ଥିବ ବୀର ଫାଲଗୁନ
ଯଥାର୍ଥ ସଂଗ୍ରାମ କଲେ ଯିବେ କି ସେ ଜିଣି ।
କି କରି ପାରନ୍ତି ସେହୁ ବଳେ ବଳାତ୍କାର
ଅପ୍ରୀତି ହେଲେ ଆପଣ ହୁଅନ୍ତୁଟି ପର ।
ଯୁଧିଷ୍ଠିର ବୋଇଲେ ଯାହା କହିଲୁ ବିଚାର
ଏମାନେ ସମସ୍ତେ ତୋର ପାରିବେ କି କରି
କୁହୁଡ଼ି ଜ୍ୟୋତ୍ସ୍ନା ଯେମନ୍ତେ ଯାଏ କ୍ଷଣମଧ୍ୟେ
ଏଥେ କୃଷ୍ଣଭାନୁ ଯେବେ ହୋଇବଟି ଉଦେ ।
ଶଙ୍ଖ ଚକ୍ର ଧରି ଯହିଁ ଥିବେ ବାସୁଦେବ
ବ୍ରହ୍ମଲୋକ ନାଗଲୋକ ସୁରଲୋକ ଥିବ ।
ତେତିଶ କୋଟି ଦେବେଟି ଥିବେ ଯାର ପାଶେ
କେହି ରହି ନ ପାରିବେ ବାସୁଦେବ ହାସେ ।

କହି ଆସ୍ଥାନରୁ ଉଠିଗଲେ ପାଞ୍ଚବୀରେ
ଚଳିଲେ ପାଣ୍ଡବେ ତହିଁ ଜୟନ୍ତୀ ନଗରେ ।
ଏଥୁ ଅନନ୍ତରେ ଶୁଣ ହେ ମନୁ ନୃପତି
ବଦନ୍ତି ଧାର୍ମିକ ଯେ ବିବେକୀ ଅଗସ୍ତି ।
ଏହା ଶୁଣି ବୈବସ୍ୱତ ମନୁ ଯେ ବୋଇଲେ
ରାଜାଙ୍କର ନିମନ୍ତ୍ରଣେ ଦୂତମାନେ ଗଲେ ।
ସମସ୍ତ ରାଜାଙ୍କୁ ସେହୁ ଅଇଲେଟି ଘେନି
ଏ କଥା ସଂକ୍ଷେପି ମୋତେ କହ ତପୋଧନି ।
ବଦନ୍ତି ଅଗସ୍ତି ମୁନି ପୃଚ୍ଛା କଲୁ ଯାହା
ପ୍ରସ୍ତାବ ବାକ୍ୟରେ ତୋତେ କହିବାନା ତାହା
ପୂର୍ବଦ୍ଦିଗକୁ ନିମନ୍ତ୍ରି ଗଲା ଜୟଦ୍ରଥ
ଉଦେଗିରି ଦେଶେ ଯାଇ ମିଳିଲା ତୁରିତ ।
ଉଦକେଶରୀ ନାମେଣ ତହିଁର ନୃପତି
ସମଦଣ୍ଡ ଘେନି ସେହୁ ଅଇଲା ତଡ଼ିତି ।
ମାନଭଙ୍ଗ ଦେଶେ ରାଜାମାନ ଅରଜୁନ
ସେହି ରାଜା ବିଜେ କଲା ହସ୍ତିନା ଭୁବନ ।
ସଙ୍ଗତେ ଅଛନ୍ତି ତାର ସାତଖର୍ବ ସୈନ୍ୟ
ପାର୍ବତୀୟ ଦେଶ ରାଜା ନାମ ଚନ୍ଦସେନ ।
ଚନ୍ଦ୍ରକେତୁ ଯେ ଧୂମ୍ରାକ୍ଷ ଦେଶର ନୃପତି
ହସ୍ତିନା ରାଜ୍ୟେ ମିଳିଲା ଆସି ସେ ତଡ଼ିତି ।
ଦକ୍ଷିଣ ଦେଶୁଁ ଅଇଲେ ମଳୟ ନୃପତି
ଆବର ଅଇଲେ ବଇଦୂର୍ଯ୍ୟ ଚକ୍ରବର୍ତ୍ତୀ ।
ଅତିସୁଖୀ ନାମେ ବାମପୁର ନୃପବର
ହସ୍ତିନାରେ ପ୍ରବେଶିଲେ ସୈନ୍ୟ ସଙ୍ଗତର ।
ଶାଳସେନ ନୃପତି ଯେ ଶଳେନ୍ଦ୍ରୀ ଦେଶର
ହସ୍ତିନା ଦେଶେ ପ୍ରବେଶ ହୋଇଲା ସତ୍ୱର ।
ମହେନ୍ଦ୍ର ଦେଶ ନୃପତି ନାମ ବିଷ୍ଣୁ କର
ହସ୍ତିନା ଦେଶରେ ମିଳେ ଯହିଁ ସ୍ୱୟମ୍ବର ।
ଭୀମଦେଶ ରାଜା ବୀରଭଦ୍ର ନରପତି
ମଦନ ମହାଦେବ ତା ସଙ୍ଗରେ ଅଛନ୍ତି ।
ବଇଦର୍ଭ ଦେଶ ଅନ୍ଧଗୋ.ପାଳରାଜନ
ହସ୍ତିନାରେ ମିଳିଲ ସେ ଘେନି ଆଠ ସୈନ୍ୟ
ମଘଦେଶ ନରପତି ଅଇଲା ତ୍ରିଗର୍ତ୍ତି
ସ୍ୱୟମ୍ବର ବିଧାନେ ସେ ଆସଇ ତୁରିତ ।
କନ୍ଦଳ ଦେଶର କାଳବର ନରପତି
ନିମନ୍ତ୍ରଣ ପାଇ ସେହି ଆସଇ ତଡ଼ିତି ।

ମନ୍ଦର ଦେଶର ରାଜା ଅଟେ କାଳନେମି
ହସ୍ତିନାରେ ପ୍ରବେଶିଲା ସମଦଣ୍ଡ ଘେନି ।
ମରୁଦେଶ ନରପତି ଅଟଇ ବିରାଟ
ସାତ ଅକ୍ଷୌହିଣୀ ତାର ଅଙ୍ଗବଳ ଥାଟ ।
କଳିଙ୍ଗ ଦେଶର ରାଜା ଯେ କଳିଙ୍ଗସେନ
ହସ୍ତିନାରେ ମିଳିଲା ସେ ସଙ୍ଗେ ଘେନି ସୈନ୍ୟ
କାଳିନ୍ଦୀଦେଶର ରାଜା ମାଳସେନ ରାୟେ
ସଙ୍ଗତେ ଘେନି ଅଇଲା ସହସ୍ରେକ ହୟେ ।
ଖଞ୍ଜନଦେଶୁଁ ଅନନ୍ତ ବୀରସେନ ଆସେ
ହସ୍ତିନାରେ ସ୍ୱୟମ୍ବର ସ୍ଥାନେ ଯାଇ ବସେ ।
ମନ୍ଦର ଦେଶର ରାଜା କେଶର ନୃପତି
ମହାର୍ଣ୍ଣବ ନରପତି ସଙ୍ଗରେ ଅଛନ୍ତି ।
ନର୍ହର ଦେଶର ରାଜା ନାମ ଗଣପତି
ବଡ଼ ସମାରୋହେ ବିଜେ କଲା ସେ ନୃପତି ।
କରଞ୍ଜି ଦେଶର ରାଜା ନାମ ଚନ୍ଦ୍ରଧ୍ୱଜ
ତେର ଅର୍ବୁଦ ସଇନ୍ୟ ସଙ୍ଗତରେ ଗଜ ।
କାଉଁରୀ ଦେଶ ନୃପତି ନାମ କାଳେଶ୍ୱର
ସେ ଆସି ପ୍ରବେଶ ହେଲା ହସ୍ତିନା ନଗର ।
ତରଣି ମଣ୍ଡଳ ନୃପ ତିମିଧ୍ୱଜ ରାଜା
ହସ୍ତିନା ରାଜ୍ୟେ ପାଇଲା ଆସି ପାଦପୂଜା ।
ଭୈରବ ଦେଶ ନୃପତି ନାମ କେତୁଧ୍ୱଜ
ସେ ଆସି ପ୍ରବେଶ ହେଲା ହସ୍ତିନାର ରାଜ୍ୟ ।
କରମଣ୍ଡଳ ନୃପତି ନାମ ମହୀଧର
ହସ୍ତିନା ରାଜ୍ୟେ ନୃପତି ହେଲା ନୃପବର ।
ମାଳବ ଦେଶ ନୃପତି ନାମ କୃତବର୍ମ୍ମା
ତାହାର ହସ୍ତିର ନାମ ଅଟେ ଅଶ୍ୱତ୍ଥାମା ।
ଅନେଶ୍ୱତ ଅର୍ବୁଦ ତା ସଙ୍ଗତରେ ସୈନ୍ୟ
ପ୍ରବେଶ ହୋଇଲା ଆସି ହସ୍ତିନା ଭୁବନ ।
ଗିରିଜା ଦେଶର ରାଜା ନାମ ଜମାଗୋଷ୍ଠୁ
ହସ୍ତିନା ନଗରେ ବିଜେ କଲା ଘେନି ଥାଟ ।
ମଳୟ ଦେଶର ରାଜା ଯେ ମଳୟସେନ
ମିଳିଲା ଯେ ହସ୍ତିନାରେ ସଙ୍ଗେ ଘେନି ସୈନ୍ୟ
ସମାରୋହେ ଆସ୍ଥାନରେ ମିଳିଲେ ନୃପତି
ବହଇ ଯମୁନା ନଦୀ ଉତ୍ତର ମୂରତି ।
ସ୍ନାନ ଦେବାର୍ଚ୍ଚନ ତହିଁ କଲେ ନୃପଗଣ
ଓଲେ ଅମୃତ ଯୋଗାଡ଼ ମଣୋହି ସେ ପୁଣ

ଆଚମନ ସାରି ଯାଇ ବିଜେ ରନ୍ଧଶଟେ
ଦେବାଙ୍ଗ ବସନମାନ ପିନ୍ଧନ୍ତି ସନ୍ତୁଷ୍ଟେ ।
ସୁରଙ୍ଗ ପଟଣୀ ପୁଣି ସୁରଙ୍ଗ ବସନ
ରାଜାଙ୍କେ ଲଗଇ ଯେତେ ଯେତେ ପ୍ରତିଦିନ ।
ଭୋକାଶୋଷିମାନେ ଯେତେବେଳେ ଯାହା ମାଗି
ଜାଣି ପ୍ରାପତ କରନ୍ତି ତାହାଙ୍କୁ ନିଯୋଗୀ ।
ଭଣ୍ଡାର ଫେଡ଼ଣ ନିତ୍ୟ ଦିଆନ୍ତୁଏ ଦାନ
ଯେ ଯାହା ମାଗନ୍ତି ତାହା ପାନ୍ତି ଅନୁକ୍ଷଣ ।
ଶିବାଳୟେ ଗୋଦୋହନ ବାରଗୋଷ୍ଠ ଗାଈ
ବିପ୍ରେ ଆଳେ ବଇଷ୍ଣବମାନେ ଗୀତ ଗାଇ ।
ଦେବଦେବୀଙ୍କୁ ଅନେକମତେ କଲେ ପୂଜା
ମେଷ ଛାଗଳ ଦିଅନ୍ତି ମାରି ବଳିଭୋଜା ।
ଏନନକ ଉତ୍ସବ ଯେ ହସ୍ତିନା ନଗରୀ
ଦିଶନ୍ତି ସେ ଦେବଦେବୀ ପ୍ରାୟେ ନରନାରୀ ।
ଷାଠିଏ ସହସ୍ର ଶିଷ୍ୟ ଘେନି ବେଦବ୍ୟାସ
ପ୍ରବେଶ ହେଲେ ଅଗସ୍ତି ବାଲ୍ମୀକ ଲୋମଶ ।
ବାମଦେବ ବିଶ୍ୱାମିତ୍ର ବଶିଷ୍ଠ ମାର୍କଣ୍ଡ
ବସୁଦେବ ସତ୍ୟବ୍ରତ ଆବର ବିଭାଣ୍ଡ ।
ଅଇଲେ ଦୁର୍ବାସା ମୁନି ଋଷ୍ୟଶୃଙ୍ଗ ଯତି
ଶକ୍ତିଋଷି ପରାଶର ଏମାନେ ମିଳନ୍ତି ।
ସମ୍ବନ୍ଧରେ ସ୍ୱୟମ୍ବର ହୁଏ ବାର୍ତ୍ତା ପାଇ
ହସ୍ତିନାରେ ତପୋବନ୍ତ ପ୍ରବେଶିଲେ ଯାଇ ।
ଲମ୍ବି ଜଟଜୁଡ଼ା ଆବର ବିକଚ୍ଛ ବସନ
ମୁନିଙ୍କୁ ମାନଗୋବିନ୍ଦ କଲେ ସନମାନ ।
ସ୍ୱହସ୍ତେ ପାଦ ପଖାଳି କରଇ ସେ ପୂଜା
ସମସ୍ତଙ୍କୁ ଗନ୍ଧପୁଷ୍ପ ଦିଏ ମହାରାଜା ।
ଆସନରେ ବସାଇଲେ ସମସ୍ତଙ୍କୁ ନେଇ
ବିନୟ ହୋଇଣ ତାଙ୍କୁ କହେ କୁରୁସାଇଁ ।
ହସ୍ତିନାରେ ବହୁ ନୃପ ଯେଣୁ ମେଳ ହୋଇ
ଦେଖି ଆନନ୍ଦ ନୃପତିମାନଙ୍କୁ ସେ ଗୁହିଁ ।
ଜୀବନ ସାଧୁ ଦେଖଇ ଯେବଣ ପୁରୁଷ
ଆକାଶରେ ବସିବାକୁ ତାହାର ମାନସ ।
ପୂର୍ବଜନ୍ମ ଭାଗ୍ୟ ଆମ୍ଭେ ଜାଣିବା କେମନ୍ତେ
ଭାଗ୍ୟବନ୍ତ ଶୂରବନ୍ତ ବୋଲିବା ଜଗତେ ।
ସୁତୀର୍ଥରେ ସ୍ନାନ ପୁଣି ସୁଦେବ ଦର୍ଶନ
ସୁସଙ୍ଗ ମେଳେ ଯାହାର ସଙ୍ଗ ଅନୁକ୍ଷଣ ।

ସୃଷ୍ଟି ସ୍ଥି ସଂଙ୍ଗ ଯେବଣ ସ୍ପୃହ ବଳସି
ତାହାଙ୍କୁ ଜାଣିବା ସିନା କପିଳାସ ବାସୀ ।
ଲକ୍ଷେ ରାଜାଙ୍କର ମିଳ ଯେତେକ ସଇନ୍ୟ
ମନ ଜାଣି ନୃପମଣି ଦେଉଥାନ୍ତି ଅନ୍ନ ।
ଗଜ ଅଶ୍ୱମାନଙ୍କୁ ସେ ଦେଉଥାନ୍ତି ଚର
ବହୁ ସମ୍ଭାର ଭିଆଇ ଅଛୁ ଦଣ୍ଡଧାରୀ ।
ନିତ ନିତ ଯାହା ବ୍ୟୟ ହୁଏ ତାଙ୍କ ଲାଗି
ବାଣ୍ଟିଣ ତାହା ଦିଅନ୍ତି ସମସ୍ତ ନିଯୋଗୀ ।
ମୁନିଙ୍କୁ ଆସନ କୁଶ ଅଜନ ଛଉରୀ
ଗଣ୍ଡା ମାରଣ ଭୋଜନ ଦିଏ ଦଣ୍ଡଧାରୀ ।
ମୁନିମାନେ ଯେଉଁପରି ହୁଅନ୍ତି ତୃପତ
ତେସନ ପ୍ରକାରେ ତାଙ୍କୁ ଦିଅନ୍ତି ନୃପତ ।
ରାଜାମାନଙ୍କୁ ଯୋଗାଡ଼ ଦିଏ ଅପ୍ରମିତ
ନଡ଼ପ ଦିଅଇ ଲଗି ହେବାକୁ ସେ ନିତ୍ୟ ।
ତାଡ଼ଖୁମ୍ପା ବାହୁଟି ଯେ ପାଦେ ପାଦବଳା
ଶିରକୁ ସୀମନ୍ତହାର ହୃଦୟକୁ ମାଳା ।
ରତ୍ନମଣି ମୁକୁଟ ଯେ ବିରାଜଇ ଶିରେ
ବିଦମୁଦି କଙ୍କଣ ଯେ ଶୋଭଇ ବାହୁରେ ।
ନାଚନ୍ତି ବନିତାମାନେ ସୁର ବିଳାସିନୀ
ଗାଆନ୍ତି ବିବିଧରସେ ବଜାଇ ବାଜେଣୀ ।
ମର୍ଦ୍ଦଳ ତାଳ କଂସାଳ ବଇଁଶୀ ଶବଦେ
ଚଞ୍ଚପୁଟ ରୁଞ୍ଚପୁଟ ଆଦି ନାନା ଛନ୍ଦେ ।
ଜଗତମୋହିନୀଙ୍କର ପଞ୍ଚମ ଯେ ପୁର
ଦିନରାତି ନ ଅଣ୍ଟଇ କୌତୁକ ଅପାର ।
ଏମନ୍ତ ସଭା ମଧ୍ୟରେ ବିଜେ କୁତୁସାଇଁ
ସମସ୍ତ ରାଜାଙ୍କୁ ଚାହିଁ କହନ୍ତି ବୁଝାଇ ।
ମୋହର ଅଛଇ ପୁଣି ଏକଇ ଦୁହିତା
ମୋର ପାଟରାଣୀ ଗର୍ଭୁ ଜାତ ସେହି ସୁତା ।
ଚନ୍ଦ୍ରକିରଣକୁ ଜିଣି ଦିଶିବାରୁ ଜ୍ୟୋତି
ଶ୍ରଦ୍ଧାରେ ତା ନାମ ମୁହିଁ ଦେଲି ଚନ୍ଦ୍ରାବତୀ ।
ନ ମାଗିଲେ କେହି ମୁହିଁ ନ ଦିଅଇ ଯାଚି
ଏଣୁ ତୁମ୍ଭମାନଙ୍କୁ ମୁଁ ନିମନ୍ତ୍ରି ଆଣିଛି ।
ଏକ କନ୍ୟାକୁ ଯେ ତୁମ୍ଭେ ଲକ୍ଷେକ ନୃପତି
ଗୋଟିଏ ଦୁହିତା ତାର ନାମ ଚନ୍ଦ୍ରାବତୀ ।
ତେଣୁ ସମସ୍ତ ନୃପତି ଶୁଣିବା କଥାଏ
ଅନ୍ୟ ଆଡ଼କୁ ଯେ ମନ ନ ଦେବ ରାଜାଏ ।

ଯାହାକୁ ମନ ଇଚ୍ଛାରେ ବରିବ କୁମାରୀ
ମାଳା ଦେଇ ସେ ଯାହାର ନେବ ହସ୍ତ ଧରି ।
ତାହାର ସେ କନ୍ୟାଗୋଟି ହୋଇବ ଯୁକତେ
ଆନ କେହି ନ ଲଙ୍ଘିବ ସତ୍ୟ କଲି ମୋତେ ।
ବଳାତ୍କାରେ କେହି ପୁଣି ନ କରିବ ଗୋଳ
ଏହା ବିଚାରିଣ ମୋତେ କହ ମହୀପାଳ ।
ରାଜାଏ ବୋଇଲେ ସତ୍ୟ ସତ୍ୟ ତିନିବାର
ଯାହାକୁ ବରିବ ଜଣ ଦୁହିତା ତୁମ୍ଭର ।
ସେହି ତାହାର ନିଶ୍ଚୟ ହେବ ପ୍ରାଣନାଥ
କେହି ନ କରିବେ ତାହା ସଙ୍ଗରେ ଅନର୍ଥ ।
ଯେବଣ ରାଜା ବଳିବ ଏ କଥାକୁ ଲଙ୍ଘି
ସମସ୍ତ ରାଜାଙ୍କ ହାତେ ହେବ ପ୍ରାଣତ୍ୟାଗୀ
ଏଥା ଆମ୍ଭର ସତ୍ୟବ୍ରତ ଦୃଢ଼ବାଣୀ
ସଭାକୁ ଏବେ ଆଣ ହୋ ତୁମ୍ଭର ନନ୍ଦିନୀ ।
ରାଜାମାନଙ୍କୁ ନୃପତି ନିବର୍ତ୍ତି କରଇ
ସୁରେଖା ନାମରେ ମୁଦୁଲିକ ସେ ରାଇ ।
ଯାଅ ତୁ ଗୋ ମୁଦୁସୁଲି ଭିତର ପୁରକୁ
ବେଶ କରାଇ ଆଣିବୁ କନ୍ୟା ଏ ସଭାକୁ ।
ରାଜାର ବଚନେ ଚଳିଗଲେ ମୁଦୁସୁଲି
କନ୍ୟା ସୁବେଶ କରାଇ ଆଣି ତହିଁ ମେଲି ।
ବିଶେଷ ସୁନ୍ଦରୀ ସେହି ପୁଣି ଗୁଣବତୀ
ଅଳକ ବିରାଜେ ରତ୍ନ ହାନ୍ଦୋଳାରେ ଜ୍ୟୋତି
ବହୁତ ଯେ ପାଟଛନ୍ଦ ଉଧାଡ଼ ବସନ
ବାଜଇ ଦୁନ୍ଦୁଭି ଢଙ୍କ ଭେରୀ ବାଦ୍ୟମାନ ।
ଚାରିପାଖରେ ମଣ୍ଡଣି ସହସ୍ର ଚାମର
ଶ୍ୟାମଳ ମେଘରେ ଯେହ୍ନେ ବିଜୁଳିର ଧାର ।
ତ୍ରୈଲୋକ୍ୟ ମୋହିଲା ସେହି ଶରଚନ୍ଦ୍ରମୁଖୀ
ରାଜାମାନେ ବଶ ହେଲେ ତାର ମୁଖ ଚାହିଁ ।
ବିଚାରନ୍ତି ରାଜେ ଧନ୍ୟ ଧନ୍ୟ ତୁରେ ବାଳି
କାମଦେବ ଏ କନ୍ୟାକୁ ବରପଣେ ମିଳି ।
ପ୍ରତ୍ୟକ୍ଷେ ରତି ଏ କାମଦେବଙ୍କର ନାରୀ
ଅମର ସାଧବୀ ଏହୁ ମର୍ତ୍ତ୍ୟେ ଅବତରି ।
ରମ୍ଭା ଉର୍ବଶୀ ମେନକା କିବା ଏ ମୋହିନୀ
ଏହାକୁ କିବା ଉପେକ୍ଷା କଲେ ସପ୍ତଯୋନି ।
ନ ପାଇ ପାଇଲି କେହି ନ ଦେଖି ଦେଖିଲି
ସ୍ତ୍ରୀଶ୍ରୀ ପୁରୁଷଙ୍କ ପୁଣ୍ୟ ଏମନ୍ତ ରଚିଲି ।

ମୋହ ବଶ ହୋଇଣ ସେ ସମସ୍ତେ ନିମଗ୍ନ
ଏମନ୍ତ ରାଜାଏ ମନେ ବିଚାରିଲେ ହେଜ ।
ପୁଣି ପ୍ରଶଂସି ବୋଲନ୍ତି ତହିଁ ସର୍ବ ରାଜା
ଧନ୍ୟ ଧନ୍ୟ ନୃପତି ଏ ତୋହର ତନୁଜା ।
ଚନ୍ଦ୍ରାବତୀ ମୁଖ ଦେଖି ସବୁ କଲେ ତେଜ୍ୟା
ଏଡ଼େବଡ଼ ସଭାରେ ତ ପାଇବ ନା ଲଜ୍ଜା ।
ଏତେକ ବୋଲି ରାଜାଏ ହେଲେ ମୌନବ୍ରତ
ସମସ୍ୟା ଦେବାକୁ କେହି ନୋହିଲେ ସମର୍ଥ
ଏମନ୍ତ ଦେଖିଣ ସେହି ମାନଚକ୍ରବର୍ତ୍ତୀ
ମୃଦୁସ୍ମୂଳୀକ ସ୍ତୁହିଁଣ କହିଲ ତଡ଼ତି ।
ଚନ୍ଦ୍ରାବତୀକ ଏଠାରୁ ନିଅ ମେଡ଼କତି
କାଲି ପ୍ରଭାତେ ହୋଇବ ସ୍ୱୟମ୍ବର ଯୁକ୍ତି ।
ଏମନ୍ତ ଶୁଣି କନ୍ୟାକୁ ବାହୁଡ଼ାଇନେଲେ
ନିଜ ମନ୍ଦିରେ ଯାଇଣ ସମସ୍ତେ ରହିଲେ ।
ବେଶ ବସନ ଓହ୍ଲାଇ ବିମାନରେ ବସି
ଭୋଜନ ମାଜଣା ଶେଷକରି ଶୁଭ୍ରକେଶୀ ।
ଏମନ୍ତେ ସେହି ସଭାରେ ଅଛନ୍ତି ସମସ୍ତେ
ବ୍ରହ୍ମାନନ୍ଦନ ନାରଦ ମିଳିଲେ ତୁରିତେ ।
ହସ୍ତରେ କଳହ ମୁଣି ବୀଣାଦଣ୍ଡ ଘେନି
କାଖରେ କଳି ଧୋକଡ଼ ଯାକଛନ୍ତି ପୁଣି ।
କଳିକାଳ ଉପଗତ କରାନ୍ତି ସେ ମୁନି
ଲଗୁ ଲାଗୁ ବୋଲି ନୃତ୍ୟ କରନ୍ତି ସେ ଜ୍ଞାନି
ଭାରିଯା ନାମ ଢେଙ୍କୁରୀ ପୁନହିଁ ଗୁଣ୍ଡିଆ
ଦୁହିତା ନାମ ଜଞ୍ଜାଳୀ ଆପଣେ କଳହା ।
ଏତେକ କଳିକ ମୁନି ସବୁ ରୁଣ୍ଡ କରି
ବିଜେକଲେ ଯାଇ ସେହି ହସ୍ତିନା ନଗରୀ ।
ନାରଦ ମୁନିଙ୍କୁ ଦେଖି ଉଠି ସବୁ ରାଜା
ବିନୟେ ଚରଣେ ଧରି କଲେ ଦିବ୍ୟ ପୂଜା ।
ଅନେକ ସାନନ୍ଦ ତହିଁ ହୋଇଲେ ନୃପତି
ପାପ କ୍ଷୟଗଲା ଫିଟିଗଲା ମନୋଭ୍ରାନ୍ତି ।
ଆସିବାର ଫଳ ଜାଣ ଅଟଇ ଏତେକ
ଦ୍ୱିତୀୟ ବ୍ରହ୍ମା ରୂପକୁ ନୟନରେ ଦେଖି ।
ଅନେକ ମେ ପୂଜାବିଧି କଲି କୁରୁସାଇଁ
କନକ ପିଢ଼ାରେ ତାଙ୍କୁ ବସାଇଲ ନେଇ ।
ଆଜ ମୁଁ ନେତ୍ରେ ଦେଖିଲି ଯୁଗାନ୍ତକ ଯୋଗୀ
କଳିକାଳ ବିଚାରଣେ ସେ ଅଭୟ ତେଜୀ ।

କଳିର ଧର୍ମରେ ସେହି କଳି କୁତୂହଳେ
କଲ୍ୟାଣ କରନ୍ତି ମୁନି ନୃପତି ମଣ୍ଡଳେ ।
ଶ୍ରୀ ନାରଦ ଋଷିଙ୍କର ଚରଣେ ଶରଣ
ଜନ୍ମେ ଜନ୍ମେ ଶ୍ରୀଶାରଳା ଦାସ ମୁହିଁ ଜାଣ
ରାଜାକୁ ଚାହିଁ ବଦନ୍ତି ସେହି ବ୍ରହ୍ମଋଷି
ଆମ୍ଭ କଲ୍ୟାଣେ ତୁ ବହୁକାଳ ଥାଅ ବସି ।
ଦୁର୍ଯ୍ୟୋଧନ ବୋଲେ ମୁନି ରହ ମୋର ପୁରୀ
ସ୍ୱୟମ୍ବର ମଣ୍ଡଳରେ ବିଜେ ଦଣ୍ଡଧାରୀ ।
ଏମନ୍ତବେଳେ ପାଣ୍ଡବ ପାଞ୍ଚଭାଇ ମିଳି
ନାରଦଙ୍କ ଚରଣରେ ହେଲେ ନିଉଛାଳି ।
ଯୁଧିଷ୍ଠିର ବୋଇଲେ ମୁନି ଦୁହିତା ନିମନ୍ତେ
ସ୍ୱୟମ୍ବର କଲା ରାଜା କୁରୁନାଥ ଏଥେ ।
ତୁମ୍ଭ ବିଚାରକୁ ଏହା ଯୋଗାଇ କି ମୁନି
ସ୍ୱୟମ୍ବର କଥାକୁ ମୋ ମନହିଁ ନ ଘେନି ।
ନାରଦ ବୋଇଲେ ମନ୍ଦ କଲା ହୋ ଯୁଧିଷ୍ଠିର
ଦୂଷିତା ହେଲା ପରାୟେ ଲାଗୁଛି ଏହିଟି ।
ଦ୍ୱାରକାପୁରେ ଅନେକ ବର ରହିଅଛି
ତହୁଁ ଗୋଟିଏ ଏ ରାଜା ନ ଆଣିଲା ବାଛି ।
ରାମକୃଷ୍ଣଙ୍କୁ କପାଇଁ କଥା ନ କହିଲା
କାହାର ବିଚାରେ ଏହୁ ସ୍ୱୟମ୍ବର କଲା ।
ହସ୍ତରେ ଘେନି ଅଛଇ ପାଦାର୍ଘ୍ୟ ଗୋଟାଏ
କୃଷ୍ଣ ନାହିଁ ଅର୍ଘ୍ୟ ଦେବ ପୁଣି କାହା ପାଏ ।
ରାମ କୃଷ୍ଣ ପୁଣି ଯେଉଁ ସଭରେ ନ ଥିବେ
ଅର୍ଘ୍ୟହିଁ ଘେନନ୍ତି ନାହିଁ ବ୍ରହ୍ମା ରୁଦ୍ରଦେବେ
ଯୁଧିଷ୍ଠିର ବୋଇଲେ ତୁମ୍ଭେ ଶୁଣ ବ୍ରହ୍ମସୁତ
ଏହା ଶୁଣିଲେଟି କୋପ କରିବ ନୃପତି ।
ଏକାନ୍ତରେ ଯୁଧିଷ୍ଠିରଙ୍କୁ ନାରଦ କହିଲେ
କନ୍ୟାକୁ ଆବୋରି ରଖିଥିବ ତୁମ୍ଭେ ଭଲେ
ଆଜ ଏ କନ୍ୟା ଯେମନ୍ତେ କାହାକୁ ନ ବରି
ରାତ୍ରିକ ଭିତରେ ବର ଆଣିବି ମୁଁ ଧରି ।
ସବୁରି ଦର୍ପ ଧ୍ୱଂସିବ ପାଇବେଟି ଲାଜ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ଯେତେ ମହାରାଜ ।
ଏତେ କହି ମୁନି ଚଳିଗଲେ ଅନ୍ତର୍ଦ୍ଧାନେ
ସାନନ୍ଦ ହୋଇଣ ପୁଣି ବିଚାରନ୍ତି ମନେ ।
ବଡ଼ ରହସ୍ୟ କଥା ଏ ହେବ କୁତୂହଳ
କନ୍ୟାର ମନ କେମନ୍ତେ ବୁଝିବା ପ୍ରବଳ ।

ଏତେକ ବିଚାରି ମନେ ଚଳିଲେ ତୁରିତେ
ଚନ୍ଦ୍ରାବତୀର ମନ୍ଦିରେ ପ୍ରବେଶିଲେ ଗଣେ ।
ଦେଖିଲେ ସେ ଚନ୍ଦ୍ରାବତୀ ବସିଅଛି ତହିଁ
ପରିବାରି ମୃଦୁସୁଲ୍ଲୀ ବେଢ଼ିଛନ୍ତି ଯହିଁ ।
ନାରଦଙ୍କୁ ଦେଖି ବେଗେ ଉଠି ଚନ୍ଦ୍ରାବତୀ
ବିନୟ କରନ୍ତେ ମୁନି କଲ୍ୟାଣ କରନ୍ତି ।
ଅହିଅ ସୁଲକ୍ଷଣୀ ତୁ ହୁଅ ପୁତ୍ରବତୀ
ପତି ପୁତ୍ର ଧନ ହୁଅ ସଉଭାଗ୍ୟବତୀ ।
ପତିର ବଲ୍ଲଭୀ ହୋଇ ବଞ୍ଚ ପ୍ରତିଦିନ
ତୋହର ବଲ୍ଲଭ ହେଉ କୃଷ୍ଣଙ୍କ ନନ୍ଦନ ।
ବୋଇଲେକ ଏ ବଚନ ଶୁଣି ଚନ୍ଦ୍ରାବତୀ
ଏ କଲ୍ୟାଣ କେମନ୍ତେ ଯେ କଲ ମହାଯତି ।
ମୋହର ପିତା ଦେଖୁଛି ଦୁଷ୍ଟବୁଦ୍ଧି ଧରି
ରାଜାମାନଙ୍କୁ ଆଣିଛି ସ୍ୱୟମ୍ବରେ କରି ।
କେକଣ ବର ମୋହର ମନକୁ ନ ଘଟେ
ନିଶି ଦିବସ ମୁଁ ରହିଥାଇ ମହାକଷ୍ଟେ ।
ତୁମ୍ଭେ ମହାମୁନି ମୋତେ କହ ଦିବ୍ୟବାଣୀ
ମୋହର ମନ ଆନନ୍ଦ ତୁମ୍ଭ ବାକ୍ୟ ଶୁଣି ।
କୃଷ୍ଣର ନନ୍ଦନ ହେଉ ମୋର ପ୍ରାଣପତି
ତାହା ବିନେ ମୋର ମୁନି ନାହିଁ ଅନ୍ୟଗତି ।
ଅଟଇ ଜଗମୋହନ ନାଥର ନନ୍ଦନ
କେମନ୍ତେ ସୁନ୍ଦର ରୂପ ଦେଖୁ ମୋ ନୟନ ।
ଏହା ଶୁଣି ଯେ ନାରଦ ମୁନି ତପୋନିଷ୍ଠ
କକ୍ଷ ଧେ କଡ଼ ମୁଣିରୁ କାଢ଼ି ଚିତ୍ରପଟ ।
ଚନ୍ଦ୍ରାବତୀ ଆଗେ ନେଇ ଥୋଇଦେଲେ ମୁନି
ଦେଖି ସୁନ୍ଦରୀର ମନ ସେ ବରରେ ମାନି ।
ଏହାଟି କୃଷ୍ଣନନ୍ଦନ ବୀରବର ଶାମ୍ବ
ଏହା ସ୍ୱରୂପ ସାକ୍ଷାତେ ଅଟେ କାମଦେବ ।
ଏ ବର ଯେବେ ତୋହର ମନକୁ ଗଛଇ
ଏହିକ୍ଷଣି ଆଣି ତୋତେ ମୁଁ ଦେଇ ପାରଇ ।
ଦେଖି ଶାମ୍ବ ଚିତ୍ରପଟ ମୋହଗଲା ବାଳୀ
ନାରଦଙ୍କ ଶ୍ରୀଚରଣ ଧରି କହେ ଭାଳି ।
ଅଶ୍ରୁଜଳକୁ ସମ୍ଭରି କହେ ଗଦଗଦ
ଏହି ବର ମୋତେ ଆଣି ଦିଅ ହେ ନାରଦ
ମୋହର ପିତା ନ ଜାଣି ସ୍ୱୟମ୍ବର କଲା
ଲକ୍ଷେ ନୃପତି କାରଣ କରିଣ ଆଣିଲା ।

କାହାକୁ ମୋହର ମନ ନ ବଳଇ ମୁନି
ଚିତ୍ରପଟ ମୋ ମନକୁ ନେଲା ମୁନି କିଣି ।
ଏହି ବରଗୋଟି ଆଣିଦେବ ମୁନି ମୋତେ
ତୁମ୍ଭ ଚରଣେ ଭଜନ୍ତ ଥିବି ସଦା ଚିତ୍ତେ ।
ଅନ୍ତର୍ଦ୍ଧାନ ମୁନି ଗଲେ ଦ୍ୱାରକା ଭୁବନେ
ଚଢ଼ି ମୁନି ଦଣ୍ଡ ମନପବନ ଯେ ଯାନେ ।
ପ୍ରବେଶ ହୋଇଲେ ଯାଇ ଭୁବନ ଦ୍ୱାରକା
ଦେଖିଲେ ଶାମ୍ବକୁମର ବସିଅଛି ଏକା ।
ହୋଇଛନ୍ତି ସାତବଂଶ ତହିଁ ପଟୁଆରି
ଏକାନ୍ତେ ଶାମ୍ବକୁ ମୁନି କହିଲେ ହକାରି ।
ଜାମ୍ବବତୀର ନନ୍ଦନ ପ୍ରତ୍ୟକ୍ଷେ ମୋହନ
କାମଦେବ ପ୍ରାୟ ତାର ଦିଶଇ ବଦନ ।
କୃଷ୍ଣ ସାଦୃଶ୍ୟ ବିକ୍ରମ ବୀର୍ଯ୍ୟ କୃଷ୍ଣପ୍ରାୟ
ବଳରାମଙ୍କ ସାଦୃଶ୍ୟ ଅଟେ ତେଜୋମୟ ।
ପିତାମହଙ୍କ ସାଦୃଶ୍ୟ ଅଟେ ତାର ବୁଦ୍ଧି
ମହିମା ମେରୁ ସାଦୃଶ୍ୟ କିବା ଜମ୍ବୁଦଧି ।
ପଣ୍ଡିତ ପଣେ ସେହି ବୃହସ୍ପତି ସମ
ବୀରପଣରେ ପ୍ରତ୍ୟକ୍ଷ ଦିଶି କାଳଯମ ।
ଚଉରାଶୀ ଗୁଣ ତାର ନିରୂପନ୍ତି ମୁନି
ବିଚାରନ୍ତି ସେ ନାରଦ ଯିବି ଏହା ଘେନି ।
ଏତେ ବିଚାରି ଉଠିଲେ ତହୁଁ ବ୍ରହ୍ମାସୁତ
ଶାମ୍ବ କୁମରଙ୍କୁ ଗୃହେଁ କହନ୍ତି ଗୁପତ ।
ନାରଦ ମୁନି ବୋଇଲେ ଶୁଣ ବାବୁ ଶାମ୍ବ
ତୋହର ନିମନ୍ତେ ସିନା ଆମ୍ଭର ଆରମ୍ଭ ।
ଆମ୍ଭଙ୍କୁ ବିଧାଇ ଦେବୁ ତୁହି ନରଶ୍ରେଷ୍ଠ
କନ୍ୟା ଏକ ଠାବ କଲୁ ପ୍ରଦ୍ୟୁମ୍ନ କନିଷ୍ଠ ।
ଅଭଯ୍ୟ ବାରସ୍ୱତୀ ଏ ଭୁବନ ଦ୍ୱାରକା
ଅନେକ ସ୍ତ୍ରୀ ଶ୍ରୀ ଅଛନ୍ତି କେ କରିବ ଲେଖା ।
ପ୍ରଭାବତୀ ହାରବତୀ ଭୁବନ ମୋହିନୀ
କାଳନ୍ଦୀ ମାହେନ୍ଦ୍ରୀ ଆଦି ଯେତେକ କାମିନୀ ।
ରୂପକୁ ଯେ ପଟାନ୍ତର ନାହିଁ ତିନିପୁରେ
ଏମନେ ତାହାକୁ ଲକ୍ଷ୍ୟ ନୋହିବେ ରୂପରେ
ସୋମବଂଶୀ ରାଜା ନାମ ମାନଚକ୍ରବର୍ତ୍ତୀ
ଅତି ମାନେ ସେହି ମାନଗୋବିନ୍ଦ ନୃପତି ।
ତାହାଙ୍କର ଦୁହିତା ଯେ ଚନ୍ଦ୍ରାବତୀ ବାଳୀ
ସେ ତୋହର ରୂପଗୁଣେ ସତି ହେବା ଭଳି ।

କୁହ ସୁରୂପରତ୍ନ ସେ ସ୍ତ୍ରୀରତ୍ନ ଏକା
ତିନି ଭୁବନର ମଧ୍ୟେ ପଟାନ୍ତର ଯୋଖା ।
ଯେତେ କନ୍ୟା ଏ ଦ୍ୱାରକାପୁରେ ରହିଛନ୍ତି
ତାହାର ରୂପକୁ କେହି ସମ ନ ଗଛନ୍ତି ।
ଅତହିଁ ସୁଯଶ ଦିଶୁଅଛଇ ମୃଗାକ୍ଷୀ
କେଉଁ ଦେବତା ତାହାକୁ ନିର୍ମାଣ କରିଛି ।
କୁଞ୍ଚିତ କେଶ ତହିଁରେ ମାଳାର ଖଞ୍ଜଣି
ଅତି ତୀକ୍ଷ୍ଣ ନୁହଇ ସେ ଅଟଇ ସୁଠାଣି ।
ରତ୍ନ ଖଞ୍ଜିଲ ପରାୟେ ଲଲାଟର ପାଟି
ତହିଁ ଉପରେ ରହିଛି ସିନ୍ଦୂର ଟୋପାଟି ।
ନୟନର ଭ୍ରୂଲତା କି କାମଦେବ ଧନୁ
ପୁରୁଷ ମାତ୍ର ଦେଖିଲେ ଧରିବ କି ତନୁ ।
ତହିଁକି ଯେ ତୀକ୍ଷ୍ଣ ଶର ନୟନର ବାଣ
ତଡ଼ିତ ସୁନାକୁ ଜିଣି ଦିଶଇ ରସାଣ ।
ଯେନକ ଅଶକ ତ ଗୃପଇ ସେ ଦୃଷ୍ଟି
ଲୌହ ପାଷାଣ ହୋଇଲେ ଯିବ ସେହୁ ଫାଟି
ଅବଲୋକନେ ତାହାର ଅଳପ ଗୃହାଣି
ଥିବହେଲେ ସଂସାରକୁ ପାରଇ ସେ ଜିଣି ।
ଏକା କଥା ଏ ମାନିକ କଲା ପ୍ରଜାପତି
ମାରେ ତାରେ ସେ ଅମୂଲ୍ୟ ରୂପରତ୍ନ କାନ୍ତି ।
ନାସାକୁ ତା ପଟାନ୍ତର ତିଳପୁଷ୍ପପ୍ରଭା
ନୀଳ ଉତ୍ପଳକୁ ଜିଣି ଦିଶେ ମୁଖ ଶୋଭା ।
ଅଳପ ଅପାଙ୍ଗେ ଯେବେ କରଇ ସେ ଦୃଷ୍ଟି
ଦେଖିଲେ ମଦନ ଶରେ ଧୈର୍ଯ୍ୟ ଯାଏ ତୁଟି ।
ମଧ୍ୟଭାଗ ଅଟଇ ତା ଅତହିଁ ସଂକୀର୍ଣ୍ଣ
ପଟାନ୍ତର କରି ମତ୍ତଗଜ ଗୃଲ ପୁଣ ।
ଘନ ପବନ ବହିଲେ ନ ପଡ଼େ ସେ ଭଙ୍ଗ
ପୁଣ କେତେବେଳେ ତାକୁ ପାଇବାକ ଚଞ୍ଚି
ଗୃଲନ୍ତେ ସୁନ୍ଦରୀ ତାର ତଳେ ପାଦଗତି
ସଂସାର ଜନେ ରହିବେ ଦେଖିଣ ତା ମୂର୍ତ୍ତି ।
ଜଳେ ଯେସନେ କ୍ରୀଡ଼ନ୍ତି ରାଜହଂସ ପନ୍ତି
ତେସନେକ ଶୋଭାବନ ଗୃଲିବାର ଗତି ।
ଅଳକ୍ତା ବନ୍ଧନେ ଶୋଭା ତା ପାଦ ଅଙ୍ଗୁଷ୍ଠି
ଦେଖିବା ଜନମାନେଟି ଅଧୈର୍ଯ୍ୟ ହେବେଟି ।
ନାରଦ ବୋଇଲେ ବାବୁ ଶୁଣ ଶାମ୍ବବୀର
ଚନ୍ଦ୍ରାବତୀ ନାମ ଜାଣ ଅଟଇ ତାହାର ।

ପିତା ଦୁର୍ଯ୍ୟୋଧନ ତାର ମାତା ଭାନୁମତୀ
ମାତୁଳ ଅଂଶ ତାହାର ଭୂମନ୍ୟୁ ନୃପତି ।
ପିତା ମାନଂଗୋବିନ୍ଦ ଯେ ସୋମବଂଶ ବହ୍ନି
ବାଛିବାକୁ କୁଳଗୋତ୍ର ନାହିଁ ତାର କିଛି ।
ଏବେ ତୃତୀୟ ପ୍ରହର ଦିନକର ଜ୍ୟୋତି
ନିଶା ଅର୍ଦ୍ଧ ମାନେ ତୁହି ଭେଟିବୁ ଯୁବତୀ ।
ଶୁଣିଣ ସାନନ୍ଦ ଜାମ୍ବବତୀଙ୍କ ନନ୍ଦନ
କନ୍ଦର୍ପର ସମାନ ତାର ଦିଶେ ରୂପବର୍ଣ୍ଣ ।
ପୁଷ୍ପକ ଆରୋହି ତହୁଁ ଚଳଇ କୁମର
ନାରଦ ମୁନି ଅଛନ୍ତି ସଙ୍ଗରେ ତାହାର ।
ଯମୁନା କୂଳେ ପର୍ବତ ପାଏ ଅତି ଶୋଭା
ଦିଶଇ ସେ ପର୍ବତକୁ ହସ୍ତିନାର ସଭା ।
ଦିହୁଡ଼ି ତେଜେ ହୋଇଛି ଯେ ଆଲୋକମୟ
ରାତି ଦିଶୁଅଛି ତହିଁ ଦିବସ ପରାୟ ।
ଶାମ୍ବ ପଚାରଇ ମୁନି କେମନ୍ତେ ଏ ସଭା
କେଉଁବାଟେ ଯାଇ ଆମ୍ଭେ ତହିଁରେ ପଶିବା
ଆଗରେ ନାରଦ ମୁନି ପଛରେ କୁମର
ପ୍ରବେଶ ହୋଇଲେ ଯାଇ ମେଡ଼ ପାରୁଶର ।
ନାରଦ ବୋଇଲେ ବାବୁ ଏଥେଁ ଥାଅ ବସି
କନ୍ୟା ତୁଲେ ଆମ୍ଭେ ଆସୁ ବଚନ ସମ୍ଭାଷି ।
ଏତେ ବୋଲି ମୁନି ତହୁଁ ଅନ୍ତରୀକ୍ଷେ ଗଲେ
କନ୍ୟାର ନିକଟେ ଯାଇ ପ୍ରବେଶ ହୋଇଲେ
ମୃଦୁସୁଲ୍ଲୀଏ କହନ୍ତି ଶୁଣ ତୁଗୋ ମାଏ
ତୋହର ଅର୍ଥେ ଅଇଲେ ଏଥେ ସର୍ବରାୟେ ।
ରାଜା ମାନଙ୍କର ତୁ ଗୋ ଦେଖି ବର୍ଣ୍ଣଚିହ୍ନ
ତୋହର ସଦୃଶ ବର କର ଗୋ ବରଣ ।
ଚନ୍ଦ୍ରାବତୀ ବୋଇଲେ ଗୋ ଶୁଣ ମୃଦୁସୁଲ୍ଲି
ରାଜାମାନଙ୍କର ବର୍ଣ୍ଣ ଚିହ୍ନହିଁ ଦେଖିଲି ।
ଯେତେ ସମାରୋହେ ଆସିଛନ୍ତି ନୃପବର
କାହାର ଠାବରେ ମନ ନ ବଳେ ମୋହର ।
କଉଣସି ରୂପେ ମୋର ନ ବଳଇ ମତି
ଏହି ସ୍ୱୟମ୍ବର ମଧ୍ୟେ ନାହିଁ ମୋର ପତି ।
କେମନ୍ତେ କରିଅଛଇ ଅଭୟା ହିଙ୍ଗୁଳା
ପ୍ରାଣର ବିକଳ ସିନା ଜାଣେ ମଙ୍ଗଳା ।
ଜୟ ତୁ ମଙ୍ଗଳା ମାଗୋ ଝଙ୍କଡ଼ବାସିନୀ
ଜଗତଜନ ମୋହିନୀ ଜଗତ ଜନନୀ ।

ସେ ଦେବୀ ଆଜ୍ଞାରେ ଫିଂଟ କାଳଦଣ୍ଡ ପାଶ
କଳିକଳୁଷ ତାରିଣୀ ଝଙ୍କଡ଼େ ଯେତା ବାସ ।
ସେହି ସିଦ୍ଧଶାରଳାର ଚରଣେ ମୁଁ ଦାସ
ଜନ୍ମେ ଜନ୍ମେ ତୋର ନାମ କରଇ ଅଭ୍ୟାସ
ହେ ପ୍ରାଣୀମାନେ ବିଶ୍ୱର କର ତୁମ୍ଭେ ମନ
ଏ କଳି କାଳରୁ ତର ଶାରଳା ପ୍ରସନ୍ନେ ।
ଶ୍ରୀହସ୍ତରେ ଅର୍ଘ୍ୟ ଦେଇ ବାଳୀ ଚନ୍ଦ୍ରାବତୀ
କରଇ ସେ ବନ୍ଦାପନା ସୁଖ କାଳ ରାତି ।
ସେ ଦେବୀ ସର୍ବମଙ୍ଗଳା ଚରଣେ ମୋ ସେବା
ଆପଦଖଣ୍ଡିନୀ ମୋତେ ସ୍ୱାମୀସେବା ଦେବା
ଆପଣେ ଦେବୀ ଗୋ ଆସି ପରମ ସାନନ୍ଦେ
ତ୍ରୈଲୋକ୍ୟତାରଣୀ ଖଣ୍ଡ ନ ପଡ଼େ ଆପଦେ
ଦର୍ଶନ ନିଷ୍ଫଳ ତୋର ନୁହେ ସର୍ବକାଳେ
ପର ଦୁଃଖତାରଣୀ ଗୋ ଶ୍ରୀସର୍ବମଙ୍ଗଳେ ।
ହୃଦୟ ସାନନ୍ଦେ ତାର ବଧ୍ୱିଂତ ମନ
ସୁମରନ୍ତେ ସ୍ଫୁରୁଅଛି ତା ବାମନୟନ ।
ସୁଲଭ ଶକୁନ ଯହୁଁ ଦେଖିଲେକ ବାଳୀ
ବାମ ପାଖରେ ଛିଙ୍କିଲ ଏକ ମୁଦୁସୁଲି ।
ସୁଲଭ ଦେଖି ଆପଦ ତାର ପଞ୍ଚମନ
ଏହି ସମୟେ ବିଜୟ କଲେ ତପୋଧନ ।
ପୂଜାସ୍ଥାନୁ ଉଠି ବାଳୀ ନାରଦଙ୍କୁ ଦେଖି
ଶତ ଦଣ୍ଡ ପ୍ରଣିପାତ କଲା ଶଶୀମୁଖୀ ।
ନାରଦ ବୋଇଲେ ମନୋବାଞ୍ଛା ସିଦ୍ଧ ହେଉ
ଅଇସୁଲକ୍ଷଣୀ ହୁଅ ତୋର ଦୁଃଖ ଯାଉ ।
ନାରଦ ବୋଇଲେ ମାଗୋ ତୋହର ନିମନ୍ତ
ବହୁତ ଠାବେ ବୁଲିଲୁ ଭାବ ହୃଦଗତେ ।
ତହୁଁ ବିଷ୍ଣୁର ଭବନେ ଦ୍ୱାରକାକୁ ଗଲୁ
ପୁରେ ପୁରେ ପଶି ତହିଁ ବର ଅନ୍ୱେଷିଲୁ ।
ରାମ ଅବତାରେ ଥିଲେ ଜାମ୍ବବ ସେ ମନ୍ତ୍ରୀ
ତାହାଙ୍କ ଦୁହିତା ନାମ ଅଟେ ଜାମ୍ବବତୀ ।
ସେ କନ୍ୟା ପୁତ୍ର ପ୍ରତ୍ୟକ୍ଷେ ଅଟେ ଦ୍ୱିତୀକାମ
ତ୍ରୈଲୋକ୍ୟ ମୋହନ ସେ ଶାମ୍ବ ତାର ନାମ ।
ତୋହର ରୂପ ଗୁଣକୁ କହିଲ ମଣାଇଁ
ତେଣୁ ସନମତ କରି ଅଇଲିକ ସେହି ।
ଆସ ଆସ ଶାମ୍ବ ବୋଲି ଡାକିଲେ ସେ ମୁନି
ବନ୍ଦନ କଲେ ସେ କୁମର ବୀର ଚୂଡ଼ାମଣି ।

ଶରୀର ସେ ନିଷ୍କଳଙ୍କ ଅଗ୍ନି ତେଜୋମୟ
ଏକ ବଦନ କି ଶତ ଚନ୍ଦ୍ରମା ଉଦୟ ।
ନିଜ ପାଶେ ବାଳୀ ଯହୁଁ ଦେଖିଲା ପୁରୁଷ
କାମମୋହନେ ସେ ବାଳୀ ହୋଇଲା ହରଷ
ମୁଁ ଆଜ ଏ ପୁରୁଷକୁ ଲଭିବି କେମନ୍ତେ
ଏ ପୁଣ ଉପେକ୍ଷା କରି ଚଳିଯାନ୍ତି ମୋତେ ।
ଏତେକ ବିଚାର ସେହୁ ହୋଇଲେକ ତୁନି
ଦରହସିତ ବଦନେ କହିଲେକ ମୁନି ।
ଗୋବିନ୍ଦ ପୁତ୍ର ମଧ୍ୟେ ଏ ଅଟେ ମୋକ୍ଷଜ୍ଞାନ
ହୃଦୟେ ଭାବ ଏହାର ଭକ୍ତି ତୁହି ଦେନ ।
ତୋହର ମନକୁ ଯେବେ ଯୋଗାଏ ଏ ବର
ମାଳ ଦେଇଣ ବରଣ ବେଗେ ତୁହି କର ।
ନାରଦ ବଚନେ ମାନଗୋବିନ୍ଦ ଦୁଲାଳୀ
ଶାମ୍ବ କଣ୍ଠେ ଲମ୍ବାଇଲା ନେଇ ରତ୍ନମାଳୀ ।
ନାରଦ ବୋଇଲେ ତୁହି ନିଶ୍ଚିନ୍ତେ ରହସି
ଏଥୁ ତୋତେ ଘେନିଯିବେ ଗୋବିନ୍ଦ ସେ ଆସି
ଦେଖି ଧଇଲା କୁମରମଣି ତାକୁ କୋଳେ
ମେଡ଼ ଭିତରେ ପଶିଲା ଯାଇଁ ନିଶାକାଳେ ।
କୁମାର କୁମାରୀ ତହୁଁ ହେଲେ ଏକଯୋଗ
ହେଲା ପୀରତି ଆବର ବଢ଼େ ଭାବରଙ୍ଗ !
ସ୍ୱାମୀ ଏ ପାଇଲା ବାଳୀ ମନର ହିଆଳ
ବାଞ୍ଛା ପୂର୍ଣ୍ଣ କଲା ମାନଗୋବିନ୍ଦର ବାଳୀ ।
ଜାମ୍ବବତୀର ନନ୍ଦନ ରତିଶାସ୍ତ୍ରେ ଜ୍ଞାତା
କ୍ରୀଡ଼ା କୁତୂହଳେ ରତ ହୋଇଲା ବନିତା ।
କାମେ ଅସାଷ୍ଟମ ହେଲା ଚନ୍ଦ୍ରାବତୀ ବାଳୀ
କଉତୁକେ କ୍ରୀଡ଼ା କଲେ କୁମାର କୁମାରୀ ।
ଚନ୍ଦ୍ରାବତୀ ବୋଇଲେ ତୁ ମୋର ପ୍ରାଣନାଥ
ତୋର ବ୍ୟତିରେକେ ମୋର ଆନ ନାହିଁ ଗତି
ପିତା ଜନନୀ ପଛକେ ପ ଆନ୍ତୁ ସେ ଲଜ
ବିଳମ୍ବ ନ କର ନାଥ ବେଗେ ଯିବା ଆଜ ।
ତିମିର ତୁଟିଲା ଦେଖ ବାଜିଲାଣି ଶଙ୍ଖ
ଉଦେ ଦିନକର ତାମ୍ରଚୂଡ଼ ଦେଲେ ଡାକ
ରଜନୀ ପାହିଲା ନାଥ ହେବ ବଡ଼ ବିଘ୍ନ
ସଭାରେ ଅଛନ୍ତି ପୁଣି ଲକ୍ଷେକ ନରେନ୍ଦ୍ର ।
କେତେଦୂର ଏ ଠାବକୁ ଅଛି ତୁମ୍ଭ ପୁର
ବେଗେ ଯିବା ବିମାନରେ ବସି ପ୍ରାଣେଶ୍ୱର ।

ଶାମ୍ବ ବୋଇଲା ଗୋ ପ୍ରିୟେ ନ କହ ଏ ବାଣୀ
ଶରୀର କମ୍ପାଇ ମୋର ତୋର କଥା ଶୁଣି ।
ଚଉର୍ଯ୍ୟପଣେ କି ତୋତେ ନଆଇ ସୁନ୍ଦରୀ
ଚିତ୍ତର ବୃତ୍ତି କଦାପି ନୁହଇ ଆମ୍ଭର ।
ଚଉର୍ଯ୍ୟପଣେ ଯଦ୍ୟପି ନେବା ଶୁଭ୍ରକେଶୀ
ଦ୍ୱାରକା ଭୁବନେ ଲାଜେ ନ ପାରିବା ପଶି ।
ବଳେ ଧରି ଯେବେ କନ୍ୟାରତ୍ନ ଆମ୍ଭେ ନେବୁ
ତେବେ କୃଷ୍ଣର ତନୁଜ ସିନା ବୋଲାଇବୁ ।
ଏମନ୍ତ ସେ ବିଚାରନ୍ତେ ପାହିଲାକ ରାତି
ଦେବାଳୟେ ଶଙ୍ଖ ଶବ୍ଦ ଶୁଭେ ଚଉକତି ।
ବିଜେକଲା ମର୍ତ୍ତ୍ୟପୁରେ ଦିନକର ଜ୍ୟୋତି
ନିଦ୍ରାରୁ ଉଠିଲେ ସେନାପତି ନରପତି ।
ଯମୁନା ନଦୀରେ ସ୍ନାନ କରନ୍ତି ସେ ରାୟେ
ନିତ୍ୟକର୍ମ ସାରି ଯାଇ ଆସ୍ଥାନେ ବିଜୟେ ।
ପରିବାରୀଙ୍କୁ ସେ ଆଜ୍ଞାଦେଲେ ଦଣ୍ଡଧାରୀ
ସଭାକୁ ଘେନିଆସ ଗୋ ମୋହର କୁମାରୀ ।
ଆଜ୍ଞା ପ୍ରମାଣେ ଚଳିଲେ ତହୁଁ ମୁଦୁସୁଲ୍ଲୀ
ମେଢ଼ର ଭିତରେ ଯାଇ ପ୍ରବେଶ ପୋଇଲା ।
ଶାମ୍ବକୁମର ଅଛଇ ଦିବ୍ୟବେଶ ଧରି
ମେଢ଼ ଭିତରକୁ ଯାଇ ଦେଖିଲେ ଚତୁରୀ ।
ପରିବାରୀଏ କହିଲେ ବିନୟ ଯୁକତେ
ସଭାକୁ ବିଜୟ କର ସ୍ୱୟମ୍ବର ଅର୍ଥେ ।
ମିଳିଛନ୍ତି ରାଜାମାନେ ଏ ତୋହର ଆଶେ
ଲକ୍ଷେ ଭ୍ରମର ଭ୍ରମନ୍ତି ଏକ ପଦ୍ମବାସେ ।
ଏମନ୍ତ ଦାସୀ କହନ୍ତି ପୁଣ ପୁଣ ବାଣୀ
ରାଜାମାନେ ଗୃହିଁଛନ୍ତି ତୋତେ ଠାକୁରାଣୀ
ତୋହର ନ ଗଲେ ମାଗୋ ସ୍ୱୟମ୍ବର କାହିଁ
ରାଜା ଆଜ୍ଞାଦେଲେ ବିଜେକର ଚନ୍ଦ୍ରମୁହିଁ ।
ଲକ୍ଷେକ ନୃପତି ତୋତେ କରିଛନ୍ତି ଆଶ
ତୁମ୍ଭେ ତାଙ୍କ ପ୍ରିୟବଶୀ ହେବ ବେଶେ ଆସ
ହୋଇ ଅଛନ୍ତି ସମସ୍ତେ ସୁବେଶ ଭୂଷଣ
ବେଦୀରେ ବସିଅଛନ୍ତି ସମସ୍ତ ରାଜନ ।
ଅନେକ ପାଟଛନ୍ଦ ଯେ ଆବର ଚାମର
ଲକ୍ଷେ ବନିତା ଚାମର ଢାଳନ୍ତି ଆଗର ।
ରାଜାଙ୍କୁ ବରିଅଛଇ ସେ ମାନଗୋବିନ୍ଦ
ଏସନବେଳେ ସଭାରେ ମିଳିଲେ ନାରଦ ।

ନାରଦ କହିଲେ ଆହେ ମାନଚକ୍ରବର୍ତ୍ତୀ
ଏତେଡ଼େ ସଭା ତୋର ବ୍ୟର୍ଥ ହୋଇଲା ସଂପ୍ରତି
ରକ୍ଷାକରି ନ ପାରିଲୁ ତୋହର ଦୁହିତା
ପରପୁରୁଷର ସଙ୍ଗେ ହେଲାଣି ଦୂଷିତା ।
ଏମନ୍ତବଚନ ଯହୁଁ କହିଲେ ନାରଦ
ଶୁଣିଣ ବିରସମନା ସେ ମାନଗୋବିନ୍ଦ ।
ଦୁର୍ଲ୍ଲଭ କଥା କହିଲ ଆହେ ମହାମୁନି
ପଶିବାକୁ ସ୍ୱଜନ କେ ନରଦେହ ଘେନି ।
ବଳବନ୍ତପଣେ କେହୁ ପଶିବ ମୋ ପୁରେ
କାଳସର୍ପ ଭୁଲେ କେହୁ ଖଣ୍ଡି ଆଳ କରେ ।
ମୁଦୁସୁଲ୍ଲୀ ରାଇ ଆଜ୍ଞାଦେଲେ ନରପତି
ମେଢ଼ରେ ପଶି ବୁଝ ଲୋ ଏ କେମନ୍ତ ରୀତି
ମେଧାନାମେ ମୁଦୁସୁଲ୍ଲୀ ପଶିଲା ଭିତରେ
ଚନ୍ଦ୍ରାବତୀ ନରୋଧିଲା ଆସି ତାକୁ ଦ୍ୱାରେ ।
ମେଧା ମୁଦୁସୁଲ୍ଲୀ ଠେଲି ପଶଇ ଚତୁରୀ
ଦେଖିଲା କୁମର ଏକ ଶସ୍ତ୍ର ଅଛି ଧରି ।
ନିର୍ଧୂମ ଅନଳ ଜଣି ବିରାଜେ ତା ତେଜ
କରେ ଧନୁ ଅଛି ପୁଣି ବିଷମ ନାରାଚ ।
ବିକ୍ରମ ସିଂହର ପ୍ରାୟେ ଦିଶେ ତାର ଜ୍ୟୋତି
ଚନ୍ଦ୍ରରୁ ଉଜ୍ଜ୍ୱଳ ଦିଶୁଅଛି ମୁଖକାନ୍ତି ।
ନାରୀଗଣ ଦେଖି ତାକୁ ହୋଇଲେ ଚାଟକା
ଯମପୁରେ ଏକ ପଣେ ମନେ ନାହିଁ ଶଙ୍କା ।
କାହୁଁ ଅଇଲୁ ତୁ ବାବୁ କାହିଁ ତୋର ଦେଶ
କେ ତୋହର ପିତା ମାତା କେଉଁ ପୁରେ ବାସ
କି କାରଣେ ପଶିଲୁ ତୁ ଏଥେ ନ ବିଚାରି
ଯମ ଭୁବନେ ପଶିଲୁ କେଉଁନ ଶସ୍ତ୍ର ଧରି ।
ଦେଖ ଏ ମାନଗୋବିନ୍ଦ ରାଜା ମହାକ୍ଷତ୍ରୀ
ଦୁଃଶାସନ ଭାଇ ତାର ଶକୁନି ଯେ ମନ୍ତ୍ରୀ ।
ସମୁଦ୍ର ଲଙ୍ଘିଲେ ପୃଥ୍ୱୀ ରହିବ ବା କାହିଁ
ଶାମ୍ବକୁମର ଆଗରେ ମୁଦୁସୁଲ୍ଲୀ କହି ।
କୁମର ବୋଇଲା ଆଗୋ ଶୁଣ ମୁଦୁସୁଲ୍ଲୀ
ଚନ୍ଦ୍ରାବତୀ ହସ୍ତିନାର ନାଶିନୀ ଜାଣିଲି ।
ଏହାଯୋଗୁ ଆଜ ନାଶଯିବେ କଉରବେ
ସମସ୍ତ ରାଜା ମରିବେ ଏହାର ଅଭାବେ ।
ମୁଦୁସୁଲ୍ଲୀ ବୋଇଲା ତୁ ବଡ଼ଲୋକ ବଳା
ସୁନ୍ଦରୀ ଯୋଗୁଁ ନ ମର ତୁ ବେଗେ ଏଥୁ ପଳା ।

ସୁକୁମାର ସୁନ୍ଦର ତୁ ବଳେ ବଳବନ୍ତା
ତୋର ନାଶଗଲେ ଦୁଃଖୀ ହେବେ ପିତାମାତା ।
ଶାମ୍ବ ବୋଇଲା ହସ୍ତିନାପୁରକୁ ଅଇଲ
ଯାଇ କହ ଦୁର୍ଯ୍ୟୋଧନେ ଆଗୋ ମୃଦୁସ୍ୱରେ ।
କୁମରର ଦେଖିଲା ସେ ଯହୁଁ ଦୁଷ୍ଟମତି
ଦୁଃଶାସନ ଆଗେ ଯାଇ ବାରତା କହନ୍ତି ।
ଶୁଣିମା ହେଉ ହେ କୁରୁବଂଶ ଶିରୋମଣି
ମେଢ଼ର ବାରତା ଦେବ ଅଇଲୁ ଯେ ଘେନ ।
ଅଦଭୁତେ ପୁରୁଷେକ ଅଇଲାକ କାହୁଁ
ସେ ତୋହର ଦୁହିତାର ପ୍ରଭୁ ମହାବାହୁ ।
ଶୁଣିଲା ଏମନ୍ତ ବାର୍ତ୍ତା ଯହୁଁ ଦୁଃଶାସନ
କରେ ଗଦା ଧଇଲା ସେ ଗାନ୍ଧାରୀ ନନ୍ଦନ ।
ଚଉଷଠି ଚଉଷଠି ଭାର ଗଦା ଘେନି
ଧାମଇଁ ସେ ଦୁଃଶାସନ ମତ୍ତକରୀ ଜାଣି ।
ସହସ୍ରେକ ରଥ ଦୁଇ ସହସ୍ରେକ ହସ୍ତୀ
ଅଗଣିତ ହୟ ବାରକ୍ଷଉଣୀ ପଦାତି ।
ଅନେକ ଶସ୍ତ୍ର ଆବର ଛନ୍ତ୍ର କରେ ଧରି
ଶତେପୁର କରି ମେଢ଼ ଗୃହପାଖେ ବେଢ଼ି ।
ଧର ଧର ମାର ମାର ପଡୁଅଛି ଡାକ
ଦୁନ୍ଦୁଭି ଶବଦ ଘାତେ କମ୍ପେ ପୃଥ୍ୱୀଯାକ ।
ଦୁର୍ଯ୍ୟୋଧନ ଆଗେ ଯାଇ କହିଲେକ ଗୃହ
ମେଢ଼ର ଚରିତ ତୁମ୍ଭେ ଶୁଣ ନୃପବର ।
ଅତୁଳ ପୁରୁଷ ଦେବ ତୁଳ ତାକୁ ନାହିଁ
ଚଉର୍ଯ୍ୟପାଇଁ ପଶିଲା ନ ଦେଖିଲେ କେହି ।
କନ୍ୟାକୁ ସେ ବିଡ଼ମ୍ବନା କଲା ଆଜ ରାତି
ବୁଝି ନ ପାରିଲୁ କେହି ସ୍ୱୟମ୍ବର ଖାତି ।
ସ୍ୱୟମ୍ବର କରି ଦେବ ପାଇଲ ତ ଲଜ
ଦୁଷିତ ହୋଇଲୁ ଦେବ ନ ହୋଇଲା କାର୍ଯ୍ୟ
ରାଜାମାନେ ଯିବେ ଦେବ ଅପମାନ ପାଇ
ଏସନକ ବିଡ଼ମ୍ବନ ହେଲେ କୁରୁସାଇଁ ।
ଶୁଣିଣ ମାନଗୋବିନ୍ଦ ପ୍ରଜ୍ୱଳିତ କାୟ
ରୋଷଭରେ ଗର୍ଜ୍ଜଇ ସେ କାଳସର୍ପ ପ୍ରାୟ ।
ହସ୍ତରେ ଖଡ଼ଗ ଧରି କୋପେଣ ପ୍ରଚଣ୍ଡ
ଆଜ ଆରେ ଚୋର ତୋର କାଟିବଇଁ ମୁଣ୍ଡ
ରଥ ରଥୀ ଗଜ ଅଶ୍ୱ ସଇନ ପଦାତି
ରାଜାର ଆଜ୍ଞାପାଇ ସେ ବେଗରେ ଧାମନ୍ତି ।

ଉତବାଚ ହେବା ଦେଖି ବୋଇଲେ ଯୁଧିଷ୍ଠି
ଗୁପତେ ଏ କଥା ହେଲା ହୋଇବ ଅରିଷ୍ଟି ।
ପାପ କଥାକୁ ଗୁପତ କରି ନ ଯୋଗାଇ
ଲୋକରେ ଅଯଶ ପୁଣି ଆପେ ନାଶଯାଇ ।
ଦୁହିତାର ମନ୍ଦପଣ ନ ଜାଣିବେ ଲୋକେ
ଆମ୍ଭଙ୍କୁ ତ ମନ୍ଦ ବୋଲି ବୋଲିବେଟି ଥୋକେ
ବୋଇଲେ ଦୁରାକର୍ଣ୍ଣିକୁ ରାଇ ଧର୍ମସୁତ
ମନ୍ଦ କପାଳରୁ ବାବୁ ହୋଇଲା ଏମନ୍ତ ।
ପ୍ରାଣେ ନ ମାରି ତାହାକୁ ଧରି ରଖିଥିବା
ସ୍ୱୟମ୍ବର ସାରିଲେଟି ବିଚାରି ମାରିବା ।
କାହାର ପୁତ୍ର ତାହାର କିଏ ପୁଣି ପିତା
କେବଣ କୁଳଗୋତ୍ର ସେ କେ ତାହାର ମାତା
ଏ ସବୁ ବିଚାରକରି କରିବାନା କାର୍ଯ୍ୟ
ଲୋକେ ଏ କଥା ଶୁଣିଲେ ହେବ ବଡ଼ ଲଜ
ଏବେ ତ ପ୍ରାଣେ ନ ମାର ଉପୁଜିବ ଗୋଳ
ଲଜ୍ଜା ପାଇଲେ ସକଳ ଦେଶ ମହୀପାଳ ।
ଯୁଧିଷ୍ଠିଙ୍କ ବଚନରେ ଗଲା ଦୁରାକର୍ଣ୍ଣି
ତୁଲେ ଘେନି ପାଞ୍ଚଲକ୍ଷ ଯୋଦ୍ଧା ଆଠ ସୈନ୍ୟ
ମେଢ଼ର ଦୁଆରେ ଯାଇ ହୋଇଲା ପ୍ରବେଶ
ଆରେ ସ୍ତ୍ରିଷାଚୋର ତୁହି ବେଗ ହୋଇ ଆସ
ବିକଳ ହୋଇ ରୋଦନ କରେ ଚନ୍ଦ୍ରାବତୀ
ଏଥେ କିବା କାର୍ଯ୍ୟ ସ୍ୱାମୀ ଯିବା ଦ୍ୱାରବତୀ ।
ଦୁଃସହ ସଙ୍କଟୁ ନାଥ ବଞ୍ଚିବା କେମନ୍ତେ
ଶତେପୁର କରି ନାଥ ବେଢ଼ିଲେଣି ତୋତେ ।
ଜୟ ଜୟ ମାତ ତୁ ଗୋ ଆପଦ ଖଣ୍ଡିନୀ
ଜୟ ମାତ ସୁରପୁର ଦୁରିତ ହାରିଣୀ ।
କୁମର ମୁଖକୁ ଦେଖି ବହୁତ ବିକଳ
ଢଳ ଢଳ ନୟନରୁ ବହେ ଅଶ୍ରୁଜଳ ।
ଫୁଲସୂତାରେ ମୁକୁତା ଗୁନ୍ଥିଲେ ଯେସନ
ଛିଡ଼ିପଡ଼େ ନୟନରୁ ଲୋତକ ତେସନ ।
ହେ ପ୍ରାଣନାଥ ତୋହର ଘେନଇ ଆପଦ
ଯେସନେ ତୋତେ ଏଠାରେ ନ ପଡ଼େ ପ୍ରମାଦ
ନ କାନ୍ଦ ସୁନ୍ଦରି ବୋଲି ବୋଲେ କୃଷ୍ଣବାଳ
ହସ୍ତରେ ଅଞ୍ଚଳ ଘେନି ପୋଛେ ଅଶ୍ରୁଜଳ ।
ତୁ ସଖି ନ ଜାଣୁ ମୋର ବଳ ପରାକ୍ରମ
ସ୍ଥିରହୋଇ ଦେଖ ବାରେ ବୋଲେ ସାରଶାମ୍ବ ।

ଯାହା ଏ ଡାକନ୍ତେ ଜାମ୍ବବତୀର ଯେ ବଳା
ହସ୍ତରେ କୁମରମଣି ଘେନି ଖଡ଼୍ଗ ଫଳା ।
ମେଢ଼ରୁ ବାହାର ହୋଇ ବାଘମ ମୂରତି
ତତକ୍ଷଣେ ଛେଦିଲା ସେ ବେନି ସେନାପତି ।
ପୁଣି ଖଡ଼ଗ ପ୍ରହାର କରନ୍ତେ ସେ ରାଗେ
ବେନିଯୋଦ୍ଧାପଡ଼ନ୍ତେ କେ ନ ରହିଲେ ଆଗେ
ଦୂରରେ ଥାଇ ଦେଖିଲା ତାହା ଦୁଃଶାସନ
ପବନହୁଁ ବେଗହୋଇ ଧାମଇ ବହନ ।
ହସ୍ତରେ ଗଦା ଘେନିଣ ସେହି ବୀରମଣି
ମେଢ଼େ ଉଠିଲା ବାଘମସିଂହ ମୂର୍ତ୍ତି ଜାଣି ।
ଚନ୍ଦ୍ରାବତୀ ବୋଇଲା ତୁ ଏକା ବଳବନ୍ତା
ଏ ଚଣ୍ଡାଳ ଦୁଃଶାସନ ଅଟଇ ଖୁଡ଼ୁତା ।
ପୃଥିବୀ ଚମକ ପଡ଼େ ଯାର ସିଂହନାଦେ
ପ୍ରତିଜ୍ଞାବନ୍ତ ବୋଲନ୍ତି ଏ ପୃଥିବୀ ମଧ୍ୟେ ।
ଯୋଦ୍ଧାଙ୍କ ମଉଡ଼ମଣି ଧାଇଁଯାଇ ବେଗେ
ମେଢ଼ର ଉପରେ ଯାଇ ମିଳିଲା ସେ ରାଗେ ।
କୋପେ ପ୍ରଜ୍ୱଳିତ ସେହି ଯଦୁକୁଳଷଣ୍ଢ
ହାତେ ଧରିଛି ଦୁର୍ଦ୍ଦଣ୍ଡ ନାମେ ଏକ ଖଣ୍ଡା ।
ଦେଖି ବିସ୍ମୟ ହୋଇଲା ଗାନ୍ଧାରୀର ବାଳ
ବଳିଷ୍ଠାର ବୈରିର ଏହା ତେଜ ଅନର୍ଗଳ ।
ମେଢ଼ର ଭିତରେ ପଶି ହରିଲା କୁମାରୀ
ଶସ୍ତ୍ର ଧରି ମୋ ଗୃହକୁ ଆସୁଛି ଆହୁରି ।
ଦୁଃଶାସନ ସଙ୍ଗତରେ ଥିଲେ ଯେତେ ଯୋଦ୍ଧି
ବୋଇଲେ ବୈରିକୁ ଚାଲ ଘେନିଯିବା ବାନ୍ଧି
କେ ବୋଲଇ ମୁଣ୍ଡକାଟି ଘେନିବା ପରାଣ
କେ ବୋଲଇ ନ ମାର ହେ ଯୁଧିଷ୍ଠିରଙ୍କ ରାଣ
ରେ ରେକାର କରି ଧାଇଁଗଲେ ଯୋଦ୍ଧାଗଣ
ଶସ୍ତ୍ର ଧରି ବୋଲନ୍ତି ଯେ ବିକୃତ ବଚନ
ବଳିଷ୍ଠପଣେ ଧାଇଁଲେ ଶସ୍ତ୍ରକୁ ବୁଲାଇ
ମେଢ଼ରୁ ଶାମ୍ବକୁମର ଆସେ ବେଗେ ଧାଇଁ
ହାତେ ଖଣ୍ଡାଘେନି ଅଛି ମହାତେଜୋମୟ
ଏକ ପ୍ରହାରେ ମରନ୍ତି ଛୁଡ଼ ଯୋଦ୍ଧାଚୟ ।
ବେଢ଼ି ରହିବାକୁ କରୁଅଛନ୍ତି ସେ ବୁଦ୍ଧି
ପଞ୍ଚାଶତ ଯୋଦ୍ଧାଙ୍କୁ ସେ ପକାଇଲାଛେଦି ।
ପଳାଇଲେ ସୈନ୍ୟ ଶସ୍ତ୍ରମାନଙ୍କୁ ପକାଇ
ଦୁଃଶାସନ ଆଗେ ବେଗେ କହିଲେ ସେ ଯାଇଁ ।
ସ୍ୱାମି ପଞ୍ଚାଶତ ଯୋଦ୍ଧା କଲାଣି ନିପାତ
ବଜ୍ରହୁଁ ଅଧିକ ତାହାର ଜାଣ ଶସ୍ତ୍ରାଘାତ ।
ପ୍ରତ୍ୟକ୍ଷେ ପରଶୁରାମ ତେଜପ୍ରାୟେ ଦିଶେ
କାର୍ତ୍ତିକେଶ୍ୱର ପରାୟେ ଶଉର୍ଯ୍ୟ ପ୍ରକାଶେ ।
କ୍ଷତ୍ରିୟ କୁଳରେ ତାର ବଡ଼ାଇ ମହିମା
ଯୋଦ୍ଧାଙ୍କ ଉପରେ ତାର ବଡ଼ାଇ ଗାରିମା ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ବିଜୟେ ମାନଗୋବିନ୍ଦ ସ୍ୱୟମ୍ବର ସ୍ଥାନୁ ।
ନିର୍ଦ୍ଧର ଦେଶର ରାଜା ନାମ ଗଣପତି
ବୋଇଲା ତୁମ୍ଭ ଦୁହିତା ଆଣ ହୋ ନୃପତି ।
ଦୁର୍ଯ୍ୟୋଧନହିଁ ସମସ୍ୟା ଦେଲା ସେ ରାଜାଙ୍କୁ
ଏହିକ୍ଷଣି ମୋ ଦୁହିତା ଆସିବ ସଭାକୁ ।
ଆଜ୍ଞାଦେଲା ରାଜା ମୃଦୁସୁଲୀକି ଯେ ରାଇ
ଚନ୍ଦ୍ରାବତୀକି ଆଣ ଯା ବେଶ ଯେ କରାଇ ।
କର ଯୋଡ଼ିଣ କହଇ ତାଙ୍କୁ ମୃଦୁସୁଲୀ
ଦୁର୍ଲ୍ଲଭ ଚରିତ ଦେବ ଅପୂର୍ବ ଦେଖିଲି ।
ତିନିଶତ ଯୋଦ୍ଧା ଦେବ ପଡ଼ିଲେଣି ରଣେ
ଆଉ ମର୍ଦ୍ଦନ କରୁଛି ସେହି ଏକା ଜଣେ ।
ଶୁଣି ବିରସ ହୋଇଲା ରାଜା କୁରୁସାଇଁ
ଦୁଃଶାସନ ଦୁର୍ଜ୍ଜୟେ ଏ ଗଲେ ମୋର କାହିଁ ।
ଏତେ ବୋଲି ରାଜା ତହୁଁ ମହା କୋପଭରେ
ସନ୍ତାପେ କର୍ମକୁ ନିନ୍ଦି ବସିଲେ ସଭାରେ ।
ଏଥୁଅନ୍ତେ ଶୁଣ ମେଢ଼ ସ୍ଥାନର ଯେ କଥା
ଶୁଣ ଆହେ ମନୁରାୟେ ତହିଁର ବ୍ୟବସ୍ଥା ।
ସଂଗ୍ରାମରେ ଅପମାନ ପାଇ ଦୁଃଶାସନ
ତ୍ରିଶତ ପାରିଦଣ୍ଡ ସଙ୍ଗତେ ଘେନିଣ ।
ପାଞ୍ଚ ଅଯୁତ ସଙ୍ଗରେ ପଦାତି ସଇନ୍ୟ
ଏତେଯୋଦ୍ଧା ଘେନି ମେଢ଼େ ବେଢ଼େଦୁଃଶାସନ
ଦେଖିଣ ବିକଳ ହେଲା ବାଳୀ ଚନ୍ଦ୍ରାବତୀ
ନ ଜାଣି ପାମରୀ ମୁହିଁ ବଳାଇଲି ପ୍ରୀତି ।
ସ୍ୱାମୀକି ମୁଁ ମରାଇଲି ତଥ୍ୟ ନ ଜାଣିଲି
ଏକୁଳେ ସେକୁଳେ ମୁହିଁ କାହିଁରେ ନୋହିଲି
ଅଜ୍ଞାନ ବାଳସ୍ତିରୀ ମୁଁ ନ ଜାଣଇ କଥା
ଏକା ଜଣକେ କି ରଣେ ହୋଇବ ଶକତା ।
ମୁହିଁ ଆପଦ ତୋହର ଘେନିଯାଇ ନାହା
ବିମାନେ ବସି ତୋହର ପୁରକୁ ତୁ ଯାଆ ।

ଶାମ୍ବକୁମର ବୋଇଲା ଶୁଣ ପ୍ରାଣସଖି
ଏମାନେ ଶୃଗାଳ ମୁହିଁ ସିଂହ ଶଶିମୁଖୀ ।
ଏକ ଆରେକକୁ ଧରି ମାରିବାଇଁ ଯୁଦ୍ଧେ
ଦେଖ ଦେଖ ମୋ ସମର ସଖି ରଣମଧ୍ୟେ ।
ଏତେକ ବୋଲି ବିକ୍ରମସିଂହ ଗର୍ଜ୍ଜ କରି
ମେଣ୍ଢ ଭିତରୁ ବାହାର ହେଲା ଖଣ୍ଡା ଧରି ।
ଧାଇଁ ଗଲେ ଯୋଦ୍ଧାମାନେ ସଂଗ୍ରାମ ଉପେକ୍ଷି
ଶ୍ୟାମଳ ମେଘେ ଯେସନେ ଉଡ଼ଯାନ୍ତି ପକ୍ଷୀ
ମେଣ୍ଢର ଉପରୁ ବୀର ପଡ଼ିଲେକ ଡେଇଁ
କରଇ ସେ ରଣରଙ୍ଗ ଖଡ଼ଗ ବୁଲାଇ ।
ବଜ୍ରମୁଷ୍ଟି ଧରି ଦ୍ୱିଏ ଅସିପତ୍ର ଝୁଣି
ଅନେକ ପଦାତି ବଳ ପକାଇଲା ହାଣି ।
ପବନଘାତେ ଯେସନେ ଝଡ଼େ ପକ୍ୱଫଳ
ଧାଇଁଲେ ଯୋଦ୍ଧାଏ ଥୋକେ ପଡ଼ିଲେ ଭୂତଳ
ସୈନ୍ୟ ପଛକରି ଆଗ ହୁଏ ଦୁଃଶାସନ
ଦୁର୍ଦ୍ଧର୍ଷ ସେ ଦୁରନ୍ତକ ସଙ୍ଗେ ଦୁର୍ବିକର୍ଣ୍ଣ ।
ଏହାଙ୍କ ମୂଳେ ଅନେକ ସୈନ୍ୟ ହେଉ ସଙ୍ଗେ
ଧନୁରେ ନାରାଚ ଯୋଖି ଧାଇଁଲେ ସେ ବେଗେ
ସହସ୍ରେକ ଯୋଦ୍ଧା ଏକମୁଖେ କଲେ ରଣ
ଶାମ୍ବକୁ ମାରନ୍ତି ଶସ୍ତ୍ରମାନ ଠାଣ ଠାଣ ।
ସମରେ ନିର୍ଭୟ ସେହି ଜାମ୍ବବତୀ ବାଳ
ବିଜେ ଗର୍ଜ୍ଜକ କରେ ତେଜ ଅନର୍ଗଳ ।
ଯେସନେକ ଗଜ ପଶି ଭାଙ୍ଗେ ରମ୍ଭାବନ
ମାରି ଚୂରି କରିଦେଲା କଉରବ ସୈନ୍ୟ ।
ଏକୋ ପ୍ରହାରକେ ଦଶ ବିଂଶତି ପଚାଶ
ପଳାନ୍ତି ସଇନ୍ୟ କେହି ନ ରହନ୍ତି ପାଶ ।
ଯେସନେକ ମାଳମେଘେ ବିଜୁଳି ଝଟକେ
ରହି ନ ପାରନ୍ତି କେହି ଯୋଦ୍ଧା ଶାମ୍ବ ପାଖେ
ସମରେ ଶଉର୍ଯ୍ୟବନ୍ତ କକ୍ଷା ଜଗଜେଠୀ
ମେଲା ମତ୍ତଗଜ ଯେହ୍ନେ ଏକେଶ୍ୱରେ ଉଠି ।
ପୁଣ ପୁଣ ପ୍ରହାରଇ ବୀରବର ଏକା
ଅଜାଯୂଥେ ବ୍ୟାଘ୍ର ଯେହ୍ନେ ଅଟଇ ନିଃଶଙ୍କା
ଏମନ୍ତେ ସେ ଦୁଃଶାସନ ହେଉ ସବୁ ଆଟ
ମେଣ୍ଢ ଉପରେ ଯିବାକୁ ନ ପାନ୍ତି ସେ ବାଟ
ବିଷମ ସମର ଶାମ୍ବକୁମରର ଦେଖି
ଦୁଃଶାସନ ପଚ୍ଛରଇ ଧର୍ମ ଯୁଧିଷ୍ଠିରିଙ୍କି ।

ସ୍ୱାମୀ ତୁମ୍ଭେ ଯେ ବୋଇଲ ଏ ମେଣ୍ଢକୁ ଧରି
ଗୃପଟରେ ଥୋଇଥିବ ଗୋଳ ଯେ ନ କରି
ଦେଖ ଅନେକ ସଇନ୍ୟ ପକାଇଲା ମାରି
ତୋହର ଆଜ୍ଞା ହୋଇବ ଧାଇଁ ତ କେ ପାରି
ଯୁଧିଷ୍ଠି ବୋଇଲେ ମରୁଛନ୍ତି ଅକାରଣେ
ସାମାନ୍ୟ ନୁହଇ ସେହି ଅଟେ ବଡ଼ଜଣେ ।
ବାସବ ନନ୍ଦନ ଅବା ଅଟେ ଜୟସେନ
କି ଅବା ଅନଳ କରେ ସଇନ୍ୟ ନିଧନ ।
କି ଅବା କାର୍ତ୍ତିକେଶ୍ୱର ପାର୍ବତୀର ବାଳ
ବରୁଣର ନନ୍ଦନ କି ରୂପେ ଅନର୍ଗଳ ।
ଏ କଥା ତଦନ୍ତ କରି ତୁମ୍ଭେମାନେ ଜାଣ
ତଥ୍ୟକରି ଏ କଥାର ନିଷ୍ଟୟ ପ୍ରମାଣ ।
ଦେଖିଣ ବିବାଦ ବାବୁ ବୁଝି ଶୁଝି କରି
ନିଷ୍ଫଳ ହେଲାଣି ଏଡ଼େ ବଡ଼ ସ୍ୱୟମ୍ବର ।
ଦିନକର ଦେବତା ଯେ ଆସି ଅସ୍ତଗଲା
ରଜାଗଣ ମଧ୍ୟରେ ତ ଗୋଳ ଉପୁଜିଲା ।
ଏକାଦିନେ ସଭାମଧ୍ୟେ ଆଣିଲି କୁମାରୀ
ଏବେ ଗୋପ୍ୟକରି ଚଉ କଯହିଁ ବିଗୃହି ।
ଆସ୍ଥାନୁ ଉଠିଲା କାମେଶ୍ୱର ମହୀପାଳ
ମାନଗୋବିନ୍ଦଙ୍କୁ କହେ ବାକ୍ୟ ଅନର୍ଗଳ ।
ଏ ତୋହର କଥା କହ କେବଣ ବିଧାନ
କନ୍ୟାର ନିମନ୍ତେ ବର ବରିଅଛୁ ଆନ ।
ରଜାମାନଙ୍କୁ କପାଇଁ ଆଣିଲୁ ନିମନ୍ତ୍ରି
ଶୁଣି ବିରସ ହୋଇଲା ମାନଚକ୍ରବର୍ତ୍ତୀ ।
ଜୋକ ମୁଖରେ ଯେସନେ ପଡ଼ଇ ଲବଣ
ସୂର୍ଯ୍ୟମୁଖେ ଯେସନେକ କୁମୁଦ ମିଳନ ।
ମାନଗୋବିନ୍ଦ ବୋଇଲା କହିଲୁ କି ଜାଣି
ପଶ୍ଚିମେ ଯେବେ ଉଦୟ ହେବେ ଦିନମଣି ।
ଲକ୍ଷେ ରଜା ବରିଲି ମୁଁ ଦୁହିତା ନିମନ୍ତେ
ଉପୁଜିଲା ଏ ଦୁଃସହ କଥା ହୋ କେମନ୍ତେ
ପୁଣ ପୁଣ ବୋଲେ କାମେଶ୍ୱର ନରପତି
କନ୍ୟାକୁ ତୋହର ଆଣ ବୁଝିବା ସଙ୍ଗତି ।
ମାନଗୋବିନ୍ଦ ବୋଇଲା ଆଣୁଛି କୁମାରୀ
ଯେବେ ତୁମ୍ଭେ ଆଜ୍ଞାଦେଲ ଆହେ ଦଣ୍ଡଧାରୀ
କାମେଶ୍ୱର ରଜା ଯାଇ ସଭାରେ ବସିଲେ
ସେନବେଳେ ନାରଦ ସେଠାରେ ମିଳିଲେ ।

ନାରଦ ବୋଇଲେ ଶୁଣ ଲକ୍ଷେକ ନୃପତି
ଦ୍ୱାରକାପୁରୁଁ ଶ୍ରୀକୃଷ୍ଣ ଆସି ତ ନାହାନ୍ତି ।
ଚନ୍ଦ୍ର ନ ଥିଲେ ନିର୍ମଳ ତାରାରେ କି ନିଶି
ତୁମ୍ଭେ ଯେ ତାରା ଶ୍ରୀକୃଷ୍ଣଚନ୍ଦ୍ର ଏକା ଶଶୀ
ଏହା ଶୁଣିଣ ବୋଇଲା ଭୂପାଳ ନୃପତି
ଏ ଅଲକ୍ଷଣ ଦେଖିଲ କାହିଁ ବ୍ରହ୍ମପତି ।
ବିଦର୍ଭ କୁଳର ନୃତ୍ୟକର ବ୍ରହ୍ମଋଷି
ପରେ ଦୂଷିତା ହେଲାଣି ତେବେ ସେ କୁମାରୀ
ଅଦ୍ଭୁତେ କୁମରେକ ପଶିଲା ତା ମେଳେ
ତାହାକୁ ବେଢ଼ି ଅଛନ୍ତି ସୈନ୍ୟ ଅତିଗାଢ଼େ
କୁମର ଭୁଲେ କୁମାରୀ ବହୁତ ପୀରତି
ତୁମ୍ଭମାନଙ୍କୁ ସ୍ୱଅର୍ଥେ ଆଣିଲେ ନିମନ୍ତ୍ରି ।
ମୁନି ବୋଇଲେ ପୁରକୁ ବିଜେକର ଯାଅ
ଯାବତ କାଳକୁ ତୁମ୍ଭେମାନେ ଲଜ୍ଜା ପାଅ ।
ନାରଦଙ୍କ ବଦନରୁ ଏ ବଚନ ଶୁଣି
ରାଜାଏ ଉଠିଲେ ହସ୍ତେ ଖଡ୍ଗକୁ ଘେନି ।
ଏଡ଼େକ ଦର୍ପ କାହାର ହେଲା ମଧ୍ୟସ୍ୱର୍ଗେ
କନ୍ୟା ଘେନି ଏଥୁ ଯିବ କେବଣହିଁ ବାଟେ
ରାଜାମାନଙ୍କର ଶୁଣି ଉଚ୍ଚବାଚ ବାଣୀ
ଯୁଧିଷ୍ଠିର ହକାରିଲେ ମନ୍ତ୍ରୀ ଚୂଡ଼ାମଣି ।
ବାବୁ ମେଳର ବାରତା କହ ସହଦେବ
କେହୁ ସେ ପୁଣି ଅଟଇ କହ ତାର ଭାବ ।
ସହଦେବ କହେ ଧର୍ମ କର୍ମ ସନ୍ନିଧାନେ
ସାବଧାନ ହୋଇ ଶୁଣ ହେ ଧର୍ମରାଜନେ ।
ବିଶେଷ ଚରିତ ଏହୁ ବଡ଼ ବିଚକ୍ଷଣ
ମେଳ ମଧ୍ୟେ ପଶିବାକୁ ଆନ କେ ଭାଜନ
ଶ୍ରୀକୃଷ୍ଣଙ୍କ ବାଳ ଜାମ୍ବବତୀର ନନ୍ଦନ
ତାହାର ନାମ ଅଟଇ ବୀରବର ଶାମ୍ବ ।
ତା ବିନୁ ମେଳେ ଯିବାକୁ କେ ଅଟେ ସମର୍ଥ
ନାରଦ ମୁନି ଭିଆଇ ଅଛନ୍ତି ଏମନ୍ତ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ଶାମ୍ବକୁମର ଏଥକୁ କଲା ଆଗମନ ।
ଆଣିଛି ଏଥେ ନାରଦ ବଢ଼ାଇ ସରାଗେ
ମାନଗୋବିନ୍ଦ ନୃପତି କମ୍ପୁ ଅଛି ରାଗେ ।
ଆନର କୃତ୍ୟ ନୁହଇ ନାରଦ ଭିଆଣ
କୃଷ୍ଣର ପୁତ୍ର ବିନା କେ ଆନ ନୁହେ ଜାଣ ।

ସହଦେବଙ୍କ ମୁଖରୁ ଏସନକ ଶୁଣି
ଯୁଧିଷ୍ଠିରଦେବ ହସିଲେ ମନେ ମନେ ଗୁଣି ।
ରାଜାମାନେ ଯିବେ ଏଥୁ ଲଜ୍ଜାଭର ହୋଇ
ବହୁଦ୍ୱନ୍ଦ୍ୱ ଉପୁଜିବ ଏଥିରୁ ଗୋସାଇଁ ।
ସହଦେବ ବୋଲେ ଏଥି ଉପୁଜିବ ଗୋଳ
ଅବଶ୍ୟ ନୃପତିଗଣ କଟିବେଟି ରୋଳ ।
ସଭାରେ ନାରଦ ଯହୁଁ ସିଦ୍ଧାନ୍ତ କହିଲେ
ଶୁଣି ସର୍ବ ନରପତି ମହାକୋପ କଲେ ।
ସମସ୍ତ ଦେଶ ରାଜା ଏ ବେଶ ହୋଇ ଆସି
ଦୁର୍ଯ୍ୟୋଧନ ରାଜା ଆଗେ ବଚନ ସମ୍ଭାଷି ।
ଏ ତୋହର ଚରିତ ହୋ କେବଣ ପ୍ରକାର
କନ୍ୟାହିଁ ପରେ ଦୂଷିତା ହେଲାଣି ତୋହର ।
ସଭାରେ ତଥ୍ୟ କହିଲେ ସେ ନାରଦ ମୁନି
ଏ କଥା ବିଚାରି ମନେ ବୁଝ ନୃପମଣି ।
ମାନଗୋବିନ୍ଦ ବୋଇଲା ସାମାନ୍ୟ ଏ ବୁଦ୍ଧି
ଯାହାର ନାମେ କମ୍ପଇ ଭୟେ ଜମ୍ବୁଭେଦୀ ।
ଏ ଭୁବନେ ପଶିବାକୁ କାହାର ଭରସା
ଯମ ଭୁବନକୁ କେହି ବଳାଏ କି ଆଶା ।
ଆଜର ମଧ୍ୟେ ସଭାକୁ ଆଣିବି କୁମାରୀ
ଏବେ ନିଜ ନିଜ ସ୍ଥାନେ ଥାଅ ବିଜେକରି ।
ଦୁର୍ଯ୍ୟୋଧନର ବଚନେ ଗଲେ ସର୍ବରାୟେ
ଯେ ଯାହାର ସ୍ଥାନେ ଯାଇ କଲେକ ବିଜୟେ
ସ୍ନାନ ଭୋଜନାଦି କ୍ରିୟା ସାରିଲେ ନୃପତି
ଆଚମନ ସାରି ଦିବ୍ୟବେଶରେ ବସନ୍ତି ।
ସେଠାରୁ ଯୁଧିଷ୍ଠି ଦେବ ଚଳିଗଲେ ବେଗେ
ଯାଇ ପ୍ରବେଶ ହୋଇଲେ କୁରୁପତି ଆଗେ ।
ଯୁଧିଷ୍ଠିଦେବ ବୋଲନ୍ତି ଦୁର୍ଯ୍ୟୋଧନେ ରହି
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ବିଜେ କଲେ ଯାଇ ।
ଯୁଧିଷ୍ଠି ବୋଇଲେ ଶୁଣ ଗଙ୍ଗାଦେବୀ ସୁତ
ଏ ସ୍ୱୟମ୍ବର ଚରିତ ହୋଇଲା କେମନ୍ତ ।
ଦେଖି ନାହୁଁ ଆମ୍ଭେ କେବେ ଏଡ଼େ ବିଡ଼ମ୍ବନ
ଏଡ଼େ ବଡ଼କାର୍ଯ୍ୟ ଗୋଟା ହେଲା ଅକାରଣ ।
କେମନ୍ତେ କୁମାରୀ ପୁରେ ଗଲା ଏକେଶ୍ୱରେ
ରଥ ଗଜ ଯୋଦ୍ଧା ତାର ନାହିଁ ସଙ୍ଗତରେ ।
ସହଦେବ କେଉଁପରି ନ ଜାଣେ ଏ ବାଣୀ
ଶକୁନି ଛାଡ଼ ନୋହିଲା ମନ୍ତ୍ରୀ ଚୂଡ଼ାମଣି ।

ଦୂଷିତ ହୋଇଲା ମାନଗୋବିନ୍ଦ ସେ ରାଜା
ହସ୍ତିନାପୁରକୁ ହେଲା ଆମ୍ଭ କୁଳେ ଲଜ୍ଜା ।
ଯୋଗାଏ ତ ନ ଭୁଞ୍ଜନ୍ତି ମନ୍ତ୍ରୀଏ କହନ୍ତି
ସଭାରେ ଗୋଳ ହୋଇବ ବଢ଼ିବ ଅଖ୍ୟାତି
ଭୀଷ୍ମ ବୋଇଲେ ତୁ ତୁନି ହୋଇଲୁ କି ଅର୍ଥେ
ଭୂତ ଭବିଷ୍ୟତ କଥା ଦିଶଇ ତ ତୋତେ ।
ସହଦେବ ବୋଲେ ଦେବ ସାବଧାନେ ଶୁଣ
ନାଶକାଳେ ବିପରୀତ ବୁଦ୍ଧି ହୁଏ ଜାଣ ।
ନିଷ୍କଳଙ୍କ ରାଜା ଏ ତ ମାନଚକ୍ରବର୍ତ୍ତୀ
ଦୁହିତା ଗୁଣେ ଦୂଷିତ ହୋଇଲା ଏ ଏଥି ।
ନାରଦ ମୁନି କହିଲେ ବିଗ୍ରହ କରିବା
ଯଦୁବଂଶରୁ ଗୋଟିଏ ଆଣି କନ୍ୟା ଦେବା ।
ଅବିଗୁଣ ଧରିଲେକ ରାଜା ତାହା ଶୁଣି
ମୋର ସାନଭାଇକୁ ସେ ଦେଇଛି ବିହେଣୀ
ମୁଁ ତାହାର ପାଦ ପଖାଳିବି କି ଲେଉଟି
ଯାଦବକୁଳକୁ ନିନ୍ଦା କଲେ ଧାର୍ତ୍ତରାଷ୍ଟ୍ରି ।
ସେଠାବରୁ ଉପୁଜିଲା ବିପରୀତ କୃତ୍ୟ
ନାରଦ ଏଥେ ପାଇଲେ ଲଜ୍ଜାହିଁ ବହୁତ ।
ଅନ୍ତରୀକ୍ଷ ମାର୍ଗେ ଗଲେ ସେ ମୁନି ଉତ୍ତମ
ରାମକୃଷ୍ଣ ନ ଜାଣନ୍ତି ଆସିଲେ ତ ଶାମ୍ବ ।
ଯୁଧିଷ୍ଠିର ବୋଇଲେ ଶୁଣ ଆହେ ଭୀଷ୍ମ ଦ୍ରୋଣ
ଚନ୍ଦ୍ରାବତୀକି ହରିଲା ଶାମ୍ବ ଯେବେ ଜାଣ ।
ସେ କନ୍ୟା କୁମର ପାଇ ଉଜଳିଣି ଶାନ୍ତି
କୁମାରକୁ ବରିଲା ତ ମନେ ନାହିଁ ଭ୍ରାନ୍ତି ।
ଦୁର୍ଯ୍ୟୋଧନ ବୋଇଲକ ହୋଇଲା ଅନର୍ଥ
ଆହୋ ସହଦେବ ତୁମ୍ଭେ ଯାଅ ଯା ତୁରିତ ।
ଶାମ୍ବକୁ ବୋଲିବ ଚନ୍ଦ୍ରାବତୀ ଛାଡ଼ିଦେଉ
ସ୍ୱୟମ୍ବର ସ୍ଥାନେ ସେହି ବେଶ ହୋଇ ଯାଉ
ରାଜାମାନଙ୍କୁ ସେ ପଚ୍ଛେ ନ ବରୁ କୁମାରୀ
ସେ ଶାମ୍ବକୁମର ନେଉ ସ୍ୱୟମ୍ବରୁ ହରି ।
ରାଜାମାନେହିଁ ସମସ୍ତେ ପାଇଲେ ବାରତା
ଏହି ସ୍ୱୈରକଥା ସବୁଠାରୁ ବଳବନ୍ତା ।
ସ୍ୱୈର ଧରି ମାର ବୋଲି ଶୁଭିଲାଣି ଧ୍ୱନି
ଏକ କୁମରକୁ ଏକଲକ୍ଷ ନୃପମଣି ।
ଶୁଣି ବାଇକୁଳୀ ମାନଗୋବିନ୍ଦ ଦୁଲଣୀ
ଚକିତ ନେତ୍ରୁ ଝର୍ଝର ହୋଇ କହେ ବାଣୀ

ସୂତାରୁ ମୁକୁତା ଝଡ଼ପଡ଼ କି ଭୂତଳେ
ପଡ଼ିଲା ବାଳକୁମର ପାଦ ଧରି ତଳେ ।
ହେ ନାଥ ତୁମ୍ଭଙ୍କୁ ମୁହିଁ କରେ ନତିସ୍ଥଳ
ଅଳପ କଥା ତ ହେଲା ବହୁତର ଭଲ ।
କେଉଣ ଭୁବନୁ ନାଥ ପ୍ରବେଶ ହୋଇଲୁ
କାହାର ନନ୍ଦନ ନାଥ ମୋତେ ନ କହିଲୁ ।
ଆଶା ପାଇଣ ନିରାଶ ହେ କଳହପ୍ରିୟ
ମୁହିଁ ତୋହର ଆପଦ ଦେଖିଯାଇ ନାହିଁ ।
ବିମାନରେ ବସ ନାଥ ଯିବା ଅପସରି
ଅନ୍ତରୀକ୍ଷେ ଯିବା ପୁଣି ମେଢ଼ ଛାଡ଼ିକରି ।
କୁମର ବୋଇଲା ସଖି ନ ବୋଲ ଏ ବାଣୀ
ଶରୀର କମ୍ପଇ ମୋର ତୋହ କଥା ଶୁଣି ।
ଅଟନ୍ତି ଏ ରାଜପୂଥ ସର୍ବ ଦଣ୍ଡଧାରୀ
ଏହାଙ୍କ ଉପରେ ମୁହିଁ ବିକ୍ରମ କେଶରୀ ।
କହୁଁ କହୁଁ କୁପିତ ସେ ବାସୁଦେବ ସୁତ
ରାଜାମାନଙ୍କର କୋପ ବଢ଼ିଲା ବହୁତ ।
ହସ୍ତକେ ସାପ୍ଟକ ହସ୍ତେ ଖଡ଼ଗର ଫଳା
ମେଢ଼ରୁ ବାହାର ହେଲା ଶ୍ରୀକୃଷ୍ଣର ବଳା ।
ଦେଖି ଦେଖି ସ୍ୱୈରକୁ ହେ ବୋଲନ୍ତି ସେରାସ୍ୟ
ସାମାନ୍ୟ ଜନର ଏହୁ ନୁହଇ ତନୟ ।
କେଉଣ ଦିଗପାଳର ଅଟଇ ଏ ବଳା
ମର୍ତ୍ତ୍ୟପୁରେ ନୁହଇ ଏ ମାନବର କଳା ।
ରାଜାଏ ବୋଇଲେ ଆମ୍ଭେ ହୋଇଲୁଣି ବନ୍ଦ
ଏ କନ୍ୟାପାଇଁ ସମସ୍ତେ ହେଉଥାଉଁ ଧନ୍ଦ ।
ପଣ୍ଡିତ ରାଜାମାନେ ଯେ ଗଲେ ଅପସରି
ଧାଇଁଲେକ ଦୁଷ୍ଟରାଜାମାନେ ଶସ୍ତ୍ର ଧରି ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଦେବ ଦାନବ ମାନବ ନାହିଁ ତାର ଖ୍ୟାତି ।
ବିଷ୍ଣୁକଳାରେ ହେ ଜାଣ ଜାତ ଦେବଲୋକ
ତାହାଙ୍କର କାର୍ଯ୍ୟ ଦୃଢ଼ ଅଟେ ଦୃଢ଼ବାକ୍ୟ ।
ବିଷ୍ଣୁର ତେଜେ ଶଙ୍କିଲେ ସ୍ୱର୍ଗେ ଦେବଗଣ
ବିଷ୍ଣୁ ପୁନି ଜାଣିପାରି ସେ ସଭାର ଜନ ।
ଅସୁର କୁଳରେ ଜାତ ଯେତେ ଦଣ୍ଡଧାରୀ
ସେମାନେ ଅଟନ୍ତି ଜାଣ ବିଷ୍ଣୁର ବଇରୀ ।
ସେମାନେ ରହିଣ କଲେ ସମରକୁ ଇଚ୍ଛା
ବିଷ୍ଣୁହାତେ ମରିବାକୁ କରିଥାନ୍ତି ବାଞ୍ଛା ।

ଜନ୍ମେ ଜନ୍ମେ ବଇରୀ ସେ ତହିଁର ନିମନ୍ତେ
ବସ୍ତୁ ନନ୍ଦନଙ୍କୁ ଆଣେ ମାଇଲୁ ସୁକତେ ।
ସମସ୍ତ ଜନ ଦେଖିଲେ ଶଙ୍କା ଚନ୍ଦ୍ର ଚହ୍ନି
ସହଦେବ ଭୀଷ୍ମଙ୍କୁ ଯେ କହିଲେ ବଚନ ।
ସେ ସ୍ୱାମି ତୋହର ଆଜ୍ଞା ଘେନ ମୁହିଁ ଗଲି
ଦୁଃଶାସନ ଡରେ ତହିଁ ପଶି ନ ପାରିଲି ।
କ୍ଷଣମାତ୍ର ଉପୁଜିଲା କହୁତର ଗୋଳ
ଲକ୍ଷେକ ରାଜା ମିଳାଣି କଲେକ ଚହଳ ।
ଭୀଷ୍ମ ଦ୍ରୋଣ ଦୁହେଁ ତହୁଁ ଗଲେ ପୁଣି ଉଠି
ଆସ୍ଥାନରେ ବଜେ କରଅଛୁ ଧାର୍ତ୍ତରାଷ୍ଟ୍ରି ।
ଭୀଷ୍ମ ବୋଇଲେ ସେ କଥା ନ ପାରିଲୁ ଜାଣି
ଯାବତ କାଳକୁ କଥା ରହିଲା ଧରଣୀ ।
ଶୁଣିଣ ସେ ଦୁର୍ଯ୍ୟୋଧନ କୋପେଣ ପ୍ରଚଣ୍ଡ
ଆଜରେ ଶୃଗ ତୋହର କାଟିବଇଁ ମୁଣ୍ଡ ।
ଯେବେ ପରିଧାଇ ଆସେ ତୋପାଇଁ ବାସବ
ତ୍ରୈଲୋକ୍ୟ ମଧ୍ୟରେ ତୋତେ ଆଜି କେ ରଖିବ
ମାନଗୋବିନ୍ଦର ମନ ଦେଖି ରାଜାଗଣ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଶଲ୍ୟ ବୀର କର୍ଣ୍ଣ ।
ରଥ ଆରୋହି ରହିଲେ ଆସି ସର୍ବରଥୀ
ପାରିଦଣ୍ଡ ରାଜାମାନେ ଚଢ଼ି ମତ୍ତହସ୍ତୀ ।
ପଞ୍ଚାଶକୋଟି ଯୋଦ୍ଧା ଯେ ରଥ ଗଜ ଭୁଲେ
ଆଗୁଆଣି ଥାଟ ଗଲେ ଦୁଃଶାସନ ମେଳେ ।
ସଂଗ୍ରାମ ଯେ ଗୁରୁତର ନୁହଇ ଗୋଚର
ତେର ସହସ୍ର ନୃପତ ଘେନ ସଙ୍ଗତର ।
ମେଡକୁ ବେଢ଼ିଲେ ଅଷ୍ଟାଦଶ ଅକ୍ଷୌହିଣୀ
ଏକା କୁମର ଅଛଇ ଖଡ୍ଗଫଳା ଘେନ ।
ନାରଦ ଯେ ବଜେଇଲେ ସଂଗ୍ରାମର ସ୍ଥାନେ
ଲଗୁ ଲଗୁ ବୋଲି ମୁନି ନାଚୁଛନ୍ତି ଶୂନ୍ୟେ ।
ଆରେ ଆରେ ସୈନ୍ୟମାନେ ଆସ ବେଗହୋଇ
କଉତୁକ ସଂଗ୍ରାମ ଏ ଚନ୍ଦ୍ରାବତୀ ପାଇଁ ।
ଲଗୁ ଲଗୁ ବୋଲି କଲେ ନାଟ ଯେ ଗୋଟାଏ
କଳି ଧୋକଡ଼ରୁ ଧୂଳି ବୁଣିଲେ ମୁଠାଏ ।
ବ୍ରହ୍ମାନନ୍ଦନର ରସ କଉତୁକ କଥା
କହିବାକୁ ନାହିଁ କେହି ବ୍ରହ୍ମାଣ୍ଡେ ସାମର୍ଥ୍ୟ ।
ଦୁଃସହ ସଂଗ୍ରାମରେ ଯେ ପଡ଼ିଲେକ ଶାମ୍ବ
ପଞ୍ଚାଶକୋଟି ଯୋଦ୍ଧାଙ୍କ ଆଗେ କରେ ଗର୍ବ ।

ଅମିପତ୍ର ଗୋଟାଏ ସେ କରେ ଅଛି ଧରି
ଧାଇଁ ସମର ଯେସନେ କରଇ କେଶରୀ ।
କ୍ଷତ୍ରିପ୍ରୁଙ୍କ ଶସ୍ତ୍ରମାନ ସମସ୍ତ ଛେଦଇ
ଗଜ ଅଶ୍ୱ ସହିତରେ ବେନିଖଣ୍ଡ ହୋଇ ।
ବଜ୍ର ଶସ୍ତ୍ର ଘେନ ଛେଦେ ସେହି ବଜ୍ରସେ ହୁଲା
ଏକା କୁମର କାହାକୁ ନ କରେ ଗଣନା ।
ପାଦେ ଯାଇ ଅପର୍ଯ୍ୟାପ୍ତ ରଣ ସେ କରଇ
ବଚନ ଗତରେ ଶସ୍ତ୍ରମାନଙ୍କୁ ବଞ୍ଚାଇ ।
ସଂଗ୍ରାମ କରଇ ଏକା କୃଷ୍ଣରନନ୍ଦନ
ଦୂରେ ଥାଇ ଦେଖଇ ତା ପାଣ୍ଡବ ଅର୍ଜ୍ଜୁନ ।
ଗତି ଦେଖି ବଖାଣଇ ସୁଭଦ୍ରାର ପତି
ଏ ତ ଅଟଇ କୁମର ଶାମ୍ବ ପାଦଗତି ।
ଭୀମ ଅର୍ଜ୍ଜୁନ ନକୁଳ ମନ୍ତ୍ରୀ ସହଦେବ
କହନ୍ତି ତହିଁ ଅଛନ୍ତି ଯୁଧିଷ୍ଠିର ଦେବ ।
ଜାମ୍ବବତୀର ନନ୍ଦନ ସେ ଶାମ୍ବ କୁମର
ଧର୍ମ ବୋଇଲେ ଯେମନ୍ତେ ପାର ରକ୍ଷାକର ।
ଦେଖନ୍ତି କୁମର ଖେଳେ ସିଂହଗତି ଜାଣି
ଆନନ୍ଦ ହେଲେ ସମର ଦେଖି ଠିଆଠାଣି ।
ଏକ ପ୍ରହାରକେ ଦଶବଂଶ ସେ ମାରଇ
ରଣେ କଉରବଙ୍କୁ ସେ ଭଳେ ନ ଡରଇ ।
ଏକଲକ୍ଷ ରଥ ଦୁଇଲକ୍ଷ ଯେ ପଦାତି
ପଡ଼ିଲେଣି ରଣେ ଆଉ ଗଣନା ନ ଯାନ୍ତି ।
ରକତରେ କରଦମ ହେଲା ମହୀତଳ
ମହାନାଦେ ଗର୍ଜ୍ଜଇ ଯେ କୁମର ଶାର୍ଦ୍ଦୂଳ ।
ମାନଗୋବିନ୍ଦ ବୋଇଲେ ସୈନ୍ୟ ହରାଇଲି
କେବଣ ରାଜାର ପୁତ୍ର ଜାଣି ନ ପାରିଲି ।
ଅଦ୍ଭୁତେ ଅଇଲା ସେ ନ କହିଲା କଥା
ଏହାର ପିତା ଅଟନ୍ତି କେବଣ ଦେବତା ।
ଦୁର୍ଯ୍ୟୋଧନର ସନ୍ତାପ ଦେଖି ଦୁଃଶାସନ
ପାରିଦଣ୍ଡ ସମଦଣ୍ଡ ଘେନ ରାଜାମାନ ।
ବୋଇଲା ଏକାକେ ଧ୍ୱଂସ କଲା ମୋର ଥାଟ
ଲକ୍ଷେ ରାଜା ମୁଖେ କାଳି ଲଗାଇଲା ଦୁଷ୍ଟ ।
ପୁଣି ଆଜ୍ଞାଦେଲା ରାଜା ମାର ବେଗେ ଯାଇ
ମତ୍ତନାଗ ଜାଣି ଧରି ନ ପାରିଲେ କେହି ।
କୋପେ ଦୁଃଶାସନ ଗଦାବର ପ୍ରହାରଇ
ବଚନ ଗତରେ ଶାମ୍ବ ସମସ୍ତ ବଞ୍ଚାଇ ।

ଶାମ୍ବକୁମର ଶରୀର ଜାଣି ବଜ୍ର ସିନା

ଚଉଷଠି ଭାର ଗଦା ଅଙ୍ଗେ ହେଲା ଚୂନା ।

ଶୂନ୍ୟହସ୍ତ ହୋଇଲା ଯେ ଗାନ୍ଧାରୀର ବାଳ

ଶ୍ରୀକୃଷ୍ଣର ନନ୍ଦନ ତା ତେଜ ଅନର୍ଗଳ ।

ବେଗେ ତହୁଁ ଧାଇଁଗଲା ଦୁଃଶାସନ ମଲ୍ଲ

ବିକ୍ରମ ଗତରେ ଯାଇଁ ଧଇଲା ତା ବାଳ ।

ଜୟ ଜୟ ଶବଦ ଯେ ଶୁଭିଲ୍‌କ ବାଣୀ

ଯୁଧିଷ୍ଠିଦେବ ବିରସ ହେଲେ ମନେ ଗୁଣି ।

ଅର୍ଜ୍ଜୁନ କହିଲା ଦେବ ପଡ଼ିଲା ପ୍ରମାଦ

ନ ପୂଣ କରନ୍ତୁ ଦୁଷ୍ଟେ ଶାମ୍ବ ଶିରଚ୍ଛେଦ ।

ଦୁର୍ଯ୍ୟୋଧନର ଛାମୁରେ କହିଲା ବାରତା ।

ଚୋରକୁ ବାନ୍ଧିଲେ ଦୁଃଶାସନ ମହାରଥୀ ।

ଦୁର୍ଯ୍ୟୋଧନ ବୋଇଲେ ରେ ନିଅ ଶମଶାନେ

ଶିରଚ୍ଛେଦ କର ନେଇ ଦେଖନ୍ତୁ ରାଜନେ ।

ରାଜାର ବଚନେ ସେହୁ ଦୁଷ୍ଟ ଦୁଃଶାସନ

କୁମରମଣିକ କଲେ ଦୃଢ଼ରେ ବନ୍ଧନ ।

ଯୁଧିଷ୍ଠି ବୋଇଲେ ଭୀମ ଅର୍ଜ୍ଜୁନକୁ ରାଇ

ଶାମ୍ବକୁମରକୁ ରକ୍ଷାକର ତୁମ୍ଭେ ଯାଇ ।

ଅର୍ଜ୍ଜୁନ ବୋଇଲେ ଦେବ ଦୁଃଶାସନ ମନ୍ଦ

ଭୀମସେନ ଠାକୁରଙ୍କ ତୁଲେ ହେବ ଦ୍ୱନ୍ଦ୍ୱ ।

ଆଜ୍ଞାପାଇ ଚଳଗଲେ ପାର୍ଥିବ ମାରୁତି

ଶ୍ମଶାନ ଭୂମିରେ ଯାଇ ପଶିଲେ ତଡ଼ିତ ।

ଶାମ୍ବକୁମରକୁ ସେହି ଶ୍ମଶାନେ ବସାଇ

ଦୁର୍ଜ୍ଜୟ ଅଛଇ ହସ୍ତେ ଖଡ଼ଗ ଉଞ୍ଚାଇ ।

ସୁମର ତସ୍କର ଚୋର ଇଷ୍ଟ ଯେ ଦେବତା

ସୁମର ତସ୍କର ଚୋର ଯେହୁ ପିତାମାତା ।

ଖଡ଼ଗ ଉଞ୍ଚାଇ ସେହି ମାରିବା ସମୟେ

କୋଳକରି ଧନଞ୍ଜୟ ଧଇଲା ହୃଦୟେ ।

ଭୁଜମଧ୍ୟେ ଭିଡ଼ ତାକୁ ହୃଦରେ ଲଗାଇ

ଏମନ୍ତ ସମୟେ ଭୀମ ପ୍ରବେଶିଲା ଧାଇ ।

ଦୁର୍ଜ୍ଜୟ ବୋଇଲା ତୁ ହୋ କପାଇଁ ମାରୁତି

ଧାଇଁଅଛୁ ନ ଜାଣୁ ଏ ଦୁଷ୍ଟର ପ୍ରକୃତି ।

ଅର୍ଜ୍ଜୁନ ବୋଇଲା ଛାଡ଼ ନ କର ରେ ଗୋଳ

ଜମ୍ବବତୀର ନନ୍ଦନ ଶ୍ରୀକୃଷ୍ଣର ବାଳ ।

ଆମ୍ଭର ଆଗରେ ତୁମ୍ଭେ ଦେବ କି ରେ ଶାସ୍ତି

ବୁଝିବା ନା କଥା ଥାଉ କଚ୍ଛକାଳ ବର୍ତ୍ତି ।

ଦୁର୍ଜ୍ଜୟ ବୋଇଲା ତୁମ୍ଭେ ଅଟ ଜାରଜାତ

ତୁମ୍ଭ ପର ବୁଝିଲ କି ସମସ୍ତ ଜଗତ ।

ଗୋଳକୁଣ୍ଡା ଜାରଜାତ ତୁମ୍ଭର ପ୍ରକୃତି

ତୁମ୍ଭ ପରି ନୁହଇ ତ ଆମ୍ଭ ବଂଶ ଖ୍ୟାତି ।

ଏଡ଼େ ଦୋଷୀକୁ କପାଇଁ ନ ମାରିବୁ ରଣେ

ଲାଜ ଗୃଷ୍ଟିକଥା କହ ତୁମ୍ଭେ କି କାରଣେ ।

ତୁମ୍ଭର ବୋଲେ କି ଏହି ଚୋରର ରକ୍ଷାପାଇ

ରାଜା ଭାଇପଣେ କି ରେ ଏସନକ କହି ।

ଅର୍ଜ୍ଜୁନକୁ ପେଲିଦେଲା ଯହୁଁ ଦୁଃଶାସନ

ତାକୁ ଯାଇ ଆବୋରିଲା ପବନନନ୍ଦନ ।

ଭୀମ ହାବୁକା ଦିଅନ୍ତେ ଗାନ୍ଧାରୀର ବଳା

ଭୂମିର ଉପରେ ପଡ଼ ଅସାଷ୍ଟମ ହେଲା ।

ଭୀମକୁ ପିଟିଲା ଉଠି ପୁଣି ଗଦା ନେଇ

ରହ ରହ ବୋଲି ତାକୁ ଅର୍ଜ୍ଜୁନ ବୋଲଇ ।

ପାତିଲାକ ଭୀମସେନ ତାର ବାମଅଙ୍ଗ

ପଡ଼ଣ ସେ ଗଦାବର ହୋଇଲାକ ଭଙ୍ଗ ।

ଦୁର୍ଜ୍ଜୟ କହିଲା ମାନଗୋବିନ୍ଦ ଅଗ୍ରତେ

ପାଣ୍ଡବେ ଧଇଲେ ସେହି ଚୋରକୁ ମାରନ୍ତେ

ଭୀମ ଦୁଃଶାସନ ତହିଁ ହେଲେ ବୋଲବୋଲି

ନିରନ୍ତର ଦୁହିଙ୍କର ଲାଗଇ ତ କଳି ।

ଶୁଣିଣ ମାନଗୋବିନ୍ଦ କୋପଭର ହୋଇ

ବେଗେ ଉଠିଲା ସେ ଗଦାବରକୁ ବୁଲାଇ ।

ତୁମ୍ଭେ ଭୀଷ୍ମ ଦ୍ରୋଣ ଏଥେ ହୋଇଥାଅ ସାକ୍ଷୀ

ମୋର ଶତ୍ରୁକୁ ପାଣ୍ଡବେ କପାଁ ଗଲେ ରଖି ।

ଯାହାରେ ଦୂଷଣ ମୋତେ କଲେ ଲକ୍ଷେରାଜା

ଏ ପଞ୍ଚ ରାଜ୍ୟରେ ମୁହିଁ ପାଇଲଇଁ ଲଜ୍ଜା ।

ପଞ୍ଚଅଯୁତ ମାଇଲା ପୁଣି ମୋର ସୈନ୍ୟ

ତାହାକୁ ରଖୁଅଛନ୍ତି ପାଣ୍ଡବ ଅର୍ଜ୍ଜୁନ ।

ରତିଚୋରର ମୁଣ୍ଡ ଏବେ କାଟିବି ପ୍ରତ୍ୟକ୍ଷେ

କେ ରକ୍ଷା କରିବ ଆଜ ଭୁବନ ତ୍ରୈଲୋକ୍ୟେ

କହୁଁ କହୁଁ ଦୁର୍ଯ୍ୟୋଧନ ତହୁଁ ଅତି ରାଗେ

ଖଡ଼ଗ ବୁଲାଇ ଉଠେ ଆସ୍ଥାନରୁ ବେଗେ ।

ଯୁଧିଷ୍ଠି ବୋଇଲେ ଆରେ ବାବୁ ରହ ରହ

ବଡ଼ର ବୁଝିବା ତାହା ଆଜକ ତୁ ସହ ।

କାହାର ନନ୍ଦନ ସେହୁ କାହାକୋକେ ଜାତ

ଏକା ଜଣେ ମାଇଲା ସେ ତାର ପୁରୁଷାର୍ଥ ।

ଯାବତ ଜୀବନ ହେଲା କଳଙ୍କିତ ବଂଶ
ମନ୍ତ୍ରୀ ଅମାତ୍ୟ କପାଇଁ ଯିବେ କହ ନାଶ ।
ଭୀଷ୍ମ ଦ୍ରୋଣ ବୋଇଲେ ତୁ ଶୁଣ କୁରୁସାଇଁ
ଯୁଧିଷ୍ଠିର ଯାହା ବୋଇଲେ ସ୍ୱରୂପ ଅଟଇ ।
ଏ ଯେବେ ବୋଲୁଅଛନ୍ତି ନ ମାର ଏହାଙ୍କୁ
ବଡ଼ଲୋକ ପୁଣ ପ୍ରାୟେ ଲାଗୁଛନ୍ତି ଆମ୍ଭଙ୍କୁ ।
ନ ଜାଣି ମାଇଲେ ହିନ୍ଦ୍ର ଅଛଇ ବହୁତ
ଏହାଙ୍କୁ ନାଶ ନ କର ତୁମ୍ଭେ କୁରୁନାଥ ।
ଜଗିଆ କରି ରଖିବ ନିଆଳ ପିନ୍ଧାଇ
ବୁଦ୍ଧିବାନ ହାନିଲାଭ ଏଥିରେ କି ହୋଇ ।
ଭୀଷ୍ମ ଦ୍ରୋଣଙ୍କର ବାକ୍ୟେ ଗାନ୍ଧାରୀ ନନ୍ଦନ
ବେନି ଗୋଡ଼ରେ ନିଆଳ ଲଗାଇ ବନ୍ଧନ ।
ସହସ୍ରେକ ରଥୀ ନେଇ ତହିଁ ଜଗାଇଲା
ରାତ୍ରେ ସହସ୍ର ରାଉତ ଜଗିବେ ବୋଇଲା ।
ଯୁଧିଷ୍ଠିର ବୋଇଲେ ପାଶେ ଥାଉ ଏ ନନ୍ଦନ
ଦୁର୍ଯ୍ୟୋଧନ ଅଗ୍ରତରେ କହେ ଦୁଃଶାସନ ।
ସ୍ୱାମି ବୈରିକୁ ଆଣିଲୁ ନିଆଳ ତା ବାନ୍ଧି
ଯୁଧିଷ୍ଠିର ବୋଇଲେ ଆମ୍ଭ ପାଶେ ଥାଉ ବନ୍ଦି
ଶକୁନି ବୋଇଲା ଥାଉ ପାଣ୍ଡବଙ୍କ ତହିଁ
ପଳାଇଲେ ଭୀମାର୍ଜୁନ ପାଳଟେ ଏ ଦୁଇ ।
ମାନଗୋବିନ୍ଦ ବୋଇଲା କେମନ୍ତ ବେଭାର
ଯେ ରଖିବ ମୁହିଁ ମୁଣ୍ଡ କାଟିବି ତାହାର ।
ସେ ପାଣ୍ଡବ ହୋଇଲେଟି ଯଦି ତାର ସାହା
ଜାଣିବା ରକ୍ଷା କେମନ୍ତେ କରିବେଟି ତାହା
ମୋହର ବଇରି ଯେହୁ ପାଣ୍ଡବଙ୍କ ହିତ
ଆହେ ଭୀଷ୍ମ ଦ୍ରୋଣ ତୁମ୍ଭେ ବୁଝୁଛ କେମନ୍ତ
ଏହା ଶୁଣିଣ ବୋଇଲେ ଗଙ୍ଗାର ତନୟ
ବେଳକେ ବୁଝି କହିଲେ ଯାହା ଧର୍ମରାୟ ।
ଶୁଣି ମାନଗୋବିନ୍ଦର ତୋଷ ହେଲା ମନ
ଶାନ୍ତଚିତ୍ତେ ହେଲା ସେ ଭୀଷ୍ମଙ୍କ ବଚନ ।
ଯୁଧିଷ୍ଠିର ଦେବ ସଙ୍ଗରେ ହେନି ଚାରିଭାଇ
ଜଗି ବସିଲେ ରାତ୍ରରେ କ୍ଷୁଧା ତୃଷା ନାହିଁ ।
ଭୀମର ପାଦେ ନିଆଳ ଅଛି ଦୁଇଗୋଟି
କୋଳରେ ହେନି ଶୋଇଲେ ଆପଣେ ଯୁଧିଷ୍ଠିର
ଦୁଃଶାସନ ଜଗିଅଛି ଯୋଦ୍ଧା ସଙ୍ଗେ ହେନି
ବଳେ ଧରି ମାରିବାକୁ ପାଞ୍ଚଇ ଅଜ୍ଞାମା ।

ଗାଣ୍ଡୀବ ଧନୁ ବାସବ ନନ୍ଦନ ହସ୍ତରେ
ବାଉନ ବାଉନ ଭାର ଗଦା ଭୀମ କରେ ।
ନକୁଳ ହସ୍ତରେ ନବନଶିତ ଯେ କୁନ୍ତ
ହସ୍ତେ ଖଡ଼୍ଗ ଧରିଛି ସହଦେବ ଭ୍ରାତ ।
ଏହାଙ୍କ ପଛେ ଶିଖଣ୍ଡୀ ହେନି ଧୃଷ୍ଟଦ୍ୟୁମ୍ନ
ବେନି ଅକ୍ଷୌହିଣୀ ସଙ୍ଗେ ଦ୍ରୁପଦନନ୍ଦନ ।
ନିର୍ବନ୍ଧେ ଜଗିଅଛନ୍ତି ଲକ୍ଷେପୁର କରି
ବଳେ ଧରି ବୈରିକୁ ଯେ ମାରିବା ଭରଷାରେ ।
କାଉଁରି କେଶର ରାଜା ନାମ କାଶୀପତି
ମାନଅର୍ଜୁନ ଦେଶର ରାଜା ଗଜପତି ।
ଏତେକ ହେନିଣ ଭୀମସେନ ତହିଁ ଯାଇ
ଦୁଃଶାସନ ଗଲା ତହିଁ ଉଚ୍ଚବାଚ ହୋଇ ।
ଭୀମସେନ ବୋଇଲା ରେ ଶୁଣ ଦୁଃଶାସନ
ଯୋଦରେ କମ୍ପାଇଆମ୍ଭେ ହେବାଅନ୍ୟୋଅନ୍ୟ
କରେ ଗଦାବର ଧରି ଗଲା ମହାବଳୀ
ଶାମ୍ବକୁମର ଗୋଡ଼ରୁ ଫେଡ଼ିଲା ନିଆଳ ।
ଦୁର୍ଜ୍ଜୟ ଯେ ଦୁଃଶାସନ ଦେଖି ତାହା ଦୂରେ
ପାଣ୍ଡବଙ୍କୁ ମାର ବୋଲି ଶୁଭେ ଉଚ୍ଚସ୍ୱରେ ।
ଦୁର୍ଯ୍ୟୋଧନ ଧାଇଁ ସଙ୍ଗେ ସତାଣୋଇ ଭାଇ
ଅନେକ ଅଛନ୍ତି ରଥ ଗଜ ସଜ ହୋଇ ।
ଶ୍ରୀହସ୍ତରେ ଗଦା ହେନି ବଜ୍ରଯ୍ୱ ପାବନି
ଦୁଃଶାସନ ଆଗେ ମିଳି କରେ ସିଂହଧ୍ୱନି ।
ଆରେ ଆରେ ବୋଲି ଉଠେ କଉରବ ଉଠି
ଅର୍ଜ୍ଜୁନ ନକୁଳ ସହଦେବକୁ ଯେ ଭେଟି ।
ସମ୍ପୂର୍ଣ୍ଣରେ ଅନ୍ଧ ହୋଇ ଅଛଇ ରଜନୀ
କୁରୁ ପାଣ୍ଡବ ସମର କଲେ ଶସ୍ତ୍ର ହେନି ।
ରଥପରେ ଚଢ଼ି ଶଲ୍ୟ ଶକୁନି ଯେ କର୍ଣ୍ଣ
ଆବୋରିଲେ ବେଗେ ଯାଇ ପାଣ୍ଡବ ଅର୍ଜ୍ଜୁନ
କରେ ଧନୁ ଧରି ସେହୁ ମହାବଳୀ କର୍ଣ୍ଣ
ନାରାଚମାନ ପୁରାଇ ବନ୍ଧଇ ବନ୍ଧନ ।
ଦେଖିଣ ପାଣ୍ଡବମାନେ ହୋଇଲେକ ଆଗ
କର୍ଣ୍ଣ ଡାକିଲେ ରେ ପୂର୍ବକଥା ଗୁଡ଼ ବେଗ ।
ଡାକଡାକ ପଞ୍ଚବାଣ ବନ୍ଧିଲେ ରାଧେୟ
ଅର୍ଜ୍ଜୁନ ଡାକିଲେ ସାକ୍ଷୀ ଥାଅ ହେ ଗାଙ୍ଗେୟ
ପଛେ ଯେ ଆମ୍ଭଙ୍କୁ ତୁମ୍ଭେ ଅଖ୍ୟାତି ନଦେବା
ଏହାଙ୍କର ବାଣ ଆମ୍ଭେ କେତେହେଁ ସହିବା ।

ଦ୍ରୋଣ ବୋଇଲେ ସହ୍ବ ତୁମ୍ଭେ ଫାଲଗୁନ
ସେମାନେ ତ ସର୍ବେ ମୂର୍ଖ ତୁମ୍ଭେ ମହାଜ୍ଞାନୀ
ଏସନ ବୋଇଲେ ଗୁରୁ ସହି ତ ନ ପାରି
କହିଣ ବାଣ ବିନ୍ଧିଲେ ସେ ଗାଣ୍ଡୀବଧାରୀ ।
କର୍ଣ୍ଣ ଉପରକୁ କଲେ ନାରାଚ ଆଧାନ
ଲାଗିଲା ଉଭୟବଳ ସଂଗ୍ରାମ ସମାନ ।
ଉତ୍ତରେ ସେ କଉରବେ ଦକ୍ଷିଣେ ପାଣ୍ଡବେ
ମହାଗୋଳ ଶୁଭିଲାକ ସଂଗ୍ରାମ ସମ୍ଭବେ ।
ବିଶେଷ ଅନ୍ଧାର ମହାନିଶୀଥ ଅଟଇ
ଗଜମୂର୍ଖ କଉରବେ ବଳ ବୁଦ୍ଧି ନାହିଁ ।
ବୃକୋଦର ମୂରତିକୁ ଦେଖିଲେ ଯେବେଳେ
କେହି ଆବୋର ଆଗରେ ରହି ନ ପାରିଲେ
ନିର୍ଦ୍ଦୟ ପାଣ୍ଡବ ପରାପର ଜ୍ଞାନ ନାହିଁ
ଭାବ ଅଭାବ ସେ ପୁଣି କିଛି ନ ଜଣାଇ ।
ନିର୍ଦ୍ଦୟ ନିରପେକ୍ଷ ସେ ନିରାକୁଳ ବୁଦ୍ଧି
ପ୍ରୀତି ଅପ୍ରୀତି ନ ଜାଣେ ଜାଣେ ସର୍ବଛେଦ
ସଂଗ୍ରାମେ ପଶିଲା ସହୁଁ ବୀର ବୃକୋଦର
ବାଉନ ବାଉନ ଭାର ଗଦା ଘେନି କର ।
କାଳଦଣ୍ଡ ଘେନି ବିଜେ ଯେହ୍ନେ କାଳଯମ
ଆଗେ ରହିବାକୁ କେହି ନୋହିଲେ ସକ୍ଷମ
ତାମ୍ର ଗିରିବର ପ୍ରାୟେ ଦିଶଇ ତା କାୟ
ଦୁଇଚକ୍ଷୁ ଦିଶେ ତାର ଚନ୍ଦ୍ର ସୂର୍ଯ୍ୟ ପ୍ରାୟ ।
ଡାକହାକ ଶବଦରେ ବୃକୋଦର ଉଠି
ଗଦା ବୁଲାଇ ରାଜାଙ୍କ ଶିରେ ନେଇ ପିଟି ।
ଶୁଭଇ ଝମକ ବୀରତୂର ବୀର ଡୋଲ
ସଂଗ୍ରାମ ଦେଖି ଭୀମର ଶରୀର ପ୍ରଫୁଲ୍ଲ ।
ମାଇଲା ଅନେକ ସୈନ୍ୟବଳ ବୀର ରୋଷେ
ହୃଦୟରେ ରାଗ ଧରିଅଛି ଗତଦୋଷେ ।
ରଥ ଗଜ ଅଶ୍ବ ରଥୀ ଯୋଦ୍ଧା ମହାରଥା
ସଂଗ୍ରାମ ମଣ୍ଡଳେ କେହି ନୋହିଲେ ଶକତା ।
ଗୁଣଘୋଷ ଶୁଭିବାରୁ ଦେହ ରୋମାଞ୍ଚଇ
କାହାକୁ ସେ ତାହା ଠାରୁଁ ବଡ଼ ନ ଦେଖଇ
ମର୍ମ ବଚନ କର୍ତ୍ତବ୍ୟକର୍ମ ତାର ସାର
ରଣରଙ୍ଗୀ ତାର ମୁଖେ କେ ମିଳିବ ସ୍ଥିର ।
ଯେସନେ କଦଳୀବନ ଭଙ୍ଗେ ବାତଘାତେ
ନାରଖାର ଦିଶିଲେ ସେ ଗଜ ଅଶ୍ବରଥେ ।

କେତେ ରଥୀ ମାରି ବୀର ସବୁ କଲା ଚୂନା
ରଣଗୋଳ କରଇ ସେ ଭୀମ ମହାମନା ।
ବଦନ୍ତି ଅଗସ୍ତି ମୁନି ହେ ମନୁ ନୃପତି
ଶୁଣ ସାବଧାନେ ଭୀମସେନର ସେ ଖ୍ୟାତି ।
ଆରେଆରେ ବୋଲି କୋପେଧାଇଁ ଭୀମସେନ
ପଶି ରଣରଙ୍ଗେ ଥାଟ କରଇ ମନ୍ଥନ ।
ବାଉନ ବାଉନ ଭାର ଗଦା ଅଛି ଘେନି
ଘୋଟିଲା ସେ ବୃକୋଦର କୌରବ ସଇନି ।
କର୍ମିଲେକ ରଡ଼ି ନାଦଘାତେ ଦିଗପାଳେ
ନିର୍ଘାତ ଶବଦ ଶୁଭେ ଗଗନମଣ୍ଡଳେ ।
ରଥେ ରଥ ଅଶ୍ବେ ଅଶ୍ବ ଗଜେ ପିଟେ ଗଜ
ଆଠସହସ୍ର ନୃପତି ଘେନି ମହାରାଜ ।
ଦୁଃଶାସନ ସଙ୍ଗତରେ ତେରସସ୍ର ରଥୀ
ମାନଗୋବିନ୍ଦ ପ୍ରତିଜ୍ଞା କରେ ଅପ୍ରମିତି ।
ବାଜିଲ କୁରୁ ପାଣ୍ଡବ ମଧ୍ୟେ ରଣଗୋଳ
ଯେ ଯାହା ବାହନ ଘେନି ଧାମନ୍ତି ସକଳ ।
ମତ୍ତହସ୍ତୀମାନଙ୍କୁ ଯେ ଅଙ୍କୁଶରେ ବିନ୍ଧି
ହସ୍ତୀର ଉପରେ ବସି ଶରମାନ ସନ୍ଧି ।
କା ହସ୍ତେ ଲାଙ୍ଗିଆ କାହା ହସ୍ତେ କରବାଳ
ବୁଲାନ୍ତେ ଝଟକେ ଯେହ୍ନେ ବିଜୁଳିର ମାଳ ।
ରଡ଼ି ଶବଦେ କମ୍ପନ୍ତି ସକଳ ଅମର
ଦଲଦଲ ହୋଇ ପୃଥ୍ବୀ କମ୍ପେ ଥରହର ।
ଦେଖିଣ ସାନନ୍ଦ ବୀରବର ଯେ ପାବନ
କୁହଳ ଚନ୍ଦ୍ରକୁ ଜିଣି ବୁଲେ ଚକ୍ଷୁଦ୍ବୟ ।
ବାଉନ ବାଉନ ଭାର ଗଦା ଅନ୍ତରାଳେ
ବୁଲାଇ ମାଇଲା ସୈନ୍ୟ ଭୀମସେନ ରୋଳେ ।
ଶାମ୍ବକୁମର ନିମନ୍ତେ ଯୁଦ୍ଧ ଘୋରତୋର
ସନ୍ତାଣୋଇ ଭାଇ ଘେନି ଦୁଃଶା ଆଗଭର ।
ଲକ୍ଷେ ସୈନ୍ୟ ଘେନି ଆସେ ରକ୍ଷ ଅଳମ୍ବୁଷ
ବ୍ୟାଘ୍ର ବାହନ ଖାଙ୍କର ରୁକ୍ଷ ଊର୍ଦ୍ଧ୍ବ କେଶ ।
ବ୍ୟାଘ୍ରଚର୍ମ ପରିଧାନ ଟୋପର କାଛେଟି
ଦକ୍ଷିଣ କରେ ମୁଷଳ ବାମକରେ ଯଷ୍ଟି ।
ବେନି ଅଯୁତ ଯୋଦ୍ଧାଙ୍କୁ ଘେନି ଦୁଃଶାସନ
ଭୀମ ସନ୍ନିଧିରେ କୋପେ ମିଳିଲା ବହନ ।
ଦୁଃଶା ପ୍ରଶଂସା କରଇ ଧନ୍ୟ ଆଜ ଦିନ
ଶ୍ବେତର ନିମନ୍ତେ ପାଣ୍ଡବେ ହୋଇଲେ ନିଧନ

କହୁଁ କହୁଁ ଦୁଃଶାସନ କୋପରେ ପ୍ରଜ୍ୱଳି
ବଜ୍ର ସମାନ ସେ ଗଦା ଟେକିଲେ ମହାବଳୀ
ରେରେକାର କରି ଦୁଃଶାସନ ଉଠେ ଗର୍ଜି
ଗାନ୍ଧାରୀ ନନ୍ଦନ ଦେଖି ଉଠିଲେକ ତେଜି ।
ସମରେ ପ୍ରତିଜ୍ଞା ଦୁଃଶା କରଇ ଯେ ରୋଷେ
ଭୀମ ରଡ଼ି ଶବ୍ଦେ ସୈନ୍ୟ ଭାଗିଁ ଦଶଦିଶେ ।
କୁରୁବଳଙ୍କୁ ପ୍ରହାର କରଇ ପାବନି
ଅଳମ୍ବୁଷ ଉଭାଇଲା ବହୁସୈନ୍ୟ ଘେନି ।
ଦୁର୍ଯ୍ୟୋଧନ ଅଳମ୍ବୁଷ କରନ୍ତି ଯେ ଗୋଳ
ଦେଖି ସାନନ୍ଦ ପାଣ୍ଡବକୁଳ ମହାମଲ୍ଲ ।
ଗଦାକୁ ପିଟିଲା ନେଇ ରଥର ଉପରେ
ରଥ ଚୂର୍ଣ୍ଣ ହେଲା ତାର ସେ ଗଦା ଘାତରେ
ମହାଘୋର ସଂଗ୍ରାମରେ ମାରୁତି ଅଭୟ
କନକଗିରି ସମାନ ଦିଶଇ କାୟ ।
ଚନ୍ଦ୍ରର କିରଣ ଜିଣି ବଦନ ଶୋଭଇ
ବକପକ୍ଷୀ ଯେହ୍ନେ ପୁଣି ଶ୍ୟାମଳେ ଧାମଇଁ ।
ଅଳମ୍ବୁଷ ଦେଖି ତେହ୍ନେ ଧାଏଁ ବୃକୋଦର
ପର୍ବତ ପରାୟ ଦିଶେ ଶରୀର ତାହାର
ମାରୁତିକି ଦେଖି ଥାଟ ବଳ ରାକ୍ଷସର
ଶତେସ୍ତର କରି ତାକୁ ବେଢ଼ିଲେ ସତ୍ୱର ।
ଶତେ ଶତେ ଭାର ବେନି ଗଦା ଅଛି ହସ୍ତେ
ଗିରିବର ସଦୃଶେ ସେ ଦିଶନ୍ତି ଦୁରନ୍ତେ ।
ଏକ ପାଣ୍ଡବକୁ ବେଢ଼ିଗଲେ ସସ୍ତ୍ରଯୋଦ୍ଧୀ
ସମସ୍ତେ ନାରାଚ ଧରି ଏକମୁଖେ ବିନ୍ଧି ।
କକଡ଼ା ମାସରେ ଯେହ୍ନେ କରେ ଜଳବୃଷ୍ଟି
ଉତପାତ ହେଲା ପ୍ରାୟ ଦିଶେ ନବସୃଷ୍ଟି ।
ସୈନ୍ୟ ପଳାଇବା ଦେଖି ବୀର ଭୀମସେନ
ବେଳୁବେଳ ପ୍ରତିଜ୍ଞା ସେ କରି ଧାଏଁ ପୁଣ ।
ଗଦା ମୁଦ୍‌ଗର ଅସିପରି ଘେନି ପିଟି
ଆରେ ରେ ବୋଲି ଅସୁରବଳ ଗଲେ ଘୋଟି
ଏକା ଭୀମକୁ ଅସୁରେ ଘେରି କୁନ୍ତଧର
ଭୀମସେନର ଉପରେ କଲେକ ପ୍ରହାର ।
ଦେଖିଣ ମାରୁତି ହେଲା ବାମଅଙ୍ଗ ପାତି
ପଡ଼ି ଅଙ୍ଗେ ଚୂରି ହେଲା କୁନ୍ତ ଯେ ଶକତି ।
ଗଜ ଯୋଦ୍ଧାଏ ମାରନ୍ତି ଘେନି କୁନ୍ତ ସାଠି
ଉଫୁଡ଼ି ପଡ଼ଇ ଅସ୍ତ୍ର ଅଙ୍ଗରେ ନ କାଟି ।

ଲେଉଟି ଧାମଇଁ ସେହି ପାଣ୍ଡବ ସୁନ୍ଦର
ଗଦା ପ୍ରହାରିଲା ଦୈତ୍ୟ ସୈନ୍ୟଙ୍କ ଉପର ।
ଏହା ପ୍ରହାରକୁ କେହି ନ ପାଇଲେ ମେଣ୍ଟି
ରଥୀଯୋଦ୍ଧାପାଇକେ ଯେ ଗଣ୍ଡା ହୋଇ ଉଠି
ରକତରେ ବିଲେପନ ତାର ସର୍ବ ଅଙ୍ଗ
ହିରଣ୍ୟ ବିଦାରିକାଳେ ଯେହ୍ନେ ନରସିଂହ ।
ଦେବେ ହାସିଲେ କୃତାନ୍ତରୂପ ତାର ଦେଖି
ପଳାନ୍ତି ରାକ୍ଷସେ ଭୟେ ସମର ଉପେକ୍ଷି ।
ପଳାନ୍ତି ଯେ ରଥ ଗଜ ଅଶ୍ୱ ଅସମ୍ଭାଳେ
ରହି ନ ପାରନ୍ତି ଭୀମ ଆଗେ ମହୀପାଳେ ।
ପଳାନ୍ତି କେହି ପୁଣି ନ ଗୃହାନ୍ତି ଲେଉଟି
ପଛରେ ଗୋଡ଼ାଇ ଭୀମସେନ ଯାଏ ପିଟି ।
ପଳାଇଲେ ସୈନ୍ୟମାନେ ଛିନ୍ନଛନ ହୋଇ
ଥାଟ ଭଗ୍ନ ଦେଖି ମାନଗୋବନ୍ଦ ଉଠଇ ।
ଜରାସନ୍ଧ ମୂଳେ ଥିଲେ ଯେତେ ମହାଯୋଦ୍ଧୀ
ଆରେ ରେ ବୋଲି ଆକର୍ଷି ଶରସନ୍ଧି ବିନ୍ଧି ।
ଜରାସନ୍ଧ ନୃପତିକୁ ଦେଖି ବୀରପାର୍ଥ
ହାବୋଡ଼ା ଶରେ ମାଇଲା ବାଣ ବଜ୍ର ଘାତ ।
ହସ୍ତୀର ଶତାରେ ଛଇଘୁଣ୍ଡେ ଗଲା ଗଳି
ଘାଏ ମତ୍ତଗଜ ତଳେ ପଡ଼ିଲେକ ଢଳି ।
ପାଦଗାମୀ ହେଲା ସେହି ମଗଧ ନୃବର
ଲୁହାର ଧନୁଏ ଧରିଅଛି ବାମକର ।
ପୁଣି ଅର୍ଜ୍ଜୁନ ହାଣିଲା ବାଣେକ ଭୁରିତେ
ପଡ଼ିଲେ ସୈନ୍ୟ ତାହାର ଅଶ୍ୱ ଗଜ ରଥେ ।
ନକୁଳର କୁନ୍ତଘାତେ ସୈନ୍ୟ ଗଲେ ଲେଟି
ସହଦେବ ଶରଘାତେ ମଲେ କୋଟି କୋଟି ।
ସମରେ ପଡ଼ିଲେ ସହୁଁ ଅନେକ ସଇନ୍ୟ
ଭୀମର କୋପେ ମେଦିନୀ କମ୍ପେ ଘନ ଘନ ।
ରାଜାଙ୍କ କୋପରେ ଭୀମ ପ୍ରତିଜ୍ଞା ବଢ଼ଇ
ବାଉନ ବାଉନ ଭାର ଗଦାକୁ ବୁଲାଇ ।
ନରକୁଳ ନରପେକ୍ଷ ନିର୍ଦ୍ଦୟ ସେ ଯୋଦ୍ଧୀ
ସଂଗ୍ରାମରେ ଦୟା ନାହିଁ ପକାଇଲା ଛେଦି ।
ସମର ମଧ୍ୟରେ ଡାକ ଦିଏ ବୃକୋଦର
ଦୁଇକରେ ଦୁଇ ଗଦା ଧରି ଚତୁପର ।
ଗୁରୁତର ସଂଗ୍ରାମ ସେ ନ ଯାଇ କଳନା
ଅଜେୟ ଅଟେ ପାଣ୍ଡବକୁଳ ମହାରଣା ।

ଚାଳିଶ ସହସ୍ର ରାଜା ଦୁର୍ଯ୍ୟୋଧନ କଟକ
ଦଶସହସ୍ର ଯୋଦ୍ଧାଙ୍କୁ ମାଇଲା ମାରୁତି ।
ରତ୍ନଭାନୁ ନାମେ ଏକ ଦୁର୍ଯ୍ୟୋଧନ ଶଳା
ଦକ୍ଷିଣ ଦିଗ ନୃପତି ଲକ୍ଷଣା ମଉଳା ।
ଗୁରୁତର ସଂଗ୍ରାମରେ ନ ଯାଇ ଗଣନା
ଦକ୍ଷିଣ ଦିଗେ ଅଛଇ ଅଳମ୍ବୁଷ ରଣା ।
ସେ ଦୁହେଁ ପଡ଼ିଲେ ଘୋର ଯୁଦ୍ଧେ ରଣରଙ୍ଗେ
ତିନିସହସ୍ର ପଡ଼ିଲେ ରାଜା ତାଙ୍କ ସଙ୍ଗେ ।
ବିଷାଦ ମାନିଗୋବିନ୍ଦ ସୈନ୍ୟ ନଷ୍ଟ ଦେଖି
ତହୁଁ ରାଜାମାନେ ଗଲେ ସମର ଉପେକ୍ଷି ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଅପ୍ରମିତ ମୃତପିଣ୍ଡ ତହିଁ ପଡ଼ିଛନ୍ତି ।
ସଂଗ୍ରାମ ମାଇଲା ବୀରବର ଯେ ପାବନି
ଅନେକ ଯେ ରଥ ଗଜ ଅନେକ ସଇନି ।
କାଳନ୍ଦୀ ଦେଶର ରାଜା ନାମ କାଳନେମି
ତା ସଙ୍ଗେ ପଡ଼ିଲେ ନବସହସ୍ର ସଇନି ।
ଚନ୍ଦ୍ରପୁର ଦେଶର ସେ ବିଡ଼ାଳେଶ ରାୟ
ତାହାଙ୍କୁ ସଂଗ୍ରାମେ କ୍ଷୟ କଲେ ଧନଞ୍ଜୟ ।
ତାହାର ଭୁଲେ ପଡ଼ିଲେ ବହୁତର ରଥୀ
ଦୁଇ ସହସ୍ର ଯେ ରଥ ଚାରିଶ ପଦାତି ।
କାଉଁଶୀ ଦେଶର ରାଜା କାମପାଳ ରାୟେ
ଦୁଇସହସ୍ର ପଡ଼ିଲେ ନକୁଳର ଘାୟେ ।
ରଜନୀ ପ୍ରଭାତେ ଭୀଷ୍ମ ଦ୍ରୋଣ ଭୂରିଶ୍ରବା
ଶଲ୍ୟ ବାହ୍ଲିକ ବସିଲେ କରି ଯାଇଁ ସଭା ।
ଭଗ୍ନବଳ ଘେନି ତହୁଁ ଗଲା ବୀର କର୍ଣ୍ଣ
ଆଦିତ୍ୟ ଦେବତା ହେଲେ ଉଦୟ ଗଗନ ।
ଦୁର୍ଯ୍ୟୋଧନ ବୋଲେ ଭୀଷ୍ମ ଦ୍ରୋଣ ମୁଖ ଚାହିଁ
ମହାଭାରତ ଯୁଦ୍ଧହିଁ ଆଜ ଏଥେ ହୋଇ ।
ଧନୁ ଶରମାନ ସଞ୍ଚ ଭାରତ ଯୁଦ୍ଧକୁ
ଗାନ୍ଧାରୀର ଶତପୁତ୍ର ଏକଇ ଭୀମକୁ ।
ସମର ଦୁର୍ବାର ଦେଖି ନ ପଶିଲ ରଣେ
ଆବର ଜୀବନ ଥିବ କଂଭୁତ କାରଣେ ।
ସାଜ ସଜ ସମଦଣ୍ଡ ରଥ ଗଜ ସୈନ୍ୟ
ଆଜ ମାରିବଇଁ ମୁହିଁ ପାଣ୍ଡବ ଅର୍ଜ୍ଜୁନ ।
ରାଜାଙ୍କର ସଜ ଦେଖି ଭରଦ୍ୱାଜ ସୁତ
ଦ୍ରୋଣଗୁରୁ ସଜ କଲେ ଆପଣାର ରଥ ।
ଅଶ୍ୱତ୍ଥାମା କୃପରଥ ସାଜଣ ଧାମନ୍ତ
ଏ ତିନିହେଁ ଏକ ହେଲେ ନ କରନ୍ତି ଭ୍ରାନ୍ତି ।
ଯକ୍ଷ ଗନ୍ଧର୍ବ କିନ୍ନର ନୁହନ୍ତି ଯେ ସରି
ସଂଗ୍ରାମ ମଧ୍ୟରେ ଯେବେ ଥିବେ ଧନୁ ଧରି ।
କୃପ ଅଶ୍ୱତ୍ଥାମା ବେନି ମଉଳା ଭଣଜା
ବେନି ରଥ ଚଢ଼ି ଆସି କରନ୍ତି ପରଯା ।
ଭୀଷ୍ମ ଭୂରିଶ୍ରବା ସୋମଦତ୍ତ ରଥୀ ଶଲ୍ୟ
ଭାରତ ଯୁଦ୍ଧରେ ଏହି ଚାରି ମହାମଲ୍ଲ ।
କର୍ଣ୍ଣ ଶକୁନି ଦୁର୍ଜ୍ଜୟ ଦୁଷ୍ଟ ଦୁଃଶାସନ
ସଙ୍ଗେ ପାରିଦଣ୍ଡ ଘେନି ସମସ୍ତ ରାଜନ ।
ଏହାଙ୍କ ସଙ୍ଗେ ଅନେକ ଥାଟ ପୁଣି ଘେନି
ପାଣ୍ଡବ ମାର ଶୁଭିଲା ମହାଘୋର ଧ୍ୱନି ।
ମିଳିଲେ ସମରେ ଏକ ଏକ ହୋଇ ରୁଣ୍ଡ
ଏକ ଆରେକ ମାରନ୍ତି ଘେନି ଉଗ୍ରଦଣ୍ଡ ।
ଦେଖି ମନରେ ବିଷାଦ ପାଇଲେ ନାରଦ
ମନେ ବିଚାରନ୍ତି ମୋତେ ହେବ ଅପବାଦ ।
ମନପବନ ଦଣ୍ଡରେ ଚଢ଼ି ଶୂନ୍ୟମାର୍ଗେ
ଦ୍ୱାରକା ଭୁବନେ ଚଳିଗଲେ ଶୂନ୍ୟେ ବେଗେ
ମନୁ ପୁଚ୍ଛା କଲେ ଶୁଣ ମୁନି ମହାଜ୍ଞାତା
ଶାମ୍ବ ନିମନ୍ତେ କାହିଁକି କୃଷ୍ଣଙ୍କର ଚିନ୍ତା ।
ଶୁଣ ଆହେ ମହାରାୟେ ବଦନ୍ତି ଅଗସ୍ତି
ଦ୍ୱାରକା ଭୁବନେ ଯାତ୍ରା ଉତ୍ସବ ସଙ୍ଗତି ।
ଧନୁମାସ କୃଷ୍ଣପକ୍ଷ ପଞ୍ଚମୀର ଦିନ
ଶୁକ୍ରବାର ପୁଷ୍ୟା ଋକ୍ଷ ପୁଣି ବିଦ୍ୟମାନ ।
ବବ ନାମେ କରଣ ଯେ ବଇଧୃତି ଯୋଗ
ଦ୍ୱାରକାପୁରେ ସବୁରି ଭୁବନେ ଉତ୍ସବ ।
ଷାଠିବଂଶ ଯାଦବଙ୍କୁ ଘେନି ବାସୁଦେବ
ଅନେକ ରଥ ଯେ ଅଶ୍ୱ ସଇନି ସମ୍ଭବ ।
ଯଦୁବଂଶ ଭୋଜବଂଶ ଆଉ ବୃଷ୍ଣିବଂଶ
ହଇହୟ ଚୂହାଣ ଯେ ହରିହର ବଂଶ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ହୋଇଛନ୍ତି ବେଶ ସର୍ବେ କ୍ଷତ୍ରିୟ ବିଧାନ ।
ଜଣେ ଜଣେ ଦିଶୁଛନ୍ତି ପ୍ରଭୁ ହୃଷିକେଶୀ
ବତିଶ ସହସ୍ର କନ୍ୟା ଅଷ୍ଟ ପାଟବଂଶୀ ।
ସଭା ନ ଶୋଭଇ ମୋର କେଉଁ ପୁତ୍ର ନାହିଁ
ଶ୍ରୀକୃଷ୍ଣ ଯେ ପଚାରନ୍ତି ସେ ସଭାକୁ ଚାହିଁ ।

ସାତ୍ୟକି ବୋଇଲା ଦେବ ଶୁଣ ବାସୁଦେବ
ସମସ୍ତେ ଅଛନ୍ତି ଏକା ନାହିଁ ପୁତ୍ର ଶାମ୍ବ ।
ଜଣେ ଜଣେ ପୁରେ ପୁରେ ଯାଆନ୍ତି ଉଦେଶି
ଲୋଡ଼ନ୍ତି ଶାମ୍ବଙ୍କୁ ପୁଣି ଘରେ ଘରେ ପଶି ।
ବୋଲନ୍ତି ଶାମ୍ବଙ୍କୁ ଆମ୍ଭେ କେହି ନ ଦେଖିଲୁ
ସପତ ଦିବସ ହେଲା ଆଜକୁ ଖୋଜିଲୁ ।
ବତିଶ ସହସ୍ର ଗୃହଲକ୍ଷ ଖର୍ବ ସାହି
ଖୋଜ ଖୋଜି ନ ପାଇଲୁ କାହାପୁରେ ନାହିଁ ।
ଆପେ ନିଜେ ବିଜେ କଲେ ପ୍ରଭୁ ଚକ୍ରଧାରୀ
ରୁକ୍ମିଣୀ ସତ୍ୟଭାମାର ପୁରେ ଲୋଡ଼ିକରି ।
ବତିଶ ସହସ୍ର କନ୍ୟା ପୁର ଖୋଜିକରି
ବ୍ୟାକୁଳ ହୋଇଣ ତହୁଁ ଅଇଲେ ସେ ଫେରି
ଦେବକୀ ବସୁଦେବଙ୍କ ସମ୍ମୁଖରେ ମିଳିଲେ
ଶାମ୍ବ ମୋର କେଣେ ଗଲା ଜାଣିଛ କି ଭଲେ
ଚକ୍ରଧର ପଚାରିଲେ ରୋଷଭର ହୋଇ
ଶାମ୍ବ ମୋର କେଣେ ଗଲା ନ ଜାଣିଲେ କେହି
ତରସ ହୋଇ ଲୋଡ଼ନ୍ତି ପ୍ରଭୁ ବନମାଳୀ
ଦ୍ୱାରକାପୁରେ ପଡ଼ିଲା ବିଷମ ବୋବାଳି ।
ଧାମନ୍ତି ଯାଦବେ ଲୋଡ଼ୁଛନ୍ତି ଚଉକତି
କେହୁ ହରିନେଲା ଆମ୍ଭ ଦ୍ୱାରକା ସମ୍ପତ୍ତି ।
ଲୋଡ଼ି ନ ପାଇଲେ ଯହୁଁ ଦ୍ୱାରକା ଭୁବନେ
ଶୋକରେ ମିଳିଲେ ହରି ରାମ ସନ୍ନିଧାନେ ।
ସ୍ୱାମି ଶାମ୍ବକୁମର ତ ନାହିଁ ଦ୍ୱାରକାରେ
ଲୋଡ଼ିଲୁଣି ଆମ୍ଭେ ପୁରେ ପୁରେ ଘରେ ଘରେ
ଶ୍ରୀକୃଷ୍ଣ ମୁଖରୁ ଏସନ ବଚନ ସେ ଶୁଣି
ମୋହଯାଇ ପଡ଼ିଲେକ ଦେବ ହଳପାଣି ।
ପ୍ରଦ୍ୟୁମ୍ନଙ୍କୁ ପଚାରନ୍ତି ପ୍ରଭୁ ଜଗନ୍ନାଥେ
ସେ ତୋହର ସଖା ସଙ୍ଗେ ଥାଇ ଅବିରତେ ।
ଦଣ୍ଡେ ଛଡ଼ାଛଡ଼ି ନୁହ ତୁମ୍ଭେ ବେନିଭାଇ
ତୁମ୍ଭେ ତ ଅଛ ମୋହର ଶାମ୍ବ ଗଲା କାହିଁ ।
କରଯୋଡ଼ି ପୁଣି ତାଙ୍କୁ କହଇ ପ୍ରଦ୍ୟୁମ୍ନ
ଆଜକୁ ମୁଁ ଦେଖିନାହିଁ ହେଲା ସାତଦିନ ।
ନନ୍ଦ ବସୁଦେବ ଆଦି ସମସ୍ତେ ଅଛନ୍ତି
ପୁତ୍ରକୁ ନ ଦେଖି ମୋହଯାନ୍ତି ଜାମ୍ବବତୀ ।
ଦ୍ୱାରକାପୁର ଆକୁଳ କହି ତ କେ ପାରି
ଶୋକେ କି ଅସମ୍ଭାଳ ହେଲେ ସର୍ବ ନରନାରୀ ।

ଆରେ ଶାମ୍ବ ଶାମ୍ବ ବୋଲି ଉଚେ ଦ୍ୟନ୍ତି ଡାକ
ଏକା ଶାମ୍ବ ନାମଗୋଟି ସବୁରିଙ୍କ ମୁଖ ।
ଶ୍ରୀକୃଷ୍ଣ ବୋଇଲେ ଏହି ଅଦ୍ଭୁତ କାହାଣୀ
ନିର୍ଘାତ ବାଣ କେ ଶିରେ ପକାଇଲା ଆଣି ।
ଉଲ୍‌କାପାତ ଜାଣି ମୋର ଶାମ୍ବ କେଣେ ଗଲା
ଏ କଥାଗୋଟି ତ ମୋତେ ଗୋଚର ନୋହିଲା
ଏସନକ କଥା ମୁଁ ତ ଦିନେ ଶୁଣିନାହିଁ
ସମସ୍ତେ ଅଛନ୍ତି ମୋର ଶାମ୍ବ ଗଲା କାହିଁ ।
ଦ୍ୱାରକାର ପୁରଜନେ ସକଳେ ବିଷାଦ
ଏମନ୍ତ ସମୟେ ଆସି ମିଳିଲେ ନାରଦ ।
ଦଣ୍ଡ କମଣ୍ଡଳୁ ଘେନି କଷା କଉପୁନି
ମନ୍ଦିର ମଧ୍ୟରେ ବିଜେ କଲେ ବ୍ରହ୍ମମୁନି ।
ନାରଦଙ୍କୁ ଦେଖି ରାମକୃଷ୍ଣ ଭାଇ ବେନି
ମୂର୍ଚ୍ଛାଗତ ହୋଇ ଦୁହେଁ ପଡ଼ିଲେ ଅବନୀ
ଅନେକ ବିଷାଦ ପାଇଲେକ ବେନି ଭାଇ
ରୋଦନ କରିବାଯୋଗୁ ବାକ୍ୟ ନ ସ୍ଫୁରଇ ।
ନାରଦ କହିଲେ ଭୁ ହୋ ଶୁଣ ଉଗ୍ରସେନ
ନିର୍ଭୟ ଅଟଇ ତୋର ଦ୍ୱାରକା ଭୁବନ ।
ଯେବଣ ପୁରରେ ପଶି ନ ପାରଇ ଯମ
ଅରୋଗ ଅକ୍ଳେଶ ସର୍ବେ ପୁଣ୍ୟବନ୍ତ ଜନ ।
ନାରଦ ବାକ୍ୟେ ବୋଲନ୍ତି ରାଜା ଉଗ୍ରସେନ
କେଣେ ଗଲା ଆମ୍ଭ ଶାମ୍ବ କୃଷ୍ଣର ନନ୍ଦନ ।
ନାରଦ ବୋଲନ୍ତି ଶୁଣ ରାଜା ଉଗ୍ରସେନ
ଦୁଷ୍ଟ ଦାନବ ବଇରି ଅଟେ ଭଗବାନ ।
ସଦାଦିନେ ନାରାୟଣ ଦାନବ ବଇରି
ମାୟାକୁ ଟ କରି କେହୁ ପକାଇଛି ମାରି ।
କହନ୍ତି ସେ ନାରଦଙ୍କ ବାକ୍ୟେ ବଳଦେବ
ଦ୍ୱାରକାପୁର ଶୋଭନ ପୁତ୍ରଗୋଟି ଶାମ୍ବ ।
ଏତେ ବୋଲି ଅହାସ୍ତୁମ ହେଲେ ଦେବହଳୀ
ମୂର୍ଚ୍ଛାଯାଇ ପଡ଼ିଲେକ ପ୍ରଭୁ ବନମାଳୀ ।
ଏକକୁ ଆରେକ କେହି ନ ଦ୍ୟନ୍ତି ସମ୍ବାଦ
ଶାମ୍ବ ନାହିଁ ବୋଲି ତହିଁ ସମସ୍ତେ ବିଷାଦ ।
ନାରଦ ବୋଇଲେ ବାବୁ ଶୁଣ ପଦ୍ମନାଭ
ଦ୍ୱାରକା ପୁର ତୁମ୍ଭର ଦେବଙ୍କୁ ଦୁର୍ଲ୍ଲଭ ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୁମ୍ଭର ମହିମା
ଯମଦଣ୍ଡ ନ ଲାଗଇ ଯେଉଁ ପୁରସୀମା ।

କାଳଯବନ ଯେଉଁ ପୁରରେ ନ ପାରଇ ପଶି
ପୁତ୍ର ଗୋଟିଏ ତୋହର ହୋଇଲା କି ଦୋଷୀ
ଅଶ୍ୱତ୍ଥାମ ଚକ୍ର ଯହିଁ ବୁଲଇ ପ୍ରଚଣ୍ଡ
ମାତ୍ର ଚରଣ ପଡ଼ିଲେ ହୁଏ ନବଖଣ୍ଡ ।
ଆନ ଜନ ପଶିବାକୁ ନ ପାଇ ଭରସା
ତୁମ୍ଭେ ଜଗତ ଜନଙ୍କ ପୂରାଉଛ ଆଶା ।
ପୁତ୍ରଙ୍କର ମଧ୍ୟେ ଯେହୁ ଅଟଇ ଉତ୍ତମ
ପ୍ରଦ୍ୟୁମ୍ନ ତହୁଁ ଉତ୍ତମ ଅଟଇ ଯେ ଶାମ୍ବ ।
ସାତଦିନ ହେଲା ନାହିଁ ଅଶୋଭା ଦ୍ୱାରକା
ସମସ୍ତେ ଅଛନ୍ତି ଏଥେ ଶାମ୍ବ ନାହିଁ ଏକା ।
ଆଦ୍ୟରୁ ଶାମ୍ବର ହୀନ ପ୍ରକୃତି ଅଟଇ
ଗୁପତେ ହରି ନେଉଲା କାହାଙ୍କି ଅ ଯାଇ ।
ତେଣୁ ଅବା ନାଶଗଲା ସେଠାରେ ସେ ଜନ
ଏସନ କୃତ୍ୟ ଯେ କରେ ତା ଫଳ ତେସନ ।
ଗୋବିନ୍ଦ ବୋଇଲେ କହ କେବଣ ବୃତ୍ତାନ୍ତ
ଏ କଥାଗୋଟି ତାହାର ନାହିଁ କଦାଚିତ ।
କିଷ୍ଟୟେ ପୁତ୍ରକୁ କେହୁ ମାଇଲା ଗୁପତେ
ଶୁଣି ଶୋକଭର ହେଲେ ଦେବ ହଳହସ୍ତେ ।
ଯାଦବେ ମୋର ପୁଅକୁ ମାଇଲେ କିଷ୍ଟୟେ
ମାରିବି ମୁଁ ଯାଦବଂଶ ଆଜ ପୁତ୍ର କୋହେ ।
ହସିଲେ ରାମଙ୍କ କୋପ ଦେଖି ତପେ କୃଷ୍ଣ
ଏହିକ୍ଷଣି ଦ୍ୱାରକାରେ ଘଟିବ ଅନିଷ୍ଟ ।
ନାରଦ ବୋଇଲେ ତୁମ୍ଭେ ରହ ରହ ରାମ
ଆମ୍ଭର ମନକୁ ଆସେ ଯହିଁ ଅଛି ଶାମ୍ବ ।
ଦୁର୍ଯ୍ୟୋଧନ ନନ୍ଦିନୀର ନାମ ଚନ୍ଦ୍ରାବତୀ
ତୁମ୍ଭ ପୁତ୍ରଠାରେ ତାର ବଳିଲାକ ମତି ।
ପିତା ଲକ୍ଷେ ରଜା ଆଣି ସ୍ୱୟମ୍ବର କଲା
ସେ କନ୍ୟାର ମନକୁ ଯେ କେହି ନ ରୁଚିଲା
ଅନ୍ଧାରୀ ବଜେ କରିଣ କୁମର ଯାଆନ୍ତେ
ମେଡ଼ରେ ଥାଇ ଦେଖିଲା କନ୍ୟା ତାକୁ ନେତ୍ରେ
ରଜାକୁ ଛାଡ଼ି ଶାମ୍ବକୁ ବରିଲା ଦୁଲାଳୀ
କଣ୍ଠେ ତାର ଲମ୍ବାଇଲା ମଳା ରତ୍ନମାଳି ।
କନ୍ୟାର ପୁରେ ରହିଲା କୁମର ହରଷେ
କୁମାରୀ କହିଲା ଚାଲ ଯିବା ତୁମ୍ଭ ଦେଶେ ।
କନ୍ୟାକୁ ଘେନି ରହିଲା ନଇଲା ଦ୍ୱାରକା
ଜାଣି ଉଠିଲେ ସଂଗ୍ରାମ କଲା ପୁଣି ଏକା ।

ସୈନ୍ୟବଳ ଘେନି ତାକୁ ଦୁର୍ଜୟୁ ବେଢ଼ିଲା
ଦୁଃଶାସନହିଁ ଅନେକ ଯୁଦ୍ଧ ତହିଁ କଲା ।
ଏକ କୁମରକୁ ଦଶସହସ୍ର ଯେ ଯୋଦ୍ଧା
କୂଟ କପଟେ ପୁଅକୁ ନେଲେ ଚୋର ବାନ୍ଧ
ଦୁର୍ଯ୍ୟୋଧନ ଆଗେ ନେଇ ଶାମ୍ବକୁ ଯେ ଦେଲେ
ଶମଶାନେ ମୁଣ୍ଡ କାଟ ବୋଲି ସେ ବୋଇଲେ
ଏସନ ସମୟେ ଆମ୍ଭେ ହସ୍ତିନାରେ ଥିଲୁ
ସନ୍ଦେଶ ପାଣ୍ଡବଙ୍କର ଆଗରେ କହିଲୁ ।
ଶୁଣି ମହାକୋପ କଲେ ଭୀମ ଅରଜୁନ
ଧାଉଁକାରେ ଆବୋରିଲେ ତୋହର ନନ୍ଦନ ।
ବଡ଼ କଟାଳେ ଛଡ଼ାଇ ଆଣିଲେ ପୁଅକୁ
କୋଳକରି ଧନଞ୍ଜୟ ଧଇଲା ତାହାକୁ ।
ବନ୍ଧନ ଫେଇ ଆଣିଲେ ଛଡ଼ାଇ ତୋ ବାଳ
ଅର୍ଜ୍ଜୁନକୁ ଗଦା ଧରି ପିଟିଲା ଚଣ୍ଡାଳ ।
ଦୁଃଶାସନକୁ ପିଟିଲା ଗଦାରେ ଯେ ଭୀମ
ପଞ୍ଚ ପାଣ୍ଡବେ ଯେ ମିଳି କରନ୍ତି ସଂଗ୍ରାମ ।
ସ୍ୱୟମ୍ବର ଭାଙ୍ଗି ଦେଇ ପଳାଇଲେ ରାୟେ
ଦୁଃଶାସନ ମୋହଗଲା ଭୀମ ଗଦାଘାଏ ।
ଅର୍ଜ୍ଜୁନ ନକୁଳ ଭୀମସେନ ସହଦେବ
ଶାମ୍ବକୁମର ଆବୋରି ରହିଲେ ପାଣ୍ଡବ ।
ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନ କର୍ଣ୍ଣ ଛନ୍ତି ଘେରି
ଏସନ ଚରିତ ଦେଖି ଅଇଲୁ ହେ ହରି ।
ଶୁଣି ବଳରାମଙ୍କର ବଢ଼ିଗଲା ରାଗ
ହଳ ମୂଷଳ ବୁଲାଇ ହୋଇଲେ ସେ ଆଗ ।
ମହା ପ୍ରତିଜ୍ଞା କରିଣ ଦେବ କାମପାଳ
ସାଧୁରେ ପାଣ୍ଡବେ ତୁମ୍ଭ ଜୀବନ ସଫଳ ।
ମୋହର ପୁତ୍ର କିମନ୍ତେ ଛାଡ଼ିଲ ସୋଦର
ଶୁଝି ନ ପାରିବୁ ଆମ୍ଭେ ତୁମ୍ଭ ଉପକାର ।
ଧୃତରାଷ୍ଟ୍ର ପୁତ୍ରକୁ ମୁଁ ସମରେ ମାରିବି
ଭୀଷ୍ମ ଦ୍ରୋଣ ଆଦି ନାମ କରୁ ନ ଥୋଇବି ।
ଯୁଧିଷ୍ଠିରଙ୍କୁ କରିବଇଁ ହସ୍ତିନାରେ ନୃପ
ଅଭିଷେକ କରିବଇଁ ତାଳ ତୀର୍ଥଆପ ।
ହସ୍ତେ ଶଙ୍ଖ ଚକ୍ର ଗଦା ଶାର୍ଙ୍ଗ ଧନୁ ଧରି
ଆସ୍ଥାନୁ ଡେଇଁ ପଡ଼ିଲେ ଦେବ ଚକ୍ରଧାରୀ ।
ଶ୍ରୀମୁଖରେ ଆଜ୍ଞାଦେଲେ ଦେବ ଯେ ଅଚ୍ୟୁତ
ସଜକରି ଆଣ ମୋର ନନ୍ଦିଘୋଷ ରଥ ।

ତାହାଙ୍କୁ ବୋଲନ୍ତି ଯେ ରେବତୀର ପତି
ତାଳଧ୍ୱଜ ସଜକର ଆଣ ଯା ଝଟତି ।
ଯଦୁବଂଶ ଅଧିପତି ବୀର ଉଗ୍ରସେନ
ରଥ ସାଜଣ ବାହାର ହୋଇଲେ ପ୍ରଦ୍ୟୁମ୍ନ ।
ସାତବଂଶ ଯାଦବଙ୍କୁ ଘେନ ଦଇତ୍ୟାରି
ନନ୍ଦଘୋଷ ରଥ ମଧ୍ୟେ ଦେବ ବିଜେ କରି ।
ବାମଙ୍କରେ ସଉନନ୍ଦ ଦକ୍ଷିଣରେ ହଳ
ତାଳଧ୍ୱଜ ରଥେ ବିଜେକଲେ କାମପାଳ ।
ବାଜଇ ଦୁନ୍ଦୁଭି ବାଦ୍ୟ ସିନ୍ଧୁଘୋଷ ଜାଣି
ସାତବଂଶ ଯୋଦ୍ଧା ଘେନ ହେଲେ ଆଗୁଆଣି
ହସ୍ତିନାରାଜ୍ୟେ ଚଳନ୍ତି ସମଦଣ୍ଡ ଘେନ
ଛପନକୋଟି ଯାଦବ ଘେନନ୍ତୁ ପମଣି ।
ଦ୍ୱାରକାରୁ ବାହାରିଲେ ଯାଦବ ସଇନ୍ୟ
ଯାହା ଅନୁକୂଳ ହେନ ଶୁଭ ଯୋଗମାନ ।
ଚଳନ୍ତି ଯେ ସମଦଣ୍ଡ ସାଜ ରାମହରି
ଯଦୁବଳ ସଇନ୍ୟ କି ସମୁଦ୍ର ଲହରୀ ।
ଆକାଶ କମ୍ପିଲା ବଳରାମ ଘର୍ଘରଡ଼ି
ମେରୁଗିରି ମନ୍ଦର ବା ପଡ଼ିଲା କି ଝଡ଼ି ।
ପ୍ରଳୟକାଳେ ଯେସନେ ସିନ୍ଧୁ ଗରଜଇ
ଆଦିତ୍ୟ ଦେବତା ତେଜହୀନ ହେଲା ଗୃହିଁ ।
ନାରଦ ମୁନି ଦ୍ୱାରକା ସଇନ୍ୟଙ୍କୁ ଗୃହିଁ
ବିଚାର କଲେ ଦ୍ୱିତୀୟ ସମୁଦ୍ର କି ଏହି ।
ଦେବଙ୍କୁ ଦୁର୍ଲ୍ଲଭ ବଳଦେବଙ୍କ ମହିମା
ଦେଖିଣ ତ୍ରାସ ପାଇଲେ ସୁର ଇନ୍ଦ୍ର ବ୍ରହ୍ମା ।
କୋଟି କୋଟି ସିଂହସମ ଯାର ପରାକ୍ରମ
ଦେବାଧିଦେବଙ୍କ ପରେ ସେ ଦେବ ଉତ୍ତମ
ବଳୀୟାର ଯୋଗୁଁ ବଳ ଯାହା ନାମ ଗୋଟି
ତାହାର କୋପରେ କାହିଁ ରହିବ ଏ ସୃଷ୍ଟି ।
ସୌନନ୍ଦ ମୂଷଳ କରେ ସମର୍ଥକ ହଳ
ହୁଙ୍କାରକେ ହାସିଲେ ଯେ ଦେଖି ତାଙ୍କ ବଳ
ଆକାଶ ଭୁବନେ ତାଙ୍କୁ ଲାଗିଲାକ ଭୟ
ଆକାଶେ ଥାଇ କମ୍ପିଲେ ଦେବତା ନିଚୟ
ଜୟ ତୁ ଅନାଦି ସିଦ୍ଧ ଦେବତା ଅନନ୍ତ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାହା ରୋମେ ସ୍ଥିତ
ଅନନ୍ତ ମହିମା ଯାର ମୁଖେ ନୋହେ କହି
ଏକାଂଶ ବ୍ରହ୍ମାଣ୍ଡ ଯା ଶରୀରେ ବସଇ ।
ପୃଥ୍ୱୀ ଅପ ତେଜ ବାୟୁ ଆଉର ଆକାଶ
ପଞ୍ଚଭୂତ ମଧ୍ୟେ ତୁହି ବିଧାତା ପୁରୁଷ ।
ଶ୍ରୀ ବଳରାମ ଦେବଙ୍କ ଚରଣେ ଶରଣ
ଶାରଳା ଦାସେ ଉଚ୍ଚରି ଧରି ନାରାୟଣ ।

---

## ବଳରାମଙ୍କର ହସ୍ତିନା ତାଡ଼ନା
## ସିଂହଦ୍ୱାର ବନ୍ଦ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଯାଦବଙ୍କୁ ଘେନ ରାମ କୃଷ୍ଣ ଯଦୁପତି ।
ତାଳଧ୍ୱଜ ରଥରେ ଯେ ବିଜେ ଦେବ ହଳୀ
ମତ୍ତଭରେ ଘୂର୍ଣ୍ଣନେତ୍ର କମ୍ପେ ମହୀସ୍ଥଳୀ ।
ସମର୍ଥକ ଲଙ୍ଗଳକୁ ବୁଲାଇଣ ବଳେ
ନିଶ୍ଚେଁ ରସାଗତ ହେବ ହସ୍ତିନା ଲଙ୍ଗଳେ ।
ବଳରାମଙ୍କର କୋପ ଦେଖି ନାରାୟଣ
କହନ୍ତି ଆଗହୁଁ କପାଁ କୋପ ସଙ୍କର୍ଷଣ ।
ନ ଜାଣି ସେ ଦୁର୍ଯ୍ୟୋଧନ ଦ୍ରୋହକଲା ଅବା
ଶ୍ରୀହସ୍ତରେ ଲେଖା ଲେଖି ଆମ୍ଭେ ବରଗିବା
ତାଳପତ୍ର ଧରି ଦେବ କରନ୍ତି ଲିଖନ
ଯେଉଁ ଆଜ୍ଞାଦେଲେ ମୋତେ ଦେବ ସଙ୍କର୍ଷଣ
ଜୟ ଜୟ ଯେ ଅନନ୍ତ ଦେବ ଖାଣ୍ଡାକୃତି
ହିତକାରୀ ଯେ ଅଶେଷ ବ୍ରହ୍ମାଣ୍ଡର ପତି ।
ସନକାଦି ଋଷିଙ୍କର ଯା ପାଦେ ବନ୍ଦନ
ଦୁର୍ଲ୍ଲକ୍ଷ୍ୟ ସଂହାରକାରୀ ଦୁଷ୍ଟ ବିନାଶନ ।
ଦେବକୁଳ ରକ୍ଷଣ ଯେ ପ୍ରଳମ୍ବା ଦଳନ
ଜରାସନ୍ଧ ବିମର୍ଦ୍ଦକ ଦ୍ୱିବିଦ ସୂଦନ ।
ରୁକ୍ମୁର ଦର୍ପ ଖଣ୍ଡନ ସୂତମାନହରି
ରୋହିଣୀ ଗର୍ଭ ସମ୍ଭୂତ ଦେବ ଯୋଗେଶ୍ୱର
କୋଟି କନ୍ଦର୍ପ ଲାବଣ୍ୟ ରୂପ ମନୋରମ
ଦେବଗଣ ପାଳନ ସେ ପ୍ରଭୁ ବଳରାମ ।
ଶ୍ରୀବୃନ୍ଦାବନ ମୋହନ ଯଦୁବଂଶଚନ୍ଦ୍ର
ନିରଞ୍ଜନ ନନ୍ଦନ ଯା ପାଦ ବନ୍ଦେ ଇନ୍ଦ୍ର ।
ହସ୍ତିନା କଟକ ରାଜା ଦୁର୍ଯ୍ୟୋଧନ ତହିଁ
ଶ୍ରୀମୁଖ ଆଜ୍ଞା ଏମନ୍ତ ପଢ଼ କୁରୁସାଇଁ ।
ଶାମ୍ବ ଚନ୍ଦ୍ରାବତୀକୁ ତୁ ସଙ୍ଗତରେ ଘେନ
ଦର୍ଶନ କରିବୁ ଆସ ଆଜ୍ଞାପତ୍ର ମାନ ।

ନୋହିଲେ ତୋ ଦୁଃଶାସନ ଦୁର୍ଜ୍ଜୟ ସହିତେ
ଭୂରିଶ୍ରବା ଜୟଦ୍ରଥ ବାହ୍ଲିକାଦି ଯେତେ ।
କର୍ଣ୍ଣ ଦ୍ରୋଣ ଭୀଷ୍ମ ଶଲ୍ୟ ଶକୁନି ଆବର
ଏକାଦାଶ ଅକ୍ଷୌହିଣୀ ବଳ ଯେ ତୋହର ।
ପଞ୍ଚୋଆଶ ହୋଇ ତୁହି ସାବଧାନେ ଥିବୁ
ମୋହର ତୁଲେ ତୁ ଆସି ସମର କରିବୁ ।
ନ ଜାଣୁ ଶାମ୍ବ କୁମର କାହାର ନନ୍ଦନ
ତା ପାଦେ ଶାଙ୍କୁଳ ଦେଇ କରିଛୁ ବନ୍ଧନ ।
ଆରେ ମାନଗୋବିନ୍ଦ ତୋ ବାପ ସିନା ଅନ୍ଧ
ତୋର ବେନି ଚକ୍ଷୁ ଥାଉଁ ଲଗାଉଛୁ ଦ୍ୱନ୍ଦ୍ୱ ।
ମୋହର ପୁତ୍ରକୁ କପାଁ ଦେଉ ଏତେ କଷ୍ଟ
ପୁତ୍ର ଅଭାବେ ତୁ ନାଶ ଯିବୁ ଆରେ ଦୁଷ୍ଟ ।
ଆରେ ଦୁର୍ଯ୍ୟୋଧନ ମୁହିଁ ଏମନ୍ତ କରିବି
ହସ୍ତିନାପୁର ଲଙ୍ଗଳ ମୁନରେ ତାଡ଼ିବି ।
ମୁହିଁ ଯେ ଅଟଇ ଜାଣ ବଳେ ବଳରାମ
ମୋହର ତୁଲେ କରିବୁ ତୁହି କି ସଂଗ୍ରାମ ।
ଏମନ୍ତ କରି ଶ୍ରୀମୁଖ ଲେଖି ମୁଦଦେଲେ
ଚନ୍ଦନ କର୍ପୂର ଘୋରି ମୁଦ ବନ୍ଦ କଲେ ।
ଦୁର୍ଯ୍ୟୋଧନ ଠାବେ ଦୂତ ପେଷିବାକୁ କାହାକୁ
ବଳରାମ କହିଲେକ ଗୃହିଁ ନାରଦଙ୍କୁ ।
ଏହିକ୍ଷଣି ଯାଅ ତୁମ୍ଭେ ହସ୍ତିନାକୁ ଚଳି
ଶ୍ରୀମୁଖ ଗୋଟି ତାଙ୍କର ହସ୍ତେ ଦେଲେ ହଳୀ ।
ଶାମ୍ବ ଚନ୍ଦ୍ରବକ୍ତ୍ର ମୋତେ ସମର୍ପିଣ ଦେଉ
ନିଶ୍ଚିନ୍ତ ହୋଇ ହସ୍ତିନାପୁର ମଧ୍ୟେ ଥାଉ ।
ନ ଦେଲେ କରିବି ତାର ପୁର ନାରଖାର
ସମସ୍ତ ଜନ ତାହାର ଯିବେ ଯମପୁର ।
ଏମନ୍ତ କହି ସେ ଲେଖା ନାରଦଙ୍କୁ ଦେଇ
ମାନଗୋବିନ୍ଦଙ୍କୁ କହ ସମସ୍ତ ବୁଝାଇ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ନାରଦଙ୍କୁ ପଠିଆଇ କୃଷ୍ଣ ହଳପତି ।
ଥାଟ ଦେଖି ମନେ ମନେ ଲଭିଲେ ପ୍ରମୋଦ
ନାରଦ ଭାଳିଲେ ଏଥେଁ ପଡ଼ିବ ପ୍ରମାଦ ।
ହସ୍ତେ ବୀଣାଦଣ୍ଡ ଘେନି ବିଜେ ତପୋଧନ
ହସ୍ତିନାପୁରେ ଯାଇଣ ମିଳିଲେ ବହନ ।
ବସିଥିଲେ ରାଜା ସହ ଶଲ୍ୟ ଭୀଷ୍ମ ଦ୍ରୋଣି
ନାରଦ ମୁନିଙ୍କି ଦେଖି ଉଠିଲେ ତକ୍ଷଣି ।

ମୁନିଙ୍କର ପାଦେ ସେବା କଲେ ଦ୍ରବ୍ୟ ପୂଜା
ନାରଦ ବୋଇଲେ ତୁ ହୋ ଶୁଣ ମହାରାଜା ।
ନିଶ୍ଚିନ୍ତ ହୋଇ ବସିଛ ସଭାରେ ସମସ୍ତେ
ବଳରାମଙ୍କର କୋପ ହୋଇଲାଣି ତୋତେ
ଛପନକୋଟି ଯାଦବବଳ ସଙ୍ଗେ ଘେନି
ତୋର ପୁରକୁ ବାହିଲେ ରାମକୃଷ୍ଣ ବେନି ।
ବାବୁ ଚୋର ବୋଲି ତୁମ୍ଭେ ଧରିଛ ଯାହାକୁ
ଧର୍ମ ଉଦ୍ଧତ ହୋଇଲା ନ ମାଇଲ ତାକୁ ।
ସାଧୁ ସାଧୁ ପାଣ୍ଡବରେ ତୁମ୍ଭର ଖୀବତ
ଏହି ପଞ୍ଚକଣ୍ଠକରେ ହେବ ନରନାଥ ।
କୃଷ୍ଣ ପାଟଦେଈଶୀ ଜାମ୍ବବତୀର ଯେ ବାଳ
ନାମ ଶାମ୍ବକୁମର ଯେ ଶ୍ରୀକୃଷ୍ଣ ଦୁଲାଳ ।
କଉତୁକେ ହରିଲା ସେ ତୁମ୍ଭର ଦୁଲଣୀ
ଏଡ଼େବଡ଼ ଦ୍ୱନ୍ଦ୍ୱ ତୁମ୍ଭେ କଲ ତ ନ ଜାଣି ।
ଏବେ ବଳରାମଙ୍କର କୋପ ତ ଦୁର୍ଲ୍ଲଭ
କେବଣ ବୁଦ୍ଧିରେ ତୋର ବଂଶ ରକ୍ଷାହେବ ।
ଶ୍ରୀମୁଖ ଗୋଟିଏ ତୋତେ ଦେଇଛନ୍ତି ରାମ
ପୁତ୍ର ଦୁହିତା ଘେନି ତୁ କରିବୁ ଦର୍ଶନ ।
ଏହା ଶୁଣି କୋପ କଲା ମାନଚକ୍ରବର୍ତ୍ତୀ
ଆସ୍ଥାନ ଉପରୁ ଡେଇଁ ପଡ଼ିଲା ତଡ଼ିତ ।
ସାଜ ସମଦଣ୍ଡ ବୋଲି ଉଚ୍ଚେ କହେ ବାଣୀ
ଦ୍ୱାରକାପୁର ଥାଟକୁ ପକାଇବି ହାଣି ।
ଏବେ ସେ ଚୋର ମୁଣ୍ଡକୁ ପକାଇବି କାଟି
କୋପେ ଯହୁଁ ଆଜ୍ଞାଦେଲେ ରାଜା ଧାର୍ତ୍ତରାଷ୍ଟ୍ର
ନାରଦ ବୋଇଲେ ଶୁଣ ଆହେ କୁରୁନାଥ
ନ ଜାଣି କୋପ କପାଇଁ କରୁଛ ଅନର୍ଥ ।
ମାନଗୋବିନ୍ଦ ବୋଇଲା ଦେଖ ଏହିକ୍ଷଣି
କେମନ୍ତେ ଯୁଦ୍ଧ କରିବ ସେହି ଚକ୍ରପାଣି ।
ନିଶ୍ଚେ ପ୍ରାଣ ନାଶହୋଇ କାହ୍ନୁ ସଙ୍କର୍ଷଣ
କେ ରକ୍ଷା କରିବ ରତିଚୋର ମୁଣ୍ଡ ହାଣ ।
ଦୁଃଶାସନକୁ ବୋଇଲା ଆଣ ବାଳ ଧରି
ଆନପ୍ରାପ୍ତ ବୁଝିବାରୁ ମୁହିଁ ହେଳାକରି ।
ଏ ମୋହର ବଂଶରେ ସେ ଲଗାଇଲା କାଳି
ଏଡ଼େ ଗର୍ବ ତାର ମୋର ହରିଲା ଦୁଲାଳୀ ।
ଅଶୀ ସହସ୍ର ଯୋଦ୍ଧାଙ୍କୁ ଘେନି ଦୁଃଶାସନ
ଶାମ୍ବ କୁମରକୁ ଆସି ବେଢ଼ିଲେ ବହନ ।

ଶାମ୍ବଙ୍କୁ ବେଢ଼ିବା ଦେଖି ଆସି ପାଣ୍ଡବଭାଇ
ସେ ଯାହାର ଶସ୍ତ୍ର ଧରି ଆକ୍ରମନ୍ତି ଭୁହାଇ ।
କରନ୍ତି ପଞ୍ଚପାଣ୍ଡବେ ବେଢ଼ି ରଣଗୋଳ
ମୂର୍ଚ୍ଛଗଲେ ଶବଦ ଯେ ଶୁଭଇ ଚହଳ ।
ପଶ୍ଚିମ ମୂରଛ ହୋଇ ଦ୍ୱାରକାର ଥାଟ
ପ୍ରବେଶ ହୋଇଲେ ଯାଇ ହସ୍ତିନା ନିକଟ ।
ନାରଦ ମିଳିଲେ ରାମକୃଷ୍ଣଙ୍କର ପାଶ
ପାଣ୍ଡବ ଦୁର୍ଯ୍ୟୋଧନର ହେଲାଣି ଅମର୍ଷ ।
ବଳରାମ ବୋଇଲେ ହୋ ଶୁଣ ମଧୁହାର
ଧାଇଁ ବୋଲି ବେଗେ କୋପେ ଗଲେ ହଳଧାରୀ
ଶ୍ରୀକରେ ଶୋଭନ ହଳ ମୁଷଳ ଆୟୁଧ
କରିବେ ଦେବାଧିଦେବ ସ୍ୱାମୀ ମହାଯୁଦ୍ଧ ।
ବଳରାମଙ୍କର କୋପେ ମହାତେଜ ଜାଣି
ବ୍ରହ୍ମାଣ୍ଡ କମ୍ପୁଅଛଇ ମହାଗୋଳ ଶୁଣି ।
ପଞ୍ଚପାଣ୍ଡବ ଯେ ହୋଇଥିଲେ ଶସ୍ତ୍ରଧାରି
ଭୀଷ୍ମ ଦ୍ରୋଣ ସହିତରେ ସପ୍ତରଥୀ ଧରି ।
ପାଞ୍ଚଅର୍ବୁଦ ଘେନିଣ ମାନଚକ୍ରବର୍ତ୍ତୀ
ଭୀମଅର୍ଜୁନଙ୍କ ଭୁଲେ ସମର କରନ୍ତି ।
ନାରଦ ବୋଇଲେ ଯାଇ ଶୁଣ ବଳରାମ
ପାଣ୍ଡବଙ୍କ ଭୁଲେ କଲେ କୌରବେ ସଂଗ୍ରାମ
ବଳରାମ ବୋଇଲେ ଭୁ ଶୁଣ ଚକ୍ରଧାରୀ
ହଳମୁନେ ଟାଣିବି ମୁଁ ହସ୍ତିନା ନଗରୀ ।
ସମୁଦ୍ର ଭିତରେ ଆଣି ପକାଇବି ତାଡ଼ି
ପ୍ରତିଜ୍ଞା କରନ୍ତି ପୁଣ ପୁଣ ଆଗବଢ଼ି ।
ବ୍ରହ୍ମାଣ୍ଡ କମ୍ପିଲା ବଳରାମଙ୍କର କୋପେ
ଗଳଇ ନିପଣ୍ଡ ଝାଳ ଅତି ଗୁରୁତାପେ ।
ଭୁବନ ଦେବତା ତେଜ ନ ପାରିଲେ ସହି
କମ୍ପିଲେ ତେତିଶକୋଟି ଦେବେ ସ୍ୱର୍ଗେ ରହି
ତ୍ରୈଲୋକ୍ୟ କମ୍ପିଲା ବଳରାମ ସିଂହରଡ଼ି
କ୍ଷୀରକନ୍ଦର ପାଦପ ପଡ଼ୁଛନ୍ତି ଝଡ଼ି ।
ତ୍ରୈଲୋକ୍ୟରେ ଚକାଟିଲା ବଳରାମ କାୟ
ହିଦାଧ ରବିକୁ ଜିଣି ରାମ ତେଜୋମୟ ।
ଧବଳ ବର୍ଣ୍ଣ ବଦଳଇ ଶୋଣିତ ନୟନ
ମହାଭୟ କଲେ ଦେଖି ତ୍ରଇଲୋକ୍ୟ ଜନ ।
ସମର୍ଥକ ଲଙ୍ଗଳକୁ ଘେନି ହଳପାଣି
କୋପେ ପ୍ରଜ୍ୱଳିତ ରାମ ମହାଅଗ୍ନି ଜାଣି ।

କଉରବ ସୈନ୍ୟ ଭୟେ ପଳାଇଲେ ଦେଖି
ସରସ୍ୱତୀ ନଦୀକୂଳେ ହେଲେ ଦେଖାଦେଖି ।
ଦେଖିଣ ସେ ଅସମ୍ଭବ କଉରବ ସୈନ୍ୟ
ପୂର୍ବଦିଗରେ ରହିଲେ ଭୟେ ହୋଇ ଛନ୍ନ ।
ନାରଦ କହିଲେ ଶୁଣ ଧୃତରାଷ୍ଟ୍ର ସୁତ
ବଳରାମଙ୍କର କୋପ ତୋତେ ଅପ୍ରମିତ ।
ହୁତାଶନ ତେଜ ପ୍ରାୟ ହେଲେ ହଳପାଣି
ଅଗ୍ନିରେ ପଡ଼ନ୍ତି ଯେହ୍ନେ ପତଙ୍ଗ ନ ଜାଣି
ଶାମ୍ବ କୁମରଙ୍କୁ ଘେନ ଯୁଧିଷ୍ଠି ସହିତେ
କୃଷ୍ଣଙ୍କୁ ଯେ ଶାନ୍ତକର ଯାଇ ହୋ ସମସ୍ତେ ।
ଯୁଧିଷ୍ଠି ମିଳିଲେ ମାନଗୋବିନ୍ଦର ପାଶେ
ବାବୁ ତୈଲୋକ୍ୟ କମ୍ପିଲା ରାମ ରଢ଼ଘୋଷେ
ସକଳ ଭୁବନଯାକ କାଳାନ୍ତକ କାୟ
ବଳରାମ କୋପ କେହ୍ନେ ନ ରହିବା ରାୟ ।
ବାବୁ ତାର ପୁତ୍ର ତୋର ଦୁହିତାକୁ ଘେନ
ରାମକୃଷ୍ଣ ପାଦେ ଯାଇ କରିବା ଦଇନ୍ୟ ।
ଆମ୍ଭଙ୍କୁ ଦେଖି କରିବେ ଦେବ କୋପଶାନ୍ତ
ଆପଦ ତୋର ଖଣ୍ଡନ ହୋଇବ ନୃପତି ।
କର୍କଶ ମଧୁପିଙ୍ଗଳ ମାନଚକ୍ରବର୍ତ୍ତୀ
ମଧୁର ବଚନ ଶୁଣି ହେଲା କୋପମୂର୍ତ୍ତି ।
ଧାଇଁ ରେ ବୋଲ ବୋଇଲା କୋପେ ଦୁର୍ଯ୍ୟୋଧନ
ଆଗୁଆଣି ଥାଟେ ଅଛୁ ଭାଇ ଦୁରକର୍ଣ୍ଣ ।
ରାଜାର ବଚନେ ଗଲେ ଅଠାଣୋଇ ଭାଇ
ଭୋଜବଂଶ ଥାଟଙ୍କୁ ସେ ବେଢ଼ିଲେକ ଯାଇ
ଗଦା କୁନ୍ତ ଭଲ୍ଲ ଶସ୍ତ୍ର ଘେନ ଖଡ଼୍ଗ ଫଳା
ଗୁରୁଜ ଶକତି ଘେନ ବୀର ଅନର୍ଗଳା ।
ଏକ ପ୍ରହାରନ୍ତେ ଆଉ ଏକ ହୁଏ ଆଗ
ଅଜାୟୁଥ ଦେଖି ଯେହ୍ନେ ଧାଇଁ ମତ୍ତବ୍ୟାଘ୍ର
ଦୁର୍ଜ୍ଜୟ ସେ ଦୁଃଶାସନ ପ୍ରତିଜ୍ଞା ବୀରଧୁ
ସଂଗ୍ରାମେ ବୋଲନ୍ତି ତାକୁ ଲୋକେ ସାଧୁ ସାଧୁ
ଗଜେକ ଆରୋହି ବୀର ଦୁଃଶାସନ ଉଠି
ଉଗ୍ରସେନର ଉପରେ ଗଦା ନେଇ ପିଟି ।
ଗଦାବର ପଡ଼ନ୍ତେ ସେ ଭାଙ୍ଗିଲେ ସଇନ୍ୟ
ମୂର୍ଖରବ ଶବଦରେ ହେଲେ ଅନ୍ୟୋଅନ୍ୟ
ମହାଗୋଳ ଉପୁଜିଲା ଦୁର୍ଜ୍ଜୟ ଥାଟରେ
ପାତାଳ ଭୁବନ କମ୍ପିଗଲା ଶବଦରେ ।

ଦୁର୍ଯ୍ୟୋଧନ ଦୁଷ୍ଟପଣ ଦେଖି ହଳଧାରୀ
ମହାକୋପେ ଆସନ୍ତି ସେ ଦେବ ବିଜେକରି ।
ଆଜ ମୁଁ ହସ୍ତିନାପୁର ପକାଇବି ଛାଡ଼ି
ମରନ୍ତୁ କୌରବେ ମହାସିନ୍ଧୁ ଜଳେ ବୁଡ଼ି ।
ଏତେବୋଲି ଦେବ ହଳ ମୁଷଳକୁ ଧରି
ଅନ୍ତରୀକ୍ଷେ ବୁଲାଇଲେ ଘୂର୍ଣ୍ଣିବାତ୍ୟା ପରି ।
ମହାଭୀଷ୍ମ ତେଜୋବନ୍ତ ବିକ୍ରମ ମୂରତି
ଘୋଟିଛି ସେ ତେଜଗୋଟି ଅନ୍ତରୀକ୍ଷ କ୍ଷିତି ।
ପ୍ରହାରିଲେ ହଳକୁ ସେ ପୃଥିବୀ ଉପରେ
ମେରୁ ଆସି ପଡ଼ିଲା କି ବସୁନ୍ଧରା ଶିରେ ।
ଫାଟିଲା ସେ ବସୁନ୍ଧରା ହଳମୁନେ ଫୁଟି
ଶ୍ରୀନୃସିଂହ ଅବତାର ବଳରାମ ଗୋଟି ।
ପଞ୍ଚବିଂଶ ଯୋଜନ ସେ ହସ୍ତିନାର ସ୍ଥଳୀ
ହଳମୁନେ ବଳରାମ ଧରିଲେକ ତୋଳି ।
କମ୍ପିତ ମାତ୍ରେ ଧରିଲେ ତାକୁ ହଳ ଆଗେ
ପୃଥିବୀରେ ବୁଲାନ୍ତି ସେ ଅନ୍ତରୀକ୍ଷ ମାର୍ଗେ
ଦେଖିଣ ବିଷାଦ ହେଲେ ସ୍ୱର୍ଗେ ବୃନ୍ଦାରକେ
ରଖ ରଖ ବୋଲି ଡାକଦ୍ୟନ୍ତି ଏକେ ଏକେ
ତ୍ରିଭୁବନେ ଲାଗିଲା ରାମଙ୍କର ତ୍ରାସ
କେହି ଆଗହୋଇ ଯିବ ସଙ୍କର୍ଷଣ ପାଶ ।
ଯାହାର କୋପିଲେ କମ୍ପମାନ ପଦ୍ମଯୋନି
ତ୍ରାସେ ଘୁଞ୍ଚି ପଳାଇଲେ ସୁରସିଦ୍ଧ ମୁନି ।
ତ୍ରୈଲୋକ୍ୟ କମ୍ପେ କୋପନ୍ତେ ଏକା ସଙ୍କର୍ଷଣ
ଅନ୍ତରୀକ୍ଷେ ବୁଲାଇଲେ ହସ୍ତିନା ଭୁବନ ।
ବ୍ରହ୍ମାଙ୍କ ଆଗେ କହନ୍ତି ବିହନ୍ତା ପୁରୁଷ
ହସ୍ତିନା ଭୁବନ ଗଲା ରାମ କୋପେ ନାଶ ।
ଏହାଶୁଣି ପିତାମହ ମରାଳ ବାହନେ
ବ୍ରହ୍ମଲୋକ ଦେବ ସଙ୍ଗେ ବିଜେ ଅନ୍ତର୍ଦ୍ଧାନେ
ଦେଖିଲେ ଯେସନେ ହଳମୁନେ ଲାଗେ ମାଟି
ତେସନେ ଦିଶେ ହସ୍ତିନା ରାଜ୍ୟ ସମଗ୍ରଟି ।
ପୃଥ୍ୱୀ ମଧ୍ୟେ ସାର ଅଟେ ଯେବଣ ଭୁବନ
ଅନିମିତ୍ତେ ଜଳ ମଧ୍ୟେ ହୋଇବ ନିମଗ୍ନ ।
ତ୍ରିଭୁବନ ମଧ୍ୟରେ ହେଲା ଉତପାତ
ଅଗାଧ ଜଳେ ଯେସନେ ଲହରୀର ଜାତ ।
ଏକକାଳେ ଘୋଟିଲାକ ସପ୍ତଦ୍ୱୀପା ପୃଥ୍ୱୀ
ଦେଖି ଭୟ କଲେ ଭୀଷ୍ମ ଦ୍ରୋଣ ସେନାପତି

ହଳଅଗ୍ରେ ଥାଇ ସର୍ବେ ଦେଉଛନ୍ତି ଡାକ
ହେ ଦେବ କାମପାଳ ତୁ ହସ୍ତିନାକୁ ରଖ ।
ନ ଶୁଣନ୍ତି ହଳଧର କୌରବଙ୍କ ବାଣୀ
ଦକ୍ଷିଣକୁ ଗଡ଼କରି ବୁଲାନ୍ତି ସେ ପୁଣି ।
ଦିଗମ୍ବର ପୁରୁଷ ଯେ ରୁଦ୍ର ଅନ୍ତରୀକ୍ଷେ
ଦେଖନ୍ତି ସେ ନୀଳାମ୍ବର ମୂର୍ତ୍ତିକୁ ପ୍ରତ୍ୟକ୍ଷେ
ଗଳାରେ କୁଠାର ଦନ୍ତେ ତୃଣ ଲଗାଇ
ସଞ୍ଜୟ ବିଦୁର ଦୁହେଁ ପ୍ରଣମିତ ଶୋଇ ।
ଦୁଃଶାସନ ଆଦି ଘେନି ଅନେଶ୍ୱତ ସେନ
ମାନଗୋବିନ୍ଦ କରଇ ଅନେକ ଦଇନ୍ୟ ।
ତୁ ଦେବ ଅନନ୍ତରୂପୀ ସଂସାରେ ପ୍ରସିଦ୍ଧି
ତୁ ଦେବ ପରମ ବ୍ରହ୍ମ ଅଟୁ ଗୁଣନିଧି ।
ପ୍ରତ୍ୟକ୍ଷେ ତୁ ନିରଞ୍ଜନ ପ୍ରଭୁ ନିରାକାର
ମାନବ ମାନଙ୍କ କାହୁଁ କରିବ ଗୋଚର ।
ଧବଳ ଶରୀର ଶୁଦ୍ଧ ସ୍ଫଟିକ ପରାୟେ
ଅଶେଷ ବ୍ରହ୍ମାଣ୍ଡ ତୋ'ଠାରେ ଜଳମଞ୍ଜି ପ୍ରାୟେ ।
କମ୍ପିତ ମାତ୍ରେ ତୁ ଧରିପାରୁ ଦେବ ତୋଳି
ତୁହି ଦେବ ବଳଭଦ୍ର ଅତିବଳେ ବଳୀ ।
ତୁହି ଦେବ ଜଳ ସ୍ଥଳେ ଅନାଦି ଦେବତା
ବାମନଖ କୋଣେ ତୋର କୋଟି କ୍ଷିତିସ୍ଥିତା
ପୃଥ୍ୱୀ ତୋ ନାଭିମଣ୍ଡଳ ଆକାଶ ତୋ ଶିର
ତୋହର ମହିମା ଦେବ ଦେବେ ଅଗୋଚର
ଏ ସଂସାର ସାଗରେ ତୁ ମୁକତିର ପଥ
ନିଜ କାୟା ପ୍ରକାଶିଲୁ ନାହିଁ ତୋର ସ୍ୱାର୍ଥ ।
ନମସ୍ତେ ତୁ ନାରାୟଣ ଅଭୟ ଶରୀର
ପ୍ରଳୟ ସଂସାର ଯାର ବୁଦ୍‌ବୁଦ ଆକାର ।
ଚଳ ତୁ ନିଶ୍ଚଳ ଦେବ ନିରାକାର ତୁହି
ଶୂନ୍ୟକୁ ଆକାର ତୋର ତହୁଁ ଆନ ନାହିଁ ।
ଅନେକ ସ୍ତୁତି କରନ୍ତି ଶୂନ୍ୟ ବେଦବ୍ରହ୍ମା
କେ ଆନ କରିବ ପୁଣି ତୋ ଆଜ୍ଞା ମହିମା ।
ବୃଷଭ ବାହନେ ବିଜେ ଦେବ ପଶୁପତି
ନିରାକାର ସ୍ୱାମୀଙ୍କୁ ଯେ କରନ୍ତି ସେ ସ୍ତୁତି ।
ସଚରାଚର ସଂସାରେ ତୁହି ଏକା ସ୍ତମ୍ଭ
ସ୍ୱାମୀ ଏମାନେ ଚଞ୍ଚଳ ତୁହି ଏକା ଦମ୍ଭ
ତୁହି ସିନା ପୃଥିବୀକୁ କରୁ ଏକା ଭୋଗ
ତୁ କୋପକଲେ ରହିବ ନାହିଁ ମଧ୍ୟସ୍ୱର୍ଗ ।

କେ ବ୍ରହ୍ମା କେ ବିଷ୍ଣୁ କେହୁ ଅଟଇ ଈଶ୍ୱର
ଜ୍ୟେଷ୍ଠ ରାମ ଅଟଇ ସେ ସବୁର ଉପର ।
ସ୍ୱାମି କଦମ୍ବା ପ୍ରଳମ୍ବା ଅସୁରକୁ ମାର
ପୃଥ୍ୱୀ ଭାରଭର ନାଶି ରଖିଲୁ ଉଦ୍ଧର ।
କାହୁଁ ଉତପତ୍ତି ହେଲୁ ନ ଜାଣନ୍ତି କେହି
ନିରାକାର ପୁରୁଷ ତୋ କୁଳଗୋତ୍ର ନାହିଁ ।
ତୁ ସିନା ଆନ କୋପକୁ କରୁ ଦେବ ଶାନ୍ତ
ତୋହର କୋପ କଲେ କି ରହିବ ଏ କ୍ଷିତି
ତୁ ଦେବ ଦାନବ ନାଶୁ ନ ରଖୁ ଏକହିଁ
କୋଟି ବ୍ରହ୍ମାଣ୍ଡ ଯାହାର ରୋମମୂଳେ ରହି ।
ନ ଜାଣି ସଂସାର ଦେବ ହେଉଅଛି ବଣା
ତୋ ତହୁଁ ପୃଥ୍ୱୀକି ଦେବ ନାହିଁନା ଧାରଣା
ଅନେକବିଜୟୀ ହୋଇ ବୋଲନ୍ତି ସେଲୋକେ
ଶାନ୍ତ ନୁହନ୍ତି ସେ ଶାମ୍ବକୁମରର ଶୋକେ ।
ଦେବଲୋକ ଯହୁଁ କଲେ ଏସନକ ସ୍ତୁତି
ତଥାପି ନୋହିଲା ବଳଦେବ କୋପ ଶାନ୍ତ ।
ପିତାମହର ବଚନେ କହନ୍ତି ନାରଦେ
ଯୁଧିଷ୍ଠିରଙ୍କ ଅଗ୍ରତରେ ପ୍ରବେଶିଲେ ହାଦେ ।
ଆସ୍ଥାନ ତେଜି ଉଠିଲେ ଦେଖି ପଞ୍ଚଭୂତ
ନାରଦଙ୍କ ପାଦତଳେ କଲେ ପ୍ରଣିପାତ ।
ପାଦ ପଖାଳିଲେ ପାଦ୍ୟଅର୍ଘ୍ୟ ଢାଳଦେଇ
ଅନେକ ଦଇନ୍ୟ ହୋଇ ଉଭା ପାଞ୍ଚଭାଇ ।
ନାରଦ ବୋଇଲେ ତୁମ୍ଭେ ଶୁଣ ପଞ୍ଚଭ୍ରାତ
ହସ୍ତିନା ନଗର ହେଉଅଛି ଜଳସାତ ।
ବଳରାମ ଦେବ ଜାଣ ଅଟେ କାଳସର୍ପ
ଗରୁଡ଼ ହରି ପାରଇ ସିନା ତାର ଦର୍ପ ।
ବଳରାମ ସର୍ପକୁ ଯେ ତୁ ସିନା ଗରୁଡ଼
ତୋତେ ଦେଖି କୋପଶାନ୍ତ କରିବେ ସେ ବଡ଼
ତୁମ୍ଭଙ୍କୁ ଦେଖିଣ ଶାନ୍ତ ହେବେ ହଳପତି
ନାରଦ ବାକ୍ୟେ ପାଣ୍ଡବେ ଉଠିଲେ ତଡ଼ତ
ଶାମ୍ବ ଚନ୍ଦ୍ରାବତୀଙ୍କୁ ସେ ସଙ୍ଗତରେ ଘେନି
ଦୁର୍ଯ୍ୟୋଧନ ବୋଇଲେ ସେ କରିବା ଦଇନ୍ୟ
ଗଳାରେ କୁଠାର ଦନ୍ତେ ତୃଣ ଯେ ଘେନି
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା କର୍ଣ୍ଣ ଯେ ଶକୁନି ।
କରପଦ୍ମ ଯୋଡ଼ି ସ୍ତୁତି କରନ୍ତି ଉପରେ
ଶରଣ ରକ୍ଷଣ ସ୍ୱାମୀ ଦେବ ହଳଧରେ ।
ଶରଣ ଶରଣ ବୋଲି ଶୁଭୁଅଛି ବାଣୀ
ରଖ ରଖ କୋପ ଶାନ୍ତକର ହଳପାଣି ।
ପୃଥ୍ୱୀ ନ ସହଇ ଦେବ ତୁମ୍ଭ କୋପଭର
ଏହିକ୍ଷଣି ରସାତଳ ହେବ ବସୁନ୍ଧରା ।
ଏ ସଂସାର ସାଗରକୁ ତୁହି ସେ ନଉକା
ସମସ୍ତ ମଧୁସୂଦନ ତୁ କରିପାରୁ ଏକା ।
ତୋହର କୋପ କଲେକି ରହିବ ହସ୍ତିନା
ଏ ସଂସାରକୁ ଧାରଣ ପୁରୁଷ ତୁ ସିନା ।
ଦୂରୁ ରହି ଲୋକେ ସ୍ତୁତି କରନ୍ତି ବହୁତ
ଧାର୍ଘରଡ଼ ଗୁଡ଼ନ୍ତି ସେ ଭୟରେ ଆରତ ।
ଶ୍ରୀକୃଷ୍ଣ ବିଜୟ କଲେ ରାମଙ୍କ ଅଗ୍ରତେ
ସ୍ୱାମି କ୍ଷଣକେ ବିଶ୍ରାମ କରିବା ନା ଏଥେ ।
ଆକାଶରେ ରହି ସ୍ତୁତି କଲେ ବୃନ୍ଦାରକେ
କହନ୍ତି ଅନେକମତେ ପୁଣି ଦେବଲୋକେ ।
ଅନେକ ବ୍ୟାକୁଳ ତହିଁ ହେଲା ଧାତ୍ରିସୃଷ୍ଟି
ଶରଣ ରକ୍ଷଣ ସ୍ୱାମି ରାମ ନାମ ଗୋଟି ।
ତୋହର ଶରଣେ ନାଥ ବର୍ତ୍ତିବେ ସକଳ
ଭକତଜନ ବତ୍ସଳଅଟୁ କାମପାଳ ।
ମୁହିଁ ନ ଜାଣଇ ଦେବ ଏହି ଶାମ୍ବ ବୋଲି
ସ୍ତ୍ରି ଘାତ୍ରେର ବୋଲି ଦେବ ଧରି ଶାସ୍ତି ଦେଲି
ତୁ ଦେବ ମୋହର ଦୋଷ କ୍ଷମା ଯେ କରିବା
ତୁମ୍ଭର ଚରଣେ ଦେବ ସବୁଙ୍କର ସେବା ।
ବଳରାମ ବୋଇଲେକ ଶୁଣ ବନମାଳି
ସତ୍ୟକଲି ସିନ୍ଧୁମଧ୍ୟେ ପକାଇବି ବୋଲି ।
ଗୋବିନ୍ଦ ବୋଇଲେ ସିନ୍ଧୁ ମଧ୍ୟେ ପକାଇଲେ
ପାଞ୍ଚଭାଇ ଅଛନ୍ତି ଯେ ସମଦଣ୍ଡ ତୁଲେ ।
ଶାମ୍ବକୁମର ସହିତେ ସର୍ବେ ଯିବେ ନାଶ
ଗାନ୍ଧାରୀର ପୁତ୍ରମାନେ କଲେ ସିନା ଦୋଷ ।
ଜଗନ୍ନାଥ କହିଲେ ଶ୍ରୀ ବଳରାମ ପାଶ
ରକ୍ଷାକର ବାରେ ଦେବ ଏ ହସ୍ତିନା ଦୋଷ ।
ଶୁଣ ଆହେ ମନୁରାୟ ପୁଚ୍ଛାକଲୁ ଯାହା
ଥୋକାଏ ମୁଁ ଅନୁସରି ବଖାଣିଲି ତାହା ।
ଏ ମଧ୍ୟପର୍ବ ଅମୃତ ରସ କଥା ସାର
ପ୍ରାଣୀମାନେ ଏକମନେ ଶୁଣି ଭବୁଁ ତର ।
ଘୋରତର କଳିକାଳ ହୋଇଲାକ ଆସି
ରାମ ନାମ ଧରନ୍ତେ ନ ବାନ୍ଧେ କାଳଫାଶି ।

ରାମ ନାମ ଠୁଳ ବ୍ରହ୍ମ ବେଦ ଯେ ଅକ୍ଷର
ରାମ ନାମ ମୋର ମନ୍ତୁ ନୋହୁ ଯେ ବେଦୋର
ତୁଳସୀର ବାଳ୍ପଭ ଯେ ହୃଦେ ମୋର ଥାଉ
ଶାରଳଦାସ ଜୀବନ ରାମନାମେ ଯାଉ ।

## ସରସ୍ୱତୀବଭ୍ର ଓ କଂଟମ୍ବାସୁର ବୃତ୍ତାନ୍ତ

ବୈବସ୍ୱତ ମନୁ ପୃଚ୍ଛାକଲେ ଅଗସ୍ତିଙ୍କି
ଆହେ ମହାମୁନି ମୋତେ କହିବା ଏଣିକି ।
ଶ୍ରୀନାରାୟଣ ପ୍ରଭୁ ଯେ ରଙ୍ଗା ଅବତାର
ଦ୍ୱାପରେ ସେ ଜନମିଲେ ଦେବକୀ ଉଦର ।
ନୀଳାମ୍ବର ରୋହିଣୀର ଗର୍ଭେ ଉତପନ୍ନ
ପାଣ୍ଡବଙ୍କ ହେତୁ ରକ୍ଷା ହେଲା ଦୁର୍ଯ୍ୟୋଧନ ।
ଯୁଧିଷ୍ଠିର ଭକ୍ତି କଲେ ରାମ ପାଦତଳେ
ଆପଦ ଖଣ୍ଡନ ନାଥ ଦୁଃଖହର ବଳେ ।
ରାମ ତୋହର ସଞ୍ଚିତ ସିନା ବସୁନ୍ଧରା
ତୁ ତାହା ନାଶ କରିବୁ କେହେ ହଳଧାରୀ ।
ତା ଦୋଷେ କି ନାଶଯିବ ହସ୍ତିନା ଯୁକତେ
କୋପ ଶାନ୍ତ କର ଦେବ ସବୁରି ଦେଖନ୍ତେ
ଅନେକ ପ୍ରାର୍ଥନା ବାକ୍ୟ ବିନୟରେ ବୋଲି
ପଡ଼ିଲେକ ରାମ ପାଦତଳେ ଗଡ଼ାଗଳି ।
ଭୀମ ଅର୍ଜୁନ ନକୁଳ ମନ୍ତ୍ରୀ ସହଦେବ
ଏମାନେ ଅନେକ ମତେ କଲେ ଭକ୍ତିଭାବ ।
ଶ୍ରୀକୃଷ୍ଣ ବୋଇଲେ ସ୍ୱାମି ସମ୍ବାରିବା କୋପ
ନୁହଇ ହସ୍ତିନା ତୁମ୍ଭ କୋପ ଅନୁରୂପ ।
ଶ୍ରୀକୃଷ୍ଣ ବାକ୍ୟେ ଯୁଧିଷ୍ଠି ଦେବଙ୍କ ଆରତେ
ଲେଉଟିଲେ କାମପାଳ ସମସ୍ତେ ଦେଖନ୍ତେ ।
ଦେବତାଙ୍କ ବଚନରେ ଶାନ୍ତ ବଳଦେବ
ପ୍ରବେଶ ହୋଇଲେ ଯାଇ ହସ୍ତିନାର ଠାବ ।
ନିଜସ୍ଥାନେ ହସ୍ତିନାକୁ ନେଇ ବସାଇଲେ
ତାର ସିଂହଦ୍ୱାର ଦେବ ବନ୍ଧବେ କଲେ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ତୁ ଯେ ପୁଚ୍ଛାକଲୁ ବିଭରସର ଯେ ଖ୍ୟାତ ।
ହସ୍ତିନା ରାଜ୍ୟରେ ବିଜେ ଦୁର୍ଯ୍ୟୋଧନ ରାଜା
ସମସ୍ତ ନୃପତି ଦେନ କଲେ ପାଦପୂଜା ।
ହସ୍ତିନା ରାଜ୍ୟକୁ ମାଡ଼ି ବସିଲେ ଯାଦବେ
ଯଦୁ ଭୋଜବଂଶ ଆଦି ସାତ୍ୱତବଂଶ ସର୍ବେ ।
ଅନେକ ଭଣ୍ଡାର ଫେଡ଼ି ମାନରକ୍ଷବର୍ତ୍ତୀ
ବଳରାମ ପାଦତଳେ ପୂଜିଲା ତଡ଼ତ ।
ତୁ ଦେବ ହେ ଯୋଗେଶ୍ୱର ମୂରୁଷ ଉତ୍ତମ
ଦଶ ଦୋଷ ଅପରାଧ ଦାତେ ମୋର କ୍ଷମ ।
ତୁ ଦେବ ହେ ବଳଭଦ୍ର ରେବତୀର ପତି
ଅପରାଧ କ୍ଷମାକର ବାରିର ହଳପତି ।
ଗୋବିନ୍ଦ ବୋଇଲେ କ୍ଷମା ଦେଲୁ ସର୍ବ ଦୋଷ
ଅର୍ଜୁନଙ୍କୁ କୋଳକରି ପ୍ରଭୁ ହୃଷୀକେଶ ।
ଯୁଧିଷ୍ଠିଙ୍କି କୋଳକରି ଧଇଲେକ ରାମ
ରାଜାଧିରାଜ ଈଶ୍ୱର ହେତୁ ଦେବ ଧର୍ମ ।
ଏ ପାଞ୍ଚରାଜ୍ୟରେ ତୁମ୍ଭେ ହେବୁ ଅଧିପତି
ଉଭୟ କୁଳେ ରହିବ ଏ ତୁମ୍ଭର କୀର୍ତ୍ତି ।
ଏଥୁଅନନ୍ତରେ ଶୁଣ ହେ ମନୁ ରାଜନ
ବିଷ୍ଣୁ କଥା ଶୁଣି କର ପାତକ ଦହନ ।
ବଳରାମ ଅଗ୍ରତରେ କହିଲେ ଅଚ୍ୟୁତ
ଦ୍ୱାରକା ଭୁବନେ ଦେବ ପେଷିବା ନା ଦୂତ
ନାଶିବାନା ସେ ଦ୍ୱାରକା ଲୋକଙ୍କର ଚିନ୍ତା
ସନ୍ତାପ ଦୂର କରିବା ଦେଇ ଶୁଭବାର୍ତ୍ତା ।
ଶୁଣି ବଳରାମଙ୍କର ହରଷିତ ମନ
ସାତ୍ୟକିକି ବୋଇଲେ ତୁ କର ହୋ ଗମନ ।
ଶୁଭଯୋଗେ ଭେଟିଲୁ ଯେ ଆସି ପୁନି ଶାମ୍ବ
ମଙ୍ଗଳ ବିଧାନ ହେଲା ହସ୍ତିନାର ଗ୍ରାମ ।
ଯେସନେ ବିଧି ଅଛଇ ପୂର୍ବର ପ୍ରସିଦ୍ଧି
ରତ୍ନବେଦୀର ଉପରେ କଲେ ବିଭାବିଧି ।
ମୁନି ବିପ୍ରଗଣେ ବସି ଆରମ୍ଭିଲେ କର୍ମ
କୃଷ୍ଣ ନନ୍ଦନ ଶାମ୍ବକୁ ଘେନି ବଳରାମ ।
ବିଭାଘର କରନ୍ତି ଯେ ଦେବ ଭଗବାନ
ଅପସରା ଗନ୍ଧର୍ବଙ୍କୁ ଘେନି ଦେବଗଣ ।
ବିଜେ କରିଛନ୍ତି ତହିଁ ବଳରାମ ଦେବ
ଗମନ କରନ୍ତି ତହିଁ ଦିଗପାଳ ସର୍ବ ।
ଦେଖିବା ଗଲ ଶ୍ରୀକୃଷ୍ଣ ନନ୍ଦନର ବିଭା
ଦଇବଜ୍ଞେ ଶୁଭଲଗ୍ନ ଦେଲେ ହୋଇ ଉଭା ।
ବ୍ରାହ୍ମଣମାନେ କରିଲେ ବରଣ ବିଧାନ
ବିଭାର ଯେତେ ସାମଗ୍ରୀ ଅକ୍ଷତ ବସନ ।
କୃଷ୍ଣଙ୍କର ପାଦ୍ୟାର୍ଘ୍ୟ ଯେ ମଧୁପର୍କ ବିଧି
କଂଟମ୍ବା ଆଣ ବୋଇଲେ ବ୍ୟାସ ତପୋନିଧି ।

ସଙ୍କଳପ କରାଇଲେ ତହିଁ ମହାମୁନି
ସାଂସାରିକ ବ୍ୟବହାରେ ଯେତେ ଦ୍ରବ୍ୟଘେନି
ଯୁଧିଷ୍ଠି ଦେବ ବୋଇଲେ ଶୁଣ ବେଦବ୍ୟାସ
ବିଭାର ଯୋଗାଡ଼ମାନ ସମସ୍ତ ଅଭ୍ୟାସ ।
ଏମନ୍ତ ସଂଯୋଗ ପୁଣ ଅଟଇ କେମନ୍ତ
କଟମ୍ବା ଆସନ କଥା କହ ମୁନି ମୋତେ ।
ବ୍ୟାସ ବୋଇଲେ ଶୁଣ ହେ ଯୁଧିଷ୍ଠି ରାଜନ
କହୁଛି କଟମ୍ବା କଥା ଶୁଣ ଦେଇ ମନ ।
ମଧୁସମ୍ବର ବୋଲି ଏକ ସତ୍ୟଯୁଗେ
କଞ୍ଚନବ୍ରହ୍ମା ବସଇ ଯଶୋବନ୍ତ ସ୍ଵର୍ଗେ ।
ସେ ବ୍ରହ୍ମାର ପତ୍ନୀ ନାମ ଅଟଇ ସାବିତ୍ରୀ
ତାହାର ଦୁହିତା ନାମ ଅଟେ ସରସ୍ଵତୀ ।
ଦୁହିତାର ନିମିତ୍ତରେ ସେ କଞ୍ଚନ ବ୍ରହ୍ମା
ମେରୁରେ ସଭା କରାଇ ବସିଲେ ମହାତ୍ମା ।
ନାରଦ ମୁନିଙ୍କୁ ତହିଁ ବୋଇଲେ କଞ୍ଚନ
ସକଳ ଦେବଙ୍କୁ ଯାଇ ତୁ ନିମନ୍ତ୍ରି ଆଣ ।
ଏ ସ୍ଥାନକୁ ଚାଲି ଆଣ ସମସ୍ତ ଦେବଙ୍କୁ
ବଜାଇ ହେ ନାରଦ ତୂର ଦୁନ୍ଦୁଭି ତହିଁକୁ ।
ପିତାଙ୍କର ବଚନରେ ସେ ନାରଦ ଗଲେ
ସକଳ ଦେବଙ୍କୁ ଘେନି ସଭାରେ ମିଳିଲେ ।
ଇନ୍ଦ୍ର ବିଜେ କଲେ ଯାଇ ମେରୁ ସଭାମଧ୍ୟେ
ଗିରିରାଜ ବିଜେ ଗିରିଗଣଙ୍କ ସନ୍ନିଧେ ।
ମୃଗବାହନେ ଆଇଲେ ଦେବତା ପବନ
ପ୍ରବେଶ ହୋଇ ବସିଲେ ମେରୁ ପୃଷ୍ଠସ୍ଥାନ ।
ମକର ବାହନେ ବିଜେ କଲେ ରତ୍ନାକର
ଅଛନ୍ତି ତାହାଙ୍କ ସଙ୍ଗେ ବହୁ ଜଳଚର ।
ଦେବସଭା ମଧ୍ୟରେ ସେ ବିଜେ କଲେ ଆସି
ବଶିଷ୍ଠ ଯେ ବିଶ୍ଵାମିତ୍ର ବାମଦେବ ଋଷି ।
ଶଙ୍ଖପଦ୍ମ ମହାପଦ୍ମ ତକ୍ଷକ ଅନନ୍ତ
ବାସୁକୀ ଆଇଲେ ଅଷ୍ଟକୁଳାଙ୍କ ସଙ୍ଗତ ।
ମଇଁଷି ବାହନେ ବିଜେ କୃତାନ୍ତକ ଦେବ
ଗ୍ରହଗଣ ମାନେ ତହିଁ ମିଳିଲେକ ସର୍ବ ।
ଯେ ଯାହାର ବାହନରେ ଚଢ଼ି ଦେବଲୋକେ
ମେରୁସଭାରେ ବିଜୟ କଲେ ବୃନ୍ଦାରକେ ।
ବୈନତେୟ ବାହନରେ ଚଢ଼ି ଚକ୍ରଧାରୀ
ବିଜୟ ସେ ନାରାୟଣ ସଭା ମେରୁଗିରି ।

ସମସ୍ତେ ଆସନେ ବିଜେ କଲେ ସର୍ବଦେବେ
ବୃଷଭ ବାହନେ ବିଜେ କଲେ ସଦାଶିବେ ।
ମେରୁ ସଭାରେ ବିଜୟ କଲେ ଦେବଲୋକେ
ବସିଲେ ସମସ୍ତେ ତହିଁ ଯେ ଯାହାର ସୁଖେ ।
ଦୁହିତା ଘେନି ବିଜୟ ସେ କଞ୍ଚନ ବ୍ରହ୍ମା
ମେରୁସଭାରେ ମିଳିଲେ ଆସି ମହାତ୍ମା ।
କରେ ଅର୍ଘ ଘେନି ବାଳୀ ପାରିଜାତ ମାଳ
ବିଷ୍ଣୁଙ୍କ ସମ୍ମୁଖରେ ବେଦବର ଯାଇ ମିଳ ।
ଚନ୍ଦନ ଅଗୁରୁ ଘୋରି ଲେପିଲେ ଲଲାଟେ
କସ୍ତୁରୀ କର୍ପୂର ଦେଲେ ନେଇ ହୃଦତଟେ ।
କଣ୍ଠେ ଲମ୍ବାଇଲ ବାଳୀ ଅମଳାନ ମାଳ
ଦେବାଙ୍ଗ ବସ୍ତ୍ର ମଣ୍ଡିଲେ କୃଷ୍ଣ ବକ୍ଷସ୍ଥଳ ।
ସଭାକୁ ତହିଁ ସେ ବ୍ରହ୍ମା କରନ୍ତି ଉତ୍ତର
ବିନୟ ଭାବ ହୋଇଣ ଯୋଡ଼ି ବେନିକର
ସମସ୍ତ ଦେବତାମାନେ ମୋତେ ଆଜ୍ଞା ଦେବ
ଏ ମୋର କଥାକୁ ସାବଧାନ ହୋଇଥିବ ।
ମୋହର ଦୁହିତା ନାମ ଅଟେ ସରସ୍ଵତୀ
ବିଷ୍ଣୁଙ୍କୁ ଦେବି ଦୁହିତା ଗୋଟି ରୂପବତୀ ।
ତହିଁ ନିମନ୍ତେ କରଇ ସମସ୍ତ ବରଣ
ସୁପ୍ରସନ୍ନେ ଆଜ୍ଞା ମୋତେ ଦେବା ଦେବଗଣ
ଦେବେ ବୋଇଲେ ଯେମନ୍ତେ ଆଜ୍ଞା ତୋର ପିତା
ପୁରୁଷ ଉତ୍ତମ ବ୍ରହ୍ମ ବହନ୍ତା ବିଧାତା ।
ଯେସନେ ତୋର ବଚନ ବଣ୍ଟାଇ କେ ପାରି
ତୁ ଯେବେ ତାଙ୍କୁ ପ୍ରଦାନ କରିବୁ କୁମାରୀ ।
କନ୍ୟାକୁ ବେଶ ଭୂଷଣ କରାଇ ବିଧାତା
ବିଷ୍ଣୁର ସମ୍ମୁଖରେ ନେଇ କଲେ ଉପସ୍ଥିତ ।
ବିଭାର ବିଧାନ ସବୁ କଲେ ବେଦବର
ବେଦୀ ଉପରେ ବସିଲେ ହରି ହୋଇ ବର ।
ବିଭାରବେଳେ ଶୁଭିଲେ ଦିବ୍ୟଶଙ୍ଖ ବାଣୀ
ପୁଣି ସ୍ଵର୍ଗରେ କଟମ୍ବା ନାମେ ଦୈତ୍ୟମଣି ।
ବୋଇଲା ଦେଖ କେମନ୍ତେ ତାହାଙ୍କର କଥା
ଆଜ ଯେ ମାରିବି ମୁହିଁ ସମସ୍ତ ଦେବତା ।
କହୁ କହୁ କୁପିତ ସେ ହୋଇଲା ଦନୁଜ
କରେ ଶସ୍ତ୍ର ଘେନି ଆପେ ହୋଇଲାକ ସଜ ।
ଆରେ ଆରେ ବୋଲି ଦୈତ୍ୟ ଦେଲା ଘୋରଡାକ
ବ୍ରହ୍ମାଣ୍ଡ କମ୍ପିଲା ଭୟ କଲେ ଦେବଲୋକ ।

ଭୁଲେ ନାହିଁ ତାହାର ଯେ ରଥ ଗଜସୈନ୍ୟ
ଲୁହାର ଦଉଡ଼ି ଏକ ଘେନିଛି ଦୁର୍ଜ୍ଜନ ।
ଶରୀର ହଶଇ ତାର ମନ୍ଦର ପରାୟ
ତୁମ୍ବା ଗୋଟିଏ ବଜାଏ ସେ ଦନୁଜ ରାୟ ।
ଗୁରୁନାଦ ଶୁଣି ଦେବେ ଗଲେ ତହିଁ ଖସି
ମେରୁ ସ୍ଥାନକୁ ଦନୁଜ ଆସେ ଖରେ ପଶି ।
ଆକାଶେ ଲାଗିଅଛଇ ଅସୁରର ଶିର
ଦେଖି ମହାଭୟ କଲେ ସକଳ ଅମର ।
ଶୂନ୍ୟେ ଶବଦ ଶୁଭିଲା ଯହୁଁ ଗରୁ ଡାକ
ଆସ୍ଥାନ ତେଜି ଉଠିଲେ ତହୁଁ ବୃନ୍ଦାରକ ।
ସଭାରୁ ଉଠି ନାରଦ ହଲାଇଣ ଦାଢ଼ି
ବୋଇଲେ ଆସି ପଡ଼ିଲା କଟମ୍ବାର ଧାଡ଼ି ।
ଏ ସମସ୍ତ ଦେବତାଙ୍କୁ ଲାଗିଲା ତ ଭୟ
ବିଷ୍ଣୁ ଆଜ୍ଞାଦେଲେ ରହ ରହ ଦେବଚୟ ।
ମୋହର ଥାନ୍ତେ ତୁମ୍ଭର କାହାକୁ ଯେ ଭୀତି
ଆଜ ଏହାକୁ ମାରିବି ମୁହିଁ ତଳେ ପାତି ।
ମୁହିଁ ନ ଜାଣଇ ଏତେଡ଼ ଦାନବେକ ଅଛି
ଆଗହୁଁ ନ ଜାଣେ ଏହା ମୋତେ ତା ନ ପୁଛି
କରପତ୍ର ଯୋଡ଼ି ତହୁଁ କହେ ବଜ୍ରଧର
ସହି ନ ପାରଇ ଦେବ କଟମ୍ବାର ଭର ।
ଆଶ୍ଳେ ଚରଣ ପକାନ୍ତେ ରକ୍ତ ବହେ ମୁଖ
କା ଆଗେ କହିବ ଦେବ ଏ ମୋହର ଦୁଃଖ
ଏମନ୍ତ କହୁ କଟମ୍ବାସୁର ଆସି ବେଗେ
ଯାଇଣ ମିଳିଲା ଦୈତ୍ୟ ମେରୁସଭା ମଧ୍ୟେ ।
ରେରେକାର ଶବଦରେ ଦୈତ୍ୟ ଡାକ ଦିଏ
ବ୍ୟାଘ୍ର ପୃଷ୍ଠେ ବସି ଲୌହଦଣ୍ଡ ସେ ବୁଲାଏ ।
ଦାନବର କୋପ ଦେଖି ପ୍ରଭୁ ବିଶ୍ୱେଶ୍ୱର
ବୋଇଲେ ସଭାକୁ ତୁହି ନ ଉଠ ଅସୁର ।
ତାହା ଶୁଣି ମହାକୋପ କରଇ ଦନୁଜ
ଅଧରେ ଦନ୍ତ ଚାପଇ କରିଣ ଗରଜ ।
ଲୁହା ଦଉଡ଼ିକୁ ଧରି କୋପରେ ବୁଲାଇ
ଈଶ୍ୱର ପ୍ରହାର କଲେ ଶକତିଏ ନେଇ ।
ଶସ୍ତ୍ର ପଡ଼ନ୍ତେ ଅସୁର ପାତେ ବାମକର
ଈଶ୍ୱରଙ୍କ ହସ୍ତୁ ଶକ୍ତି ଘେନିଲା ସତ୍ୱର ।
ସେହି ଶକତିକୁ ଘେନି ବୁଲାଇଣ ପିଟି
ଦଇତ୍ୟ ପିଟନ୍ତେ ତଳେ ପଡ଼ିଲେ ଧୂର୍ଜ୍ଜଟି ।

ଆଘାତ ପାଇ ଈଶ୍ୱର ପଡ଼ିଗଲେ ମୂର୍ଚ୍ଛା ।
ପ୍ରତିଜ୍ଞା କଲେ ଦନୁଜ କେ କରିବ ରକ୍ଷା ।
ଘର୍ଘରଡ଼ି ଦେଇ ବେଗେ ଉଠନ୍ତେ ଦନୁଜ
ବଜ୍ର ତା ଶିରେ ପ୍ରହାର କଲେ ଦେବରାଜ ।
ସହସ୍ରଧାରା ଶକତି ଦନୁଜର ଗାତ୍ରେ
ପଡ଼ନ୍ତେ ପବନୁ ବେଗେ ଧରି ବାମହାତେ ।
ବାମପାଦ ପ୍ରହାରିଲେ ନେଇ ଇନ୍ଦ୍ର ଶିରେ
ତାହାର ଶକତି ତାକୁ ମାଇଲା ସତ୍ୱରେ ।
ଦୈତ୍ୟ ପ୍ରହାରେ ଅଚେତ ହେଲେ ସୁରପତି
ଭୁଜ ଧରିଣ ଅସୁର ଫିଙ୍ଗିଦେଲା ଧାତି ।
ଅସାଷ୍ଟମ ହୋଇ ଇନ୍ଦ୍ର ପଡ଼ିଲେ ଭୂତଳେ
ଆଖଣ୍ଡଳ ମୋହ ଯିବା ଦେଖି ଦିଗପାଳେ ।
ଇନ୍ଦ୍ର ଅସାଷ୍ଟମ ଦେଖି ଉଠିଲା କୁବେର
ରତ୍ନାବଳି ଗଦା ଘେନି ହୋଇଲା ବାହାର ।
କୁବେରକୁ ଦେଖି ଦୈତ୍ୟ ପ୍ରହାରିଲା ମୁଥେ
ଏକା ପ୍ରହାରେ କୁବେର ପଡ଼ିଲା ଅଚେତେ ।
କୁବେର ଅଚେତ ଦେଖି ଦୈତ୍ୟ ମହାରାଗୀ
କେଶ ଧରି ଅନ୍ତରାଳେ ଦେଲା ତାକୁ ଫିଙ୍ଗି ।
କୁବେର ପଡ଼ିଲା ଯାଇ ମେରୁର ମେଖଳେ
ହାସପାଇ ପଳାଇଲେ ତହୁଁ ଦିଗପାଳେ ।
ଅମର ସଭାରେ ଗଜେ ଦୈତ୍ୟ ମହାବୀର
ପୃଥ୍ୱୀ ନ ସହଇ ପାଦ ମହାଭାର ତାର ।
କଞ୍ଚନ ବ୍ରହ୍ମା କୋଳରେ ଘେନି ସରସ୍ୱତୀ
ନାରାୟଣ ଦେବତାର ଆଗେ ବସିଛନ୍ତି ।
ଯେବଣ ଦିଗେ ଅଛଇ ବିଷ୍ଣୁର ପାଦୁକା
ଧ୍ୟାନକରିବାରୁ ବିଷ୍ଣୁ ଦେଲେ ତାକୁ ଦେଖା ।
ଆହ୍ନିକ ସାରି ବାହନ ପୃଷ୍ଠେ ବିଜେକରି
ବ୍ରହ୍ମାର ଆଗରେ ବିଜେକଲେ ଦଇତ୍ୟାରି ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଯେବଣ କୃତ୍ୟ କଲା ସେ ଦାନବ ଦୁର୍ମତି ।
ଅନେକ ଭର୍ତ୍ସନା ବାକ୍ୟ ବ୍ରହ୍ମାଙ୍କୁ ବୋଲଇ
ସଗେ ପିତାମହ ପେଲି ଦେଲିକ ପକାଇ ।
ଦୈତ୍ୟର ଘାତେ ପଡି ସେ ଉତ୍ତାନଶାୟୀ
ମୋହରେ ପଡି ଡାକନ୍ତି ପିତା ତ୍ରାହି ତ୍ରାହି ।
କଟମ୍ବା ବୋଇଲା ତୋର ଏତେକ ଭରସା
ବାଳକାଳୁ ଏ କନ୍ୟାକୁ କରିଅଛୁ ଆଶା ।

ମୋତେ ଛାଡ଼ି କରୁ ତୁହି ଏ ହରିଙ୍କୁ ବନ୍ଧି
କାହିଁ ଅଛୁ ଦେଖେ ଆସି ରଖୁ ବାସୁଦେବ ।
ଏହିକ୍ଷଣି ମୁଣ୍ଡ ତୋର ପକାନ୍ତି ମୁଁ ମୋଡ଼ି
ଅନେକ କାଳର ବୃଦ୍ଧ ବୋଲି ଦେଲି ଛାଡ଼ି ।
ଏତେ ବୋଲି କ୍ରୋଧେ ନେଲା ଦୈତ୍ୟ ସରସ୍ୱତୀ
ମେରୁ ମଣ୍ଡଳଁ ବାହାର ଯାଆନ୍ତି ତଡ଼ିତ ।
ପ୍ରତିଜ୍ଞା କରି ଗମଇ କଉଣପ କୋପେ
ବିଷ୍ଣୁଙ୍କୁ ସୁମରେ ବାଳା ମନର ସନ୍ତାପେ ।
ସରସ୍ୱତୀ ଡାକଇ ମୁଁ ତୋହର ଭାରିଯା
ନେଉଛି କଟମ୍ବାସୁର ସଂହାର ବଡ଼ୋଜା ।
ନାରଦ ବୋଇଲେ ଏବେ ଶୁଣିମା ଶ୍ରୀବତ୍ସି
ତୋହର ପତ୍ନୀକୁ ବଳେ ଦାନବ ନେଉଛି ।
ଶୁଣି କୋପାନଳ ହେଲେ ଦେବ ଚକ୍ରପାଣି
ଅସୁର ଆଗରେ ରହି ଡଗାଳିଲେ ପୁଣି ।
କୌମୋଦକୀ ଗଦା ଧରି ଦେବ ଚକ୍ରଧର
ଅସୁର ଉପରେ ନେଇ ପିଟିଲେ ସତ୍ୱର
କଟମ୍ବା ବୋଇଲା ତୁହି ପରା ଦଇତ୍ୟାରି
ତୁ ପରା ଅସୁରବଳ ନିସୂଦନକାରୀ ।
ଆଜ ପଡ଼ିଲୁ ଯିବାକୁ ବାଟ ତୋତେ ନାହିଁ
ଯତନେ ଯାହାକୁ ପୁଣି ଲୋଡ଼ୁଥିଲି ମୁହିଁ ।
ଏତେ ବୋଲି ସେ ଦାନବ ପବନହୁଁ ବେଗେ
ବଜ୍ର ମୁଠିକ ପ୍ରହାର କଲା ନେଇ ଅଙ୍ଗେ ।
କୌମୋଦକୀ ଗଦାବର ବୁଲାଇଣ ହରି
କଟମ୍ବାସୁର ଉପରେ କୋପେଣ ପ୍ରହାରି ।
ଦେଖି ଦାନବ ପାତିଲା ତାର ବାମହସ୍ତ
ବିଷ୍ଣୁ ହସ୍ତୁଁ ଗଦାବର ନେଲା ତୁରିତ ।
ସେହି ଗଦାକୁ ବୁଲାଇ ପିଟନ୍ତେ ଲେଉଟି
ନାରାୟଣଙ୍କ ଉପରେ ପଡ଼େ ଗଦା ଯଷ୍ଟି ।
ଗଦାପ୍ରହାର କରନ୍ତେ ନେଲେ ଅଚ୍ୟୁତ
ଦଇତ୍ୟ ଉପରେ ନେଇ କଲେ ଗଦାଘାତ ।
ତଥାପି ନ ତୁଟିଲା ସେ ଦାନବର କାୟ
ଦେଖିଣ ବିସ୍ମୟ ହେଲେ ପ୍ରଭୁ ଦେବରାୟ ।
ଅସୁର ତୁଲେ ସେ ଦେବ କରନ୍ତେ ସଂଗ୍ରାମ
ବିମୁଖ ହୋଇଲେ ତହିଁ ପୁରୁଷ ଉତ୍ତମ ।
ମହାକୋପେ ଉପୁଜିଲା ଦେବତେଜ ରୂପ
ଦୁଇ ଭୁଜରେ ଧଇଲେ ଦୁର୍ବାର କୌ-ପ ।

ବିନ୍ଧ୍ୟ ପର୍ବତ ଶିଖରେ କଚାଡ଼ିଲେ ତୋଳି
ଦଇତ୍ୟର ଅଙ୍ଗ ଲାଗି ହୋଇଲା ସେ ଧୂଳି ।
ତାହାଦେଖି ଭଗବାନ ହୋଇଲେ ଆଶ୍ଚର୍ଯ୍ୟ
ପ୍ରଶଂସା କରନ୍ତି ଧନ୍ୟ ଧନ୍ୟ ରେ ଦନୁଜ ।
ଦେଖିନାହିଁ ମୁହିଁ ପୁଣି ଏଡ଼େକ ପ୍ରଚଣ୍ଡ
ଏହା ଦେହ ଲାଗି ବିନ୍ଧ୍ୟ ଗିରି ହେଲା ଗୁଣ୍ଡ ।
ଶୁଣି ଦୁଇ ପାଦ ତାର ଧରି ଅନ୍ତରୀକ୍ଷେ
କଚାଡ଼ିଲେ ଲୌହମୟ ପର୍ବତେ ପ୍ରତ୍ୟକ୍ଷେ
କି ଜାଣି ଅସୁର ଦେହ ଅଟେ ବଜ୍ର ସେହ୍ନା
ଦୈତ୍ୟ ପଡ଼ିବାରୁ ଲୌହ ଗିରି ହେଲା ଚୂନା
ବିଷ୍ଣୁ ପ୍ରଶଂସିଲେ ଦୈତ୍ୟ ତୁରେ ସାଧୁ ସାଧୁ
ଦାନବକୁଳେ ଜନମି କିଏ ତୋତେ ନିନ୍ଦୁ ।
ଏସନ ପ୍ରଶଂସା ତାକୁ କରି ଚକ୍ରଧର
ଅସୁରକୁଳେ ମହିମା ଏସନ ତୋହର ।
ଛାଡ଼ିବ ଏ ଦନୁଜକୁ ହୋଇବ ନିଜୀବ
ନ ଥାନ୍ତି ଦେବ ମାନଙ୍କେ ପଛେ ସ୍ୱର୍ଗ ଭୁବ ।
ବିଷ୍ଣୁ ଯହୁଁ ବିଚାରିଲେ ତାକୁ ଛାଡ଼ିବାକୁ
ମହାଭୟ ଲାଗିଲାତ ଦେବତାମାନଙ୍କୁ ।
ନ ନାଶିଲେ ପୃଥିବୀକୁ ହୋଇବ ଏ ଭାର
ତୋହର ଛାଡ଼ନ୍ତେ ସେହି ହୋଇବ ଅମର ।
ବିଷ୍ଣୁ ବୋଇଲେ ମରିବ ନାହିଁ ମୋର ହସ୍ତେ
ବ୍ରହ୍ମାଙ୍କୁ ବୋଇଲେ ସେହୁ ମରିବ କେମନ୍ତେ ।
ପିତାମହ ବୋଇଲେ ଯେ କୁ ଦେବାଧିଦେବ
ମୋତେ ବହୁତ ଭକତି କଲା ଏ ଦାନବ ।
ନିରାଶ ହୋଇ ସେ ଯହୁଁ ସେବା କଲା ମୋତେ
ମହାକଠୋରେ ବସିଲା ମନୁଏ ପର୍ଯ୍ୟନ୍ତେ ।
ମୁହିଁ ବୋଇଲି ତୁ ବର ମାଗରେ ଦାନବ
ସେ ବୋଇଲା ମୋ ସମାନ ଆୟୁ ମୋତେ ଦେବ
ଯେତେକାଳ ପରିଯନ୍ତେ ପୃଥିବୀ ନ [illegible]
ମୁହିଁ ଜାଣ ତେତେକାଳଯାଏ ବର୍ତ୍ତିଥିବ ।
ଏସନକ ବର ସେହି ମାଗି ଅଛି ପୂର୍ବେ
ଭୟରେ ବୋଇଲି ହେଉବୋଲି ମୁହିଁ ତେବେ
ପିତାମହ ମୁଖରୁ ଯେ ଏସନକ ଶୁଣି
ଅସୁରକୁ ବୋଇଲେକ ଦେବ ଚକ୍ରପାଣି ।
ନାରାୟଣ ବୋଇଲେ ତୁ ବ୍ରହ୍ମାଙ୍କର ବଳା
ସରସ୍ୱତୀଙ୍କର ଭାଇ ଆମ୍ଭର ଯେ ଶଳା ।

ବ୍ରହ୍ମାଙ୍କୁ ପୁଚ୍ଛିଁ ବୋଇଲେ ଏ କଟମ୍ବା ଥାଉ
ତୁମ୍ଭ ବର ପାଇଅଛୁ ଏ ନାଶ ନ ଯାଉ ।
ଆମ୍ଭେ ମାଡ଼ିବସି ଏବେ ଏହା ବକ୍ଷସ୍ଥଳେ
ରକ୍ଷା ହେଉଅଛୁ ରହୁ ଆମ୍ଭ ପାଦତଳେ ।
ଏଥର ଯେ ବଳବୀର୍ଯ୍ୟ ହରିବୁ ଏହାର
କେବଳ ଜୀବନ ଘେନ ଥାଉ ଏ ପାମର ।
ଏମନ୍ତ କହି ବସିଲେ ତା ପୃଷ୍ଠରେ ହରି
ସରସ୍ୱତୀ କନ୍ୟାଙ୍କୁ ସେ ଦେବ କୋଳେ ଧରି ।
ବେଦ ବାକ୍ୟେ ବିଭାଘର ସରିଲା ତାଙ୍କର
ସେ ହନୁ ଆସନ ହେଲା ବର କନ୍ୟାଙ୍କର ।
ବ୍ରହ୍ମାର ବଚନେ ତାକୁ ରଖିଲେ ମୁରାରି
କନ୍ୟାକୁ ପ୍ରଦାନ କଲେ ଚତୁର୍ମୁଖ ଧାରୀ ।
ସରସ୍ୱତୀଙ୍କୁ ଯେ ବିଭା ହେଲେ ନାରାୟଣ
ସନ୍ନିଧେ ଆସି ପ୍ରବେଶ ହେଲେ ଦେବଗଣ ।
ଅସୁର ଆଘାତେ ଦେବେ ଯାଇଥିଲେ ମୂର୍ଚ୍ଛା ।
ମୋହ ତେଜ ମିଳିଲେକ ପୂର୍ଣ୍ଣହେଲା ବାଞ୍ଛା
ସରସ୍ୱତୀଙ୍କର ବିଭାଘର ଯୋଗବଳେ
ବିଷ୍ଣୁ ବସିଲେ କଟମ୍ବା ଦୈତ୍ୟ ବକ୍ଷସ୍ଥଳେ ।
ନାଗକୁଳ ଚୋକ୍ଷୀ ସେହି ଦେବ ଯେ ଅନନ୍ତ
ଜଳଜ ଗୋତ୍ର ଅଟଇ ବ୍ରହ୍ମା ଦଇବତ ।
ଉଭୟର କୁଳ ଗୋତ୍ର ଉଚ୍ଚାରଣ ଦେବେ
ଶୁଭଯୋଗେ ବିଭାଘର ଶେଷକଲେ ସଙ୍ଗେ ।
ସରସ୍ୱତୀ ଘେନିଗଲେ ଦେବ ବନମାଳୀ
ବଇକୁଣ୍ଠ ଭୁବନରେ ଯାଇଣ ସେ ମିଳି ।
ବ୍ୟାସ ବୋଇଲେ ତୁ ଶୁଣ ଆହେ ଧର୍ମରାୟେ
କଟମ୍ବା ଆସନ କଥା ଏ ବିଧିରେ ହୁଏ ।
ବ୍ରହ୍ମା ବିଷ୍ଣୁ ଯାହା ସୃଜିଥିଲେ ସତ୍ୟଯୁଗେ
ଯାବତ କାଳକୁ କଥା ଅଛି ମଧ୍ୟସ୍ୱର୍ଗେ ।
ପ୍ରସ୍ତାବ ବାକ୍ୟେ କହିଲୁ ସରସ୍ୱତୀ ବିଭା
ଆହେ ବୁଧଜନେ ଏହା ସଂକ୍ଷେପେ ଶୁଣିବା ।
ମହାଭାରତ ଅମୃତ ରସମୟ ବାଣୀ
ଜାଇଁଥିବାଯାଏ ଶୁଣ ବସି ଏହା ପ୍ରାଣୀ ।
ମୁଁ ଯେ କଳିକାଳ ଦର୍ପ ଧ୍ୱଂସିବା ନିମନ୍ତେ
ଶ୍ରୀ ନାରାୟଣଙ୍କ ଦୟା ଥିବାରୁ କଣ୍ଠତେ ।
ଜନ୍ମେ ଜନ୍ମେ ଶରଣ ମୁଁ ସରସ୍ୱତୀ ପାଦେ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ପାଦେ ବନ୍ଦେ ।

## ଚନ୍ଦ୍ରାବତୀ ବିବାହ

ବଦନ୍ତି ଅଗସ୍ତି ଶୁଣ ହେ ମନୁ ନୃପତି
ବିଭାକାଳେ କଟମ୍ବାକୁ ମାଡ଼ି ଶିରୀପତି ।
ଦୁର୍ଯ୍ୟୋଧନ କୋଳେ ଅଛି ଚନ୍ଦ୍ରାବତୀ ବାଳୀ
ଶାମ୍ବ କୁମରଙ୍କୁ କୋଳେ ଧରି ବନମାଳି ।
ଏସନ କୁମାରୀ ବିଭାକଲେ ମୁନିଜନ
ବିପ୍ରେ ଆଶିଷ କରନ୍ତି ମୁନିଏ କଲ୍ୟାଣ ।
ଅନଳରେ ଦାନ କଲେ ଅନେକ ଆହୁତି
ଯଦୁବଂଶ କୁଳବଧୂ ହେଲା ଚନ୍ଦ୍ରାବତୀ ।
ଗର୍ଗମୁନି ଉଚ୍ଚାରିଲେ ଦେଶକାଳ ବାକ୍ୟ
ଉଭୟ ମଙ୍ଗଳ ବାଞ୍ଛା କଲେ ଦେବଲୋକ ।
ଯଦୁକୁଳେ ଜାତ ସେହି ଶାମ୍ବ ଯେ କୁମର
ଚନ୍ଦ୍ରଧ୍ୱଜ ଗୋତ୍ରେ ଜାତ ଦୁର୍ଯ୍ୟୋଧନ ବୀର ।
ଶଙ୍ଖପଦ୍ମ ମହାପଦ୍ମ ଅନନ୍ତ କୁଳିକ
ଆସନାନ୍ଦ ନେଇ ଅଷ୍ଟକୁଳ ନାଗଲୋକ ।
ଦଇବ ପୁରୁଷ ପୁଣି ଧର୍ମ ଯେ ଦେବତା
ବେଦମନ୍ତ୍ରେ ପୂଜାକଲେ ଇଷ୍ଟକରି ଚିନ୍ତା
କୁଳଗୋତ୍ର ଉଚ୍ଚାରିଲେ ବସି ପୁରୋହିତେ
କୁଶ ବନ୍ଧନ ସେ କଲେ ବର କନ୍ୟାହସ୍ତେ
ମଙ୍ଗଳ ଧ୍ୱନି କରିଣ ଶୁଭ ଅବଧାରି
କୁସୁମ ବର୍ଷିଲେ ବର କନ୍ୟାର ଉପରି ।
ଡାହାଣାବର୍ତ୍ତିକ ଶଙ୍ଖେ ଜଳ ତିଳ ଭରି
ଦୁର୍ଯ୍ୟୋଧନ କରେ ଦେଲେ ପୁରୋହିତେ ଧରି
ଯଉତୁକ ଦିଅ ଭରି ଆହେ କୁରୁରାୟେ
ଏ ତୋହର ଦୁହିତାର ବିଭାର ସମୟେ ।
ପ୍ରଥମରେ ପାଣିଗ୍ରହ କଲୁ କନ୍ୟାଦାନ
ଦ୍ୱିତୀୟେ ଦକ୍ଷିଣା ତୁହି ଦିଅ ଦୁର୍ଯ୍ୟୋଧନ ।
ଦକ୍ଷିଣାର୍ଥେ ଶଙ୍ଖେ ପାଣି ଘେନିଲା ରାଜନ
ଦାନଦେଲା ନବରତ୍ନ ସୁବର୍ଣ୍ଣ କାଞ୍ଚନ ।
ସଂକଳପ କରି ଦେଲା ସହସ୍ରେକ ହସ୍ତୀ
ଦ୍ୱିସହସ୍ର ପାରିଦଣ୍ଡ ଦେଲା କୁରୁପତି ।
ଯଉତୁକ ଦେଇ କଲା ବହୁତ ବିନତି
ଦଶଦୋଷ କ୍ଷମାକର ଆହେ ହଳପତି ।
ଅଜ୍ଞାନମତେ କଲଇଁ ଦେବ ମହାକୋହ
ଶରଣପଞ୍ଜର କୃଷ୍ଣ ଦୋଷ ମୋର ସହ[illegible]

ଲକ୍ଷ୍ମୀ ସରସ୍ୱତୀ ଦୁଇ ଭାରଯା ଯାହାର
ତାହାଙ୍କୁ କ ଯଉତୁକ ଦେବାକୁ ମୁଁ ସର ।
କନ୍ୟାଗୋଟି ଦେଇ ମୁଁ ଯେ ପଶିଲି ଶରଣ
ଏ ଦେବ ନାରାୟଣ ତୁ କର ଉଦ୍ଧାରଣ ।
ଚନ୍ଦ୍ରବଂଶେ ବଧୂ ହେଲ ମୋର ଚନ୍ଦ୍ରମୁଖୀ
ଏହୁଁ ଆନନ୍ଦାଶ୍ରୁ ଜଳ ବହେ ବେନି ଆଖି ।
କନ୍ୟାକୁ ସମର୍ପି ରାଜେ ଗଲେ ନିଜପୁରେ
ବର କନ୍ୟା ବସାଇଲେ ଏକ ଆସନରେ ।
ଅଗ୍ନି ଆରୋପଣ କଲେ ଯଥା ଶାସ୍ତ୍ରମତେ
ସୂତ ଧାରଣା କରାଇ ବର କନ୍ୟା ହସ୍ତେ ।
ଈଶ୍ୱର ବିଧି ପ୍ରତିଷ୍ଠା ଯେସନେ ବିଧାନ
ବିଧିମତେ ହେଲା ତହିଁ ସବୁ ସମାଧାନ ।
ସୂତ ଧାରଣା କରି ସେ ଅନ୍ତଃପୁରେ ପଶି
ଆଶୀର୍ବାଦ ତହିଁ କଲେ ମିଶି ମହାଋଷି ।
ଅହିଅସୁଲକ୍ଷଣୀ ଗୋ ହୁଅ ଚନ୍ଦ୍ରାବତୀ
ଶୁଭରେ ପ୍ରାପତ ତୋତେ ହେଉ ଗୋ ସନ୍ତତି
ହନୁମନ୍ତ ମୂଳେ ଆମି ଅନେକ ଯୁବତୀ
ପ୍ରବେଶ କରାଇ ବର କନ୍ୟାକୁ ବସାନ୍ତି ।
ମଙ୍ଗଳ ଗୀତକୁ ଗାଇ ଆନନ୍ଦରେ ବାଳୀ
ହୁଳହୁଳି ଦେଇ ଶିରେ ଅର୍ଘ୍ୟଦେଲେତୋଳି
ଏବଂଶୁଭେ ଗଲେ ତହୁଁ ସକଳ କାମିନୀ
ଜୟ ଜୟ ଶବଦ ଯେ ଶୁଭେ ଶଙ୍ଖଧ୍ୱନି ।
ମୁନିମାନେ ମିଳିଲେକ ଆସି ନିଜସ୍ଥାନେ
ଅଶିଷ ଦେଲେକ ଅନ୍ତଃପୁରେ ନାରୀମାନେ ।
ଅମୃତ ଦ୍ରବ୍ୟରେ ପାକ ଷଡ଼ରସମାନ
ଏକପାତ୍ରେ ବର କନ୍ୟା କରନ୍ତି ଭୋଜନ ।
ମଙ୍ଗଳ ଗୀତ ଗାବନ୍ତି ସୁଲଭ କାମିନୀ
ହୁଳହୁଳି ସଙ୍ଗେ ଶୁଭେ ଜୟ ଜୟ ବାଣୀ ।
ଅନେକ ନିଶାଣ ଢୋଲ ଘନ ଘନ ବାଜେ
ଦ୍ୱାରକା ପୁରକୁ ବିଜେ କଲେ ଦେବରାଜେ ।
ଅଶ୍ୱ ଗଜ ରଥ ଦେଲେ ଯେତେକ ବିଧାଇ
କୃଷ୍ଣ ଆରାଧନା କଲେ ଚନ୍ଦ୍ର ପାଞ୍ଚଇ ।
ତୁମ୍ଭେ ମୋର ପଞ୍ଚଭୂତ ଆତ୍ମା ହୋ ପାଣ୍ଡବେ
ତୁମ୍ଭ ଯୋଗୁ ମୋର ଯଶ ସିନା ଠାବେଠାବେ
ଅନେକ ଯେ ଧନରତ୍ନ ଦେଲେକ ବିଧାଇ
ବର କନ୍ୟା ସଙ୍ଗତରେ ଶୁଭଗୀତ ଗାଇ ।

ବୃଷ୍ଣିବଂଶ ଯଦୁବଂଶ ହଇହୟବଂଶ
ଭୋଜ ଆଦି ସାତବଂଶ ହୋଇଣ ହରଷ ।
ସାଜନ୍ତି ଯେ ରଥ ଗଜ ଅଶ୍ୱହିଁ ପଦାତି
ଲଗିଲ ଦୁଇ ଦିବସ ପ୍ରାପ୍ତ ହେଲ ରାତି ।
ହାନ୍ଦୋଳାରେ ବସାଇଲେ ବରକନ୍ୟା ନେଇ
ବରକନ୍ୟା ଘେନି ବିଜେ ତ୍ରୈଲୋକ୍ୟଗୋସାଇଁ
ସପତ ଭଣ୍ଡାର ଦେଲେ ଚନ୍ଦ୍ରାବତୀ ଭୁଲେ
ଦେବତାମାନେ ଯେ ସ୍ୱର୍ଗେ ସାଧୁ ସାଧୁ କଲେ
ବରକନ୍ୟା ଘେନି ଦେବ ଦ୍ୱାରକାକୁ ବିଜେ
ଖାରଘୋଷ ଦାଉଣ୍ଡୀ ଯେ ବାଜା ଆଦି ବାଜେ
ଦ୍ୱାରକାପୁରେ ଯାଇଣ ହୋଇଲେ ପ୍ରବେଶ
ଜୟ ମଙ୍ଗଳ ଶବଦ ଉଠେ ଦଶଦିଗ ।
ମଙ୍ଗଳଧ୍ୱନି ଶୁଭିଲ ପୂରିଲ ଦ୍ୱାରକା
ଅର୍ଘ୍ୟ ଘେନିଣ ବାହାର ସକଳ ନାୟିକା ।
ବରକନ୍ୟା ଯାନ୍ତେ ମିଳି ଦେଖୁଛନ୍ତି ବାଳୀ
ଆନନ୍ଦେ ନଗର ଜନେ ଦ୍ୟନ୍ତି ହୁଳହୁଳି ।
ବୋଲନ୍ତି ଯେ ଧନ୍ୟ ଧନ୍ୟ ଦେବୀ ଚନ୍ଦ୍ରାବତୀ
ଧନ୍ୟ ହନୁମନ୍ତ ଗର୍ଭୁ ହେଲୁ ଉତପତି ।
ଦେବକୀ ଦେବୀ ଯଶୋଦା ଦେବୀ ଜାମ୍ବବତୀ
ରୁକ୍ମିଣୀ ଯେ ସତ୍ୟଭାମା କୃଷ୍ଣପ୍ରିୟା ଅତି ।
ଏହାଙ୍କ ମୂଳେ ବତିଶ ସହସ୍ର ଯେ ବାମା
ଦ୍ୱାରକାରେ ଅଷ୍ଟପାଟବଂଶୀ ଅନୁପମା ।
ବିହରନ୍ତି କନ୍ୟାମାନେ ମନର ଆନନ୍ଦେ
କଉତୁକେ ନାଚନ୍ତି ଯେ ହାସ୍ୟ ରସ ରଙ୍ଗେ
ଚୁରସହସ୍ର ବସଇ ଦ୍ୱାରକାରେ ସାହି
ଘରେ ଘରେ ନେଇ ବରକନ୍ୟାଙ୍କୁ ବନ୍ଦାଇ ।
ଚନ୍ଦ୍ରାଶାଳାପୁରେ ବିଜେ ମଧୁଶଯ୍ୟା ପାରି
ତହିଁପରେ ପହୁଡ଼ିଲେ କୁମାର କୁମାରୀ ।
ଅନେକ ରତ୍ନ ଘୁଣ୍ଡଣୀ ଚନ୍ଦ୍ରାତପ ଟାଣି
ଲମ୍ବିତ ମୁକୁତା ଝାଲି ଝଲକନ୍ତି ପୁଣି
ନିଧିମାନ ଘେନି ଯାକୁ ବାରିଧି ଖଟଇ
ଦେବଙ୍କୁ ଦୁର୍ଲ୍ଲଭ ଯେଉଁ ଦ୍ୱାରକା ଅଟଇ ।
ତାହା ବର୍ଣ୍ଣିବାକୁ ମୋର ଶକ୍ୟ ଅବା କିସ
ଯା ମହିମା ନ ପାରଇ କହି ବେଦବ୍ୟାସ ।
ଚଉଷଠି ବିଧାନର ମଙ୍ଗଳ ଯେସନ
ଦ୍ୱାରକାପୁରେ ସକଳ କଲେ ସମାପନ ।

ଦୁରାକର୍ଣ୍ଣମୂଳେ ଦଶସହସ୍ର ଯେ ରଥୀ
ଦ୍ୱାରକାପୁରକୁ ଆସି ଉତ୍ସବ କରନ୍ତି ।
ସୁବର୍ଣ୍ଣ ନିର୍ମିତ ଅଷ୍ଟରତ୍ନର କଳସୀ
ତହିଁର ଉପରେ ହୀରା ମାଣିକ୍ୟ ଯେ ବସି ।
ବରକନ୍ୟା ଏକାସନେ କଲେ ନେଇ ଉଭା
ଚନ୍ଦ୍ର ରୋହିଣୀ ପରାୟେ ଦିଶନ୍ତି ସେ ଶୋଭା ।
ପୂର୍ବ ବିଧିମତେ ଋଷି ପଢନ୍ତି ଆଶିଷ
ବଶିଷ୍ଠ ଯେ ମାରକଣ୍ଡ ଦୁର୍ବାସାହିଁ ବ୍ୟାସ ।
ଭେଦଛନ୍ତି ଏହୁ ଇଳା ପିଙ୍ଗଳା ସୁଷୁମ୍ନା
ସ୍ତୁତିବେଦର ସମ୍ମାନ ବ୍ରହ୍ମମୁନି ସିନା ।
କଳସୀଏ ସ୍ତୁତିବେଦୁଁ ଉତପତ୍ତି କରି
ଉତ୍ସବ ବଢ଼ିଲା ଗଲେ କୁମାରକୁମାରୀ ।
ଅନେକ ହରଷ ତହିଁ ହେଲେ କଉରବେ
ଆନନ୍ଦ ମତ୍ତ ହୋଇଲେ କୃଷ୍ଣ ବଳଦେବେ ।
ପଞ୍ଚମଦିନରେ ହେଲା ଉତ୍ସବ ଗୋଟିଏ
ଏକକୁ ଆରେକ ମତ୍ତ ହୁଅନ୍ତି ନାହିଁ ଭୟେ ।
ଏକକୁ ଆରେକ କରେ ହାସ୍ୟ ପରିହାସ
ପ୍ରଥମେ ଚନ୍ଦନ ସିଙ୍ଗି ହୋଇଲେ ହରଷ ।
ତଦନ୍ତେ କର୍ଦ୍ଦମ କରେ କର୍ଦ୍ଦମରେ କାୟ
ପିଚକାରୀ ମରାମରି ହୋଇ ଜଳମୟ ।
ବେଳକୁବେଳ ହୋଇଲା କଉତୁକ ଖେଳେ
ଏକ ଉପରେ ଆରେକ ଗଡ଼ାଗଡ଼ି ହେଲେ ।
ପୁଣି ପୁଣି ନିକ୍ଷେପିଲେ ପିଚକା କର୍ଦ୍ଦମ
ଦିଶିଲା ଭବିଷ୍ୟ ସେହି ଦ୍ୱାରକା ଭୁବନ ।
ବସୁଦେବ ପୁଚ୍ଛାକଲେ ବ୍ୟାସ ମହାମୁନି
କେବଣ ଚରିତ ତୁମ୍ଭେ ଜାଣଛିକି ପୁଣି ।
ବ୍ୟାସମୁନି ବୋଇଲେ ହେ ଶୁଣ ବାସୁଦେବ
ପାପପୁଣ୍ୟ ମିଳନ୍ତି ଯେ ହୋଇ ଏକଠାବ ।
ଦିବସେ ହୋଇଲେ ପୁଣି ଗନ୍ଧେକ ହୁଅଇ
ସଂସାର କଥା ଏସନ କେହି ନ ଜାଣଇ ।
ପୁଣ୍ୟ ହୋଇଲା ଯେମନ୍ତ ବିଭାର ଯୁକତେ
ନାନାବର୍ଣ୍ଣେ ବେଶ ପଞ୍ଚଦିବସ ପର୍ଯ୍ୟନ୍ତେ ।
ଅନେକ ଧନ ବିଧ୍ୱଂସ କଲେ ବହି ଶ୍ରଦ୍ଧା
କାଳେ ସେହି ପୁଣ୍ୟର କ ନୋହିବ ହେ ବାଧା
ଶ୍ରୀକୃଷ୍ଣ ସର୍ବେ ବିଳସି ଥିଲେ ପୁଣ୍ୟମୟେ
ଏ ଦେହ ପଡ଼ିଲେ ଧୂଳି କର୍ଦ୍ଦମ ଗୋଟିଏ ।

ପାପ ପୁଣ୍ୟ ଏହି ଦେହେ ହେଲେ ଅବା ସବ
ଦେବତାଏ ନ ପାରନ୍ତି ଏହା ତଥ୍ୟ କରି ।
ଶ୍ରୀ ବାସୁଦେବଦେବଙ୍କ କୌତୁକ ରଚନା
ଏକ ପୁତ୍ର ବିଭାଘରେ ଏ ଉତ୍ସବ ସିନା
ଏ ମାୟା ସଂସାର ଗୋଟି ମୋତେ ଲାଗେ ବଣା
ଏକକୁ ଆରେକ ହୁଏ ବିପରୀତ ଜଣା ।
ଶ୍ରୀକୃଷ୍ଣର ଆରାଧନା ମୋର ହୃଦେ ଥାଉ
ବସ୍ତୁ ଧନେ ମୋର ମନ କାହିଁକି ନ ଯାଉ
ଶ୍ରୀକୃଷ୍ଣର ପାଦପଦ୍ମେ ସଦା ମୋର ଇଚ୍ଛା
ଜଗତ ବନ୍ଦନ ନାଥ କରନ୍ତୁ ମୋତେ ରକ୍ଷା ।
ନିରନ୍ତର ଗୋବିନ୍ଦର ନାମ ମୁଁ ଭାବଇ
ସର୍ବଦା ସମ୍ପଦ ହାନି ନିତ୍ୟ ପ୍ରକଟଇ ।
ଭୋଜନେ ଶୟନେ ପୁଣି ଶଉଚ ଭୁବନେ
ଭାବେ ଭଜିବାରୁ ମନ ପ୍ରସନ୍ନ ବଦନେ ।
ଯାହା ସେ କହିଲେ ମୋତେ ମହାମୁନି ବ୍ୟାସ
ତାହା ମୁହିଁ ଜନ୍ମେ ଜନ୍ମେ କରଇ ଅଭ୍ୟାସ ।
ଶ୍ରୀବାସୁଦେବ ଚରଣେ ଭାବଇ ମୁଁ ନିତ୍ୟେ
ବଦନ୍ତି ଶାରଳା ଦାସ ଏ ସଂସାର ହିତେ ।
ଏଥୁ ଅନନ୍ତରେ ଦୁରାକର୍ଣ୍ଣଙ୍କୁ ବସାଇ
ଉଚିତ ବେଭାର କରେ ତାଙ୍କୁ ହଳସାଇଁ ।
ମେଲାଣି ପାଇ ଚଳିଲେ ସେହି ତୋଷମନେ
ଯାଇ ପ୍ରବେଶ ହୋଇଲେ ହସ୍ତିନା ଭୁବନେ
ଏହା ଶୁଣି ବୈବସ୍ୱତ ମନୁ ଯେ ବୋଇଲା
ଚନ୍ଦ୍ରାବତୀ ବିଭା ପାଞ୍ଚ ବରଷ ହୋଇଲା
କୃଷ୍ଣର ଅନ୍ତର ଶତ୍ରୁ ଥିଲା କୌରବଙ୍କୁ
ପୁତ୍ରବଧୂ ଦେଖି କନ୍ୟା ଗୁଡ଼ିଲେ ତାହାଙ୍କୁ ।
କୃଷ୍ଣ ଦୁର୍ଯ୍ୟୋଧନ ହେଲେ ଅତି ପ୍ରିୟଭାବ
ଏଥୁଅନନ୍ତରେ କିସ ହେଲା ମୁନିଦେବ ।
ବଦନ୍ତି ଅଗସ୍ତି ତୁ ହୋ ପୁଚ୍ଛା କଲୁ ଯାହା
ସାବଧାନ ହୋଇ ଶୁଣ ମନୁ ନରନାହା ।
ପୁଚ୍ଛିଲ ହସ୍ତିନା ସିଂହଦୁଆର ପ୍ରସ୍ତାବ
ଚନ୍ଦ୍ରାବତୀ ପାଇଁ ବନ୍ଦି କଲେ ବଳଦେବ ।
ଶ୍ରୀବାସୁଦେବ ଦେବଙ୍କ ଚରଣେ ଭକତି
ଶୂଦ୍ରମୁନି ଶାରଳା ଦାସ କରେ ନତି ।
ନମସ୍ତେ ଶାରଳା ମାଗୋ ଝଙ୍କଡ଼ବାସିନୀ
ପ୍ରସନ୍ନ ବରଦାୟିନୀ ଦୁଃଖ ବିନାଶିନୀ ।

ଉଳକାଳ ବିଧ୍ୱଂସିନୀ ଏ କଳି ବାରିଧି
ତରିବା କାରଣେ ମୋତେ ଦିଅ ସଦବୁଦ୍ଧି ।
ସରସ୍ୱତୀ ଦେବୀ ତୁ ଗୋ ବସ୍ତୁ ପାଟରାଣୀ
ସ୍ୱରରେ ସପତସ୍ୱର ବିପଞ୍ଚୀଗାୟିନୀ ।
ଖଣ୍ଡା ସ୍ୱରେ ମାଗୋ ନାରାୟଣଙ୍କୁ ମୋହିଲୁ
ସପତସ୍ୱରେ ତାହାଙ୍କ ଆଗରେ ଗାଇଲୁ ।
ଅପର୍ଣ୍ଣା ଅପାପୀ ତୁଗୋ ଅଷ୍ଟଯୋଗେଶ୍ୱରୀ
କୋଟି ପ୍ରଳୟକୁ ଯେହ୍ନୁ ନିମିଷରେ କରି ।
ଶୁଦ୍ଧ ସ୍ଫଟିକ ଶଙ୍ଖର ଅଭୟା ହିଙ୍ଗୁଳା
ଦୁର୍ଗତିନାଶିନୀ ମାଗୋ ଶ୍ରୀସର୍ବମଙ୍ଗଳା ।
ସର୍ବଜନଙ୍କର ହୃଦପଦ୍ମେ ଯାର ବାସ
ଚରଣେ ଶରଣ ନିତ୍ୟ ଶ୍ରୀଶାରଳା ଦାସ ।
ଯହିଁ ସେ ପ୍ରସନ୍ନ ହେଲେ ଶ୍ରୀଚଣ୍ଡୀ ଶାରଳା
ତେଣୁ ସପତ ସାଗର ତରି ଲେଡ଼େ ଭେଳା
ଏ ସପତ ସାଗରର କେ ପାଇବ ଅନ୍ତ
ମନୁଷ୍ୟର ଅଗୋଚର ଏ ମହାଭାରତ ।
ବ୍ୟାସ ମହାମୁନି ଏକା ଏଥିର କାରଣ
କହିବାକୁ ସମର୍ଥ ସେ ଏ ବସ୍ତୁ ପୁରାଣ ।
କୋଟିଏ ଯୁଗରେ ବସି ଅନନ୍ତ କହିଲେ
ମହାଭାର ଲାଗିବାରୁ ଭାରତ ବୋଇଲେ ।

## ସୁରେଖା ହରଣ

ବଳିଙ୍କ ଦେଶ ରାଜା ଯେ ବୈବସ୍ୱତ ମନୁ
ପାଦ୍ୟାର୍ଘ୍ୟ ଦେଇ ପୁଚ୍ଛିଲେ ଘଟଋଷି ସୂନୁ ।
ଧୂପ ଦୀପ ନେଇବେଦ୍ୟ ଦେଇ ପୂଜା କଲେ
କୋଟିଏ ସୁବର୍ଣ୍ଣ ପାଦତଳରେ ଥୋଇଲେ ।
ନୂତନ ବସନ ଏକସହସ୍ର ଯେ ଦେଇ
ମୁନିଙ୍କ ଚରଣ ତଳେ ନୃପତି ନମଇଁ ।
ଶ୍ରୀମହାଭାରତ ଏହି ସୁଧାରସ ସାର
ଶୁଣନ୍ତେ ଶ୍ରବଣେ ପାପ ଦହିବ ମୋହର ।
ଚନ୍ଦ୍ରାବତୀ ବିଭା ଅନ୍ତେ ହେଲା କିସ କଥା
ଏଥୁଉତ୍ତାରେ ହୋଇଲା କହ ବ୍ରହ୍ମବେତ୍ତା ।
ରାଜା ବିନୟ ଭକତି ଭାବମାନ ଦେଖି
ପୁରାଣ ପୋଥି ଫେଇଲେ ମୁନି ହୋଇ ସୁଖୀ
ଏକମନ ହୋଇ ତୁହେ ଶୁଣ ନରପତି
ପୁରାଣ ପୋଥି ଫେଡ଼ିଣ କହନ୍ତି ଅଗସ୍ତି ।

ଯେବେ ପଚାରିଲୁ ମଧ୍ୟପର୍ବର ଭାରତୀ
ସନ୍ତୋଷ ଚିତ୍ତରେ ତୁହେ ଶୁଣ ମହାରଥୀ ।
କୂର୍ମ ପର୍ବତ ବୋଲିଣ ଏକ ଗିରିବରେ
ସୁରନଦୀ ବୋଲି ନଦୀ ବହେ ଏକଧାରେ ।
ତହିଁର ପଶ୍ଚିମ ଦିଗେ ନଗ୍ରେକ ଅଛଇ
କରମଣ୍ଡଳ ବୋଲିଣ ତାର ନାମ ହୋଇ ।
ତହିଁରେ ନରେନ୍ଦ୍ର କୃତଶେଖର ଅଟଇ
ମନ୍ତ୍ରୀର ନାମ ତାହାର ବିରୂପାକ୍ଷ ହୋଇ ।
ନୀଳଶେଖର ନାମରେ ତାହାର କୁମର
ହାତୀ ରଥୀ ପଦାତି ଯେ ଅଛଇ ଅପାର ।
ଅତି ସମାରୋହେ ରାଜା ରାଜ୍ୟ କରୁଥାଇ
କାହାର ସଙ୍ଗରେ ବାଦଦ୍ୱନ୍ଦ୍ୱ ନ କରଇ ।
କନ୍ୟା ତାହାର ସୁରେଖା ନାମେ ଏକବାଳୀ
ଅନେକ ସନ୍ନେହେ ପାଳଇ ତାକୁ ଦଣ୍ଡଧାରୀ ।
କଛୁଦିନରେ ଦୁହିତା ହେଲା ନବଯୁବା
ତା ସୁନ୍ଦରପଣକୁ କି ପଟାନ୍ତର ଦେବା ।
ରତିରୁ ସୁନ୍ଦର ସେହି ଅଟଇ ସୁନ୍ଦରୀ
ମୁଖ ଦିଶଇ ତାହାର ଚନ୍ଦ୍ରମାର ପରି ।
ହସ୍ତେ ପାଦେ ଶଙ୍ଖ ପଦ୍ମ ଚିହ୍ନ ତା ଅଛଇ
ଅରୁଣ ଉଦୟ ପ୍ରାୟ ଅଧର ଦିଶଇ ।
ସିଂହର ପ୍ରାୟେକ ମଧ୍ୟଭାଗ ତା ଅଟଇ
ସର୍ବ ଅଳଙ୍କାର ତାର ଶରୀରେ ଅଛଇ ।
ଅପୂର୍ବ ସୁନ୍ଦରୀ ତାର ପଟାନ୍ତର ନାହିଁ
କୃତକେଶୀ ରାଜା ଦେଖି ମନେ ବିଚାରଇ ।
ଦୁହିତା ଯୁବତୀ ହେଲା କି ବୁଦ୍ଧି କରିବି
କି ପ୍ରକାରେ ବିଭା ଯାଏ ରକ୍ଷା କରାଇବି ।
ଏକାନ୍ତେ ଦିନେ ମନ୍ତ୍ରୀକୁ ରାଇ ପଚାରିଲେ
ମେଡ଼ ଗୋଟିଏ ତୋଳାଅ ବୋଲିଣ କହିଲେ
ରାଜାର ବଚନେ ମନ୍ତ୍ରୀ ବିରୂପାକ୍ଷ ଗଲା
ବିଚିତ୍ର ଲେଖନ କରି ମେଡ଼ ତିଆରିଲା ।
ରାଜାର ସମ୍ମୁଖରେ ତାହା ଜଣାଇଲା ଯାଇ
ମେଡ଼ିକ ତିଆରି ହେଲା ଆହେ ନରସାଇଁ ।
ବେଗେ ସେ କୃତଶେଖର ରାଜା ଚାଲିଗଲା
ମେଡ଼ର ଭିତରଯାକ ବୁଲିଣ ଦେଖିଲା ।
ସୁନ୍ଦର ଦେଖି ମନ୍ତ୍ରୀକୁ ରାଜା ପ୍ରଶଂସଇ
ନୋହିଲେ କି ବିରୂପାକ୍ଷ ନାମ ତୋର ହୋଇ ।

ପୁନ ନୀଳଶେଖରଙ୍କୁ ମୁହିଁ ପଚାରିଲି
ସୁରେଖା ବାଳୀକୁ ଏଥେ ରଖିବା ବୋଇଲି
ଯୋଗିନୀ ପରିବାରିଏ ଏହା ସଙ୍ଗେ ଥାନ୍ତୁ
ନାନା କଉତୁକେ ତାର ମନକୁ ରଞ୍ଜନ୍ତୁ ।
ଏମନ୍ତ ଆଜ୍ଞା ଦେଲଣ ନୃପତି ଚଳିଲେ
କନ୍ୟାକୁ ନେଇ ଏକାନ୍ତ ଭୁବନେ ରଖିଲେ
ଏମନ୍ତ ଥୋକାଏ ଦିନ ତହିଁ ବହିଗଲା
ନାନାଦେଶକୁ ସେ ରାଜା ଦୂତ ପଠାଇଲା ।
ଅନେକ ଦେଶରେ ରାଜା ବୁଲାଇଲା ଚର
ଦୁହିତା ସମାନେ କାହିଁ ନ ପାଇଲା ବର ।
ବିସ୍ମୟ ହୋଇ ଭାଳଇ ମନରେ ନୃପତି
ଦୁହିତାକୁ ବିଭା ଦେବି କାହାକୁ ସଂପ୍ରତି ।
ମନେ ମନେ ମହାରାଜା କରଇ ବିଚାର
ଦୁହିତା ବିଭା ନ କଲେ ନାହିଁ ପ୍ରତିକାର ।
ମନେ ଭାଳୁଥାଏ ରାଜା କାହାକୁ ନ କହି
ଏଣେ ପ୍ରତିଦିନ ରାଜା ମୃଗୟା କରଇ ।
ମାରଇ ବରାହ ମୃଗ ହରିଣ ଶମ୍ବର
ପ୍ରଜାମାନଙ୍କୁ ତା ବାଣ୍ଟି ଦିଏ ନୃପବର ।
ରାଜା ପରସାଦେ ପ୍ରଜାଜନ ବଡ଼ସୁଖୀ
ବାଟିକ ଭୂମିରୁ ପାଞ୍ଚଗଣା ସ୍ୱର୍ଣ୍ଣ ଲେଖି ।
ପରଜା ଗୃହାରମାନ ବୁଝଇ ଆପଣେ
କାହାରି ପ୍ରତି ବିମୁଖ ନ ଧରଇ ମନେ ।
ନିଶ୍ଚିନ୍ତେ ରାଜ୍ୟ କରଇ ସେ କୁତଶେଖର
ଦୁହିତା କଥାରେ ଚିନ୍ତା ମନେ ଥାଏ ତାର
ଏଥୁଅନ୍ତେ ବୁଝ ଆହେ ବିଧାତାର କୃତ୍ୟ
ଦୁହିତା କର୍ମେ ଲେଖିଛି ଯାହା ଦଇବତ ।
ବୈଶାଖ ଶୁକ୍ଳ ତୃତୀୟା ତିଥି ଶନିବାର
ସେ ଦିନ ରୋହିଣୀ ବୃଷଚନ୍ଦ୍ର ଏକମେଳ ।
ଶୋଭନ ଯୋଗ ତୈତିଳ ନାମରେ କରଣ
ସାଧକ ତାର ବଜାର ହୋଇଛି ସେ ଦିନ ।
ସେ ଦିନ ନାରଦ ବୀଣା ଯନ୍ତ୍ରକୁ ବଜାଇ
କଳି ଧୋକଡ଼ି ମୁଣିକୁ କାଖରେ ସେ ନେଇ
ବେଦଧ୍ୱନି ଦେଇ ମୁନି ହୋଇଲେ ବାହାର
କଳିପ୍ରିୟ ନ ରହନ୍ତି କାହିଁ ଏକଠାର ।
ସ୍ୱର୍ଗରୁ ଓହ୍ଲାଇ ମୁନି ମଞ୍ଚକୁ ଆଇଲେ
କୁତଶେଖର ନୃପତି ରାଜ୍ୟରେ ମିଳିଲେ ।

ମୁନିଙ୍କୁ ଦେଖିଲା କୁତଶେଖର ରାଜନ
ନମସ୍କାର କଲା ଯାଇ ମୁନିଙ୍କ ଚରଣ ।
କଲ୍ୟାଣ କରି ବସିଲେ ସେହି ମୁନିବର
ରାଜା ଦେଖି ପ୍ରଶଂସଇ ବ୍ରହ୍ମାର କୁମର ।
ରାଜ୍ୟର ବିଧି ଚରିତ୍ରମାନ ପଚାରିଲେ
ସବୁ ଭଲ ବୋଲି କୁତଶେଖର ବୋଇଲେ
ପୁନି ଯେ ନୀଳଶେଖର ଦେଖିଣ ଆଇଲା
ମୁନିଙ୍କ ଚରଣେ ସେହୁ ଓଳଗି ଶୋଇଲା
ଅନେକ କଲ୍ୟାଣ ତାକୁ କଲେ ତପୋବନ୍ତ
ଧନ୍ୟ ଧନ୍ୟ ରାଜା ତୁହି ଅଟୁ ଭାଗ୍ୟବନ୍ତ ।
ବିରୂପାକ୍ଷ ମନ୍ତ୍ରୀକୁ ସେ ବହୁ ପ୍ରଶଂସିଲେ
ଏମନ୍ତ ମୁନି ସେଠାରେ ପ୍ରହରେ ରହିଲେ ।
ରାଜାକୁ ମେଲାଣି ମାଗି ହୋଇଲେ ବାହାର
ମନଦଣ୍ଡ ଚଢ଼ି ତହୁଁ ଗଲେ ମୁନିବର ।
ମେଡ଼ାର ପାଖରେ ଲାଗି ଯାଉଛନ୍ତି ମୁନି
ମେଢ଼େ ଥାଇ ଦେଖେ କୁତଶେଖର ନନ୍ଦିନୀ
ବୋଇଲେ ଏଣିକି ମୁନି ଅବଧାନ କଲେ
ମୋହର ମନ ବେଦନା କହିବି ତୁମ୍ଭରେ ।
ଏମନ୍ତ ଶୁଣିଣ ମୁନି ଭିତରକୁ ଗଲେ
ସୁରେଖା ଆସି ମୁନିଙ୍କୁ ନମସ୍କାର କଲେ ।
କଲ୍ୟାଣ କରି ବୋଲନ୍ତି ତାକୁ ମୁନିବର
ରୂପ ଦେଖିଣ ପ୍ରଶଂସା କରନ୍ତି ଅପାର ।
ଅହ୍ୟସୁଲକ୍ଷଣୀ ତୁହି ହୁଅ ଗୋ ନନ୍ଦିନୀ
ବହୁତ ପୁଣ୍ୟ ତୋହର ହେଉ ଗୋ ତରୁଣୀ ।
ନାରାୟଣର ନନ୍ଦନ ହେଉ ତୋର ବର
ଏହା ଶୁଣିଣ ସୁରେଖା କରଇ ଉତ୍ତର ।
ଆଜଯାଏ ମୁନି ମୁହିଁ ବିଭା ହୋଇ ନାହିଁ
ମୋହର ସମାନ ବର ନ ମିଳିଲା କାହିଁ ।
ତୁମ୍ଭେ ମହାମୁନି ଯେବେ ଦୟା କଲ ମୋତେ
ଭଲ ବର ଖୋଜି ଆଣ ମୋହର ନିମନ୍ତେ ।
ମୁନି ବୋଇଲେ କହିବା କଥାଏ ଯେ ଆମ୍ଭେ
ତୋହର ସମାନ ବର ଅଛି ଏକଠାବେ ।
କୁଶସ୍ଥଳୀ ବୋଲି ନାମ ଦ୍ୱାରକାରେ ଅଛି
ଉଗ୍ରସେନ ନାମେ ରଜା ରାଜ୍ୟ କରୁଅଛି ।
ତାହାର ଦୁହିତା ନାମ ରଇବନ୍ତୀ ବାଳୀ
ବୃଷ୍ଣି ବଂଶ ବୋଲି ବିଭା ବସୁଦେବେ କରି ।

ତାହାଙ୍କ ପୁତ୍ର ଅଟନ୍ତି ରାମକୃଷ୍ଣ ବେନି
କଂସର ଡରେ ଗୋପରେ ରହିଲେ ସେ ପୁଣି
ଦଇବ ବଳେ ଅଣାଇ ଆପେ କଂସରାଣ
ରାମକୃଷ୍ଣଙ୍କୁ ଦେଖିଣ ହରାଇଲା ପ୍ରାଣ ।
କଂସର ଭାରିଯା ନାମ ହେବତ ଯେ ପ୍ରହେତ
ଜରାସନ୍ଧ ରାଜା ତାଙ୍କ ପିଅର ଅଟନ୍ତି ।
ସେ ଯାଇ ଗୁହାରି କଲେ ପିତାଙ୍କ ସ୍ଥାମୁରେ
ଉଗ୍ରସେନ ରାଜା ହୋଇଥିଲେ ମଥୁରାରେ ।
ତାହା ଡରେ ଆସି କୁଶସ୍ଥଳରେ ରହିଲେ
ଭୀଷ୍ମକରାଜା ଦୁହିତାକୁ କୃଷ୍ଣ ବଶ ହେଲେ ।
ତାହାର ନାମ ରୁକ୍ମିଣୀ ତାହାର ଉଦରେ
କାମଦେବ ଆସି ଜାତ ପୁତ୍ର ସ୍ୱରୂପରେ ।
ତାହାର ନାମ ପ୍ରଦ୍ୟୁମ୍ନ ପଟାନ୍ତର ନାହିଁ
ରତି ନାମ ପ୍ରାୟେ ତୁମ୍ଭେ ଦଶିବ ଯେ ଦୁଇ ।
ଆମ୍ଭ ମନକୁ ଏମନ୍ତ ଆସଇ ଗୋ ମାସେ
ମୁନିବର କହନ୍ତେ ଯେ ସୁରେଖା ଅଥସେ ।
ମୁନିଙ୍କ ଚରଣ ତଳେ ଦଣ୍ଡବତ କଲା
କେଉଁଦିନ ମୁନିବର ଆଣିବ ବୋଇଲା ।
ନାରଦ ବୋଇଲେ ବସି ଦିନ ଗଣୁଥାଅ
ଦେନି ଆସିବ ମୁଁ ଗୃରଦନେ କୃଷ୍ଣପୁଅ ।
କଲ୍ୟାଣ କରିଣ ମୁନି ହୋଇଲେ ବାହାର
ମନଦଣ୍ଡ ଚଢ଼ି ଗଲେ ଦ୍ୱାରାବତୀ ପୁର ।
ଦେଖିଲେ ଆସ୍ଥାନେ ଅଛି ଉଗ୍ରସେନ ରାଜା
ମୁନିଙ୍କୁ ଦେଖି ଉଠିଣ କଲେ ପାଦପୂଜା ।
ଉଦ୍ଧବ ଅକ୍ରୁର ଆଦି ଅନାଧୃଷ୍ଟ ମୂଳେ
ସଭାରେ ବସିଅଛନ୍ତି ଆସ୍ଥାନର ତଳେ ।
ବସୁଦେବ ଆଦିକରି ସାତ୍ୟକ ସହିତେ
ରାମକୃଷ୍ଣ ଭାଇ ବେନି ଅଛନ୍ତି ସମସ୍ତେ ।
ଏସନ ସମୟେ ମୁନି ନାରଦ ମିଳିଲେ
କୁଶଳବାରତା ପୁଚ୍ଛି କଲ୍ୟାଣ ବାଞ୍ଛିଲେ ।
ଉଗ୍ରସେନ ବୋଇଲେ ମୁଁ ତୁମ୍ଭ ପରସାଦେ
ଶୁଭେ ରାଜପଣ ବସି କରେ ଅପ୍ରମାଦେ ।
ରାମକୃଷ୍ଣଙ୍କୁ ବୋଲନ୍ତି ଶୁହିଁ ମହାମୁନି
ପୁତ୍ର ପଉତ୍ର କୁଶଳ କହ ହଳପାଣି ।
ଗୋବିନ୍ଦ ବୋଇଲେ ମୁନି ତୁମ୍ଭର କଲ୍ୟାଣେ
ସମସ୍ତେ ସୁଖେ ଅଛନ୍ତି ଏଥେ ସାବଧାନେ ।

ଗଉରବ ପାଇ ମୁନି ବସିଲେ ଆସ୍ଥାନେ
ଉଗ୍ରସେନ କହିଲେକ ସର୍ବ ସୁବିଧାନେ ।
କଛହିଁ ବେଳ ତହିଁରେ ସେ ମୁନି ରହିଲେ
ଯାଉଅଛୁଁ ବୋଲି ତହୁଁ ମେଲାଣି ମାଗିଲେ ।
ରାଜା ବୋଇଲେ ଆଜକ ରହ ଆମ୍ଭପୁରେ
ନାରଦ ବୋଇଲେ କ୍ଷଣେ ନ ରହୁ ସୁସ୍ଥିରେ ।
ନାମ ଆମ୍ଭର କଳହପ୍ରିୟ ଆମ୍ଭେ ଋଷି
ଏକଠାବେ ଆମ୍ଭେ କେବେ ନ ପାରୁ ଯେ ବସି
ଏତେ କହି ମୁନି ତହୁଁ ହୋଇଲେ ବାହାର
କୃଷ୍ଣର ମନ୍ଦିରେ ଯାଇ ମିଳିଲେ ସତ୍ୱର ।
ଦେଖିଲେ ପ୍ରଦ୍ୟୁମ୍ନ ବସିଅଛି ଏକାହୋଇ
ବ୍ରହ୍ମଶାଖା ମୁନି ତହୁଁ ମିଳିଲେକ ଯାଇ ।
ନାରଦଙ୍କୁ ଦେଖିକରି ପ୍ରଦ୍ୟୁମ୍ନ ଉଠିଲା
ମୁନିଙ୍କ ଚରଣ ତଳେ ପ୍ରଣମି ଶୋଇଲା ।
କଲ୍ୟାଣ କରି ବସିଲେ ତହିଁ ମୁନିବର
ଗଉରବେ ପୂଜାକଲେ ପ୍ରଦ୍ୟୁମ୍ନ କୁମର ।
ବୋଇଲେ କାହିଁ ଥିଲହେ କଳିପ୍ରିୟ ଋଷି
ମୋହର ଆଗରେ ତାହା କହିବା ବିଶେଷି ।
ମୁନି ବୋଲେ ଥିଲୁ କୃତଶେଖର ରାଜ୍ୟରେ
ସେଠାରୁ ଆସିଲୁଁ ଆମ୍ଭେ ଦ୍ୱାରାବତୀ ପୁରେ ।
ପ୍ରଦ୍ୟୁମ୍ନ ତୁ ଯେ ଆମ୍ଭର ଅଟୁ ପ୍ରାଣସଖା
ତେଣୁ ଅଇଲୁ ତୁମ୍ଭଙ୍କୁ କରିବାକୁ ଦେଖା ।
ସବୁକାଳେ ତୁ ଆମ୍ଭଙ୍କୁ ସେବା କରୁଥାଉ
ଅପୂର୍ବ ବାରତା ଏକ ଆଣିଅଛୁଁ ତହୁଁ ।
କୃତଶେଖର ରାଜାର ଦୁହିତା ସୁରେଖା
ରୂପ ଗୁଣରେ ସେ ଅଟେ ରତି ସଙ୍ଗେ ଲେଖା
ଅତ୍ୟନ୍ତ ସୁନ୍ଦରୀ ତାକୁ ପଟାନ୍ତର ନାହିଁ
ଡମ୍ବରୁ ମଝା ପରାୟେ ମଝା ସରୁ ହୋଇ ।
ଉଲଟ ରମ୍ଭା ପରାୟେ ତାର ବେନିଜଙ୍ଘ
ମୃଣାଳ ଲତା ପରାୟେ ତାର ଭୁଜଯୁଗ ।
ତା ନାସିକା ତିଳଫୁଲ ପଟାନ୍ତର ନାହିଁ
ଶ୍ରୀଖଣ୍ଡ କପୋଳ ତାକୁ ତୁଳାଇବ କାହିଁ ।
ବିମ୍ବଫଳ ପ୍ରାୟେ ତାର ଅଧର ଦିଶଇ
କୁଙ୍କୁମ ବର୍ଣ୍ଣ ପରାୟେ କାୟା ପ୍ରକାଶଇ ।
ତୁ ତାହାକୁ ପଟାନ୍ତର ସେ ତୋତେ ଘଟଇ
ତେଣୁ ପ୍ରଦ୍ୟୁମ୍ନ ଅଇଲୁ ତୋତେ ଆମ୍ଭେ କହି ।

ଶୁଣିଲା ଯହୁଁ ତୋହର ରୂପ ଗୁଣ ବାଳୀ
ବୋଇଲା ସେ ବର ଆଣିଦଅ ତପଶାଳୀ ।
ଏବେ ରଥ ସଜକର ବେଗ ହୋଇ ଯିବା
ରାମକୃଷ୍ଣ ନ ଜାଣନ୍ତୁ କନ୍ୟାକୁ ଆଣିବା ।
ମୁନି ଏସନ କହନ୍ତେ ପ୍ରଦ୍ୟୁମ୍ନ ହସିଲା
କନ୍ୟାର ରୂପ ଶୁଣିଣ ଶରଧା ବଳିଲା ।
ଦାରୁକ ସାରଥିକୁ ସେ ଏକାନ୍ତରେ ରାଇ
ପ୍ରଦ୍ୟୁମ୍ନ କହଇ ରଥ ସାଜିଆଣ ଯାଇ ।
ତାର ଆଜ୍ଞାରେ ଦାରୁକ ରଥ ସଜ କଲା
ଦିବ୍ୟବେଶ ହୋଇ ଯାଇ ରଥରେ ବସିଲା ।
କାମଦେବନ୍ତୁଁ ଅଧିକ ଦିଶିଲାକ ଶୋଭା
କୃଷ୍ଣର କୁମାର କିସ ପଟାନ୍ତର ଦେବା ।
ରଥ ଚଳାଇ ତିନହେଁ ହୋଇଲେ ବାହାର
କେହି ନ ଦେଖିଲେ ତହୁଁ କୁମର ଯିବାର ।
ନିଦିନେ କୁତଶେଖର ରାଜ୍ୟରେ ମିଳିଲେ
ଅଭ୍ୟନ୍ତର ସ୍ଥାନେ ମୁନି କୁମର ରହିଲେ ।
ରାତ୍ର ପ୍ରଥମ ପ୍ରହର ହୋଇଲାକ ଯହୁଁ
ମେଢ଼ ଭିତରକୁ ମୁନି ପଶିଲେକ ତହୁଁ ।
ମୁନିଙ୍କୁ ଦେଖି କୁମାରୀ ଓଳଗି ଶୋଇଲା
ବୋଲେ କିସ କୃତ୍ୟ କଲ ପଦ୍ଯେ ନ ବଳା
ନାରଦ ବୋଇଲେ ଗଲୁ ଦ୍ୱାରାବତୀ ପୁର
ସଙ୍ଗତେ ଘେନି ଆସିଲୁ କୃଷ୍ଣର କୁମର ।
ତୁ ଯହୁଁ ଆମ୍ଭଙ୍କୁ ଏହା କହିଲୁ ସକଳେ
ତେଣୁ ସଙ୍ଗେ ଘେନି ଆମ୍ଭେ ଅଇଲୁ କୁମରେ ।
କୁମାରୀ ବୋଇଲେ ଘେନି ଆସ ମହାମୁନି
ଦେଖିଲେ ସିନା ପ୍ରତୀତ କରିବି ମୁଁ ପୁଣି ।
ଏତେ ବୋଲିଣ ନାରଦ ମୁନି ଚଳିଗଲେ .
ପ୍ରଦ୍ୟୁମ୍ନକୁ ସଙ୍ଗେ ଘେନି ସେଠାରୁ ଅଇଲେ
ଦାରୁକକୁ ବୋଇଲେ ତୁ ଲୁଚି ଏଥେ ଥାଅ
ଆମ୍ଭର ଆସିବାଯାଏ ଏହିଠାରେ ରହ ।
ଏତେ ବୋଲି କୁମରକୁ ମୁନି ଘେନିଗଲେ
କନ୍ୟାର ପୁରେ ପ୍ରବେଶ କରାଇ କହିଲେ ।
ଏହି କୁମାର ଗୋ ଝିକୁ ବର ତୁ ଗୋ ମାଏ
ସୁରେଖା ଚାହିଁଲା ତହିଁ କୃଷ୍ଣର ତନୟେ ।
ଦେଖି କାମଶରେ ମୋହ ହୋଇଲା ସୁନ୍ଦରୀ
ବହୁତ ପ୍ରଶଂସା କନ୍ୟା ମୁନିଙ୍କି ଯେ କରି ।

କୁମାର କୁମାରୀ ଯହୁଁ ହୋଇଲେକ ଭେଟ
ଆନନ୍ଦେ ହସି ବୋଲନ୍ତି ବ୍ରହ୍ମାଙ୍କର ଗୃଟ ।
ବୋଇଲେ ସୁରେଖା ବର ରୁଚିଲା କି ତୋତେ
ଲାଜଭରେ କୁମାରୀ ଯେ ଚାହେଁ ନେତ୍ରପ୍ରାନ୍ତେ
କହୁଁ କହୁଁ ରାତ୍ର ଦୁଇପ୍ରହର ହୋଇଲା
କୁମାର କୁମାରୀଙ୍କର କଥା ନ ସରିଲା ।
ଅଗସ୍ତି ଯେ ବୈବସ୍ୱତ ମନୁଙ୍କୁ କହିଲେ
ଭେଟ କରାଇଣ ମୁନି ଅନ୍ତର୍ଦ୍ଧାନେ ଗଲେ ।
ପ୍ରଦ୍ୟୁମ୍ନ ସୁରେଖା ଦୁହେଁ ରହିଲେ ମେଢ଼ରେ
ହାସ ପରିହାସ ହେଲେ ବହୁତ ପ୍ରକାରେ ।
ପ୍ରଦ୍ୟୁମ୍ନ ବୋଇଲା ଶୁଣ ଆଗୋ ପ୍ରାଣସଖି
ଆମ୍ଭର ରାଜ୍ୟକୁ ଚାଲି ଯିବା ବେଗ ହୋଇ ।
ତୁମ୍ଭର ବାପ ଭାଇ ଯେ ଦେଖିଲେ କୋପିବେ
ଆମ୍ଭର ସହିତେ ସେହୁ ବାଦ ଆରମ୍ଭିବେ ।
କଳି ଦ୍ୱନ୍ଦ୍ୱ ଏଥି ନଷ୍ଟେଁ ହୋଇବ ଅପାର
କେହି ନ ଜାଣନ୍ତୁ ବସ ରଥର ଉପର ।
ଏତେବୋଲି ମେଢ଼ୁ ଦୁହେଁ ହୋଇଲେବାହାର
ଦାସୀ ପରିବାରୀ ମାନେ ଅଛନ୍ତି ସଙ୍ଗର ।
ଏତେ ବିଚାରୁ ଦାରୁକ ରଥ ଆଣିଦେଲା
କୁମାରୀ ଘେନି କୁମର ରଥରେ ବସିଲା ।
ଦାସୀ ପରିବାରୀମାନେ ଯେତେ ତହିଁ ଥିଲେ
କନ୍ୟାକୁ କୁମର ଯହୁଁ ଘେନି ଚଳିଗଲେ ।
ପରସ୍ପର ମଧ୍ୟେ ସେହି କରନ୍ତି ବିଚାର
ଜାଣିଲେ କୋପ କରିବେ ଆମ୍ଭଙ୍କୁ ଠାକୁର ।
ଶୀଘ୍ର ହୋଇ ତହୁଁ ଦାସୀ ପରିବାରୀ ଗଲେ
ରାତ୍ର ନ ପାହୁଁ ରାଜାକୁ ଦରଶନ କଲେ ।
ନମସ୍କାର କରିଣ ଯେ ବୋଲନ୍ତି ଗୋସାଇଁ
ସାବଧାନ ହୋଇ ଶୁଣ ଆହେ ନରସାଇଁ ।
ଏକ ପୁରୁଷ ମେଢ଼ରେ କାଲି ପଶିଥିଲା
କନ୍ୟାର ସଙ୍ଗତେ ରାତେ ଭେଟ ସେହୁହେଲା
ଦୁହେଁ ଏକମନ ହୋଇ ସଂଯୋଗ ହୋଇଲେ
ରୂପେ ପଟାନ୍ତର ଦୁହେଁ ଦୁହିଙ୍କୁ ଦିଶିଲେ ।
ରତି କାମଦେବ ପ୍ରାୟେ ଦିଶିଲେ ସେ ଶୋଭା
ତାହିଁ ପଟାନ୍ତର ତାଙ୍କୁ କି ଉପମା ଦେବା ।
କୁମାରୀକୁ ବଳେ ଘେନି ରଥେ ବସାଇଲା
ଆକାଶ ମାର୍ଗରେ ବଳେ ରଥ ବାହିନେଲା ।

ଆମ୍ଭ ମଧ୍ୟରୁ ଜଣକୁ ସଙ୍ଗେ ସେ ନ ନେଲେ
ଏକା ହୋଇଣ ସୁରେଖା ତାଙ୍କ ସଙ୍ଗେ ଗଲେ ।
କୁତଶେଖର ରାଜାର ଉଡ଼ିଲା ସାହସ
ବୋଇଲା ଆଉ କେଳେ ଲୋ କହ ମୋର ପାଶ
ଦାସୀ ବୋଇଲେ କୁମର କନ୍ୟା ଘେନିଗଲା
ରଥ ବାହିଣ ଗଗନ ମାର୍ଗରେ ଚଳିଲା ।
ଏହା ଶୁଣି ରାଜା ବେଗେ ମନ୍ତ୍ରୀକି ଡାକିଲା
ନୀଳ ଶେଖର ପୁତ୍ରକୁ ଚାହିଁଣ ବୋଇଲା ।
ମେଢ଼ରୁ ଯେ ସୁରେଖାକୁ କେ ନେଲା ଚୋରାଇ
ବାନ୍ଧି ଘେନିଆସ ବୋଲି ରାଜା ଆଜ୍ଞା ଦେଇ ।
ଆଠ ଘେନିଣ ଧାଇଁଲା ନୃପତି କୁ· ର
ପାଞ୍ଚକୋଶରେ ଭେଟିଲା କୃଷ୍ଣପୁତ୍ର ମାର ।
ଡାକିଲା କେଣିକି ଯାଉ ଆରେ କନ୍ୟା ଚୋର
ରହ ରହ ବୋଲି ବାଟ ଓଗାଳେ ଆଗର ।
ମାର ମାର ଧର ଧର ଶୁଭଇ ଶବଦ
କୁମାର କୁମାରୀ ଚାହିଁ ମନରେ ବିଷାଦ ।
କୁମାରୀ ବୋଇଲେ ଆହେ ବୀରମଣି ଶୁଣ
ତୁମ୍ଭ ସଙ୍ଗରେ ଏମାନେ କରିବେକ ରଣ ।
ପ୍ରଦ୍ୟୁମ୍ନକୁ ଶତେପୁର କରିଣ ବେଢ଼ିଲେ
ତୀକ୍ଷ୍ଣ ଶରମାନ ସେହୁ ନିଠାଇ ବିନ୍ଧିଲେ ।
କରେ ଧନୁଶର ଧରି ମାରି ମହାବଳ
କୁତଶେଖର ସୈନ୍ୟଙ୍କୁ ପକାଇଲା ଦଳି ।
ଦେଖି ମହାକୋପ କଲା ସେ ନୀଳଶେଖର
ପ୍ରଦ୍ୟୁମ୍ନକୁ ବିନ୍ଧିଲାକ ତୀକ୍ଷ୍ଣ ତୀକ୍ଷ୍ଣ ଶର ।
ଅଙ୍ଗରେ ବାଜିଣ ଶରମାନ ଚଳିଗଲା
ଗଳ ଗଳ ହୋଇ ଦେହୁ ରକତ ବହିଲା ।
କନ୍ୟାକୁ ନିବନ୍ଧ କରି ଧରିଅଛି କୋଳେ
ଆପେ ଯୁଦ୍ଧ କରୁଅଛି ବସି ନିର୍ଭୟରେ ।
ଘଡ଼ିଏକ ପରିଯନ୍ତେ ସେହି ଯୁଦ୍ଧ କଲେ
ସଂଗ୍ରାମେ ପ୍ରଦ୍ୟୁମ୍ନକୁ ସେ ଜିଣି ନ ପାରିଲେ ।
କୃଷ୍ଣର କୁମର ସେହୁ ଏକା କାମଦେବ
ତାହାକୁ କାହୁଁ ଏ ସ୍ଥିର ଦେବ ପରାଭବ ।
କୁମରକୁ ସେ ଅନେକ ନାରାଚ ବିନ୍ଧିଲେ
କେବେହେଁ ସଂଗ୍ରାମେ ତାକୁ ଜିଣି ନ ପାରିଲେ
ଦୁଇପ୍ରହର ପର୍ଯ୍ୟନ୍ତେ ହେଲା ରଣଗୋଳ
ବହୁତ ଯୁଝିଲା କୁତକେଟୀର ଦୁଲାଳ ।

ଏକଜଣକୁ ସହସ୍ର ଜଣ ଯେ ବେଢ଼ିଲେ
ପ୍ରଦ୍ୟୁମ୍ନ ସଙ୍ଗେ ବହୁତ ରଣଗୋଳ କଲେ ।
ବହୁତ ସଇନ୍ୟ ଯହୁଁ ବେଢ଼ିଲେକ ଯାଇ
ବିସ୍ମୟ ହୋଇଣ ମନେ କୁମର ଭାଳଇ ।
ବଳାତ୍କାରେ ପ୍ରଦ୍ୟୁମ୍ନକୁ ଯାଇଣ ଧରିଲେ
ରଥର ଉପରୁ ତାଙ୍କୁ ତଳକୁ ଆଣିଲେ ।
ପାଟଡୋର ଘେନିକରି ବାନ୍ଧିଲେ କୁମରେ
କୁମାରୀ ଯେ ବସିଅଛି ରଥର ଉପରେ ।
ସାରଥିକି ବୋଇଲେ ସେ ରଥ ବେଗେ ଚଳା
ଅ ଜ୍ଞା ପ୍ରମାଣେ ସାରଥି ରଥ ବାହିନେଲା ।
କରମଣ୍ଡଳ ରାଜ୍ୟରେ ପ୍ରବେଶ ହୋଇଲେ
ମେଢ଼ର ଭିତରେ ନେଇ କନ୍ୟାକୁ ଥୋଇଲେ
କୁମରକୁ ବାନ୍ଧି ରାଜା ଆଗେ ଦେଲେ ନେଇ
କାହିଁର ତୁ କନ୍ୟାଚୋର ବୋଲି ପଚାରଇ
ଲାଜେ ପ୍ରଦ୍ୟୁମ୍ନ କୁମର ପେ ତିଅଛି ମଥା
କାହାକୁ ସେ ଫେଡ଼ିକରି ନ କହଇ କଥା ।
କୁତଶେଖର ରାଜା ତା ମନ୍ତ୍ରୀକି କହଇ
କୁମରକୁ ବେଗେ ହାଣି ପକାଅ ତୁ ନେଇ ।
ଏଡ଼େ ଭରସା ଏହାର ମେଢ଼ରେ ପଶିଲା
ମୋର କୁମାରୀ ଚୋରାଇ ରଥେ ନେଉଥିଲା ।
ରାଜାର ବଚନେ ମନ୍ତ୍ରୀ ବିରୂପାକ୍ଷ କହି
ଅବଧାନ କର ତୁମ୍ଭେ ଶୁଣିମା ଗୋସାଇଁ ।
ପୁରୁଷାନୁକ୍ରମରେ ମୁଁ ସେବକ ତୋହର
ମୋହର କଥା ଘେନିବ ଯେବେ ନୃପବର ।
ରାଜା ବୋଇଲେ ନ କହି ଅଛୁ କାହିଁପାଇଁ
ମନ୍ତ୍ରୀ ବୋଲେ ଦୋଷ କ୍ଷମା କରିବାଗୋସାଇଁ
ଏ କନ୍ୟା ଚୋରକୁ ଆମ୍ଭେ ବାନ୍ଧି ଥୋଇଥିବା
କାହାର କୁମର ତାହା ପଚାରି ବୁଝିବା ।
ସୁନ୍ଦର ପୁରୁଷ ଏହୁ ଅଟେ ନବଯୁବା
କାମଦେବ ପ୍ରାୟେ ରୂପେ ପାଉଅଛି ଶୋଭା ।
ମହତ ବଂଶରେ ଏହୁ ହୋଇଅଛି ଜାତ
ବିଚାରିଣ ଆଜ୍ଞା ଦିଅ ଆହେ ନରନାଥ ।
ଏହିପରି ବୁଝାଇଣ ସୁମନ୍ତ୍ରୀ କହିଲା
ରାଜା ମନକୁ ଅମୃତ ପ୍ରାୟେ ସେ ରୁଚିଲା ।
ମନ୍ତ୍ରୀକି ବହୁ ପ୍ରଶଂସା କରି ମହାରାୟେ
ବନ୍ଧନରୁ ଫିଟାଇଲା କୃଷ୍ଣଙ୍କ ତନୟେ ।

ବନ୍ଦୀ ପ୍ରକାରେ ରଖିଲ ଜଗୁଆଳି ଦେଇ
ଯେତେବେଳରେ କୁମର ବନ୍ଧନେ ପଡ଼ଇ ।
ସୁରେଖା କୁମାରୀକି ଯେ ଅନ୍ନ ନ ରୁଚିଲା
କୁମର ନାମ ଧରିଣ ବିକଳେ କାନ୍ଦିଲା ।
ଦାସୀ ପରିବାରୀମାନେ ବସି ଚଉପାଶେ (ଚଉଆଡ଼ିଲେ)
ଅନେକ ପ୍ରକାରେ ତାକୁ ପ୍ରବୋଧନା କଲେ
ବୋଇଲେ କୁମରେ ବନ୍ଦୀ କରି ରଖିଛନ୍ତି
ଏଥିକୁ ତୁ ଆନଚିନ୍ତା ନ କର ଗୋ ସତି ।
ଜୟ ଝଙ୍କଡ଼ବାସିନୀ ଶାରଳା ଗୋ ମାଏ
ତୋହର ପ୍ରସାଦେ ସିନା ମୁଁ ପଣ୍ଡିତ ହୁଏ ।
ତୁ ଯାହା କହୁ ତାହା ମୁଁ ଲେଖନେ ଲେଖଇ
ଶାରଳା ଦାସ ତୋ ପାଦେ ଶରଣ ମାଗଇ ।

---

## ପ୍ରଦ୍ୟୁମ୍ନର ବନ୍ଦୀ ମୋଚନ

ଅଗସ୍ତି କହନ୍ତି ମନୁରାଜା ପଚାରଇ
ଏଥିଉତ୍ତାରୁ ଯେ କିସ ହୋଇଲା ଗୋସାଇଁ ।
ପ୍ରଦ୍ୟୁମ୍ନ ବନ୍ଦୀ ହୋଇଲା ଜାଣିଣ ନାରଦ
ପଞ୍ଚଭୂତ ଆତ୍ମାରେ ସେ ପାଇଣ ବିଷାଦ ।
ମନଦଣ୍ଡ ଚଢ଼ି ସେହୁ ବାହାର ହୋଇଲେ
ଦ୍ୱାରାବତୀ ପୁର ମଧ୍ୟେ ଯାଇ ପ୍ରବେଶିଲେ ।
କୃଷ୍ଣ ନଗରେ ପଡ଼ୁଛି ବହୁତ ଚହଳ
ସମସ୍ତେ ଯେ କାନ୍ଦୁଛନ୍ତି ହୋଇଣ ବିକଳ ।
ଗୋବିନ୍ଦ ବୋଇଲେ ତୁମ୍ଭେ ସମସ୍ତେ ତ ଅଛ
ପ୍ରଦ୍ୟୁମ୍ନ କାହିଁ ଅଛଇ ଜଣେ ଜଣେ ପୁଛ ।
ସାତଦିନ ହେଲା ମୋର ପୁତ୍ର କାହିଁଗଲା
ପଞ୍ଚଭୂତ ଆତ୍ମାକୁ ମୋ କେହୁ କାଢ଼ି ନେଲା ।
ଶୁଣି ବଳରାମ ଶୋକ କରନ୍ତି ବହୁତ
ଉଗ୍ରସେନ ବିସ୍ମୟରେ ଏ କେବଣ ଚରିତ ।
ସାତବଂଶ ଯାଦବ ଯେ ଯାହାରେ ଖୋଜନ୍ତି
ପ୍ରଦ୍ୟୁମ୍ନର ବାର୍ତ୍ତା ଚିହ୍ନ କାହିଁ ନ ଦେଖନ୍ତି ।
ବହୁତ ବିକଳ ହେଲେ ପ୍ରଭୁ ଶିବଗ୍ରାହୀ
ଆପଣେ ଜାଣି ମାୟାରେ ହେଉଛନ୍ତି ମୋହି
ଭିତରେ ମହିଷୀମାନେ ବିକଳେ ରୋଦନ୍ତି
କପାଳରେ କର ମରି ରେବତୀ କାନ୍ଦନ୍ତି ।
କାନ୍ଦୁଛନ୍ତି ରତିଦେବୀ ହୋଇଣ ବିକଳ
ଦ୍ୱାରକା ନଗରଯାକ ପଡ଼ିଛି ଚହଳ ।
ଅନେକ ଯେ ହାଲହୁଲି ହେଲା ଦ୍ୱାରକାରେ
କାହାକୁ କେ ପଚାରିବ କହିବ ଗ୍ରାମରେ ।
ନାମ ଧରି ରାମକୃଷ୍ଣ କରନ୍ତି ରୋଦନ
ଲୋକତ କଥା ଫେଡ଼ି ନ କରନ୍ତି ବଚନ ।
ଅନ୍ତର୍ଯ୍ୟାମୀ ନାଥ ତାହା କିବା ନ ଜାଣନ୍ତି
ତାଙ୍କୁ କି ଉଦାର ଅଛି ସେ ତ ଶିଖିପତି ।
ମାୟାରେ ରୋଦନ କଲେ ଦେବ ଚକ୍ରଧର
କାହିଁଗଲା ମୋର ବାବୁ ପ୍ରଦ୍ୟୁମ୍ନ କୁମର ।
ବଳରାମ ତାଙ୍କ ସଙ୍ଗେ ରୋଦନ କରନ୍ତି
ବହୁତ ରୋଦନ କଲେ ଦେବକୀ ଯେ ସତୀ
ଏମନ୍ତ ସମୟେ ଯାଇ ନାରଦ ମିଳିଲେ
ଦେଖି ବଳରାମ ହରି ଓଳଗି ହୋଇଲେ ।
କଲ୍ୟାଣ କରି ବୋଇଲେ ତାଙ୍କୁ ମୁନିବର
ସର୍ବେ ବିରସ ହରଷ ନାହିଁ ତ କାହାର ।
ଗୋବିନ୍ଦ ବୋଲନ୍ତି ଶୁଣ ଆହେ ମୁନିମଣି
ପ୍ରଦ୍ୟୁମ୍ନ ମୋ କେଣେ ଗଲା ନ ପାରିଲୁ ଜାଣି
ବହୁତ ବିକଳ ହେଉଅଛଇ ଶରୀର
କୁଳର ଧାରଣ ସେ ମୋ ଅଖିଳ କୁମର ।
ଦେଶ ବିଦେଶରେ ବୁଲୁଥାଅ ଦିନ ରାତି
କାହିଁ ଦେଖିଲ କି ମୋର କନ୍ଦର୍ପ ମୂରତି ।
ମୁନି ବୋଇଲେ ସମସ୍ତେ ତୁମ୍ଭେ ଶାନ୍ତ ହୁଅ
ତହିଁର ବିଧାନ ଆମ୍ଭେ କହିବା ହେ ରହ ।
ନାରଦଙ୍କ ଏ ବଚନେ ସର୍ବେ ତୁନି ହେଲେ
କହ ମୁନିବର ତୁମ୍ଭେ ଗୋବିନ୍ଦ ବୋଇଲେ ।
ହସିଣ ନାରଦ ମୁନି କହନ୍ତି ଉତ୍ତର
କୁତଶେଖର ନୃପତି ପୁରେ ତୋ କୁମର ।
ସୁରେଖା ନାମେ ତାହାର ଦୁହିତାଏ ଥିଲା
ତୋହର କୁମର ଯାଇ ମେଢ଼ରେ ପଶିଲା ।
କନ୍ୟାକୁ ବଳରେ ସେହି ଆଣୁଥିଲା ହରି
ବେଢ଼ି କୁମରକୁ ବଳେ ଘେନି ଗଲେ ଧରି ।
ମାରିପକାଅ ଏହାକୁ ରାଜା ଆଜ୍ଞା ଦେଲା
ମନ୍ତ୍ରୀ ବିରୂପାକ୍ଷ ତହିଁ ନିବାରଣ କଲା ।
କଢ଼କୁଳେ ଉପୁଜିଲା ପ୍ରାୟୁକ ଦିଶଇ
ମନ୍ତ୍ରୀବର ବୋଲନ୍ତେ ସେ ରାଜା ବୋଧଯାଇ
ବନ୍ଦୀକରି କୁମରକୁ ଅଛନ୍ତି ରଖାଇ
ଏଥିକୁ ବିଚାରି ତୁମ୍ଭେ କର ଶିବଗ୍ରାହୀ ।

ନାରଦ ମୁଖରୁ ଏହା ଶ୍ରୀହରି ଶୁଣିଲେ
କୋପଭର ହୋଇ ପୁଣି ମୁନିଙ୍କୁ ବୋଇଲେ ।
ବାଟ କଢ଼ାଅ ହେ ମୁନି ଯିବା ତହିଁଯାଏ
ବଂଶ ତାହାର ନିଧନ କରିବି ନିଶ୍ଚୟେ ।
ଶୁଣିଣ ଶ୍ରୀବଳରାମ ମହାକୋପ କଲେ
ହଳମୂଷଳେ ତା ରାଜ୍ୟ ତାଡ଼ିବି ବୋଇଲେ ।
କରମଣ୍ଡଳ ରାଜ୍ୟ ତା ଲଙ୍ଗଳେ ତାଡ଼ିବି
କୃତକେଶୀଙ୍କୁ ଶମନ ପୁରକୁ ପେଷିବି ।
ଯେତେ ସୈନ୍ୟବଳ ତାର ସମସ୍ତ ନାଶିବି
ତେବେ ହଳଧର ନାମ ସାର୍ଥକ କରିବି ।
ବହୁତ ପ୍ରତିଜ୍ଞା ତହିଁ ବଳରାମ କଲେ
ହଳ ମୂଷଳକୁ ଦେବ ଶ୍ରୀକରେ ଧରିଲେ ।
ଗୋବିନ୍ଦ ବୋଇଲେ ଶୁଣ ଆହେ ହଳଧର
ଆଗହୁଁ ଏଡ଼େ ପ୍ରତିଜ୍ଞା କେବେହେଁ ନ କର ।
ଆମ୍ଭର ତାହାର ଯେବେ ହୋଇବାକ ଭେଟ
ତେବେ ଜାଣିବା ତାହାର କେଡ଼େ ସିନା ଆଣ୍ଟ
ନାରଦ ବୋଇଲେ ଶୁଣ ଆହେ ଭବଗ୍ରାହୀ
ନିଜ କଥାକୁ ନିଜେ ନ ବୁଝ କାହିଁପାଇଁ ।
ମେଡ଼ର ଭିତରେ ଚୋର କୁମର ପଶିଲା
ତାର ଦୁହିତାକୁ ଚୈତ୍ରକରି ଆଣୁଥିଲା ।
ଏଥିରେ ତାହାର ଦୋଷ କେଉଁ ନ ଯୋଗାଇ
ସାବଧାନ ହୋଇ ତୁ ହୋ ଶୁଣ ଭବଗ୍ରାହୀ ।
ବଳରାମ ବୋଲୁଛନ୍ତି ଶୁଣ ମୁନିବର
କରମଣ୍ଡଳକୁ ଆମ୍ଭ ସଙ୍ଗରେ ବାହାର ।
ହସିଣ ନାରଦ ମୁନି ବୋଲନ୍ତି ବଚନ
ବାଟ କଢ଼ାଇଣ ଦେବି ଯିବ ବଳରାମ ।
ନାରଦ ଗୋବିନ୍ଦ ବଳରାମଙ୍କ ସହିତେ
ଉଗ୍ରସେନଙ୍କ ନିକଟେ ଚଳିଲେ ତୁରିତେ ।
ଉଗ୍ରସେନେ ରାମ ହରି କଲେ ନମସ୍କାର
ମୁନି ଦେଖି ଉଗ୍ରସେନ ନମଇଁ ପୟର ।
କଲ୍ୟାଣ କରନ୍ତି ତାଙ୍କୁ ବ୍ରହ୍ମାଙ୍କ ନନ୍ଦନ
ଉଠ ହୋ ରାଜା ବିରସ ନ କର ତୁ ମନ ।
ଉଗ୍ରସେନ ବୋଇଲା ହୋ ଶୁଣ ମୁନିମଣି
ପ୍ରଦ୍ୟୁମ୍ନ ବାରତା ତୁମ୍ଭେ ଅଛ କହ ହୋ ଜାଣି ।
ତୁମ୍ଭେ ମୁନିବର ବୁଲ ସମସ୍ତ ଭୁବନେ
ତେଣୁ ତୁମ୍ଭଙ୍କୁ ପଚାରୁ ଆମ୍ଭେ ମହାମୁନେ ।

ନାରଦ ବୋଇଲେ ଆମ୍ଭେ ପାଇଛୁ ବାରତା
କରମଣ୍ଡଳ ରାଜ୍ୟରେ ପୁତ୍ର ବଳବନ୍ତା ।
ତହିଁର ରାଜା ଯେ କୃତଶେଖର ଅଟଇ
ସୁରେଖା ବୋଲିଣ ତାର ଦୁହିତା ଅଛଇ ।
ସୁନ୍ଦରପଣରେ ସେହି ରମ୍ଭାର ସମାନ
ବାଞ୍ଛାପାଇ ହରି ଆଣୁଥିଲା ତା ପ୍ରଦ୍ୟୁମ୍ନ ।
ତାହା ଜାଣିଲା ସେ କୃତଶେଖର ନୃପତି
ଥାଟ ପେଷି ଧରାଇଣ ନେଲା ତାର କତି ।
ହାଣି ପକାଅ ଏହାକୁ ମନ୍ତ୍ରୀକି ବୋଇଲା
ନ ମାର ବୋଲିଣ ମନ୍ତ୍ରୀ ତାକୁ ନିଷେଧିଲା ।
ମନ୍ତ୍ରୀ ବୋଇଲା ଅଟଇ ସୁନ୍ଦର ଏ ବାଳା
ଅବଶ୍ୟ ଏହାକୁ କେହି କରିବ ସଙ୍ଖୋଳା ।
ବଡ଼କୁଳେ ଜାତହେବା ପ୍ରାପ୍ତକ ଦିଶଇ
ଧରି ରଖିଥିବା ନାଶ ନ କରି ଗୋସାଇଁ ।
ମନ୍ତ୍ରୀର ବଚନେ ରାଜା ପ୍ରବୋଧ ହୋଇଲା
ଆକଟ କରି ପୁତ୍ରକୁ ବନ୍ଧାଇ ରଖିଲା ।
ଏହା ଶୁଣି ଉଗ୍ରସେନ କୋପେ ପ୍ରଜ୍ୱଳିତ
ଥରହର ହୋଇ ସେହୁ କମ୍ପେ ନରନାଥ ।
ରାଜା କୋପ ଦେଖି ତାକୁ ବୋଲେ ମୁନିବର
ଆଗହୁଁ ତୁ କୋପ କିପାଁ କରୁ ଦଣ୍ଡଧର ।
ଥାଟ ସଜକରି ବେଗେ ଯିବୁ ତହିଁଯାଏ
ହାନି ଅପଯଶ ବୁଝିବାକ ସେହିଠାଏଁ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ନରରାଣ
ଥାଟ ସଜକରି ଯିବା ଆମ୍ଭେ ଏହିକ୍ଷଣ ।
ବଳରାମ ବୋଲୁଛନ୍ତି ଉଗ୍ରସେନେ ତୁହି
ସାତବଂଶ ଯାଦବଙ୍କୁ ଆଜ ଆଣ ଯାଇଁ ।
ରାମ ବାକ୍ୟେ ଉଗ୍ରସେନ ଅକ୍ରୁରକୁ ରାଇ
ବୋଲେ ଥାଟ ସଜକରି ତୁମ୍ଭେ ବେଗ ହୋଇ
ଅକ୍ରୁର ରାଜାର ଆଜ୍ଞା ପାଇ ବେଗେ ଗଲା
ସିଂହ ଦୁଆରେ ଟମକ ରହି ବଜାଇଲା ।
ବୋଲେ ସମସ୍ତ ଯାଦବ ଆସ ସଜ ହୋଇ
ଯାହାର ଯେତେକ ଅଙ୍ଗବଳ ଯେ ଅଛଇ ।
ହାତୀ ରଥୀ ପଦାତିକ ଯାର ଯେତେ ଦଳ
ସଜ ହୋଇ ଆସି ସର୍ବେ ସିଂହଦ୍ୱାରେ ମିଳ ।
ଉଦ୍ଧବ ଅନାଧୃଷ୍ଟ ଯେ ସାତ୍ୟକ ସହିତେ
ଶଙ୍ଖାଜିତ ବସୁଦେବ ଅଇଲେ ସମସ୍ତେ ।

ସାତବଂଶ ଯାଦବ ଯେ ଆସି ମେଳ ହେଲେ
ହାତୀ ରଥୀ ପଦାତିକ ସମସ୍ତେ ଆଇଲେ ।
ଅଶ୍ୱ ଚଢ଼ି ଅଶ୍ୱୁଆରେ ଭିଡ଼ିଲେ କମାଣ
ଢୋଲ ଢମକ ମହୁରୀ ବାଜଇ ନିଶାଣ ।
ସୈନ୍ୟଙ୍କ ମୁଖ ଶବଦ ଶୁଭେ ଘନ ଘନ
ମହୁରି ତାଳ ବୀଣାର ନାଦ ଅବିଚ୍ଛିନ୍ନ ।
ବାଦ୍ୟ ନାଦ ଶବଦରେ ମହୀ ଉଛୁଳଇ
ବିକଟାଳ ମୁଖରାବ ଶବଦ ଶୁଭଇ ।
ଉଗ୍ରସେନର ଛାମୁରେ ଜଣାଇଁ ଅକ୍ରୁର
ସର୍ବସୈନ୍ୟ ସଜ ହୋଇ ଅଛନ୍ତି ଦୁଆର ।
ଉଗ୍ରସେନ ତୁହିଁ ରାମ କୃଷ୍ଣଙ୍କୁ କହନ୍ତି
ସର୍ବ ସୈନ୍ୟ ସଜ ହୋଇ ଦୁଆରେ ଅଛନ୍ତି ।
ଉଗ୍ରସେନର ମୁଖରୁ ଏସନକ ଶୁଣି
ସଜହୋଇ ଅଇଲେକ ଆପେ ହଳପାଣି ।
ସାତ୍ୟକଙ୍କୁ ତୁହିଁ ବୋଇଲେକ ଦାମୋଦର
ସଜ କରି ରଥ ଯିବା କରମଣ୍ଡଳର ।
ହବ୍ୟରଥ ଉଦ୍ଧବ ଯେ ସଜକରି ନେଲା
ଗୋବିନ୍ଦଙ୍କ ଛାମୁରେଣ ନେଇ ଉଭା କଲା ।
ବଳରାମଙ୍କର ରଥ ସଜକରି ଆଣି
ତା ଉପରେ ବିଜେକଲେ ଦେବ ହଳପାଣି ।
ଶଙ୍ଖ ଚକ୍ର ଗଦା ପଦ୍ମ ଧରି ନରହରି
ଦେବଦତ୍ତ ଶଙ୍ଖ ଧରି ବଜାନ୍ତି ମୁରାରି ।
ରାମଙ୍କ ପୁତ୍ର ଆନନ୍ଦ ସାନନ୍ଦ ସଙ୍ଗତେ
ଶାମ୍ବ ଗଦ ମୂଳେ ଥିଲେ କୃଷ୍ଣ ପୁତ୍ର ଯେତେ ।
ରଥେ ରଥେ ଚଢ଼ିକରି ସମସ୍ତେ ଅଇଲେ
ନବରି ଦୁଆରେ ଆସି ସମସ୍ତେ ମିଳିଲେ ।
ଏକାନ୍ତରେ ଭଗବାନ ସାତ୍ୟକଙ୍କୁ ରାଇ
ଗୁପତ କରଣ ତାଙ୍କୁ ବିଶ୍ୱାସରେ କହି ।
ତୁ ବାବୁ ସାତ୍ୟକ ଏବେ କଥା ଏକ କର
ରଥ ଚଢ଼ି ଯାଅ ଏଥୁ ବାରୁଣାବନ୍ତର ।
ଯୁଧିଷ୍ଠି ଆଗେ କହିବୁ ଏସନ ଚରିତ
ସୈନ୍ୟ ଭୁଲେ ପାଣ୍ଡୁଭାଇ ଆସିବେ ତୁରିତ ।
ହରି ଆଜ୍ଞାରେ ସାତ୍ୟକ ରଥ ସଜ କଲା
ହବ୍ୟବେଶ ହୋଇ ଯାଇଁ ରଥରେ ବସିଲା ।
ଗୋବିନ୍ଦଙ୍କୁ ନମସ୍କାର କରିଗଲା ଚଳି
ତକ୍ଷଣେ ବାରୁଣାବନ୍ତ ପୁରେ ଯାଇଁ ମିଳି ।

ଯୁଧିଷ୍ଠିଙ୍କ ସିଂହଦ୍ୱାରରେ ବିଜେ ମହାବୀର
ରଥରୁ ଓହ୍ଲାଇ ପଢ଼ି ପଶଇ ଭିତର ।
ଦେଖିଲା ଆସ୍ଥାନ କରି ବିଜେ ପାଣ୍ଡୁଭାଇ
ଆସ୍ଥାନ ତଳେ ସାତ୍ୟକ ଉଭାହୋଇଲା ଯାଇଁ ।
ଯୁଧିଷ୍ଠିଙ୍କୁ ଦେଖି ଦୂରୁ ଓଳଗି ଶୋଇଲା
ନମସ୍କରିଲି ନମସ୍କରିଲି ବୋଲିଣ ଭାଷିଲା ।
ଯୁଧିଷ୍ଠିର ବୋଇଲେ ତୁ ଯାଅ ରେ ନକୁଳ
ଭୂମିରେ ପଡ଼ି ଶୋଇଛି ସାତ୍ୟକଙ୍କୁ ତୋଳ ।
ଆଜ୍ଞା ପ୍ରମାଣେ ନକୁଳ ବେଗେ ଚଳିଗଲେ
ସାତ୍ୟକର କର ଧରି ତଳୁ ଉଠାଇଲେ ।
ଉଠି ସ୍ନେହେ କୋଳାଗତ ହୋଇ ବେନିବୀରେ
ଆସ୍ଥାନର ଉପରକୁ ଉଠିଗଲେ ଖରେ ।
ସାତ୍ୟକ ଭୀମଅର୍ଜୁନ ଦେଖି ପ୍ରଣମିଲା
ଗଉରବ ପାଇ ଯାଇଁ ଆସ୍ଥାନେ ବସିଲା ।
ଯୁଧିଷ୍ଠି ବୋଇଲେ ଶୁଣ ଆହେ ମହାବୀର
କିମର୍ଥେ ଅଇଲୁ କହ ଚରିତ ଏଥର ।
ମୋତେ ସଙ୍ଖୋଳ କି ତୁହୋ ଅଇଲୁ ଆପଣେ
କିବା ତୋତେ ପଠାଇଣ ଦେଲେ ଭଗବାନେ
ଏଥର ସନ୍ଦେଶ ବାବୁ କହ ମୋ ଅଗ୍ରତେ
ସର୍ବଶୁଭେ ଅଛନ୍ତି ତ ପ୍ରଭୁ ଜଗନ୍ନାଥେ ।
ବଳରାମଙ୍କ ସହିତେ ରାଜା ଉଗ୍ରସେନ
ସାତବଂଶ ଆଦିକରି କୁମର ପ୍ରଦ୍ୟୁମ୍ନ ।
ସାତ୍ୟକ କହଇ ଉଠି ଯୋଡ଼ି ବେନିକର
ମୋତେ ପଠାଇ ଅଛନ୍ତି ଦେବ ଦାମୋଦର
ସପତ ଦିବସ ଅନ୍ତରେ ହେଲା ଯେଉଁ କଥା
ଶୁଣ ଏବେ କହୁଅଛି ତହିଁର ବ୍ୟବସ୍ଥା ।
କେହି ନ ଜାଣିଲେ କେଣେ ଗଲାକ ପ୍ରଦ୍ୟୁମ୍ନ
ବିକଳ ହୋଇ ଖୋଜିଲେ ରାଜା ଉଗ୍ରସେନ ।
ଦେବକୀ ବସୁଦେବ ଯେ କାନ୍ଦିଲେ ବହୁତ
ରାମକୃଷ୍ଣ ସାତବଂଶ ଯାଦବ ସହିତ ।
ଏମନ୍ତବେଳେ ନାରଦ ମୁନି ତହିଁ ମିଳି
ବୋଇଲେ କିପାଁ ଦ୍ୱାରକାପୁରେ ହାଲହୋଲି
ଉଗ୍ରସେନ ବୋଇଲେ ହୋ ଶୁଣ ମୁନିବର
କେଣେ ଯାଇଛି କି ଜାଣ ପ୍ରଦ୍ୟୁମ୍ନ କୁମର ।
ନାରଦ ବୋଇଲେ ଶୁଣ ରାଜା ଉଗ୍ରସେନ
ଯେଉଁଣ ସ୍ଥାନେ ଅଛଇ କୃଷ୍ଣର ନନ୍ଦନ ।

ଗୋବିନ୍ଦ କହିଲେ ମୁନି କହ ମୋତେ ତଥ୍ୟ
ଯେମନ୍ତେ ହୋଇବ ସ୍ଥିର ମୋର ପଞ୍ଚଭୂତ ।
ନାରଦ ବୋଇଲେ କୂର୍ମନାମେ ଗିରିବର
ସୁର ନଦୀରୁ ଯେ ଧାରେ ବହଇ ତହିଁର ।
ତାର ପଶ୍ଚିମରେ କରମଣ୍ଡଳ ଯେ ଦେଶ
କୃତଶେଖର ବୋଲିଣ ତହିଁର ନରେଶ ।
ମନ୍ତ୍ରୀବର ଅଛି ତାର ନାମ ବିରୂପାକ୍ଷ
ମାଳଶେଖର ନ ମରେ ତାର ଏକ ବକ୍ଷ ।
ସୁରେଖା ବୋଲିଣ ତାର ଦୁହିତାର ନାମ
ଅତ୍ୟନ୍ତ ସୁନ୍ଦରୀ ତାକୁ କେହି ନୁହେ ସମ ।
ପ୍ରଦ୍ୟୁମ୍ନ ତା ରୂପଗୁଣ ଶୁଣି ତହିଁ ଗଲା
ରଥରେ ବସାଇ ସେହି କନ୍ୟା ଆଣୁଥିଲା ।
ବାରତା ପାଇଣ କୃତଶେଖର ରାଜନ
ଧରାଇଣ ନେଇଗଲା ଆପଣା ଭୁବନ ।
ବାନ୍ଧି ରଖିଅଛି ସେହି ନିଜ ଭୁଜବଳେ
ତେଣୁ ପ୍ରଦ୍ୟୁମ୍ନ ସେଠାରେ ପଡ଼ିଛି ଅକଳେ ।
ବାରତା ପାଇଣ ରାମକୃଷ୍ଣ କୋପ କଲେ
ଉଗ୍ରସେନ ରାଜା ଥାଟ ନେଇ ବାହାରିଲେ ।
ଏକାନ୍ତ କରିଣ ମୋତେ ହରି ଆଜ୍ଞା ଦେଇ
ପଣ୍ଡୁକୁମରଙ୍କୁ ନେଇ ଆସ ବେଗେ ଯାଇ ।
ସାତ ଅକ୍ଷୌହିଣୀ ବଳ ନେଇ ପାଞ୍ଚଭାଇ
ଏହିକ୍ଷଣି ଦ୍ୱାରକାକୁ ଯିବ ସଜ ହୋଇ ।
ଏହା ଶୁଣି ଯୁଧିଷ୍ଠିର ହରଷ ହୋଇଲେ
ସ୍ନାନ ଭୋଜନାଦି ଦେଇ ସାତ୍ୟକି ତୋଷିଲେ
ସାତ ଅକ୍ଷୌହିଣୀ ବଳ ନେଇ ପାଞ୍ଚଭାଇ
ଧନୁ ତୂଣୀର ସହିତେ ଗଲେ ରଥ ବାହି ।
ନେତର ଚମ୍ପାଳମାନ ଉଡ଼େ ଫରହର
ଯାଇଣ ମିଳିଲେ ଶୀଘ୍ରେ ଦ୍ୱାରାବତୀପୁର ।
ରାମଙ୍କୁ ଯୁଧିଷ୍ଠି ପାଞ୍ଚଭାଇ ଓଳଗିଲେ
ରାମପାଳିହିଁ ବହୁତ କଲ୍ୟାଣ ବାଞ୍ଛିଲେ ।
ଗୋବିନ୍ଦ ଯୁଧିଷ୍ଠି ପାଦେ କଲେ ନମସ୍କାର
ଷ୍ଟରିଭାଇ ଓଳଗନ୍ତି ଶ୍ରୀହରି ପୟର ।
ଯୁଧିଷ୍ଠିଙ୍କ ମୁଖ ଚାହିଁ ଗୋବିନ୍ଦ ବୋଲନ୍ତି
କରମଣ୍ଡଳ ଦେଶକୁ ଯିବା କି ସମ୍ପ୍ରତି ।
ଯୁଧିଷ୍ଠି ବୋଇଲେ ଚାଲ ବିଳମ୍ବ ନ କର
ଢମକ ନିଶାଣ ଆଦି ବାଜେ ଶାରଦ୍ଭୁର ।
ଜୟଶଙ୍ଖ ବଜାଇଣ ବାହାର ହୋଇଲେ
ପଞ୍ଚଦଶ ଅକ୍ଷୌହିଣୀ ବଳ ନେଇ ଚଳେ ।
ସମସ୍ତ ଯାଦବମାନେ ଗଲେ ଆଗ ହୋଇ
ସାତ ଅକ୍ଷୌହିଣୀ ବଳ ନେଇ ପାଞ୍ଚଭାଇ ।
ସୁଦ୍ଧଙ୍କୁ ସଙ୍ଗେ ନେଇଣ ରାମକୃଷ୍ଣ ଗଲେ
କରମଣ୍ଡଳ ଦେଶରେ ଯାଇଣ ମିଳିଲେ ।
ଢୋଲ ଢମକ ଆଦି ଯେ ଉଡ଼ଇ ନିଶାଣ
ବାଦ୍ୟର ନାଦେ କମ୍ପଇ ତିନି ଯେ ଭୁବନ
ଉଚ୍ଛୁଳି ପଡ଼େ ସପତ ବ୍ରହ୍ମାଣ୍ଡ ମଧ୍ୟରେ
ଅଶ୍ୱଖୁରା ଧୂଳି ଯାଇଁ ଉଠେ ଆକାଶରେ ।
ଦିବସ ଅନ୍ଧାର ପ୍ରାପ୍ତ ହେଲା ବସୁମତୀ
ଦେଖି ପଚାରଇ କରମଣ୍ଡଳ ନୃପତି ।
ବିରୂପାକ୍ଷକୁ ବୋଇଲେ କେବଣ ଚରିତ
ଅନ୍ଧକାର ପ୍ରାପ୍ତ କପାଁ ଦିଶଇ ଜଗତ ।
ପରଥାଟ ଗୋଟାଏ ତ କାହିଁ ଆସୁଅଛି
ଘୋରତର ହୋଇ ଶାରଦ୍ଭୁର ବାଜୁଅଛି ।
ଏଥିର ତଦନ୍ତ ଭଲକରି ବୁଝ ଯାଇ
କାହାର ସୈନ୍ୟ ସେ ଏଥେ କପାଇଁ ଆସଇ
ଏହା ଶୁଣି ମନ୍ତ୍ରୀବର ଡଗରେ ରାଇଲା
ବିଶ୍ୱାସ କରିଣ ତାକୁ ବଚନ କହିଲା ।
କାହାର ଥାଟ ପଚାରି ଆସ ତୁ ହୋ ଯାଇ
ଯୁଦ୍ଧକୁ ଆସୁଥିଲେ ସେ ଯୁଝିବା ନା ରହି ।
ପ୍ରୀତିପଣେ ଆସୁଥିଲେ କରିବା ଆଦର
ବନ୍ଧୁପଣେ ଆସୁଥିଲେ କରିବା ବିଚାର ।
ଗୁଣସାଗର ମନ୍ତ୍ରୀ ସେ ଜାଣେ ସର୍ବବିଧି
ତାକୁ ପଟାନ୍ତର ଦେବା ଅଛି କିସ ବୁଦ୍ଧି ।
ମନ୍ତ୍ରୀମୁଖୁ ଏସନକ ଡଗର ଶୁଣିଲା
ତତକ୍ଷଣେ ଯାଇ ସୈନ୍ୟ ମଧ୍ୟରେ ପଶିଲା ।
ଡଗର ପୁଚ୍ଛଇ ତୁମ୍ଭେ କାହିଁର ହୋ ରାଜା
ଆମ୍ଭ ରାଜ୍ୟରେ ପଶୁଛ କେବଣ ତରିଜା ।
ଶାରଦ୍ଭୁର ବଜାଇଣ ଆମ୍ଭ ରାଜ୍ୟେ ପଶ
ଏଡ଼େ ଭରସା ତୁମ୍ଭର ବଢ଼ାଇ ସାହସ ।
ଡଗର ମୁଖୁ ଅକ୍ରୂର ଏସନକ ଶୁଣି
ଜଣାଇଲା ଉଗ୍ରସେନ ଆଗେ ମନ୍ତ୍ରୀମଣି ।
ବୋଇଲାକ ଅବଧାନ କର ମହାରାୟେ
କୃତଶେଖର ରାଜ୍ୟରୁ ଡଗରେକ ଆୟେ ।

ବୋଲେ କାହିଁର ନୃପତି ଆଚ୍ଛ ସୈନ୍ୟ ଘେନ
ଆମ୍ଭର ରାଜ୍ୟରେ କପାଁ ପଶୁଅଛ ପୁଣି ।
ବୋଲେ ଯେବେ ରଣେ ଆସିଅଛ ମୋତେ କହ
ପ୍ରୀତିପଣେ ଆସୁଥିଲେ କହ ତ ସନ୍ଦେହ ।
ବନ୍ଧୁପଣେ ଆସୁଥିଲେ କହ ପରମାଣି
ଏଥକୁ କି ଆଜ୍ଞା ଦେବା ହେଉ ନୃପମଣି ।
ଉଗ୍ରସେନ କହଇ ଯେ କୃଷ୍ଣଙ୍କୁ ପଚାର
କେମନ୍ତେ କଥା ଏହାର ବୁଝିବା ବେଭାର ।
ଏହା ଶୁଣିଣ ଅକ୍ରୁର ବେଗହୋଇ ଗଲ
ରାମକୃଷ୍ଣଙ୍କ ସ୍ଥାମୁରେ ଯାଇଁଣ ମିଳିଲ ।
ପାଦେ ପଡ଼ି ଶୋଇକରି ଶିରେ କର ଦେଇ
ଅବଧାନ କରି ଦେବ ଶୁଣିମା ବୋଲଇ ।
କୃତଶେଖର ରାଜାର ଡଗର ଆସିଛି
କେ ଜାଣେ କେଉଁ ସନ୍ଦେଶ ଘେନ ସେ ଆସିଛି
ଏବେ କିସ ଅବଧାନ କରିବା ଗୋସାଇଁ
ଗୋବିନ୍ଦ ବୋଇଲେ ଅଛି ସେ ଡଗର କାହିଁ
ଅକ୍ରୁର ବୋଲେ ଡଗର ଆଗ ଥାଏ ରହି
ବଳରାମ ବୋଲନ୍ତି ତୁ ଘେନିଆସ ଯାଇ ।
ଆଜ୍ଞା ପ୍ରମାଣେ ଅକ୍ରୁର ବେଗେ ଚଳିଗଲ
କୃତଶେଖର ଦୂତକୁ ଘେନିଣ ଆଇଲ ।
ରାମ କୃଷ୍ଣଙ୍କ ସ୍ଥାମୁରେ କଲ ତାକୁ ନେଇ
ବୋଲୁଛନ୍ତି ଭାବଗ୍ରାହୀ ଦୂତ ମୁଖ ଚାହିଁ ।
କିସ ଚରିତ କହରେ ଆମ୍ଭର ସ୍ଥାମୁର
ଡଗର ଶୁଣି କହଇ ଯୋଡ଼ି ବେନିକର
କେଉଁରାଜା ତୁମ୍ଭେ ପଶି ଆମ୍ଭର ରାଜ୍ୟରେ
ଯୁଦ୍ଧେ ଆସୁଥିଲେ ଯୁଝ ଆମ୍ଭ ସଙ୍ଗତରେ ।
ପ୍ରୀତିପଣେ ଆସୁଥିଲେ କରିବା ପିରତି
ଯାହା କି ଆଜ୍ଞା ଦେଇଛି ଆମ୍ଭର ନୃପତି ।
ବନ୍ଧୁପଣେ ଆସୁଥିଲେ ତାହା ବିଚାରିବା
ରାଜାଙ୍କ ସ୍ଥାମୁରେ କହି ଆସି ଘେନିଯିବା ।
ଡଗର ମୁଖରୁ ବାଣୀ ଏସନକ ଶୁଣି
କମ୍ପନ୍ତି ଯେ ଥରହର ହୋଇ ହଳପାଣି ।
ବୋଇଲେ ତୁ ଶୁଣ ଶୁଣ ଏବେ ରେ ଡଗର
ସୁରେଖା କନ୍ୟାକୁ ହରୁଥିଲ ଯେଉଁ ବୀର ।
ସେହି ବୀରଟି ଆମ୍ଭର କୁମର ଅଟଇ
ତାକୁ ବନ୍ଦୀକରି ରଖିଅଛରେ କପାଇଁ ।

କରମଣ୍ଡଳ ରାଜ୍ୟକୁ ତାଡ଼ିବ ଲାଗିଲେ
ରକ୍ଷାକରି ନ ପାରିବେ ତାକୁ ଦିଗପାଳେ ।
କହୁଁ କହୁଁ କୋପେ ଥରହର ରାମ ହରି
ରାମ କୋପେ ଦଲଦଲ ହୁଏ ବସୁନ୍ଧରୀ ।
ଡଗରକୁ ବୋଇଲେ ତୁ ଯାଅ ବେଗ ହୋଇ
ତୁମ୍ଭର ରାଜାକୁ କହ ଆମ୍ଭ ଆଜ୍ଞା ଯାଇ ।
ବାରତା ପାଇଣ ଦୂତ ବେଗେ ଚଳିଗଲ
ମନ୍ତ୍ରୀବର ସ୍ଥାମୁରେ ସେ ଯାଇଣ କହିଲ ।
ମନ୍ତ୍ରୀ ପଚାରଇ କିସ ଚରିତ ବୁଝିଲ
ଡଗର ବୋଲେ କହିବା ଅବଧାନ କର ।
ସୁରେଖା କନ୍ୟାକୁ ଯେହୁ ନେଉଥିଲ ହରି
ତାଙ୍କ ପିତା ଆସିଛନ୍ତି ଏବେ ଯୁଦ୍ଧକରି ।
ବଡ଼ ପ୍ରତାପୀ ଅଟଇ ସେହି ନୃପବର
ଥାଟ ସଇନ୍ୟ ସଙ୍ଗତେ ଅଛଇ ଅପାର ।
ପାଦଭରେ ଥରଥର କମ୍ପୁଅଛି ମହୀ
ବଡ଼ କୋପଭରେ ହସ୍ତେ ଲଙ୍ଗଳ ବୁଲଇ ।
ବୋଇଲେ ତୁମ୍ଭ ରାଜ୍ୟ ମୁଁ ପକାଇବି ତାଡ଼ି
ବଜ୍ର ମୁଷଳେକ ସେହୁ କରେ ଛନ୍ତି ଧରି ।
ବୋଇଲି କାହିଁର ତୁମ୍ଭେ ଅଟ ନୃପବର
ସେ ବୋଇଲେ ଆମ୍ଭ ରାଜ୍ୟ ଦ୍ୱାରିବତୀ ପୁର
ଯଦୁ ଭୋଜ ବଂଶରେ ଯେ ଅଟୁ ଆମ୍ଭେ ରାଏ
ଆମ୍ଭର ବନ୍ଦୀ ହୋଇଛି ଯେବଣ ତନଯେ ।
ଡଗର ମୁଖରୁ ବାଣୀ ଏସନକ ଶୁଣି
ତତକ୍ଷଣ ଚଳିଗଲ ମନ୍ତ୍ରୀ ଚୂଡ଼ାମଣି ।
ରାଜାଙ୍କ ସ୍ଥାମୁରେ ଯାଇ ପ୍ରବେଶ ହୋଇଲ
ଶିରେ କରଦେଇ ପାଦେ ପଡ଼ିଣ ଶୋଇଲ
ଉଠି କରଯୋଡ଼ି ପୁଣି ବୋଲେ ନୃପବର
ଡଗର ଯାହା କହୁଛି ଅବଧାନ କର ।
ରାଜା ଆଜ୍ଞା ଦେଲକ ସେ ଡଗରକୁ ଚାହିଁ
କାହିଁର ରାଜା ଅଟେ ସେ କାହିଁକି ଆସଇ ।
ଡଗର ବୋଲେ ଶୁଣିମା ହେଉ ନରନାଥ
ତୁମ୍ଭେ ଘରେ ରଖିଅଛ ବାନ୍ଧି ଯେଉଁ ସୁତ ।
ତାହାଙ୍କର ପିତା ଘର ଦ୍ୱାରିବତୀ ପୁର
ଯଦୁ ଭୋଜବଂଶର ସେ ଅଟେ ନୃପବର ।
ଦୂତ କହନ୍ତେ ନୃପତି ମନ୍ତ୍ରୀକୁ ପୁଚ୍ଛିଲ
ଥାଟ ସଜକରି ଆମ୍ଭେ ଯିବା କି ବୋଇଲ ।

କରପତ୍ର ଯୋଡ଼ି ମନ୍ତ୍ରୀବର ଯେ କହଇ
ସୁରକ୍ଷାନୁକ୍ରମେ ମୁଁ ତୋ ସେବକ ଅଟଇ ।
ନ କହି ରଖିଲେ କଥା ହେବ ଅନୁଚିତ
କହିଲେ କ୍ଷମା କରିବୁ ଦୋଷ ନୃପନାଥ ।
ମନ୍ତ୍ରୀକି ବୋଇଲା ରାଜା ତୋର କିସ ଦୋଷ
ନିର୍ଭୟ ହୋଇଣ କହ ତୁ ମୋହର ପାଶ ।
ମନ୍ତ୍ରୀ ବୋଇଲା ଜାଣଇ ତହିଁର ବିଧାନ
ଏକମନ ହୋଇ ତୁ ହୋ ଶୁଣ ନୃପରାଣ ।
ମଥୁରା ନାମେ କଟକ ରାଜା ଉଗ୍ରସେନ
ଅସୁର ଅଂଶେ ଜନମ କଂସ ତା ନନ୍ଦନ ।
ବଡ଼ ପ୍ରତାପୀ ହୋଇ ସେ ଥିଲା ମହାରାୟ
ଦେବ ଗନ୍ଧର୍ବଙ୍କୁ ହେହ ନ କରଇ ଭୟ ।
ଦେବତାଙ୍କୁ ଖଟାଇଲା ଆଣି ପାଦତଳେ
ଦାନବବଳ ପାତାଳୁଁ ଆସି ସାହା ହେଲେ ।
ଏମନ୍ତ ରାଜ୍ୟ କରଇ କଂସ ନୃପବର
ତରେ ପୃଥିବୀର ରାଜା ଦେଲେ ଆଣି କର ।
ନାରଦ ମୁନି କହିଲେ ତା ଆଗରେ ଦିନେ
ଆହେ କଂସରାଜା ତୁହେ ଶୁଣ ଏକମନେ ।
ତୋର ଭଣଜା ହସ୍ତରେ ତୋହର ନିଧନ
ଜ୍ୟେଷ୍ଠ ଭଉଣୀ ଦେବକୀ ତାହାର ନନ୍ଦନ ।
ଉଗ୍ରସେନ ଏବେ ସେହୁ ଭଉଣୀକି ତୋର
ବସୁଦେବକୁ ସେ ବିଭା କଲା ନୃପବର ।
ଏମନ୍ତ ଶୁଣି ସେ କଂସ ମହା ଭୟ କଲା
ଦେବକୀର ଷଡ଼ପୁତ୍ର ସ୍ୱହସ୍ତେ ବଧିଲା ।
ପୁଣି ନାରଦ କହିଲେ ଆସି ଏକଦିନେ
ଏହି ଗର୍ଭୁ ଶତ୍ରୁ ତୋର ଉପୁଜିବ ଜାଣେ ।
ଏହା ଶୁଣି ଭଉଣୀକି କଂସ ବନ୍ଦୀ କଲା
ବନ୍ଦୀଘରେ ତାର ଏକପୁତ୍ର ଜନମିଲା ।
ବସୁଦେବ ଚୋରାଇଣ ତାକୁ ନେଇଗଲା
ଗୋପପୁରେ ନନ୍ଦଘରେ ଛାଡ଼ିଣ ଆଇଲା ।
କନ୍ୟା ଏକ ପାଲଟାଇ ଆଣିଣ ରଖିଲା
ମରକତ ଶିଳାରେ ତା ନେଇ କଚାଡ଼ିଲା ।
ବିଜୁଳି କନ୍ୟା ସେ ଶାପ ପାଇ ଜନ୍ମିଥିଲା
ହସ୍ତରୁ ଖସି ଯାଇଣ ଶୂନ୍ୟରେ ରହିଲା ।
ଯେ ତୋତେ ମାରିବ ଗୋପପୁରେ ଜନ୍ମିଲାଣି
ଏତେ କହି ଅନ୍ତର୍ଦ୍ଧାନ ହେଲା ସେ ତରୁଣୀ ।

ତାହା ଶୁଣି କଂସ ରଜା ବଡ଼ ଚିନ୍ତା କଲା
ଅଷ୍ଟମଲ୍ଲଙ୍କୁ ଗୁପତେ ଗୋପକୁ ପେଷିଲା ।
ରାମ କୃଷ୍ଣଙ୍କ ହସ୍ତେ ସେ ହୋଇଲେ ବିନାଶ
ତେଣୁ କଂସ ନୃପତିର ଉଡ଼ିଲା ସାହସ ।
ଅକ୍ରୂର ପେଷିଣ ରାମକୃଷ୍ଣଙ୍କୁ ଅଣାଇ
ମଥୁରା କଟକେ ଧନୁ ଉତ୍ସବ ଭିଆଇ ।
କପଟେ ତାହାକୁ ନାଶ କରିବା ନିମନ୍ତେ
କୁବଳୟା ଗଜ ଘେନି ରହିଲେ ମାହୁନ୍ତେ ।
ରାମ କୃଷ୍ଣ ଦେଖି କଂସ ହୋଇଲା ନିଧନ
ଦଇବର ମାୟାକୁ କେ କରିବ ବା ଆନ ।
ରାମ କୃଷ୍ଣଙ୍କର ମାତା ଦେବକୀ ଅଟଇ
ବସୁଦେବ ନାମେ ପିତା ତାହାଙ୍କର ହୋଇ
ବନ୍ଦୀକରି ରଖିଥିଲା କଂସ ମହାରଥା
ତାଙ୍କୁ ମାରି ରାମକୃଷ୍ଣ ରୁହାଇଲେ କଥା ।
ମାତା ପିତାଙ୍କୁ ବନ୍ଦୀରୁ ମୁକୁଳାଇ ଦେଲେ
ଉଗ୍ରସେନଙ୍କୁ ନୃପତି ତହିଁ କରାଇଲେ ।
ଏମନ୍ତ ପ୍ରକାରେ ତହିଁ କିଛୁଦିନ ଗଲା
ମହାସୁଖେ ଉଗ୍ରସେନ ରାଜ୍ୟ କରୁଥିଲା ।
କଂସର ଭାରିଯା ଦୁଇ ହେନ୍ତି ଯେ ପ୍ରହେତି
ତାଙ୍କ ପିତା ଜରାସନ୍ଧ ନାମେ ନରପତି ।
ପିତା ଆଗରେ ଗୁହାରି କଲେ ସେହୁ ଯାଇ
ଶୁଣି ଜରାସନ୍ଧ ରାଜା ମନେ କୋପ ବହି ।
ମଥୁରାକୁ ଅଷ୍ଟାଦଶ ବେଳ ଧାଡ଼ି ଦେଲା
ରାମକୃଷ୍ଣଙ୍କୁ ତଥାପି ଜିଣି ନ ପାରିଲା ।
ରାମକୃଷ୍ଣ ବୋଲି ବସୁଦେବର କୁମର
ସାକ୍ଷାତେ ପରମବ୍ରହ୍ମ ନର ଅବତାର ।
ମାନବରୂପ ଦେବଙ୍କ ଛଳେ ଛନ୍ନ ବହି
ମଥୁରାପୁରେ ଜନମ ହେଲେ ଦୁଇଭାଇ ।
ଜରାସନ୍ଧ ବଳେ ତାକୁ କିସ କରିପାରି
ଦେବକାର୍ଯ୍ୟେ ତାହାକୁ ନ ମାଇଲେ ଶ୍ରୀହରି
ତହିଁ ଯାଇ କୁଶସ୍ଥଳୀ ଦ୍ୱାରକା ରହିଲେ
ଉଗ୍ରସେନଙ୍କୁ ନୃପତି ତହିଁ କରାଇଲେ ।
ଅଷ୍ଟକନ୍ୟା ତହୁଁ କୃଷ୍ଣ ହୋଇଲେକ ବିଭା
ଆଗ ଭାରିଯା ରୁକ୍ମିଣୀ ନାମେ ଅତି ଶୋଭା ।
ତାହାଙ୍କ ପୁତ୍ର ଅଟଇ ଏ ପ୍ରଦ୍ୟୁମ୍ନ ବୀର
କୃଷ୍ଣର ପ୍ରଥମ ପୁତ୍ର ଅଟେ ଏ କୁମର ।

ଯେ ବୃଷ୍ଣି ଚୋର ଝିଅକୁ ନେଉଛନ୍ତି ହରି
ତୁ ତାହାକୁ ରଖିଅଛୁ ପୁଣି ବନ୍ଦୀକରି ।
ମୋ କଥା ମାନ ତୁ ବନ୍ଦି କର ନୃପରାୟ
ସମର କଲେ ତୁ ରାଜା ନ ପାଇବୁ ଜୟ ।
ଯହିଁ ତହିଁ ଦୁହିତାକୁ ବିଭା କରାଇବା
ମୋହର ମତେ ତାହାକୁ ବିଦା କରିଦେବା ।
ସ୍ୱଭାବେ ଦୂଷିତା କନ୍ୟା ହୋଇଲା କୁମାରୀ
ଆନକୁ ଦେବାର ବିଧି ନୁହଇ ଆମ୍ଭର ।
ବିରୂପାକ୍ଷ ମନ୍ତ୍ରୀ ଯହୁଁ ଏମନ୍ତ କହିଲା
କୃତଶେଖର ରାଜନ ଚକିତ ହୋଇଲା ।
ମନ୍ତ୍ରୀ ବୋଇଲା କଥାଏ ଅଛଇ ଗୋସାଇଁ
ହସ୍ତିନାର ରାଜା ତାଙ୍କ ସଙ୍ଗତେ ଅଛଇ ।
ସପତ କ୍ଷଉଣୀବଳ ସଙ୍ଗତେ ତାହାର
ସେ ରାଜାର ନାମ ଅଟେ ଧର୍ମ ଯୁଧିଷ୍ଠିର ।
ଭୀମ ଅର୍ଜୁନ ନକୁଳ ସହଦେବ ବୀର
ଏମନ୍ତେ ସେ ପାଞ୍ଚଭାଇ ସଙ୍ଗତେ ତାଙ୍କର ।
ସଂଗ୍ରାମ କଲେ ଯେ ଯଶ ଆମ୍ଭେ ନ ପାଇବା
ବିନା କାରଣରେ ଆଉଯାକ ମରାଇବା ।
ଏମନ୍ତ ବଚନ ଯହୁଁ ସଚିବ କହିଲା
ଶୁଣିଣ କୃତଶେଖର ଆଶ୍ଚର୍ଯ୍ୟ ହୋଇଲା ।

## ସୁରେଖା ବିବାହ

ଅଗସ୍ତି ବୋଲନ୍ତି ଶୁଣ ବିଳଙ୍କାର ରାୟ
ଅପୂର୍ବ ଆଖ୍ୟାନ ଏହି ସୁଧାରସମୟ ।
ପଢ଼ିଲେ ଶୁଣିଲେ ପ୍ରାଣୀ ଭବୁଁ ନିସ୍ତରନ୍ତି
ନାନାବିଧି ପାତକମାନ ଅଙ୍ଗରୁ ଖଣ୍ଡନ୍ତି ।
ରାଜାର ବିମନ କଥା ମନ୍ତ୍ରୀ ଯେ ଜାଣିଲା
କରପଦ୍ମ ଯୋଡ଼ିକରି ଚରଣେ ନମିଲା ।
ଯେତେକ ବିଷୟ ଦେବ କହିଲ ତୁମ୍ଭରେ
ଅଇଲା କି ତୋ ମନକୁ ଏ କଥା ବିଚାରେ ।
ରାଜା ବୋଇଲା ଏ ମୋତେ ସଂଶୟ ଲାଗିଲା
କି ବୁଦ୍ଧି କରିବି ବୋଲି ଚିନ୍ତାଭର ହେଲା ।
ଏମନ୍ତ ସମୟେ ଦେଖ ଦଇବ ଭବିଷ୍ୟ
ଯାଇଣ ମିଳିଲେ ତହିଁ ବ୍ରହ୍ମାଙ୍କର ଶିଷ୍ୟ ।
ନାରଦଙ୍କୁ ଦେଖି କୃତଶେଖର ଉଠିଲେ
ଭକତିଭାବରେ ଚରଣେ ପ୍ରଣମି ଶୋଇଲେ ।

ବୋଇଲେ ମୁନି ହେ ବଡ଼ କଥାଏ ହୋଇଲା
ମୋ ଭାଗ୍ୟରୁ ତୁମ୍ଭ ପାଦ ଏଠାରେ ପଡ଼ିଲା ।
ମୁନି ବୋଇଲେ ରାଜା ତୁ ହୁଅ ଭାଗ୍ୟବାନ
ଆଶୀର୍ବାଦ କରୁଅଛୁ ଆମ୍ଭେ ରାଜନନ୍ଦନ ।
ରାଜା ବୋଇଲେ କଥାଏ ପଚାରିବି ମୁହିଁ
ଅବଧାନ କରି ତାହା ଶୁଣିମା ଗୋସାଇଁ ।
ରଖିଥାଇ ମୋ କନ୍ୟାକୁ ମେଡ଼ର ଭିତରେ
ପୁରୁଷମାନଙ୍କ ପଶି ନ ପାରେ ତହିଁରେ ।
ଦ୍ୱାରାବତୀପୁରେ କୃଷ୍ଣ ପ୍ରଥମ କୁମର
ପ୍ରଦ୍ୟୁମ୍ନ ବୋଲିଣ ନାମ ଅଟଇ ତାହାର ।
ମେଡ଼ର ଭିତରେ ଆସି ଗୁପତେ ପଶିଲା
ସୁରେଖା କନ୍ୟାକୁ ମୋର ହରି ନେଉଥିଲା ।
ବାରତା ପାଇଣ ଧରି ଆଣିଲି ତାହାକୁ
ବନ୍ଦୀରେ ରଖିଛି ବାଟ ନ ପାଏ ଯିବାକୁ ।
ତାହାର ପିତାର ନାମ ଶ୍ରୀକୃଷ୍ଣ ଅଟଇ
ବାରତା ପାଇ ଉଠିଲେ କୃଷ୍ଣ ହଳସାଇଁ ।
ତାଙ୍କ ସଙ୍ଗେ ଉଗ୍ରସେନ ରାଜା ଆସିଛନ୍ତି
ଆବର ସଙ୍ଗେ ଅଛନ୍ତି ପଣ୍ଡୁର ସନ୍ତତି ।
ଉଗ୍ରସେନ ରାଜା ବଳ ପନ୍ଦର କ୍ଷଉଣୀ
ପାଣ୍ଡବେ ଆସିଅଛନ୍ତି ସାତକ୍ଷୌଣୀ ଘେନି ।
ସଙ୍ଗେ ଅଛନ୍ତି ଶ୍ରୀରାମ କୃଷ୍ଣ ପୁତ୍ରମାନେ
ଆବର ଅଟନ୍ତି ଯେତୁ ସ୍ୱୟଂ ନାରାୟଣେ ।
ରାଜାର କହନ୍ତେ ତାହା ନାରଦ ଶୁଣିଲେ
ରାଜାକୁ ନେଇ ଆପଣା ପାଖେ ବସାଇଲେ ।
ବୋଇଲେ ମାଳଶେଖର ଆଣ ହକାରାଇ
ମୁନି ଆଜ୍ଞା ପରମାଣେ କୁମର ଆସଇ ।
ମାଳକୁ ବୋଇଲେ ମୁନି ବସ ବେଗ ବେଗ
ଗୁପତ କଥାଏ ମୁହିଁ କହିବି ତୋ ଆଗ ।
ମାଳଶେଖର କୁମର ମଲାଲକ ଆସି
ନାରଦ ମୁନି ଚରଣେ ନମଇଁ ବିଶେଷ ।
ମୁନିବର କୁମାରକୁ କଲ୍ୟାଣ ବାଞ୍ଛିଲେ
ଆଶ୍ୱାସନା କରି ତାକୁ ପାଶେ ବସାଇଲେ ।
କୃତଶେଖର ତା ପୁତ୍ର ଯେ ମାଳଶେଖର
ବିରୂପାକ୍ଷ ମନ୍ତ୍ରୀବର ବସିଲା ଆବର ।
ନାରଦ ବୋଇଲେ ଆମ୍ଭେ କହିବୁ ହୋ ଯାହା
ଅନ୍ୟଥା ନ କରିବ ତା କେବେ ନରନାହା ।

ମୁନିଙ୍କ ବଚନେ ରାଜା କୃତକୃତ୍ୟ ହୋଇ
ବିନମ୍ର ହୋଇ ନାରଦ ମୁନିଙ୍କୁ ପୁଚ୍ଛଇ ।
ମୁନି ବୋଇଲେ ହେ ରାଜା ଆଛି ସଜ୍ଜନର
ପୁନି ତୋ ମାଳଶେଖର ହୋଇବ ଆଗର ।
ସୁରେଖା କନ୍ୟାକୁ ବେଶ ଭୂଷଣ କରାଇ
କୁମର କୁମାରୀକୁ ଯେ ରଥରେ ବସାଇ ।
ଆଗମନ ହୋଇ ପୁଣ ସମସ୍ତେ ଯେ ଥିବା
ନାନା ବାଦ୍ୟ ବଜାଇଣ ତାଙ୍କ ପାଶେ ଯିବା ।
ବାଟରେ ରାମକୃଷ୍ଣଙ୍କୁ ଭେଟିବାକ ଯାଇ
ବହୁତ ଯେ ପୁରୁଷାର୍ଥ ତେବେ ଉପୁଜଇ ।
କଳିଦ୍ୱନ୍ଦ୍ୱ ଏଥିରେ ଯେ ନୋହିବାକ କଷ୍ଟ
ଏ କଥା ଆମ୍ଭ ମନକୁ ଭଲ ଆସୁଅଛି ।
ନାରଦ ମୁନି କହନ୍ତେ ରାଜା ଭୁନ ହେଲା
ମାଳଶେଖର ପୁତ୍ରକୁ ପଚାରି ବୋଇଲା ।
ମୁନି ବୋଇଲା ହେ କିସ କହିଲୁ କୁମର
ଭଲ ଦିଶୁଛି କି ତୋତେ ଆମ୍ଭର ବିଚାର ।
କୁମର ବୋଇଲେ ତୁମ୍ଭେ ଶୁଣିମା ଗୋସାଇଁ
ଅବଶ୍ୟ ଏ କୁମାରୀକୁ ଦେବ ସହିଁ ତହିଁ ।
କୃଷ୍ଣଙ୍କ କୁମାର ସେତ ଅଟେ ମହାବୀର
ଆମ୍ଭର ଭାଗ୍ୟରେ ସେବେ ମିଳିଅଛି ବର ।
ଏଥୁଁ ଅଧିକ ଖୋଜିଲେ ବର ଯେ ନ ପାଇ
ହୋଇବ ପୁରୁଷ ଯାହା ଅଛଇ ଘଟାଇ ।
ବିଧାତା ବଶରୁ ଏବେ ଆମ୍ଭର ଦୁହିତା
ମହାସଖି ହୋଇ କନ୍ୟା ହୋଇଲା ଦୁହିତା ।
ଏ କନ୍ୟାକୁ ଏହି ବର ଦୁର୍ଲ୍ଲଭ ଅଟଇ
ମୋର ମନକୁ ଏ କଥା ଖଟିଲା ଗୋସାଇଁ ।
ବିନାଶ କାରଣେ କଳି ଦ୍ୱନ୍ଦ୍ୱ ନ କରିବା
କାଳେ ଏ କଥାକୁ ନିର୍ଭାକର ନ ପାରିବା ।
ପୁତ୍ରର କହନ୍ତେ କୃତଶେଖର ହସିଲା
ଭଲ ଯା କହିଲା ତା ମୋ ମନକୁ ଆସିଲା ।
ନାରଦ ବୋଇଲେ ରାଜା ନ କର ତୁ ଚିନ୍ତା
ଦୁର୍ଲ୍ଲଭ ବର ପାଇଲା ତୋହର ଦୁହିତା ।
ଏତେ ବୋଲକର ରାଜା ଭିତରକୁ ଗଲା
ଗରିଜା ମାଳକଣ୍ଠୀକୁ ସେ ରାଇଣ ଆଣିଲା ।
ବୋଇଲା ଅପୂର୍ବ କଥା ରାଣୀ ତୁ ହୋ ଶୁଣ
ମେଢ଼ରୁ କନ୍ୟାକୁ ନେଉଥିଲା ଯେଉଁ ଜନ ।
ତାହାକୁ ଧରିଣ ଆମ୍ଭେ ବାନ୍ଧି ରଖିଥିଲୁ
ବଡ଼ଘରର ପୁଅ ବୋଲି ଏବେ ତା ଜାଣିଲୁ ।
ଦ୍ୱାରବତୀ ନାମେ ପୁର ଶ୍ରୀକୃଷ୍ଣ କୁମର
ନେଇ ଯାଉଥିଲା ସେହି ଝିଅକୁ ଆମ୍ଭର ।
ବାରତା ପାଇଣ ରାମ କୃଷ୍ଣ ସେ ଅଇଲେ
ଉଗ୍ରସେନ ସଙ୍ଗେ ଆଛି ସଇନ୍ୟ ବାହିଲେ ।
ଆବର ସଙ୍ଗେ ହସ୍ତିନା ଦେଶ ମହାରାଜେ
ଆମ୍ଭର ସଙ୍ଗେ ସମର କରିବାକୁ ଆଏ ।
ନାରଦ ମୁନି ଥାଇଣ ଆମ୍ଭେ ବିଚାରିଲୁ
ତାକୁ କନ୍ୟା ବିଭାଦେବା ବୋଲିଣ ବୋଇଲୁ ।
ରାଜାର କହନ୍ତେ ରାଣୀ ମନକୁ ରୁଚିଲା
ହେଉ ବୋଲି ରାଣୀ ତାହା ସନମତ କଲା ।
ଭିତର ନବରୁ ରାଜା ବାହାର ହୋଇଲେ
ନାରଦ ମୁନି ସମ୍ମୁଖରେ ଆସିଣ ମିଳିଲେ ।
ସବୁରି ସନମତେ ତା କଲା ସ୍ୱୀକାର
ମନ୍ତ୍ରୀକୁ ଗୁହିଁ ବୋଲଇ ପୁଣି ନୃପବର ।
ପ୍ରଦ୍ୟୁମ୍ନ କୁମର ବେଗେ ନେଇ ଆସ ଯାଇ
ତତକ୍ଷଣେ ମନ୍ତ୍ରୀବର ଗଲାକ ଚଳାଇ ।
ବନ୍ଦିଘରୁ ପ୍ରଦ୍ୟୁମ୍ନକୁ ନେଇଣ ଆସିଲା
ନାରଦ ମୁନି ସମ୍ମୁଖରେ ନେଇ ଉଭାକଲା ।
ନାରଦଙ୍କୁ ଦେଖି ବେଗେ ପ୍ରଦ୍ୟୁମ୍ନ କୁମର
ମୁନିଙ୍କ ଚରଣ ତଳେ କଲେ ନମସ୍କାର ।
ମୁନି ବୋଇଲେ କଲ୍ୟାଣ ହେଉ ବାବୁ ତୋତେ
ସୁରେଖାକୁ ନେଇ ଘର କର ତୁ ନିଶ୍ଚିନ୍ତେ ।
ସ୍ନାନ ମାର୍ଜ୍ଜନା କରାଇ କୁମରକୁ ନେଲେ
ନାନା ଅଳଙ୍କାର ତାର ଅଙ୍ଗେ ନାଇଦେଲେ
କଣ୍ଠେ ଲମ୍ବାଇଲେ ନେଇ ନବରତ୍ନମାଳ
ମଥାରେ ପାଗ ବାନ୍ଧିଲେ ଦିଶଇ ସୁଢଳ ।
ପିନ୍ଧିବାକୁ ଦେଲେ ଆଣି ନୂତନ ବସନ
ସୁଗନ୍ଧ ଚନ୍ଦନ କଲେ ଅଙ୍ଗରେ ଲେପନ ।
ବେଶକରି ବସାଇଲେ ରଥେ ତାଙ୍କୁ ନେଇ
କୁମାରୀ ପଟକୁ ଗଲେ ଦାସୀମାନେ ଧାଇଁ ।
ମେଢ଼ରେ ସେ କୁମାରୀକି ବେଶ କରାଇଲେ
କର୍ଣ୍ଣେ ତାଡ଼କା ନାସାରେ ବସଣୀ ଖଞ୍ଜିଲେ
ଗଳାରେ ସେ ସ୍ଫଟିକର ସ୍ୱର୍ଣ୍ଣମାଳା ମୋତି
ପୟୋଧରେ କସ୍ତୁରୀରେ ଚିତ୍ରକୁ ଲେଖନ୍ତି ।

ହସ୍ତରେ ସୁବର୍ଣ୍ଣ ଚୂଡ଼ୀ ବାହାରେ ବାହୁଟି
ମୁଦ୍ରିକା ଖଞ୍ଜିଲେ ହସ୍ତ ପାଦର ଅଙ୍ଗୁଷ୍ଠି ।
କପାଳେ ସିନ୍ଦୂର ଟିକା ଟୋପି ନେଇ ଦେଲେ
ଅରୁଣ ଉଦୟଙ୍କ ପ୍ରାପ୍ତ ଶୋଭା ସେ ଦିଶିଲେ ।
ପୟରେ ଅଲତା ନେଇ ଲେପିଲେ ଚରଣୀ
ଅମୂଲ୍ୟ ଯେଣୁ ଅଟେ ସେ ଅନଙ୍ଗ ଧରଣୀ ।
ଦେବାଙ୍ଗ ପାଟଶାଢ଼ୀରୁ ଖଣ୍ଡେ ପିନ୍ଧାଇଲେ
ସୁରଙ୍ଗ ପାଟେକ ତହିଁ ଉପରଣ ଦେଲେ
ଦିବ୍ୟବେଶ କରି ଦାସୀ କୁମାରୀକୁ ନେଲେ
କୁମାର ପାଶରେ ନେଇ ରଥେ ବସାଇଲେ ।
ଥାଟ ସଜକରି କୃତଶେଖର ବାହାର
ମନ୍ତ୍ରୀ ରଥକୁ ଚଳାଇ ଗଲେ ଧୀର ଧୀର ।
ନୀଳଶେଖର କୁମାର ସଙ୍ଗତେ ଅଛଇ
ମନ୍ତ୍ରୀକୁ ପାଖରେ ରାଜା ଅଛଇ ଚଳାଇ ।
ଆଗରେ ବଜାଇ ବୀରତୂରୀ ଯେ ଚହଳ
ଶଙ୍ଖ ମହୁରୀ ଶବଦେ ପୃଥ୍ୱୀ ଦଳ ଦଳ ।
ନାରଦ ମୁନି ଥୋକାଏ ଦୂର ସଙ୍ଗେ ଗଲେ
ରାଜାଙ୍କୁ ରୁହାଇ ରାମ ଛାମୁରେ ମିଳିଲେ ।
ମୁନିଙ୍କି ଦେଖି ହସିଲେ ରାମ ବନମାଳୀ
ବୋଇଲେ କିସ ଚରିତ କଲ ତପଶାଳୀ ।
ନାରଦ ବୋଇଲେ ସବୁ ଭଲ ହୋଇଅଛି
ରାଜା ବର କନ୍ୟା ଘେନି ଶରଣ ପଶୁଛି ।
ଉଗ୍ରସେନଙ୍କୁ ଗୋବିନ୍ଦ ରାଇଲେ ପାଶକୁ
ଆବର ରାଇଲେ ରାମ ପଞ୍ଚପାଣ୍ଡବଙ୍କୁ ।
ଏ ସମସ୍ତ ଏକରୁଣ୍ଡ ହୋଇଣ ବସିଲେ
ନାରଦ ତହିଁ ସମସ୍ତ ଚରିତ କହିଲେ ।
ନାରଦଙ୍କ ମୁଖରୁ ଯେ ଏହନକ ଶୁଣି
ପଚାରନ୍ତି ଉଗ୍ରସେନ ରାଜା ପୁଣି ପୁଣି ।
ନାରଦ ବୋଇଲେ ରାଜା ଶରଣେ ଆସୁଛି
ଗଉରବ କରିବା ତାକୁ ନବବସି ।
ବର କନ୍ୟା ଘେନି ଯେବେ ମାଗୁଛି ଶରଣ
ଏଥୁ ଅଧିକ କି ଯଶ ହେବ କଲେ ରଣ ।
ନାରଦ କହନ୍ତେ ସର୍ବେ ସନ୍ତୋଷ ହୋଇଲେ
ବୀଣା ବଜାଇ ନାରଦ ରାଜାପାଶେ ଗଲେ ।
ଆସ ବେଗ ହୋଇ ଯିବା ବିଳମ୍ବ ନ କର
ମନ୍ତ୍ରୀ ଯେ ପୁଣି ଅଛନ୍ତି ନୃପତି ସଙ୍ଗର ।

କୁମାର କୁମାରୀଙ୍କୁ ସେ ରଥରେ ବସାଇ
ରାମକୃଷ୍ଣଙ୍କ ଛାମୁରେ ମିଳିଲେକ ଯାଇଁ ।
ହସ୍ତରେ ଦେଖାଇ ଦେଲେ ବ୍ରହ୍ମାଙ୍କ ନନ୍ଦନ
ବୋଇଲେ ଏହି ଅଟନ୍ତି ରାମ ଭଗବାନ ।
ଯେତେ ପାପ ଅଙ୍ଗେ ଅଛି ଦେଖି କରି ଧ୍ୱଂସ
ପରମ ପୁରୁଷ ଏହି ଦେଖି ମଲା କଂସ ।
ଗୋବିନ୍ଦଙ୍କୁ ଯହୁଁ କୃତଶେଖର ଚାହିଁଲା
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀହସ୍ତେ ଦେଖିଲା ।
ପଦ୍ମପାଦତଳେ ପଡ଼ି ସାଷ୍ଟାଙ୍ଗେ ଶୋଇଲା
ପୁଣି ଉଠିକରି ରାଜା ନିଉଛାଳି କଲା ।
ସହସ୍ରେକ ଦଣ୍ଡବତ କଲେ ନୃପବର
ଉଠ ଉଠ ନୃପତି ହୋ ବୋଲି ଚକ୍ରଧର ।
ନାରାୟଣଙ୍କ ଆଜ୍ଞାରେ ଉଠିଲା ରାଜନ
କରପଦ୍ମ ଯୋଡ଼ି ଉଭା ହେଲେ ଛାମୁରେଣ ।
କୁମର କୁମାରୀଙ୍କି ସେ ରଥରୁ ଓହ୍ଲାଇ
ଗୋବିନ୍ଦଙ୍କ ପାଦତଳେ ପକାଇଲା ନେଇ ।
ରାମକୃଷ୍ଣ ଦେଖି ବୀର ପ୍ରଦ୍ୟୁମ୍ନ ଉଠିଲା
ନମସ୍କାର କରି ଶିରେ କରକୁ ଯୋଡ଼ିଲା ।
କୁମାରୀ ଯେ ନମସ୍କାର କଲା ପାଦତଳେ
ଉଠ ଗୋ ବୋଲି ବୋଲନ୍ତି ହରି କାମପାଳେ
କରପଦ୍ମ ଯୋଡ଼ି ରାଜା ଉଭା ଖଣ୍ଡିଦୂର
ଗୋବିନ୍ଦ ବୋଇଲେ ଆସ ଆସ ନୃପବର ।
ଉଗ୍ରସେନ ଯୁଧିଷ୍ଠିରଙ୍କ ଚରଣେ ନମଇ
କଲ୍ୟାଣ କରି ବୋଲନ୍ତି ଶୁଣ ନୃପସାଇଁ ।
ଏମନ୍ତ ସମୟେ ନୀଳଶେଖର ଆସିଲା
ନାରାୟଣଙ୍କୁ ଦେଖିଣ ଓଳଗି ହୋଇଲା ।
ତାର ପଛେ ବିରୂପାକ୍ଷ ମନ୍ତ୍ରୀ ଯେ ନମଇଁ
ଉଠ ଉଠ ମନ୍ତ୍ରୀ ବୋଲି ହରି ଆଜ୍ଞା ଦେଇ ।
ବହୁତ ପ୍ରଶଂସା କଲେ ମନ୍ତ୍ରୀକି ଗୋବିନ୍ଦ
ଏହାଯୋଗୁଁ ନ ପଡ଼ଇ ରାଜ୍ୟକୁ ପ୍ରମାଦ ।
ମନ୍ତ୍ରୀ ବୋଇଲା ଗୋସାଇଁ ତୁମ୍ଭ କଲ୍ୟାଣରେ
ପୁରୁଷାନୁକ୍ରମେ ସେବା କରୁ ନୃପବରେ ।
ନାରଦ ମୁନି ବୋଲନ୍ତି ଶୁଣ ହେ କହ୍ନାଇ
ମନ୍ତ୍ରୀ ପ୍ରସାଦେ ଏ ରାଜ୍ୟେ ଅପଚୟ ନାହିଁ ।
ଯେକାଳେ ପୁତ୍ରକୁ ରାଜା ଧରାଇଣ ନେଲା
ମାରିପକା ବୋଲି ରାଗେ ମନ୍ତ୍ରୀକି କହିଲା ।

ବଡ଼ ସଜ୍ଜନ ଅଟେ ଏହି ମନ୍ତ୍ରୀବର
ରଜାକୁ ବୋଇଲା ତୁମ୍ଭେ ଏହି ବୋଲକର ।
ବଡ଼କୁଳେ ଜନ୍ମି ଅଛୁ ଏହାକୁ ରଖିବା
ଦଣ୍ଡ ନ ଦେଇ ସତ୍ବର କନ୍ୟା ବିଭା ଦେବା ।
କୁମରକୁ ନ ଦଣ୍ଡି ଏ ବନ୍ଦି କରିଥିଲା
ଏତେବେଳେ ସେ ସୁଲଭ କଥା ସିନା ହେଲା ।
ଗୋବିନ୍ଦ ଆଗରେ ମୁନି ଏମନ୍ତ କହିଲେ
ମନ୍ତ୍ରୀବରକୁ ବହୁତ ପରଶଂସା କଲେ ।
କୃତଶେଖର ନୃମନ୍ତ କହେ ଯୋଡ଼ି କର
ସାବଧାନେ ଶୁଣିମା ହେ ଦେବ ଚକ୍ରଧର ।
ଆରତଭଞ୍ଜନ ତୁମ୍ଭେ ଅଟ ବ୍ରହ୍ମରାଶି
ଦୁଃଖିଜନଙ୍କର ବନ୍ଧୁ କ୍ଷୀରୋଦନବାସୀ ।
ଅରକ୍ଷଜନମାନଙ୍କୁ ରଖିବା ନିମନ୍ତେ
ଶଙ୍ଖ ଚକ୍ର ଗଦା ପଦ୍ମ ଧନୁ ତୋର ହସ୍ତେ ।
ମୁହିଁ ଅରକ୍ଷିତ ଜନ ଅଟଇ ଗୋସାଇଁ
ତୋହର ଦୟା ନ ହେଲେ ମୋର ଗତିନାହିଁ
ଯେତେ ଦୋଷ କରିଅଛୁ କରିବା ନା କ୍ଷମା
ନିରକ୍ଷ ଲୋକର ସ୍ୱାମୀ ଅଟୁ ବଜ୍ରସେହ୍ନା ।
ରାଜା ବିନୟ ଭକତ ଭାବମାନ ଦେଖି
ସୁଦୟା କରି କହନ୍ତି ହସି ପଦ୍ମଆଖି ।
ଶୁଣ ତୁ ହୋ ମହାରାୟ ଆମ୍ଭର ବଚନ
ଆଜଯାଏ କନ୍ୟା ବିଭା ନ କଲୁ ରାଜନ ।
ତେଣୁ ଦୁହିତା ତୋହର ଦୂଷିତା ହୋଇଲା
ଆମ୍ଭ ପୁତ୍ରକୁ ସୁନ୍ଦର ଦେଖିଣ ବରିଲା ।
ତୁ ତାକୁ ବିଭା ନ ଦେଇ ରଖିଲୁ ବନ୍ଧନେ
ତେଣୁ ମହାକୋପ ଜାତ ହେଲା ଆମ୍ଭ ମନେ
ବଳରାମଙ୍କର କ୍ରୋଧ କହିଲେ ନ ସରେ
ତୋ ରାଜ୍ୟକୁ ଛାଡ଼ିଥାନ୍ତେ ନିକ୍ଷେପି ଲଙ୍ଗଳରେ
ଜନ ପରଜା ତୋହର ଯାଇଥାନ୍ତେ ନାଶ
ନାରଦ ମୁନି ଯୋଗରୁ ରହିଲା ତୋ ବଂଶ ।
ଶ୍ରୀହରି କହନ୍ତେ କୃତଶେଖର ଶୁଣଇ
କରପଦ୍ମ ଯୋଡ଼ି ପୁଣି ଚରଣେ ନମଇଁ ।
ଯେତେ ଦୋଷକଲି ତାହା ମନରେ ନ ଧର
ଏ କୁମର କୁମାରୀଙ୍କ ନିଅ ଦାମୋଦର ।
ରାଜା ବିନୟ ବିକଳ ଭାବ ମୁନି ଦେଖି
ଶ୍ରୀମୁଖରେ କହନ୍ତି ତହିଁ ମୁନି ବ୍ରହ୍ମର୍ଷି ।

ବୋଇଲେ ରାମକୃଷ୍ଣ ଯେ ଉଗ୍ରସେନ ଅଛି
ଅଛନ୍ତି ଆବର ପଣ୍ଡୁରାଜା ପାଞ୍ଚ ବସି ।
ଅମାତ୍ୟଗଣ ସମସ୍ତେ ଶ୍ରୀମୁଖରେ ଅଛନ୍ତି
କଥାଏ କହିବା ଆମ୍ଭେ ନ କରିବା ନାସ୍ତି ।
ହଳୀ ବୋଇଲେକ କଥ କହ ତପୋବନ୍ତ
ତୁମ୍ଭ ବଚନ ଆମ୍ଭର ଅଟେ ଶିରଗତ ।
ନାରଦ ବୋଇଲେ କରମଣ୍ଡଳକୁ ଯିବା
କୁମର କୁମାରୀଙ୍କୁ ଯେ ବିଭା କରାଇବା ।
ବର କନ୍ୟା ଘେନି ଦ୍ୱାରକାକୁ ଯିବା ଚଳି
ତେବେ ସରବ ସୁଲଭ ହେବ ବନମାଳୀ ।
ନାରଦ ବୋଇଲେ ଯହୁଁ ଏସନ ବଚନ
ଶୁଣି ସନ୍ତୋଷ ହୋଇଲେ ପ୍ରଭୁ ଭଗବାନ ।
ହଳୀ ପୁଚ୍ଛିଲେ ଯୁଧିଷ୍ଠି ଯେ ଉଗ୍ରସେନକୁ
କଥ ବିଚାର ମନରେ କହନ୍ତି ଆମ୍ଭଙ୍କୁ ।
ଯୁଧିଷ୍ଠିର ଉଗ୍ରସେନ କରନ୍ତି ବିଚାର
ତେଣେ ବିଚାରନ୍ତି ବସି ହଳୀ ଚକ୍ରଧର ।
ସମସ୍ତ ଏକତ୍ର ହୋଇ ବିଚାର କରନ୍ତି
ଯେ ଯାହାର ମନେ ସେହି କଥାଗ୍ରହୁଛନ୍ତି ।
କୃତକେଶୀକୁ ଯୁଧିଷ୍ଠି ପାଶେ ହକାରିଲେ
ଆସ ମହାରାଜ ତୋତେ କହିବା ନା ଭଲେ ।
ଦଇବେ ତ କନ୍ୟାଗୋଟି ଆମ୍ଭର ହେଲାଣି
ହରି ନେଇଥିଲା ତାକୁ ପୁତ୍ର ଚୂଡ଼ାମଣି ।
ଏବେ କେବଣ ବିଚାର କର ନରନାଥ
ଆମ୍ଭର ଆଗରେ କହ ସ୍ୱରୂପ ସିଦ୍ଧାନ୍ତ ।
ରାଜା ବୋଇଲେ ମୋହର କି ଦୋଷ ଅଛଇ
ମୁଁ ଯାହା କହଇ ଶୁଣ ସାବଧାନ ହୋଇ ।
ସମସ୍ତ ସୈନ୍ୟଙ୍କୁ ଘେନି ମୋ ରାଜ୍ୟକୁ ଯିବା
ମଙ୍ଗଳ ବିଧାନମାନ ମୋ ପୁରେ ସାରିବା ।
ଯୁଧିଷ୍ଠିଦେବ ବୋଇଲେ ଶୁଣ ରାମହରି
କୃତଶେଖର ପୁରକୁ ସର୍ବେ ଯିବା ଚଳି ।
ଯୁଧିଷ୍ଠି କହନ୍ତେ ସର୍ବ ମନକୁ ଆଇଲା
ଯିବାପାଇଁ ସମସ୍ତଙ୍କ ସନମତ ହେଲା ।
ନାରଦ କୃତଶେଖର ରାଜାକୁ ରଇଲେ
ଗୁପତକରି ସମସ୍ତ କଥାକୁ କହିଲେ ।
ଉଗ୍ରସେନର ପନ୍ଦର ଅକ୍ଷୌହିଣୀ ବଳ
ସାତ ଅକ୍ଷୌହିଣୀ ବଳ ଧର୍ମଦେବଙ୍କର ।

ଏତେ ସୈନ୍ୟଙ୍କୁ ସମ୍ଭାଳି ପାରିବୁ କି କହ
ବିଚାର କରି ମୋ ଆଗେ କହ ମହାରାଜ ।
ରାଜା ବୋଇଲା ଗୋସାଇଁ ତୁମ୍ଭ ପରସାଦେ
କିସ ଅପୂର୍ବ ଅଛଇ କହ ମୋତେ ହାଦେ ।
ରାଜାର ବଚନେ ମୁନି ସନ୍ତୋଷ ହୋଇଲେ
ନଗରଯାକ ମଣ୍ଡାଅ ବୋଲିଣ ବୋଇଲେ ।
ବଳରାମ ବୋଇଲେ ତୁ ଶୁଣ ହୋ ରାଜନ
ଭିଆଣ କରାଅ ଯାଇ ବିଭାର ବିଧାନ ।
ଆଜ୍ଞା ପାଇଣ ତୁରିତେ ନରପତି ଗଲା
ପାତ୍ର ମନ୍ତ୍ରୀକି ଡାକିଣ ରାଜା ଆଜ୍ଞାଦେଲା ।
ନଗରଯାକ ଘୋଷଣା ଦିଆଇଲା ରାୟ
ସୁରେଖାର ବିଭାଘର ନଗର ମଣ୍ଡାଅ ।
ଶୁଣି ଯେ ଯାହାର ଘରଦ୍ୱାର ମଣ୍ଡାଇଲେ
ବିଚିତ୍ର ଲେଖାମାନ ଯେ କାନ୍ଥରେ ଲେଖିଲେ
ନାରୀମାନେ ହୁଳହୁଳି ଧ୍ୱନିରେ କମ୍ପାନ୍ତି
ହଳଦୀ କୁଙ୍କୁମ ବୋଳି ପିଚକା ମାରନ୍ତି ।
ବେଦୀ ଛାମୁଣ୍ଡିଆ ଆଦି ସଜକଲେ ବେଗେ
ଯେମନ୍ତେ ପ୍ରଶଂସା ପାଇ ରାମକୃଷ୍ଣ ଆଗେ ।
ଯଉତୁକ ସାମଗ୍ରୀ ଯେ ପୂର୍ବର ବିଧାନ
ସମସ୍ତ ଆଣି ଥୋଇଲେ ମନ୍ତ୍ରୀ ଗୁଣବାନ ।
ଶଙ୍ଖୁଆ ମହୁରିଆ ଯେ ବାଦ୍ୟକାରଗଣ
ରହିବା ପାଇଁକି ଗୃହ ହେଲା ବିଦ୍ୟମାନ ।
ଭିଆଇଲେ ଋଷିମାନଙ୍କ ପାଇଁ ଫଳମୂଳ
କୃଷ୍ଣଅର୍ଜୁନ ବସିବାପାଇଁ ଚଉଶାଳ ।
ରାଜାଙ୍କ ପାଇଁ ନବର ମନ୍ତ୍ରୀଙ୍କ ଉଆସ
ହାତୀଶାଳ ଅଶ୍ୱଶାଳ ଖାଦ୍ୟପାଇଁ ଘାସ ।
ପନ୍ତ ପନ୍ତ ଧାଡ଼ି ଧାଡ଼ି ରେଖା ରେଖା ହୋଇ
ବିଚିତ୍ର କଳସମାନ ରହିଛନ୍ତି ତହିଁ ।
ପତାକା ଚାମରମାନ ଉଡ଼େ ଫରହର
ଦୀର୍ଘ ପ୍ରସ୍ଥ ଚାରିକୋଣ ଛାମୁଣ୍ଡିଆ ଘର ।
ଦେଖିଣ କୃତଶେଖର ହରଷ ହୋଇଲା
ନାରଦ ମୁନିଙ୍କି ନେଇ ସବୁ ଦେଖାଇଲା ।
ଦେଖିଣ ମୁନି ବୋଇଲେ ସବୁକଥା ଭଲ
ବିଭାର ଉତ୍ସବ କର ଖୋଜ ଅନୁକୂଳ ।
ରାମ କୃଷ୍ଣଙ୍କ ଛାମୁକୁ ଯିବା ବେଗେ ଆସ
ତେବେ ଯେ ଆମ୍ଭମନରୁ ଫିଟିବ ସନ୍ଦେଶ ।

ରାଜାଙ୍କୁ ଦେନିଣ ମୁନି ହୋଇଲେ ବାହାର
ଯାଇଣ ମିଳିଲେ ରାମକୃଷ୍ଣଙ୍କ ଛାମୁର ।
କୃତଶେଖର ରାଜନ ଶ୍ରୀକୃଷ୍ଣଙ୍କୁ ଦେଖି
ଶିରେ କର ଦେଇ ପୁଣି କହେ ଉପଲକ୍ଷି ।
ବିଚିତ୍ରେ ଚରିତ୍ର ଆଦି ସବୁ ଭିଆଇଲା
ଛାମୁରେ ଜଣାଇବାକୁ ଏଥକୁ ଅଇଲା ।
ରାଜାର ବିନୟଭାବ ଦେଖିଣ ଶ୍ରୀହରି
ବଳରାମଙ୍କୁ ବୋଲନ୍ତି ଯିବା ବେଗକରି ।
ନାରଦ ବୋଲନ୍ତି ଉଠ ଦେବ ହଳଧର
ବିଳମ୍ବ ନ ସହେ ବିଭା ହେଉଛି ଉଚ୍ଛୁର ।
ରାଜା ଜଣାଇଲା ଦେବ ଶୁଣିମା ଗୋସାଇଁ
ଆଜ୍ଞା ହେଲେ ବରକନ୍ୟା ଯିବେ ବେଗହୋଇ
ଗୋବିନ୍ଦ ବୋଇଲେ ଆଗୋ ପଠିଆଇ ଦିଅ
ମଙ୍ଗଳ ବିଧାନ ତୁମ୍ଭେ ବେଗେ କରି ଯାଅ ।
କୁମାର କୁମାରୀଙ୍କି ସେ ଚଳାଇଣ ଦେଲେ
ପଛେ ଥାଟ ଘେନି ସର୍ବେ ବାହାର ହୋଇଲେ
ପନ୍ଦର କ୍ଷଉଣୀ ବଳ ଘେନି ଉଗ୍ରସେନ
ସାତ କ୍ଷଉଣୀ ଘେନିଣ ପଣ୍ଡୁର ସନ୍ତାନ ।
କୁତୁହଳେ ବୀରତୂର ନିଶାଣ ବାଜିଲା
କରମଣ୍ଡଳ ରାଜ୍ୟ ଯେ ଉଚ୍ଛୁଳି ପଡ଼ିଲା ।
ବାଜଇ ଶଙ୍ଖମହୁରି ତୂରୀ ବିକରାଳ
ଦମଦମ ଦମାଲୁ ଯେ ଢାଉଁ ଢାଉଁ ଢୋଲ ।
କନଡ଼ା ରାଗରେ ତହିଁ ମହୁରୀ ବାଜଇ
ବୀଣା ଯନ୍ତ୍ର ବାଇ ମୁନି ନାରଦ ନାଚଇ ।
ଥାଟ ସଇନ୍ୟ ଘେନିଣ ଆପେ ଭବଗ୍ରାହୀ
କରମଣ୍ଡଳ ରାଜ୍ୟକୁ ଯାଆନ୍ତେ ଚଳାଇ ।
ହାତୀ ରଥୀ ପଦାତିର ନୁହଇ କଳନା
ଏକକୁ ଆରେକ ବାଦ୍ୟ ବାଜଇ ବାଜଣା
ବ୍ରହ୍ମପୁତେ ଯେ ମଙ୍ଗଳ ଅଷ୍ଟକ ପଢ଼ନ୍ତି
ହୁଳହୁଳି ଯେ ଅଭିଅ ନାରୀଏ ଦିଅନ୍ତି ।
ଶୁଭ ମଙ୍ଗଳ ଯୋଗରେ ରାଜ୍ୟରେ ପଶିଲେ
ସମ୍ମାନ ପାଇ ଯେ ଯାହା ଆସ୍ଥାନେ ବସିଲେ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ସୁରେଖା ବିଭାର କଥା ଶୁଣ ଦିବ୍ୟଗୀତ ।
ନବର ଦେଖିଣ ରାମକୃଷ୍ଣ ପ୍ରଶଂସନ୍ତି
ଧନ୍ୟ କୃତକେଶୀ ରାଜାବୋଲିଣ ବୋଲନ୍ତି ।

ଏ ନବର ଦେଖି ଦେବତାଏ ତୋଷ ହେବେ
ଏକା ଦିବସରେ ଏହା ସମ୍ଭାବିଲୁ ଭାବେ ।
ସେ ଯାହାର ଅନୁରୂପେ ସ୍ଥାନ ଆବୋରିଲେ
ନିଶ୍ଚିନ୍ତ ହୋଇଣ ତହିଁ ସମସ୍ତେ ରହିଲେ ।
ରାଜର୍ଷି ମହର୍ଷି ଦେବର୍ଷିଏ ଅଇଲେ
ସନମାନ ପାଇକରି ସମସ୍ତେ ଆସିଲେ ।
ରନ୍ଧଣା ବିଧାନ ସଜ୍ଜା ଯାହା ହୋଇଥିଲା
ତାହା ଆଗେ ଆଣି କୃତଶେଖର ଥୋଇଲା ।
ରାମକୃଷ୍ଣ ଦୁଇଭାଇ ଯୁଧିଷ୍ଠି ସହିତେ
ଉଗ୍ରସେନ ମୂଳେ ଜାଣ ଯାଦବହିଁ ଯେତେ ।
ଷଡରସ ବ୍ୟଞ୍ଜନରେ ମଣୋହି ସାରିଲେ
ସୁବାସ ପାଣିରେ ବସି କର ପଖାଳିଲେ ।
କର୍ପୁର ବିଡ଼ିଆମାନ ମଣୋହି କରନ୍ତି
ସନ୍ତୋଷେ ସଇନ୍ୟସାକ ଭୋଜନେ ତୃପତି ।
ହାତୀ ଘୋଡ଼ା ଓଟଙ୍କୁ ଯେ କର ଘାସଦେଲେ
ଭୁଞ୍ଜିଣ ସକଳ ଜନ ହରଷ ହୋଇଲେ ।
ଉଗ୍ରସେନଙ୍କୁ ଯୁଧିଷ୍ଠି ଘେନି ପାଞ୍ଚ ଭାଇ
ଆସ୍ଥାନ ପରେ ବସିଲେ ରାମକୃଷ୍ଣ ଯାଇ
ଫଳମୂଳ ମହାଋଷିମାନେ ଗ୍ରାସ କଲେ
ମୃଗଛାଲ ମାଡ଼ି ସର୍ବେ ସଭାରେ ବସିଲେ ।
ଭୋଜନ ଚରଚ୍ଚ ସହୁଁ ରାଜନ ସାରିଲା
ମଙ୍ଗଳ ବିଧି ବିମାନେ ନୃପତି ଲଗିଲା ।
ଅଇଲେ ସାତ ଅହିଅ ନାରୀ ସଜହୋଇ
ସୁବର୍ଣ୍ଣ କୁମ୍ଭ ଉପରେ ନାରିକେଳ ଥୋଇ ।
ପାଣି ତୋଳିଯାନ୍ତି ଶଙ୍ଖ ମହୁରୀ ବଜାଇ
ଶୁଭ ହୁଳହୁଳି ନାଦେ ମହୀ ଉଚ୍ଛୁଳଇ ।
ସାତଘରୁ ଦଶି ପାଣି ତୋଳିଣ ଆଣିଲେ
ମଙ୍ଗଳ ଗୀତ ଗାଇଣ ମନ୍ଦରେ ପଶିଲେ ।
ନୂଆ ଉତ୍ତମ ମସୁଣି ଗୋଟିକି ଉପରେ
ବର କନ୍ୟାଙ୍କୁ ବସାଇ କୁଙ୍କୁମ ସଙ୍ଗରେ ।
ହଳଦୀ ଗୋଳ ଲଗାଇ ଦେଇ ତହୁଁ ଗଲେ
ସୁବର୍ଣ୍ଣର ଶିଳପୁଆ ମଥାରେ ଥୋଇଲେ ।
ଏମନ୍ତ ମଙ୍ଗଳ ବିଧି ବିଧାନ ସରିଲା
ସୁବର୍ଣ୍ଣ ଥାଳରେ ବସି ପ୍ରଦ୍ୟୁମ୍ନ ଭୁଞ୍ଜିଲା ।
ନଶି ପାହାନ୍ତିରେ ବର କନ୍ୟା ଘେନିଗଲେ
ମଙ୍ଗଳପାଣି ଘେନିଣ ସ୍ନାନ କରାଇଲେ ।
ତହୁଁ ବର କନ୍ୟା ଘେନି ଅଇଲେ ନବର
କନକ ପିଢ଼ା ଉପରେ ବସାଇ କୁମର ।
କୁମାରୀଙ୍କୁ ଘେନିଗଲେ ଭିତର ପୁରକୁ
ବେଶ କରାଇଲେ ବେଗେ ତହିଁ ସୁରେଖାକୁ
କୁମରଙ୍କୁ ସଖିଗଣ କରୁଛନ୍ତି ବେଶ
ବଜାଇ ଶଙ୍ଖ ମହୁରୀ ଦମା ବାଜଘୋଷ ।
ମଙ୍ଗଳ ଗୀତ ଅହିଅ ସ୍ତିରୀମାନେ ଗାଇ
କୁମର ଆଗେ ନାଚନ୍ତି ପରିହାସେ ଯାଇ ।
ବ୍ରାହ୍ମଣେ କର୍ମ କରନ୍ତି ଯେ ବିଧି ବିଧାନେ
ମଙ୍ଗଳାଷ୍ଟକ ପଢ଼ନ୍ତି ବ୍ରାହ୍ମପୁତ୍ରମାନେ ।
ଜ୍ୟୋତିଷେ ଜଣାଇଲେ ଯେ ସଭାର ଗୁମ୍ଭୁରେ
ସାବଧାନ ହୋଇ ଏବେ ଶୁଣ ନୃପବରେ ।
ଅନୁକୂଳ ବେଳ ଆସି ହୋଇଲା ଗୋସାଇଁ
ବେଦୀ ଉପରକୁ ବିଜେ କର ନୃପସାଇଁ ।
ଏତେ ଶୁଣି ମହାରାଜା ଆସ୍ଥାନକୁ ଗଲା
ଗୋବିନ୍ଦ ମୁଖକୁ ଚାହିଁ ଏମନ୍ତ ବୋଇଲା ।
ଅନୁକୂଳ ବେଳ ଆସି ହୋଇଲା ଗୋସାଇଁ
ବେଦୀ ଉପରକୁ ବିଜେ କଲେ ହଳସାଇଁ ।
ଦିବ୍ୟବେଶ ହୋଇ ପୁଣି ଆପେ ଭାବଗ୍ରାହୀ
ସଭାରୁ ଅର୍ଜୁନ ହସ୍ତ ଧରି ଉଠିଯାଇ ।
ରାଜାଙ୍କୁ ବୋଇଲେ କଥାଏକ ଯେ ବିଚାର
ଜ୍ୟୋତିଷ ହକାରି ଆଣ ଆମ୍ଭର ଗୁମ୍ଭୁର ।
ରାଜାର ଆଜ୍ଞାରେ ବ୍ରାହ୍ମପୁତ୍ରେକ ଅଇଲା
ଗୋବିନ୍ଦ ଗୁମ୍ଭୁରେ ଉଭା ହୋଇଣ ରହିଲା ।
ଜ୍ୟୋତିଷ ଜଣାଇ ଦେଲା ଏହା ଅନୁକୂଳ
ବେଦୀରେ ବିଜେକଲେକ ମଦନ ଗୋପାଳ ।
ଗୋବିନ୍ଦ ମୁଖରୁ ଅନୁକୂଳ ବେଳ ଶୁଣି
ବସୁଦେବଙ୍କୁ ବୋଲନ୍ତି ପ୍ରଭୁ ଚକ୍ରପାଣି ।
ଆପଣ ବେଦୀ ଉପରେ ଯାଇ ବିଜେକର
କୁମରଙ୍କୁ କୋଳେ ଧରି ମଙ୍ଗଳ ସୁମର ।
ତାହା ଶୁଣି ବସୁଦେବ ବହନ ଚଳିଲେ
ସୁବର୍ଣ୍ଣ ପିଢ଼ାଏ ତାଙ୍କୁ ବେଗେ ଆଣି ଦେଲେ
ତହିଁର ଉପରେ ବିଜେକଲେ. ବସୁଦେବ
ଦେଖି ଆନନ୍ଦ ହୋଇଲେ ଦେବ ବାସୁଦେବ
ପୂର୍ବମୁଖେ ବସେ କୃତଶେଖର ନରେନ୍ଦ୍ର
ସଭରେ ଆସି ବସିଲେ ସର୍ବ ଋଷିବୃନ୍ଦ ।

ବ୍ରହ୍ମଋଷି ରାଜଋଷି ସଭାରେ ବସିଲେ
ନାରଦ ମୁନି ହରଷେ ବୀଣାନାଦ କଲେ ।
ମଙ୍ଗଳ କୁମ୍ଭ ଥୋଇଲେ ବେଦୀର ଉପରେ
ସ୍ୱୀକାର ବିଧି କରନ୍ତି ବସି ନୃପବରେ ।
ଚୂତଡାଳ ନାରିକେଳ କୁମ୍ଭରେ ଥୋଇଲେ
ବରୁଣ ପୂଜା ତହିଁରେ ବିପ୍ରମାନେ କଲେ ।
ବରବେଶ ହୋଇ ଆସୁ ବୋଇଲେ ବ୍ରାହ୍ମଣେ
ବେଦୀ ଉପରକୁ ବର ଆଣିଲେ ତକ୍ଷଣେ ।
ବସୁଦେବ କୋଳେ ଯାଇ ବସିଲେକ ବର
ବେଦମନ୍ତ୍ର ଉଚ୍ଚାରନ୍ତି ଶୁଦ୍ଧ ଦ୍ୱିଜବର ।
ଅହିଅ ନାରୀମାନେ ଯେ ହୁଳହୁଳି ଦେଲେ
ମଙ୍ଗଳ ବିଧି ବିଧାନ ଗ୍ରହପୂଜେ କଲେ ।
ବିପ୍ରେ ବୋଇଲେ ଲବଣ ଚଉଁରୀ ବଗୃର
କନ୍ୟା ହାତେ ଦେଇ ଘେନିଆସ ନୃପବର ।
ଏତେକ ଶୁଣି ଅହିଅ ନାରୀମାନେ ଗଲେ
ସୁରେଖା ହସ୍ତେ ଲବଣ ଚଉଁରୀ ସେ ଦେଲେ
ବେଦୀରେ ବର ଉପରେ ଫିଙ୍ଗିଲେ ତା ନେଇ
ଅହିଅ ସ୍ତ୍ରୀମାନେ ଯେ ହୁଳହୁଳି ଦେଇ ।
ଶଙ୍ଖ ମହୁରୀ ଶବଦେ ଉଛୁଳେ ନଗର
ଲବଣ ଚଉଁରୀ ବିଧି ସାରି ଦ୍ୱିଜବର ।
ବୋଇଲେ ରାଜା ଆସୁ ଯେ ତୁମ୍ଭର ନନ୍ଦନ
ବରପାଦ ଧୋଇଦେବ କଂସାରେ ଯେ ଜାଣ
ରାଜା ବୋଇଲେ ଡଗର ବେଗେ ଏଥୁ ଚଳ
ଡାକ ଘେନିଆସ ନୀଳଶେଖର କୁମର ।
ବେଦୀକୁ ନୀଳଶେଖର ଅଇଲା ବହନ
ବୋଲେ କସ ଅବଧାନ ହେଉଛୁ ରାଜନ ।
ରାଜା ବୋଇଲେ କୁମର ବିପ୍ରଙ୍କୁ ପଗୃର
ବିପ୍ର ବୋଲେ ପାଣି ଆଣ ସୁବର୍ଣ୍ଣ ଝରୀର ।
ବିପ୍ର ଆଜ୍ଞାରେ କୁମର ବେଗେ ଚଳିଗଲା
ସୁବର୍ଣ୍ଣ ଝରୀର ନୀର ପୂରାଇ ଆଣିଲା ।
ସୁବର୍ଣ୍ଣ ପଲମ ଆଣି ଦେଲେ ଭୃତ୍ୟଗଣ
ପ୍ରଦ୍ୟୁମ୍ନ ପାଦ ଧୋଇଲେ ପୁଣ ନୀଳସେନ ।
ପାଣିଝରୀ ଘେନି ନୀଳଶେଖର ଚଳିଲା
ଗୋଡ଼ଧୁଆ ବିଧାନକୁ ତହିଁରେ ସାରିଲା ।
କଟର ନୂଆ ମସିଣା ଗୋଟାଏ ଉପରେ
ବସାଇଲେ ନେଇ ଭୃତ୍ୟ ପ୍ରଦ୍ୟୁମ୍ନ କୁମରେ ।
ପୂର୍ବମୁଖ ହୋଇ ତହିଁ ବସିଲେକ ବର
କୋଳେ ବସାଇଲେ ଉଗ୍ରସେନ ନୃପବର ।
ସୁରେଖା କନ୍ୟାକୁ ବେଶ କରାଇ ଆଣିଲେ
କୁଟଶେଖର ନୃପତି କୋଳେ ବସାଇଲେ ।
ମଙ୍ଗଳ ମହୁରୀ ବାଦ୍ୟ ବାଜେ ଘନ ଘନ
ବାଦ୍ୟ ନିଶାଣ ଶବଦ ଶୁଭେ ଗୁରୁଠାଣ ।
ପୂର୍ବମୁଖ ହୋଇ ତହିଁ କୁମର ବସିଲା
ଦକ୍ଷିଣ ହସ୍ତକୁ ତାର ବଢ଼ାଇଣ ଦେଲା ।
କୁମାରୀର ହସ୍ତ ନେଇ ତହିଁରେ ଥୋଇଲେ
ବେଦଧ୍ୱନି କରି ହସ୍ତ କୁଶରେ ବାନ୍ଧିଲେ ।
ଯେ ଯାହାର ଗୋତ୍ରମାନ କଲେ ଉଚ୍ଚାରଣ
ବେଦଧ୍ୱନି କଲେ ଥିଲେ ଯେତେକ ବ୍ରାହ୍ମଣ ।
କୁମାର କୁମାରୀ ହସ୍ତ ବନ୍ଧନ ପଡ଼ିଲା
କୁଟଶେଖର ନୟନୁ ଲୋତକ ଗଡ଼ିଲା ।
ନାରଦ ବୋଇଲେ ଆହେ ଶୁଣ ନୃପବର
ଦାନ ଯଉତୁକମାନ ଅଣାଅ ତୋହର ।
ଶଙ୍ଖରେ ପାଣି ଦେଇଣ ରାଜା ହସ୍ତେ ଦେଲେ
ତୋଳିଦିଅ ବର ହସ୍ତେ ନାରଦ ବୋଇଲେ
ହସ୍ତେ ଶଙ୍ଖ କୁଶଜଳ ଘେନି ନରନାଥ
ପାଣି ତୋଳିଦେଲେ ନେଇ କୁମରର ହସ୍ତ ।
ସହସ୍ରେକ ରଥେ ପାଣି ଦ୍ରବ୍ୟକୁ ପୂରାଇ
କୁମର ଆଗରେ ସବୁ ଥୋଇଦେଲେ ନେଇ ।
ଦୁଇ ସହସ୍ର ତୁରଙ୍ଗ ସହସ୍ରେକ ହାତୀ
ସମ୍ମୁଖରେ ଆଣି ଥୋଇଣ ଦେଲେ ନରପତି ।
ବାଛି ବାଛି ଏକବର୍ଣ୍ଣ ଦୁହଳୀ ଗାଈ
ବାଛୁରୀ ସହିତ ଆଣି ଦେଲେ ନରସାଇଁ ।
ଥାଳି କଂସା ଆଦି ଗିନା ସବୁ ସୁବର୍ଣ୍ଣର
ଗଡ଼ୁ ଗଡ଼ିଆ ଆବର ଘଶଇ ଅପାର ।
ଦାସୀ ପରିବାରୀ ରାଜା ଅନେକ ଯେ ଦେଲା
ଧନଦ୍ରବ୍ୟ ଦେଇ ରାଜା ସନ୍ତୋଷ ହୋଇଲା ।
ବହୁତ ବିନୟୀ ହୋଇ କହଇ ରାଜନ
ଅନେକ ପ୍ରଶଂସା କଲା ରାଜା ଉଗ୍ରସେନ ।
ବୋଇଲା ଯେ କୃଷ୍ଣଙ୍କର ଅଟଇ କୁମର
ଯଉତୁକ ଦେବାକୁ କି ଶକ୍ତି ଅଛି ମୋର ।
ଝିଅ ଗୋଟିଏ ଦେଇ ମୁଁ ଶରଣ ପଶିଲି
ଏଣେ ସପତି ପୁରୁଷ ମୁହିଁ ଉଦ୍ଧାରିଲି ।

ପରମବ୍ରହ୍ମ ଅଟନ୍ତି ଏ ଯେ ନାରାୟଣ
କୃତାର୍ଥ କଲେ ଏ ମୋର ଶରୀର ଜୀବନ ।
ଏହାଙ୍କର ପାଦରଜ ମୋ ରାଜ୍ୟେ ପଡ଼ିଲା
ଜନ ପ୍ରଜାଙ୍କର କଷ୍ଟ ଏତେକାଳେ ଗଲା ।
କନ୍ୟା ବରାଂଦେଲେ ରାଜା ପଶିଲୁ ଶରଣ
ଗୋବିନ୍ଦଙ୍କ ଶ୍ରୀଚରଣେ ନମେ ପୁଣ ପୁଣ ।
ଶ୍ରୀହରି ବୋଲନ୍ତି ତୁମ୍ଭେ ଶୁଣ ନାରାୟଣ
ସପତ ପୁରୁଷ ଯାଏ ହେଲ ବନ୍ଧୁପଣ ।
କରପତ୍ର ଯୋଡ଼ି ରାଜା କହଇ ବଚନ
ବନ୍ଧୁପଣକୁ ମୁହିଁ ଯେ ନୁହଇ ଭାଜନ ।
କୃତକୃତ୍ୟ ହୋଇ ରାଜା କହେ କରଯୋଡ଼ି
ଦୟା କରଥିବ ମୋତେ ରାମ ନରହରି ।
ଏତେକ କହିଣ ରାଜା ବିନମ୍ର ହୋଇଲା
ଅହିଅନାରୀ ବନ୍ଧନ ହସ୍ତୁ ଫେଡ଼ିଦେଲା ।
ସୁବର୍ଣ୍ଣ କଉଡ଼ି ତାଙ୍କ ହସ୍ତେ ନେଇ ଦେଲେ
ବର କନ୍ୟା ଦୁଇ ଏକ ଆସନେ ବସିଲେ ।
ଅହିଅ ସ୍ତିରୀଏ ଯୁଡ଼ ଖେଳାଇଲେ ବସି
ଖେଳସାରି ବରକନ୍ୟା ଭିତରରେ ପଶି ।
ଭିତରକୁ ଘେନଗଲେ ତାଙ୍କୁ ନାରୀଗଣ
ସୁବର୍ଣ୍ଣ ପୀଢ଼ାବଳରେ ବସାଇଲେ ପୁଣ ।
ସୁବର୍ଣ୍ଣ ପଲମେ ଷଡ଼ରସର ବ୍ୟଞ୍ଜନ
ବର କନ୍ୟାଙ୍କ ଆଗରେ ବାଢ଼ିଲେ ତକ୍ଷଣ ।
ଏକପତ୍ରେ ବରକନ୍ୟା ବସିଣ ଭୁଞ୍ଜନ୍ତି
ଆନନ୍ଦରେ ହୁଳହୁଳି ନାରୀଏ ଦିଅନ୍ତି ।
ଭୋଜନ ସାରଣ ତହୁଁ ଆଚମନ କଲେ
କର୍ପୂର ବଡ଼ଆମାନ ସନ୍ତୋଷେ ଭୁଞ୍ଜିଲେ ।
ଏସନ ପ୍ରକାରେ ବିଭା ବିଧାନ ସରିଲା
କୃତଶେଖର ଯେ ସଭାମଣ୍ଡପକୁ ଗଲା ।
ଆସ୍ଥାନ କରିଣ ବସିଛନ୍ତି ଭବଗ୍ରାହୀ
କରପତ୍ର ଯୋଡ଼ି ଉଭାହେଲା ନରସାଇଁ ।
ସାବଧାନ ହୋଇ ଶୁଣ ଦେବ ଜନାର୍ଦ୍ଦନ
ସାରିବା ହେଉ ଯେ ସ୍ନାନ ନିତ୍ୟକର୍ମ ମାନ ।
ରାଜାର ମୁଖରୁ ଯହୁଁ ଶୁଣିଲେକ ଏହା
ଶ୍ରୀମୁଖରେ ଆଜ୍ଞାଦେଲେ ପ୍ରଭୁ ଜଗନ୍ନାହା ।
ବୋଇଲେ ତୈଳ କୁଙ୍କୁମ ଅଣାଅ ବହନ
ଗୋବିନ୍ଦ ଆଜ୍ଞା ପ୍ରମାଣେ ଚଳଇ ସ୍ୱଜନ ।

ତଇଳ କୁଙ୍କୁମ ଆଦି ଘେନାଇ ଅଇଲା
ଥାଟ ସଇନ୍ୟ ଆଗରେ ନେଇ ଥୋଇଦେଲା
ତଇଳ କୁଙ୍କୁମ ଲେପିହୋଇ ସର୍ବଜନ
ସୁରନଦୀ ତୀରେ ଯାଇ କରଇ ଯେ ସ୍ନାନ ।
ସ୍ନାନ ନିତ୍ୟକର୍ମ ବିଧି ସାରଣ ଅଇଲେ
ଭୋଜନ ଠାବରେ ଯାଇ ସର୍ବେ ବିଜେକଲେ
ଅମୃତ ମଣୋହି ବିଧି ସାରିଲେ ତକ୍ଷଣ
ସୁବାସ ପାଣି ସେବିଣ କଲେ ଆଚମନ ।
କର୍ପୂର ବଡ଼ଆ ଆଦି ମୁଖବାସ ଦେଲେ
ଆସ୍ଥାନ ଉପରେ ଯାଇ ସର୍ବେ ବିଜେକଲେ ।
ଯେ ଯାହା ନିଯୋଗ ଲୋକ ଲଗିଲେକ ଯାଇ
ଧାଉଡ଼ି ବିବିଧ ଛନ୍ଦେ ବାଜଣା ବଜାଇ ।
ଶଙ୍ଖ ମହୁରୀ ବାଜଣା ବାଜେ କୁହୁଳେ
କରମଣ୍ଡଳ ଉଚ୍ଛୁଳେ ଗହଳ ଚହଳେ ।
ଋଷିମାନେ ଫଳମୂଳ ଆନନ୍ଦେ ଭୁଞ୍ଜିଲେ
ବ୍ରାହ୍ମଣମାନେ ଆନନ୍ଦେ ବେଦଧ୍ୱନି କଲେ ।
ବୀଣା ବଜାଇ ନାରଦ ମୁନି ନାଚୁଥାନ୍ତି
ନାରାୟଣଙ୍କର ମୁଖ ଚାହିଁଣ ହସନ୍ତି ।
ବିଭା ବଳିଲା ହୋ ଚାଲ ଦେଶେ ଏବେ ଯିବା
କପାଇଁ ଆଉ ଏଠାରେ ଆମ୍ଭେ ରହିଥିବା ।
ରାମକୃଷ୍ଣ ବୋଲନ୍ତି ଯେ ନୃପତିକି ରାଇ
ବରକନ୍ୟା ସଜକରି ଆଣ ବେଗେ ଯାଇ ।
ଦ୍ୱାରକାକୁ ଯିବା ସର୍ବେ ବେଗେ ସଜ ହୁଅ
ଆଗୁଆଣି ବଳ ସବୁ ଆଗେ ଚଳିଯାଅ ।
ବାରୁପାକ୍ଷ ମନ୍ତ୍ରୀକି ଯେ ନାରଦ ରାଇଲେ
ରାଜାର ଛାମୁରେ ଭୋର ଜଣାଅ ବୋଇଲେ
ରାମ ନରହରି ଯିବେ ଦ୍ୱାରକା ଭୁବନ
ବିଳମ୍ବ ନ ସହଇ ଯେ ବାବୁ ଏହିକ୍ଷଣ ।
ଖରତର ହୋଇ ମନ୍ତ୍ରୀ ତହୁଁ ବେଗେ ଗଲା
ରାଜାର ଛାମୁରେ ଯାଇ ସବୁ ଜଣାଇଲା ।
ବୋଇଲେକ ସାବଧାନେ ଶୁଣିମା ଗୋସାଇଁ
ଦ୍ୱାରାକାପୁରକୁ ଏବେ ଯିବେ ଭବଗ୍ରାହୀ ।
ନାରଦ ମହର୍ଷି ମୋତେ ରାଇଣ କହିଲେ
ଏଥକୁ କିସ ବିଚାର କହ ମହୀପାଳେ ।
ମନ୍ତ୍ରୀକି ଚାହିଁଣ ରାଜା ଉଦ୍‌ଯୋଗ କରନ୍ତି
ବରକନ୍ୟାଙ୍କର ବେଶ କରାଅ ତରତି ।

ବିଭାର ସାମଗ୍ରୀ ବେଗେ ଘେନାଇଣ ଆସ
ବରକନ୍ୟାଙ୍କୁ ବୋଲିବ ହାନ୍ଦୋଳାରେ ବସ
ଏତେବୋଲି ମନ୍ତ୍ରୀବର ବହନେ ଚଳିଲା
ଭିତରପୁରେ ବାରତା ବେଗେ ନେଇ ଦେଲା
ବର କନ୍ୟା ସଜ କର ବୋଲିଣ ବୋଇଲେ
ବରକନ୍ୟାଙ୍କୁ ଯେ ମାଏ ସଜ କରାଇଲେ ।
ହୁଳହୁଳି ଦିଅନ୍ତି ଯେ ଅହିଅ ସ୍ତ୍ରି ଗାଏ
ଶଙ୍ଖ ମହୁରି ବାଜଇ କଳଣା ନ ଯାଏ ।
ହାନ୍ଦୋଳା ଭିତରେ ନେଇ କନ୍ୟା ବସାଇଲେ
ଦିବ୍ୟ ସୁଖାସନରେ ସେ ବର ବିଜେ କଲେ
ବରକନ୍ୟା ଦୁହେଁ ସହୁଁ ହୋଇଲେ ବାହାର
ଆସ୍ଥାନ ଉପରେ ବିଜେ କଲେ ନୃପବର ।
ବୋଇଲେ ହୋ ଅବଧାନ କର ଭାବଗ୍ରାହୀ
ସଜହୋଇ ବରକନ୍ୟା ସିଂହଦ୍ୱାରେ ରହି ।
ଅକ୍ଷତ ବେଭାର ଯେତେ ସବୁକୁ ଆଣିଛୁ
ଜଣ ଜଣ କରି ଦିଅ ଆହୋ ଶୀଘ୍ରବହି ।
ହାତୀ ରଥୀ ପଦାତିକ ଯେତେ ଆସିଥିଲେ
ଶାଢ଼ୀ ପରସାଦ ସେହୁ ସମସ୍ତେ ପାଇଲେ ।
ମହୁରିଆ ଶଙ୍ଖୁଆଏ ଆଦି ବାଦ୍ୟକାର
ଶାଢ଼ୀ ପ୍ରସାଦ ତାହାଙ୍କୁ ଦେଲେ ନରବର
ବାଜିଲା ଟମକ ସଜ ହୋଇଲେ ସଇନ
ଗୁଳ ଗୁଳ ଶବଦରେ କମ୍ପଇ ମେଦିନୀ ।
ହୁଳହୁଳି ଶବଦ ଯେ ଶୁଭଇ ଅପାର
ଯେ ଯାହା ଯାନ ବାହନ ଚଢ଼ିଲେ ସତ୍ୱର ।
ରାମକୃଷ୍ଣଙ୍କର ଯେତେ ସୈନ୍ୟ ଆସିଥିଲେ
ଯେ ଯାହାର ମତେ ସଜ ହୋଇ ବାହାରିଲେ ।
ପନ୍ଦର କ୍ଷଉଣୀ ବଳ ଘେନ ଉଗ୍ରସେନ
ଆଗରେ ଥାଟ ଚଳାଇ ଚଳିଲେ ବହନ ।
ତାହାଙ୍କର ପଛେ ବରକନ୍ୟା ଚଳିଗଲେ
ଆଗପଛ ହୋଇ ଥାଟ ସୈନ୍ୟ ବାହାରିଲେ ।
କୁତଶେଖର ରାଜନ ପୁରକୁ ଗଇଲା
ଝିଅ ସଙ୍ଗେ ଯାଅ ବୋଲି ତାହାକୁ ବୋଇଲା
ମନ୍ତ୍ରୀକି ବୋଇଲା ତୁହି ଯାଅ ଏବେ ବେଗେ
ଝିଅକୁ ନେଇଣ ତହିଁ ଛାଡ଼ିଆ ସୁଯୋଗେ ।
ଅନେକ ସଇନ୍ୟ ନେଲା ସେ ନୀଳଶେଖର
ଆଜ୍ଞା ମାଗିଣ ଚଳଇ ବହୁଘୋଷ ସାର ।

ଆଗରେ ଯେ ଉଗ୍ରସେନ ଚଳଇ ସଇନ
ବରକନ୍ୟା ମଧ୍ୟେ ତାର ପଛେ ସୁଦମଣି ।
ଅତି ସମାରୋହେ ତହୁଁ ଥାଟ ଚଳିଗଲେ
ବାରତୁର ଶବଦରେ ମହୀ ଉଛୁଳିଲେ ।
ପଛେ ରାମକୃଷ୍ଣ ପଞ୍ଚପାଣ୍ଡବ ଗମନ୍ତି
ସାତ ଅକ୍ଷୌହିଣୀ ବଳ ସଙ୍ଗରେ ଅଛନ୍ତି ।
ଅକ୍ରୁର ଅନାଧୃଷ୍ଟ ଯେ ସାତ୍ୟକି ସହିତେ
ରଥେ ରଥେ ଚଢ଼ି ଯାନ୍ତି କୃଷ୍ଣଙ୍କ ସଙ୍ଗତେ ।
ବୀଣା ବଜାଇ ନାରଦ ମୁନି ଚଳିଯାନ୍ତି
ପଛରେ ଗୋଡ଼ାଇ କୁତଶେଖର ନୃପତି ।
ସାଷ୍ଟାଙ୍ଗେ ଗଡ଼ଧାଇ ଯେ ଶୁତିଲା ରାଜନ
କୃତ୍ୟକୃତ୍ୟ ହୋଇ ଧୀରେ ବୋଲଇ ବଚନ
ଦୁହିତା ଗୋଟିକ ମୁହିଁ ସମର୍ପିଲି ତୋତେ
ତାହାଠାରେ ଦୟା ରଖିଥିବ ଜଗନ୍ନାଥେ ।
ଯେତେ ଦୋଷ କଲେ ତାର କରିବ ଯେ କ୍ଷମା
ତୁମ୍ଭେ ଯେ ପରମବ୍ରହ୍ମ ଦେବ ମହାତମା ।
ଅନେକ ପ୍ରକାରେ ରାଜା ବିନୟ ହୋଇଲା
ପାଦେ ପଡ଼ି ଗଡ଼ଧାଇ ସାଷ୍ଟାଙ୍ଗେ ଶୋଇଲା
ଆପଣେ ଶ୍ରୀଜଗନ୍ନାଥ ଶ୍ରୀକରେ ତୋଳିଲେ
ସର୍ବଶୁଭେ ରାଜ୍ୟ ତୁମ୍ଭେ କରୁଥାଅ ଭଲେ ।
ଝିଅ ପଠିଆଇ ରାଜା ହୋଇଲା ବିକଳ
କ୍ରୋଧଭରେ ନୟନରୁ ବହେ ଅଶ୍ରୁଜଳ ।
ମେଲାଣି ମାଗିଣ ରାଜା ବାହୁଡ଼ି ଅଇଲା
ଭିତର ନବରେ ଯାଇ ଖଟେ ବିଜେ କଲା ।
ରାଣୀ ମହାଦେଈମାନେ ଆସି ଶୋକ କଲେ
ଝିଅର ନାମ ବାହୁନି ସକଳେ କାନ୍ଦିଲେ ।
ଦଇବ ପୁରୁଷ ଯାହା କରିଛି ଘଟନ
କର୍ମକୁ ଆଦରି ତହୁଁ ରହିଲେ ରାଜନ ।
ତୁଳସୀ ଦେବୀ ବଲ୍ଲଭ ଜଗତ ସୋଦର
ଅସୁର ନିବାରଣ ଯା ନାମ ଚକ୍ରଧର ।
ଅରକ୍ଷିତ ଜନ ଅଟେ ମୁଁ ଶାରଳା ଦାସ
ଏ ଭବନଧାରୁ ପାରିକର ପୀତବାସ ।

---

## କୁଠାରାସୁର ବଧ

କରପଦ୍ମ ଯୋଡ଼ି ପୁଣି ବଳଙ୍କ ନୃବର
ଅଗସ୍ତି ମୁନିଙ୍କ ପାଦେ କଲେ ନମସ୍କାର ।

ସୁରେଖାର ବଚନ ମୁହିଁ ଶୁଣିଲି ଶ୍ରବଣେ
କୋଟି ଜନ୍ମର ପାତକ ହରିଲା ତକ୍ଷଣେ ।
ଏଥିଉତ୍ତାରେ ହୋଇଲା କହ କଥ କଥା
ପୁସ୍ତକ ଫେଡ଼ି କହନ୍ତି ମୁନି ବ୍ରହ୍ମବେତ୍ତା ।
ତାହାର ବଚନଷ୍ଟ ଭାବ ଭକତଙ୍କ ଦେଖି
ତଉ ଦଣ୍ଡା ବସିବାରୁ ବ୍ରହ୍ମାଙ୍କର ବହି ।
ଏଥିଉତ୍ତାରେ ହୋଇଲା ପୁଣି ଯେଉଁ ଶାନ୍ତି
ଏମନ୍ତ ହୋଇ ଶୁଣ ତୁ ହେ ନରପତି ।
ରାମକୃଷ୍ଣ ଆଦି ଯେନ ତହୁଁ ଚଳିଗଲେ
ସେ ଦିନ ଯାଇ ସେ ଅଧବାଟରେ ରହିଲେ
ରନ୍ଧନ ଭୋଜନ କରି ରହିଲେ ସେ ଦିନ
ରଜନୀ ପ୍ରଭାତୁ ପୁଣି ଚଳାଇଲେ ସୈନ୍ୟ ।
ଲକ୍ଷେକ ଶଙ୍ଖ ଶବଦ ଶୁଭେ ଘନ ଘନ
କନଡ଼ା ରାଗେ ମହୁରୀ ସ୍ୱର ବାଦ୍ୟମାନ ।
ଢୋଲ ଟମକ ଦୁନ୍ଦୁଭି ବାଜେ ଗରୁଡ଼ାଣ
ଛୁଉଣ ପଡ଼ିବ କିବା ଆକାଶ ଭୁବନ ।
ସୈନ୍ୟବଳ ଯେନ ବାଟେ ଯାଉଛନ୍ତି ଚଳି
ମୁଖରବ ଶବଦରେ କୁରୁମ ଉଚ୍ଛୁଳି ।
ଦଇବ ଭବିଷ୍ୟ କଥା ଶୁଣହେ ରାଜନ
ମୃଗୟାକୁ ଆସିଥିଲା କୁଦ୍ଧାଳ ନନ୍ଦନ ।
କୁଠାର ଗୋଟିଏ କାନ୍ଧେ ପକାଇଣ ଥାଇ
ଦେବ ଦାନବେ କାହାକୁ ସେହୁ ନ ଡରଇ ।
ବଡ଼ଇ ପ୍ରତାପୀ ସେହି ଦୁର୍ବାର ଅସୁର
ଦଇବେ ସେଦିନ ଆସିଥିଲା ମୃଗୟାର ।
ମୃଗ ହରିଣ ବହୁତ ଜୀବ ମାରିଅଛି
ଶ୍ରମେ ଗଛତଳେ ବସିଥିଲା ଦୈତ୍ୟବହି ।
ସୈନ୍ୟବଳ ସଙ୍ଗେ ତାର ଅଛଇ ଅପାର
ଆଗେ ଉଭା ହୋଇଅଛି ତାର ମନ୍ତ୍ରୀବର ।
ଆଲଟ ଚାମର ଢାଳୁଛନ୍ତି ବସି ଥୋକେ
ମହା ଆଡ଼ମ୍ବରେ ବେଢ଼ି ଛନ୍ତି ସର୍ବଲୋକେ ।
ବଡ଼ ସମ୍ଭାରେ ବସିଛି ସେ ଅସୁର ବୀର
ସ୍ୱରିଦିଗକୁ ଫେରାଇ ଚାହେଁ ଧୀର ଧୀର ।
ଯେଣେ ଚାହେଁ ତେଣେ ସସ୍ତ୍ର ଓଳଗି ପଡ଼ଇ
ଆଦି ସଇନ୍ୟକ ପ୍ରେମନୟନେ ଚାହଇଁ ।
ଏସନବେଳେ ଶୁଭିଲା ତହିଁ ଘୋରନାଦ
ବିକରାଳ ହୋଇ ବାଜୁଅଛି ନାନାବାଦ୍ୟ ।

ଶଙ୍ଖ ମହୁରୀ ବାଜଇ ଅତି କୁତୁହଳେ
ମହୀ ଟଳମଳ ହେଉଅଛି ପାଦଭରେ ।
ଆକାଶମାର୍ଗେ ଉଡ଼ଇ ବହୁତର ଧୂଳି
ଶଙ୍ଖ ମହୁରୀ ଶବଦେ କୁରୁମ ଉଚ୍ଛୁଳି ।
ବୀରନାଦ ଟମକ ଯେ ବାଜେ ଦୁରଦୁର
ଘୋଡ଼ାମାନ ଧୂଆଇଁଣ ଧାମନ୍ତି ସୁଆର ।
ଉଗ୍ରସେନ ରାଜା ଆଗ ଆଟେ ଯାଏ ଚଳି
ପଛ ଆଟରେ ବିଜୟ ରାମବନମାଳୀ ।
ମଧ୍ୟରେ ଯେ ବରକନ୍ୟା ହାନ୍ଦୋଳା ରେ ବିଜେ
ଚଢ଼ି ପଟୁଆରେ ଛନ୍ତି ପାଣ୍ଡବେ ତନୁଜେ ।
ନିର୍ଭୟେ ଆଟ ଚଳାଇ ଯାନ୍ତି ଧୀରେ ଧୀରେ
ଚିହ୍ନ ଚାମର ଉଡ଼ଇ ଶୂନ୍ୟେ ଫରହରେ ।
ବାଦ୍ୟନାଦ ଶବଦକୁ ଶୁଣିଣ ଅସୁର
ଚୁପତେ ମନ୍ତ୍ରୀକି ପୁଚ୍ଛେ ରାଇ ସନ୍ନିଧିର ।
ବୀରତୂର ଶବଦରେ ମହୀ କମ୍ପୁଅଛି
ଆବର ଶଙ୍ଖ ମହୁରୀ ଶବଦ ଶୁଭୁଛି ।
ହୁଳହୁଳିର ଶବଦ ପଡ଼ୁଅଛି ଦେଖ
ଗୁଳଗୁଳ ଆସ ଆସ ପଡ଼େ ଡାକହାକ ।
ମନ୍ତ୍ରୀ ବୋଇଲା ଅସୁରକୁଳ ନୃପସାଇଁ
ତହିଁର ବିଧାନ ତୋତେ କହଇ ବୁଝାଇ ।
ତୋହର ମନ୍ତ୍ରୀ ମୁହିଁ ଯେ ପୁରୁଷାନୁକ୍ରମେ
ସାବଧାନ ହୋଇ ଶୁଣ ତୋର ବାଦ୍ୟମାନେ
କୁଶସ୍ଥଳୀ ଦ୍ୱାରକା ଯେ ଅଛି ଏକପୁର
ରାମକୃଷ୍ଣ ବୋଲି ବସୁଦେବର କୁମର ।
ତାହାର ନନ୍ଦନ ନାମ ପ୍ରଦ୍ୟୁମ୍ନ ଯେ ବୀର
କୃଷ୍ଣର ଜ୍ୟେଷ୍ଠ ରମଣୀ ମାତା ଅଟେ ତାର
ତାହାଙ୍କ ଗର୍ଭରୁ ସେହି କୁମର ଜନ୍ମିଛି
ରୂପେ ପଟାନ୍ତର କାମଦେବଙ୍କୁ ଯେ ଜିଣିଛି ।
ସେ କୁମର ବରହୋଇ କନ୍ୟାକୁ ନେଉଛି
ବଡାଇ ସମ୍ଭାରେ ସେହୁ ଆଟ ଚଳାଉଛି ।
ଅନେକ ଉତ୍ସବ କରି ରାମ ନରହରି
ବହୁତର ଆନନ୍ଦରେ ଯାଉଛନ୍ତି ଚଳି ।
ମନ୍ତ୍ରୀ କହନ୍ତେ କୁଠାର ଅସୁର ଶୁଣିଲା
ମନ୍ତ୍ରୀଙ୍କି ଚାହିଁ ଏମନ୍ତ ବଚନ କହିଲା ।
ଆଟ ବେଗେ ସଜକର ଯିବା ତହିଁଯାଏ
କେତେ ଉତ୍ସବେ ଯାଉଛି ଦେଖିବା ଥୋକାଏ ।

ରଜାର ବଚନେ ମନ୍ତ୍ରୀ ବିନୟେ ଜଣାଇ
ସାବଧାନ ହୋଇ ଏବେ ଶୁଣିମା ଗୋସାଇଁ ।
ତାଙ୍କୁ ଦେଖିଲେ ଅସୁର କସ କାର୍ଯ୍ୟ ହେବ
ମୋର କଥାରେ ତାହାଙ୍କ ନ ଯା ଦୈତ୍ୟଧବ
କୁଠାର ଅସୁର ବୋଲେ କି ବିରୋଧ ଅଛି
ଏଥିର ସନ୍ଦେଶ ମୋତେ କହ କିନା ବାଛି ।
କାହାଁର ନୃପତି ସେହି ରାଜ୍ୟ ତାର କାହିଁ
କେଉଁମତେ କାହା ଝିଅ କିଏ ବିଭା ହୋଇ
ଥାଟ ସଇନ୍ୟ ତାହାର କେତେ ଅଛି ସଙ୍ଗେ
ଏଥିର ଚରିତମାନ କହ ମୋର ଆଗେ ।
ମନ୍ତ୍ରୀ ବୋଇଲା ଶୁଣ ଦେବ ଅବଧାନ କର .
କରମଣ୍ଡଳ ଦେଶର ଅଟେ ନୃପବର ।
କୁନ୍ତଶେଖର ନାମ ଯେ ଅଟଇ ତାହାର
ମାଳଶେଖର ନାମରେ ତାହାର କୁମର ।
ମନ୍ତ୍ରୀର ନାମ ଅଟଇ ଜାଣ ବିରୂପାକ୍ଷ
ସାବଧାନ ହୋଇ ଶୁଣ ଦୈତ୍ୟକୁଳ ବକ୍ଷ ।
ସୁରେଖା ନାମେ ଦୁହିତା ଗୋଟିଏ ତାହାର
ଗୁପତେ ତାକୁ ହରିଲା କୃଷ୍ଣର କୁମର ।
ମାଳଶେଖର ତାହାକୁ ସମରେ ଜିଣିଲା
ବାନ୍ଧିଆଣି ତାକୁ ବନ୍ଦୀ କରିଣ ରଖିଲା ।
ନାରଦ ମୁନି ମୁଖରୁ ରାମକୃଷ୍ଣ ଶୁଣି
ଯାଦବବଳ ପାଣ୍ଡବବଳ ସଙ୍ଗେ ଘେନି ।
କରମଣ୍ଡଳ ରାଜ୍ୟରେ ପ୍ରବେଶ ହୋଇଲେ
ଉପୁରେ କୁନ୍ତଶେଖର ଶରଣ ପଶିଲେ ।
ଦୁହିତାକୁ ବିଭାକଲା ଯଉତୁକ ଦେଇ
ଯାଉଛନ୍ତି ବରକନ୍ୟା ଘେନି ଦୁଇଭାଇ ।
ଏମନ୍ତ ଶୁଣି ମନ୍ତ୍ରୀଙ୍କି ପୁଚ୍ଛଇ ଅସୁର
ଯୁଦ୍ଧ କରିବା କି ଆମ୍ଭେ ତାହା ସଙ୍ଗତର ।
ବାଜତୂର ବଜାଇଣ ଯାଉଛନ୍ତି ମୋ ଆଗେ
ତା ଦେଖି ଦେହ ଅଗ୍ନି ର ହେଉଅଛି ରାଗେ
ମନ୍ତ୍ରୀ ବୋଇଲା ଏ କଥା କେବେହେଁ ନ କର
ସ୍ୱୟଂ ପରଂବ୍ରହ୍ମ ସେହି ଅଟନ୍ତି ଚକ୍ରଧର ।
ତାଙ୍କ ସଙ୍ଗେ ରଣ କଲେ ଯଶ ନ ପାଇବୁ
ବିନା କାରଣେ କିପାଇଁ ସୈନ୍ୟ ମରାଇବୁ ।
ମନ୍ତ୍ରୀବର ବୋଲେ ଆଉ କଥା ଏକ ଅଛି
ନ କହିଲେ ମୋତେ ଭୁଲ କହିବୁଟି ବାଛି ।

ପିତୃ ପିତାମହ ଶତ୍ରୁ ଥିଲେ ତାଙ୍କ କୁଳେ
ରଣକରି ଯଶ ନ ପାଇଲେ ସେହି ଭଲେ ।
ମନ୍ତ୍ରୀ କହନ୍ତେ ଏସନ ଶୁଣି ବିଚାରଇ
କେଉଁ ପ୍ରକାରେ ସେ ପିତୃ ବଇରୀ ଅଟଇ ।
କାହାଁର ରାଜା ସେ ଅଟେ କାହିଁ ଆସିଥିଲା
କେବଣ ପ୍ରକାରେ ମୋର ପିତାକୁ ମାଇଲା ।
ଏହା ମୋତେ ବୁଝାଇଣ କହ ମନ୍ତ୍ରୀବର
ନୋହିଲେ ନଷ୍ଟପ୍ରାୟ ତୋର ପୁରିବ କାଳ ।
ମନ୍ତ୍ରୀ ବୋଲେ କୋପ ତୁ ନ କର ଦୈତ୍ୟନାଥ
ତାହାଁର କଥା ମୁହିଁ ଯେ କହଇ ତଦନ୍ତ ।
କୁଞ୍ଜିଗଳର ରାଜନ ଯୁଧିଷ୍ଠି ନୃପବର
ତାହାଙ୍କ ଭାଇ ନକୁଳ ନାମେ ମହାବୀର ।
ଦଇବ ବଶେ ମୃଗୟା ସେହି ଆସିଥିଲା
କୁଣ୍ଡଳସିଂହ ସଙ୍ଗତେ ଭେଟ ସେ ପଡ଼ିଲା ।
ଦୁହେଁ ଉଚବାଚ ହୋଇକରି କଳିକଲେ
ମହା ଘୋର ସଂଗ୍ରାମ ଯେ ଦୁହେଁ ଆରମ୍ଭିଲେ
ଦୁହେଁ ମହାକ୍ଷତ୍ରୀ କେହି ନୁହେଁ ଉଚ୍ଚନୀଚ
ଦୁଇ ବୀର ଦୁହିଙ୍କୁ ଯେ ପୁଣି ସମକକ୍ଷ ।
ସେ ଦିନର ସଂଗ୍ରାମ ଯେ ନୁହଇ ଗୋଚର
ରଣେ କୁଣ୍ଡଳସିଂହକୁ ମାଇଲା ନକୁଳ
ସଂଗ୍ରାମରେ ମାରି ସେହି ବାହୁଡ଼ିଣ ଗଲା
ଆପଣା ରାଜ୍ୟରେ ଯାଇ ପ୍ରବେଶ ହୋଇଲା ।
ଏମନ୍ତେ ସେ ଥୋକାଏକ ଦିନ ବହିଗଲା
ତୋ ପିତାକୁଣ୍ଡଳେଶ୍ୱର ରାଜା ଯେ ହୋଇଲା
ମୋତେ ଦିନେ ପରୁଶିଲା ପିତା ଯେ ତୋହର
ଚୌଦ୍ଦଦିନ ହେଲା ପିତା ନଇଲା ଯେ ଘର ।
ମୁଁ ବୋଇଲି ପିତା ତୋର ସଂଗ୍ରାମେ ପଡ଼ିଲା
କୁଞ୍ଜିଗଳ ଦେଶ ରାଜା ନକୁଳ ମାଇଲା ।
ଶୁଣିକରି ପିତା ତୋର ବହୁ କୋପକଲେ
କାହିଁ ଅଛନ୍ତି ପାଣ୍ଡବେ ଭେଟିବା ବୋଇଲେ
ଏତେବୋଲିକରି ଦିନେ ମୃଗୟାକୁ ଗଲା
ଦଇବ ବଶେ ପାଣ୍ଡବମାନଙ୍କୁ ଭେଟିଲା ।
ସେ ଯାଇଥିଲେ ମାଳେନ୍ଦ୍ରୀ ହରଣକୁ ପୁଣି
ଦିବସ ବଢାଇ ଘରକୁ ଫେରିବାର ଜାଣି ।
ପାଣ୍ଡବଙ୍କର ଅନୁଜ ସହଦେବ ବୀର
ଗୋଟିଏ ତା ତାହାର ସଙ୍ଗେ କଲା ରଣଘୋର ।

ଅନେକ ସଂଗ୍ରାମ ତହିଁ ମହାମନ୍ତ୍ରୀ କଲେ
କେହି ତାହାଙ୍କୁ ସଂଗ୍ରାମେ ଜିଣି ନ ପାରିଲେ ।
କରକୁ ଚାହିଁଣ ସହଦେବ ସେ ଜାଣିଲା
ତୋ ପିତା ଯେହ୍ନେ ମରିବ ସେ ଭେଦ ଦଶିଲା
ଭେଦ ଜାଣି ସହଦେବ ମାଇଲାକ ବଳେ
ପିତାଙ୍କୁ ତୋହର ଛେଦି ପକାଇଲା ହେଳେ ।
ଏରୂପେ ପିତା ବଇରି ଅଟଇ ତୋହର
ଏକମନେ ଶୁଣ ତୁ ହୋ ଦଇତ୍ୟ ଈଶ୍ୱର ।
ଶୁଣିକରି କଉଣପ ବଡ଼ କୋପ କଲା
ନଷ୍ଟପ୍ରୁ ପାଣ୍ଡବଙ୍କର କାଳ ଯେ ପୂରିଲା ।
ମୋହର ପିତାଙ୍କୁ ଯେବେ କରିଛନ୍ତି ନାଶ
ମୋହର ହାତରେ ତାଙ୍କ ପୂରିବ ଆୟୁଷ ।
କୁଠାର ଦୂଇଗୋଟା ସେ କାନ୍ଧରେ ପକାଇ
ଅତି କୋପଭର ହୋଇ ଅସୁର ଧାମଇଁ ।
ମନ୍ତ୍ରୀବର ଡାକଦେଲା ରହକନା କ୍ଷଣେ
ଏଡ଼େକ କୋପ କପାଇଁ କରୁ ଅକାରଣେ ।
ମନ୍ତ୍ରୀ ବୋଲେ ରାଜା ସ୍ଥିର ହୋଇଣ ରହିଲା
କି କି କରିବୁ ବୋଲିଣ ତାକୁ ପଚାରିଲା ।
ମନ୍ତ୍ରୀ ବୋଇଲେ ହେ ଥାଟ ସଇନ ସାଜବା
ଏକା ହୋଇ କପାଁ ଆମ୍ଭେ ସମର କରିବା ।
ରାଜା ବୋଇଲେ ତୁରିତେ ସାଜ ହୋ ସଇନ୍ୟ
ପାଣ୍ଡବଙ୍କ ପ୍ରାଣ ଆଜ ନେବ ଜନ୍ତୁରାଣ ।
ଥାଟ ଚଳାଇ ଅସୁରେ ତତକ୍ଷଣେ ଗଲେ
ପାଞ୍ଚଯୂଣେ ଯାଇ ରାମକୃଷ୍ଣଙ୍କୁ ବେଢ଼ିଲେ ।
ଉଗ୍ରସେନ ସାତବଂଶ ଯାଦବଙ୍କୁ ଘେନ
ଚଳାଇ ଯାଉଅଛି ସେ କରି ଶଙ୍ଖଧ୍ୱନ ।
କୃଷ୍ଣର କୁମରମାନେ ବର କନ୍ୟା ଘେନ
ମଧ୍ୟ ଥାଟରେ ରହିଣ ଯାଉଛନ୍ତି ପୁଣି ।
ତାହାଙ୍କର ପଛେ ରାମକୃଷ୍ଣ ବେନ ଭାଇ
ଅକ୍ରୂର ସାତ୍ୟକ ଘେନକରି ଭାବଗ୍ରାହୀ ।
ରଥର ଚରାଳମାନ ଉଡ଼େ ଫରହର
ଶଙ୍ଖ ମହୁରି ଶବଦ ବାଜେ ଘୋରତର ।
ତାହାଙ୍କର ପଛେ ସାତକ୍ଷୌଣୀ ବଳ ଘେନ
ଚରିଭାଇଙ୍କର ସଙ୍ଗେ ଯୁଧିଷ୍ଠିର ନୃମଣି ।
ମହାସମ୍ଭ୍ରମ ହୋଇଣ ଯାଉଥାନ୍ତି ଥାଟ
ଚୂଲ ଚୂଲ ଧାଇଁ ଧାଇଁ ମୁଖରୁ ଚହଟ ।

କୁଠାର ଅସୁର ବେଗେ ଧାଉଁଅଛି ଖରେ
ରହରେ ପାଣ୍ଡବା ବୋଲି ଡାକେ କୋପଭରେ
ମୂର୍ଖର ଚହଳେ ତା ନ ଶୁଣନ୍ତି ପାଣ୍ଡବେ
ହାଙ୍କି ରଥ ଚଳାଇ ସେ ଯାଉଛନ୍ତି ବେଗେ ।
ସମସ୍ତଙ୍କ ପଛେ ବୀର ସହଦେବ ଥିଲେ
କିଏ ସେ ଡାକୁଛି ବୋଲି ପଛକୁ ଚାହିଁଲେ ।
ଦେଖିଲେ ଅସୁର ସୈନ୍ୟ ଆସୁଛନ୍ତି ମାଡ଼ି
ସ୍ତମ୍ଭୀଭୂତ ହେଲା ଚାହିଁ ସହଦେବ ବଳୀ ।
ବଡ଼ୁରଇ ବପସ୍ଥିତ ହୋଇଲାକ ଏଥ
ଥାଟ ଘେନିଣ ଚଳିଲେ ନନ୍ଦେ ଜଗନ୍ନାଥେ ।
ଥାଟ ସଇନ୍ୟ ଚଳାଇ ଯୁଧିଷ୍ଠିର ଠାକୁର
ଚାଲି ଯାଉଛନ୍ତି ସୈନ୍ୟ ନାହାନ୍ତି ପଛର ।
ସହଦେବଙ୍କୁ ଅସୁର ବେଢ଼ିଲେକ ଯାଇ
ରହରେ ପାଣ୍ଡବା ବୋଲି ଅସୁର ଡାକଇ ।
ସହଦେବ ବୋଇଲେ ତୁ ଅଟୁ କେଉଁ ବୀର
ବୃଥା କପାଁ ଦ୍ୱନ୍ଦ୍ୱ କର ଆମ୍ଭର ସଙ୍ଗର ।
ମନ୍ତ୍ରୀକୁ ପୁଚ୍ଛଇ ଚାହିଁ ଦୈତ୍ୟକୁଳ ସାଇଁ
କହ ଆହେ ମନ୍ତ୍ରି ପିତାବଇରି କି ଏହି ।
ମନ୍ତ୍ରୀ ବୋଇଲା ଏହି ତୋ ପିତାକୁ ମାଇଲା
ଭଲକରି ଚାହଁ ବୋଲି ମନ୍ତ୍ରୀକୁ ବୋଇଲା ।
କୁଠାରାସୁର ବୋଇଲା ଶୁଣରେ ପାଣ୍ଡବା
ପିତୃ ପିତା ବଇରି ତୋ ମୁଖ ନ ଚାହିଁବା ।
ମୋହର ପିତାଙ୍କୁ ତୁହି କରିଅଛୁ ନାଶ
କ୍ଷଣକ ଶରେ ତୋର ପ୍ରାଣ କରିବି ମୁଁ ଶେଷ
ଦୈତ୍ୟ କ୍ରୋଧ ଦେଖି ସହଦେବ ଯେ କହଇ
ତୋ ପିତା ଅଜା ଯଦ୍ୟପି ମୋ ହସ୍ତେ ମରଇ
ଏବେ ତୋହର ମରଣ ମୋ ହସ୍ତେ ଅଛଇ
ତୋହର ପ୍ରତିଜ୍ଞା କଲେ ମୋର କସ ହୋଇ
ଯୁଦ୍ଧ କଲେ ତୁ କି ଏଥୁ ଯିବୁ ପ୍ରାଣ ଧରି
ଉତବାଚ ହୋଇ ଦୁହେଁ ଆରମ୍ଭିଲେ କଳି ।
କହୁଁ କହୁଁ ଦୁଇବୀରେ କଲେ ଶରବୃଷ୍ଟି
ପ୍ରତି ଶରେ ଦୁଇବୀରେ ପୁଣି ତାହା କାଟି ।
କୁଠାର ଦୁଇଗୋଟା ଯେ ଥୋଇଲା ରଥରେ
ଧନୁ ଧରି ଯୁଝେ ସହଦେବଙ୍କ ସଙ୍ଗରେ ।
ଏକଜଣକୁ ସହସ୍ରଜଣ ତ ବେଢ଼ିଲେ
ଯେ ଯାହାର ଶସ୍ତ୍ରମାନ ନଠାଇ ବାନ୍ଧିଲେ ।

ଧନୁରୁ ନ ଫିଟୁ ସହଦେବ ତା ଛେଦଇ
ଅସୁର ଉପରେ ଶସ୍ତ୍ର ପୁଣି ସେ ବିନ୍ଧଇ ।
ବେଳକୁଁ ବେଳ ରଣଗୋଳ ହେଇଲା ଅପାର
ଦେବ ମାନବରେ ତାହା ଅଟେ ଅଗୋଚର
ଅସୁର ସଇନ୍ୟ ସହଦେବ ବେଢ଼ି କରି
ଶସ୍ତ୍ରମାନ ବିନ୍ଧନ୍ତି ସେ ଉପରୋଧ ହୁଡ଼ି ।
ଏକକୁ ଆରେକ ଶର ବିନ୍ଧନ୍ତି କୋପରେ
ମହାଘୋର ସଂଗ୍ରାମ ଯେ ହୋଇଲା ସେଠାରେ
ଏକଶରେ ପ୍ରତିଶର ସହସ୍ରେକ ଶର
ପେଷିଣ ଛେଦଇ ତାହା ସହଦେବ ବୀର ।
କୋପଭରେ ସହଦେବ ବିନ୍ଧେ ତୀକ୍ଷ୍ଣ ଶର
ଶରେକ ପଡ଼ିଲେ ଦୁଇସହସ୍ର ଅସୁର ।
ମୁଣ୍ଡମାନ ଛିଡ଼ିଣ ଯେ ପଡ଼ିଲା ଭୂମିର
ଦେଖି କୁଠାର ଅସୁର କମ୍ପେ ଥରହର ।
ବୋଇଲା ମାନବା ଆରେ ଏଡ଼େ ଶସ୍ତ୍ର କଲୁ
ଦୁଇସସ୍ର ଦୈତ୍ୟ ମୋର ଛେଦିପକାଇଲୁ ।
ପଚୃଶ ନାରାଚ ଦୈତ୍ୟ ଗୁଣରେ ବସାଇ
ସହଦେବ ଉପରକୁ ବିନ୍ଧେ କୋପ ବହି ।
ସହଦେବର ଉପରେ ପଡ଼େ ତୀକ୍ଷ୍ଣ ଶର
ଖଳ ଖଳ ହୋଇକରି ବହଇ ରୁଧିର ।
ରୁଧିର ବହନ୍ତେ ସହଦେବ କୋପ କଲେ
ଛବିଶ ନାରାଚ ପୁଣି ଦୈତ୍ୟକୁ ମାଇଲେ ।
ଅସୁର ଅଙ୍ଗରେ ଯାଇ ପଡ଼େ ତୀକ୍ଷ୍ଣ ଶର
ମୁହଁ ମାଡ଼ିହୋଇ ଦୈତ୍ୟ ପଡ଼ିଲା ଭୂମିର ।
ପୁଣ ପୁଣ ଶର ପେଷେ ସହଦେବ ବୀର
ଦୈତ୍ୟ ଅଙ୍ଗେ ପଡ଼ି ରକ୍ତ ବହେ ଝରଝର ।
କୋପେଣ ଅସୁର ପୁଣି ବଂଶ ଶର ଧରି
ସହଦେବ ଉପରକୁ ବିନ୍ଧେ କୋପ କରି ।
ଶସ୍ତ୍ର ଆସନ୍ତେଣ ସହଦେବ ତ ଦେଖିଲା
ଖଣ୍ଡିଦୂରରେ ଥାଇଣ ଛେଦି ପକାଇଲା ।
ଏଣେ ଅସୁର ସଇନ୍ୟ ବିନ୍ଧୁଛନ୍ତି ଶର
କୋପେ ବହୁଶର ବିନ୍ଧେ ସହଦେବ ବୀର ।
ସେ ଶର ଆସନ୍ତେ ଦୁଇସହସ୍ର ଅସୁର
ଅଚେତନ ହୋଇଣ ଯେ ପଡ଼ିଲେ ଭୂମିର ।
କ୍ରୋଧେ ଅସୁର ସଇନ୍ୟ ବିନ୍ଧୁଛନ୍ତି ଶର
କାଣ୍ଡେ ଛାଇଦେଲେ ସହଦେବର ଶରୀର ।
କୋପେଣ ବୀର ସହସ୍ର ନାରାଚ ବିନ୍ଧିଲା
ଦୁଇସହସ୍ର ଅସୁର ଛେଦି ପକାଇଲା ।
କଦଳିବନ ଯେସନେ ପବନେ ପଡ଼ନ୍ତି
ସହଦେବ ଶରଘାତେ ଅସୁର ମରନ୍ତି ।
ନିଜ ସୈନ୍ୟ ହତ ଦେଖି କୁଠାର ଅସୁର
ସହଦେବ ଉପରକୁ ବିନ୍ଧଇ ଯେ ଶର ।
ସହଦେବ ଅଙ୍ଗରେ ଯେ ପଡ଼େ ବାଣ ଯାଇ
ଅଗ୍ନି ଜଳି ଉଠଇ ଯେ ପ୍ରଜ୍ୱଳିତ ହୋଇ ।
ବେଳକୁଁ ବେଳ ରଣଗୋଳ ଅନେକ ହୋଇଲା
ରକତନଦୀ ଗୋଟିଏ ପୃଥ୍ୱୀରେ ବହିଲା ।
ଦଶସସ୍ର ବଳ ଘେନ ଦାନବ ଯୁଝଇ
ଦେବ ଦୁର୍ଲ୍ଲଭ ମାନବେ ତାହା ନୁହେ କହି
ଅସୁରକୁ ଛାଡ଼ିକରି ସହଦେବ ବୀର
ସଇନ୍ୟ ସଙ୍ଗରେ ଯାଇଁ ଯୁଝିଲ କୁମର ।
ଦୁଇସହସ୍ର ପର୍ଯ୍ୟନ୍ତ ସଇନ୍ୟ ଯୁଝିଲ
ମୁଣ୍ଡାବୃକ୍ଷ ପ୍ରାୟେକ ତାଙ୍କୁ ଛେଦି ପକାଇଲା ।
ରକତରେ କର୍ଦ୍ଦମ ଯେ ହେଲା ମହୀସ୍ଥଳ
ମଡ଼ାମଡ଼ିରେ ଅନେକ ଦୈତ୍ୟ ହେଲେ ଢଳ
ଆଠଘଡ଼ି ମଧ୍ୟେ ଦୁଇସହସ୍ର ଅସୁର
ଏକା ଜଣକେ ମାଇଲେ ଧରିଣ ସେ ଶର ।
ଦେଖିଣ କୁଠାରସୁର କୋପେ ପ୍ରଜ୍ୱଳିଲା
ସହଦେବ ଉପରକୁ ନାରାଚ ବିନ୍ଧିଲା ।
ଅଙ୍ଗରେ ନ ପଡ଼ୁ ସହଦେବ ତା ଛେଦଇ
ଅସୁର ଉପରକୁ ଯେ ନାରାଚ ବିନ୍ଧଇ ।
ବେଳକୁଁ ବେଳ ସମର ଯେ ହେଲା ଅଗୋଚର
ରକତରେ କରଦମ ଦୁହିଙ୍କ ଶରୀର ।
କେହି କାହାକୁ ସମରେ ନିଜ୍ଜିନ ନୁହନ୍ତି
ଦୁଇବୀରେ ମହାକ୍ଷତ୍ରୀ ସମର କରନ୍ତି ।
ରଣରେ ବିମୁଖ ହୋଇକରି ମନ୍ତ୍ରୀବର
କରକୁ ଗୃହ୍ନିଲା କେହ୍ନେ ମରିବ ଅସୁର ।
ହସ୍ତ ଗୃହ୍ନିଲେ ଯାହାକୁ ବ୍ରହ୍ମାଣ୍ଡ ଦହଇ
ତାହାକୁ କେବଣ କଥା ଗୋଚର ନୁହଇ ।
ବିଚାରି ଜାଣିଲା ମୃତ୍ୟୁ ଏହି ପରକାରେ
ଏହାର କୁଠାର ନେଇ ହାଣିଲେ ଯା ଶିରେ
ଏସନ ଚରିତ ସହୁଁ କୁମର ଜାଣିଲା
ଆସୁରର ଉପରକୁ ଧାଇଁଣ ପଡ଼ିଲା ।

ହୁଟାଇଣ ଯୁଦ୍ଧ ବୀର କରନ୍ତେ ଅପାର
ଏକମୁଖ ହୋଇକର ପଶନ୍ତ ସମର ।
ଧନୁରୁ ଗୁଣମାନ ଯେ ଛୁଟିଲା ଯୁଦ୍ଧରେ
କାଉଁଶେ ପିଠି ହୁଅନ୍ତ ଧର ଯେ ଯାହାରେ ।
ଧନୁର୍ଦ୍ଧର ଛାଡ଼ି ସହଦେବ ମହାବଳୀ
କୁଠାର ଦୁଇଗୋଟା ଯେ ଆଣିଲା ଉଚ୍ଛୁଡ଼ି ।
ସ୍ତମ୍ଭୀଭୂତ ହୋଇ ଦୈତ୍ୟ ଗୃହେଁ ଜଳ ଜଳ
ବୋଇଲା ମୃତ୍ୟୁଭେଦ ଏ ଜାଣିଲା କକର ।
ମନ୍ତ୍ରୀକୁ ବୋଇଲା ସେହୁ କ ବୁଦ୍ଧି କରିବା
କେବଣ ପ୍ରକାରେ ଏଥୁଁ ପଳାଇଣ ଯିବା ।
ମନ୍ତ୍ରୀ ବୋଇଲା ମୁହିଁ ଯେ କହୁଛି ଅଗ୍ରତ
ପାଣ୍ଡବଙ୍କ ସଙ୍ଗତରେ ନ କର ଅନର୍ଥ ।
ତୋହର ବାପ ଯେ ବଡ଼ ଗରିଷ୍ଟ ଅଟଇ
ତାହାକୁ ଏ ସହଦେବ ଶସ୍ତ୍ରେ ଛେଦଇ ।
ତୋ ଅଣଅଜା କୁଣ୍ଡଳସିଂହ ନାମେ ଥିଲା
ଏହାର ଯେ ବଡ଼ଭାଇ ହାତେ ପ୍ରାଣଦେଲା ।
ଏ କଥା କହିଲେ ତୁହି କିଛି ନ ବୁଝିଲୁ
ସଂଗ୍ରାମ କରିବୁ ବୋଲି ଧାଇଁଣ ଆସିଲୁ ।
ଦାଇବର କଲା କୃତ୍ୟ କେ କରିବ ନାହିଁ
ମୃତ୍ୟୁପୁରୁଷଟି ଯେବେ ଆଣିଛୁ କଡ଼ାଇ ।
ପଳାଇ ଯିବାକୁ କେବେ ଆଉ ବାଟ ନାହିଁ
ପଳାଇଲେ ଅବା ତୁହି ରହିବୁଟି କାହିଁ ।
ଏ ଢନପୁରରେ ତୋତେ ରଖନ୍ତା କେ ନାହିଁ
ବିସ୍ତର କରିବାର ତ ସମୟ ନୁହଇ ।
ଖଳିଲା ଦାଇତ୍ୟ ଏବେ ହୋଇଲା ମରଣ
ମାଲଛନ୍ଦା କରି ଧାଏଁ ଅସୁର ନନ୍ଦନ ।
ସହଦେବ ଉପରକୁ ମାଡ଼ିଣ ପଡ଼ିଲା
ମାଡ଼ି ବସିବି ବୋଲିଣ ହାମ୍ପୋଳ ଧଇଲା ।
ଯହୁଁ ଏତେସରି କରିଲାକ ସେ ଅସୁର
କୁଠାରେ ପିଟିଲା ବେଗେ ସହଦେବ ବୀର ।
ଅସୁର କନ୍ଧେ କୁଠାର ପଡ଼ିଲାକ ଯାଇ
ବେକ ଛିଣ୍ଡି ମୁଣ୍ଡ ତାର ଭୂତଳେ ପଡ଼ଇ ।
ଥରହର ହୋଇ ପଡ଼ିଲାକ ପିଣ୍ଡଖଣ୍ଡ
ଭୂମିରେ ପଡ଼ିଲା ଛିଡ଼ି କରି ଗଣ୍ଡି ମୁଣ୍ଡ ।
ଅସୁରକୁ ମାରି କୋପେ ବୋଲେ ସହଦେବ
ମନ୍ତ୍ରୀକି ବୋଇଲା ଶୁଣ ମୋହର ସମ୍ବାଦ ।

ରାଜାକୁ ଘେନି ଅଇଲୁ ତୋର ପରିଘାଇ
ତୋହର ବିଗ୍ରହରେ ମୋତେ କସ କରି ହୋଇ
ତୋହର କହନ୍ତେ ଦୈତ୍ୟ ସନ୍ଦେଶ ଜାଣିଲା
ମୋହର ସଙ୍ଗତେ ଆସି ଏତେ ଯୁଦ୍ଧ କଲା ।
ଦାଇବର ବଶେ ସେହୁ ହୋଇଲାକ କ୍ଷୟେ
ତୋତେ ଆଜ ରଖିବ ଏ ଢନପୁରେ କିଏ ।
ରଥର ଉପରୁ ସହଦେବ ଯେ ଧାଇଁଲା
ତୋତେ ରଖିବାର ନ ଯୋଗାଇ ସେ ବୋଇଲା
ଏତେ ବୋଲି ମନ୍ତ୍ରୀ ବାଳ ଧରିଣ ଆଣିଲା
ସେହି କୁଠାର ଘେନିଣ ବେକକୁ ହାଣିଲା ।
ମୁଣ୍ଡ ଛିଡ଼ି ମନ୍ତ୍ରୀବର ପଡ଼ିଲା ଭୂମିର
ପ୍ରାଣ ଛାଡ଼ିଗଲା ସେହି ଅସୁର ଶରୀର ।
କୁଠାରସୁରର ମୁଣ୍ଡ ଧରି ବାମହସ୍ତେ
ମନ୍ତ୍ରୀର ମୁଣ୍ଡ ଧଇଲା ଦକ୍ଷ କରପଦେ ।
ଦୁହିଙ୍କ ବାଳ ବାନ୍ଧିଲା ଏକ ଯୋଗକରି
ପବନା ଶରେକ ନାଜକରେ ବୀର ଧରି ।
ଉଡ଼ାଇ ଦେଲା ପଡ଼ିଲା ସେ ଦୈତ୍ୟ ରାଜ୍ୟେଣ
ନଗ୍ରଲୋକେ ଦେଖିକରି ବିସ୍ମରନ୍ତ ମନ ।
ଆମ୍ଭ ରାଜାର ମନ୍ତ୍ରୀର କେ କାଟିଲା ଶିର
ଦେଖିଣ ନଗର ଲୋକେ ହୋଇଲେ କାତର
ଏଥିଉତ୍ତାରୁ ଶୁଣ ହୋ ମନୁ ନରପତି
ଦୈତ୍ୟ ମାଇଲା ବିଚକ୍ଷଣୀ ଆର୍ଯ୍ୟର ଯେ ନାତି ।
ସାତକ୍ଷୌଣୀ ବଳଘେନି ଯୁଧିଷ୍ଠିର ଗଲେ
ସହଦେବ ଯୁଦ୍ଧକଥା କେହି ନ ଜାଣିଲେ ।
ରାମକୃଷ୍ଣ ଉଗ୍ରସେନ ଗଲେ ଆଗ ହୋଇ
ମନ୍ତ୍ରୀକୁ ଦୈତ୍ୟ ବେଢ଼ିଲ ନ ଜାଣନ୍ତି କେହି
ବୀରତୂର ବଜାଇଣ ସର୍ବେ ଚଳିଗଲେ
ଦ୍ୱାରିବତୀ ପୁରେ ଯାଇଁ ପ୍ରବେଶ ହୋଇଲେ ।
ହୁଳହୁଳି ଶବଦରେ ଶୁଭଇ ଚହଳ
ଶଙ୍ଖ ମହୁରୀ ତୂରୀ ଯେ ବାଜେ କୁତୂହଳ ।
ଉତ୍ସବ ଆନନ୍ଦ କଥା କହି ନ ସରଇ
ଅହ୍ୟମାନେ ବରକନ୍ୟା ଅଇଲେ ବନ୍ଦାଇ ।
କୃଷ୍ଣର ନାରୀମାନେ ଯେ ଅଇଲେ ସମସ୍ତେ
ଦେବକୀ ଦେବୀ ତାହାଙ୍କ ଅଇଲେ ତୁରିତେ ।
ଦୁର୍ବାକ୍ଷତେ ବନ୍ଦାଇଲେ କୁମାର କୁମାରୀ
ବନ୍ଦାଇ ସୁବର୍ଣ୍ଣ ଦୀପ ନେଇ ସର୍ବବାଳୀ ।

ବନ୍ଦାପନ କରସାରି ଭିତରେ ଚଳାଲେ
କନ୍ୟାର ରୂପ ଦେଖିଣ ସର୍ବେ ପ୍ରଶଂସିଲେ ।
ଉତ୍ସବ ଆନନ୍ଦ ଦ୍ୱାରବତୀରେ ହୋଇଲା
ଛପନ କୋଟି ଯଦୁ ସଙ୍ଗେ ଉଗ୍ରସେନ ଗଲା ।
ଆପଣା ନଗରେ ଯାଇ ପ୍ରବେଶ ହୋଇଲେ
ସାତକ୍ଷୌଣୀ ବଳ ଘେନି ଯୁଧିଷ୍ଠି ଚଳିଲେ ।
ଶ୍ରୀ ବଳରାମ ଚଳିଲେ ଆପଣା ମନ୍ଦିରେ
ସର୍ବ ଚରିତ କହିଲେ ରେବତୀ ଆଗରେ ।
ଶୁଣିଣ ସେ ମହାଦେବୀ ଆନନ୍ଦ ହୋଇଲେ
କୃଷ୍ଣପୁତ୍ରମାନେ ଯେଝା ନଗରକୁ ଗଲେ ।
କୁତଶେଖରର ପୁତ୍ର ମନ୍ତ୍ରୀ ଆସିଥିଲେ
ଭଗବାନ ତାଙ୍କୁ ବହୁ ଗଉରବ କଲେ ।
ଏମନ୍ତ ସମୟେ ସହଦେବ ଯେ ଅଇଲା
ଯୁଧିଷ୍ଠିର ଠାକୁରଙ୍କୁ ଦରଶନ କଲା ।
ଶିରେ କରଦେଇ ସେହୁ କହନ୍ତି ବଚନ
ବାଟେ ଉଗାଳିଲା ମୋତେ କୁଦ୍ଧାଳନନ୍ଦନ ।
ବହୁତର ଯୁଦ୍ଧ ସେହୁ ମୋର ସଙ୍ଗେ କଲା
ମୋର ହସ୍ତେ ସେହୁ ପ୍ରାଣେ ହତ ଯେ ହୋଇଲା
ତୁମ୍ଭେ ମୋତେ ଛାଡ଼ି ତହୁଁ ଅଇଲ ଗୋସାଇଁ
ଚଣ୍ଡାଳ ଅସୁର ମୋତେ ଯୁଝେ କୋପବହି ।
ରାମ କୃଷ୍ଣ ଶୁଣି ସହଦେବେ ପ୍ରଶଂସିଲେ
ପାଣ୍ଡବଙ୍କୁ ଦେନ ସାନ୍ତ୍ୱନ ଯେ ରହିଲେ ।
ଏମନ୍ତ ପ୍ରକାରେ ବିଭା ବିଧାନ ସରିଲା
ସୁରେଖା ପ୍ରଦ୍ୟୁମ୍ନର ଯେ ପ୍ରଣୟ ବଢ଼ିଲା ।
ଶୁଣିଲୁଟିକ ବଳଙ୍କ ଦେଶ ନରରାୟେ
ସୁରେଖାର ବିଭା ଶୁଣି ପାପକର କ୍ଷୟେ ।
ଦ୍ୱାରକାପୁର ଯୁଧିଷ୍ଠିଦେବ ଚଳିଗଲେ
ବାରୁଣାବନ୍ତରେ ଯାଇଁ ପ୍ରବେଶ ହୋଇଲେ ।
ଶ୍ରୀମହାଭାରତ ମଧ୍ୟପର୍ବର ଚରିତ
ଶୁଣନ୍ତେ ଅଙ୍ଗରୁ ଛାଡ଼ିଯିବ ଯେ ଦୁଷ୍କୃତ ।
ଜୟ ଜୟ ଜଗନ୍ନାଥ ଜଗତ କାରଣ
ମଧୁକଇଟଭ ମାରି ଶ୍ରୀମଧୁସୂଦନ ।
ଏକମୂର୍ତ୍ତି ତିନରୂପ ଧରି ଦାମୋଦର
ବନ୍ଧୁଭ ରୂପରେ ବିଜେ ନୀଳାଚଳ କନ୍ଦର ।
ମ୍ଳେଚ୍ଛଜନମାନଙ୍କୁ ଯେ ନିସ୍ତାରିବାପାଇଁ
ନନ୍ଦିଘୋଷ ରଥେ ବିଜେ କର ଭବଗ୍ରାହୀ ।

ଗୁଣ୍ଡିଚା ନଅରେ ପ୍ରଭୁ ନବ ଦିନ ରହି
ଦୁଃଖୀ ଦରିଦ୍ରଙ୍କ କଷ୍ଟ ସେଠାରେ ସରଇ ।
ଶ୍ରୀ ବିମ୍ବାଧରଙ୍କୁ ପ୍ରଭୁ ପଟାନ୍ତର ନାହିଁ
ଭୃତ୍ୟ ଦୁଃଖ ଦେଖି ତୁମ୍ଭେ ନ ସହ ଗୋସାଇଁ
ମୁହିଁ ଅଟେ ଅରକ୍ଷିତ ନ ଜାଣଇ କିଛି
ଦୟା କର ମୋତେ ଆହେ ପଦ୍ମଦଳ ଆଖି ।
ଏ ଭବଜଳଧିମାୟା ସଂସାର ଅଟଇ
ବୈକୁଣ୍ଠରେ ଠାବଦିଅ ଆହେ ଭାବଗ୍ରାହୀ ।
ବନ୍ଦଇ ଶ୍ରୀ ଶାରଳା ଗୋ ଝଙ୍କଡ଼ର ବାସୀ
ତୋହର ଚରଣ ମାଗୋ ନିରନ୍ତରେ ଘୋଷି
ଝଙ୍କଡ଼ପୁରେ ଗୋ ରହିଥାଉ ତୁ ନିଶ୍ଚିନ୍ତେ
ଅସୁର ନାଶି ସଂସାର ଜନଙ୍କର ହିତେ ।
ସିଂହପରେ ବସି ତୁହି ଭ୍ରମୁ ତିନିପୁର
ତୋତେ ରକ୍ଷାହେଲେ ସର୍ବେ ଯିବେ ସ୍ୱର୍ଗପୁର
ଅସୁର ନିବାରଣୀ ଗୋ ଦୁର୍ଗତିଖଣ୍ଡିନୀ
ତୋହର ମହିମା କେହୁ କହେ ପରମାଣି ।
ଦେବତାଙ୍କୁ ଅଗୋଚର ଏ ତୋର ମହିମା
ନରଜନ୍ମ ପାଇ କେହୁ କରିପାରେ ସୀମା ।
ତେଣୁ କରି ପାର୍ଥନା ଯେ କରଇ ମୁଁ ରହି
ପିମ୍ପୁଡ଼ି ପରେ ପର୍ବତ ଲଦୁ ମହାମାୟୀ ।
ଏଣିକ ଯେ ଅଗୋଚର ଲାଗୁଅଛୁ ମୋତେ
ତୁ ମାହେଶ୍ୱରୀ ପ୍ରସନ୍ନ ହୁଅ ଶୁଦ୍ଧମତେ ।
ଦୀନହୀନ ଅରକ୍ଷିତ ଅଟେ ଶ୍ରୀ ଶାରଳାଦାସ
ଶ୍ରୀ ଶାରଳା ଦେବୀ ପାଦେ ମୋହର ବିଶ୍ୱାସ ।

## ନାରଦଙ୍କ ଆଦେଶେ କୃଷ୍ଣଙ୍କ ସହିତ ପାଣ୍ଡବଙ୍କର ଧର୍ମଯଜ୍ଞ କରିବାର ମନ୍ତ୍ରଣା

ଏଥୁଅନ୍ତେ ସେ ବଳିଙ୍କ ଦେଶ ମହାରାଜା
ଷଡ଼ଅର୍ଘ୍ୟ ଦେଇ କଲେ ଅଗସ୍ତିଙ୍କୁ ପୂଜା ।
ମୁନିଙ୍କ ଚରଣେ କୋଟି ଦଣ୍ଡବତ କରି
ପାଏ ପଡ଼ି ଉଠି ଶିରେ କରପଦ୍ମ ଯୋଡ଼ି ।
ଦୟାରେ କହିଲ ମୋତେ ଶ୍ରୀବସ୍ତୁ ପୁରାଣ
ତେଣୁ କୃତାର୍ଥ ହୋଇଲା ମୋହର ପରାଣ ।
ଅସଂଖ୍ୟ ଅଟଇ ମହାଭାରତ ଚରିତ
ପଚ୍ଛରିବାକୁ କି ମୁହିଁ ଅଟଇ ସମର୍ଥ ।

ନ ପଶୁଚଲେ କୃତାର୍ଥ ନୋହିବ ମୋ ଦେହି
ତେଣୁ ତୁମ୍ଭଙ୍କୁ ପ୍ରାର୍ଥନା କରୁଛୁ ଗୋସାଇଁ ।
କହିଲ ଅପୂର୍ବ କଥାମାନ ଥୋକେ ମୋତେ
ଧର୍ମଯଜ୍ଞ ଆୟୋଜନ ହୋଇଲା କେମନ୍ତେ ।
ଏହା ସଂକ୍ଷେପି କହିବା ହେଉ ମୁନିବର
ତେବେ ଯିନା ମନ ମୋର ହୋଇବ ସୁସ୍ଥିର
ଶୁଣିଣ ହରଷ କୁମ୍ଭ ଋଷିର ନନ୍ଦନ
ପୁଚ୍ଛିଲୁ ଅସମ୍ଭବ କଥା ତୁ ରାଜନ ।
ଏତେକ ବୋଲି ପୁରାଣ ପୋଥି ମୁନି ଫେଇ
ବୋଇଲେ ଶୁଣ ହବଲଙ୍କ ଦେଶ ନରସାଇଁ ।
ବୈଶାଖ କୃଷ୍ଣ ତୃତୀୟା ତିଥି ଗୁରୁବାର
ନାରଦ ଯେ ମୁନିବର ବ୍ରହ୍ମାଙ୍କ କୁମର ।
ଦଣ୍ଡ କମଣ୍ଡଳୁ ଧରି ପିନ୍ଧି କଷାବାସ
କଳି ଧୋକଡ଼ ମୁଣିକୁ ଧରିଛନ୍ତି ପାଶ ।
ପ୍ରବେଶ ହୋଇଲେ ଯାଇଁ ହସ୍ତିନା ନଗରେ
ଆସ୍ଥାନେ ଅଛନ୍ତି ଧୃତରାଷ୍ଟ୍ରର କୁମରେ ।
କୁରୁ ସଇନ୍ୟ ଯେ ପୁରିଛନ୍ତି ଚଉପାଶେ
ଅଠର ଅକ୍ଷୌହିଣୀ ଯେ ଅଛନ୍ତି ପାରୁଶେ ।
ଆବର ଅଛନ୍ତି ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ
ଦୁଃଶାସନ ମୂଳେ ଶତଭାଇ ମହାମଲ୍ଲ ।
ଯୁଧିଷ୍ଠି ଭୀମ ଅର୍ଜ୍ଜୁନ ନକୁଳ ଯେ ମନ୍ତ୍ରୀ
ସାତ ଅକ୍ଷୌହିଣୀ ବଳ ସଙ୍ଗତେ ଅଛନ୍ତି ।
କୁରୁ ପାଣ୍ଡବେ ଅଭେଦ ଆତ୍ମା ଭିନ୍ନ ନୋହି
ଯୁଧିଷ୍ଠିର ଦୁର୍ଯ୍ୟୋଧନ ପଶା ଖେଳେ ରହି ।
ଏ ବେଳେ ନାରଦ ମୁନି ମିଳିଲେ ସେଠାରେ
ବେଗ ହୋଇ ବଜେ କଲେ ଆସ୍ଥାନ ଉପରେ
ମୁନିଙ୍କୁ ଦେଖି ଆସ୍ଥାନୁ ଉଠିଲେ ସମସ୍ତେ
ନମସ୍କାର କଲେ ଯାଇଁ ମୁନି ପଦାରତେ ।
ଭୀଷ୍ମ ଦ୍ରୋଣ ସହିତେ ଯେ ନମସ୍କାର କଲେ
ସ୍ୱସ୍ତି କଲ୍ୟାଣ ନାରଦ ମୁନି ଯେ ବାଞ୍ଛିଲେ
ଷଡ଼ଅର୍ଘ୍ୟେ ପୂଜା କଲେ ଗାନ୍ଧାରୀ ତନୟେ
ପାଦ୍ୟାସନ ଦେଇ ବୋଲେ ବସନ୍ତୁ ମୁନି ହେ
ଆଜ ମୋର କୃତାର୍ଥ ଯେ ହୋଇବ ଜୀବନ
ସଙ୍ଖୋଳି ଅଇଲ ଦୟାକରି ତପୋଧନ ।
ଏତେକ ବୋଲି ଚରଣ ତଳେ ରାଜା ପଡ଼ି
ନାହିଁ ଧରି ତେବେ ଇଲି ଉଠ ଦଣ୍ଡଧାରୀ ।

ତୋଠାରେ ଆମ୍ଭର ରପ୍ୟେ ବହୁତ ବିଶ୍ୱାସ
ତେଣୁ ସଙ୍ଖୋଳି ଅଇଲୁ ଧୃତରାଷ୍ଟ୍ର ଶିଷ୍ୟ ।
ଆୟୁଷ ବର୍ଦ୍ଧନ ହେଉ ଧନ ପରାପତ
ବହୁତ କଲ୍ୟାଣ ତାଙ୍କୁ କଲେ ତପୋବନ୍ତ ।
ଏମନ୍ତବେଳେ ଆସ୍ଥାନ ଯହୁଁ ମଉଳିଲା
ଦୁର୍ଯ୍ୟୋଧନ ମୁନିଙ୍କୁ ଯେ ଗୃହିଁ ପଚାରିଲା ।
ବୋଇଲା ତୁମ୍ଭେ ଗୋସାଇଁ କାହିଁକି ହେ ଯିବ
ଦୟା କଲେ ଆଜ ମୋ ପୁରରେ ରହିବ ।
ନାରଦ ବୋଇଲେ ଆମ୍ଭେ ଏକଠବ ହୋଇ
ଦଣ୍ଡେହେଁ ରହି ନପାରୁ ଆହେ ନରସାଇଁ ।
ଏବେ ଯାଉଅଛୁ ଆମ୍ଭେ ପାତାଳପୁରକୁ
ଥରେ ସଙ୍ଖୋଳି ଆସିବୁ ନାଗ ଦେବତାଙ୍କୁ ।
ଏତେକ ବୋଲି ସେଠାରୁ ମୁନି ଚଳିଗଲେ
ଯୁଧିଷ୍ଠିଦେବ ତାହାଙ୍କ ପଛେ ଗୋଡ଼ାଇଲେ ।
ସାତ ଅକ୍ଷୌହିଣୀ ବଳ ପଣ୍ଡୁର କୁମରେ
ପ୍ରବେଶ ହୋଇଲେ ଯାଇଁ ବାରୁଣାବନ୍ତରେ ।
ନାରଦ ମହାମୁନିଙ୍କୁ ସଙ୍ଗତରେ ଘେନି
ଆସ୍ଥାନ କରି ବସିଲେ ନିଜ ରାଜଧାନୀ ।
ଯୁଧିଷ୍ଠିରଙ୍କୁ ବହୁତ ମୁନି ପ୍ରଶଂସିଲେ
ଧର୍ମକଥାମାନ ତାଙ୍କୁ ବୁଝାଇ କହିଲେ ।
ଷାଠିଏସହସ୍ର ଋଷିଙ୍କୁ ନିତ୍ୟେ ଦେଉ ଅନ୍ନ
ସତ୍ୟବାଦୀ ପୁରୁଷ ତୁ ପଣ୍ଡୁର ନନ୍ଦନ ।
ନାରଦଙ୍କ ମୁଖୁ ଶୁଣି ଏସନକ ବାଣୀ
ଦରହାସରେ ବୋଲନ୍ତି ଧର୍ମ ନୃପମଣି ।
ନ ବୋଲିବ କେତେ ଆଉ ଏହା ମୁନିବର
ଅନ୍ନଦେଇ ପୋଷେ ମୋତେ ଅମ୍ବିକାକୁମର
ନାରଦ ବୋଇଲେ ଆମ୍ଭେ କଥାଏ କହିବା
ଆମ୍ଭ ବୋଲି ନ ଘେନିବୁ ତୁ ହୋ ରାଜଦେବା
ମୁନି ବଚନେ ବୋଇଲେ ଧର୍ମ ନରରାୟେ
ଯାହା ବୋଲିବ କରିବି ହେ ମୁନି ନିଶ୍ଚୟେ ।
ମୁନି ବୋଇଲେ ଏବେ ତୁ ଯାଗଟିଏ କର
ଅସଂଖ୍ୟ ଧର୍ମ ତୋହର ହେବ ଯୁଧିଷ୍ଠିର ।
ଯୁଧିଷ୍ଠି ବୋଇଲେ ଏଡ଼େ ଭାଗ୍ୟ ମୋର କାହିଁ
ଅନ୍ନବସ୍ତ୍ର ଦେଇ ପୋଷୁଅଛି କୁରୁସାଇଁ ।
ନାରଦ ବୋଇଲେ ତୁହୋ ନ ଡରୁର କିଛି
ହେଣୁ ତୋତେ ସାହାପକ୍ଷ ହେବ ଶିରୀବଛି ।

ତୋତେ ଅପୂର୍ବ ନୁହଇ ଧନ ସେ ବସନ
ଏଥକୁ ଚିନ୍ତା ନ କର ଧର୍ମର ନନ୍ଦନ ।
ଏସନ ବାକ୍ୟ ନାରଦମୁନି ମୁଖୁ ଶୁଣି
ଆନନ୍ଦ ହୋଇ ସମ୍ମତ କଲେ ନୃପମଣି ।
ଯୁଧିଷ୍ଠିର ଏକାନ୍ତରେ ଗାଇଲେ ଅର୍ଜୁନ
ଦ୍ୱାରକାକୁ ବାବୁ ରେ ତୁ ଯିବୁ ଏହିକ୍ଷଣ ।
ନାରଦଙ୍କ ସମ୍ବାଦ ତୁ ଶ୍ରୀକୃଷ୍ଣଙ୍କୁ କହି
ଘେନି ଆସିବୁ ଏଠାକୁ ମୁନି ଥାନ୍ତି ରହି ।
ଯୁଧିଷ୍ଠି ମୁଖୁ ଅର୍ଜୁନ ଏସନକ ଶୁଣି
ବାହାର ହେଲେ ତୁରିତେ ଧନୁଶର ଘେନି ।
ଶୁଣ ତୁହୋ ମହାରାଜେ କହନ୍ତି ଅଗସ୍ତି
ସାବଧାନ ହୋଇ ଶୁଣ ମଧ୍ୟପର୍ବ ଗୀତ
ତୁ ଯେ ମୋତେ ପଚ୍ଛିଲୁ ଯଜ୍ଞର ପ୍ରସ୍ତାବ
ଏକମନେ ଶୁଣ ବାବୁ ତହିଁର ଯେ ଭାବ ।
ଯୁଧିଷ୍ଠିରଙ୍କ ଆଜ୍ଞାକୁ ଶିରରେ ନିବେଶି
ବାହାରିଲେ ନମସ୍କାର କରି ନନ୍ଦଗ୍ରୀପି ।
ଅତିବେଗେ ଦ୍ୱାରକାରେ ହୋଇଲେ ପ୍ରବେଶ
ନିର୍ଭୟରେ ଚଳିଗଲେ କୁନ୍ତୀଦେବୀ ଶିଷ୍ୟ ।
ଅର୍ଜୁନର ଆଗମନ ଜାଣି ଭବଗ୍ରାହୀ
ଅନ୍ତର୍ଯ୍ୟାମୀନାଥଙ୍କୁ କି ଉବାର ଅଛଇ ।
ଦେବାଙ୍ଗ ନ ଭୋଜନ ଯେ ସାରି ନାରାୟଣ
ସତ୍ୟଭାମାର ପୁରରେ ବିଜେ ଭଗବାନ ।
ଆନନ୍ଦେ ଖେଳନ୍ତି ସତ୍ୟା ସଙ୍ଗେ ନରହରି
ବୋଇଲେ ଅର୍ଜୁନ ଆସେ ଦ୍ୱାରକା ନଗରୀ ।
ଶ୍ରୀକୃଷ୍ଣଙ୍କ ପୁରଦ୍ୱାରେ ଅର୍ଜୁନ ମିଳିଲେ
ସପତପୁର ଜଣିଣ ଭିତରେ ପଶିଲେ ।
ବାରଣ କରିବା କ୍ଷମ ନାହିଁ ଯେ କାହାର
ନିର୍ଭୟରେ ପଶି ଯାଉଅଛି ମହାବୀର ।
ଯେଉଁଠାରେ ଶ୍ରୀଗୋବିନ୍ଦ ବିଜେ କରିଛନ୍ତି
ଅର୍ଜୁନ ସେଠାରେ ଯାଇ ମିଳିଲେ ତଡ଼ିତ ।
ସତ୍ୟଭାମା ସଙ୍ଗେ ପଶା ଖେଳନ୍ତି ମୋହନ
ଏହି ଅବସରେ ତହିଁ ଦେଖନ୍ତି ଅର୍ଜୁନ ।
ସତ୍ୟଭାମା ଥିବା ଦେଖି ପଛକୁ ଘୁଞ୍ଚିଲ
ଅନ୍ତର ହୋଇଣ ଖଣ୍ଡେ ଦୂରରେ ରହିଲ ।
ଅର୍ଜୁନର ମନ ଜାଣି ପାରି ଲକ୍ଷ୍ମୀସାଇଁ
ତତକ୍ଷଣେ ଆସ୍ଥାନୁ ଉଠି ଖଣ୍ଡେଦୂର ଯାଇ ।
ଆସ ଆସ ପାର୍ଥ ତୁରେ ମୋହର ପରାଣ
ତୋହର ମୋହର କିଛି ନାହିଁ ଭିନ୍ନାଭିନ୍ନ ।
ଜଗନ୍ନାଥଙ୍କ ମୁଖରୁ ଏ ବଚନ ଶୁଣି
ପାଦେ ପଡ଼ିଣ ଶୋଇଲା ପାର୍ଥ ବୀରମଣି ।
ଉଠ ଉଠ ବୋଲି କରେ ତୋଳି ବାସୁଦେବ
ଆଜ ମୋହର ପରମ ଭାଗ୍ୟ ଉପୁଜିବ ।
ସତ୍ୟଭାମାଙ୍କୁ ଅର୍ଜୁନ ନମସ୍କାର କଲେ
ଶତ୍ରାଜିତ ନନ୍ଦିନୀ ଯେ କଲ୍ୟାଣ ବାଞ୍ଛିଲେ ।
ଶତ୍ରୁ ମାରି ହୁଅ ପଞ୍ଚକଣ୍ଟକେ ରାଜନ
ପରମ କଲ୍ୟାଣ ତୋତେ ହେଉରେ ଅର୍ଜୁନ ।
ତିନିପୁର ମଧ୍ୟେ ପାର୍ଥ ପାଇବୁ ତୁ ପୂଜା
ଶୁଣି ହସିଲେ ଦେବାଧିଦେବ ମହାରାଜା ।
ବୋଇଲେ ଲକ୍ଷ୍ମୀତୋଠାରେହୋଇଲେ ସଦୟ
ଭୀତ ତୁମ୍ଭର ନାହିଁ ହେ କୁନ୍ତୀଙ୍କ ତନୟ ।
ଏଥୁ ଅନନ୍ତରେ ପୁଚ୍ଛେ ମନୁ ଦଣ୍ଡଧାରୀ
ସନ୍ତୋଷ ମନରେ ମୁନି କହିବା ବିସ୍ତାରି ।
ରାଜା ବଚନେ କହନ୍ତି ତାଙ୍କୁ ମହାମୁନି
ଏକମନ ହୋଇ ଶୁଣ ତୁ ହୋ ନୃପମଣି ।
ଶ୍ରୀହରି ବୋଲନ୍ତି ତୁମ୍ଭେ ଶୁଣ ସତ୍ୟଭାମା
ସୁବର୍ଣ୍ଣ ଝାରୀରେ ନୀର ଘେନିଆସ କନା ।
ସତ୍ୟଭାମା ଉଠି ବେଗେ ଆଣି ଗଙ୍ଗାଜଳ
ପାଦ ପଖାଳ ବୋଇଲେ ତୁ ହୋ ପଣ୍ଡୁବାଳ
ଶୁଣି ଜଗନ୍ନାଥଙ୍କର ଶ୍ରୀମୁଖବଚନ
ପାଦ ପ୍ରକ୍ଷାଳନ୍ତି ତହିଁ କୁନ୍ତୀଙ୍କ ନନ୍ଦନ ।
ପାଦ ପ୍ରକ୍ଷାଳନ କରିସାରି ଅରଜୁନ
ଘସିର ପୋଛିଲେ ଘେନି ସୁଝୀନ ବସନ ।
କର ଧରି ଭିତରକୁ ନେଲେ ଭଗବାନ
ରତ୍ନ ପଲଙ୍କ ଉପରେ ବସାଇ ବହନ ।
କୁଶଳ ବାରତା ପୁଚ୍ଛାକଲେ ଚକ୍ରପାଣି
ଠାକୁରଙ୍କ ଶୁଭମାନ କହି ବୀରମଣି ।
ସବୁ କୁଶଳ କହିଲା ଯହୁଁ ଅରଜୁନ
ଶୁଣି ସାନନ୍ଦ ହୋଇଲେ ଦେବ ଜନାର୍ଦ୍ଦନ ।
ପୁନରପି ଅର୍ଜୁନକୁ ହସି ପଚ୍ଛରନ୍ତି
ଅଇଲ କି ସଙ୍ଖୋଳିବା ପାଇଁ ବୀର ଏଥି ।
ଠାକୁରଙ୍କ ଆଜ୍ଞା କିବା ତୋର କାର୍ଯ୍ୟଅର୍ଥେ
ଏଣୁ ପଚ୍ଛରଇ ବୀର ପୁନରପି ତୋତେ ।

ଅର୍ଜୁନ ବୋଇଲେ ତୁ ହେ ଶୁଣ ଚକ୍ରଧର
ନାରଦ ମୁନି ଯେ ବିଜେ ଆମ୍ଭର ନଗର ।
ଯୁଧିଷ୍ଠିରଙ୍କୁ ବୋଇଲେ ଯେ କଥାଏ କରିବ
ଆପଣ ଧର୍ମାର୍ଥେ ଏକ ଯାଗ ଆରମ୍ଭିବ ।
ନାରଦଙ୍କ ବଚନରେ ଠାକୁର ହସିଲେ
ଯାଗ କରିବା ଶକ୍ତି କ ମୋହର ବୋଇଲେ
ନାରଦ ବୋଇଲେ ଶୁଣ ସଖା ଭଗବାନ
ଏଥିକୁ ଚିନ୍ତା ନ କର ପଣ୍ଡୁର ନନ୍ଦନ ।
ନାରଦଙ୍କ ନିଷ୍ଠା ସତ୍ୟେ ଯୁଧିଷ୍ଠିର ଜାଣିଲେ
ଏକାନ୍ତ କରି ଡକାଇ ମୋତେ ପଠାଇଲେ
ବୋଇଲେ ତୁ ଦ୍ୱାରକାକୁ ଏହିକ୍ଷଣି ଯିବୁ
ଜଗନ୍ନାଥ ପ୍ରଭୁଙ୍କୁ ତୁ ଘେନିଣ ଆସିବୁ ।
ଏମନ୍ତ ଶୁଣି ହସିଲେ ଶ୍ରୀ ବାଳଗୋପାଳ
କସ ଭିଆଇ ଅଛଇ ବ୍ରହ୍ମାର ଦୁଲାଳ ।
ସତ୍ୟଭାମାକୁ ବୋଇଲେ ପ୍ରଭୁ ହୃଷୀକେଶୀ
ବେଗକରି ଷଡ଼ରସ ରନ୍ଧନ କରସି ।
ଠାକୁରଙ୍କ ଆଜ୍ଞା ପାଇ ଦେବୀ ଉଠିଗଲେ
ଷଡ଼ରସର ମଣୋହି ସଞ୍ଜା ଭିଆଇଲେ ।
ଘୃତ ଖଣ୍ଡକ୍ଷୀର ନାନା ପ୍ରକାର ବ୍ୟଞ୍ଜନ
ତତକ୍ଷଣେ ନିର୍ବାକଲେ ରନ୍ଧଣା ବିଧାନ ।
ଅର୍ଜୁନକୁ ଭଗବାନ କରାଇଣ ସ୍ନାନ
ପିନ୍ଧିବାକୁ ଦେଲେ ଆଣି ପବିତ୍ର ବସନ ।
ପଖାଳକରି ଘେନିଣ ପାର୍ଥ ମଥା ପୋଛି
ଅଙ୍ଗେ ସୁଗନ୍ଧ ଚନ୍ଦନ ଚତୁଃସମ ଲେଛି ।
ଶ୍ରୀଖଣ୍ଡ ଚନ୍ଦନ ଗୋଳା ଅଙ୍ଗରେ ବୋଳିଲେ
ନାନାବର୍ଣ୍ଣ ପୁଷ୍ପଗଭା ଶିରରେ ଖଞ୍ଜିଲେ ।
ନାନା ଅଳଙ୍କାରମାନ ପାର୍ଥ ଅଙ୍ଗେ ଖଞ୍ଜି
ବୀରବେଶ କରି ବେଗେ ଅର୍ଜୁନକୁ ସାଜି ।
ମଣୋହିଠାରେ ଅର୍ଜୁନ ଯାଇ ବିଜେକଲେ
ସଜାଡ଼ିଛନ୍ତି ବିଚିତ୍ର ଆସନେକ ଭଲେ ।
ସୁବର୍ଣ୍ଣପିଢ଼ା ତା ସଙ୍ଗେ ବସିବାକୁ ଦେଇ
ତା ଉପରେ ଅର୍ଜୁନକୁ ବସାଇଲେ ନେଇ ।
ସୁବର୍ଣ୍ଣ ପଲମେ ନେଇ ସେ ଅମୃତ ପାକ
ଦେବୀ ପରଷୁଅଛନ୍ତି ହୋଇଣ ଉତ୍ସୁକ ।
ସନ୍ତୋଷେ ବସି ଭୋଜନ କଲେ ଅରଜୁନ
ନାନା ପ୍ରକାର ଅମୃତ ଷଡ଼ରସମାନ ।

ନାନାବର୍ଣ୍ଣ ପିଠାମାନ ପରଷନ୍ତି ଆଣି
ସନ୍ତୋଷମନେ ଭୋଜନ କଲେ ବୀରମଣି ।
ମଣୋହି ସାରି ଉଠିଲେ ବୀର ତତକ୍ଷଣି
ଆଚମନ କରିବାକୁ ଦେଲେ ବାସପାଣି ।
ଆଚମନ ସାରି ବୀରବର ଯେ କଷଟୀ
ଏଥି ଉତ୍ତାରେ ସୁର୍ଦ୍ଧୀନ ବସନ ପାଲଟି ।
ପଲଙ୍କ ପରେ ବସିଲେ ହରି ଫାଲଗୁନ
କର୍ପୂର ତାମ୍ବୁଳ ତହୁଁ ଦେଲେ ଦେବୀ ଆଣି ।
ପାନ ଭୋଜନ ସାରିଣ ଅରଜୁନ ପୁଣ
ବୋଇଲେକ ସାବଧାନେ ଶୁଣ ନାରାୟଣ ।
ଠାକୁରଙ୍କ ଆଜ୍ଞା ଯିବା ହସ୍ତିନାପୁରକୁ
ଆବର କହିଅଛନ୍ତି ବହନ ଯିବାକୁ ।
ଅର୍ଜୁନଙ୍କ ଶ୍ରୀମୁଖରୁ ଏସନକ ଶୁଣି
ସଜହୋଇ ବାହାରିଲେ ଦେବ ଚକ୍ରପାଣି
ବିନତାକୁମର ଦେବ ସୁମରଣା କଲେ
ରମ୍ୟକ ଦ୍ୱୀପେ ଗରୁଡ଼ ରହିଣ ଯେ ଥିଲେ ।
ନାରାୟଣ ଚିନ୍ତନ୍ତେ ଯେ ମନରେ ଜାଣିଲେ
ତତକ୍ଷଣେ ଦ୍ୱାରକାପୁରେ ପ୍ରବେଶ ହୋଇଲେ
ନାରାୟଣଙ୍କ ଚରଣେ କଲେ ନମସ୍କାର
କମର୍ଥେ ଚିନ୍ତିଲ ବୋଲି ପୁଚ୍ଛେ ଖଗବର ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ଆହେ ପକ୍ଷିରାୟେ
ଏହିକ୍ଷଣି ଯିବା ଆମ୍ଭେ ବାରୁଣାର ଯାଏ ।
ଅର୍ଜୁନ ଆସିଛି ମୋତେ ନେବାର ଯେ ପାଇଁ
ନାରଦ କସ ଚରିତ ଅଛନ୍ତି ଭିଆଇ ।
ନାରଦ ରହିଅଛନ୍ତି ଆମ୍ଭଙ୍କୁ ଅନାଇଁ
ଆମ୍ଭେ ଗଲେ ସ୍ୱର୍ଗକୁ ଯିବେ ମୁନିସାଇଁ ।
ଏମନ୍ତ ସମ୍ବାଦମାନ ଗରୁଡ଼କୁ କହି
ଅର୍ଜୁନ ସଙ୍ଗରେ ପୃଷ୍ଠେ ବିଜେ ଭବଗ୍ରାହୀ ।
ଚଇତନ କହୁଛନ୍ତି ଶୁଣ ମନୁରାୟ
ମହାଭାରତ ଚରିତ ସୁଧା ରସମୟ ।
ବନ୍ଦଇ ଶ୍ରୀ ନାରାୟଣ କମଳାରମଣ
ସଂସାର ମଧ୍ୟେ ତୋ ନାମ ପରମକାରଣ ।
ନୀଳକନ୍ଦର ଶିଖରେ ଅପୂର୍ବ ମୂରତି
ଚତୁର୍ଦ୍ଧାମୂରତି ହୋଇଅଛ ଶିରୀପତି ।
କମଳା ବିମଳା ବାକ୍ୟଦେବୀର ସଙ୍ଗରେ
ସେବାରେ ଖଟିଅଛନ୍ତି ଯାର ପାଦତଳେ ।

ପାମ୍ୟେ ସମୁଦ୍ର ଭିତରେ କଳ୍ପବଟ ଅଛି
କୋଟିତୀର୍ଥ ଦେନ ତହିଁ ପୁଷ୍କର ରହିଛି ।
ସଂସାର ଜନେ ନିସ୍ତାର କରିବା ନିମନ୍ତେ
ବଉଦ୍ଧରୂପେ ବିଜୟ ଦେବ ଜଗନ୍ନାଥେ ।
ସେ ରୂପ ଚିନ୍ତା କରିବ କାର ଶକ୍ତି ଅଛି
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି ।
ତୁଳସୀପତ୍ର ଚରଣୁ ଅନ୍ୟ ନ ଜାଣେ
ଶାରଳାଦାସଙ୍କୁ ରକ୍ଷାକର ଭବଗ୍ରାହୀ ।
ଶୁଣି ଗରୁଡ଼ ଦକ୍ଷିଣେ କାୟା ବିସ୍ତାରିଲେ
ସହସ୍ରେ ଯୋଜନ ଉଠି ଉପରକୁ ଗଲେ ।
ତିନ ନିଃଶ୍ୱାସରେ ବୀର ବିହମି ଗମଇ
କାରୁଣାବନ୍ତରେ ଯାଇ ପ୍ରବେଶ ହୁଅଇ ।
ଗରୁଡ଼ ପୃଷ୍ଠୁ ଓହ୍ଲରି ହରି ଅରଜୁନ
ଆସ୍ଥାନତଳେ ମିଳିଲେ ଯାଇଁ ବେନିଜନ ।
ଯୁଧିଷ୍ଠିଙ୍କୁ ଦେଖି ଦୁହେଁ ଯାଇଁ ପ୍ରଣମିଲେ
ଉଠ ଉଠ ବୋଲି ଆଜ୍ଞା ଯୁଧିଷ୍ଠିର ଦେଲେ
ହରିଙ୍କୁ ତୋଳି ବୋଇଲେ ନକୁଳଙ୍କୁ ତହିଁ
ଶୁଣି ମାଦ୍ରୀର ତନୟ ବେଗେ ଉଠିଯାଇ ।
ଶ୍ରୀକୃଷ୍ଣଙ୍କୁ ନମସ୍କାର କରିଣ ତୋଳଇ
ଉଠି ଉଭାହେଲେ ତହିଁ ଦେବ ଭବଗ୍ରାହୀ ।
କର ପ୍ରସାରି କରିଣ ଧର୍ମଙ୍କ ନନ୍ଦନ
ବହୁତ କଲ୍ୟାଣ ବାଞ୍ଛା କରନ୍ତି ଆପଣ ।
ଶ୍ରୀକୃଷ୍ଣଙ୍କୁ ଦେଖି ଭୀମ ଚରଣେ ପ୍ରଣମି
ଉଠ ଉଠ ବୃକୋଦର ବୋଲନ୍ତି ଯେ ସ୍ୱାମୀ ।
ଭୀମସେନଙ୍କୁ ଅର୍ଜୁନ ଯାଇ ଓଳଗିଲେ
ସହଦେବ ନକୁଳ ଯେ ତାଙ୍କୁ ପ୍ରଣମିଲେ ।
ଯେ ଯାହାର ମାନ୍ୟ ଧର୍ମମାନ ବେଗେ ସାରି
ଆସ୍ଥାନର ଉପରକୁ ଉଠନ୍ତି ଶ୍ରୀହରି ।
ଦେଖିଲେ ନାରଦ ବସିଅଛନ୍ତି ଆଗରେ
ହରିନାମ ଗାଉଛନ୍ତି ବୀଣା ଧରି କରେ ।
ମୁନିଙ୍କୁ ହରି ଅର୍ଜୁନ ନମସ୍କାର କଲେ
ନାରଦ ତହିଁ ବହୁତ କଲ୍ୟାଣ ବାଞ୍ଛିଲେ ।
ନାରାୟଣ ମୁଖ ଚାହିଁ ଯୁଧିଷ୍ଠି ଆନନ୍ଦ
ଆସ୍ଥାନେ ବସ ବୋଲନ୍ତେ ବସିଲେ ଗୋବିନ୍ଦ
ବୋଲନ୍ତି ନାରଦମୁଖ ଚାହିଁ ଯଦୁସାଇଁ
ହେ କଳହ ପ୍ରିୟ ମୁନି କି ଅଛ ଭିଆଇ ।

ଗୋବିନ୍ଦଙ୍କ ବଚନରେ କହନ୍ତି ଯେ ମୁନି
ଅପୂର୍ବ କଥା ଭିଆଇଅଛୁ ଚକ୍ରପାଣି ।
ଧର୍ମ ଯଜ୍ଞ ବୋଲି ଯଜ୍ଞ ଅଛଇ ଗୋଟିଏ
ତାହା ଭିଆଣ କରିଛୁ ଯେ ଦେବାଧିରାୟେ ।
ଧନ ଧାନ୍ୟ ଲକ୍ଷ୍ମୀ ତେତେଣେ ହେବ ପରାପତ
ସ୍ୱର୍ଗରେ ବସିବେ ତାର ପୁରୁଷ ସପତ ।
ଦେବେ ସନ୍ତୋଷେ ଖାଇବେ ଘୃତ ସୋମରସ
ମୁନିମାନେ ଯାଗ ଦେଖି ହୋଇବେ ସନ୍ତୋଷ
ଦେବଋଷି ରାଜଋଷି ବ୍ରହ୍ମଋଷି ଆସି
ଘୃତ ଯବ ସମିଧ ଯେ ଦେଉଥିବେ ବସି ।
କ୍ଷିତିପାଳମାନେ ଯାଗେ ଆସି ରୁଣ୍ଡ ହେବେ
ଅମୃତ ଯୋଗାଡ଼ ସହଶାଳେ ଭୁଞ୍ଜୁଥିବେ ।
ଯାଗନିକମାନେ ସର୍ବେ ଯାଗେ ରୁଣ୍ଡହୋଇ
ଘୃତ ଦେଉଥିବେ କ୍ଷଣେ ଅନ୍ତର ନ ହୋଇ ।
ମାଗିବା ଲୋକଙ୍କୁ ଦେଉଥିବେ ଧନ ଧାନ୍ୟ
ନିରାଶ ନୋହିବେ ଦୁଃଖୀ ଦରିଦ୍ର ଯେ ଜନ ।
ନାରଦ ମୁଖୁଁ ଏସନ କଥାମାନ ଶୁଣି
ହସିଣ ବୋଲନ୍ତି ତହିଁ ଦେବ ଚକ୍ରପାଣି ।
ଏ କାର୍ଯ୍ୟକୁ ଧନ କାହିଁ ଯୁଧିଷ୍ଠିରଙ୍କର
ଏ କଥା ଗୋଟା କପାଇଁ କହ ମୁନିବର ।
ମୋର ମନକୁ ଏ କଥା ଗୋଟା ନ ଆସଇ
ପ୍ରବର୍ତ୍ତାଇଲ ଯେ ତୁମ୍ଭେ ମୁନି କାହିଁପାଇଁ ।
ଦୁଷ୍ଟ ରାଜା ଏ ମହୀରେ ବହୁତ ଅଛନ୍ତି
ଏକେ ଏକେ ହେଲେ ଜିଣି ପୃଥ୍ୱୀକି ପାରନ୍ତି
ରାଜାଏ ନଇଲେ ଯାଗ ଧର୍ମ ନ ପାଇବା
ଏହା ବିଚାର କରିଣ ମୁନି ହୋ କହିବା ।
ଗୋବିନ୍ଦ ମୁଖୁ ଏସନ ବଚନକୁ ଶୁଣି
ନିଷ୍ଠୁର ବାଣୀ କହନ୍ତି ପୁଣି ମହାମୁନି ।
ଏଥିକୁ ନ ଅସମର୍ଥ ଯୁଧିଷ୍ଠିର ରାୟେ
ଯାହାର ସଖା ଦେବାଧିଦେବ ମହାରାୟେ ।
ପୂର୍ବରୁ ତ ଶୁଣିଅଛ ଦେବ ନାରାୟଣ
ଖାଣ୍ଡବବନ ଅଗ୍ନିକି ଦେଇଛି ଅର୍ଜୁନ ।
ଲିମ୍ବୁବୁଦୁ ବ୍ୟାଧି ବନ୍ଧି ତିନିଯୁଗ ଥିଲା
ଅର୍ଜୁନ ଯୋଗୁଁ ଅନଳ ତହୁଁ ନିସ୍ତାରିଲା ।
ମନ୍ଦାଗ୍ନି ଯୋଗୁଁ ଆହାର ନ କରଇ ଘୃତ
ଔଷଧି ଖାଇ କ୍ଷୁଧାରେ ହୁଅଇ ଆରତ ।

ପ୍ରସନ୍ନ ହୋଇ ମାଗିଛୁ ପାର୍ଥଙ୍କୁ ଆହାର
ଘୃତ ଭୋଜନ ତୁ ମୋତେ ଦେବୁ ପଣ୍ଡୁବାଳ
ଯାଗଙ୍କରୁ ଘୃତ ତିଳ ମୋତେ ତୁହି ଦେବୁ
ତେବେଣି ତୁ ମୋହର ଏହି କ୍ଷୁଧା ନିବାରିବୁ ।
ଏତେକ ବଚନ ଅଗ୍ନି ଦେବତା କହନ୍ତେ
ସନ୍ତୋଷ ହୋଇ ଅର୍ଜ୍ଜୁନ ବୋଇଲେ ଏମନ୍ତେ
ଯୁଧିଷ୍ଠିରଙ୍କୁ କହି ଯାଗ କରାଇବି ମୁହିଁ
ଆହୁତି ପାଇ ସନ୍ତୋଷ ହେବୁ ସ୍ୱାହାସାଇଁ ।
ଏମନ୍ତ ଶୁଣି ନାରଦ ମୁଖୁଁ ଚକ୍ରପାଣି
ଅର୍ଜ୍ଜୁନ ମୁଖକୁ ଚାହିଁ କହନ୍ତି ଏ ବାଣୀ ।
ଯାହା କହନ୍ତି ନାରଦ ସତ କି ଏ କଥା
ଅର୍ଜ୍ଜୁନ ବୋଇଲେ ମୁନି ବାକ୍ୟ ନୁହେ ମିଥ୍ୟା
ସତ୍ୟ କରିଛୁ ଅଗ୍ନିଙ୍କୁ ଦେବାପାଇଁ ଘୃତ
ତୁ କେମନ୍ତେ ନାସ୍ତିକରୁ କହ ହେ ଅଚ୍ୟୁତ ।
ଏମନ୍ତ ଶୁଣି ହସିଲେ ଦେବ ଚକ୍ରଧାରୀ
ବୋଇଲେ ଅଗ୍ନିଦେବତା ବଡ଼ ଉପକାରୀ ।
ଧନୁଶରମାନ ଆଣି ଦେଇଛନ୍ତି ତୋତେ
ଭୋଜନ ଦେବାକୁ କହି ନ ଦେବୁ କେମନ୍ତେ
ନାରଦଙ୍କୁ ବୋଲନ୍ତି ସେ ଦେବ ଜନାର୍ଦ୍ଦନ
ଶୁଣ ତୁହେ ମହାମୁନି ବ୍ରହ୍ମାର ନନ୍ଦନ ।
ଲକ୍ଷେରାଜା ବରଣକୁ କାଳ ଏବେ ନାହିଁ
ଯାଗ ନିର୍ବାହ କରିବା ଏବେ ଆମ୍ଭେ କାହିଁ ।
ଧନଦ୍ରବ୍ୟମାନ ଆମ୍ଭେ କାହୁଁ ଭିଆଇବା
ଏ ବଡ଼ ସଂଶୟ ମୋତେ ଲାଗେ ମୁନିଦେବା ।
କହିବା କଥା ତ ଆମ୍ଭ ଜାଣୁ ଚକ୍ରଧର
ନାରଦ ବୋଇଲେ ଧର୍ମ ଦେବଙ୍କୁ ପଚାର ।
ଯୁଧିଷ୍ଠିରଙ୍କ ମୁଖକୁ ଗୋବିନ୍ଦ ଚାହିଁଲେ
କିସ ବିଚାରଣ ଆଜ୍ଞା ହେଉ ହେ ବୋଇଲେ ।
ଯୁଧିଷ୍ଠିର ବୋଇଲେ ମୋତେ କିସ ପଚାରୁଛ
ଅନ୍ନଦେଇ ପୋଷୁଛନ୍ତି ଅମ୍ବିକାର ବତ୍ସ ।
ମୋହରେ ଏ କାର୍ଯ୍ୟ ଦେବ କେବେହେଁ ନୁହଇ
ନାରଦଙ୍କୁ ନିବର୍ତ୍ତାଅ ତୁମ୍ଭେ ଭବଗ୍ରାହୀ ।
ଏତେ କହିଣ ଯୁଧିଷ୍ଠିର ଦେବ ହେଲେ ତୁନି
ତହୁଁ ହୃଦଗତେଚିନ୍ତାକଲେ ଚକ୍ରପାଣି ।
ଜଗନ୍ନାଥଙ୍କର ମନ ନାରଦ ଜାଣିଲେ
ଏକାନ୍ତରେ ଗୋବିନ୍ଦଙ୍କୁ ରାଇଣ ବୋଇଲେ ।
ଏ ଯାଗଗୋଟି କରାଅ ତୁହେ ଭଗବାନ
ବହୁତ ଧର୍ମ ଉଦିତ ହେବ ଧନଧାନ୍ୟ ।
ଲକ୍ଷେ ରାଜାଙ୍କୁ ନ ବରି ଷଡ଼ରାଜା ଆଣି
କୁବେରଠାରୁ ତୁ ଧନ ଆଣ ନାରାୟଣ ।
ସ୍ୱର୍ଗରୁ ଇନ୍ଦ୍ର ପାତାଳୁଁ ବାସୁକୀ ଆସିବ
ମର୍ତ୍ତ୍ୟରୁ ଏ ଚାରିରାଜେ ବରଣ କରିବ ।
ହନୁମନ୍ତ ମୃଗସେନ ରାଜା ଉଗ୍ରସେନ
ଲକ୍ଷେ ରାଜାର ମଉଡ଼ମଣି ଦୁର୍ଯ୍ୟୋଧନ ।
ଏହାଙ୍କୁ ବରଣ କରି କରାଅ ତୁ ଯାଗ
ଆମ୍ଭେ ହୋ ଏବେ ଏଠାରୁ ଯାଉଅଛୁ ସ୍ୱର୍ଗ
ସୁମରିଲେ ଆମ୍ଭେ ପୁଣି ଏଠାରେ ମିଳିବୁ
ଯାଗର ବିଧି ବିଧାନମାନ ଭିଆଇବୁ ।
ଏମନ୍ତ କହି ନାରଦ ଗଲେ ସ୍ୱର୍ଗପୁର
କୁନ୍ତୀଙ୍କ ପାଶେ ମିଳିଲେ ଦେବ ଚକ୍ରଧର ।
ପ୍ରଣାମ କରନ୍ତେ ଦେବୀ କଲେକ କଲ୍ୟାଣ
କହିଲେ ଦେବୀଙ୍କ ଆଗେ ନାରଦ ଭିଆଣ ।
କୁନ୍ତୀ ବୋଇଲେ ପାଣ୍ଡବ ବଳ ହିନା ତୁହି
ମୋତେ କି ପଚାରୁ ତୁ ତ ଅଟୁ ଭବଗ୍ରାହୀ ।
ତହୁଁ ଦ୍ରୌପଦୀ ମନ୍ଦିରେ ଚଳିଲେ ଗୋବିନ୍ଦ
ଦେଖି ତାଙ୍କୁ ଯାଜ୍ଞସେନୀ ହୋଇଲେ ଆନନ୍ଦ ।
ଷଡ଼ରସରେ ଭୋଜନ କଲେ ଯାଜ୍ଞସେନୀ
କ୍ଷୀର ପିଠ. ପଞ୍ଚାମୃତ ପଇଡ଼ର ପାଣି ।
ଅନ୍ନ ବ୍ୟଞ୍ଜନ ପରଷି ସୁବର୍ଣ୍ଣ ପଲମେ
କର୍ପୂର ବିଡ଼ିଆମାନ ଆଣିଦେଲେ ଖିମେ ।
ଭୋଜନେ ସନ୍ତୋଷ ହୋଇ ଦେବ ଜଗନ୍ନାଥ
ଆସ୍ଥାନରେ ବିଜେ କଲେ ଯହିଁ ନୃପନାଥ ।
ଜୟ ତୁ ନୀଳସୁନ୍ଦରବାସୀ ଶିରୀପତି
ଚତୁର୍ଦ୍ଧାରୂପେ ବିଜୟ ଧରି ଦିବ୍ୟମୂର୍ତ୍ତି ।
କମଳା ବିମଳା ବାକ୍ୟଦେବୀଙ୍କ ସହିତେ
ସେବାରେ ଖଟି ଅଛନ୍ତି ଯାର ପାଦଗତେ ।
ଦକ୍ଷିଣରେ ମହୋଦଧି କଳ୍ପବଟ ଅଛି
କୋଟିତୀର୍ଥ ଘେନି ଯହିଁ ବିଜୟ ଶ୍ରୀବତ୍ସ ।
ସଂସାର ଜନଙ୍କୁ ସେହୁ ତାରିବା ନିମନ୍ତେ
ବିଉଦ୍ଧରୂପରେ ବିଜେ ଦେବ ଜଗନ୍ନାଥେ ।
ଯେ ରୂପକୁ ଚିନ୍ତିବାକୁ କାର ଶକ୍ତି ଅଛି
ମୂର୍ଖ ଅପଣ୍ଡିତ ମୁଁ ଯେ ନ ଜାଣଇ କିଛି ।

ତୁଳସୀ ବଲ୍ଲଭ ବିନୁ ମୋର ଅନ୍ୟ ନାହିଁ
ଶାରଳା ଦାସକୁ ରଖ ବ୍ରହ୍ମାଣ୍ଡ ଗୋସାଇଁ ।

---

## ଧର୍ମ ଯଜ୍ଞର ଆୟୋଜନ

ଏଥୁ ଅନନ୍ତରେ ମନୁରାଜା ପୁଚ୍ଛାକର
କେବଣ ଚରିତ ହେଲା କହ ତପଧର ।
ରାଜା ଶୁଣି ପଚାରନ୍ତେ କହନ୍ତି ଅଗସ୍ତି
ସନ୍ତୋଷ ହୋଇ ଶୁଣନ୍ତି ବୋଲନ୍ତି ନୃପତି ।
ଏଥୁ ଅନନ୍ତରେ ପୁଣି ଆସ୍ଥାନ ମଣ୍ଡଳ
ପୃଥିଭାଇସହ ଧର୍ମଦେବ ଗଲେ ଚଳି ।
ଗୋବିନ୍ଦ ବୈନତେୟଙ୍କୁ ଘେନି ସଙ୍ଗତରେ
ବିଜେ କଲେ ଯାଇ କୁନ୍ତୀ ଦେବୀଙ୍କ ନବରେ
ଦେଖି କୁନ୍ତୀଦେବୀଙ୍କୁ ସେ ନମସ୍କାର କଲେ
ବିନୟ ହୋଇଣ ତହୁଁ ବହୁତ କହିଲେ ।
ବହୁ କଲ୍ୟାଣ କରନ୍ତି ତାଙ୍କୁ କୁନ୍ତୀଦେଈ
ସମସ୍ତ କୁଶଳ ପଚାରନ୍ତି ତୋଷ ହୋଇ ।
ସର୍ବକୁଶଳ କହିଲେ ତାଙ୍କୁ ନାରାୟଣ
ପୁନ ପୌତ୍ର ସରବେ ଯେ ଅଛନ୍ତି ଶୁଭେଣ ।
ଶୁଣି କୁନ୍ତୀଦେବୀ ମନେ ଆନନ୍ଦିତ ହୋଇ
ଯୁଧିଷ୍ଠିରଦେବ ବୋଇଲେ ମାତା ମୁଖ ଚାହିଁ ।
ପାକର ଯୋଗାଡ଼ ବେଗେ କର ଆଗୋ ମାତ
ଭିତର ପୁରେ ଭୋଜନ କରିବେ ଅଚ୍ୟୁତ ।
ଭିତର ପୁରକୁ କୁନ୍ତୀଦେବୀ ଚଳିଗଲେ
ଗୋବିନ୍ଦ ଆସିଅଛନ୍ତି ବୋଲିଣ କହିଲେ ।
ଶୁଣି ଯାଜ୍ଞସେନୀ ମନେ ଆନନ୍ଦ ହୋଇଣ
ଷଡ଼ରସେ ପାକ ସେହୁ କଲେକ ପାଚନ ।
କଲେ ସେ ନାନା ବର୍ଣ୍ଣରେ ବ୍ୟଞ୍ଜନ ଭିଆଣ
ପଞ୍ଚାମୃତରେ ପାୟସ କଲେକ ରନ୍ଧନ ।
ପଞ୍ଚବର୍ଣ୍ଣରେ ପିଷ୍ଟକ କଲେ ସେହୁ ପୁଣ
ଭୋଜନ କରିବେ ବୋଲି ପ୍ରଭୁ ଜନାର୍ଦ୍ଦନ ।
ରନ୍ଧନ ବିଧି ସାରିଣ ଦ୍ରୁପଦ ଦୁଲଣୀ
ଯାଇଁ ଜଣାଇଲେ ବେଗେ କୁନ୍ତୀ ଠାକୁରାଣୀ
କୁନ୍ତୀଦେବୀ ବୋଇଲେ ହେ ଉଠ ଚକ୍ରଧର
ବିଳମ୍ବ ନ କର ବେଳ ହେଲାଣି ଇତର ।
ଭୀମଅର୍ଜ୍ଜୁନ ନକୁଳ ପୁଣି ସହଦେବ
ଯୁଧିଷ୍ଠିରଙ୍କ ସହିତରେ ବିଜେ ବାସୁଦେବ ।
ସଞ୍ଚାମାନ ଆଗୁ ମାଏ ସକାଡ଼ିଣ ଥିଲେ
ସୁବର୍ଣ୍ଣ ଥାଳରେ ଅନ୍ନ ଆଣି ପରଷିଲେ ।
ଦିବ୍ୟ ଅରୁଆର ଅନ୍ନ ବାସଘୃତ ଦେଇ
ନାନା ବ୍ୟଞ୍ଜନ ଦିଅନ୍ତି ଆଣି କୁନ୍ତୀଦେଈ ।
କ୍ଷିରି କ୍ଷିରିସାମାନ ସେ ପରଷନ୍ତି ଆଣି
ସନ୍ତୋଷେ ଭୁଞ୍ଜନ୍ତି ତାହା ପ୍ରଭୁ ଚକ୍ରପାଣି ।
ପଞ୍ଚବର୍ଣ୍ଣୀ ପିଠା ପରଷନ୍ତି କୋଇଲ୍ଲାଏ
ଆମ୍ବ ଲେମ୍ବୁ ଟଭାରଯ ତହୁଁ ଆଣିଦିଏ ।
ଭୋଜନ ସାରି ଉଠିଲେ ବେଗେ ଷଡ଼ଜଣ
ଗଙ୍ଗାଜଳରେ ସରବେ କଲେ ଆଚମନ ।
କର୍ପୂର ବଡ଼ଆମାନ ତହୁଁ ଆଣିଦେଲେ
ସନ୍ତୋଷେ ଶ୍ରୀଜଗନ୍ନାଥ ତାହାକୁ ଭୁଞ୍ଜିଲେ
ଏକମନ ହୋଇ ଶୁଣ ଯାଗର ଯେ ରୀତ
ଶୁଣ ହେ ମନୁପୁରୁଷ ବଦନ୍ତି ଅଗସ୍ତି ।
ଭୋଜନ ସାରିଣ ତହୁଁ ଦେବ ଭାବଗ୍ରାହୀ
ପଣ୍ଡୁ ପଞ୍ଚପୁତ୍ରଙ୍କୁ ସେ ଏକାନ୍ତକୁ ନେଇ ।
ଯାଗ କରି ତୁମ୍ଭେମାନେ କରୁଛ ନ ବିଚାର
ଯେତେ ଇଚ୍ଛା ଆଣିଦେବା କୁବେର ଭଣ୍ଡାର
ହୃଦଗତରେ ବିଚାର କଲେ ଜଗନ୍ନାଥ
ରାଜସୂୟ ଯାଗ ପୁଣ କରିବା ଯଥାର୍ଥ ।
ଲକ୍ଷେ ରାଜା ବରିବାକୁ ସମୟ ଯେ ନାହିଁ
କିସ କରିବା ଭାବନ୍ତି ବସି ଭାବଗ୍ରାହୀ ।
ନାରଦଙ୍କୁ ମନମଧ୍ୟେ ସୁମରଣା କଲେ
କୃଷ୍ଣ ସୁମରନ୍ତେ ତାହା ନାରଦ ଜାଣିଲେ ।
ମନଦଣ୍ଡ ଚଢ଼ି ମୁନି ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇଁ ବାରୁଣାବନ୍ତର ।
ନାରଦ ମୁନିଙ୍କୁ ଦେଖି ଉଠି ଷଡ଼ଜଣ
ନମସ୍କାର କଲେ ଯାଇଁ ମୁନିଙ୍କ ଚରଣ ।
ନାରଦ ବୋଇଲେ କୃଷ୍ଣ କପାଁ ସୁମରିଲ
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଯାହା ଭିଆଇଲ ।
ଲକ୍ଷେ ରାଜା ବରିବାକୁ ବେଳ ନପାଇବା
ଏଥିକୁ କିସ ବିଚାର କହ ମୁନିଦେବା ।
ନାରଦ ବୋଇଲେ ଦେବ ବୁଦ୍ଧି ଏ ମୋ ଅଛି
ଏଥିକୁ ଚିନ୍ତା ନ କର ତୁହେ ଶିରୀବତ୍ସ ।
ଲକ୍ଷେ ରାଜାଙ୍କୁ ଏତାକୁ ବରଣ ନ କର
ଶୁରଦ୍ଵଗୁଁ ଶୁରରାଜା ଆଣିବାକ ବର ।

ସ୍ୱର୍ଗପୁରୁ ବାସବଙ୍କୁ ନିମନ୍ତ୍ରି ଆଣିବା
ପାତାଳପୁରୁ ବାସୁକି ରାଜାକୁ ବରିବା ।
ଷଡ଼ରାଜା ଯେନି ଯାଗ ହେବ ଆରୋପଣ
ଚନ୍ଦ୍ରବଂଶ ରାଜା ମିଶି ହେବେ ଷଡ଼ ଜଣ ।
ନାରଦମୁନିଙ୍କ ମୁଖୁଁ ଏସନକ ଶୁଣି
ଆନନ୍ଦ ହୋଇଣ ଦେବ କହନ୍ତି ଯେ ପୁଣି ।
ଭଲ କଥାଏ କହିଲ ହେ ନାରଦମୁନି
ଯାଗଶାଳ ତିଆରିବା କେଉଁଠାରେ ପୁଣି ।
ଗଙ୍ଗାକୂଳେ ଯାଗଶାଳା କରିବା ନିର୍ମାଣ
ଜଳ ସୁଲଭ ସେଠାରେ ହେବ ନାରାୟଣ ।
ନାରଦଙ୍କୁ ନାରାୟଣ ପୁଣି ପଚାରିଲେ
ମର୍ତ୍ତ୍ୟପୁରୁ କେଉଁରାଜା ବରିବାକ ଭଲେ ।
ନାରଦ ମୁନି କହିଲେ ଶୁଣ ଦାମୋଦର
ଏଥିର ବିଚାର ତୁମ୍ଭେ ଶୁଣ ନିରାଧାର ।
ଚନ୍ଦ୍ରବଂଶ ମଧ୍ୟେ ଶ୍ରେଷ୍ଠ ହସ୍ତିନା ନଗରି
ଏଥିର ରାଜା ଅଟଇ ପୁଣ ଧାର୍ତ୍ତରାଷ୍ଟ୍ରି ।
ଗାନ୍ଧାରୀର ତନୟ ସେ ମାନଗୋବିନ୍ଦାଇ
ପନ୍ନଗାବସ୍ତୁ ତା ପାଦେ ପଦ୍ମ ଉଙ୍କୁଟଇ ।
ଲକ୍ଷେ ରାଜାଙ୍କ ଉପରେ ସେ ମଉଡ଼ ମଣି
ଏହା ତ ଆପଣେ ଜାଣ ଦେବ ଚକ୍ରପାଣି ।
ଭୋଜବଂଶ ନରପତି ଉଗ୍ରସେନ ରାୟେ
ତୁମ୍ଭର ରାଜା ଅଟଇ ସେହୁ ଦେବରାୟେ ।
ଏହାକୁ ନିମନ୍ତ୍ରି ଦେବ ଆଣିବାକ ଯାଇ
ଏ କଥା କି ତୋ ମନକୁ ଆସେ ଭାବଗ୍ରାହୀ ।
ଶ୍ରୀହରି ବୋଇଲେ ଜଣାଗଲା ଦୁଇ ରାଜ
ଆବର କେ ଦୁଇ କହ ବ୍ରହ୍ମାଙ୍କ ତନୁଜ ।
ନାରଦ ବୋଇଲେ ଆଉ ଏକ ରାଜା ଅଛି
ତୁମ୍ଭଙ୍କୁ ଉରଣ ତାହା ନ କହେ ଶ୍ରୀବତ୍ସି ।
ଗୋବିନ୍ଦ ବୋଇଲେ ମନେ ନ କର ତୁ ଭ୍ରାନ୍ତି
ସଂଶୟ ଫେଡ଼ିଣ ମୋତେ କହ ମହାଯତି ।
ନାରଦ ବୋଇଲେ ସେହୁ ଜରାସନ୍ଧ ରାୟେ
ଛୟାଣୋଇ ସସ୍ର ରାଜା ତାରେ ବନ୍ଦୀ ହୁଏ ।
ସେ ରାଜା ଅଇଲେ ସବୁ ହୋଇବ ଯେ ଭଲ
ଲକ୍ଷେ ରାଜାଙ୍କ ସହିତ ହେବ ସମତୁଲ ।
ତାହା ଶୁଣିଣ ହସିଲେ ଦେବ ଚକ୍ରଧର
ଆମ୍ଭ ଅପକାରୀ ଅଟେ ଜରାସନ୍ଧ ବୀର ।

ନାରଦ ବୋଇଲେ ଏଥେ ଚିନ୍ତା ଯେ ନ କର
ଆମ୍ଭେ ତାକୁ ଆଣିଦେବୁ ଆହେ ଚକ୍ରଧର ।
ଗୋବିନ୍ଦ ବୋଇଲେ ସେହୁ କଳି ତିଆରିବ
ତାହାର ଆମ୍ଭର ଏଥେ ଦ୍ୱନ୍ଦ୍ୱ ଉପୁଜିବ ।
ଦ୍ୱନ୍ଦ୍ୱ ଉପସ୍ଥିତ ହେଲେ ଯାଗ ହେବ ନଷ୍ଟ
ଏଥିର ଚରିତ କହ ବ୍ରହ୍ମାଙ୍କର ସୃଷ୍ଟ
ଗୋବିନ୍ଦ ମୁଖୁଁ ଏସନ ନାରଦ ଶୁଣିଲେ
ଦ୍ୱନ୍ଦ୍ୱ ହେବନାହିଁ ଆମ୍ଭେ ତିଆରିବୁ ଭଲେ ।
ଏଥେ ସଂଶୟ ନ ଧର ମନେ ଭଗବାନ
ଏ କଥା ବିଚାରି ତୁନି ହେଲେ ଜନାର୍ଦ୍ଦନ ।
ଗୋବିନ୍ଦ ବୋଇଲେ ବଳରାମ ଯେ ଅଛନ୍ତି
ତାହାକୁ ଦେଖି ଚଳିବେ ପ୍ରଭୁ ହଳପତି ।
ନାରଦ ବୋଇଲେ ସେହୁ କିଛି ନ କହିବେ
ଆମ୍ଭର କହନ୍ତେ ତୁନିହୋଇ ଯେ ରହିବେ ।
ଶ୍ରୀହରି ବୋଇଲେ ଶୁଣ ଆହେ ବ୍ରହ୍ମମୁନି
ଏହି କଥାକୁ ତୁମ୍ଭେ ଯେ ଥାଅ ପରମାଣି ।
ଏମନ୍ତ ତିନିରାଜା ଯେ ହୋଇଲେକ ପୁଣ
ଏଥିର ଉତ୍ତାରେ ଅଛି କେବଣ ରାଜନ ।
ନାରଦ ବୋଇଲେ ଶୁଣ ପୁରୁଷଉତ୍ତମ
ରାଜା ଏକ ରହିଅଛି ମେରୁ ମେଖଳେଣ ।
ବଡ଼ ଗରିଷ୍ଠ ଅଟଇ ସେହୁ ନୃପବର
ଥାଟ ସୈନ୍ୟ ନାହିଁ ଏକା ବୁଝେ ରାଜ୍ୟଭାର ।
ଧନୁ ତୁଣୀର ସେ ଧରିଥାଏ ନିଜ କରେ
ଶତ୍ରୁ ଉପଗତ ହେଲେ ନିବାରଇ ତାରେ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ମହାମୁନି
ଅପୂର୍ବ କଥାଏ କହିଲ ତ ତପୋଧନି ।
ମେରୁ ମେଖଳାକୁ କେହୁ ଯିବାକ ସେ ପୁଣ
କେମନ୍ତ ଆସିବ ସେହୁ ଏତେ ଦୂର ଜାଣ ।
ନାରଦ ବୋଇଲେ ତାହା ନୁହଇ ଯେ ଦୂର
ମେରୁ ମେଖଳା ବୋଲିଣ ନାମ ପର୍ବତର ।
ମେରୁ ମେଖଳାକୁ ତାର ସୀମା ଯେ ଲାଗଇ
ଏମନ୍ତ ବୋଲି କହିଲୁ ଆମ୍ଭେ ଯଦୁସାଇଁ ।
ବାସୁଦେବ ନାରଦଙ୍କୁ ପଚାରନ୍ତି ଗୁହିଁ
ତାର ନାମ କିସ ଅଟେ କହ ତପିସାଇଁ ।
ନାରଦ ବୋଇଲେ ତାର ନାମ ମୃଗସେନ
ବ୍ୟାସ ମୁନିଙ୍କର ସେହୁ ଅଟଇ ନନ୍ଦନ ।

ତାହାର ମାତ ସେ ପୁଣ ମୃଗୁଣୀ ଅଟଇ
ଏହା ଶୁଣିଣ ହସିଲେ ପ୍ରଭୁ ଭାବଗ୍ରାହୀ ।
କହ ମୁନିବର ଏହା କେବଣ ବେଭାର
କେମନ୍ତ ଅଟଇ ଏହୁ ବ୍ୟାସଙ୍କ କୁମର ।
ନାରଦ ବୋଇଲେ ଆହେ ଶୁଣ ଯଦୁସାଇଁ
ଏକଦିନେ ବ୍ୟାସ ବନ ମଧ୍ୟେ ଭ୍ରମିଯାଇଁ ।
ମୃଗ ମୃଗୁଣୀ ଶୃଙ୍ଗାର ଦେଖିଲେ ନୟନେ
ଅଥୟ ହେଲେ ସେ ମହାଋଷି କାମବାଣେ ।
କେତେହେଁ ଦୂରେ ଦେଖିଲେ ଏକଇ ମୃଗୁଣୀ
ତାହାକୁ କୋଳେ ଧଇଲେ ବ୍ୟାସ ମହାମୁନି
ଶୃଙ୍ଗାରେ ରେତ ପଡ଼ିଲା ମୃଗୁଣୀ ଗର୍ଭରେ
ସଇନ୍ଦୁ ବୁନ୍ଦେକ ତହିଁ ପଡ଼ିଲା ଭୂମିରେ ।
ପୁତ୍ର ପ୍ରସବ ମୃଗୁଣୀ ସ୍ୱର୍ଗପୁରେ ଗଲା
କ୍ଷୀର ନ ପାଇଣ ପୁତ୍ର ବିକଳେ କାନ୍ଦିଲା ।
ତାହାର ବେଦନ ନିରଞ୍ଜନ ସେ ଜାଣିଲେ
ଶୂନ୍ୟେ ରହିକରି ସେହୁ ବ୍ୟାସଙ୍କୁ କହିଲେ ।
ମୃଗୁଣୀ ଗର୍ଭୁ ଯେବଣ ପୁତ୍ର ଉପୁଜିଛି
ତୁମ୍ଭର ବୀର୍ଯ୍ୟରେ ସେହୁ ଜନମ ହୋଇଛି ।
ଆପଣ ତାହାକୁ ପ୍ରତିପାଳନ ତୁ କର
ନୋହିଲେ ଶାପ ପାଇବୁ ନିଶ୍ଚେ ମୁନିବର ।
ଧର୍ମ ଦେବତାଙ୍କ ତହୁଁ ଏସନକ ଶୁଣି
ପୁତ୍ରକୁ ଆଣି ପାଳିଲେ ବ୍ୟାସ ମହାମୁନି ।
ଶାସ୍ତ୍ର ଶସ୍ତ୍ରବିଦ୍ୟା ତାକୁ ବହୁ ଶିଖାଇଲେ
ବହୁତ କଲ୍ୟାଣ କରି ତାକୁ ବର ଦେଲେ ।
ଚିର ଆୟୁଷ ତୋହର ହେଉ ପୃଥିବୀରେ
କେହି ରାଜା ନ ଜିଣିବେ ତୋତେ ତ ସମରେ
ଏକା ହୋଇଣ ସମର କରିବୁ କୁମର
ଧନୁ ନାରାଚ ଏକ ସେ ଧରିଥିବୁ କର ।
ନାମଗୋଟି ତାହାର ସେ ଦେଲେ ମୃଗସେନ
ମେରୁମନ୍ଦର ପର୍ବତେ ଦେଲେ ତାକୁ ସ୍ଥାନ ।
ନାରଦ ମୁଖୁଁ ଏସନ ଶ୍ରୀହରି ଶୁଣିଲେ
କୁରୁବଂଶ ମୃଗସେନ ଜାତି ସେ ଜାଣିଲେ ।
ଏଥୁଅନ୍ତରେ ବଳିଙ୍କ ଦେଶର ରାଜନ
ମୁନିଙ୍କ ଚରଣ ତଳେ ନମେ ପୁଣ ପୁଣ ।
ଏ ବଡ଼ ସଂଶୟ ମୋତେ ଲାଗିଲା ଗୋସାଇଁ
ମୃଗୀ ହୋଇ କେମନ୍ତେ ସେ ନର ପ୍ରସବଇ ।
ପୁତ୍ର ପ୍ରସବ କରିଣ ସ୍ୱର୍ଗପୁରେ ଗଲା
ଏ କଥା ମୋର ମନକୁ ସଂଶୟ ଲାଗିଲା ।
ଅଗସ୍ତି ଋଷି ବୋଇଲେ ଶୁଣ ସାବଧାନେ
ତା ପୂର୍ବ ଜନ୍ମ କହିବା ଶୁଣ ଏକମନେ ।
ପୂର୍ବଜନ୍ମେ ବିଦ୍ୟାଧରୀ ଅଟଇ ସେ ମୃଗୀ
ଶାପରେ ମୃଗଯୋନିରେ ଜନମ ସେ ଲଭି ।
ଏହା ଶୁଣି ମନୁରାଜା ପଚାରିଲେ ପୁଣି
କେବଣ ବିଦ୍ୟାଧରୀ ସେ କା ଶାପରେ ଜନ୍ମି
ଅଗସ୍ତି ବୋଇଲେ ଶୁଣ ତୁ ମନୁରାଜନ
ଧନୁ ଶେଷରେ ମକର ମାସ ପ୍ରବେଶେଣ ।
ମକର ସ୍ନାହାନେ ଚଳିଗଲେ ସର୍ବଜନ
ଇନ୍ଦ୍ରର ପୁତ୍ର ସେ ସୁରଗନ୍ଧର୍ବ ନାମେଣ ।
ମେନକା ଦୁହିତା ନାମ ଅଟେ ଶକୁନ୍ତଳା
ସୁନ୍ଦରକୁ ପଟାନ୍ତର ନାହିଁ କେ ଅବଳା ।
ସେ ଯାଇଅଛି ମକର ସ୍ନାହାନତ ପାଇଁ
ବେନିଜନ ସେହିଠାରେ ଭେଟାଭେଟି ହୋଇ
ଶକୁନ୍ତଳାକୁ ଦେଖିଣ ମନତ ବିକଳ
ଗନ୍ଧର୍ବ ତାହାକୁ ଧାଇଁ ଧଇଲେକ ବଳେ ।
ବଳେ ଧରନ୍ତେ ସେ ବାଳୀ ସମ୍ମତ ନ କଲା
ରାଗେ ଗନ୍ଧର୍ବ ତାହାକୁ ଅଭିଶାପ ଦେଲା ।
ମୃଗ ପଶୁର ପ୍ରାୟେକ ହୋଇଲୁ ସେ ତୁହି
ମୃଗଯୋନିରେ ତୁ ବାଳି ଜନ୍ମ ହୁଅ ଯାଇ ।
ଉତ୍ତରେ ସୁନ୍ଦରୀ ପୁରୁଷେ ଯାଇ ପଚାରିଲା
ଶାପକୁ କାରଣ ମୋତେ କହସି ବୋଇଲା ।
କନ୍ୟାର ଉକଣ୍ଠ ଦେଖି ସେହୁ ଦୟାକଲା
ଶାପୁଁ ଉଦ୍ଧରିବାର ସେ ବଚନ କହିଲା ।
ଅଷ୍ଟାନ୍ଦ ବନରେ ମୃଗୀ ହୋଇ ଚରୁଥିବୁ
ବ୍ୟାସଙ୍କ ଶୃଙ୍ଗାରେ ତୁହି କାରଣ ପାଇବୁ ।
ଶକୁନ୍ତଳା ବୋଇଲା ମୁଁ କେମନ୍ତେ ଜାଣିବି
କେମନ୍ତ ପ୍ରକାରେ ମୁହିଁ ମୁନିଙ୍କୁ ଭେଟିବି ।
ଗନ୍ଧର୍ବ ବୋଇଲା ନର ହୋଇ ସେ ହରିବ
ତାର ବୀର୍ଯ୍ୟେ ତୋ ଗର୍ଭରୁ ପୁତ୍ର ଉପୁଜିବ ।
ଶାପ ଦେଇଣ ଗନ୍ଧର୍ବ ତହୁଁ ଚଳିଗଲା
ଶକୁନ୍ତଳା ମୃଗୀରୂପେ ମର୍ତ୍ତ୍ୟରେ ଜନ୍ମିଲା ।
ଶୁଣିଲଟିକି ଏ କଥା ମନୁ ନୃପବର
ଏସନ ପ୍ରକାରେ ଜନ୍ମ ସେ ମୃଗ ମୁନିବର ।

ନାରଦ କହିଲେ ଜଗନ୍ନାଥଙ୍କର ଆଗେ
ଶୁଣିଲେ ମୃଗସେନର ଜନମ ପ୍ରସ୍ତାବେ ।
ହସିକରି କହୁଛନ୍ତି ତାଙ୍କୁ ଜନାର୍ଦ୍ଦନ
ରାଜାମାନଙ୍କୁ ଯେ ଇ କେ କରିବ ବରଣ ।
ଏଥିର ଚରିତ ମୋତେ କହ ତପୋଧନ
ନାରଦ କହୁଅଛନ୍ତି ଶୁଣ ଜନାର୍ଦ୍ଦନ ।
ସହଦେବେ ପଚରି ସେ ଏ ଚରିତ କହୁ
ଆଗତ ନାଗତ ବାର୍ତ୍ତା ଜାଣଇ ତ ସେହୁ ।
ସହଦେବଙ୍କୁ ପୁଚ୍ଛିଲେ ତହୁଁ ନାରସୁଣ
ଯାଗ କର୍ତ୍ତା ହେବଟି କି କହ ମନ୍ତ୍ରୀ ପୁଣ ।
ସହଦେବ କରପତ୍ର ବେଗେ ଦେଲେ ଗୃହି
ବୋଇଲେ ସଂଶୟ ଏଥି ନାହିଁ ଭବଗ୍ରାହୀ ।
କଳିଦ୍ୱନ୍ଦ୍ୱ ଏଥିରେ ଯେ କିଛି ନାହିଁ ଦେବ
ନିଶ୍ଚିନ୍ତେ ଯାଗ କରିବା ଶୁଣ ବାସୁଦେବ ।
ସହଦେବଙ୍କ ମୁଖରୁ ଏସନକ ଶୁଣି
ମନରେ ସାନନ୍ଦ ହେଲେ ଦେବ ଚକ୍ରପାଣି ।
ଗୋବିନ୍ଦ ବୋଇଲେ ତୁହେ ଶୁଣ ମନ୍ତ୍ରିବର
ରାଜାଙ୍କ ବରଣ ପାଇଁ କରିବା ବିଚାର ।
ସହଦେବ କହୁଛନ୍ତି ଶୁଣ ହୃଷୀକେଶ
ପାତାଳ ଭୁବନେ ଯାନ୍ତୁ ମାଦ୍ରୀଦେବୀ ଶିଷ୍ୟ ।
ଜରାସନ୍ଧ ମୃଗସେନେ ବରିଯାନ୍ତୁ ଭୀମ
ନାରଦେ ଜାଣନ୍ତି ଏଥି ବିଚାର ଉତ୍ତମ ।
ଅର୍ଜ୍ଜୁନ ଠାକୁର ଯାନ୍ତୁ ସ୍ୱର୍ଗପୁର ଯାଏ
ମଥୁରାରେ ବରନ୍ତୁ ସେ ଉଗ୍ରସେନ ରାୟେ ।
ମୁହିଁ ବରିଯିବି ଭାନୁମନ୍ତ ଯେ ରାଜନ
ଏମାନେ ଅଟନ୍ତି ଆମ୍ଭ ବନ୍ଧୁବର୍ଗ ଜାଣ ।
ଏମାନଙ୍କୁ ନିମନ୍ତ୍ରଣ ଅଟଇ ଯୁକତେ
ଏସନ ବିଚାର ସହଦେବ ଯେ କହନ୍ତେ ।
ଅଳପ କରି ହସିଲେ ପ୍ରଭୁ ଜଗନ୍ନାଥେ
ପୁଣି ନାରଦଙ୍କୁ ହକାରିଲେକ ତୁରିତେ ।
ମଗଧ ଦେଶକୁ ମୁନି ତୁମ୍ଭେ ଚଳିଯିବ
ଜରାସନ୍ଧ ଆସ୍ଥାନରେ ଯାଇ ବସିଥିବ ।
ବରଣ ଯୋଗାଡ଼ି ଭୀମ ଘେନିଣ ମିଳିବ
ବିଚାର ସକଳ କାର୍ଯ୍ୟ ନିର୍ବାହ କରିବ ।
ଗୋବିନ୍ଦ ବଚନେ ମୁନି ସ୍ୱୀକାର କଲେ
ମନଦଣ୍ଡ ଚଢ଼ି ମୁନି ବାହାରି ହୋଇଲେ ।

ଶୁଣ ହୋ ମନୁପୁରୁଷ କହନ୍ତି ଅଚ୍ୟୁତି
ଏଥିର ଉତ୍ତାରେ ଯାହା କଲେକ ଶ୍ରୀପତି ।
ସାବଧାନ ହୋଇ ତୁହେ ଶୁଣ ଏକମନ
ବିଚିତ୍ର ଆଖ୍ୟାନ ଏହୁ ଯାଗର ବିଧାନେ ।
ବାରୁଣୀବନ୍ତ ପୂର୍ବରେ ସୁରଗଙ୍ଗା ତୀରେ
ଯାଗକୁ ଯେ ଅନୁକୂଳ କରନ୍ତି ସେଠାରେ ।
ବାଣିଜ୍ୟ ନାମେ କରଣ ଶିବ ନାମେ ଯୋଗ
ଏଗାର ଦିନ ଯେ ମେଷ ସଙ୍କ୍ରାନ୍ତି ଭୋଗ ।
ଜ୍ୟେଷ୍ଠା ନକ୍ଷତ୍ର କୃଷ୍ଣ ତୃତୀୟା ବୁଧବାର
ସେ ଦିନ ଯୋଗାଡ଼ କଲେ ଯେ ବିଧି ଯାଗର
ଯୁଧିଷ୍ଠିରଙ୍କ ହୋଇଅଛି ଘଟଣ ଯେ ତାର ।
ଅନୁକୂଳ ଦେଖିଗଲେ ରାଜା ଯୁଧିଷ୍ଠିର
ଯଗଶାଳ ଭୂମିଖଣ୍ଡ ଲଗାଇଲେ ଚପିଲେ
ପ୍ରତିଷ୍ଠା ନିମନ୍ତେ ମାଧବଳ ସେ ବୃଣିଲେ ।
ବିଶ୍ୱକର୍ମାକୁ ଶ୍ରୀହରି ସୁମରଣା କଲେ
ତତକ୍ଷଣେ ଆସି ବିଶ୍ୱକର୍ମା ଯେ ମିଳିଲେ ।
ଗୋବିନ୍ଦ ବୋଇଲେ ତୁହେ ଶୁଣ ବିଶ୍ୱକର୍ମା
ସ୍ୱର୍ଗପୁରୁଁ ଘେନିଆସ ସଭା ଯେ ସୁଧର୍ମା ।
ସାତଦିନ ପାଇଁକି ତୁ ଥାପିବୁ ଆସ୍ଥାନ
ଯୁଧିଷ୍ଠିର ଧର୍ମଯାଗ କରିବେ ଆପଣ ।
ବିଶ୍ୱକର୍ମା ବୋଇଲା ହୋ ଶୁଣିମା ଗୋସାଇଁ
ସବୁ କଥାମାନ ତୋର ଭିଆଣ ଅଟଇ ।
ରାତିକ ଭିତରେ ସର୍ବ ନିର୍ବାହ ହୋଇବ
ଏଥିକୁ କିଛି ଚିନ୍ତା ନ କର ବାସୁଦେବ ।
ବିଶ୍ୱକର୍ମାକୁ ଯେ ଆଜ୍ଞାଦେଲେ ନାରସୁଣ
ଆପଣେ ଯାଇଁ ମିଳିଲେ କୁବେର ଭୁବନ ।
ହରିଙ୍କୁ ଦେଖି କୁବେର ପାଏ ପଡ଼ି ଶୋଇ
ସ୍ତୁତିରେ ଉଦ୍ଧ ହୋଇଲା ଶିରେ କର ଦେଇ ।
ଆଜ ମୋହର ପବିତ୍ର ହୋଇଛି ଭୁବନ
କିଅର୍ଥେ ବିଜେ କଲ ହେ ପ୍ରଭୁ ଭଗବାନ ।
କୃଷ୍ଣ ବୋଇଲେ ଅଇଲୁ ଆମ୍ଭେ ଏଥିପାଇଁ
ଯାଗ ଗୋଟିଏ କରନ୍ତି ଧର୍ମ ନରସାଇଁ ।
ଯେତେ ଧନ ଲଗିବ ତା ସବୁ ଦେଉଥିବ
ସାତଦିନ ସେହୁ ଯାଗଗୋଷ୍ଠୀ ନିର୍ବାହେବ ।
କୁବେର ବୋଲେ ଗୋସାଇଁ ତୁମ୍ଭର ଭଣ୍ଡାର
ମୋତେ ଧନ ମାଗୁଅଛ କିପାଁ ଚକ୍ରଧର ।

କୁବେରଙ୍କୁ ଆଜ୍ଞାଦେଇ ଗଲେ ନାରାୟଣ
ପ୍ରବେଶ ହୋଇଲେ ଯାଇଁ ବରୁଣ ଭୁବନ ।
ବରୁଣ ଦେବତା ଦେଖି ନମସ୍କାର କଲା
ଅନେକ ପ୍ରକାରେ ଷଡ଼ ଅର୍ଘ୍ୟରେ ପୂଜିଲା ।
ବରୁଣ ବୋଲେ ଗୋସାଇଁ ଅଇଲ କିମର୍ଥେ
ହରି ବୋଇଲେ ଯୁଧିଷ୍ଠି ଯାଗର ନିମନ୍ତେ ।
ଯାହା ଯାହା ସେ ଯାଗରେ ଲୋଡ଼ା ହେଉଥିବ
ଯାଉଦିନ ଯାଏ ତାହା ସବୁ ଦେଉଥିବ ।
ବରୁଣ ବୋଲେ ଗୋସାଇଁ ତୋହର ପଦାର୍ଥ
ନେବାକୁ ନାସ୍ତି କି କର ପାରଇ ମୁହିଁତ ।
ବରୁଣ ମୁଖରୁ ଶୁଣି ଏସନକ ବାଣୀ
ବାହାର ହୋଇଲେ ତହୁଁ ଦେବ ଚକ୍ରପାଣି ।
କପଚେଶ୍ୱର ବନରେ ହୋଇଲେ ପ୍ରବେଶ
କପଚେଶ୍ୱରକୁ ଡାକି ଅଣାଇଲେ ପାଶ ।
କପଚେଶ୍ୱର ହରିଙ୍କୁ ନମସ୍କାର କଲା
କିମର୍ଥେ ବିଜେ ମୋ ପୁରେ ବୋଲି ପଚାରିଲା
ଗୋବିନ୍ଦ ବୋଇଲେ ଶୁଣ ତୁ କପଚେଶ୍ୱର
ଯାଗ ଗୋଟିଏ କରିବେ ରାଜା ଯୁଧିଷ୍ଠିର ।
ଯେତେକ ଯାଗେ ଲାଗିବ ଫଳ ମୂଳମାନ
ସମସ୍ତ ନାବେ ପୂରାଇ ଦେବୁ ପ୍ରତିଦିନ ।
ଏତେ କହି ତହୁଁ ଚଳିଗଲେ ନାରାୟଣ
ଏମନ୍ତେ ନିଯୋଗମାନ ଖଞ୍ଜାକରି ପୁଣ ।
ବାରୁଣାବନ୍ତେ ପ୍ରବେଶ ହେଲେ ଜନାର୍ଦ୍ଦନ
ଦରଶନ କଲେ ଆସି ଯୁଧିଷ୍ଠି ରାଜନ ।
ଦେଖିଲେକ ଯାଗଶାଳ ହୋଇଛି ତିଆଣ
ରାଜାଙ୍କର ଅନୁରୂପେ ଆସ୍ଥାନ ନିର୍ମାଣ ।
ଋଷିମାନଙ୍କର ମଠ ଭିନ୍ନ ଭିନ୍ନ କରି
ଯେଉଁରୂପେ କରିଥିଲେ ଦେବ ନରହରି ।
ଷୋଳକୋଶ ଦୀର୍ଘ ପ୍ରସ୍ଥ ସମସ୍ତ ତିଆଇ
ଅଗୁରୁ ଶ୍ରେଣୀ ଚନ୍ଦନ କାଠ ଖୁମ୍ବ ଦେଇ ।
ମରକତ ମଣି ସ୍ତମ୍ଭ ବଇଦୁର୍ଯ୍ୟ ଓରି
ନାନା ବର୍ଣ୍ଣର ରତନ ଦିଶୁଅଛି ତୋରି ।
ବଖରକେ ବଖରକେ ଭିନ୍ନ ଭିନ୍ନ ଶଯ୍ୟା
ଛନ୍ଦୁଣି ହୋଇଛି ସ୍ଥଳଯାକ ତେଜପଣ ।
ଆପଣେ ବିଶ୍ୱକର୍ମା ତା କରିଛି ଗଠନ
ଏଥାନ୍ତର ନାହିଁ ତାକୁ ଏ ତିନି ଭୁବନ ।

ଆବର ବିଶେଷ ଯହିଁ ଗୋବିନ୍ଦର ଆଜ୍ଞା
ବିଶ୍ୱକର୍ମା ତାହା କାହିଁ କରିବ ଅବଜ୍ଞା ।
ଏମନ୍ତେ ସେ ବିଶ୍ୱକର୍ମା ସବୁ ସଜାଡ଼ିଣ
ବେଗହୋଇ ଚଳିଗଲା ଆପଣା ଭୁବନ ।
ଜଗତଜନ ଠାକୁର କମଳା ବିଳାସ
ଶ୍ରୀବତ୍ସ ଚରଣେ ଦାସ ଶ୍ରୀଶାରଳା ଦାସ ।

---

## ରାଜାମାନଙ୍କୁ ନିମନ୍ତ୍ରଣ

ଏଥୁ ଅନନ୍ତରେ ପୁଣ କି ହେଲା ବିଧାନ
ବିଶେଷି କହ ହେ କୁମ୍ଭଋଷିର ନନ୍ଦନ ।
ଅଗସ୍ତି ବୋଲନ୍ତି ଶୁଣ ମନୁ ମହାରାୟ
ରାଜା ନିମନ୍ତ୍ରଣକୁ ସେ କଲେକ ଉପାୟ ।
ଭୀମସେନକୁ କହନ୍ତି ଦେବ ଚକ୍ରଧର
ଜରାସନ୍ଧ ରାଜାକୁ ତୁ ନିମନ୍ତ୍ରଣ କର ।
ନାରଦ ଯାଇ ଅଛନ୍ତି ତାହାର ଭୁବନ
ନିମନ୍ତ୍ରଣ ଘେନିକରି ଚଳ ତୁ ବହନ ।
ଆବର ମୃଗସେନକୁ କରି ନିମନ୍ତ୍ରଣ
ଏସନ ଶୁଣି ବାହାର ହେଲେ ଭୀମସେନ ।
ମାହେନ୍ଦ୍ର ବେଳାରେ ସଜ ହେଲେ ଭୀମସେନ
ସାରଥି ରଥ ସଜାଡ଼ି ଆଣିଲା ବହନ ।
ଦୁଇ ଅକ୍ଷୌହିଣୀ ବଳ ଦୁଇଶତ ରଥ
ଚଉଶତ ହସ୍ତୀ ସଙ୍ଗେ ଅଛନ୍ତି ମାହୁନ୍ତ ।
ସହସ୍ରେକ ଅଶ୍ୱ ଦୁଇସହସ୍ର ପଦାତି
ଲକ୍ଷେକ ଶଙ୍ଖ ଗୁମୁରେ ତାହାର ବଜାନ୍ତି ।
ଶୁଭ ଅନୁକୂଳେ ଭୀମ ବାହାର ହୋଇଲା
ଦୁଇକୋଶ ମାଡ଼ି ଥାଟ ସଧୀରେ ଚଳିଲା ।
ପ୍ରବେଶ ହୋଇଲା ଭୀମ ମଗଧରେ ଯାଇଁ
ଚରଗଣେ ମଗଧେଶ ଛାମୁରେ ଜଣାଇ ।
ହେ ଦେବ ପରଦେଶର ଥାଟ ଯେ ଗୋଟାଏ
ଆମ୍ଭ ରାଜ୍ୟରେ ପଶନ୍ତି ଶୁଣ ମହାରାୟେ ।
ଶୁଣି ରାଜା ଜରାସନ୍ଧ କୋପେ ଥରହର
ବୋଇଲା ଥାଟକୁ ଭଲକରି ତୁ ପଚାର ।
ଜରାସନ୍ଧ ରାଜା ମୁଖୁଁ ଏସନକ ଶୁଣି
ନାରଦ ବୋଇଲେ ରାଜା ଶୁଣ ପରମାଣି ।
ନାରଦଙ୍କ ବଚନରେ ମଗଧର ସାଇଁ
ଚରକୁ ବୋଇଲା ଆରେ ଯାଅ ବେଗ ହୋଇ ।

କାହିଁର ଥାଟ ଏ ତୁମ୍ଭ ଯାଇଣ ପଚ୍ଚର
ଥାଟ ଘେନି ଆସେ ଏଥେ କି କାର୍ଯ୍ୟ ତାହାର
ଚରଗଣ ଯାଇ ହେଲେ ଭୀମର ସମ୍ମୁଖରେ
ବୋଇଲେ କି କାର୍ଯ୍ୟେ ତୁମ୍ଭେ ପଶ ଏ ରାଜ୍ୟରେ
ଭୀମସେନ ବୋଲେ ଆମ୍ଭେ ଯୁଦ୍ଧ ଆସିନାହୁଁ
ଯାଗେ ନିମନ୍ତ୍ରଣ କରି ଆସିଅଛୁ ଯହୁଁ ।
ଭୀମସେନର ମୁଖରୁ ଏସନକ ଶୁଣି
ଚରମାନେ ବାହୁଡ଼ି ଗଲେ ତତକ୍ଷଣି ।
ରାଜାର ସମ୍ମୁଖରେ ଯାଇ କହିଲେ ବାରତା
ନିମନ୍ତ୍ରଣ ଆଣିଅଛି ଏକ ମହାରଥୀ ।
ଏଥିକୁ କେବଣ ଆଜ୍ଞା ହୋଇବ ଗୋସାଇଁ
ଜରାସନ୍ଧ ନାରଦଙ୍କୁ ଚାହିଁଣ ପୁଚ୍ଛଇ ।
କିସ ନିମନ୍ତ୍ରଣ ଏହି କେଉଁ ଦେଶ ରାଜା
ଏହା ସଞ୍ଚପିଣ ମୋତେ କହ ମୁନିଦେବା
ନାରଦ କହିଲେ ଶୁଣ ମଗଧର ସାଇଁ
ହସ୍ତିନା କଟକ ରାଜା ଅଟଇ କୁରୁସାଇଁ ।
ତାହାଙ୍କର ଭ୍ରାତା ପଞ୍ଚପାଣ୍ଡବେ ଅଟନ୍ତି
ବାରୁଣାବନ୍ତେ ନବର କରି ସେ ଅଛନ୍ତି ।
ଯୁଧିଷ୍ଠି କରୁଅଛନ୍ତି ଧର୍ମ ଯାଗଟିଏ
ସ୍ବରଦେଗ ରାଜା ତହିଁ ବରଣଟି ହୁଏ ।
ସବି ରାଜାଙ୍କ ଉପରେ ତୁମ୍ଭ ଯେ ଗରିଷ୍ଠ
ତେଣୁ ବରୁଅଛଇ ଯେ ତୋତେ ପଣ୍ଡୁସୁତ ।
ଜରାସନ୍ଧ ନାରଦଙ୍କ ବଚନେ ବୋଇଲା
ଭଲକଥା ଗୋଟିଏକ କହି ମୁନି ଭଲ ।
ମୋତେ ଅସମ୍ଭବ ହେବ ଲଗିଲା ଏ କଥା
ଏଥିର ବିଚାର ମୋତେ କହ ବ୍ରହ୍ମସୁତା ।
ରାମକୃଷ୍ଣ ଦୁଇ ଭାଇ ଆସିବେ ସେଠାକୁ
ଯାଗ ଚରିତ୍ର କରିବେ ଆସେ ମୋ ମନକୁ ।
ନାରଦ ବୋଇଲେ ତାହା ନ ଭାଳ ତୁ ବିପ୍ରେ
ଉତ୍ସବ ବରଣଠାରେ ହେବା ନିନ୍ଦା ନୋହେ ।
ନାରଦ ବଚନେ ଜରାସନ୍ଧ ତୁନି ହେଲେ
ଚରଙ୍କ ମୁଖକୁ ସେ ଚାହିଁ ଆଜ୍ଞା ଦେଲେ ।
ରାଜା ଆଜ୍ଞା ଦେଲା ଭୀମେ ଘେନି ଆସ ଯାଇଁ
ଏହା ଶୁଣି ଚରଗଣେ ବେଗେ ଚଳିଯାଇଁ ।
ଭୀମସେନର ସମ୍ମୁଖରେ ଯାଇଁଣ ମିଳିଲେ
ସେ ହେବ ତୁମ୍ଭେ ଯିବାକୁ ରାଜା ଆଜ୍ଞାଦେଲେ ।
ଜରାସନ୍ଧ ପଠାଇଛି ବେଗେ ନେବାପାଇଁ
ଉତ୍ତର ହୋଇଲେ କୋପ କରେ ନରସାଇଁ
ଶୁଣିକରି ଭୀମସେନ ଆନନ୍ଦ ହୋଇଲା
ନିମନ୍ତ୍ରଣ ଯୋଗାଡ଼ି ସେ ଘେନିଣ ଚଳିଲା ।
ଭୀମସେନେ ଦେଖି କଲା କୋଳ ସମ୍ଭାଷଣ
ତହୁଁ ସେଠାରେ ସେ ବେନି ବସିଲେ ବହନ
ନାରଦ ମୁନିଙ୍କୁ ଭୀମ ନମସ୍କାର କଲା
ତହୁଁ ଜରାସନ୍ଧକୁ ସେ ନିମନ୍ତ୍ରଣ ଦେଲା ।
ବୈଶାଖ ଶୁକ୍ଳ ପଞ୍ଚମୀ ଦିନ ଯାଗ ହେବ
ସାତଦିନ ପର୍ଯ୍ୟନ୍ତେ ହୋମ ସେ ହୋଇବ ।
ଏହି ଦିନ ତୁମ୍ଭେ ଯାଇଁ ପ୍ରବେଶ ହୋଇବ
ଯାଗ ଧର୍ମାପତ ଯାଏ ତହିଁ ରହିଥିବ ।
ଏତେ କହି ଭୀମସେନ ମେଲାଣି ମାଗିଲେ
ସେ ଦିନ ନୃପତି ଭୀମସେନେ ରଖାଇଲେ ।
ରାତ୍ର ପ୍ରଭାତରୁ ଉଠି ଥାଟ ସେ ଚଳାଇ
ଖଣ୍ଡେଦୂର ପଥ ପୁଣି ଗଲାକ ସେ ବାହି ।
ପଶ୍ଚିମ ମୁଖରେ ଭୀମସେନ ଚଳିଯାଇ
ତିନିଦିନେ ମୃଗସେନ ରାଜ୍ୟରେ ମିଳଇ ।
ବାରତୂର ବଜାଇଣ ଚଳାଇଛି ଥାଟ
ଅଛିହିଁ ଗରିଷ୍ଠ ପଣ୍ଡୁ ରାଜାଙ୍କର ସୁତ
ଶୁଣ ଆହୋ ମନୁରାୟେ ବଦନ୍ତି ଅଗସ୍ତି
ଗିରିର ଉପରେ ଥାଇ ଦେଖଇ ନୃପତି ।
କାହିଁର ଥାଟ ଏ ବୋଲି ହୋଇକୋପ କଲା
ପଦାତିରୁ ଓହ୍ଲାଇଣ ଥାଟ ଓଗାଳିଲା ।
ବୋଇଲା କାହିଁର ହାଦେ ଅଟୁ ତୁ ବିଦେଶୀ
ବିଚ୍ଚର ନ କରି କପାଁ ମୋ ରାଜ୍ୟରେ ପଶି ।
ଯୁଝିବା ନିମନ୍ତେ ଯେବେ ଆସିଅଛୁ ତୁହି
ସଂଗ୍ରାମ କଲେ ମୋ ହାତୁ ଉବୁରିବୁ ନାହିଁ ।
ମୃଗସେନର ମୁଖରୁ ଏସନକ ଶୁଣି
ଭୀମ ବୋଇଲେ ମୁଁ ନିମନ୍ତ୍ରଣ ଅଛି ଆଣି ।
ଏହା ଶୁଣି ମୃଗସେନ ମହାକୋପ କଲା
କାହିଁର ରାଜା ବୋଲିଣ ତାକୁ ପଚ୍ଚରିଲା ।
ଭୀମସେନ ବୋଇଲେ ମୁଁ ହସ୍ତିନାର ରାଜା
ଧର୍ମଯଜ୍ଞ କରୁଛନ୍ତି ଯୁଧିଷ୍ଠିର ଦେବା ।
ତୁମ୍ଭେ ଯାଗେ ଯିବ ନିମନ୍ତ୍ରଣେ ଆସି ମୁହିଁ
ସାତଦିନ ରହି ବାହୁଡ଼ିବେ ନରସାଇଁ ।

ଭୀମ କହନ୍ତେ ସେ ମୃଗସେନ ନ ବୁଝିଲା
କାହିଁର ଯୁଧିଷ୍ଠିର ରଜା ବୋଲି ପଚାରିଲା ।
କେବଣ ବଂଶୀ ଆବର କାହା କୋଳେ ଜାତ
କାହାର ନନ୍ଦନ କେବେ ମୁହିଁ ବର୍ଣ୍ଣିଭୂତ ।
ଭୀମସେନ ବୋଲେ ଆମ୍ଭେ ବ୍ୟାସବଂଶୀ ଅଟୁ
ସର୍ବଦା ତାହାଙ୍କ ପାଦତଳେ ଆମ୍ଭେ ଖଟୁ ।
ଏହା ଶୁଣି ମୃଗସେନ କହଇ ସେ ବାଣୀ
ତୁମ୍ଭ ସୁମରନ୍ତେ ଯେବେ ଆସିବେ ସେ ମୁନି
ତୁ ଏବେ ସୁମର ବେଗେ ଆସନ୍ତୁ ସେ ଋଷି
ତେବେ ଜାଣିବା ଯୁଧିଷ୍ଠିର ନିଶ୍ଚେ ବ୍ୟାସବଂଶୀ
ଏହାଶୁଣି ଭୀମସେନ ମନେ ଭପୁକଲା
ବ୍ୟାସ ମହାମୁନିଙ୍କୁ ସେ ସୁମରଣା କଲା ।
ଆଶ୍ରମରେ ବସିଥିଲେ ମହାମୁନି ବ୍ୟାସ
ଆସନ କର୍ମିଲି ଯୋଗ ହୋଇଲା ଅଭ୍ୟାସ ।
ଧ୍ୟାନେ ବସି ମୁନି ବେଗେ ଜାଣି ଯୋଗବଳେ
ଭୀମ ସୁମରୁଛି ବୋଲି ଜାଣିଲେକ ହେଳେ ।
ମନଦଣ୍ଡ ଚଢି ମୁନି ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ମେରୁ ମେଖଳାର ।
ବ୍ୟାସମୁନିଙ୍କୁ ଦେଖିଣ ମୃଗସେନ ଗୁଣି
ନମସ୍କାର କଲେ ଯାଇ ତାହାଙ୍କ ଚରଣ ।
ଉଠ ଉଠ ବୋଲି ମୁନି କଇଲଣ କଲେ
ଭୀମସେନର ଆଡ଼କୁ ପୁଣି ଦୃଷ୍ଟି ଦେଲେ ।
ତହୁଁ ଭୀମସେନ ବ୍ୟାସ ଚରଣେ ନମିଲା
କରଯୋଡ଼ି ତହିଁ ଉଭା ହୋଇଣ ରହିଲା ।
ମୁନି ବୋଇଲେକ ବାବୁ ଶୁଣ ଭୀମସେନ
ଆବର ଯାଗ ରହିଲା କହ କେତେ ଦିନ ।
ଭୀମସେନ ବୋଇଲା ସେ ଅଳ୍ପଦିନ ଅଛି
ତଦନ୍ତ କରଣ ଏହା ବୁଝ ମୁନିବର୍ଯ୍ୟ ।
ନିମନ୍ତ୍ରଣ ଘେନିକରି ଆସିଅଛି ମୁହିଁ
ଯିବ ବେଗେ ରହିବାକୁ ମୋତେ କାଳ ନାହିଁ
ବ୍ୟାସଦେବ ବୋଇଲେ ସେ ଶୁଣ ମୃଗସେନ
ଖୁଡ଼ୁତା ପୁରୁଷ ତୁମ୍ଭେ ଅଟ ଦେନିଜନ ।
ଏଥକୁ ଚିନ୍ତା ନ କର ତୁମ୍ଭ ଆରେ ବାବୁ
ନିମନ୍ତ୍ରଣ ଘେନି ବେଗେ ଯାଗେ ଚଳିଯିବୁ ।
ଭୀମସେନକୁ ବୋଇଲେ ଦିଅ ନିମନ୍ତ୍ରଣ
ତତକ୍ଷଣେ ଭୀମସେନ ଦେଲେ ତାହା ପୁଣ ।

ମୃଗସେନ ବୋଇଲେ ତୁ ଯାଅ ଆଗ ହୋଇ
ତୋହର ପଛରେ ବାବୁ ଯାଉଅଛୁ ମୁହିଁ ।
ଆବର ବୋଇଲା ଯାଗ ହେବ କେଉଁ ଦିନ
ଆଜଠାରୁ ଯାଗ ଅଛି ଅଳପ ସେ ଦିନ ।
ଏଥକୁ ବାବୁ ରେ ଆଉ ବିଳମ୍ବ ନ କର
ଯାଗ ହେବ ବଇଶାଖ ଶୁକ୍ଳ ପଞ୍ଚମୀର ।
ଏ ଦିନ ତୁମ୍ଭେ ସେଠାରେ ପ୍ରବେଶିବ ଯାଇ
ମୁହିଁ ଯାଉଛି ବିଳମ୍ବ ମୋତେ ନ ସହଇ ।
ଏତେ କହି ଭୀମସେନ ହୋଇଲେ ବାହାର
ଅନ୍ତର୍ଦ୍ଧାନ ହୋଇଗଲେ ବ୍ୟାସ ମୁନିବର ।
ତହୁଁ ଭୀମସେନ ଭାନୁମତୀ ପୁରେ ପଶି
ତାଙ୍କୁ ନିମନ୍ତ୍ରଣ ଦେଇ କହୁଁ ପୁଣ ଆସି ।
ଅନେକ ସେ ଗଉରବ କଲା ଭାନୁମନ୍ତ
ଭାନୁମତୀ ରାଣୀର ସେ ଅଟଇ ସେ ତାତ ।
ଲେଖାରେ ତ ଭୀମସେନ ଅଟଇ ଜୁଆଇଁ
ଆନନ୍ଦେ ଅଇଲା ଭୀମ ଗଉରବ ପାଇ ।
ତହୁଁ ସେ ଉଗ୍ରସେନଙ୍କୁ ନିମନ୍ତ୍ରଣ ଦେଲା
ହସ୍ତିନା ନଗରେ ଆସି ପ୍ରବେଶ ହୋଇଲା ।
ଦୁର୍ଯ୍ୟୋଧନ ନୃପଙ୍କୁ କରିଲା ବରଣ
ଏଥୁ ଅନନ୍ତରେ ତୁହୋ ମନୁଷ୍ୟେ ଶୁଣ ।
ଗୋବିନ୍ଦ ଅରଜୁନଙ୍କୁ ପାଶକୁ ଡକାଇ
ସ୍ୱର୍ଗକୁ ଚଳ ତୁ ବେଗେ ନିମନ୍ତ୍ରଣ ନେଇ ।
ଆଟ ଘେନିଣ ଅର୍ଜ୍ଜୁନ ତହୁଁ ଚଳିଗଲେ
ଅମର ଭୁବନେ ଯାଇ ପ୍ରବେଶ ହୋଇଲେ ।
ଆସ୍ଥାନ କରିଣ ବସିଅଛି ସହସ୍ରଯୋନି
ଆସ୍ଥାନ ତଳେ ମିଳିଲେ ଯାଇ ଫାଲଗୁନି ।
ଅମରନାଥଙ୍କୁ ଦେଖି ଦୂରୁଁ ପ୍ରଣମିଲେ
ଶିରେ କରଦେଇ ପଛ ଘୁଞ୍ଚିଣ ରହିଲେ ।
ଅର୍ଜ୍ଜୁନଙ୍କୁ ଜଇଲାଣ କଲେ ସହସ୍ରାକ୍ଷ
କି ନିମନ୍ତେ ଆସିଅଛୁ କହ ରେ ବଚ୍ଛ ।
ପାର୍ଥ ବୋଲେ ଧର୍ମଯାଗ କରିବେ ଯୁଧିଷ୍ଠି
ପ୍ରବର୍ତ୍ତାଇଛନ୍ତି ବ୍ରହ୍ମାସୁତ ତପୋନିଷ୍ଠି ।
ଏହା ଶୁଣି ଇନ୍ଦ୍ରଦେବ ହସିଣ ବୋଇଲେ
ଆଗହୁଁ ସେ କହିଥିଲେ ଆମ୍ଭର ଗୁମୁରେ ।
ଏହି ଯାଗ କଲେ ଧନଧାନ୍ୟ ପ୍ରାପ୍ତ ହେବ
ବହୁଇ ପୁଣ୍ୟ ଆବର ତୁମ୍ଭର ହୋଇବ ।

କର ଯାଗ ବାବୁ ଏଥେ କିଛୁ ନ ବିଚାର
ଯେଉଁ ମତରେ ସନ୍ତୋଷ ହେବେ ବୈଶ୍ୱାନର
ଇନ୍ଦ୍ରଙ୍କ ମୁଖରୁ ସେହୁ ଏସନକ ଶୁଣି
ନିମନ୍ତ୍ରଣ ଯୋଗାଡ଼କୁ ଦେଲେ ଫାଲଗୁନି ।
ନିମନ୍ତ୍ରଣ ଘେନିକରି ଦେବ ସହସ୍ରାକ୍ଷ
ଅର୍ଜ୍ଜୁନକୁ କହିଲେକ ଶୁଣରେ ବିବସ୍ତ୍ର ।
ଏଠାରୁ ବାବୁ ରେ ତୁହି ବେଗ ହୋଇ ଯାଅ
ନାରାୟଣଙ୍କ ଛାମୁରେ ଆମ୍ଭ ବାକ୍ୟ କହ ।
ଅମରନାଥଙ୍କୁ ପାର୍ଥ ନମସ୍କାର କରି
ଥାଟ ଚଳାଇ ଆସଇ ହସ୍ତିନାକୁ ଫେରି ।
ପୁଣିହିଁ ଇନ୍ଦ୍ର ବୋଇଲେ ପାର୍ଥ ମୁଖ ଚାହିଁ
ଯାଗ କେଉଁଦିନ ହେବ ନ କହିଲୁ ଫେଇ ।
ବୈଶାଖ ଶୁକ୍ଳ ପଞ୍ଚମୀ ଗୁରୁବାର ଦିନ
ଯାଗକୁ ଯେ ଅନୁକୂଳ କରିବେ ରାଜନ ।
ଦେବରାଜ ପଚାରନ୍ତେ ଅର୍ଜ୍ଜୁନ କହିଲେ
ପୁଣିହିଁ ଚରଣ ତଳେ ନମସ୍କାର କଲେ ।
ଥାଟ ସୈନ୍ୟ ତାର ସଙ୍ଗେ ଅଛଇ ଅପାର
ବାଦ୍ୟ ନାଦରେ ଉଚ୍ଛୁଳି ପଡ଼େ ସ୍ୱର୍ଗପୁର ।
ମିଳିଲେ ଯାଇ ସେ ତହୁଁ ଦ୍ୱାରାବତୀ ପୁରେ
ପ୍ରବେଶ ହୋଇଲେ ଉଗ୍ରସେନଙ୍କ ଛାମୁରେ ।
ଶିରେ କରଦେଇ ଉଭା ବୀର ଫାଲଗୁନି
ଉଗ୍ରସେନ ଚରଣରେ କରଇ ଦଇଣ୍ଡା ।
ଧର୍ମଯାଗ କରିବେ ସେ ଯୁଧିଷ୍ଠିର ରାୟେ
ଶୁଣି ଉଗ୍ରସେନ ନିମନ୍ତ୍ରଣ ବେଗେ ନିଏ ।
କେବଣ ଦିନ ହୋଇବ ବୋଲି ପଚାରିଲେ
ଶୁଣି ଅରଜୁନ ତାଙ୍କୁ ଏସନ କହିଲେ ।
ବୈଶାଖ ଶୁକ୍ଳ ପଞ୍ଚମୀ ତିଥି ଗୁରୁବାର
ଏହିଦିନ ପ୍ରବେଶିବ ଆମ୍ଭର ରାଜ୍ୟର ।
ଏତେକ କହି ଅର୍ଜ୍ଜୁନ ବେଗେ ଚଳିଗଲେ
ବଳରାମଙ୍କ ଛାମୁରେ ପ୍ରବେଶ ହୋଇଲେ ।
ପାଦେ ପଡ଼ି ଶିରେ କରଦେଇ ଉଭାହେଲେ
ବଳରାମ ଯେ କୁଶଳ ବାରତା ପୁଚ୍ଛିଲେ ।
କି ନିମନ୍ତେ ଆସିଅଛୁ କହ ଫାଲଗୁନି
ଅର୍ଜ୍ଜୁନ କହିଲେ ବଳରାମ ବାକ୍ୟ ଶୁଣି ।
ଧର୍ମଯାଗ କରିବେ ସେ ଯୁଧିଷ୍ଠିର ରାଜନ
ନାରଦ କହିଅଛନ୍ତି ଏଥିର ବିଧାନ ।

ତୁମ୍ଭ ପାଶେ ଆସିଅଛୁ ଘେନି ନିମନ୍ତ୍ରଣ
ଆମ୍ଭର ପୁରକୁ ବିଜେ କରିବ ଆପଣ ।
ରାମ ବୋଇଲେ ଗୋବିନ୍ଦ କହ କାହିଁ ଅଛି
ଅର୍ଜ୍ଜୁନ କହିଲେ ଆମ୍ଭ ସଦନେ ଶ୍ରୀବତ୍ସ ।
କୃଷ୍ଣର ପୁତ୍ରମାନଙ୍କୁ ନିମନ୍ତ୍ରଣ ଦେଲେ
ଦ୍ରୁପଦ ରାଜ୍ୟରେ ଯାଇ ପ୍ରବେଶ ହୋଇଲେ
ବାରତା ପାଇଣ ସେହୁ ଦ୍ରୁପଦେସ୍ୱ ରାୟେ
ଅର୍ଜ୍ଜୁନକୁ ଖଣ୍ଡେ ଦୂରୁଁ ଆସି ଘେନିଯାଏ ।
ଦ୍ରୁପଦ ଦେଖି ଅର୍ଜ୍ଜୁନ ଓଳଗି ହୋଇଲେ
ଅନେକ ହରଷେ ରାଜା କଲ୍ୟାଣ ବାଞ୍ଛିଲେ ।
ଆପଣେ ଦ୍ରୁପଦ ପୁରେ ନଗର ହକାରି
ବୋଇଲେ ରାଜ୍ୟେ ଉତ୍ସବ କରି ବେଗକରି
ରାଜା ଆଜ୍ଞାରେ ନଗର ବେଗେ ଚଳିଗଲେ
ରାଜ୍ୟରେ ଉତ୍ସବ ବିଧିମାନ ଯେ କରିଲେ ।
ଅର୍ଜ୍ଜୁନକୁ ଘେନି ପୁରେ ଦ୍ରୁପଦ ପ୍ରବେଶ
ସିଂହାସନରେ ବସିଲେ ଯାଇ ପଣ୍ଡୁ ଶିଷ୍ୟ ।
ଗଉରବେ ରୁହାଇଲେ ଦ୍ରୁପଦ ରାଜନ
ଷଡ଼ରସରେ ଅର୍ଜ୍ଜୁନ କଲେକ ଭୋଜନ ।
ନିମନ୍ତ୍ରଣ ଯୋଗାଡ଼କୁ ପାର୍ଥ ଦେଲେ ଥୋଇ
ବୋଇଲେ ଯାଗ କରିବେ ଧର୍ମ ନରସାଇଁ ।
ବୈଶାଖ ଶୁକ୍ଳ ପଞ୍ଚମୀ ଗୁରୁବାର ଦିନ
ଗଙ୍ଗା ଖାଇରେ ପ୍ରବେଶ ହୋଇବେ ରାଜନ ।
ଏତେକ କହିଣ ପାର୍ଥ ତହୁଁ ଚଳିଗଲେ
ଭାନୁମନ୍ତ ରାଜା ରାଜ୍ୟେ ପ୍ରବେଶ ହୋଇଲେ
ଦେଖିକରି ମହାରାଜା ଗଉରବ କଲେ
କୃତ୍ୟକୃତ୍ୟ ହୋଇକରି ବେଗେ କୋଳକଲେ
ଆସନ ଦେଇ ତାହାକୁ ବସାଇଲେ ନେଇ
କୁଶଳ ବାରତା ପଚାରନ୍ତି ନରସାଇଁ ।
ଯାଗର ବିଧାନ ପାର୍ଥ ସମସ୍ତ କହିଲେ
ଶୁଣି ଭାନୁମନ୍ତ ରାୟେ ଆନନ୍ଦ ହୋଇଲେ ।
ବୋଇଲେ ଶ୍ରୀମଠାକୁର ଏହିବାଟେ ଗଲେ
ଯାଗର ବିଧାନ ମୋତେ ସମସ୍ତ କହିଲେ ।
ନିମନ୍ତ୍ରଣ ଯୋଗାଡ଼ ଯେ ଦେଇଛନ୍ତି ମୋତେ
ଆଗହୁଁ ଏ କଥା ଶୁଣିଅଛି ବୀର ପାର୍ଥେ ।
ଭାନୁମନ୍ତ ରାଜା ମୁଖୁଁ ଏସନକ ଶୁଣି
ଅର୍ଜ୍ଜୁନ କହନ୍ତି ପୁଣ ଯୋଡ଼ି ବେନିପାଣି ।

ଆବର ତୁ ନିମନ୍ତ୍ରଣ ଘେନ ଶାନ୍ତ୍ରପ୍ରସ୍ଥେ
ଶୁଣିଣ ମନେ ଆନନ୍ଦ ଶାନ୍ତନୁନନ୍ତ ହୁଏ ।
ନିମନ୍ତ୍ରଣ ଯୋଗାଡ଼ ସେ ଦେଲେ ପାର୍ଥ ନେଇ
ବେଗେ ତୁହୋ ରାଜା ଚଳ ବାରୁଣାବନ୍ତହିଁ ।
ବୈଶାଖ ଶୁକ୍ଳ ପଞ୍ଚମୀ ତିଥି ଗୁରୁବାର
ଏ ଦିନ ପ୍ରବେଶ ହେବେ ବାରୁଣାବନ୍ତର ।
ତହିଁ ହସ୍ତିନାପୁରକୁ ଗଲେ ଫାଲଗୁଣୀ
ଅଗସ୍ତି ପାଦରେ ମନ୍ତୁ କରନ୍ତ ଦଇଣୀ ।
ଏଥିଅନ୍ତେ କିସ ହେଲା କହ ମହାସନ୍ତ
ରାଜାର ଉକେଣ୍ଠ ଦେଖି ଅଗସ୍ତି କହନ୍ତ ।
ଶ୍ରୀହରି ସହଦେବଙ୍କୁ ହକାରିଲେ ପାଶ
ମୁନିମାନଙ୍କୁ ଘେନିଣ ଆସେ ମାଦ୍ରୀଶିଷ୍ୟ ।
ସହଦେବ ଗୋବିନ୍ଦଙ୍କ ଆଜ୍ଞା ପରମାଣେ
ସମସ୍ତ ଋଷି ଅଛନ୍ତ ନଇମିଷାରଣ୍ୟେ ।
ଷାଠିଏ ସହସ୍ର ତହିଁ କଲ ନିମନ୍ତ୍ରଣ
ସମସ୍ତେ ବସିଣ ଶୁଣୁଅଛନ୍ତ ପୁରାଣ ।
ସହଦେବେ ଦେଖି ମୁନିମାନେ ବିଚାରନ୍ତ
କେବଣ ରଥୀ ଆସଇ ବୋଲିଣ ଭାବନ୍ତ ।
ନିକଟରେ ସହଦେବ ମିଳିଲେକ ଯାଇ
ନମସ୍କାର କଲେ ସେହୁ ଭୂମିପରେ ଶୋଇ ।
ବ୍ୟାସ ବୋଇଲେ ଅଟଇ ଏତ ସହଦେବ
ଯାଗକୁ କରିବ ନିମନ୍ତ୍ରଣ ଋଷି ସର୍ବ ।
ମୁନିମାନେ ବୋଇଲେ ହେ ସହଦେବ ବୀର
କି ନିମନ୍ତେ ଆଗମନ କହ ତତପର ।
ସହଦେବ କହେ ଧର୍ମ ଆରମ୍ଭିବେ ଯାଗ
ମୁନିମାନେ ଅଗ୍ନିରେଣ ଦେବେ ହବିର୍ଭାଗ ।
ଏତେ କହି ସହଦେବ ନିମନ୍ତ୍ରଣ ଦେଲେ
ବାଲମୀକ ମୁନି ଆଗେ ବାହାର ହୋଇଲେ
ଶୁକ ସନକ ପିପ୍ପଲାୟନ ମୁନି ମୂଳେ
ମାରକଣ୍ଡ ବ୍ରହ୍ମମୁନି କୁମ୍ଭଋଷି ତୁଲେ ।
ଭରଦ୍ୱାଜ ପଉଲସ୍ତି କଣ୍ୱଋଷି ଘେନ
ଅଙ୍ଗିରା ପରାଶର ଯେ ମୁନି ବ୍ରହ୍ମଜ୍ଞାନୀ ।
ଏହାଙ୍କର ଯେତେକ ଶିଷ୍ୟ ସଖାଗଣ ଥିଲେ
ମନଯାନରେ ବାରୁଣାବନ୍ତେ ଚଳିଗଲେ ।
ମୁନିଙ୍କୁ ଦେଖି ଯୁଧିଷ୍ଠି କଲେ ନମସ୍କାର
କଲ୍ୟାଣ ବାଞ୍ଛିଲେ ସର୍ବେ ପ୍ରସାରଣ କର ।
ଗଉରବ ପାଇ ତହିଁ ବସିଲେ ଆସନେ
କହନ୍ତି ଅଗସ୍ତ ମୁନି ବଳଙ୍କ ରାଜନେ ।

## ନକୁଳର କୁମ୍ଭମୁନେ ପୃଥ୍ୱୀ ଧାରଣ

ନକୁଳଙ୍କୁ ଶ୍ରୀହରି ଯେ ହକାରିଣ ପାଶ
ନିମନ୍ତ୍ରଣ ଘେନ ତୁହୋ ପାତାଳରେ ପଶ ।
ବାସୁକି ରାଜା ନିମନ୍ତି ଘେନିଆସ ବାବୁ
ଅନେକ ଥାଟ ସଙ୍ଗରେ ଘେନିଣ ଆସିବୁ ।
ଶୁଭ ଅନୁକୂଳ ଘେନିଗଲ ତହିଁ ବୀର
ପାତାଳପୁରେ ମିଳିଲା ବାସୁକି ଛାମୁର ।
ନମସ୍କାର କରି ଶିରେ କର ନିବେଶିଲା
ବାସୁକି କଲ୍ୟାଣ କରି କୁଶଳ ପୁଚ୍ଛିଲା ।
କିସ ଅର୍ଥେ ଅଇଲୁ ହୋ କହ ବୀରମଣି
ନକୁଳ ବୋଇଲେ ନାଗରାଜା ବାକ୍ୟ ଶୁଣି ।
ଧର୍ମଯାଗ କରିବେ ଯେ ରାଜା ଯୁଧିଷ୍ଠିର
କୃଷ୍ଣ ପେଷିଲେ ହୋ ରାୟେ ତୁମର ଛାମୁର ।
ଆପଣ ତହିଁ ବିଜୟ କରିବ ଏକ୍ଷଣି
ନିମନ୍ତ୍ରଣ ଯୋଗାଡ଼ ମୁଁ ଆସିଅଛୁ ଘେନ ।
ବୈଶାଖ ଶୁକ୍ଳପଞ୍ଚମୀ ଦିନ ଯାଗ ହେବ
ସାତଦିନ ରହି ପୁଣି ଏଠାକୁ ଆସିବ ।
ଏମନ୍ତ ଶୁଣି ବୋଇଲା ବାସୁକି ରାଜନ
ପୃଥ୍ୱୀଭାର ବହିବାକୁ କେ ଅଛି ଭାଜନ ।
ପୃଥ୍ୱୀଭାର ଛାଡ଼ି କହ କେମନ୍ତେ ହୋ ଯିବୁ
ଏ କଥା ବିଚାରି ମୋତେ କହକନା ବାବୁ ।
ଶୁଣିଣ ନକୁଳ ବୀର ବିଚାରଇ ମନେ
ଏଥିର ଚରିତ କିବା ଗୋବିନ୍ଦ ନ ଜାଣେ ।
ତାହାଙ୍କ ବୋଲେ ଅଇଲି ସିନା ମୁଁ ଏଠାକୁ
ବୁଦ୍ଧି ନ ଦିଶଇ କିଛି ପୁଚ୍ଛିବି କାହାକୁ ।
ପଞ୍ଚଭୂତ ଆତ୍ମାରେ ଯେ ଶନ୍ତେ ନାରାୟଣ
ଦୟା କରି ବାରେ ମୋତେ କମଳାରମଣ
ନାରାୟଣ ସୁମରନ୍ତେ ଜ୍ଞାନ ପ୍ରସରିଲା
ବଳ ପରାକ୍ରମ ତାର ବହୁତ ହୋଇଲା ।
ନାଗରାଜା ବାସୁକି ଯେ ପୁଣି ପଚାରଇ
କେତେଦିନ ଯାଏ ଯାଗ ହେବ କହ ତୁହି ।
ନକୁଳ କହିଲା ହେବ ଜାଣ ସାତଦିନ
ଏଥକୁ ଚିନ୍ତା ନ କର ତୁହୋ ନାଗପୁଣ ।

ବାସୁକି ବୋଇଲା ଶୁଣ ମାଦ୍ରୀଦେବୀ ବାଳ
ଛାଡ଼ିଲେ ମୁହିଁ ପୃଥିବୀ ଯିବ ରସାତଳ ।
ବାସୁକି ମୁଖରୁ ଶୁଣି ଏସନକ ବାଣୀ
କୁନ୍ତକରେ ଧରି ବୋଲେ ଛାଡ଼ ତୁ ଧରଣୀ
କୁନ୍ତ ମୁନରେ ଧରିବି ମୁହିଁ ଏହି କ୍ଷିତି
ଏଥିକୁ କିଛି ଚିନ୍ତା ନ କର ନାଗପତି ।
ଏତେକ କହି ନକୁଳ କୁନ୍ତ କରେ ଧରି
ଦକ୍ଷିଣ ପାଦ ଆଗକୁ ଦେଇ ଧୀର କରି ।
ଆପଣା ପାଦର ବୁଢ଼ା ଅଙ୍ଗୁଳି ଉପରେ
କୁନ୍ତକୁ ନେଇ ଥୋଇଲା ବୀର ଯେ ସଧୀରେ
ମୁନ ସଳଖ ହୋଇଲା ଶୁଣ ନାଗରାଣ
ମୁନ ଉପରେ ପୃଥିବୀ ଥୁଅ ତୁ ବହନ ।
ନକୁଳ ବାକ୍ୟେ ବୋଲଇ ସେହି ନାଗରାଜ
ବଡ଼ ପ୍ରତିଜ୍ଞା କରୁ ତୁ ଅଶ୍ୱିନୀ ତନୁଜ ।
ନକୁଳ ବୋଇଲା ମୁହିଁ ଶ୍ରୀହରି ଆଜ୍ଞାରେ
କୁନ୍ତମୁନେ ସପ୍ତଦ୍ୱୀପା ପୃଥ୍ୱୀ ଧରିପାରେ ।
ଏତେ ବୋଲୁଁ ପୃଥ୍ୱୀ ଛାଡ଼ି ଦେଲେ ନାଗରାଣ
ବୋଇଲେ ଧୀରେ ସମ୍ଭାଳ ପଣ୍ଡୁର ନନ୍ଦନ ।
କୁନ୍ତ ମୁନରେ ପୃଥିବୀ ଦେଲା ନେଇ ଥୋଇ
ପବନ ବହିଲେ ଯେସନେ ମେରୁ ନ ଟଳଇ ।
ପୃଥିବୀ ଦେବୀ ଯେ ତିଳେ ମାତ୍ର ନ ଟଳିଲା
ନକୁଳର କୁନ୍ତମୁନେ ନିଶ୍ଚଳ ରହିଲା ।
ଦେଖିଣ ବାସୁକି ରାଜା ତାଟକା ହୋଇଲେ
ଧନ୍ୟ ତୁ ନକୁଳ ବୋଲି ବହୁ ପ୍ରଶଂସିଲେ ।
ଏଡ଼େ ସମର୍ଥ ନାହିଁଟି ତିନପୁର ମଧ୍ୟେ
ନକୁଳ ବୋଇଲେ ଯଜ୍ଞକର ଯାଗେ ହାଦେ
ତୁମ୍ଭେ ଆସିବା ଯାଏ ମୁଁ ଧରିଅଛି ମହୀ
ନକୁଳ ବାକ୍ୟେ ବାସୁକୀ ସଙ୍ଗେ ଘେନି ଅହି ।
ବାରୁଣାବନ୍ତରେ ଯାଇଁ ହୋଇଲା ପ୍ରବେଶ
ଶାରଳା ପାଦେ ଶରଣ ଶ୍ରୀଶାରଳା ଦାସ ।

---

## ଧର୍ମଯଜ୍ଞ

ଏଥିଉତ୍ତାରେ ଯେ ମନୁରାଜା ପଚାରଇ
ଯାଗ ଚରିତ କେମନ୍ତେ କହିବା ଗୋସାଇଁ ।
ନାଗବଳ ସଙ୍ଗେ ଘେନି ଗଲା ନାଗରାୟେ
ଯାଗଶାଳାରେ ପ୍ରବେଶ ଦେଖି ଦେବରାୟେ ।
ସୁଧର୍ମା ସଭା ମଧ୍ୟରେ ନେଇ ବସାଇଲେ
ଯୁଧିଷ୍ଠି ରାଜା ତାହାଙ୍କୁ ଗଉରବ କଲେ ।
ମୁନିମାନେ ବସିଛନ୍ତି ଯେଝା ଆସନରେ
ନିଯୋଗୀ ଲାଗି ଅଛନ୍ତି ତାଙ୍କ ଚରଣରେ ।
ଏହି ସମୟେ ପ୍ରବେଶ ଜରାସନ୍ଧ ରାୟେ
ଗଉରବେ ବସାଇଲେ ତାହାଙ୍କୁ ସଭାଏ ।
ଥାଟ ଘେନି ଆସି ଭୀମସେନ ପ୍ରବେଶିଲା
ଯୁଧିଷ୍ଠି ଶ୍ରୀହରିଙ୍କର ପାଦରେ ନମିଲା ।
ଯାଦବଂଶ ସଙ୍ଗେ ଘେନି ରାଜା ଉଗ୍ରସେନ
ବଳରାମ ସହିତରେ ଶ୍ରୀକୃଷ୍ଣ ନନ୍ଦନ ।
ନାରଦ ମୁନି ସେଠାରେ ପ୍ରବେଶିଲେ ଆସି
ସର୍ବ ଚରିତ କହିଲେ ତାଙ୍କୁ ହୃଷୀକେଶୀ ।
ବଳରାମଙ୍କୁ ଯୁଧିଷ୍ଠି ନମସ୍କାର କଲେ
ଶ୍ରୀହରି ବଳରାମଙ୍କ ଚରଣେ ନମିଲେ ।
ଭାନୁମନ୍ତ ଦ୍ରୁପଦ ଏ ଦୁହେଁ ଆସି ମିଳି
ସମସ୍ତଙ୍କୁ ଗଉରବ କଲେ ବନମାଳୀ ।
ଏଗାର କ୍ଷଉଣୀ ବଳ ମାନଗୋବିନ୍ଦର
ପ୍ରବେଶ ହୋଇଲା ଯାଇଁ ବାରୁଣାବନ୍ତର ।
ଯାଗଶାଳାରେ ମିଳିଲା ଆସି ମୃଗସେନ
ଋଷିଙ୍କ ମଧ୍ୟେ ବ୍ୟାସଙ୍କୁ ଦେଖିଣ ରାଜନ ।
ଆନନ୍ଦ ହୋଇ ସଭାରେ ବସିଲ ସେ ଯାଇ
ଦେବଙ୍କୁ ଘେନି ଅଇଲେ ସ୍ୱର୍ଗପୁରସାଇଁ ।
ବେଷ ଗାଳେ ଭୀମସେନ ଯାଇ ବଜେ କଲା
ଗଉରୀ ଶଉରୀ ନଳ ବଧିରେ ରାନ୍ଧିଲା ।
ଇଚ୍ଛା ଅନୁସାରେ ସୁଖେ ଭୋଜନ କରନ୍ତି
ଅମୃତ ଯୋଗାଡ଼ଭୁଞ୍ଜି ସନ୍ତୋଷ ହୁଅନ୍ତି ।
ଋଷିମାନେ ଫଳମୂଳ ଭୁଞ୍ଜନ୍ତି ଅପାର
ନିଯୋଗୀମାନେ ସେବାରେ ଥାନ୍ତି ନିରନ୍ତର
ମାନଗୋବିନ୍ଦଙ୍କୁ କଲେ ଭଣ୍ଡାରଅଧିକାରୀ
ଭଣ୍ଡାରର ଦ୍ରବ୍ୟ ସବୁ ତାର ମୂଳେ କରି ।
ଅମର ଭଣ୍ଡାର ତାଙ୍କୁ କୁବେର ଯେ ଦେଲା
ବରୁଣ ଆସି ରତନ ଯୋଗାଡ଼ ଯେ ଦେଲା ।
ଫଳମୂଳମାନ ଯେତେ ଶବର ଆଣଇ
ପ୍ରଭୁ ଆଜ୍ଞା ମେଣ୍ଟିବାକୁ କେହି ଶକ୍ୟହୋଇ
ଏଥୁଅନନ୍ତରେ ହେଲା ଯେବଣ ବିଧାନ
ଯାଗଶାଳ ଭୂମିକି ଯେ କରନ୍ତି ଶୋଧନ ।

ସୂତା ପକାଇଣ ଯାଗ କୁଣ୍ଡକୁ ଖୋଳିଲେ
ଅଗ୍ନି କ ଦେଇ ତହିଁର ମଧ୍ୟରେ ସ୍ଥାପିଲେ ।
ଦିବ୍ୟ ବେଶ ହୋଇଣ ଯେ ଯୁଧିଷ୍ଠିର ରାଏ
ପାଞ୍ଚାଳଦୁହିତା କୋଳେ ଯାଗରେ ବିଜଏ ।
ଗୋତ୍ର ଉଚ୍ଚାରନ୍ତି ତହିଁ ବ୍ୟାସ ମହାମୁନି
ବରୁଣ ପୂଜା ସାରିଣ ବସୁ କରେ ଘେନି ।
ଘୃତ ଢାଳ ଦେଇ କୁଣ୍ଡେ ପୂଜିଲେ ଅନଳ
ପଞ୍ଚଶିଖା ଘେନି ଜଳି ଉଠିଲା ପ୍ରବଳ ।
ସନ୍ତୋଷେ ଘୃତ ଭୋଜନ କରେ ବୈଶ୍ୱାନର
ମୁନିମାନଙ୍କୁ ବରିଲେ ରାଜା ଯୁଧିଷ୍ଠିର ।
ବ୍ରହ୍ମା ହୋଇଣ ହୁଅନ୍ତି ମାରକଣ୍ଡ ଋଷି
ସପ୍ତଋଷିମାନେ ଯାଗ କୁଣ୍ଡପାଖେ ବସି ।
ପ୍ରଥମ ଆହୁତି ଦେଲେ ଇନ୍ଦ୍ର ମନ୍ତ୍ର ପଢ଼ି
ତହିଁ ସବୁ ଦେବତାଙ୍କୁ ଆହୁତି ଯେ ବାଢ଼ି ।
ପ୍ରଥମ ଦିନରେ ହେଲା ଆହୁତି ଯେ ଶେଷ
ରାତି ପାହିଲା ଆଦିତ୍ୟ ହୋଇଲେ ପ୍ରକାଶ ।
ନିତ୍ୟକର୍ମମାନ ସାରି ମୁନିଏ ଆଇଲେ
ନୃପତିମାନେ ଆସିଣ ସଭାରେ ବସିଲେ ।
ଯୁଧିଷ୍ଠିର ନିତ୍ୟକର୍ମ ସାରି କଲେ ବିଜେ
ବେଦମନ୍ତ୍ର ଉଚ୍ଚାରନ୍ତି ବସି ଭରଦ୍ୱାଜେ ।
ଦୁଃଖୀ ଦରିଦ୍ରଙ୍କୁ ଦେଖି ଦେଉଛନ୍ତି ଧନ
କାହାକୁ ଦେଇ ବସନ କରାନ୍ତି ଭୋଜନ ।
ନାରାୟଣ ସୁବର୍ଣ୍ଣର ବେତ କରେ ଧରି
ପଡ଼ିହାରୀ ପଣେ ମୁଣ୍ଡେ ଶାଢ଼ୀ ବାନ୍ଧି କରି ।
ହବି ପାଇ ଦେବତାଏ ହେଲେ ଅତି ତୋଷ
ଦ୍ୱିତୀୟ ଯାଇ ତୃତୀୟ ଦିନ ଯେ ପ୍ରବେଶ ।
ଦିନକୁ ଦିନ ଅଗ୍ନିର ତେଜ ବଳାଇଲା
ମହାଗ୍ନି ଯେ ତାହାଙ୍କର ଦେହୁ ଛାଡ଼ିଗଲା ।
ଚତୁର୍ଥ ପଞ୍ଚମ ଦିନ ଗଲା ଏହିରୂପେ
ଆହୁତି ପାଇ ଅନଳ ଆକାଶକୁ କ୍ଷେପେ ।
ଦକ୍ଷିଣାବର୍ତ୍ତେ ଭ୍ରମଣ କରେ ଶିଖା ତାର
ଦେଖି ପରମ ସନ୍ତୋଷ ହେଲେ ମୁନିବର ।
ଷଷ୍ଠ ସପତମ ଦିନେ ଯାଗ ହେଲା ଶେଷ
ଦେବ ଆହୁତି ପାଇଣ ହୋଇଲେ ସନ୍ତୋଷ
କଲ୍ୟାଣ କଲେ ତୁ ଶତ୍ରୁ ମାରି ହୁଅ ରାଜା
ଧାର୍ମିକପଣେ ମହୀରେ ଉଡୁ ତୋର ଧ୍ୱଜା ।

ସଦା ଦୟା କରିଥାନ୍ତୁ ତୋତେ ନାରାୟଣ
ଏମନ୍ତ ଯେ ଦେବେ କଲେ ବହୁତ କଲ୍ୟାଣ ।
ମାନଗୋବିନ୍ଦ ଭଣ୍ଡାର ଅଧିକାରୀ ହୋଇ
ଧନ ରତ୍ନ ଦେଲା ଯେତେ କଷ୍ଟ ନ ସରଇ ।
ବିପ୍ରେ ଦାନ ପାଇ ତୋଷେ କରନ୍ତି କଲ୍ୟାଣ
ମୁନିଏ ଦକ୍ଷିଣା ପାଇ ହରଷିତମନ ।
ଏହିରୂପେ ଧର୍ମଯାଗ ହେଲା ସମାପତ
ମୁନି ବୋଇଲେ ମେଲାଣି କର ନରନାଥ ।
ଯୁଧିଷ୍ଠି ବୋଇଲେ ଅର୍ଘ୍ୟ ଦେବାଇଁ କାହାକୁ
ବିଚାରି କହ ସମସ୍ତ ନୃପତି ଆମ୍ଭଙ୍କୁ ।
ନାରଦ ବୋଇଲେ ତୁ ହୋ ରାଜା କି ବିଚାରୁ
ଅଧିକ ଜଣେ କେ ଅଛି ବାସୁଦେବଠାରୁ ।
ଯଜ୍ଞପତି ବାସୁଦେବ ତାଙ୍କୁ ଅର୍ଘ୍ୟ ଦିଅ
ଏମନ୍ତ ଶୁଣି ବୋଇଲେ ବସିଥିବା ରାଏ ।
ନାରଦ ଯାହା କହିଲେ ତାହାହିଁ ପ୍ରମାଣ
ଅର୍ଘ୍ୟ ଦିଅ ନେଇ ତୁମ୍ଭେ ଗୋବିନ୍ଦ ଚରଣ ।
ବ୍ରହ୍ମା ଯେବଣ ପାଦକୁ ନ ପାରିଲା ଧୋଇ
ଯେ ପାଦରେ ସୁରନଦୀ ଗୁପତ ହୁଅଇ ।
ସେ ପାଦକୁ ଧୁଅ ଉଠି ଯୁଧିଷ୍ଠି ରାଜନ
ପୂର୍ବଜନ୍ମ ପାପମାନ କର ହେ ଖଣ୍ଡନ ।
ଏମନ୍ତ ଶୁଣି ଯୁଧିଷ୍ଠି ଅର୍ଘ୍ୟ ଘେନି କରେ
ଆନନ୍ଦ ହୋଇ ଢାଳିଲେ ଗୋବିନ୍ଦ ପୟରେ ।
ଅଭୟ ଚରଣ ପୂଜା ପାଇଲେ ମୁକୁନ୍ଦ
ମୁନିଙ୍କି ମେଲାଣି ଦେଲେ ଯୁଧିଷ୍ଠି ନୃପତି ।
ରାଜାମାନଙ୍କୁ ବହୁତ କାର୍ପଣ୍ୟ ହୋଇଲା
ନାଗରାଜାଙ୍କୁ ଚାହିଁଣ ଶ୍ରୀହରି ପୁଚ୍ଛିଲେ ।
ତୁମ୍ଭେ ତ ଅଇଲ ପୃଥ୍ୱୀ କାହା ଶିରେ ଦେଇ
ସାତଦିନ ହେଲା ରସାତଳକୁ ନ ଯାଇ ।
ବାସୁକି ବୋଇଲେ ହରି ମାଦ୍ରୀର ନନ୍ଦନ
ପୃଥ୍ୱୀ ଧରିଛି ସଧୀରେ ଦେଇ କୁନ୍ତମୁନି ।
ଏମନ୍ତ ଶୁଣି ନୃପତିମାନେ ବିଚାରନ୍ତି
ନକୁଳ ସମାନ ତିନିପୁରରେ ନାହିଁ କ୍ଷତ୍ରୀ ।
କୁନ୍ତମୁନେ ସାତଦିନ ପୃଥ୍ୱୀକି ଧରିଲା
ଆଚମ୍ବିତ ପ୍ରାୟ ଏହା ଆମ୍ଭଙ୍କୁ ଲାଗିଲା ।
ବାସୁକି ମୁଖକୁ ଚାହିଁ ବୋଇଲେ ଶ୍ରୀହରି
କୁନ୍ତମୁନେ ମହୀଭର ରହିଲା କପରି ।

ଅସମ୍ଭବ କଥାଗୋଟି କହୁଛ କେମନ୍ତେ
ବାସୁକୀ ବୋଇଲା ଯେବେ ନ ଗଲ ପରତେ ।
ଦେଖିବ ଆସ ମୋ ସଙ୍ଗେ ଆହେ ବାସୁଦେବ
ନ ପୁଣ ମହୀର ଭାର ସହି ନ ପାରିବ ।
ସାତଦିନ ହେଲାଣି ଯେ ବହିଅଛୁ ମହୀ
ଆସ ମୋ ସଙ୍ଗେ ତୁରିତେ ଯିବା ଶବଗ୍ରାହୀ ।
ଏତେକ କହି ଗୋବିନ୍ଦ କରକୁ ଧଇଲା
ପାତାଳପୁରକୁ ସତ୍ୱେ ସଙ୍ଗେ ଘେନିଗଲା ।
ଦେଖିଲେ କୁନ୍ତମୁନରେ ରହିଅଛୁ ମହୀ
ଯୋହ୍ନ ଯେସନେ ବାଳକ କରେ ରହିଥାଇ
ଦେଖି ଆଶ୍ଚର୍ଯ୍ୟ ହୋଇଲେ ପ୍ରଭୁ ଭଗବାନ
ବାସୁକୀକୁ କହିଲେ ତୁ ଯାଅ ହେ ରାଜନ ।
ଆମ୍ଭେ ଯାଉଅଛୁ ଏବେ ବାରୁଣାବନ୍ତକୁ
ଏମନ୍ତ କହି ଅଇଲେ ମର୍ତ୍ତ୍ୟ ମଣ୍ଡଳକୁ ।
ବାସୁକୀ ଯାଇଁ ମହୀକୁ ବସାଇଲା ଶିରେ
ନକୁଳ କୁନ୍ତମୁନକୁ ଛାଡ଼ିଲା ସଧୀରେ ।
ବାସୁକୀଠାରୁ ମେଲାଣି ମାଗିଣ ଅଇଲା
ବାରୁଣାବନ୍ତରେ ଆସି ପ୍ରବେଶ ହୋଇଲା ।
ଶ୍ରୀହରି ବୋଇଲେ ଥିଲ ଆଜଯାଏ କାହିଁ
ନକୁଳ ବୋଇଲା ମୁଁ ଯେ ଧରିଥିଲି ମହୀ ।
ବାସୁକୀ ବୋଇଲା ପୃଥ୍ୱୀ ଛାଡ଼ି ମୁଁ କେମନ୍ତେ
ଯାଗକୁ ଯିବ ରେ ବାବୁ ବରୁରି ତୁ ଚତେ ।
ମୁହିଁ ବୋଇଲି ମହୀକୁ ଧରିବି ମୁଁ କୁନ୍ତେ
ଏହା କହି କୁନ୍ତ ଧରି ବସନ୍ତେ ନିଶ୍ଚିନ୍ତେ ।
ବାସୁକୀ ଶିରକୁ କାଢ଼ିନେଲା ଧୀରେ ଧୀରେ
ସାତଦିନ ଯାଏ ଥିଲା ସେ କୁନ୍ତମୁନରେ ।
ମହୀକି ପୁଣି ବହିଲା ବାସୁକୀ ତା ଶିରେ
ମୁହିଁ ତେଣୁ ଅଇଲଇଁ ବାରୁଣାବନ୍ତରେ ।
ଏମନ୍ତ ଶୁଣି ନୃପତିମାନେ କଲେ ଭୟ
ଧନ୍ୟ ବଳବନ୍ତ ତୁହି ମାଦ୍ରୀର ତନୟ ।
କଉରବେ ଶୁଣି ମନେ ମହାଭୟ କଲେ
ମେଲାଣି ମାଗି ସେ ଯାହା ପୁରେ ଚଳିଗଲେ ।
ନମସ୍ତେ କମଳା ମାଗୋ ନମୋ ନାରାୟଣୀ
ଏ ସଂସାରଜନେ ମାଗୋ ତୋ ନାମ ବଖାଣି
ଦୁର୍ଗତିଖଣ୍ଡିନୀ ମାଗୋ ତୁ ପଦ୍ମଆସନା
ଅରକ୍ଷିତ ଜନଙ୍କର ଦୁଃଖ ବିନାଶିନୀ ।
ନିତ୍ୟ ଯେ ତୋର ନାମକୁ କରଇ ସ୍ମରଣ
ନାନା ଦୁର୍ଗତି ତାହାର ହୁଅଇ ଖଣ୍ଡନ ।
ମାଳଣିର ବଲ୍ଲଭ ଯେ ପ୍ରଭୁ ନାରାୟଣ
ଶାରଳା ଦାସ ତୋହର ଚରଣେ ଶରଣ
ଜୟ ତୁ ନାରାୟଣୀ ଗୋ ଅନାଦି ଶକତି
ପରମ ବୈଷ୍ଣବୀ ତୁହି ଅଟୁ ଜଗଧାତ୍ରୀ ।
ତୋହର ବୁଦ୍ଧି ବଳେ ଯେ ରକ୍ତବୀର୍ଯ୍ୟ କ୍ଷୟ
ଦେବାସୁର ନରଙ୍କୁ ତୁ ଦେଲୁ ଯେ ଅଭୟ ।
ରକ୍ତବୀର୍ଯ୍ୟନାଶିନୀ ଗୋ ବୋଲି ତେଣୁ ତୋତେ
ଶାରଳାରୂପେ ତୁ ଦୟା କଲୁ ମାତ ମୋତେ ।

---

## ଶୋଭାବତୀ ହରଣ

ଅଗସ୍ତି କହନ୍ତି ତୁହେ ଶୁଣ ମନୁରାଣ
ଏହାପରେ ହେବ ଶୋଭାବତୀର ହରଣ ।
କହ ମୁନିବର ମୋତେ ଶୁଦ୍ଧଚିତ୍ତ ହୋଇ
ଦୁର୍ଗ୍ୟା ଦେଇ ଘୃତ ମୋତେ ରଖିଛ ଲୁଚାଇ
ନମସ୍ତେ କମଳା ମାଗୋ ନମୋ ନାରାୟଣୀ
ସଂସାର ଜନେ ତୋହର ନାମକୁ ବଖାଣି ।
ଦୁର୍ଗତି ଖଣ୍ଡିନୀ ମାଗୋ କମଳଆସନୀ
ଅରକ୍ଷ ଜନର ତୁହି ଦୁଃଖ ବିନାଶିନୀ ।
ନିତ୍ୟ ତୋର ନାମ ମୁହିଁ କରେ ସୁମରଣ
ନାନା ଦୁର୍ଗତିରୁ ପୁଣି ହୁଅଇ ମୋକ୍ଷଣ ।
ସୁଦୟା ଚିତ୍ତରେ ମାଗୋ ଦୟାକର ମୋତେ
ଶାରଳା ଦାସକୁ ରକ୍ଷାକର ଜଗନ୍ମାତେ ।
ବନ୍ଦଇ ଶ୍ରୀ ବାକ୍ୟଦେବୀ ବ୍ରହ୍ମାର ଦୁଲଣୀ
ସୁଜ୍ଞଜନେ ନିତ୍ୟ ଯାର ନାମକୁ ବଖାଣି ।
ସମସ୍ତ ଜନ କଣ୍ଠରେ ମାଗୋ ବସିଥାଉ
ପୁରାଣ ଲେଖିନ ଗୀତ ସଦା କହିଦେଉ ।
ତୋହର ସୁଦୟା ମାଗୋ ଯାହାଠାରେ ନାହିଁ
ଜଗତରେ ସେହି ପ୍ରାଣୀ ପୂଜିତ ନ ହୋଇ ।
ଯାହାରଠାରେ ତୋହର ସୁଦୟା ଯେ ଅଛି
ଜଳ ସ୍ଥଳ ଅନଳେ ତା ଭୟ ନାହିଁ କିଛି ।
ମୁହିଁ ମାଗୋ ଅରକ୍ଷିତ ଦୟା ମୋତେ କଲୁ
କଣ୍ଠରେ ବସିଣ ମହାଭାରତ କହିଲୁ ।
ଏଣିକି ଯେ ପଦ ମୋତେ ନୋହିଲେକ ଦୃଶ୍ୟ
ଅପଣ୍ଡିତ କରିବେକ ମୋତେ ଉପହାସ ।

ମୂର୍ଖ ଅପଣ୍ଡିତ ଜନେ ବନ୍ଦୁ ମୁଁ ଡରଇ
ସାଧୁଜନ ମାନଙ୍କର ଚରଣେ ନମଇଁ ।
ନମଇଁ ମୁଁ ବାକ୍ୟଦେବୀ ଚରଣକମଳେ
ଶାରଳା ଦାସକୁ ରକ୍ଷା କର ମା ଶାରଳେ ।
ବଳଙ୍କ ଦେଶର ରଜା ମନୁ ମହାରାସ୍ତେ
ଅଗସ୍ତିଙ୍କୁ କହିଲେ ଯେ ବଦ୍ଧୃତ ବନସ୍ତେ ।
ଶୁଣିଲି ମୁଁ ମଧପଙ୍କ ତୁମ୍ଭ ପରସାଦେ
ତରିଲି ମୁଁ ନାନା ଦୁର୍ଗତିରୁ ଅପ୍ରମାଦେ ।
ଶାମ୍ବ ପ୍ରଦ୍ୟୁମ୍ନ ଏ ବେନିଭାଇ ବନ୍ଧ ହେଲେ
ଆବର ଶ୍ରୀକୃଷ୍ଣ ସର୍ବସ୍ୱନ ଯେ ହୋଇଲେ ।
ଶୁଣି ହସିଲେ ଯେ ଘଟସୁତ-ମୁନିବର
ଯାହା ତୁହି ପଚ୍ଛିଲୁ ଶୁଣ ଦଣ୍ଡଧର ।
ଦୁଇ ଭାରିଯା କାହାର ତିନି କାର ହୋଇ ।
କେବଣ ପୁତ୍ରର ଏକ ଭାରିଯା ଅଟଇ ।
ଏମନ୍ତ ଷଠିଏସହସ୍ର ଅଶୀଏ କୁମରେ
ଭୋଗ କରନ୍ତି ସମସ୍ତ ପୁତ୍ର ଦ୍ୱାରକାରେ ।
ଯେ ଯାହାର ମନ୍ଦିରରେ ସୁଖେଣ ଥାଆନ୍ତି
ନାନା କଉତୁକରେ ସେ ଦିନ ହରୁଥାନ୍ତି ।
ଶାମ୍ବ ନାମେ ଅଟେ ପୁଣ ଯେବଣ କୁମର
ଚନ୍ଦ୍ରାବତୀ ପୁରେ ସେହୁ ଥାଏ ନିରନ୍ତର ।
ନିର୍ମାଣ କରିଣ ଏକ ଚନ୍ଦ୍ରଶାଳା ପୁର
ସେ ପୁରେ ଭୋଗ ବିଳାସ କରଇ କୁମର ।
ଏମନ୍ତରେ କେତେହେଁକ ଦିନ ବହିଗଲା
ଚନ୍ଦ୍ରାବତୀ ତୁଲେ ତାର ପୀରତି ବଢ଼ିଲା ।
ଦୁର୍ଯ୍ୟୋଧନ ରଜାର ଯେ ଅଟଇ ଦୁହିତା
ରୂପରେ ସେ ସରିସମ ଅଟଇ ପାର୍ବତୀ ।
ଶାମ୍ବକୁମର ତାହାକୁ ନ ଛାଡ଼ଇ କ୍ଷଣେ
ଚନ୍ଦ୍ରାବତୀ ପାଶରେ ସେ ଥାଏ ଅନୁଦିନେ ।
ଶୁଣ ଆହୋ ମହାରଜା ବଦନ୍ତି ଅଗସ୍ତି
ଏବେ ପୁଣ ଯାହା ହେଲ ଦଇବର ଗତି ।
ଏକ ଦିନକରେ ମୁନି ନାରଦ ଅଇଲେ
ଦ୍ୱାରକାପୁର ମଧ୍ୟରେ ଆସି ବିଜେ କଲେ ।
କିସା କଉପୁନି ପିନ୍ଧି ଦିବ୍ୟବେଶ ହୋଇ
ଭସ୍ମ ବିଲେପନେ ତାଙ୍କ କାୟ ଗୋଟି ଶୋହି
ଦଣ୍ଡ କମଣ୍ଡଳୁ ମୁନି ହସ୍ତେ ଘେନିଛନ୍ତି
କଳି ଝୋକଣ୍ଡି ମୁଣି ସେ କାଖରେ ମାକନ୍ତି ।

ସ୍ୱର୍ଗପୁର ତେଜ ମୁନି ଆସି ମର୍ତ୍ତ୍ୟପୁରେ
ନିତ୍ୟ ଭ୍ରମଣ କରନ୍ତି ଯେହ୍ନେ ତିନିପୁରେ ।
ଭ୍ରମି ଭ୍ରମି ଦ୍ୱାରକାରେ ଯାଇ ପ୍ରବେଶିଲେ
ଉଗ୍ରସେନ ଆସ୍ଥାନରେ ପ୍ରବେଶ ହୋଇଲେ ।
ମୁନିଙ୍କୁ ଦେଖିଣ ତହୁଁ ଉଠିଲେ ସମସ୍ତେ
ନମସ୍କାର କଲେ ସର୍ବେ ମୁନି ପାଦାଗ୍ରତେ ।
ଗଙ୍ଗାଜଳ ଘେନି ତାଙ୍କ ଚରଣ ଧୋଇଲେ
ପାଦ ଉଦକ ନେଇଣ ଗର୍ଭକୁ କ୍ଷେପିଲେ ।
ପାଦାସନ ଦେଇ ତାଙ୍କୁ ବସାଇଲେ ଧୀରେ
ମୁନି ତାହାଙ୍କୁ କୁଶଳ ବାରତା ପୁଚ୍ଛିଲେ ।
ସମସ୍ତ କୁଶଳ ତୁ ହୋ ଶୁଣ ଉଗ୍ରସେନ
କଲ୍ୟାଣ କରି ଉଠିଲେ ତହୁଁ ତପୋଧନ ।
ମେଲାଣି ମାଗିଣ ତହୁଁ ବାହାର ହୋଇଲେ
ବଳରାମଙ୍କ ନିବରେ ଯାଇଣ ମିଳିଲେ ।
ଦେଖିକରି ବଳରାମ ଉଠିଲେ ବହନ
ନମସ୍କାର କଲେ ଦେବ ମୁନିଙ୍କ ଚରଣ ।
କଲ୍ୟାଣ କରି ବୋଇଲେ ତାଙ୍କୁ ମହାମୁନି
ସର୍ବ କୁଶଳ ତୁମ୍ଭର କହ ହଳପାଣି ।
ହଳୀ ବୋଇଲେ ହେ ମୁନି ଆମ୍ଭର କୁଶଳ
କେଉଁ ଭୁବନୁ ଅଇଲ ଆହେ ତପଶୀଳ ।
ନାରଦ ବୋଇଲେ ଆମ୍ଭେ ମର୍ତ୍ତ୍ୟେ ଭ୍ରମୁଥିଲୁ
ତୁମ୍ଭଙ୍କୁ ସଙ୍ଖୋଳିବାକୁ ଏଠାକୁ ଅଇଲୁ ।
ସେଠାରୁ ମେଲାଣି ମାଗି ହୋଇଲେ ବାହାର
ଯାଇଣ ମିଳିଲେ ମୁନି ଶ୍ରୀକୃଷ୍ଣ ନିବର ।
ଆସ୍ଥାନରେ ବିଜେ କରିଛନ୍ତି ନରହରି
ସେଠାରେ ଯାଇ ପ୍ରବେଶ ହେଲେ ତପସ୍ୱୀ ।
ନାରଦଙ୍କୁ ଦେଖି ଦେବ ଶ୍ରୀକୃଷ୍ଣ ଉଠିଲେ
ପ୍ରଣାମ କରି ସମ୍ମୁଖରେ ଉଭା ସେ ହୋଇଲେ ।
ଗଙ୍ଗାଜଳେ ମୁନିଙ୍କର ଚରଣ ଧୋଇଲେ
ପାଦ ଉଦକ ନେଇଣ ଗର୍ଭକୁ କ୍ଷେପିଲେ ।
ସକଳ ବାରତା ପଚାରନ୍ତି ନରହରି
କହୋ ମୁନିବର ମୋତେ ଅଇଲ ସଙ୍ଖୋଳି
ନାରଦ ବୋଇଲେ ଆମ୍ଭେ ମର୍ତ୍ତ୍ୟେ ଆସିଥିଲୁ
ତୁମ୍ଭଙ୍କୁ ସଙ୍ଖୋଳିବାକୁ ଏଠାକୁ ଅଇଲୁ ।
ଯାଉଅଛୁ ତୁମ୍ଭ ନିକଟରୁ ବାସୁଦେବ
ଶ୍ରୀକୃଷ୍ଣ ବୋଇଲେ କ୍ଷଣେ ରହ ମୁନିଦେବ ।

ନାରଦ ବୋଇଲେ ହର ନ ଜାଣ ମୋ ଗତି
ଏକସ୍ଥାନେ ନ ରହଇ ମୋହର ପ୍ରକୃତି ।
କଳହପ୍ରିୟ ମୁଁ କଳି ଘେନି ବୁଲୁଥାଇ
ତ୍ରିଭୁବନରେ ଯହିଁ ଯେତେ କଥା ହୋଇ ।
ସକଳ ଚରିତ ମୁହିଁ ଜାଣେ ପରମାଣି
ତେଣୁ କହନ୍ତି କଳହପ୍ରିୟ ମୋତେ ସ୍ୱାମି ।
ଏତେ କହିଣ ସେଠାରୁ ବାହାର ହୋଇଲେ
ପ୍ରଦ୍ୟୁମ୍ନ ପୁରରେ ମୁନି ଯାଇଣ ମିଳିଲେ ।
ଦେଖିଣ ପ୍ରଦ୍ୟୁମ୍ନ ତାଙ୍କୁ ନମସ୍କାର କଲା
ମୁନିଙ୍କି ସେ ନେଇ ଦିବ୍ୟାସନେ ବସାଇଲା ।
ସମସ୍ତ ଚରିତ ମୁନି ତାଙ୍କୁ ପଚାରିଲେ
ସେଠାରୁ ତତକ୍ଷଣେ ବାହାର ହୋଇଲେ
ଶାମ୍ବକୁମର ମନ୍ଦିରେ ମିଳିଲେକ ଯାଇ
ଦେଖିଲେ ସେ ପୁରେ ଜଣେ ମାତ୍ର କେହି ନାହିଁ
ଭିତର ମହଲେ ଥାଇ ଜାଣିଣ କୁମର
ବୋଇଲେ ମୋ ପୁରେ ବିଜେକଲେ ମୁନିବର
ବେଗେ ଆସି ନାରଦଙ୍କ ଚରଣ ବନ୍ଦିଲେ
ମୁନିବରଙ୍କ କୁଶଳ ବାରତା ପୁଛିଲେ ।
ନମସ୍କାର କରିଣ ସେ ବୋଲଇ ବଚନ
ଆଜ ମୋ ଭାଗ୍ୟ ଦେଖିଲି ବ୍ରହ୍ମାଙ୍କ ନନ୍ଦନ ।
ଭିତରେ ସେ ଚନ୍ଦ୍ରାବତୀ କଲେ ନମସ୍କାର
କଇଲଣ କର ମୋତେ ଆହେ ମୁନିବର ।
ନାରଦ ବୋଇଲେ ହୁଅ ସଉଭାଗୀ ପୁଣ
ପୁତ୍ର ପୌତ୍ର ତୋହର ଯେ ହୁଅନ୍ତୁ ବର୍ଦ୍ଧନ ।
ଏତେକ କଲ୍ୟାଣ ଯହୁଁ ନାରଦ କରିଲେ
ଶୁଣିକରି ଚନ୍ଦ୍ରାବତୀ ହରଷ ହୋଇଲେ ।
ଗୌରବ ପାଇ ନାରଦ ବସିଲେ ସେଠାରେ
କନକଚମ୍ପା ଗୋଟିଏ ଘେନିଥିଲେ କରେ ।
ଚନ୍ଦ୍ରାବତୀ ହସ୍ତକୁ ତା ବଢ଼ାଇଣ ଦେଲେ
ଏ ପୁଷ୍ପ ଗୋଟିକୁ ମାଏ ଘେନ ଗୋ ବୋଇଲେ
ହସ୍ତ ପ୍ରସାରଣ ପୁଷ୍ପ ନେଲା ଚନ୍ଦ୍ରାବତୀ
ପୁଷ୍ପ ପାଇଣ ଆନନ୍ଦ ଦୁର୍ଯ୍ୟୋଧନ ପୁତ୍ରୀ
ମୁନିଙ୍କି ବୋଲେ ଶୁଣିବା ହେଉ ହେ ଗୋସାଇଁ
ଏହି ପୁଷ୍ପଗୋଟି ଦେବ ଫୁଟିଥିଲା କାହିଁ ।
ମୁନି ବୋଲେ ପୁଷ୍ପ ଅଛି ନନ୍ଦନ ବନରେ
ଆମ୍ଭେ ଯେ ଅଇଲୁ ସେହି ତୋହର ବାଟରେ
ସେ ନନ୍ଦନ ତୋଟାବାଟେ ଆମ୍ଭେ ଯେ ଅଇଲୁ
ଶରଧାରେ ଆମ୍ଭେ ପୁଷ୍ପ ଗୋଟାଏ ଆଣିଲୁ ।
ସମର୍ପୁ ଅଛୁ ଏ ପୁଷ୍ପଗୋଟି ତୋର ହସ୍ତେ
ଏ ପୁଷ୍ପ ମହିମା ଶୁଣ କହୁଅଛୁ ତୋତେ ।
ଗଉରୀଙ୍କି ଏହି ପୁଷ୍ପ ପୂଜିଲେକ ପୁଣ
ପୁତ୍ରବତୀ ସୁଲକ୍ଷଣୀ ହେବେ ନାରୀଗଣ ।
ସ୍ୱାମୀରେ ସେ ସଉଭାଗୀ ହୋଇ ଧନ ହରି
ଅନ୍ତମେ ବସଇ ଯାଇ ବଇକୁଣ୍ଠ ପୁରୀ ।
ନାରଦଙ୍କ ମୁଖୁଁ ଚନ୍ଦ୍ରାବତୀ ଏହା ଶୁଣି
ପୁଣ ପଚାରଇ ଦୁର୍ଯ୍ୟୋଧନର ନନ୍ଦିନୀ ।
ବୋଲଇ ହେ ମୁନିବର ସାବଧାନେ ଶୁଣ
ଏ ପୁଷ୍ପେ ପୂଜିଲେ ଆଉ ଅଛି କି ବିଧାନ ।
ନାରଦ ବୋଲେ ବିଧାନ ଅଛି ଯେ ପ୍ରକାର
କହିବା ତୋହର ଆଗେ ଏଥିର ବିସ୍ତର ।
କନକ ଚମ୍ପା ପୁଷ୍ପରୁ ଆଠୋଟି ଘେନିବ
ସୁବର୍ଣ୍ଣର ଆଠଗୋଟି ସୃଜିଲ ହୋଇବ ।
ନାରଙ୍ଗ କମଳା ରମ୍ଭା ଟଭା ନାରକେଳ
ପନସ ଲେମ୍ବୁ ଯେ ଚୂତ ଆଦି ଅଷ୍ଟଫଳ ।
ପ୍ରତ୍ୟେକରୁ ଆଠଗୋଟି ଲେଖାଏଁ ଆଣିବ
ସୁବର୍ଣ୍ଣର ଅଷ୍ଟନାଡ଼ୁ ଭିଆଣ କରିବ ।
ଏହିପରି ଫଳମାନ କରିଣ ଭିଆଣ
ଶ୍ୱେତ ବସ୍ତ୍ରରେ କରିବ ଗୋଟିଏ ଆସନ ।
ଧଳାଶାକରେ ଆଠୋଟି ଲଡ଼ୁ ଯେ କରିବ
ଶ୍ୱେତଖଣ୍ଡ ମଣ୍ଡା ଆଠଗୋଟି ଭିଆଇବ ।
ଗୁଆ ମୂଳରୁ ପେଣ୍ଡାଏ ରଖିବ ତହିଁରେ
ତୁଳସୀର ଦଳ ନେଇ ଥୋଇବ ଉପରେ ।
ଗଉରୀଙ୍କି ପୂଜିବ ଏ ପୁଷ୍ପ ତହିଁ ଦେଇ
ତେବେ ତୋତେ ସୁପ୍ରସନ୍ନ ହେବେ ମହାମାୟୀ
ପ୍ରସନ୍ନ ଚିତ୍ତରେ ବର ଦେବେ ଶାକମ୍ଭରୀ
ଏହି ବିଧିରେ ପୂଜଇ ଜାଣ ଯେଉଁ ସ୍ତିରୀ ।
ଏକବର୍ଣ୍ଣ ଗାଈ କ୍ଷୀର ଏକଇ ସୃଜିଳ
ହାଣ୍ଡିରେ ପୂରାଇ ଧୀରେ ଧୀରେ ଦେବ ଜାଳ
ଗନ୍ଧ ପୂର୍ବ ଧନକରୁ କ୍ଷେପିବ ଗର୍ଭରେ
ଆରଦନ ସ୍ନାନ ସାରି ପୂଜିବ ସମ୍ଭାରେ ।
ଥୋଇଣ ନେଇ ଯତନେ କରିବ ଯେ ପୂଜା
ପ୍ରସନ୍ନ ହୋଇଣ ବର ଦେବେ ଯେ ଗିରିଜା ।

ଯାହା ମନେ ବାଞ୍ଛା କରିଥିବଟି ସେ ନାରୀ
ହୈମବତୀ ତତକ୍ଷଣେ ଦେବ ପୂର୍ଣ୍ଣକରି ।
ଚନ୍ଦ୍ରାବତୀ ବୋଲେ ମୁନି ହେବ କେଉଁଦିନ
ନାରଦ ବୋଇଲେ ଶୁଣ ତହିଁର ବିଧାନ ।
ବର୍ଷକ ମଧ୍ୟେ ଚଇତ ମାସ ଶୁକ୍ଳପକ୍ଷ
ମଙ୍ଗଳବାର ଯେ ଦିନ ପୂଜିବ ପ୍ରତ୍ୟକ୍ଷ ।
ଚନ୍ଦ୍ରାବତୀ ବୋଇଲେ ମୁଁ ଓଷା ପୂଜିବଇଁ
ପ୍ରସନ୍ନ ହୋଇଲେ ମୁନି ଅନୁଗ୍ରହ ବହି ।
ଆପଣେ ଥାଇ ଯେବେ ମୁନି ଓଷା ପୂଜାଇବ
ତେବେ ଯିନା ମୋର ପୂର୍ବ ଭାଗ୍ୟ ଯେ ଦିଶିବ
ମୋହଠାରେ ଯେବେ ତୁମ୍ଭେ ଦୟା ରଖିଥିବ
ତୁମ୍ଭେ ଥାଇ ମୋର ଓଷା ନିର୍ଭ କରାଇବ ।
ନାରଦ ବୋଇଲେ ତୋତେ ମିଳିବ ସମସ୍ତ
କନକଚମ୍ପା କେ ଦେବ ଆଣି ତୋର ହସ୍ତ ।
ସ୍ୱର୍ଗର ସେ ପୁଷ୍ପ ଅଟେ ଦେବତାଙ୍କ ଭୋଗ୍ୟ
ତୋହର ଥିବଟି ଯେବେ ପରମ ସୁଭାଗ୍ୟ ।
ଅବଶ୍ୟ ସେ ପୁଷ୍ପ ତୋହ ଯୋଗୁଁ ଯେ ମିଳିବ
ଏଥିକୁ ଗୋ ଚନ୍ଦ୍ରାବତୀ ମନରେ ନ ଭାବ ।
ନନ୍ଦନବନରେ ଅଛି ଜାଣ ସେହି ପୁଷ୍ପ
ଶାମ୍ବ ତାହା ଆଣିବଟି କଲେ ସଂକଳପ ।
ତାହା ଆଣିଲେଟି ଭାଗ୍ୟ ହୋଇବ ନିଶ୍ଚୟ
ମୋହ ଆସିବାର ଜାଣ ନାହିଁ ତ ସଂଶୟ ।
ଏତେ କହିଣ ନାରଦ ଅନ୍ତର୍ଦ୍ଧାନେ ଗଲେ
ସ୍ୱର୍ଗପୁରେ ଯାଇ ମୁନି ପ୍ରବେଶ ହୋଇଲେ ।
ଏଥୁଅନ୍ତେ ଥୋକାଏକ ଦିନ ବହିଗଲା
ଶାମ୍ବ ଚନ୍ଦ୍ରାବତୀଙ୍କର ପୀରତି ବଢ଼ିଲା ।
ଦିନେ ଶାମ୍ବ କୁମରକୁ କନ୍ୟା ପଚାରଇ
ତାଳେ ପାସୋରିଲ ମୁନି ଯାହା ଥିଲେ କହି
ଶାମ୍ବ ଯେ ବୋଇଲା ମୋର ମନରେ ନ ଥିଲା
ଚେତାଇ ଦେଲୁ ତୁ ଭଲ ଏବେ ଗୋ ଅବଳା
ସେ ଚଇତ ମାସ ଆସି ହୋଇଲା ପ୍ରବେଶ
ଭିଆଇବା ଯାହା କହିଛନ୍ତି ବ୍ରହ୍ମାଶିଷ୍ୟ ।
ସମସ୍ତ ପଦାର୍ଥ ଆଚହୋ ଲୋଡ଼ିଲେ ପାଇବା
କନକ ଚମ୍ପାଫୁଲ ଗୋ କେମନ୍ତେ ଆଣିବା ।
ଇନ୍ଦ୍ରର ଗୋପିଲ ଯିନା ଅଟଇ ନନ୍ଦନ
ସହସ୍ର ଗନ୍ଧର୍ବ ତୋଟା କରନ୍ତି ରକ୍ଷଣ ।

କେଉଁ ପରକାରେ ତହୁଁ ଫୁଲ ଆଣିବଇଁ
ପ୍ରତିଦିନ ଇନ୍ଦ୍ରଦେବ ତୋଟାରେ ବୁଲଇ ।
ଶୁଣିଣ ବୋଲଇ ତହୁଁ ଚନ୍ଦ୍ରାବତୀ ବାଳୀ
କେଉଁପରି ମନାଇବା ପୂଜିଣ ଗଉରୀ ।
କୁମର ବୋଇଲା ଯିବି ସେହି ତୋଟାଯାଏ
ଯେମନ୍ତେ ପାରିବି ଫଳ ଆଣିବି ଗୁଡ଼ାଏ ।
ଏମନ୍ତ ବିଚାର କରି ତହୁଁ ସେ କୁମର
ଦିବ୍ୟ ଅଲଙ୍କାରେ କଲା ଭୂଷିତ ଶରୀର ।
କୁସୁମର ପାଗ ପିନ୍ଧି କୌଷେୟ ବସନ
ସୁବର୍ଣ୍ଣ ଉତରୀ ଶିରେ ନାନାଦି ଭୂଷଣ ।
ଏମନ୍ତେ ଯେ ଦିବ୍ୟବେଶ ହୋଇଣ କୁମର
ଦାରୁକକୁ ତହିଁ ବୋଲେ ରଥ ସଜକର ।
ଆଜ୍ଞା ପ୍ରମାଣେ ଦାରୁକ ବେଗେ ଚଳିଗଲା
ଦିବ୍ୟରଥ ଗୋଟିଏ ଯେ ସଜାଡ଼ି ଆଣିଲା ।
ଧନୁ କମାଣେ ଭୂଷିତ ହୋଇଣ କୁମର
ରଥ ଉପରେ ବସନ୍ତେ ଦିଶଇ ସୁନ୍ଦର ।
ଦକ୍ଷିଣ ମୁଖେ ଦ୍ୱାରକା ପୁରୁ ଚଳିଗଲେ
ପୁଣି ପୂର୍ବମୁଖ ହୋଇ ସେଠାରୁ ଗମିଲେ ।
ଅଶ୍ୱ ଛୁଡ଼ାଇଣ ସେହୁ ଗଲେ ଖର ହୋଇ
ନନ୍ଦନବନରେ ବୀର ପଶିଲେକ ଯାଇ ।
ତୋଟାଳମାନେ ତାହାକୁ ନ ଦେଖିଲେ କେହି
ଗୁପତରେ ତୋଟା ମଧ୍ୟେ ପଶିଲେ ସେ ଯାଇଁ
ଦଇବର କୃତ୍ୟ କଏ କରିବ ତା ଆନ
ଯାହା ଭିଆଇ ଅଛନ୍ତି ପ୍ରଭୁ ଭଗବାନ ।
ସେ ଦିନ ସୁରତସେନ ଗନ୍ଧର୍ବ ଦୁହିତା
ଯଉବନ ଭରେ ଚଳିବାକୁ ଅଶକତା ।
ସେ କନ୍ୟାର ନାମଗୋଟି ଅଟେ ଶୋଭାବତୀ
ତାହାକୁ ଯେ ପଟାନ୍ତର ହେବ ଜାଣ ରତି ।
ଅବିବାହୀ ହୋଇ ସେହି ପିତାଘରେ ଥିଲା
ତା ସମ ବର ନ ପାଇ ବିଭା ସେ ନୋହିଲା
ସଖିଗଣମାନଙ୍କୁ ସେ ସଙ୍ଗରେ ଘେନିଲା
ସ୍ନାନ ଅର୍ଥେ ସେ ଆକାଶ ଗଙ୍ଗାକୁ ଅଇଲା ।
ଗଙ୍ଗାରେ ସ୍ନାନ କରିଣ ନିତ୍ୟକର୍ମ ସାରି
ନାନାଦି ଅଲଙ୍କାର ସେ ଅଙ୍ଗେ ଅଛି ଭରି ।
ଦେବାଙ୍ଗ ଟାଟେକ ସେହୁ ଉପରାଣି କଲା
ଦେବାଙ୍ଗ ପାଟେକ ପରଟା/ଟୀରେ ପିନ୍ଧିଲା ।

ଯତନେ କମ୍ବୁଗ୍ରୀ ଗଢା ଉପଲେ ସେଜନ୍ମ
ତଥି ଉପରେ ଚନ୍ଦନ ଚନ୍ଦ୍ରୁଏ ରଚନ୍ତି ।
ଉତ୍ପଳ ସମାନ ତାର ରୂପ ଯେ ଦିଶଇ
ତାର ଉପମାକୁ ଆଉ ଜଗତରେ ନାହିଁ ।
ସିଂହ ମଧ୍ୟଠାରୁ ସରୁ କଟି ଅଛି ତାର
କୁରଙ୍ଗି ନିତମ୍ବିନୀ ସେହି ଅଟେ ସମ.ଦର ।
ବିମ୍ବଫଳ ପ୍ରାୟ ତାର ଅଧର ଦିଶଇ
ତୁମ୍ଭେ କହିଲେ ଅମୃତ ପ୍ରାୟ ବରଷଇ ।
ତାହାର ଲେଖନ କେ କରିପାରେ ଆନ
ସ୍ନାନ ସାରି ସେ ମୃଦଶୀ ବସିଲ ମନ ।
ଷଟ୍‌ଗଣ ମୁଖ ଗନ୍ଧି ଘ୍ରାଣ ପରିଭଇ
ଏ କେଉଁ ତୋଟା ଘୋଟା ଗୋ ବିଶ୍ୱ ଅଛି ସବ
ସଖୀଏ କହିଲେ ଅଟେ ଏ ନନ୍ଦନବନ
ଯହା ଅଛି ତହିଁ ମୁହିଁ ଦେଖିଲି ଭ୍ରମିଣ ।
ପକ୍ଷୀଗଣ କହନ୍ତି ଶୁଣରେ ସୁନ୍ଦରି
ସେ ତୋଟାକୁ ସମ ନାହିଁ ତୋଟା ଭବନପୁରି
ନାନାଫୁଲ ଫଳମାନ ତହିଁରେ ଅଛଇ
ନ ଥିବାର ହୋଇ ତହିଁ ପଦାର୍ଥ କେ ନାହିଁ ।
ପୁଷ୍ପର ମୋହନ ଆଉ ଅମରେ ସନ୍ତତ
ଯାହା ଇଚ୍ଛେ ଲୋଡ଼ିବ ତା ମିଳିବ ସମସ୍ତ ।
ସେ ତୋଟାକୁ ଦେଖିଲେ ତୁ ମୋହ ହୋଇଯିବୁ
ସ୍ୱର୍ଗକୁ ଯିବା କଥା ତୁ ମନେ ନ ଧରିବୁ ।
ସେହି ତୋଟାରେ ପଶିଲେ କ୍ଷୁଧା ତୃଷା ନାହିଁ
ମଳୟ ପବନ ସଦା ଧୀର ବହୁଥାଇ ।
ସର୍ବଦା ବସନ୍ତ ତହିଁ ଥାଏ ଆଗୋ ସଖି
କୋକିଆଦି ପକ୍ଷୀମାନେ ହୁଅନ୍ତି ଯେ ସୁଖୀ ।
ପକ୍ଷୀ ଜନ୍ତୁମାନେ ତହିଁ କରନ୍ତେ ମଉ
ନାନାରଙ୍ଗେ କ୍ରୀଡ଼ା କରୁଥାନ୍ତି ଅବିରତ ।
ଭ୍ରମରମାନେ ଗୋ ସହି ମଉଳଇ ହୋଇ
ପୁଷ୍ପମାନ ଚୁମ୍ବୁଥାନ୍ତି ମହାସୁଖ ପାଇ ।
ଆମ୍ବ ପଣସ କଦଳୀ ଗୁଆ ନାରିକେଳ
ଖିଲେମ୍ବୁ କଇମଙ୍ଗା କମଳା ଜମ୍ବିର ।
ଏହି ଫଳମାନ ପାଚି ପଡ଼ନ୍ତି ଭୂମିରେ
ଇହାରି ଶକତ ନାହିଁ ତାହାକୁ ନେବାରେ ।
ଇନ୍ଦ୍ରର ସେ ତୋଟା କେହ୍ନ ଦେଖି ନ ପାରନ୍ତି
ଯକ୍ଷେ ଗନ୍ଧର୍ବ ଦଣ୍ଡହସ୍ତ ଜଗିଥାନ୍ତି ।

ଇତର ଜନ ପଶିବା ପାଇଁ ନୋହେ କ୍ଷମ
ଇନ୍ଦ୍ର ଯେ ତହିଁକି ଏକା ଅଟଇ ସୁଜନ ।
ଆନନ୍ଦେ ଦେଖିବାକୁ ତୋଟାକୁ ଆସଇ
ଦେବକିଣ ଶାଢ଼ୀ ପ୍ରସାଦ ବୃକ୍ଷଙ୍କୁ ଦେଇ ।
ଗଙ୍ଗାଜଳ ଆଣି ବୃକ୍ଷ ମୂଳରେ ଢାଳନ୍ତି
କସ୍ତୁରୀ ଗୁଣ୍ଡିକ କ୍ଷିତ କରିଣ ଦିଅନ୍ତି ।
ପକ୍ଷୀଜନ୍ତୁ ମଳମୂତ୍ର ନ କରନ୍ତି ତହିଁ
ଏହିରୂପେ ସାବଧାନେ ତୋଟାଗୋଟି ରହି ।
ଶୁଷ୍କଫଳ ଝଡ଼ି ଯେବେ ଭୂମିରେ ପଡ଼ନ୍ତି
ପବନ ଆଘାତେ ତହୁଁ ପୁଣି ଉଡ଼ିଯାନ୍ତି ।
ଶୁଣନ୍ତେ ସୁନ୍ଦରୀ ତାର ମନକୁ ରୁଚିଲା
ଏବେ ଗନ୍ଧର୍ବର ଝିଅ ଗର୍ବିତା ହୋଇଲା ।
ମତ୍ତଗଜଗମନୀ ସେ ଧୀରରେ ଚଳଇ
ସତେ କିବା ଯଉବନ ଭର ନ ସହଇ ।
ଡାଳିମ୍ବର ମଞ୍ଜି ପ୍ରାୟ ତାର ଦନ୍ତପନ୍ତି
ତିଳପୁଷ୍ପ ପ୍ରାୟ ତାର ନାସିକାର କାନ୍ତି ।
ମୃଣାଳର ନଳ ପ୍ରାୟ ତାର ଭୁଜମାନ
ଦିଶଇ ଉଲଟ ରମ୍ଭା ପ୍ରାୟ ତା ଜଘନ ।
ଅଙ୍ଗୁଷ୍ଠ ମାନ ଦିଶଇ ଚମ୍ପାକଢ଼ି ପ୍ରାୟ
କପାଳର ଛଟା କିବା ଅରୁଣ ଉଦୟ ।
ତା ଚନ୍ଦ୍ରମା ବଦନକୁ ପଟାନ୍ତର ନାହିଁ
କଜ୍ଜ୍ୱଳ ରେଖା କୁରଙ୍ଗୀ ନେତ୍ରକୁ ଶୋଭଇ ।
ପଦ୍ମପତ୍ରେ ଜଳ ପ୍ରାୟେ ଝଳ ଦିଶେ କାନ୍ତି
ପଦ୍ମପୁଷ୍ପ ପ୍ରାୟ ତାର ହସ୍ତ ଶୋଭା ପାନ୍ତି ।
ତାହାର ଯେ ରୂପଗୁଣ କଏ ବା କହିବ
କେତେକାଳ ବସି ତାକୁ ଗଢ଼ିଲା ଦଇବ ।
ସଖୀଗଣ ଯେନ ସଙ୍ଗେ ଚଳିଣ ଆସଇ
ତୋଟ ର ଭିତରେ ଯାଇ ପଶିଲେକ ସେହି ।
ତୋଟା ଦେଖି ମୋହ ହୋଇଗଲେକ ସୁନ୍ଦରୀ
ମଦନର ପଞ୍ଚବାଣ ତାର ଅଙ୍ଗେ ବାରି ।
ଏକେ ମଧୁମାସ ପୁଣି ବସନ୍ତର ତାଳ
ନାନାବିଧ ଜୀବଜନ୍ତୁ ଏ ମଦନରେ ଭୋଳ ।
ସେ ତୋଟାରେ ବୃକ୍ଷଜନ ଯେତେକେଟି ପଶଇ
ନବଯୁବା ପ୍ରାୟ ତାର ଶରୀର ଦିଶଇ ।
ସଖିଗଣ ସେନ ଯେହି ତୋଟେ ରେ ଭ୍ରମୁଛି
ଭ୍ରମର ଯେ ମଉଳରେ ବନ୍ଧନ ହେଉଛି ।

କ୍ରୀଡ଼ା ଉତ୍ସବଙ୍କେ ନାନାପୁଷ୍ପରେ ବସନ୍ତ
ଏକ ପୁଷ୍ପ ଛାଡ଼ି ଅନ୍ୟ ପୁଷ୍ପକୁ ଚୁମ୍ବନ୍ତ ।
ନୟନରେ ସୁଦର୍ଶା ଯେ ଏମାନ ଦେଖିଲା
ମଦନର ପଞ୍ଚବାଣ ଅଙ୍ଗରେ ଭେଦିଲା ।
ଭ୍ରମରର ମୂର୍ଚ୍ଛି ଯେବେ ତଳେ ହୋଇଥାନ୍ତି
ବଲ୍ଲଭକୁ ଘେନି ଏଥେ କ୍ରୀଡ଼ା ମୁଁ କରନ୍ତି ।
ନାନା ଭଉଁରେ ମୂର୍ଚ୍ଛି ବସିଥାନ୍ତି ବନ
ବିଧାତା ପୁରୁଷ ମୋତେ କରିଅଛି ହୀନ ।
ଏହି ଗିରି ଜନ୍ତୁମାନେ ବନଜନ୍ତୁ ହୋଇ
ନାନା ରଙ୍ଗରେ କ୍ରୀଡ଼ା କରନ୍ତି ଚତୋଇ ।
ଏହା ଚିନ୍ତିଣ ସୁଦର୍ଶା ବିମୁଖ ହୋଇଲା
ମନେ ମନେ ବଲ୍ଲଭକୁ ସେହି ଚିନ୍ତା କଲା ।
ଚୂତବୃକ୍ଷ ପରେ ବସି କୋକିଳ ଭଷନ୍ତି
ଡାଳିମ୍ବ ବନରେ ସାରି ଶୁଆ ଗାନ ଦ୍ୟନ୍ତି ।
ଆମ୍ବ ଫଳମାନ ଲେନ୍ଥି ଲେନ୍ଥି ନଇ ହୋଇ
ପାଚିଣ ସେ ବୃକ୍ଷଡାଳେ ସୁନ୍ଦର ଦିଶଇ ।
ରମ୍ଭାବୃକ୍ଷମାନ ତହିଁ ପନ୍ତ ପନ୍ତ ହୋଇ
ଗୁଆ ବୃକ୍ଷମାନ ତାର ସନ୍ନିଧିରେ ଥାଇ ।
କୁଳ ଶୋଭାବତୀ କୋଠାଯାକ ଦେଖିଗଲା
ଚମ୍ପାବୃକ୍ଷ ତଳେ ଯାଇ ବିଶ୍ରାମି ବସିଲା ।
ଜାଇ ଫୁଲରୁ ସୁଦର୍ଶା ଗୁଡ଼ାଏ ତୋଳିଲା
ତହିଁରେ ମଲ୍ଲୀ ମିଶାଇ ମାଳ ଯେ ଗୁନ୍ଥିଲା ।
ଶରଧା କରିଣ ମାଳା ଘେନିଲା ହସ୍ତରେ
ଅଳପ ବାସନା ନାକେ ଘେନଇ ସୁଧୀରେ ।
ଶୁଣ ଆହେ ମନୁରାଜା ଅପୂର୍ବ ଚରିତ
ରଥ ଘେନି ଶାମ୍ବ ତହିଁ ମିଳିଲା ତ୍ୱରିତ ।
ଖଡ଼ଧାରେ ସେ କନକ ଚମ୍ପାଫୁଲ ତୋଳେ
ରଥର ଉପରେ ତାହା ଥୁଏ ନେଇ ଭଲେ ।
ନାନାଫଳ ଫୁଲ ତୋଳେ ହରଷ ବଦନେ
ରଥର ଉପରେ ଥୁଏ କୃଷ୍ଣର ନନ୍ଦନେ ।
ଦଇବର ଘଟଣାକୁ ମେଣ୍ଟି ନ କେ କରେ
ସୁଦର୍ଶା ନେହ ପଡ଼ିଲା ଥାଇ ଖଣ୍ଡିଦୂରେ ।
ଦେଖିଲା କନ୍ୟାରତନ କୁମର ବଦନ
ସାକ୍ଷାତେ କି ପଞ୍ଚବାଣ ହୋଇଛି ଘଟଣ ।
କୃଷ୍ଣର ନନ୍ଦନ ସେହି ଜାମ୍ବବତୀ ବଳା
ଜନମ ଲଭିଛି ଘେନି ଶ୍ରୀକୃଷ୍ଣଙ୍କ କଳା ।

ସୁନ୍ଦର ଖଣ୍ଡରେ ତାକୁ ପଟାନ୍ତର ନାହିଁ
ଯେତେ ସ୍ତ୍ରୀମାନଙ୍କର ଗରବ ଭଞ୍ଜଇ ।
ମଦନର ପାଶ କି ସେ ଧରିଅଛି କରେ
ଯୁବତୀ ସ୍ତ୍ରୀମାନଙ୍କୁ ବାନ୍ଧଇ ସଧୀରେ ।
କୁମର ନୟନ ଯହୁଁ ପଡ଼ିଲାକ ଯାଇ
ମଦନ ଅନଳେ ବାଳା ହୋଇଲାକ ଦଗ୍ଧ ।
ଗୃହର ଗବାକ୍ଷରେ କନ୍ୟା ତାକୁ ଚାହିଁଥିଲା
ସଖୀଗଣେ ତାର ଦୃଷ୍ଟି ଏମନ୍ତ କହିଲା ।
ଅନଙ୍ଗ ପୁରୁଷ ଦେଖି ଏଥେ ହନ୍ତ ରହି
ବୃକ୍ଷରୁ ଫୁଲ ତୋଳନ୍ତି ମନେ ଶ୍ରଦ୍ଧା ବହି ।
ସ୍ପର୍ଶିବା ଛଟକେ ଯୁବାସ୍ତ୍ରୀଙ୍କୁ ଗଞ୍ଜନ୍ତି
ଏହାଙ୍କୁ ଦେଖି ଚଞ୍ଚଳ ହୁଅଇ ମୋ ମତି ।
ଏହାଙ୍କର ରୂପ ମୁଁ ଗୋ ବାଖାଣିବ କିସ
କାମଦେବ ଘେନିଛନ୍ତି କି କରେ କାମପାଶ ।
ଏସନ ମନେ ଚିନ୍ତଇ ଭଣୁ ଭଣୁ ବାଳୀ
ଏକ ସଖୀ ଆରେକକୁ କହଇ ଯେ ଭଲ ।
କାହାଁର ପୁରୁଷ ଏ ଗୋ କାହୁଁ ଆସିଅଛି
ତାହାକୁ ଯେ ଦେଖି କନ୍ୟା ଦୁଃଖୀ ହେଉଅଛି
ଆଉ ଏକ ସଖୀ ତହୁଁ କହେ ବିସ୍ତରଣ
ପଚାରି ଜାଣିବା ସେହି କାହାର ନନ୍ଦନ ।
କାହାର କୁଳରେ ସେହୁ ହୋଇଅଛି ଜାତ
ପଚାରି ଜାଣିବା ଆମ୍ଭେ ତାର କୁଳଗୋତ୍ର ।
ସ୍ୱର୍ଗର ଗନ୍ଧର୍ବ କିବା ମଞ୍ଚୁ ଆସିଛି
ଆମ୍ଭେମାନେ ଆସିବା ନା ତାକୁ ଏବେ ପୁଛି ।
ଏହା ଉଚ୍ଚାରଣ ତହୁଁ ସବୁ କୁମାରୀଏ
ଶୋଭାବତୀକି ବୋଧନ୍ତି ତହିଁରୁ ଯେ'କାଏ ।
ଏମନ୍ତ କୋଠାରେ ପଶି କୃଷ୍ଣର କୁମର
ଫଳ ଫୁଲ ତୋଳି ମନେ କରଇ ବିସ୍ତର ।
ଗନ୍ଧର୍ବ ଯେ ନ ଜାଣନ୍ତି ଯିବ ବେଗ ହୋଇ
ବୃଥାରେ ଅନର୍ଥ ଗୋଳ କରିବେ କିପାଇଁ ।
ଏମନ୍ତେ ମନେ ବିଚାରି ରଥରେ ବସିଲା
କନ୍ୟାର ଉପରେ ତାର ନୟନ ପଡ଼ିଲା ।
ଶୋଭାବତୀର ବଦନ କମଳକୁ ଚାହିଁ
ମଦନ ବାଣ ଭେଦିଲା ଅଙ୍ଗରେ ନଠାଇ ।
ରଥ ଉପରୁ କୁମର ଓହ୍ଲାଇ ପଡ଼ିଲା
ଶୋଭାବତୀ ସନ୍ନିଧିରେ ଯାଇଣ ମିଳିଲା ।

ନେରେ ଯେ କୁମାରୀ ନେଉ ଥିଲା ଯାହା
ତଇବ ସଙ୍ଗାତ ହେଲା ଏବେ ସେଇ ତାହା ।
କୁମରଙ୍କୁ ଦେଖି ତହୁଁ ଶୋଭାବତୀ ବାଳୀ
ସଲଜ୍ଜିତ ମୁଖ ଘୋଡି ବସିଲା ଦୁଲାଳୀ ।
ସଖୀଗଣମାନେ ଶୋଭାବତୀ ପାଶେ ଥିଲେ
କୁମରଙ୍କୁ ଚାହିଁ ସର୍ବେ ବଚନ ଭାଷିଲେ ।
ହୋଇଲେ କେଉଣଠାରୁ ଆସିଛ ଆପଣ
ଇନ୍ଦ୍ରର ତୋଟା ଏଥିରେ ପଶିଲ କେମନ ।
ଗନ୍ଧର୍ବେ ଜାଣିଲେ କଷ୍ଟେ କୋପ ଯେ କରିବେ
ନାନା ପରକାରେ ଆସି ଦ୍ୱନ୍ଦ୍ୱ ଆରମ୍ଭିବେ ।
କୁମର ବୋଇଲା ଶୁଣ ଆଗୋ ସର୍ବ ବାଳା
ଦ୍ୱାରାବତୀପୁରୁଁ ଆମ୍ଭେ ଆସିଅଛୁଁ ଚଳ ।
ଆମ୍ଭ ପିତା ଅଟନ୍ତି ଯେ ପ୍ରଭୁ ଚକ୍ରଧର
ମାତା ନାମ ଜାମ୍ବବତୀ ଅଟଇ ମୋହର ।
ସୁନ୍ଦରୀ ବୋଇଲେ କପାଁ ଏଥକୁ ଆଇଲ
କି ପଦାର୍ଥ ନେବ ବୋଲି ଏ ବନେ ପଶିଲ ।
କୁମର ବୋଇଲେ କନକ ଚମ୍ପା ନେବାପାଇଁ
ରଥ ଚଢ଼ି ଏ ନନ୍ଦନ ବନେ ଅଇଲଇଁ ।
କୁମାରୀମାନେ କହନ୍ତି ଶୁଣି ଏ ବଚନ
ଏ ପୁଷ୍ପରେ ବଳଅଛୁ କପାଁ ତୁମ୍ଭ ମନ ।
ଶୁଣିଣ ଶାମ୍ବକୁମର ବୋଇଲେ ହସି
ଏକଦିନେ ଆମ୍ଭ ପୁରେ ଗଲେ ଦେବଋଷି ।
କନକଚମ୍ପା ଜୋଡ଼ିଏ ହସ୍ତେ ସେନଥିଲେ
ଶରଧା କରଣ ଆମ୍ଭ ଜନନୀକୁ ଦେଲେ ।
ସେହି ତ ରାଜକୁମାରୀ ବୟସରେ ଭୋଳ
ଶରଧାରେ ସୁନ୍ଦରୀର ମନ ଯେ ଚଞ୍ଚଳ
ଚନ୍ଦ୍ରାବତୀ ବୋଲି ଜାଣ ଅଟଇ ତା ନାମ
ସୁନ୍ଦରପଣେ ତାହାକୁ ରତି ନୁହେଁ ସମ ।
ନାରଦ ମୁନି ବୋଇଲେ ଓଷାଟିଏ କର
କନକ ଚମ୍ପାରେ ପୂଜ ଗଉରୀ ଶଙ୍କର ।
ତେଣୁ ଅତି ଶରଧା ଯେ ବଳନ୍ତି ତାହାର
ତେଣୁ ପୁଷ୍ପଲାଗି ଆମ୍ଭେ ଅଇଲୁ ସୁନ୍ଦରୀ ।
ତୁମ୍ଭେମାନେ କି ନିମନ୍ତେ ଅସିଛ ଏଥକୁ
ଏ କନ୍ୟାର ନାମ କିସ କହ ଗୋ ଆମ୍ଭଙ୍କୁ ।
କୁମାରୀ ବୋଇଲେ ଏହା ନାମ ଶୋଭାବତୀ
ଚିତ୍ରସେନ ଗନ୍ଧର୍ବର ଦୁହିତା ଏ ସତୀ ।

ତଥି ହୋଇ ନାହିଁ ଏହି ରମଣୀରତନ
ଏହାର ସମାନେ ନର ନୁହଇ ସଂଘଟନ ।
ଶରଧାରେ ଗଙ୍ଗାକୁ ଏ ସ୍ନାନେ ଅସିଥିଲା
ତୋଟା ଦେଖିବାକୁ ମନ ଏହାର ବଳିଲା ।
ତୋଟାକୁ ଦେଖିଲୁ ଏବେ ଯିବୁ ନିଜପୁର
ତୁମ୍ଭେ ଏଥୁ ବେଗ ହୋଇ ଯାଅ ହେ କୁମର
କୁମର ବୋଇଲା ଡର ମୋହର ଯେ ନାହିଁ
ମୋହର ପିତା ଅଟନ୍ତି ପ୍ରଭୁ ଯଦୁରାଇ ।
ପୁଷ୍ପ ନେଇ ଏଥୁ ମୁହିଁ ଯିବି ଧୀରେ ଧୀରେ
କପଟେଁ ପଳାଇ ଯିବ ଏ ବନରୁ ଡରେ ।
କୁମର ମୁଖରୁ ଏହି ଦୃଢ଼ବାକ୍ୟ ଶୁଣି
ବିସ୍ମୟ କରଣ ତହୁଁ ଜାଣିଲେ ତରୁଣୀ ।
ନିଶ୍ଚେ ବଡ଼ କୁଳରେ ଏ ହୋଇଅଛୁ ଜାତ
ତେଣୁ ଏମନ୍ତ କହୁଛୁ ଅଛୁ ସମରଥ ।
ସେ ଶୋଭାବତୀକୁ ଚାହିଁ ଚତୁରନ୍ତ ବାଳୀ
ଏ ବରରେ ତୋର ମନ ରୁଚେ କି ସୁନ୍ଦରୀ ।
ଏହା ଶୁଣି ଶୋଭାବତୀ ବୋଇଲା ବଚନ
ଭାଳପଟେ ଦଇବ ଯା କରିଛି ଲେଖନ ।
ଏହି ଥିଲେ କହିଁ ଅବା ଆମ୍ଭେ ଥିଲୁ କାହିଁ
ଦଇବ ପୁରୁଷ ଆଣି ଦେଇଛି ଘଟାଇ ।
କେମନ୍ତ ପ୍ରକାରେ ମୁହିଁ ଏହାକୁ ବରିବି
ଏହାର ମନକୁ ମୁହିଁ କେମନ୍ତେ ଜାଣିବି ।
ଖଣ୍ଡଦୂରେ ଥାଇ ତାହା କୁମର ଜାଣିଲା
କୁମାରୀର ମନ ମୋହଠାରେ ଯେ ବଳିଲା ।
ସଖୀଗଣଙ୍କୁ ଶୁଣାଇ କହଇ କୁମର
ବଳିଲା କି ତୁମ୍ଭ ସଖୀ ମନ ସମାଦର ।
ଇଚ୍ଛାଥିଲେ ବରମାଳା ଦେଉ ମୋତେ ବାଳୀ
କୁମର ମୁଖୁଁ ଏମନ୍ତ ଶୁଣିଣ କୁମାରୀ ।
ଜାଇଫୁଲ ମାଳା ଏକ କରେ ଧରି ବାଳୀ
କୁମର କଣ୍ଠେ ଲମ୍ବାଇ ଦେଇ ଆସେ ଚଳି ।
କୁମାରୀକୁ କୋଳେ ତହୁଁ ଧରିଣ କୁମର
ବସାଇଲା ନେଇ ତାକୁ ରଥର ଉପର ।
ବରୁଣା ନାମରେ ଥିଲା ଏକଇ କୁମାରୀ
ଶୋଭାବତୀ ହଙ୍କାରିଣୀ ଅଟଇ ସୁନ୍ଦରୀ ।
ଯେବଣେ ଯାଇ ତାକୁ ସେହି ସଙ୍ଗରେ ନେଇ
ତା ଠାରେ ଶୋଭାବତୀର ବଡ ସ୍ନେହ ଥାଇ ।

ତାହାକୁ ଅଶ୍ୱାସ କରି ହାତକୁ ଧଇଲା
ହସ୍ତ ଧରିଣ ତାହାକୁ ରଥେ ବସାଇଲା ।
କୁମରକୁ ଚାହିଁ ପୁଣି ବୋଲଇ କୁମାରୀ
ରଥ ବାହିଯିବା ଏବେ ଦ୍ୱାରବତୀ ପୁରୀ ।
କୁମର ଯେ ଆଜ୍ଞା ଦେଲା ଦାରୁକକୁ ଚାହିଁ
ରଥ ବାହ ତାକୁ ନେଇ ଯିବା ବେଗ ହୋଇ
କେତେ ବଡ଼ ରଥ ହେଁ. ଦାରୁକ ବାହିଲା
ଶୋଭାବତୀ ସଖୀଙ୍କୁ ଯେ ମେଲାଣି କରିଲା ।
କୁମାରୀକି ନେଇ ତହୁଁ କୁମର ଯେ ଗଲେ
ଗନ୍ଧର୍ବ ଦୂତମାନେ ସେଠାରୁ ଫେରିଲେ
ସେଠାରୁ ବିରସ ମନ ହୋଇ ଗଲେ ଚଳି
କୋଠା ଗନ୍ଧର୍ବମାନଙ୍କ ପାଖେ ଯାଇ ମିଳି ।
ବୋଇଲେ ପୁରୁଷ ଏକ ରଥେ ଚଢ଼ି ଆସି
କୋଠାର ଭିତରେ ଥିଲା କେତେବେଳେ ପଶି
ଶୋଭାବତୀ ଯେଉଁ ଆମ୍ଭେ କୋଠା ବୁଲୁଥିଲୁ
ଏମନ୍ତ ସମୟେ ତହିଁ ତାହାକୁ ଦେଖିଲୁ ।
ଅନଙ୍ଗ ପରାୟେ ସେହି ଅଟଇ ସୁନ୍ଦର
ତିନି ଭୁବନରେ ନାହିଁ ତାକୁ ପଟାନ୍ତର ।
କନକଚମ୍ପା ବନରେ ପଶି ବୋଲୁଥିଲା
ଏ ସମୟେ ଶୋଭାବତୀ ତାହାକୁ ଦେଖିଲା ।
ମଦନ ଶରରେ ବାଳୀ ହୋଇଲା ବିକଳ
ତାହାର କଣ୍ଠରେ ନେଇ ଦେଲା ଫୁଲମାଳ
ହସ୍ତ ଧରିଣ କୁମର ରଥେ ବସାଇଲା
ବିରୂପା କନ୍ୟାକୁ ପୁଣି ସଙ୍ଗେ ଘେନିଗଲା ।
କହିଲା ସେ ତାହା ଘର ଦ୍ୱାରବତୀ ପୁର
ତାହାର ପିତା ଅଟନ୍ତି ପ୍ରଭୁ ଚକ୍ରଧର ।
କନ୍ୟାକୁ ଘେନିଣ ସେହୁ ଗଲା ଏତିକ୍ଷଣି
ଆମ୍ଭମାନଙ୍କୁ ସେଠାରୁ ଦେଇଣ ମେଲାଣି ।
ଗନ୍ଧର୍ବେ ବୋଇଲେ କେତେବେଳୁଁ ସେ ଗଲାଣି
କନ୍ୟାଏ ବୋଇଲେ ସେହୁ ଗଲା ଏତିକ୍ଷଣି ।
ବହୁଦୂର ଯାଇ ନାହିଁ ଯଥା ତୁମ୍ଭେ ବେଗେ
ଗୋଡ଼ାଇ ଗଲେ ପାଇବ ଭେଟ ଏହିକ୍ଷଣେ ।
ଶୁଣିଣ ଗନ୍ଧର୍ବେ କୋପେ ଶସ୍ତ୍ରକୁ ଧଇଲେ
ମାର ମାର ବୋଲିଣ ସେ ଉଚ୍ଚରେ ଡାକିଲେ
ଧର ଧର କାହିଁଗଲା ବୋଲିଣ ବୋଲନ୍ତି
କନ୍ୟାଚୋର କାହିଁଗଲା ବୋଲିଣ ଗୋଡ଼ାନ୍ତି ।

ଏମନ୍ତେ ସେ ଖଣ୍ଡେ ଦୂର ଉପରନ୍ତେ ଗଲେ
ଥୋକାଏ ଦୂତକୁ ଯାଇ ରଥେକ ଭେଟିଲେ
ରହ ରହ ବୋଲି ସର୍ବେ ଡାକନ୍ତି ନଠାଇ
ବାୟୁବେଗେ ରଥ ଘୋଟି ଯାଉଛନ୍ତି ବାହି ।
କୁମରକୁ ଚାହିଁ ତହୁଁ କୁମାରୀ ବୋଇଲା
ଗନ୍ଧର୍ବ କଟକେ ରଥ ବେଢ଼ାରେ ପଡ଼ିଲା ।
କୁମର ବୋଇଲା ଶୁଣ ଇନ୍ଦ୍ର ଏକ ହୋଇ
ମୋର ଦାଉରୁ ଉଦ୍ଧାର ନ ଯିବେଟି କେହି ।
ସହସ୍ରେକ ହେଲେ ଯେବେ ହୋଇ ଏକାଠେନ
ମହାବ୍ୟାଘ୍ର ସମ୍ମୁଖରେ କି ପଶୁ କରେ ବୋଲ
ମୁହିଁ ମହାବ୍ୟାଘ୍ର ଜାଣ ଏ ସହସ୍ର ହେଲ
ଏଥିକୁ ତୁ ମନେ ଚିନ୍ତା ନ କର ଗୋ ବାଳୀ
ଗନ୍ଧର୍ବଙ୍କ ଡାକ ଶୁଣି ନ ଦେଇ ଉତ୍ତର
ଧନୁଶର ବେଗେ କରେ ଧଇଲା କୁମର ।
ବ୍ରହ୍ମ ମନ୍ତ୍ରିତ ଧନୁ ଘାଲଟିଲା ବେଗେ
ଦାରୁକ ରଥ ରଖିଲା ଗନ୍ଧର୍ବଙ୍କ ଆଗେ ।
ସହସ୍ରେ ଗନ୍ଧର୍ବ ତାଙ୍କୁ ବେଢ଼ିଲେକ ଯାଇ
ଯେ ଯାହାର ଶସ୍ତ୍ର ସର୍ବେ ମାରନ୍ତି ଉଠାଇ ।
କେତୁକେତ ସମର ଯେ ହେଲା ଅଗୋଚର
ମରନ୍ତି ଶେଲ ଶକ୍ତି କୁନ୍ତ ମୁଦ୍ଗରେ ।
ଶସ୍ତ୍ର ଦେଖେ ଶସ୍ତ୍ର ବାଜି ଉଠଇ ଅନଳ
ସବୁ ଶସ୍ତ୍ର ନିବାରଇ ଜାମ୍ବବତୀ ବାଳ ।
କୁମର ଯେବଣ ଶର ଗନ୍ଧର୍ବଙ୍କୁ ମାରେ
ଦଶ ବିଂଶ ତିରିଶ ଯେ ପଡ଼ନ୍ତି ତହିଁରେ ।
କୁମର ବାଣେ ଅନେକ ଗନ୍ଧର୍ବ ଯେ ମଲେ
ଥୋକାଏ ଗନ୍ଧର୍ବ ତହୁଁ ଡରେ ପଳାଇଲେ ।
କୁମରକୁ ବେଢ଼ି କରି ଥୋକାଏ ଯୁଝନ୍ତି
ଥୋକ ପଳାଇ ସୁଧର୍ମା ସଭାରେ ମିଳନ୍ତି ।
ଅସ୍ଥାନ କରିଣ ବସିଅଛି ଇନ୍ଦ୍ରରାୟେ
ତାଙ୍କ ସଙ୍ଗେ ବସିଛନ୍ତି ସବୁ ଦେବତାଏ ।
ବ୍ରହ୍ମା ଶଙ୍କର ଆବର ଗୁରୁ ବୃହସ୍ପତି
ଗନ୍ଧର୍ବ ନାଗ କିନ୍ନରଗଣେ ବସିଛନ୍ତି ।
ଚିତ୍ର ଶୁକ୍ରସେନ ଆଉ ଅଙ୍ଗାର ପରାଗ
ଥିଛନ୍ତି ଯେ ଚଉଷଠି ଗନ୍ଧର୍ବ ତା ସଙ୍ଗ ।
ପବନ ବରୁଣ ଆଦି, ଅନଳ କୁବେର
ଯମ ଦେବତା ଅଷ୍ଟବସୁ ଅଶ୍ୱିନୀକୁମାର ।

ଅପସରାମାନେ ଆଗେ କରୁଛନ୍ତି ନୃତ୍ୟ
ନାଟକୁ ଯେ ଅବଧାନ କରେ ପୁରୁହୂତ ।
ଏମନ୍ତବେଳେ ଗନ୍ଧର୍ବେ ସକଳ ମିଳିଲେ
ଦେବସଭା ତଳେ ଯାଇ ଗର୍ଜଣ କରିଲେ
ବୋଇଲେ ଗୋସାଇଁ ଏବେ ଅବଧାନ କର
ଅପୂର୍ବ ଚରିତ ତୋର ବନର ଭିତର ।
ମର୍ତ୍ତ୍ୟପୁରୁଁ ରଥ ଚଢ଼ି ପୁରୁଷେ ଆଇଲା
ଅଜାଣରେ କେଉଁ ବାଟେ ତୋଟାରେ ପଶିଲା
ଚନ୍ଦନଚମ୍ପା ତୋଳଣ ରଥେ ନେଇ ଥୋଇ
ତୋଟା ଭିତରେ ସେ ଥିଲା ଫୁଲବନେ ରହି
ସୂରସେନ ରାଜାର ଝିଅ ଶୋଭାବତୀ
ଜୋସ୍ନାରେ ଯାଇଥିଲା କନ୍ୟାଙ୍କ ସଙ୍ଗତ ।
ସ୍ନାନ ସାରି ତୋଟା ମଧ୍ୟେ ପଶି ବୁଲୁଥିଲେ
ସେହି ପୁରୁଷକୁ ବନ ମଧ୍ୟରେ ଦେଖିଲେ ।
ଅନଙ୍ଗ ପ୍ରାୟ ରୂପକୁ ପଟାନ୍ତର ନାହିଁ
ଶୋଭାବତୀ ବରିଲା ସେ ଫୁଲମାଳ ଦେଇ ।
ହସ୍ତ ଧରି ତାକୁ ନେଇ ରଥେ ବସାଇଲା
ବରୂଥା କନ୍ୟାକୁ ପୁଣ ସଙ୍ଗେ ନେଇଗଲା ।
ଆଉ କନ୍ୟାଙ୍କୁ ମେଲାଣି ଦେଇ ଗଲେ ଚଳି
ବାରତା କହିଲେ ଆସି କନ୍ୟାମାନେ ମିଳି ।
ଆମ୍ଭେମାନେ ଅସ୍ତ୍ର ଧରି ଓଗାଳିଲୁ ଯାଇ
ନାଗତମାନ ବାନ୍ଧିଲା ମନ୍ତ୍ର ବୋଷ କରି ।
ନାଗତ ବାନ୍ଧନ୍ତେ ତର ତଳୁ ନ ହୋଇଲା
ଚାରି ନାଗତେ ଗନ୍ଧର୍ବଙ୍କ ବଶ ଗଲା ।
ଏକା ରଥକରେ ସେହି ଏତେ ସମରଥ
କେତେ ଗନ୍ଧର୍ବ ମାଇଲା ନ ଜାଣୁ ତଦନ୍ତ ।
ଶୁଣି ଇନ୍ଦ୍ରରାୟେ ତହୁଁ ବ୍ରହ୍ମା ମୁଖ ଚାହିଁ
କିଂଭୂତ ଭାରଥ ଏହା ବୋଲି ପଚାରଇ ।
ବ୍ରହ୍ମା ଏ ବୋଇଲେ ତାହା ଜାଣିବା କେମନ୍ତେ
ଧରିଲ ଆଣ ତଦନ୍ତ ବୁଝିବା ତା ଏଥେ ।
ଚନ୍ଦ୍ରସେନ ଗନ୍ଧର୍ବଙ୍କୁ ଚାହିଁ ଇନ୍ଦ୍ରରାୟେ
ବୋଇଲେ ତୁ ବେଗ ହୋଇ ଯାଅରେ ତନୟେ
ଶୋଭାବତୀ କନ୍ୟାକୁ ଯେ ନେଉଅଛି ଧରି
ବେଗେ ନେଇଆସ ତାକୁ ପ୍ରାଣରେ ନ ମାରି
କୁଳଗୋତ୍ର ପଚାରଣ କରିବା ବିନାଶ
ତାହାର ସେ ପୁଣ ଅଟେ ବୁଝିବା ବିଶେଷ ।

ଆଜ୍ଞା ପାଇମାତ୍ରେ ଚନ୍ଦ୍ରସେନ ଧାଇଁଗଲା
ବହୁତ ସୈନ୍ୟ ସେ ପୁଣି ସଙ୍ଗତରେ ନେଲା
ବାୟୁବେଗେ କୁମରକୁ ଭେଟିଲାକ ଯାଇଁ
ଶ୍ୟାମଳ ପକ୍ଷୀ ଯେସନେ ବଳକୁ ଭେଟଇ ।
ପୂର୍ଣ୍ଣିମାର ଚନ୍ଦ୍ରମାକୁ ଘୋଟିଲା କି ରାହୁ
ଅସମର୍ଥ ହେଲା କି ବୁଦ୍ଧି କରିବା ଯେ ଆଉ ।
ଡଇବ ପୁରୁଷ କଷ୍ଟେ ସପକ୍ଷ ହୋଇଲା
ମାରି ମାରି ଶବଦରେ ପୃଥିବୀ ଉଛୁଳିଲା ।
ଏହି ରୂପେ କୁମରକୁ କହେ ଶୋଭାବତୀ
କୁମର ହେ ଇଏ ବୁଝି ନ ଘେନ ଗୋ ସଖୀ ।
କହୁଁ କହୁଁ ଗନ୍ଧର୍ବ ଯେ ବେଢ଼ିଲେ କୁମରେ
ଜୀଅନ୍ତା ଧରି ନ ମାରି ଏହାକୁ ପ୍ରାଣରେ ।
ଅନେକ ନାଗତ ତାକୁ ଗନ୍ଧର୍ବ ମାଇଲେ
ଖଣ୍ଡି ମାରିଣ କୁମର ରଥ ଲୁଟଇଲେ ।
କୁମରହିଁ ଅନେକ ଯେ ନାଗତ ବାନ୍ଧିଲା
ଗନ୍ଧର୍ବମାନଙ୍କ ଶିର କାଟି ପକାଇଲା ।
ଦେଖି ବିସ୍ମରଇ ମନେ ମନେ ଚନ୍ଦ୍ରସେନ
ଧନ୍ୟ ରେ ମାନବ ତୋର ପିତାମାତା ଧନ୍ୟ
ମାନବ ହୋଇ ଦେବଙ୍କ ସଙ୍ଗେ ଆସି ଯୁଝୁ
ଇନ୍ଦ୍ରରାଜନ ପଠାଏ ଆମ୍ଭଙ୍କୁ ନ ବୁଝୁ ।
ଇସ୍ତ୍ରୀ ନ ହରଣ କନ୍ୟା ନେଉଅଛୁ ହରି
ଏତା ତୁ ଗନ୍ଧର୍ବଙ୍କ କୋଳିଲୁ ମାରି ।
କହୁଁ କହୁଁ ଅନେକ ଯେ ନାଗତ ବାନ୍ଧିଲା
କୁମର ରଥକୁ ଖଣ୍ଡଦୂର ନକରିଲା ।
ଦେଖି ଚନ୍ଦ୍ରସେନ ମନେ ମହାକୋପ କରି
ତୀକ୍ଷ୍ଣ ଶର ଅଷ୍ଟ ଶକ୍ତି ମାରେ କରେ ଧରି
କୁମର ସଙ୍ଗେ ନାଗତମାନ ଯେ ହଡ଼ିଲେ
ପବନ ବହିଲେ ଯେହ୍ନେ ଗିରି ନ ଟଳଇ ।
କୁମର ବାନ୍ଧିଲେ ଯେଉଁ ନାଗତ ନିକର
ଗନ୍ଧର୍ବବଳ ଲେଉଟିଣ ପଡ଼ନ୍ତି ଭୂମିର ।
ଏମନ୍ତେ ଦୁଇପ୍ରହର ସମର ହୋଇଲା
ଦୁହେଁ ମହାକ୍ଷତ୍ରୀ କେହି ଯୁଦ୍ଧ ନ ହାରିଲା ।
ଅନେକ ଯୋଜନ ସଂଗ୍ରାମ ପୁଣି ସେହି କଲେ
ଏକା ଜଣକୁ ବହୁତ ଆସିଣ ବେଢ଼ିଲେ ।
ଦେବ ନୃବେଳ ସମର ଯେ ହେଲା ଅଗୋଚର
କେ ତଡ଼ିବେ ଯୁଝିବ ସେ ଏକାକେ କୁମର

ବଳେ ବଳସ୍ତାଭ ପୁଣି ଚକ୍ରସେନ ଦେଲା
ଅନେକ ଗନ୍ଧର୍ବଙ୍କ ସେନାଣ ଧାଇଁଲା ।
କୁମରର ନାରାଚକୁ ତାର ଲକ୍ଷ୍ୟ ନାହିଁ
ରଥ ଉପରକୁ ନେନ୍ତି କେତେ ଚଢ଼ିଯାଇ ।
କୁମର ହସ୍ତରୁ ଧନୁ ଛଡ଼ାଇ ଆଣିଲା
କୃଷ୍ଣର କୁମରଙ୍କ ହସ୍ତ ନାଗପାଶେ ବାନ୍ଧିଲା ।
ଦେଖେ ଚିତ୍ରସେନ ଧରି କୁମରର ବାଳ
ଗର୍ବରେ ବାନ୍ଧିଲା ତାକୁ ଘେନି ପାଟଡୋର ।
ଆପଣାର ରଥେ ଧରିନେଇ ବସାଇଲା
କ୍ଷେ ଭାବତୀକ ଅନେକ ମନେ ଚିନ୍ତାସିଲା
କୁମାରୀ ବୋଇଲା ତୁମ୍ଭେ ମନବୃତ୍ତ୍ୟ କଲ
ଯୁବାକନ୍ୟା ମୁହିଁ ମୋତେ ବାପ ଯେ ନ ଦେଲା
ମୋହର ଇଚ୍ଛାରେ ଯେବେ ବାଞ୍ଛିଲି ମୁଁ ବର
ଏଥକୁ କୋପ କରାଇଁ କରୁଛ ଅପାର ।
କୁମର ବଚନ ଦେଖି ବ୍ୟାକୁଳ ହୁଅଇ
ମନେ ମନେ କ୍ଷେ ଭାବତୀ ଧର୍ମ ସୁମରଇ ।
ଜଗନ୍ନାଥ ଦେବଙ୍କୁ ସେ କରଇ ଗୁହାରି
ବୋଲେ ଜଗନ୍ନାଥ ତୁମ୍ଭ ଦୟା ବଇଭାସ ।
ମୁହିଁ ଅଟେ ଅରକ୍ଷିତ ସ୍ତ୍ରୀମାନଙ୍କ ସିନା
ତୁମ୍ଭର ପଗ ଉଡ଼ଇ ଜଗନ୍ନାଥ ବାବା ।
ଏ ଘୋର ଆତଙ୍କୁ ମୋତେ କରିବ ତା ତ୍ରାହି
ଯେମନ୍ତେ ଏ କୁମରକୁ ବାଧା ନ ଘଟଇ ।
ପୁଣି ସୁମରଇ ତହିଁ ଦେବୀ କମଳାମା
ତୁମ୍ଭ ମାତ ଜଗତର ଅଟୁ ଠାକୁରାଣୀ ।
ସ୍ତ୍ରୀଙ୍କର ବେଦନାକୁ ଜାଣୁ ଗୋସାମଣି
ଏ ଭବ ଭୟରୁ ମୋତେ ଉଦ୍ଧର ଗୋ ପୁଣି
ଅନେକ କରୁଣ ହୋଇ କନ୍ୟା ଯେ କାନ୍ଦଇ
କୁରଙ୍ଗୀ ନୟନରୁ ଯେ ଲୋତକ ଢଳଇ ।
ଗୋଟି ଗୋଟି ମୁକୁତା କି ପଡ଼ୁଅଛି ତଳେ
ସେହି ରୂପେ ନୟନରୁ ଅଶ୍ରୁବିନ୍ଦୁ ଗଳେ ।
କୁମରକୁ ବାନ୍ଧି ଘେନିଗଲା ଚିତ୍ରସେନ
ବାହୁକକୁ ବୋଲେ ରଥ ବାହା ତୁ ବହନ ।
କୁମର ମୁଖକୁ ଚାହିଁ ବସ୍ତ୍ରରେ ଗନ୍ଧର୍ବ
କୃଷ୍ଣର କୁମର ପ୍ରାପ୍ତ ହଣଇ ସ୍ୱଭାବ ।
ସୁଧର୍ମା ସଭାକୁ ସେହି ବେଗେ ଘେନିଗଲା
ସଭାର ତଳରେ ନେଇ କୁମରକୁ କଲା ।

ଦେଖି ତାକୁ ଇନ୍ଦ୍ରରାୟେ ବୋଇଲେ ବଚନ
କାହ୍ନୁ ଘରେ କାହାର ଅଟଇ ନନ୍ଦନ ।
ସଭାମଧ୍ୟେ ନାରଦ ଯେ ଥିଲେ ଉଭାହୋଇ
କୁମର ମୁଖକୁ ସେହି ଦେଖିଲେ ଅନାଇଁ ।
ଦ୍ୱାରବତୀ ଅଟଇ ଏ ଜାମ୍ବବତୀ ସୁତ
କ- କଟମ୍ଭା ନିମନ୍ତେ ହେଲା ଉପଗତ ।
ଶୋଭାବତୀ କନ୍ୟାକୁ ଏ ବଳେ ନେଉଥିଲା
ମୋତେ ଗୁପତେ ଏ କଥା କପାଁ ନ କହିଲା ।
କହୁ ନ ଭଣ୍ଡଣ ମୁନି ତୁନି ହୋଇ ଗଲେ
ମନବଞ୍ଚ ତତି ତହୁଁ ବାହାର ହୋଇଲେ ।
ଯାଉଁଣ ମିଳିଲେ ମୁନି ଦ୍ୱାରାବତୀ ପୁର
ସଭାକରି ବସିଛନ୍ତି ତହିଁ ଚକ୍ରଧର ।
ସେଠାରେ ମିଳିଲେ ଯାଇ ବ୍ରହ୍ମାଙ୍କ ନନ୍ଦନ
କୃଷ୍ଣକୁମର ଆକର ରାଜା ଉଗ୍ରସେନ ।
ସାତ୍ୱଂଶ ଯାଦବ ଯେ ବଳରାମ ଘେନ
ସଭାକରି ବସିଛନ୍ତି ଏ ସମୟେ ମୁନି ।
ପ୍ରବେଶ ହୋଇଲେ ଦେଖି ସର୍ବ ସଭାଜନ
ଆସନୁ ଉଠି ବନ୍ଦିଲେ ମୁନିଙ୍କ ଚରଣ ।
କୃଷ୍ଣ ପଚାରନ୍ତି ମୁନି ଥିଲ ତୁମ୍ଭେ କାହିଁ
କି ବାରତା ଆଣିଅଛ କହ ହେ ବୁଝାଇ ।
ନାରଦ ବୋଇଲେ ବାର୍ତ୍ତା ଶୁଣ ସାବଧାନେ
କନ୍ଦ୍ରଚମ୍ପା ନିମନ୍ତେ ଶାମ୍ବ ଗଲା ବନେ ।
ଶ୍ରୀରସେନ ଗନ୍ଧର୍ବଙ୍କ ଝିଅ ଶୋଭାବତୀ
ତାହାକୁ ଯେ ଆଣୁଥିଲା ଶାମ୍ବ ମହାକ୍ଷତ୍ରୀ ।
ଗନ୍ଧର୍ବେ ଜାଣିଣ ତାହା ବହୁତ ଯୁଝିଲେ
ଶାମ୍ବକୁମର ହସ୍ତରେ ଅନେକ ଯେ ମଲେ ।
ତହୁଁ ଇନ୍ଦ୍ରରାୟ ଚିତ୍ରସେନକୁ ପେଷିଲା
ସେହି ଆସି ଶାମ୍ବସଙ୍ଗେ ଘୋର ରଣ କଲା ।
ଅନେକ ପ୍ରକାରେ ମାରି ଘେନିଗଲା ବାନ୍ଧି
ବାସବ ଆଜ୍ଞାରେ ତାକୁ କରିଅଛି ବନ୍ଦ ।
ତାହାଦେଖି ଆମ୍ଭେ ବଡ଼ ବ୍ୟାକୁଳ ହୋଇଲୁ
ବାରତା କହିବା ପାଇଁ ଏଥକୁ ଆଇଲୁ ।
ପାରିଲେକ କୁମରକୁ ଆଣ ଯା ଛଡ଼ାଇ
ତାହା ଶୁଣି କୋପ କଲେ କମଳାର ସାଇଁ ।
ବୋଇଲେ କରିବ ଆଜ ସ୍ୱର୍ଗପୁର ନାଶ
ନୂଆ ଇନ୍ଦ୍ର ବସାଇବ ନେଇ ସ୍ୱର୍ଗବାସ ।

ଏତେକ ବଚନ ଯହୁଁ ଗୋବିନ୍ଦ କହିଲେ
କଳହପ୍ରିୟ ମୁନି ଯେ ହସିଣ ବୋଇଲେ ।
ଇନ୍ଦ୍ର ତୁଲେ ଯୁଦ୍ଧ ତୁମ୍ଭେ ନ ପାରିବ କରି
କପାଁ ଡରିବ ତୁମ୍ଭଙ୍କୁ ସେ ତ ବଜ୍ରଧାରୀ ।
ନାରଦଙ୍କ ବଚନରେ ଶ୍ରୀବତ୍ସ ଉଠିଲେ
ଧାତଳାରେ ବଳରାମ ସମ୍ମୁଖେ ମିଳିଲେ ।
ନମସ୍କାର କରି ତାଙ୍କୁ ବୋଲନ୍ତି ବଚନ
ଶୁଣ ଶୁଣ ସ୍ୱାମୀ ଏବେ ମୋହର ଜଣାଣ ।
ନନ୍ଦନବନେ ଜନକ ଚମ୍ପା ପାଇଁ ଗଲା
ଫୁଲଘେନି ଶାମ୍ବ ମୋର ରଥେ ଆସୁଥିଲା ।
ଦଇବବଶେ ଦେଖିଲା ଶୁଭସେନ ଝିଅ
ତାକୁ ବଳେ ଘେନି ଆସୁଥିଲା ମୋର ପୁଅ ।
ଚନ୍ଦ୍ରବଳ ଆସିଣ ତାହାକୁ ବେଢ଼ିଲେ
ଅନେକ ଯୁଦ୍ଧ କରିଣ ପୁଏ ବାନ୍ଧି ନେଲେ ।
ଏଥିକୁ କି ଆଜ୍ଞା ମୋତେ କହ ହଳଧର
ଶୁଣି ବଳରାମ ତାଙ୍କୁ ବଚନ କହନ୍ତି ।
ଏମନ୍ତ କପାଇଁ କଲା ତୋହର ନନ୍ଦନ
ବଳାତ୍କାରେ କଲା ପରସ୍ତ୍ରୀକୁ ହରଣ ।
କେତେ କଳିଦ୍ୱନ୍ଦ୍ୱ ତାହା ସଙ୍ଗେ ଯେ କରିବ
ଜାଣି କେମନ୍ତେ ବାନ୍ଧିଲା ପୁତ୍ରକୁ ବାସବ ।
ଅମରପୁର କରିବି ଆଜ ମୁଁ ନିପାତ
ଦେବତାଙ୍କୁ କରିବଇଁ ନଷ୍ଟେ ଭସ୍ମୀଭୂତ ।
ଏହା କହି ବଳରାମ କୋପଭର ହେଲେ
ବାତାଘାତେ ଉଲ୍କାପରି ପ୍ରାନ୍ତୁକ ଥରିଲେ ।
ଥରହର ହୋଇ କମ୍ପୁଛନ୍ତି ହଳପାଣି
ସଉନନ୍ଦ ଗଦା ଦେବ ହସ୍ତେ ନେଲେ ପୁଣି ।
କ୍ରୋଧଭରେ ବଳରାମ ବାହାର ହୋଇଲେ
ବାମକରେ ବେଗେ ସେହି ଲଙ୍ଗଳ ଧଇଲେ
ଆଜ ମୁଁ ଇନ୍ଦ୍ରକୁ ପଠାଇବି ଯମପୁର
ବନ୍ଧନକରି ରଖିଛି ସେ ମୋହର କୁମର ।
ବଳରାମଙ୍କର କୋପ ଜାଣିଲେ ନାରଦ
ବୋଇଲେ ହୋଇବ ଏଥେ ବହୁତ ପ୍ରମାଦ ।
ଦ୍ୱନ୍ଦ୍ୱକଳି ଯେ ଏଠାରେ ବହୁତ ହୋଇବ
କଳି କୁତୂହଳ ଆମ୍ଭେ ଦେଖିବାକୁ ପାବ ।
ବୋଇଲେ ଯେ ହଳପାଣି ସାବଧାନେ ଶୁଣ
ଠାଟ ସଜ କରି ବେଗେ ତହିଁ ଯିବା ପୁଣ ।

ଏହା କହି ବଳରାମ ଲଙ୍ଗଳ ଧଇଲେ
ଗୋବିନ୍ଦ ଯେ ଉଦ୍ଧବକୁ ଡକାଇ ଆଣିଲେ ।
ଉଗ୍ରସେନ ଅଛି ନଜକର ଆସୁ ଆଗେ
ସାତବଂଶ ସଜ ହୋଇ ଆସନ୍ତୁ ଯେ ବେଗେ ।
ଆଜ୍ଞା ପାଇଣ ଉଦ୍ଧବ ତହୁଁ ବେଗେ ଗଲେ
ଉଗ୍ରସେନଙ୍କ ସଭାରେ ଯାଇଣ ମିଳିଲେ ।
ନମସ୍କାର କରି ତାଙ୍କୁ କହିଲେକ ପୁଣ
ସାବଧାନ ହୋଇ ଦେବ ଶୁଣ ମୋ ବଚନ ।
ଠାକୁରଙ୍କ ଆଜ୍ଞା ଅଛି ବେଗେ ନଜକର
ଇନ୍ଦ୍ରଦେବ ସଙ୍ଗତରେ ହୋଇବ ସମର ।
ନନ୍ଦନବନକୁ ଶାମ୍ବ ବନେ ଯାଇଥିଲା
ଜନକଚମ୍ପା ସେ ବନୁ ସେ ଲଣ ଆଣିଲା ।
ଇନ୍ଦ୍ରର ଭାଉଣୀ ସେହି ଶୋଭାବତୀ କନ୍ୟା
ନନ୍ଦନବନକୁ ଆସିଥିଲା ବରାଙ୍ଗନା ।
ସେ କନ୍ୟା ଶାମ୍ବକୁମର ଭେଟ ଯେ ପାଇଲା
ତାହାକୁ ଦେଖି କୁମାରୀ ବିହ୍ୱଳିତ ହେଲା ।
କୁମାର କୁମାରୀ ତହୁଁ ସଂଯୋଗ ହୋଇଲେ
ରଥରେ ବସାଇ ଶାମ୍ବ କନ୍ୟାକୁ ଆଣିଲେ ।
ବାରତା ପାଇଣ ଇନ୍ଦ୍ର ଧରାଇଣ ନେଲା
ନେଇଣ ବନ୍ଦୀ ପ୍ରକାରେ ତାହାକୁ ରଖିଲା ।
ନାରଦ ମହର୍ଷି ଆସି ବାରତା କହିଲେ
ଶୁଣି କୃଷ୍ଣ ବଳରାମ ମହାକୋପ କଲେ ।
ବୋଇଲେ ଇନ୍ଦ୍ରର ସଙ୍ଗ କରିବୁ ସମର
ସ୍ୱରଗ ପୁରକୁ କରିଦେବୁ ଛାରଖାର
ମୋତେ ପେଷିଲେ ତୁମ୍ଭର ପାଶେ ନୃପ ପୁଣ
ସଭାର ସମ୍ମୁଖେ କହ ସମସ୍ତ ବିଧାନ ।
ଏହା ଶୁଣି ଉଗ୍ରସେନ ରାଜା ଘୋଷ କଲେ
ଛଡ଼ିଦାରୀ ସେବକଙ୍କୁ ଡାକି ଆଜ୍ଞା ଦେଲେ ।
ସାତବଂଶ ଯାଦବ ଯେ ସଜ ବେଗେ ହୁଅ
ଯାନ ବାହନ ଚଢ଼ିଣ ବେଗ ହୋଇ ଯାଅ ।
ଅଶ୍ୱଧର ବେଗେ ଯାନ ବାହନ ସାଜିଣ
ଅନାଧୃଷ୍ଟ ସାତ୍ୟକ ଯେ ଚନ୍ଦ୍ର ସଙ୍ଗେଣ ।
ତହୁଁ ଆଜ୍ଞା ପାଇମାନେ ଦୁତେ ଚଳିଗଲେ
ବେଗେ ବାଟରେ ଘୋଷଣା ସେହି ବଜାଇଲେ
ବାରତା ପାଇଣ ସାତବଂଶର ଯାଦବେ
ସଜ ହୋଇ ଉଭା ହେଲେ ବାଟରେ ସମସ୍ତେ

ଆପଣେ ଯେ ଭୃତ୍ୟବେଶ ହେଲେ ଉଗ୍ରସେନ
ରଥ ସାଜିଣ ଅନ୍ତର ଆଣିଲ ବହନ ।
ସେ ରଥରେ ଉଗ୍ରସେନ ଯାଇ ବିଜେ କଲେ
ଧବଳ ଛତ୍ର ଗୋଟିଏ ଉପରେ ଉଠିଲେ ।
ଉଦଣ୍ଡ ଯେ ଗାଂଟିକ ଉଡ଼ାଇ ଆଗରେ
ଶଙ୍ଖ ଯେ ପଦ୍ମଗ ଅଦ ବଜାଇ ଉଚରେ ।
ବାଦ୍ୟନାଦ ଶବଦରେ ନରୂପ ଉଚ୍ଛୁଳ
ଦଳ ଦଳ ହୋଇ କମ୍ପେ ଭୂମି କଷତଳ ।
ସୈନ୍ୟମାନେ ଘଟକୋଳ ଆଗେ ଉଭା ହେଲେ
ମାର ମାର ଶବଦରେ ମହୀ ଘୋଟିଲେ ।
ଶୁଣ ଆହେ ମନୁଗଜା କହନ୍ତି ଅଗସ୍ତି
ଏ ମହାଭାରତ କଥା ଶୁଣ ଦେଇ ମତି ।
ହଳୀ ବଳରାମ ଯେନ ସାଜି ସଜ ହୋଇ
ରଥ ଚଢ଼ି ଦ୍ୱାରରେ ସେ ଉଭା ହେଲେ ଯାଇ
ଶ୍ରୀକୃଷ୍ଣଙ୍କ ପୁତ୍ରମାନେ ଉଭା ହେଲେ ତହିଁ
ବଳରାମ ଦୁଇପକ୍ଷେ ତାହାର ଯେ ହୋଇ ।
ଯେ ଯାହାର ଶସ୍ତ୍ରମାନ ଧରିଣ ଅଛନ୍ତି
ଆପେ ବୈଶ୍ୟବେଶ ହୋଇ ଅଇଲେ ଶ୍ରୀପତି ।
ଗରୁଡ଼କୁ ସୁମରିଲେ ଦେବ ଚକ୍ରଧର
ରମ୍ୟକ ଦ୍ୱୀପରୁ ଅଇଲା ବିନତା କୁମର ।
ଦ୍ୱାରକାପୁରେ ସେହି ମିଳିଲା ଆସି
ହରିଙ୍କୁ ଦେଖିଣ କ୍ଷିତେ କରିଲୁ ନତେଶି ।
କହିଲେ ସମସ୍ତ କଥା ତାକୁ ନାରାୟଣ
ବନ୍ଦୀ କରିଅଛି ମୋର ପୁତ୍ରେ ସୁରଗଣ ।
ମୋହର କୁମର ବୋଲି ନାରଦ କହିଲେ
ତଥାପି ଇନ୍ଦ୍ର ଦେବତା ତାକୁ ନ ଛାଡ଼ିଲେ ।
ଶୁଣି ଖଗବର କହେ କରଯୋଡ଼ି କରି
ତୋର ସମ୍ମୁଖରେ ସିନା ଅଟେ ସ୍ୱର୍ଗପୁରୀ ।
ଆପଣ ର ମହିମା କୁ ଆପେ ନ ଜାଣୁଛ
ଇନ୍ଦ୍ର ଦେବତାଙ୍କୁ ଏଡ଼େ କୋପ କପାଁ କରୁ ।
ନାରାୟଣ ବୋଇଲେ ସେ ଗର୍ବିଷ୍ଟ ହୋଇଲା
ଆପଣା ଇଚ୍ଛାରେ ନିଜ ସମ୍ପଦ ହାରିଲା ।
ଆଜ ତାର ପୁତ୍ରଙ୍କୁ ମୁଁ କରିବଇଁ ନାଶ
ଆନ ଇନ୍ଦ୍ର କରି ବସାଇବି ସ୍ୱର୍ଗବାସ ।
ଶଙ୍ଖ ଚକ୍ର ଶାରଙ୍ଗ ଯେ ଗଦା ଧନୁ ଧରି
ଆପଣେ ସଜ ହୋଇଲେ ଦେବ ଦଇତ୍ୟାରି ।

ଗରୁଡ଼ ପିଠିରେ ଦେବ ଯାଇ ବିଜେ କଲେ
ବଳରାମ ତାଳଧ୍ୱଜ ରଥରେ ବସିଲେ ।
ଅନେକ ସଇନ୍ୟ ଘେନି ଉଗ୍ରସେନ ରାୟେ
ଆଗ ହୋଇକରି ସେହୁ ବାହାରିଣ ଯାଏ ।
ଉଦଣ୍ଡ ଯେ ଏକଲକ୍ଷ ଉଡ଼ାଇ ଆଗରେ
ପ୍ରଚଣ୍ଡ ହୋଇଣ ବାଦ୍ୟ ବାଜେ ଘନଘନେ ।
ଶ୍ରୀକୃଷ୍ଣ ପୁତ୍ରମାନଙ୍କୁ ଘେନି ବଳରାମ
ଆପଣେ ବାହାର ହେଲେ ତତକ୍ଷଣ ।
ଥାଟ ଚଳାଇ ସବୁରେ ବାହାର ଯେ ହେଲେ
ଦେବ ଦାମୋଦର ପଛେ ବିଜେ କରିଗଲେ ।
ଗରୁଡ଼କୁ ଏକାକରେ କରି ଭଗବାନ
ଗମ ନେଲେ ଲକ୍ଷ୍ୟ କରି ସ୍ୱରଗ ଭୁବନ ।
ମାଣବଙ୍କର ଯାଦବ ସହୁଁ ବାହାରିଲେ
ସୈନ୍ୟଙ୍କୁ ଦେଖି ନାରଦ ମନେ ଚମକିଲେ ।
ହରି ସହସ୍ରାକ୍ଷର ଯେ ହୋଇବ ସମର
କଲି କୁତୂହଳେ ଘେନି ପଣବ ଆନନ୍ଦ ।
ପଳନେ ଯାହା ପଦରେ ମୂର୍ଚ୍ଛି ଲେଉଟାଇ
ଦଇବ ପୁରୁଷ ତାହା ଦେଲେକ ଘଟାଇ ।
ଏତେ ବେଗେ ନାରଦ ଆନନ୍ଦେ ନାଚନ୍ତି
ବୀଣା ଧ୍ୱନି କରି ସେହୁ ଶୂନ୍ୟରେ ଗାଅନ୍ତି ।
କାଖରେ ଯାକିଣ ଜଳଧୋକଡ଼ି ଯେ ମୁଣି
ଧୂଳି ମୁଠାଏ ବାହାର କଲେ ମହାମୁନି ।
ଲାଗୁ ଲାଗୁ ବୋଲିକରି ତହୁଁ ଡାକ ଦେଲେ
ତତପରେ ମଦହସ୍ତି ଚଢ଼ି ବାହାରିଲେ ।
ଯାଇଣ ମିଳିଲେ ମୁନି ଅଳକା ଭୁବନେ
ସୁରପତି ବସିଥିଲେ ସ୍ୱରଗ ଆସ୍ଥାନେ ।
ତାହାଙ୍କୁ ଦେଖି ବୋଇଲେ ଜାଣିଥିଲ ମୁନି
ନାରଦ ବୋଇଲେ ତୁମ୍ଭେ ଶୁଣ ସୁରମଣି ।
ଯାହା ପଚାରିଲେ ତାହା ଶୁଣ ସାବଧାନେ
ରହିଥିଲୁ ଆମ୍ଭେ ଇନ୍ଦ୍ର ମଞ୍ଚ ଯେ ଭୁବନେ ।
ଏହିକ୍ଷଣି ଦ୍ୱାରକା ପୁରେ ଆମ୍ଭେ ଥିଲୁ
ଅପୂର୍ବ କଥାଏ ତହିଁ ଦେଖିଣ ଅଇଲୁ ।
ଶ୍ରୀକୃଷ୍ଣଙ୍କ ପୁତ୍ର ସେ ଯେ ଶାମ୍ବ କୁମରକୁ
ନ ଜାଣି ତୁ ଇନ୍ଦ୍ର ଧରି ରଖିଛୁ ତାହାକୁ ।
ସେହି ବାରତା ପାଇଣ ହରି ବଳରାମ
ଥାଟ ଘେନି ଆସୁଛନ୍ତି କରିବେ ସଂଗ୍ରାମ ।

ରୁଦ୍ର କୋପ କରି ଆସୁଛନ୍ତି ବଜ୍ରଧର
ହୋଇଲେ ଇନ୍ଦ୍ରଙ୍କ ସେଥିକରିଁ ସମପୁର ।
ଅଳକାପୁର ଭଣ୍ଡାର ଆଜ ଲମ୍ବସ୍ତି
ଗନ୍ଧର୍ବଗଣଙ୍କ ନଟଶେଁ ସଭାଇଥ ଠାଣ୍ଡି ।
ଗରୁଡ଼ ପୃଷ୍ଠେ ଚଢ଼ିଣ ଦେବ ନାରାୟଣ
ମେନ୍ଦ୍ର ବୋଇଲେକ ପୁଣି ଗାଢ଼ ସେ ବଚନ ।
ଉଗ୍ରସେନର ପ୍ରତିଜ୍ଞା ଜନ୍ମ ନ ସରଲ
ସାତବଂଶ ସହିତରେ ତାହାର ଯେ ହୋଇ ।
ସଙ୍ଗରେ ସଇନ ସେନ ଆସେ ପ୍ରଗଟିତ
ଏବେ ଆରେକ ପ୍ରତିଜ୍ଞା କରନ୍ତି ବହୁତ ।
ସମସ୍ତ ସୈନ୍ୟଙ୍କୁ ପେଷି ଆଗେ ନାରାୟଣ
ପଛ ପୃଷ୍ଠେ ଆରେ ଆସୁଅଛନ୍ତି ଆପଣ ।
ଅନେକ ଶୋକ କରିବେ ଏଥି ଦାମୋଦର
ଯାହା ଦେଖି ଅଇଲ ମୁଁ ଦେଖ ନୟନର ।
ଶୁଣି ବାସବ ଭର୍ମଇ ହୋଇ ଅନ୍ତର
ବଜ୍ର ଝୁମକାଇ ତୋଷେ ଭରଇ ଉତ୍ତର ।
ଯେ ମୁନ ନାରଦ କହେ କହ ରଥ୍ୟକର
ଗୋପାଳକ କି ଆସୁଛନ୍ତି ଏ ମୋହର ପୁରୀ ।
ମଣ୍ଡଳରାଜା ପ୍ରାପ୍ୟ ସେହୁ ମୋତେ ତ ମଣିଛୁ
ସଭାଙ୍କର ଝିଅ ସବୁ ଯେପରି ବହୁଛୁ ।
ତେସନ ପ୍ରାପ୍ୟ କ ସେହ୍ନ ମଣିଅଛୁ ମୋତେ
ଏତେକ ବୋଲି ବହୁତ କୋପ କରି ଚିତ୍ତେ ।
ଆଜ ସମର କରିବ ଯେବେ ମୋର ଭୁଜେ
ଗରୁଡ଼ର ବଡ଼ପଣ ଭାଙ୍ଗିଦେବ ଭଲେ ।
ଗରୁଡ଼ ବାହଡ଼ି ସେହ୍ନ ଅଟଇ ଭୁଜଙ୍ଗ
ପ୍ରତିଜ୍ଞା ଯେ କରିଛନ୍ତି ଭ କ ଶିମାଗଣ ।
ବ୍ରହ୍ମାଙ୍କୁ ସୃଷ୍ଟି କରଇ ପୁଣି ଷଡ଼ଗସ୍ତ
ଶୁଣିଲ ଯାହା କହିଲେ କୁସୁର ଜନସ୍ତ ।
କଟେ ସ୍ୱର୍ଗପୁରେ ପଶି ହରେ ପଇଠିଅ
ସେ ଦୁଷ୍ଟଜନ ବାଞ୍ଛିଲ ଏ ମୋର ଅନ୍ୟାୟ ।
ଛାଡ଼ି କାମନ୍ତ୍ରେ ସ୍ୱର୍ଗକୁ ଆସେ ରାମ ହରି
ନ ବସ୍ତର ଏତା କପାଁ ଆଣେ କୁଟଧାରୀ ।
ପ୍ରଜାପତି ବୋଇଲେ ଯେ ଶୁଣ ସୁରରାଜ
କଥାଏକ କହିବା କୁ ସାବଧାନେ ଶୁଣ ।
ଆରମ୍ଭ ପ୍ରତିଜ୍ଞା ଭୁଲ ନ କର ଯେ ଯାତେ
ଦେଖିଲେ ଜାଣିବା କେତେ ବଳିଷ୍ଠ ଗରୁଡ଼େ
ଆମ୍ଭ ଦେବଗଣଙ୍କୁ ତୁ ବେଗେ ସଜ କର
ଗରୁଡ଼ର ସହିତରେ କରିବା ସମର ।
ସାତବଂଶ ଯାଦବଙ୍କୁ କରିବାକୁ ନାଶ
ଏଥିକୁ ଚିନ୍ତା ନ କର କୃଷ୍ଣ ଦେବେଶ ।
ବାସବ ବୋଇଲେ ସଜ ହୁଅ ଦେବସୈନ୍ୟ
ଆଜ ଗରୁଡ଼ ଗର୍ବ ଜରିବା ଭଞ୍ଜନ ।
ସୁଭସେନ ଚିତ୍ରସେନ ଆଦଙ୍କର ମୂଳେ
ଚଉଷଠି ଗନ୍ଧର୍ବ ଯେ ଇନ୍ଦ୍ରଙ୍କ ଛାମୁରେ ।
ଅଶ୍ୱିନୀକୁମାର ଆଦି ସକଳେ ଧାଇଁଲେ
ସମସ୍ତେ ଯାଇଁ ବାସବ ଛାମୁରେ ମିଳିଲେ ।
ଶସ୍ତ୍ର ଧରି ଦେବତାଏ ବେଗେ ଝମକାନ୍ତି
ଏବେ ଆରେକ ପ୍ରତିଜ୍ଞା ବହୁତ କରନ୍ତି ।
ବରୁଣ ପବନ ଯମ ଚନ୍ଦ୍ର ସୂର୍ଯ୍ୟମାନେ
ଦେବଗଣ ସଜହୋଇ ଆସି ଉତ୍ତରିଲେ ।
ବାରତା ପାଇ ବାସୁକୀ ଆଦି ସେନ ଆସି
ଗ୍ରହ ନକ୍ଷତ୍ର ଆସିଣ ହେଲେ ମିଶାମିଶି ।
କଇଳାସ କନ୍ଦରୁ ଯେ ଆସିଲେ ଶଙ୍କର
ଶିବଗଣ ତାଙ୍କ ସଙ୍ଗେ ଅଛନ୍ତି ଅପାର ।
କାର୍ତ୍ତିକ ଗଣେଶ ନନ୍ଦୀ ଭୃଙ୍ଗୀର ମୂଳେ
ସଜହୋଇ ହେଲେ ଆସ୍ଥାନର ତଳେ ।
ଜଳ୍ପାକର ବୃଷଭରେ ଚଢ଼ି ମହାଦେବ
ସେହ୍ନ ଆସି ମିଳିଲେକ ଦେବସଭା ଠାବ ।
ସଜ ହୋଇ ହେଲେ ଆସ୍ଥାନର ତଳେ
ତେତିଶକୋଟି ଦେବତା ଗନ୍ଧର୍ବ ସବୁଏ ।
ଈଶ୍ୱରଙ୍କୁ ସ୍ମରିଁ କହେ ଦେବ ସୁରପତି
ଜାଣନାହିଁ କି ମହେନ୍ଦ୍ରୀ ଚରଣର ଗତି ।
କୃଷ୍ଣ ପୁତ୍ର କାର୍ତ୍ତିକକୁ ବରିଲା ତା ମାତ
ଆମ୍ଭ ପ୍ରତିଜ୍ଞାରେ କନ୍ୟା ନେଲା କୃଷ୍ଣପୁତ୍ର ।
ତହିଁରେ ଆବର ଯେତେ ଅନର୍ଥ ହୋଇଲା
ବ୍ରହ୍ମା ଆଇ ତାହା ସବୁ ନିର୍ଣ୍ଣୟ ଯେ କରିଲା ।
ଏଡ଼େ ବଡ଼ କଳି ଯଣ୍ଡକରେ ନିବାରିଲ
କେତେ କେତେ ଲୋକ ଆସିଲେକ ପରିବାର
ଏବେ ସେହ୍ନ ପୁଣି କଳି ଆରମ୍ଭିଛୁ ଆସି
ସଙ୍କଟରେ ଆଣୁ ଏଥା ନାରଦ ମହର୍ଷି ।
ଈଶ୍ୱର କହନ୍ତେ ଇନ୍ଦ୍ର ଦେବତା ହସିଲେ
ଖଣ୍ଡଦୂରେ ଥାଇ ତାହା ନାରଦ ଶୁଣିଲେ ।

ବୋଇଲେ ଆମ୍ଭଙ୍କୁ ନିନ୍ଦା କଲେ ବିଶ୍ୱନାଥେ
ଆମ୍ଭର ଯେ କିସ ଦୋଷ ହୋଇଲାକ ଏଥେ ।
ଦେଖିଲ କଥାକୁ ସିନା କହୁ ଆମ୍ଭେ ଆସି
ଏଥିର ନିମନ୍ତେ ନିନ୍ଦା କଲେ ବିଶ୍ୱବାସୀ ।
ଶିବ ମୁଖୁଁ ଏହା ଶୁଣି ନାରଦ ଉଠିଲେ
ମନଦଣ୍ଡ ଚଢ଼ି କୃଷ୍ଣ ଗ୍ରାମୁରେ ମିଳିଲେ ।
ନାରଦ ମୁନିଙ୍କୁ ଦେଖି ଦେବ ନାରାୟଣ
ବୋଇଲେ ଆଇଲ କିସ ଦେଖି ମହାଶୂନ୍ୟ ।
ନାରଦ ବୋଇଲେ ଇନ୍ଦ୍ର ସୃଷ୍ଟିକି ତୋ ଲୁଚିଲେ
ଈଶ୍ୱର ବୋଇଲେ ଗାଡ଼େ ତାହାର ଆଗରେ
ଈଶ୍ୱର କହନ୍ତେ ଅନନ୍ତ ଖଙ୍ଗ ଯେ ପାଇଲୁଁ
ତୁମ୍ଭଙ୍କୁ କହିବା ପାଇଁ ଏଥିକୁ ଆଇଲୁ ।
ମାନେନ୍ଦ୍ରୀ ହରଣର ଯେ ଯେତେକ ଚରିତ
ତାହା ସ୍ମରଣ କୋପ କରେ ଶୂଳହସ୍ତ ।
ନାରଦଙ୍କଠାରୁ ହରି ସମସ୍ତ ଶୁଣିଲେ
କ୍ରୋଧଭର ହୋଇ ଦେବ ଚରଣ କହିଲେ ।
ସଦାଶିବଙ୍କ ଲୁଟିବା ଆଜ ବଡ଼ପଣ
କେତେ ଗାଡ଼ରେ ଭରିବେ ଆମ୍ଭ ସଙ୍ଗେ ରଣ
ଏତେକ ଜଗୁଲି କହୁଁ ଦେବ ନାରାୟଣ
କହନ୍ତି ଗୁପତେ ଦେବ ଅକ୍ରୂରେ ଡାକଣ ।
ବାରୁଣାବନ୍ତକୁ ତୁମ୍ଭେ ଏହିକ୍ଷଣି ଯିବ
ଯୁଧିଷ୍ଠିର ଠାକୁରଙ୍କୁ ବାରତା କହିବ ।
ସାତ ଅକ୍ଷୌହିଣୀ ବଳ ସେନ ପାଣ୍ଡବଇ
ଆସିବେ ଅର୍ଜୁନେ ମଧ୍ୟ କହିବୁ ବୁଝାଇ ।
ବଳରାମ ବୋଇଲେ ତୁ ଯିବୁ ହସ୍ତିନାକୁ
କହିବୁ ଯାଇ ଏ କଥା ମାଦ୍ରଗୋବିନ୍ଦକୁ ।
ନାରାୟଣ ଆଜ୍ଞା ଘେନି ମନ୍ତ୍ରୀବର ପୁଣ
ଚଳିଲା ବାରୁଣାବନ୍ତ ସେହୁ ତତକ୍ଷଣ ।
ବାରୁଣାବନ୍ତରେ ସେହୁ ପ୍ରବେଶିଲା ଯାଇ
ଆହ୍ଲାଦେ ବସିଅଛନ୍ତି ଧର୍ମ ଭରସାଇଁ ।
ଏହି ସମୟରେ ଯାଇ ଅକ୍ରୂର ମିଳିଲା
ଯୁଧିଷ୍ଠିଙ୍କୁ ଦେଖି ଶିରେ କର ନବେଶିଲା ।
ଭୀମ ଅର୍ଜୁନଙ୍କୁ ସେହୁ ଆଲିଙ୍ଗନ କଲେ
ନମିଲେ ନକୁଳ ସହଦେବ ତା ପୟରେ ।
ଯୁଧିଷ୍ଠିର କହିଲେ ଆସ ଆସ ହେ ଅକ୍ରୂର
ପରମ ଭାଗ୍ୟ ଯେ ଆଜ ହୋଇଲା ଆମ୍ଭର ।

ମୋତେ ସଙ୍ଖୋଳି କି ତୁମ୍ଭେ ଆସିଅଛ କାତେ
ଆବର କି ଉଠିଅଛନ୍ତି ଦେବସଙ୍କେ ।
ଅକ୍ରୂର କହଇ ଦେବ ସାବଧାନେ ଶୁଣ
ମୋତେ ପଠାଇଣ ଦେଲେ ଦେବ ନାରାୟଣ
ଇନ୍ଦ୍ର ଗୋବିନ୍ଦଙ୍କର ଯେ ହୋଇବ ସମର
ଏଥିପାଇଁକି ପେଷିଲେ ମୋତେ ଦାମୋଦର
ଯୁଧିଷ୍ଠି ବୋଇଲେ ଇନ୍ଦ୍ର ଗୋବିନ୍ଦ କି ଗୋଳ
ଏ କଥା ସଂକ୍ଷେପି ମୋତେ କହ ତୁ ଅକ୍ରୂର ।
ଅକ୍ରୂର ବୋଇଲା ତୁମ୍ଭେ ଶୁଣ ସାବଧାନେ
ନନ୍ଦନନ୍ଦନଙ୍କୁ ଗଲା କୁମ୍ଭର ନନ୍ଦନେ ।
କନକଡମ୍ବା ପୃଷ୍ଠ ଯେ ଆଣିବାର ବେଳେ
କନ୍ୟା ଗୋଟିଏ ମିଳିଲା ଆସି ସେହିଠାରେ ।
ସୁରସେନ ଗନ୍ଧର୍ବର ଅଟଇ ଦୁହିତା
ଅତ୍ୟନ୍ତ ସୁନ୍ଦରୀ ନାମ ତାର ଶୋଭାବତୀ ।
ସେ କନ୍ୟା ମାଳା ଦେଇଣ କୁମରେ ବରିଲା
ତାହାର ରୂପକୁ ଦେଖି ଶାମ୍ବ ବଶ ହେଲା ।
ଦୁଇ ଜଣଙ୍କର ମନ ଏକ ହେଲା ଯହିଁ
କନ୍ୟାକୁ ରଥେ ବସାଇ ଆଣିଲାକ ସେହି ।
ବାରତା ପାଇ ଗନ୍ଧର୍ବେ ଆସି ଓଗାଳିଲେ
ଯୁଦ୍ଧକରି କୁମରକୁ ଧରି ନେଇଗଲେ ।
ବନ୍ଦୀ ଘରଦ୍ୱାରେ ତାକୁ ଅଛନ୍ତି ରଖାଇ
ବାରତା ପାଇଣ କୋପ କଲେ ଯଦୁସାଇଁ ।
ନାରଦ ମୁନି ଆସିଣ ବାରତା କହିଲେ
ଅଷ୍ଟ ସୈନ୍ୟ ଘେନି ଉଗ୍ରସେନ ବାହାରିଲେ
ବଳରାମ ହରିଦ୍ୱନ ସମସ୍ତଙ୍କୁ ଘେନି
ଯୁଦ୍ଧ କରିବାକୁ ଚଳିଗଲେ ବଳ ଘେନି ।
ସମସ୍ତ ସଜ ହୋଇଣ ବାହାର ଯେ ହୋଇ
ଅଛନ୍ତି ଉଗ୍ରସେନ ରାଜନ ଚଳାଇ ।
ଗଳ ହଟୁଆରେ ଛନ୍ତି ଦେବ ଦାମୋଦର
ବାରତା ପାଇଣ ତେଣେ ଆସେ ବଜ୍ରଧର ।
ମୋତେ ହକାରି ବୋଇଲେ ଦେବ ନାରାୟଣ
ବେଗେ ସେନ ଆସ ପଣ୍ଡୁପୁତ୍ରଙ୍କୁ ସଙ୍ଗେଣ ।
ସାତକ୍ଷୌହିଣୀ ବଳ ଘେନି ଆସୁ ବେଗ ହୋଇ
ଆବର ଆସନ୍ତୁ ଦୁର୍ଯ୍ୟୋଧନ ଶତେ ଭାଇ ।
ବେଗେ ସଜ ହୁଅ ଦେବ ଯିବାକ କହନ
ଘୋର ସଂଗ୍ରାମ ତେଣେ ଯେ ହୋଇବଟି ପୁଣ

ଏହା ଶୁଣି ଯୁଧିଷ୍ଠିର ଡଗରକୁ ଘଇ
ବୋଇଲେ ହସ୍ତିନାପୁରେ ଯାଅ ବେଗ ହୋଇ
ବଳରାମ ଠାକୁରଙ୍କୁ କହିବୁ ସନ୍ଦେଶ
ଏଗାର ଅକ୍ଷଉଣୀ ବଳ ଘେନି ବେଗେ ଆସ ।
ତକ୍ଷଣେ ହସ୍ତିନାପୁରେ ଡଗର ମିଳିଲା
ବଳଦେବଙ୍କ ଆଦେଶ ବୋଲିଣ କହିଲା ।
ଏଗାର ଅକ୍ଷଉଣୀ ଥାଅ ସଙ୍ଗତରେ ଘେନି
ବହନ ଆସିବା କହିଛନ୍ତି ହଳପାଣି ।
ଶୁଣି ଦୁର୍ଯ୍ୟୋଧନ ମନେ ଆନନ୍ଦ ହୋଇଲା
ଅତହୁଁ ବାରତା ଯହୁଁ ପାଇଣ ସେ ଥିଲା ।
ଡଗର ମୁଖରୁ ରାଜା ସମସ୍ତ ଶୁଣିଲେ
ଏଗାର ଅକ୍ଷଉଣୀ ବଳ ତକ୍ଷଣେ ସାଜିଲେ ।
ବାଜେ ଟମକ ନିଶାଣ ପୁଷି ଭେରୀତୂର
ବଜାଇ ଶଙ୍ଖ ମହୁରୀ ହୋଇ ଧୀର ଧୀର ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୂରିଶ୍ରବାର ସହିତେ
ଜୟଦ୍ରଥ ଶକୁନି ଯେ ସାଜିଲେ ତୁରିତେ ।
ଜୟଶଙ୍ଖ ବଜାଇଣ ହୋଇଲେ ବାହାର
ସୈନ୍ୟ ଚଳନ୍ତେ ପୃଥିବୀ କମ୍ପେ ଦୁଲଦୁଲ ।
ସାତଅକ୍ଷୌଣୀ ବଳସେନ ପଣ୍ଡୁର କୁମର
ଭେରୀତୂରୀ ବଜାଇଣ ହୋଇଲେ ବାହାର ।
ଉଦ୍ଦଣ୍ଡ ଯେ ଧ୍ୱଜଛତ୍ର ଉଡ଼େ ଫରଫର
ମୁଖବାଦ୍ୟ ଶବଦରେ କମ୍ପେ ବନଘୋର ।
ଜୟ ମଙ୍ଗଳ ଉଚ୍ଚାରି ବାହାର ହୋଇଲେ
ଯେ ଯାହା ମନ ଇଚ୍ଛାରେ ସଇନ୍ୟ ଧାଇଁଲେ
ବେଗ ବେଗକରି ରଥ ଚଳାଇଣ ଯାଇ
ବାଟରେ ଭେଟିଲେ ସେହି କମଳାର ସାଇଁ
ଯୁଧିଷ୍ଠିରଙ୍କୁ ଦେଖିଣ ଦେବ ନାରାୟଣ
ନମସ୍କାର କଲେ ଆସି ତାହାଙ୍କ ଚରଣ ।
ଭୀମ ଅର୍ଜ୍ଜୁନ ପ୍ରମୁଖ ସେହି ଚାରିଭାଇ
ଗୋବିନ୍ଦ ଚରଣେ ନମସ୍କାର କଲେ ଯାଇଁ ।
ଯୁଧିଷ୍ଠିର ବୋଇଲେ କିସ ଏ ଚରିତ
କିପା ଏତେ ବନ୍ଧୁ ଅଇଲେ ପ୍ରସ୍ତୁତ ।
ଦୁର୍ଯ୍ୟୋଧନ ବଳରାମ ପ୍ରମୁଖେ ମିଳଇ
ବଳରାମେ କହନ୍ତି ଯେ ଶୁଣ କୁରୁସାଇଁ ।
ଶୁଣି ଅଛନ୍ତି କି ଇନ୍ଦ୍ରଦେବଙ୍କ ଚରିତ
ଖାଣ୍ଡବରେ ଯୁଦ୍ଧ କଲେ ମୋହର ସଙ୍ଗତ ।

ଆଜ ତାର ବଂଶ ମୁହିଁ ନ ଥୋଇବି ନାହିଁ
ଦେବ ଦାନବେ ରଖନ୍ତା ତାକୁ କେହି ନାହିଁ
ଦୁର୍ଯ୍ୟୋଧନ ଶୁଣି କୋପ ଅତିଶୟ କଲା
ଗଦା ଭୁଲାଇଣ ସେହୁ ଚମକି ଉଠିଲା ।
ଯୁଧିଷ୍ଠିର ନାରାୟଣ କରନ୍ତି ବିଚାର
ଆକାଶରେ ଦୁନ୍ଦୁଭି ଯେ ବାଜେ ନିରନ୍ତର ।
ମାର ମାର ଶବଦରେ ମେଦିନୀ ଚମକଇ
ଯେ ଯାହାର ଶସ୍ତ୍ର କରେ ଘେନିଣ ଧାଅଇ ।
ସମସ୍ତଙ୍କ ଆଗଥାଟେ ଯଦୁବଳ ଥିଲେ
ଉଚ୍ଚହାତ ହୋଇ କଳି ସେଠାବରେ କଲେ
ଯେ ଯାହାର ଶସ୍ତ୍ରେ ପୂର୍ଣ୍ଣ ହେଲେ ମହାମର
ଅଙ୍ଗେ ନ ବାଜନ୍ତି କେହି ଆଗହୁଁ ନିବାର ।
ଖଡ୍ଗ ଢାଲ ଶକତି ଯେ ନଠାଇ ମାରନ୍ତି
ଶସ୍ତ୍ରେ ଶସ୍ତ୍ର ବାଜନ୍ତି ଅଗ୍ନି ଝଲକନ୍ତି ।
ଦେବ ମାନଙ୍କ ଯେ ତହିଁ ଏକମୁଖ ହୋଇ
ଘୋରତର ସମର ଯେ କଲେ ନଠାଇ ।
ଦେବତାଙ୍କ ଅସ୍ତ୍ର ବାଜି ଯାଦବଙ୍କଠାରେ
ସମସ୍ତଙ୍କ ଅଙ୍ଗୁ ରକ୍ତ ଅବିରତେ ଝରେ ।
ରକତେ କର୍ଦ୍ଦମ ତହିଁ ହେଲା ମହୀଆଳ
ଲୁଡ଼ି ଲୁଡ଼ି ହୋଇ ଯଦୁବଳ ଗଲେ ଭଳି ।
ତାହା ଦେଖିକରି ଉଗ୍ରସେନ କୋପ କଲେ
ଉଦବେଗେ ରଥ ସେହୁ ଚଳାଇ ଧାଇଁଲେ ।
ଉଗ୍ରସେନ ଧାଇଁବାର ଦେଖି ଚିତ୍ରସେନ
ଆସିକରି ଉଗାଳିଲେ ତାହାଙ୍କୁ ବହନ ।
ଚିତ୍ରସେନ ସଙ୍ଗେ ବହୁତର ସୈନ୍ୟ ଥିଲେ
ଅନେକ ନାରାଚ ଉଗ୍ରସେନକୁ ବିନ୍ଧିଲେ
ଅଙ୍ଗରେ ବାଜନ୍ତେ ରାଜା ବଡ଼କୋପ କଲା
ମନ୍ତ୍ରିଣ ନାରାଚ ସେହୁ ଅନେକ ବିନ୍ଧିଲା ।
ଦେବଗଣ ଅଙ୍ଗେ ଶସ୍ତ୍ର ବାଜିଲାକ ଯାଇ
ଲୁଡ଼ି ଲୁଡ଼ି ହୋଇ ଦେବ ପଡ଼ିଲେକ ଶୋଇ
ଏହିରୂପେ ପ୍ରହରେକ ହୋଇଲା ସମର
ରକତର ନଦୀଗୋଟି ବହିଲା ସେଠାର ।
ଚିତ୍ରସେନ ବେଗେ ବେଗେ ନାରାଚ ପେଷଇ
ଉଗ୍ରସେନ ରାଜା ତାହା ସବୁର ଛେଦଇ ।
ଚିତ୍ରସେନ ଧାଇଁବାର ଦେଖି ଉଗ୍ରସେନ
ଧାଇଁଆସି ଆଗେ ଉଗାଳନ୍ତି ଯେ ବହନ ।

ଚିତ୍ରସେନ ଉଗ୍ରସେନ ବହୁତ ଯୁଦ୍ଧ କଲେ
କେହୁ କାହାରିକୁ ତହିଁ ଜିଣି ନ ପାରିଲେ ।
କୋପେଣ ପେଷିଲେ ତୀକ୍ଷ୍ଣ ଶର ସୁରସେନ
ଚିତ୍ରସେନ ଅଙ୍ଗେ ତାହା ବାଜିଲା ତକ୍ଷଣ ।
ନାରାଚ ପଡ଼ନ୍ତେ ଚିତ୍ରସେନ ଘୁମାଇଲା
ମୋହଗତ ହୋଇ ଭୂମି ଉପରେ ପଡ଼ିଲା ।
ଚିତ୍ରସେନ ପଡ଼ିବାର ଦେଖି ଉଗ୍ରସେନ
କୋପେଣ ନାରାଚ ସେହୁ ବିନ୍ଧିଲା ବହନ ।
ଅଗ୍ନିର କଣିକା ପ୍ରାୟେ ପଡ଼ିଲା ଯେ ଶର
ପ୍ରକଷ୍ଟରେ ଅଗ୍ନି କଣା ଜଳଇ ଶରୀର ।
ସୁରସେନ ଅନେକ ଯେ ନାରାଚ ବିନ୍ଧିଲା
ଉଗ୍ରସେନ ଦେହେ ବାଜି ରକତ ବହିଲା ।
ଦେଖି ଉଗ୍ରସେନ ବଡ଼ ହୋଇଲା କୁପିତ
କ୍ରୋଧଭରେ ଏକଗୋଟି ଧଇଲା ସେ କୁନ୍ତ ।
ସୁରସେନ ଉପରକୁ କଢାଇ ବିନ୍ଧିଲା
ସେ ଆଘାତେ ସୁରସେନ ମୋହର ପଡ଼ିଲା ।
ସୁରସେନ ଏହିରୂପେ ରଣେ ପଡ଼ିବାର
ଦେଖିଲା ତା ସହଚର ପର୍ଣ୍ଣଅଙ୍ଗାର ।
ଉଗ୍ରସେନ ରାଜାଙ୍କୁ ସେ ବେଢ଼ିଲେକ ଶରେ
ଅନେକ ନାରାଚମାନ ବର୍ଷେ କୋପଭରେ ।
ଉଗ୍ରସେନ ରାଜା ଅଙ୍ଗେ ବାଜିଲା ନାରାଚ
ଛେଦ ନ ପାରିଲେ ତାହା ଉଗ୍ରସେନ ରାଜ ।
ହତଜ୍ଞାନ ହୋଇଣ ଯେ ପଡ଼େ ମହାରାଜେ
ଶରୀରେ ଚେତନା ନାହିଁ ପଡ଼ିଲେକ ମୋହେ
ଉଗ୍ରସେନେ ମାରିକରି ଅଙ୍ଗାରପର୍ଣ୍ଣ
ମନରେ ହୋଇଲେ ତହୁଁ ବଡ଼ ବଇରାଗ ।
ବୋଲଇ ସେ ମାନବଙ୍କ ଏଡ଼େକ ଭରସା
ଦେବତାଙ୍କ ସଙ୍ଗେ ଯୁଝିବାକୁ ସେ ମନାସା ।
ଏତେକ ବିଚାରି କୋପେ ହୋଇ ଥରହର
ରଥ ଚମକାଇ ଚଳଇ ସେ ଧୀର ଧୀର ।
ସମ୍ମୁଖରେ ପଡ଼ିଲେ ତାଙ୍କ ଯେତେକ ସୈନ୍ୟଦଳ
ପଡ଼ାଇଲେ ସେହୁ ମାରି ତହିଁ ତା ସକଳ ।
ଉଦ୍ଧବ ଅକ୍ରୂର ଆଉ ସାତ୍ୟକି ସହିତେ
ଘୋରତର ଯୁଦ୍ଧ କରି ପଡ଼ିଲେ ସମସ୍ତେ ।
ଏହାଙ୍କର ଗତି ଦେଖି ପ୍ରଭୁ ବଳରାମ
କ୍ରୋଧଭରେ ମୁଖ ସେହୁ କଲେ ତମତମ ।

ହଳ ଲଙ୍ଗଳକୁ ସେହୁ ଧରି ବାମକରେ
କୌମୋଦକୀ ଗଦାବର ଧରି ଡାହାଣରେ ।
କୋପେ ବଳରାମ ତାହା ଧଇଲେକ ବେଗେ
ଅଙ୍ଗାରପର୍ଣ୍ଣଙ୍କୁ ଯେ ଓଗାଳିଲେ ଆଗେ ।
ଦୁହେଁ ମହାକ୍ଷତ୍ରୀ ଯୁଦ୍ଧେ ଦୁର୍ଦ୍ଦାନ୍ତ ଯେ ଅତି
ଅନେକ ଶସ୍ତ୍ର ମାରିଲେ ଇନ୍ଦ୍ରରାଜ ବହି ।
ଲଙ୍ଗଳ ପାଖଣି ବଳରାମ ସମ୍ଭାଳିଲେ
କୌମୋଦକୀ ଗଦା ତାହା ଉପରେ ପିଟିଲେ
ଗଦା ପ୍ରହାରେଣ ଇନ୍ଦ୍ର ବନ୍ଧୁ ଘୁମାଇଲା
ରଥର ଉପରେ ସେହୁ ଭୁଲିଲେ ପଡ଼ିଲା ।
ସାରଥି ଯେ ନେଇ ତାଙ୍କୁ ରଥରେ ବସାଇ
ଚଳିଲା ସେ ଲେଉଟାଇ ରଥକୁ ବାହିଇ ।
ଅଙ୍ଗାରପର୍ଣ୍ଣର ଦଶା ଦେଖି ସେ ଗନ୍ଧର୍ବେ
ଓଗାଳିଲେ ବଳରାମେ ସକଳେ ସମ୍ଭବେ ।
ବଡ଼ ଘୋର ଯୁଦ୍ଧ ସେହିଠାରେ ଯେ ହୋଇଲା
ରକତର ନଦୀଗୋଟା ସେଠାରେ ବହିଲା ।
ବଳରାମ କୋପଭରେ ହୋଇ ଥରହର
ଲଙ୍ଗଳ ବୁଲାଇ ପିଟେ ଗନ୍ଧର୍ବ ଉପର ।
ସେ ଲଙ୍ଗଳ ବାଜନ୍ତେ ସେ ଗନ୍ଧର୍ବେ ଟଳିଲେ
ଯଦୁବଂଶ ବହୁ ସୈନ୍ୟ କ୍ଷୟ ହୋଇଗଲେ ।
ମଡ଼ାର ଉପରେ ମଡ଼ା କୁଢ଼ କୁଢ଼ ହୋଇ
ଯେତେ ଯେତେ ପଡ଼ିଗଲେ କଳନା ନ ଯାଇ
ଯଦୁବଂଶ ବଳ ସଙ୍ଗେ ଯେତେ ଆସିଥିଲେ
ଗନ୍ଧର୍ବଙ୍କ ହସ୍ତେ ସର୍ବେ ବିନାଶ ହୋଇଲେ ।
ବଳରାମ ତହୁଁ ଘୋର ଯୁଦ୍ଧ ଆରମ୍ଭିଲେ
ଅନେକ ଗନ୍ଧର୍ବ ବଳ ବିନାଶ ସେ କଲେ ।
ଗନ୍ଧର୍ବଙ୍କ ମୃତ୍ୟୁ ଦେଖିକରି ଶତାୟୁତ
ଶୀଘ୍ରକରି ଗଜେ ଚଢ଼ି ଆଇଲେ ତଡ଼ିତ ।
ବଳରାମ ସମ୍ମୁଖରେ ଯେ ପଡ଼ିଲାକ ଭେଟ
ଏକକୁ ଆରେକ ତହିଁ ହୋଇଲେ ମୁରଟ ।
ଉଦବାତ ହୋଇ ଦୁହେଁ କଳି ଆରମ୍ଭିଲେ
ରଥପରେ ବଳରାମ ଆୟୁଧ ଥୋଇଲେ ।
ଧନୁ କମାଣକୁ ନିଜ ହସ୍ତରେ ଧଇଲେ
ବହୁତର ନାରାଚ ସେ ମନ୍ତ୍ରିଣ ବିନ୍ଧିଲେ ।
ସେ ଇନ୍ଦ୍ରର ଅଙ୍ଗେ ଯାଇ ପଡ଼ିଲା ନାରାଚ
କ୍ରୋଧଭରେ ତନୁ ଘୁମାଇଲା ସୁରରାଜ ।

ପ୍ରଥାବନ ନାରାଚ ସେ ଗୁଣରେ ବସାଇ
ବଳରାମ ଉପରକୁ ଛନ୍ଦେ କୋପବନ୍ତ ।
ବାୟୁବେଗେ ନାରାଚ ସେ ତହୁଁ ଚଳିଗଲା
ବଳରାମ ଅଙ୍ଗଦେଶେ ଯାଇ ସେ ପଡ଼ିଲା ।
ମେରୁପୃଷ୍ଠେ ଯେଉଁପରି ଗଙ୍ଗା ବହିଯାନ୍ତି
ରକ୍ତନଦୀ ସେହିଠାରେ ହେଲା ସେହିମତି ।
ରାମ ସଙ୍ଗେ ଯହୁଁ ଇନ୍ଦ୍ର କଲେକ ସମର
ଖଣ୍ଡେନ୍ଦୁକେ ଦେଖିଲେ ତା କୃଷ୍ଣଙ୍କ କୁମର ।
ସେ ଯାହାର ବାହନ ସେ ତକ୍ଷଣ ଧାଇଁଲେ
ଛତ୍ରପୁର କରି ଇନ୍ଦ୍ରଦେବଙ୍କୁ ବେଢ଼ିଲେ ।
ପୂର୍ଣ୍ଣିମା ଚନ୍ଦ୍ରକୁ ଯେସନେ ଘୋଟିଯାଏ ରାହୁ
ସେସନ ଚକ୍ର କରେ ପୁଣି ଘୋଟିଲେକ ସେହୁ
ଏମନ୍ତ ଅପାରକେଳ ହୋଇଲା ସମର
ବାଣବୃଷ୍ଟି ହୁଏ ଯଥା ଶ୍ରାବଣର ଧାର ।
ଇନ୍ଦ୍ରରାଜ୍ୟେ କୋପେ ଯେତେ ନାରାଚ ଛାଡନ୍ତେ
ଶ୍ରୀକୃଷ୍ଣ କୁମରେ ତାହା ଦୂରୁ ନିବାରିଲେ ।
ଶ୍ରୀକୃଷ୍ଣ କୁମରେ ଯେଉଁ ନାରାଚ ଛାଡନ୍ତି
ସୁରରାଜ ସତ ଶରେ ନିବାରାଇ ଦିଅନ୍ତି ।
ଏମନ୍ତ ଅନେକ ଘୋର ସଂଗ୍ରାମ ସେ କଲେ
କୃଷ୍ଣ କୁମରଙ୍କୁ ଇନ୍ଦ୍ର ଜିଣି ନ ପାରିଲେ ।
ଗନ୍ଧର୍ବଙ୍କ ସଙ୍ଗେ ବଳରାମଙ୍କ ସମର
ତାହାଙ୍କର ପଛେ ଯୁଦ୍ଧେ ଗାନ୍ଧାରୀ କୁମର ।
ଊନଶତ ଭାଇଙ୍କୁ ସେ ସଙ୍ଗତରେ ନେଇ
ମାନଗୋବିନ୍ଦ ସେ ଯୁଦ୍ଧେ ଥାଇ ଛତ୍ରମଣି ।
ଏକାଇ ଅକ୍ଷୌହିଣୀ ବଳ ଅଛି ସଙ୍ଗତର
କେତୁଁ କେଳ ଅନେକ ଯେ ହୋଇଲା ସମର
କୃଷ୍ଣର କୁମରେ ତହିଁ ଯେତେ ଯୁଦ୍ଧ ଥିଲେ
ଇନ୍ଦ୍ରଙ୍କର ଶରଘାତେ ସର୍ବେ ନାଶ ଗଲେ ।
କୁଡ଼ ବୁଡ଼ ହୋଇ ସେହୁ ପଡ଼ିଲେ ଭୂମିର
ଦେବେ ମାନଙ୍କେ ଯେ ତାହା ପତ ଅଂଗାତର
ଶ୍ରୀକୃଷ୍ଣର କୁମରଙ୍କୁ ମାରି ସସ୍ତ୍ରଧ୍ୟାନ
ବଳରାମ ସନ୍ନିଧିରେ ମିଳିଲେ ସେ ପୁଣି ।
ଐରାବତ ହସ୍ତୀକି ସେ ଚମକାଇ ଦେଇ
ଦେଖିଲେ ମାନଗୋବିନ୍ଦ ଯୁଦ୍ଧେ ପଶିଯାଇ ।
ବଳରାମଙ୍କର ଯାହା ଭଇ ସଙ୍ଗେ ଘେନି
ଗନ୍ଧର୍ବଙ୍କ ବଳ ସଙ୍ଗେ ଯୁଦ୍ଧେ ଛତ୍ରମଣି ।

ଐରାବତେ ଥାଇ ସ୍ୱର୍ଗଦେବେ ସୁରପତି
ଦେଖିଲେ ସେ ମାନଗୋବିନ୍ଦର ଦୁଷ୍ଟମତି ।
ବୋଇଲେ ରେ ମାନବ କୁ ଅନ୍ଧରାଜା ସୁତ
ଘୋଳକୁଣ୍ଡା ଅଟ କୁଳେ ପୁଣି ଜାରଜାତ ।
ମହର ମାନବ କୁହ ଯୁଦ୍ଧ ଆସ୍ତୁ ତୁଲେ
ବଜ୍ର ମାରି ଶିର ଛେଦନ କରିବି ଆଜ ଭଲେ ।
ଏତେ ବୋଲି ଐରାବତ ଚଳାଇଣ ଦେଲେ
ମାନଗୋବିନ୍ଦ ଉପରେ ବଜ୍ର ପ୍ରହାରିଲେ ।
ବଜ୍ର ପଡ଼ନ୍ତେଣ ଦୁର୍ଯ୍ୟୋଧନ ଘୂରାଇଲା
ମୋହ ଯାଇ ଭୂମିତଳେ ତକ୍ଷଣ ପଡ଼ିଲା ।
ମାନଗୋବିନ୍ଦ ପଡ଼ିବା ଦେଖି ତାର ଭାଇ
ଶସ୍ତ୍ର ଧରି ଇନ୍ଦ୍ରକୁ ସେ ବେଢ଼ିଲେକ ଯାଇ
ଗୁହାରିଣ ବାଣ ସେ ଛାଡନ୍ତି କୋପଭରେ
ଊନଶତଙ୍କର ଶର ପଡେ ଇନ୍ଦ୍ରପରେ ।
ଶର ପଡନ୍ତେଣ ଇନ୍ଦ୍ରଦେବ କୋପ କଲେ
ଏକଶତ ବଜ୍ର ଏକାବେଳେ ପ୍ରହାରିଲେ ।
ବଜ୍ର ପଡ଼ନ୍ତେଣ ଧୃତରାଷ୍ଟ୍ରର ତନୟେ
ଭୂମିରେ ଶୋଇଲେ ସର୍ବେ ପଡ଼ିଣ ସେ ମୋହେ
ଊନଶତ ଭାଇ ସଙ୍ଗ ଦୁର୍ଯ୍ୟୋଧନ ମଲା
ତାହା ଦେଖି ବଳରାମ ଶରୀର କମ୍ପିଲା ।
ହଳ ମୂଷଳ ଘୂରାଇ କୋପେ ବଳପାଣି
ବୋଇଲେ ଲୋ ଶତ୍ରୁ ପ୍ରାଣ ହରିବୁ ଏକ୍ଷଣି ।
କୋପରେ ସେ ମୂଷଳକୁ ପ୍ରହାରିଲେ ଯହୁଁ
ଗନ୍ଧର୍ବ ଅଙ୍ଗରେ ତା ବାଜିଲାକ ତହୁଁ ।
ଐରାବତ ପରେ ଘୂରାଇଲେ ସୁରପତି
ମୋହ ଯାଇ ଇନ୍ଦ୍ରଦେବ ପଡ଼ିଲେ ତୁରିତ ।
ଇନ୍ଦ୍ର ପଡ଼ନ୍ତେଣ ସର୍ବ ଗନ୍ଧର୍ବେ ଯେ ଧାଇଁ
ଆବରି ଧର୍ମ ବରୁଣ କୋପଭରି ହୋଇ ।
ସେ ସମସ୍ତେ ଧାଇଁ ବଳରାମଙ୍କୁ ବେଢ଼ିଲେ
ଅନେକ ଯେ ଘୋରଯୁଦ୍ଧ ସେହିଠାରେ କଲେ
ଶୁଣ ଆହେ ନରରାଜା କହନ୍ତି ଅଗସ୍ତି
ଏକମନେ ଶୁଣ ତୁମ୍ଭେ ମଧ୍ୟପର୍ବ ଗୀତ ।
ବଳରାମେ କୃଷ୍ଣର ସୈନ୍ୟେ ଯେ ବେଢ଼ିଲେ
ସେ ଯାହାର ଶସ୍ତ୍ରମାନ ନିରାମର ହେଲେ ।
ବଳରାମ ନ ପାରିଲେ ତାଙ୍କ ଶସ୍ତ୍ର ସହି
କୌମୋଦକୀ ଗଦା ତହୁଁ ପ୍ରହାରିଲେ ନେଇ

ବଳରାମ ଗଦାଘାତେ ତନ୍ଦ୍ରିଙ୍କ ପଡ଼ିଲେ
ତାହା ଦେଖି ଯମ ଆଉ ବରୁଣ ଧାଇଁଲେ ।
ବଳରାମଙ୍କର ଅଙ୍ଗେ ସେ କୁନ୍ତ ପ୍ରହାର
ଯମପାଶ ଜଳପାଶ ତାହାଙ୍କୁ ଯେ ମାର ।
ସେ ପାଶକୁ ଛିଣ୍ଡାଇଲେ ରେବତୀରମଣ
ହଳ ମୂଷଳ ଘେନିଣ ମାଇଲେ ଆପଣ ।
କୋପେ ଯମ ଉପରେ ସେ ପ୍ରହାରିଲେ ନେଇ
ହଳ ବାଜନ୍ତେଣ ଯମ ଗଲେ ଯେ ଘୂରାଇ ।
ଯମ ଉଡ଼ନ୍ତେଣ ଦେଖି ବରୁଣ ଧାଇଁଲା
ବଳରାମ ଉପରେ ଯେ କୁନ୍ତେ ପ୍ରହାରିଲା ।
କୁନ୍ତ ସନ୍ଧାନର ବଳରାମ ଯେ ଧାଇଲେ
ବରୁଣ ପରେ ମୂଷଳ ନେଇ ପ୍ରହାରିଲେ ।
ଖଣ୍ଡେ ଦୂରେ ଥାଇ ତାହା ଈଶ୍ୱର ଦେଖିଲେ
ଏହା ଦେଖି ବଳରାମ ମହାକୋପ କଲେ ।
ବୃଷଭ ଧୂଆଇଁ ଧାଇଁଲେ ଯେ ମହେଶ୍ୱର
ସେ ବଳରାମଙ୍କୁ ଆସି ଉଭାଳ ଆଗର ।
ହର ବଳରାମ ଯହୁଁ ହୋଇଲେକ ଭେଟ
ଦୁହେଁ ମହାକ୍ଷତ୍ରୀ ତହିଁ ହୋଇଲେ ମୁରାଟ ।
ଆରେ ରେ ଗଉଡ଼ ବୋଲି ବଦନ୍ତି ଈଶ୍ୱର
କାଳେ କାଳେ ତୁମ୍ଭେ ପୁଣି ଅଟ ଉଦ୍ଧତର
ଲାଜ ସଙ୍କୋଚ ତୁମ୍ଭଙ୍କୁ ଟିକେ ନ ମାଡ଼ଇ
ବଳେବଳେ କନ୍ୟାକୁ ରେ ନଅ ଯେ ବେଗଇ
ମଣ୍ଡ ରାଜାଙ୍କର ଝିଅ ମଣିଲ ଏଠାର
ଶୋଭାବତୀ କନ୍ୟା ନେଲ ସହିଲା ଦେବର
ଆଜ ପ୍ରାଣ ଘେନ କରେ ଯିବ କେନ ଘର
ଆଜ ତୁମ୍ଭଙ୍କୁହିଁ ନାଶ କରିବଇଁ ମୁହିଁ ।
ଶଙ୍କରଙ୍କ ମୁଖୁଁ ଏହିପରି ବାକ୍ୟ ଶୁଣି
କୋପକରି ବୋଲନ୍ତି ଯେ ତାଙ୍କୁ ହଳପାଣି ।
ତୁମ୍ଭେ ଷଣ୍ଢଗାଉଅଛ ଇନ୍ଦ୍ରର ନିମନ୍ତେ
ମାହେନ୍ଦ୍ରୀ ହରଣ କଥା ଭୁଲି ବସିଥାଅ ।
ତହିଁରେ ଯେତେକ ତୁମ୍ଭେ ପାଇଅଛ ଶାସ୍ତି
ଏତେ ଶୀଘ୍ର ପାଶୋରିଲ ତାହା ଶୂଳପତି ।
ବଳେ କଟିଲି ତୁମ୍ଭେ ଅସ୍ତ୍ର ସଙ୍ଗ ଖଣ୍ଡିଥିଲ
ଇନ୍ଦ୍ରର ନିମନ୍ତେ ତୁମ୍ଭେ କରୁଅଛ କଳି ।
ଇନ୍ଦ୍ର ସ୍ତୁତି ଯେବେ ତୁମ୍ଭେ ପାର ଅଜ ରଖି
ତେବେ ସେ ଜାଣିବା ତୁମ୍ଭ ଗାରିମା ଉପେକ୍ଷି

ବଳରାମଙ୍କ ମୁଖରୁ ଏସନକ ଶୁଣି
ମହାକୋପେ କମ୍ପନ୍ତି ଯେ ତହୁଁ ଶୂଳପାଣି ।
କୋପଭରେ ମହାଦେବ ହୋଇ ଥରହର
ବୃଷଭ ଉପରେ ଥାଇ ବଦନ୍ତି ଉତ୍ତର ।
ବୋଲନ୍ତି ଗଉଡ଼େ ତୁମ୍ଭେ ବଡ଼ାଇ ସିଆଣ
ଦୁଗ୍ଧ ଦହି ତୁମ୍ଭେ କରୁଥାଅ ଠାଣ ।
ଗୋପପୁରେ ଥାଇ ଯେତେ ଯେତେ କୃତ୍ୟ କଲ
ଗଉଳଙ୍କ ମାନ୍ୟ ଗୋପବ୍ରଜାଙ୍କୁ ଛାଡ଼ିଲ ।
ବେଣୁସ୍ୱନେ ଚୋରି କରି ମୋହେ ଗୋପସ୍ତ୍ରୀ
ବନେ ଗୋପକନ୍ୟା ହରିଲ ଯେ ଚଉଧାର ।
ଷଣ୍ଢ କଶ୍ମଳଙ୍କ ସେହୁ ପୂତନା ଶୋଷିଲ
ବନେ ଯାଇ ଧେନୁରାଜା ବୃଦ୍ଧତା ହରିଲ ।
ଏକଲକ୍ଷ ରାଜାଙ୍କୁ ଯେ ଜଆଇଲ ନିଜ
ଦେଲୁ ଦେଲ ଅନ୍ୟାୟ ସେ କରେ ଦେବରାଜ
କୁଣ୍ଡକେଶୀ ରାଜ୍ୟ ତୋର ପ୍ରଦ୍ୟୁମ୍ନ ଯେ ଗଲ
ମେଉଡ଼େ ପଶିଣ ତାର ଦୁହିତା ହରିଲ ।
ସ୍ୱର୍ଣ୍ଣରେଖା କନ୍ୟାକୁ ବଳେ ଆଣୁଥିଲ ହରି
ତହିଁରେ ଯେ ଶାସ୍ତି ଦେଲ ନ ଜାଣୁ କି କରି
ବଳେ ତୁମ୍ଭେ ଅନ୍ୟାୟରେ ତହଁ ଧରି ପଶ
ଏବେ କାହା ଭଳେ ତୋର ଭାଇ ପୀତବାସ ।
ଅବର କଥାଏ ତୋତେ କହେ ଦାମୋଦର
ଏତେ କଥା ସବୁ ପାସୋରୁଛ ଯେ ମନର ।
ଅନେକ ପ୍ରକାରେ ଯହୁଁ ଈଶ୍ୱର କହିଲେ
ଶୁଣି ବଳରାମ କୋପ କରିଣ ଧାଇଁଲେ ।
ବୋଲନ୍ତି ଜଟିଆ ଆରେ କହଇ ତୋ ଆଗେ
ତୋହର ଯେ ଅବଗୁଣ ପାସୋଇଲୁ ବେଗେ
ବ୍ରହ୍ମହତ୍ୟା କରି ବ୍ରହ୍ମ ପାସୋରିଲୁ ତାହା
ଆଉରି ଗୋହତ୍ୟା ଗୋଟି କରିଥିଲୁ ଯାହା ।
ମାତାକୁ ହରଣ ବୁଦ୍ଧି କରିଅଛୁ ହାବେ
ଅଲଙ୍ଘିତ ପାପ କରିଅଛୁ ସଦାନନ୍ଦେ ।
ଅର୍ଜିଲୁ କର୍ମ ତୋର ନିଜ ଅଙ୍ଗେ ଥାଇ
ପର ଅବଗୁଣ ବାଛିବାକୁ ନ ଯୋଗାଇ ।
କହୁଁ କହୁଁ ଦୁହେଁ କୋପରେ ଯେ ହୋଇଲେ
ବହୁତର ଅସ୍ତ୍ର ତହିଁ ମହାମାରି ହେଲେ ।
ମନ୍ଦ ମେରୁ ସେହୁ ପୃଥିବୀକୁ ସେ ଧାରଣ
ପାଦଘାତେ ବସୁନ୍ଧରା କମ୍ପଇ ଯେ ପୁଣ ।

ଅନେକ ଘୋର ସଂଗ୍ରାମ ସେହୁ ଆରମ୍ଭିଲେ
କେହୁ କାହାରିକୁ ସମରରେ ନ ଘୁଞ୍ଚିଲେ ।
ଦୁହିଙ୍କର ସମର ଯେ ଅନେକ ହୋଇଲା
ସପ୍ତଦ୍ୱୀପା ପୃଥିବୀ ଯେ ଟଳଟଳ ହେଲା ।
ଅଗିସ୍ତି କହନ୍ତି ଆହେ ମନୁରାଜା ଶୁଣ
ଶୋଣିତକଥା ଚରିତଟି ଅଟଇ ଏ ପୁଣ ।
ହର ବଳରାମ ଦୁହେଁ କରୁଛନ୍ତି ରଣ
କୃଷ୍ଣଙ୍କର ସଙ୍ଗେ ଯୁଝନ୍ତି ଯେ ଶିବଗଣ ।
ନାରାୟଣ ଚକ୍ରେ ଶିବଗଣ ଯେ ପଡ଼ିଲେ
ଗରୁଡ଼ ଗର୍ଜନ ଭୟେ ଆଉ ନ ଘୁଞ୍ଚିଲେ ।
ପୃଥିବୀ ଟଳିଲା ତହୁଁ ଅନଳ ଉଦୟ
କେବଳ ଯେ ଶସ୍ତ୍ର ଦିଶେ ବର୍ଷଇ ପ୍ରାୟ ।
ଦେବଗଣ ପଳାଇଲେ ତହୁଁ ତତକ୍ଷଣେ
ନମସ୍କାର କଲେ ଯାଇ ବ୍ରହ୍ମାଙ୍କ ଚରଣେ ।
ସାବଧାନ ହୋଇ ଶୁଣ ଆହେ କୁଶଧର
ସ୍ୱର୍ଗପୁର କଷ୍ଟେଁ ନାଶଗଲାଟି ଏଥର ।
ସ୍ୱରସେନର ଦୁହିତା ନାମ ଶୋଭାବତୀ
ତାହାର ସକାଶେ ନାଶଗଲା ସ୍ୱରପତି ।
କୃଷ୍ଣ କୁମର କେସର ତାକୁ ନେଉଥିଲା
ଦ୍ୱାରକା ପାଇଣ ଇନ୍ଦ୍ର ଧରି ଯେ ଆଣିଲା ।
ସେ କଥା ଶୁଣିଣ ରାମକୃଷ୍ଣ ଯେ ଅଇଲେ
ଘୋର ସମର ଆସିଣ ସ୍ୱର୍ଗପୁରେ କଲେ ।
ସାତବଂଶ ଯାଦବ ଯେ ଉଗ୍ରସେନ ସହ
ହତହୋଇ ଇନ୍ଦ୍ରଶରେ ଗଲେ ଯମାଳୟ ।
ସୈନ୍ୟଙ୍କ ସହିତେ କୁଞ୍ଜର ଦେଖ ରଥେ
ଯୁଦ୍ଧକରି ନାଶଗଲେ ଇନ୍ଦ୍ର ଶରଘାତେ ।
ବଳରାମ ଶସ୍ତ୍ରେ ଶଚୀପତି ନାଶ ଗଲେ
ଅନେକ ଗନ୍ଧର୍ବ ଦେବ ସମରେ ପଡ଼ିଲେ ।
ଘୋରତର ସଂଗ୍ରାମ ଯେ କ୍ଷଣେ ନ ରହିଲା
ବହୁତର ଗୋଳ ତହିଁ କହୁଁ ନ ସରିଲା ।
ଶୁଣିକରି ଦେବବର ହୋଇଲେ ଚକିତ
ଏତେ ଗୋଳ ଅରଜିଲେ କପାଁ ପୁରୁହୂତ ।
ଅବଶ୍ୟ ହିଁ ଶକ୍ରକୁ ବଧ ସେହୁ ଯେ କରନ୍ତେ
ଅନର୍ଥ ଅର୍ଜିଲେ କପାଁ ଶମ୍ବର ନିମନ୍ତେ ।
କି ବୁଦ୍ଧି କରିବା ବୋଲି ବିସ୍ମରନ୍ତି ମନେ
ହରି ହରଙ୍କର ଯୁଦ୍ଧ ନ ରହେ ଯେ କ୍ଷଣେ ।

ବିସ୍ମୟ ମନରେ ବ୍ରହ୍ମା ଏପରି ଭାବିଲେ
ମରାଳ ପିଠିରେ ଯାଇ ସେହୁ ବେଗେ ଚଲେ ।
ଏଥୁ ଅନନ୍ତରେ ଶୁଣ ଆହେ ଜନ୍ମେଜୟ
ଶିବଙ୍କର ଯୁଦ୍ଧେ ତହିଁ ହେଲେ ପରବେଶ ।
ହର ବଳରାମ ବହୁତର ଯୁଦ୍ଧ କଲେ
କେହୁ କାହାକୁ ସମରେ ଜିଣନ୍ତା ନୋହିଲେ
ବହୁତର ଶସ୍ତ୍ର ଦୁହେଁ ହେଲେ ମରାମରି
ରୁଧିର ବହନ୍ତା ଶରଘାତରେ ପ୍ରଜ୍ୱଳ ।
ଶିବଗଣ ସଙ୍ଗେ ଗୋବିନ୍ଦ ଯେ ଯୁଝୁଥିଲେ
କୃଷ୍ଣ ଶିବଗଣ ମଧ୍ୟ ଅର୍ଜୁନ ଦେଖିଲେ ।
ସେ ଯାଇବ ସୈନ୍ୟ ଘେନି ଶୀଘ୍ର ଯେ ଧାଆନ୍ତି
ସାତକ୍ଷୌଣୀ ଦଳ ତାର ସଙ୍ଗରେ ଅଛନ୍ତି ।
ଶିବଗଣଙ୍କର ଆଗେ ଉଭରିଲେ ଯାଇ
ଅର୍ଜୁନ ମୁଖକୁ ଶିବଗଣ ଦେଲେ ଚାହିଁ ।
ସୂର୍ଯ୍ୟର କିରଣ ଲାଗି ଯେହ୍ନେ କୁମୁଦିନୀ
ଅର୍ଜୁନଙ୍କୁ ଦେଖି ଶିବଗଣ ହେଲେ ଲୀନ ।
ଯେତେ ପରାକ୍ରମରେ ସେହୁ ଯୁଦ୍ଧ କରୁଥିଲେ
ଅର୍ଜୁନଙ୍କୁ ଦେଖି ସର୍ବେ ପଛଘୁଞ୍ଚା ଦେଲେ ।
ଶିବଗଣଙ୍କର ସେହୁ ନ୍ୟୂନଭାବ ଦେଖି
ମନରେ ବିସ୍ମର କଲେ ପାଣ୍ଡବ ଶ୍ରୀକିରି ।
ନିରତ ଲୋକଙ୍କୁ କେବେ ମାରି ନ ଯୋଗାଇ
ତାହାଙ୍କୁ ମାରିଲେ କଷ୍ଟେଁ ଅପଯଶ ହୋଇ ।
ପଛଘୁଞ୍ଚା ଦେଲେ ଏହାଙ୍କୁ ଯେ ନ ମାରିବ
ଈଶ୍ୱରଙ୍କ ସଙ୍ଗେ ଯାଇ ଯୁଦ୍ଧ ମୁଁ କରିବ ।
ଈଶ୍ୱରଙ୍କ ପରାକ୍ରମ ଜାଣିବା ଏଠାର
ମହେନ୍ଦ୍ରୀ ହରଣ ଯୁଦ୍ଧ ପାଶୋରିଲେ ହର ।
ଗଣ୍ଡୀ ମାରିବାର ବାଳେ ମୁହିଁ ସାହା କଲି
ଦେବକେ ଧନୁହୁଳ ଲଗାଇ ଯେ ବୁଲାଇଲି ।
ତନ୍ତ୍ରାଳରେ ବୁଲାଇଲି ମୁହିଁ ସାତଥର
ପ୍ରାଣର ବଞ୍ଚନେ ମୋତେ ଦାନ ଦେଲେ ବର ।
ବେଳେବେଳେ ମୋହଠାରେ ସନ୍ତୁଷ୍ଟ ପରସ୍ପେ
ଜାଣନ୍ତି ସେ କୃଷ୍ଣଭକ୍ତ୍ୟ ଷଣ୍ଡ ପାଞ୍ଚପୋଏ ।
ଏତେକ ବିସ୍ମରି କରି ଷଣ୍ଡ ଭ କୁମର
ରଥକୁ ଧୂଆଁଇ ଧାଇଁ ଗଲେ ତତପର ।
ହରି ହର ଦୁହେଁ ଯହିଁ ଯୁଦ୍ଧ କରୁଥିଲେ
ତାହାଙ୍କର ସନ୍ନିଧିରେ ଅର୍ଜୁନ ମିଳିଲେ ।

ଦେଖିଲେକ ଘୋରଯୁଦ୍ଧ ଦୁହେଁ କରୁଛନ୍ତି
କୋପଭରେ ପରସ୍ପର ସେହୁ ନ ଜାଣନ୍ତି ।
ବୃଷଭ ଉପରେ ଥାଇ ହର ଯୁଝୁଥିଲେ
ଅର୍ଜୁନର ମଥାକୁ ସେ ଧୀରେ ସାହ୍ନିଦେଲେ ।
ଅର୍ଜୁନଙ୍କୁ ଦେଖି ହର ଚକିତ ହୋଇଲେ
ଅନାଥ ହୋଇବ ବୋଲି ମନରେ ଗଣିଲେ
ମଉନବ୍ରତ ହୋଇଣ ରହିଲେ ଆପଣ
ଈଶ୍ୱରଙ୍କ ମଉନକୁ ଦେଖନ୍ତି ବଳରାମ ।
ପଛକୁ ଘୁଞ୍ଚିଲେ ରଥ ଧୃଆଏ ଅର୍ଜୁନ
ଅର୍ଜୁନଙ୍କୁ ଦେଖି ଶିବ ଘୁଞ୍ଚିଲେ ବାହନ ।
ବଳରାମ ହୋଇଲେ ଯେ ଅର୍ଜୁନଙ୍କୁ ଦେଖି
ମଉନ ହୋଇଲେ ପାର୍ଥ ଦେଖି ହସ୍ତିଆଖି ।
କୌମୋଦକୀ ଗଦା ଯେହୁ ଧରିଥିଲେ କରେ
ଈଶ୍ୱରଙ୍କୁ ପିଟିଲେ ସେ ନେଇ କୋପଭରେ
ଈଶ୍ୱରଙ୍କ ମଉନ ସେ ଦେଖିଲେ ହଳୀ
ଆପଣେ ସେ ଶାନ୍ତ କଲେ କୋପକୁ ସମ୍ଭର
ବଳରାମଙ୍କୁ ଯେ ଭଙ୍ଗି ଦେଖିଣ ଅର୍ଜୁନ
ରଥରୁ ଉଭୁଡ଼ି ଯାଇ ନମିଲେ ଚରଣ ।
କଲ୍ୟାଣ କରବ ବଳରାମ ଯେ ଧରିଲେ
ଯୁଦ୍ଧର ଚରିତ ସବୁ ତାହାଙ୍କୁ କହିଲେ ।
କରଯୋଡ଼ି ଅର୍ଜୁନ ବୋଇଲେ ବଚନ
ସାବଧାନ ଚିତ୍ତେ ଶୁଣ ଆହେ ବଳରାମ ।
କ୍ରୋଧ ଶାନ୍ତ କର ତୁମ୍ଭେ ନ କର ସମର
ବଡ଼ପଣ ଜାଣିବାଟି ବିଶ୍ୱନାଥଙ୍କର ।
ବଳରାମଙ୍କର ଯୁଦ୍ଧ ଛଡ଼ାଇ ଅର୍ଜୁନ
ଈଶ୍ୱରଙ୍କ ସମ୍ମୁଖେ ସେ ଚଳାଇ ବାହନ ।
ଈଶ୍ୱର ଯେ ଖଣ୍ଡେନ୍ଦୁରେ ଥିଲେ ଭଗ୍ନ ହୋଇ
ଅର୍ଜୁନଙ୍କୁ ଦେଖି ହାସ୍ୟ କଲେ ଉମାସାଇଁ ।
ବିଶ୍ୱନାଥଙ୍କ ହରିଷ ଦେଖି ବୀର ପାର୍ଥ
ପାଦଗାମୀ ହୋଇକରି ଚଳାଇ ରଥ ।
ବୃଷଭରୁ ଈଶ୍ୱରଦେବ ଓହ୍ଲାଇଲେ
ଭୂମିଗତେ ଉଭା ହୋଇ ଚରଣ ରଖିଲେ ।
ଅର୍ଜୁନ ନମିଲେ ଯାଇଁ ତାହାଙ୍କ ପଦ୍ମର
ଭୂମିରେ ପାଏ ଲୋଟିଣ ସ୍ତୁଏ ପାଠବର ।
ଈଶ୍ୱରଙ୍କ ପଦ୍ମରେ ସେ ନମସ୍କାର କରେଁ
କରଯୋଡ଼ି ଅର୍ଜୁନ ଉଭା ଯେ ହୋଇଲେ ।
କର ପ୍ରସାଦ ଈଶ୍ୱର କଲ୍ୟାଣ କରନ୍ତୁ ।
ଚିରକାଳ ବଞ୍ଚି ତୁମ୍ଭେ ପଣ୍ଡୁର ସନ୍ତତି
ଅର୍ଜୁନ ଯେ କରଯୋଡ଼ି ବୋଲଇ ଗୋସାଇଁ
ସାବଧାନେ ଶୁଣ ଯାହା କହୁଅଛି ମୁହିଁ ।
ଶାମ୍ବକୁମର ଯେ ଭାର୍ଯ୍ୟା କଲେ ହରଣେସ
ହବ ବଳରାମ ସଙ୍ଗେ କପଟ ଦ୍ୱନ୍ଦ୍ୱ ଦେଲ ।
ଆପଣେ ଯେ ବିଶ୍ୱନାଥ ଜଗତର ନାଥ
ସକଳ ବ୍ରହ୍ମାଣ୍ଡ ଅଛି ତୁମ୍ଭ ଗର୍ଭଗତ ।
ଶାମ୍ବକୁମରର ଯେବେ ଧୃଷ୍ଟତା ଦେଖିଲ
ଭଲମନ୍ଦ ବାନ୍ଧିପାଇଁ ତୁମ୍ଭେ ଭ ବୁଝିଲ ।
ଅନର୍ଥ କରିବା ତୁମ୍ଭ କେବେ ନ ଯୋଗାଇ
ଆପଣେ ଅନର୍ଥେ ପଶୁଅଛ ବାନ୍ଧିପାଇଁ ।
ଅର୍ଜୁନ କହନ୍ତେ ତାହା ଈଶ୍ୱର ଶୁଣିଲେ
କ୍ଷଣେ ତୁନି ହୋଇ ପୁଣି ବଚନ ଭାଷିଲେ ।
ବୋଲନ୍ତି ଅର୍ଜୁନ ଆହେ ଶୁଣ ମନଦେଇ
ଆମ୍ଭର ଯେ ଅଧିକାଂଶ ଅଟେ ସ୍ୱତସାଇଁ ।
ତାହା ଉପରୋଧେ ଆମ୍ଭେ ଅଇଲୁ ଏଠାଇଁ
ଇନ୍ଦ୍ରପାଇଁ କୃଷ୍ଣ ସଙ୍ଗେ ବିପକ୍ଷ ଯେ ହୋଇ ।
ତୋତେ ଦେଖିଣ ସଂଗ୍ରାମ ଛାଡ଼ିଲୁଟି ଆମ୍ଭେ
ତୁ ଯେବେ ଅଇଲୁ ଭଲ ହୋଇଲାଟି ଏବେ ।
ଶଙ୍କର ଅର୍ଜୁନ ଦୁହେ ବନ୍ଧର କରନ୍ତେ
ସଂଗ୍ରାମକୁ ଛାଡ଼ିକରି ରହିଲେ ସମସ୍ତେ ।
ଶୁଣ ଆହୋ ମନୁରାଜା କହନ୍ତି ଅଗସ୍ତି
ମରାଳରେ ଚଢ଼ି ବ୍ରହ୍ମା ଆସିଣ ମିଳନ୍ତି ।
ବ୍ରହ୍ମାଙ୍କୁ ଅର୍ଜୁନ ଦେଖି ଭୂମିରେ ଶୋଇଲେ
ଶିରେ କରଦେଇ ଉଭା ହୋଇ ସେ ରହିଲେ
ବଳରାମ ସେ ଠାବରୁ ଖଣ୍ଡେନ୍ଦୁର ଥିଲେ
ବ୍ରହ୍ମାଙ୍କର ହାତ ଠାରିବାରୁ ସେ ଆଇଲେ ।
ବ୍ରହ୍ମାଙ୍କୁ ଦେଖିଣ ହଳୀ ଶିରେ କରଦେଇ
ଈଶ୍ୱରଙ୍କୁ ବନ୍ଦୁ ଚାହିଁ ନମସ୍କାର ହୋଇ ।
ତିନିଜଣ ହୋଇଲେଟି ହସ୍ତ ଏକମେଳ
ବିଧାତା ବୋଇଲେ ବୃଥା କପଟ କର ଖେଳ
ଆସ ଏବେ ଏକସ୍ଥାନ ହୋଇଣ ବସିବା
କେମନ୍ତ ଉଚିତ ଏଥି ଜାଣିଣ ବୁଝିବା ।
ହର ବଳରାମ ବ୍ରହ୍ମା ଅର୍ଜୁନ ମିଳିଲେ
ସେ ନନ୍ଦନ ବନକୁ ଯେ ସକଳେ ଚଳିଲେ ।

କୋଠାର ମଧ୍ୟରେ ଯାଇଁ ସମସ୍ତେ ବସିଲେ
ନନ୍ଦୀର ବଦନକୁ ସେ ବ୍ରହ୍ମାଏ ଚହିଁଲେ ।
ବୋଇଲେ ହୋ ନନ୍ଦୀ ତୁମ୍ଭ ଏହିକ୍ଷଣି ଯିବୁ
ନାରାୟଣ ଯୁଧିଷ୍ଠିରେ ଘେନିଣ ଆସିବୁ ।
ଆମ୍ଭର ଏ ଆଜ୍ଞା କହି ବେଗେ ଘେନିଆସ
ସମସ୍ତେ ଥାଇ ବୁଝିବା ଏଥିର ସନ୍ଦେଶ ।
ଆଜ୍ଞା ପରମାଣେ ନନ୍ଦୀ ବେଗେ ଚଳିଗଲା
ଶ୍ରୀକୃଷ୍ଣ ଗ୍ରାମରେ ଯାଇ ପ୍ରବେଶ ହୋଇଲା ।
ନମସ୍କାର କରି ନନ୍ଦୀ କହଇ ବଚନ
ସାବଧାନ ହୋଇ ଶୁଣ ଆହେ ନାରାୟଣ ।
ବ୍ରହ୍ମା ଆଜ୍ଞା ଦେଲେ ଯେ ନନ୍ଦନବନ ଯାଏ
ଯୁଧିଷ୍ଠିରଙ୍କୁ ଘେନି ତୁମ୍ଭେ କରିବ ବିଜୟେ ।
ଏହା ଶୁଣି ବେଗେ ଉଠିଗଲେ ଭଗବାନ
ଯୁଧିଷ୍ଠିରଙ୍କୁ ଘେନିକରି ଚଳିଲେ ଆପଣ ।
ନନ୍ଦନବନ କୋଠାରେ ମିଳିଲେକ ଯାଇ
ଯୁଧିଷ୍ଠିର ନାରାୟଣ ଶିରେ କରଦେଇ ।
ଇଶ୍ୱରଙ୍କୁ ଦେଖି ଦୁହେଁ ନମସ୍କାର କଲେ
କଲ୍ୟାଣ ପାଇଣ ଦୁହେଁ ସେଠାରେ ବସିଲେ ।
ବ୍ରହ୍ମା ଯେ ବୋଇଲେ ହରି କଳସମେ ଚହିଁ
ଆପଣା ମଧ୍ୟରେ ଦ୍ୱନ୍ଦ୍ୱ କର ହେ କିପାଇଁ ।
କାହିଁପାଇଁ ଏଡ଼େ ବଡ଼ ହୋଇଲା ଅନର୍ଥ
ବିସ୍ତରିଣ ଏହା ମୋତେ କହ ଜଗନ୍ନାଥ ।
ଗୋବିନ୍ଦ ବୋଇଲେ ମୁହିଁ ଏହା ନ ଜାଣଇ
ସେ କଳହପ୍ରିୟ ମୁନି ଅଛନ୍ତି ଲଗାଇ ।
କଳି ଦ୍ୱନ୍ଦ୍ୱସବୁ ଯେତେ ହୋଇଲା ନବରି
ଘଣ୍ଟା ବଜାଇ ଧାଆନ୍ତି ବିଧାତାର ସୁତ ।
ନନ୍ଦନବନ କୋଠାରେ ମିଳିଲେକ ଯାଇ
ବ୍ରହ୍ମାଙ୍କୁ ଦେଖିଣ ମୁନି ଶିରେ କରଦେଇ ।
ନାରଦଙ୍କୁ ଦେଖିକରି ସମସ୍ତେ ଉଠିଲେ
ଶିରେ କରଦେଇ ସର୍ବେ ନମସ୍କାର କଲେ ।
ନାରଦ ବୋଇଲେ କାହିଁଛନ୍ତି ଇନ୍ଦ୍ରରାଏ
ତାହାଙ୍କୁ ପଚାର ସେହି ସମସ୍ତ ବୁଝାଏ ।
ଅର୍ଜ୍ଜୁନ ବୋଇଲେ ସେ ତ ଯୁଦ୍ଧେ ପଡ଼ିଛନ୍ତି
ଗନ୍ଧର୍ବ ଦେବତା ଆଦିଙ୍କର ପ୍ରାଣ ଯାତ ।
ନାରଦଙ୍କୁ କହନ୍ତେ ଯେ ବ୍ରହ୍ମାଏ ଶୁଣିଲେ
ଆପଣେ ସେ ସଂଗ୍ରାମର ଭୂମିକି ଉଠିଲେ ।

ସଂଗ୍ରାମ ଭୂମିରେ ଯାଇ ସମସ୍ତେ ମିଳନ୍ତି
କମଣ୍ଡଳୁ ପାଣି ନେଇ ବ୍ରହ୍ମା ଯେ ସିଞ୍ଚନ୍ତି ।
ସଂଗ୍ରାମ ଭୂମିରେ ଯେତେ ପ୍ରାଣୀ ପଡ଼ିଥିଲେ
ମନ୍ତ୍ରପାଣି ତେଡ଼ିକ୍ଷଣ ଜୀଇଁଣ ଉଠିଲେ ।
ଇନ୍ଦ୍ର ସହିତରେ ସର୍ବେ ଉଠିଲେକ ଜୀଇଁ
ଆଉ ପାଣି ଏକମୁଠା ସିଞ୍ଚି କୁଶସାଇଁ ।
ଦୁର୍ଯ୍ୟୋଧନ ଉଗ୍ରସେନ ସୈନ୍ୟଙ୍କ ସହିତେ
ମନ୍ତ୍ରପାଣି ତେଡ଼ିକ୍ଷଣ ଉଠିଲେ ସମସ୍ତେ ।
ବ୍ରହ୍ମା ତହୁଁ ବୋଇଲେକ ସର୍ବେ ବେଗେଆସ
ନନ୍ଦନବନେ ବୁଝିବା ଏଥିର ସନ୍ଦେଶ ।
ବ୍ରହ୍ମାଙ୍କ ଆଜ୍ଞାରେ ତହୁଁ ସମସ୍ତେ ଚଳିଲେ
ନନ୍ଦନବନ କୋଠାରେ ଯାଇଣ ମିଳିଲେ ।
ଜୀବଦାନ ପାଇକରି ଉଠିଲେ ସମସ୍ତେ
ବ୍ରହ୍ମା ପଚାରନ୍ତି ତହୁଁ ଇନ୍ଦ୍ରଙ୍କ ଅଗ୍ରତେ ।
କାହିଁପାଇଁ ତୁମ୍ଭେ ଏଡ଼େ ବଡ଼ ଦ୍ୱନ୍ଦ୍ୱ କଲ
କି ନିମନ୍ତେ ତୁମ୍ଭେ ଏତେ କଳି ଆରମ୍ଭିଲ ।
ଇନ୍ଦ୍ରଦେବ କହନ୍ତି ଯେ ବ୍ରହ୍ମାମୁଖ ଚହିଁ
ସାବଧାନ ତଦେ ଶୁଣ ଆହେ କୁଶସାଇଁ ।
ସୁରସେନ ଦୁହିତା ଯେ ନାମ ଶୋଭାବତୀ
କୃଷ୍ଣର କୁମର ତାକୁ ବଳରେ ହରନ୍ତି ।
ନନ୍ଦନବନେ ପଶିଣ କନ୍ୟା ନେଉଥିଲା
ଉଗ୍ରାଳି ଧରନ୍ତେ ସେହୁ ମହାଯୁଦ୍ଧ କଲା ।
ଅନେକ ସୈନ୍ୟ ସେ ମୋର ହେଲେ ନାଶକର
ତାହା ଦୁଷ୍ଟପଣ ଦେଖି ସହି ଯେ ନ ପାର ।
କେତେ କାଳେ କୃଷ୍ଣପୁଅ ଏ ଦୁଷ୍ଟାମି କରନ୍ତି
ବଳାତ୍କାରେ କନ୍ୟାମାନ ହରିଣ ନଅନ୍ତି ।
ଏବେ ଅମର ମଣ୍ଡଳେ ଆସି ଧାଡ଼ିଦେଲା
ବନେ ମୋର ନାତୁଣୀକୁ ହରିବ କରୁଥିଲା ।
ସୈନ୍ୟ ପଠାଇ ମୁହିଁ ଧରାଇ ଆଣିଲି
ଛନ୍ଦିକରି ତାକୁ ବନ୍ଧାଇ ରଖିଲି ।
ଏ ବାର୍ତ୍ତା ନାରଦ ଯାଇ ତାହାଙ୍କୁ କହିଲେ
ଶୁଣି ରାମକୃଷ୍ଣ ପଛରାଇ ଯେ ଧାଇଁଲେ ।
ସାତବଂଶ ଯାଦବ ସେ ଘେନି ଦୁଇଭାଇ
ଅଠକ୍ଷୌହିଣି ବଳସେନ ଆସେ କୁରୁସାଇଁ ।
ସାତକ୍ଷୌହିଣି ବଳସେନ ଘେନି ପାଞ୍ଚଭାଇ
ଜନ୍ମକ୍ଷା ନଗରୁ ସେହି ଆଇଲେ ଚଳାଇ ।

ସମସ୍ତଙ୍କୁ ଘେନ ବଳରାମ ଯେ ଧାଇଁଲେ
ଏଡ଼େ ବନ୍ଧ ଆସିଲଣ ଅମରେ ସେ କଲେ ।
ତାହା ଶୁଣି ବେଦବର ଅଳପ ହସନ୍ତ
ଯୋଢନ ବୋଲନ୍ତି ଆହୋ ଶୁଣ ଦେବପତି ।
ଜାଣିଲ କ ହାର ଏଥି ଅଟଇ ଦୁଷ୍ଟମଣ
ସ୍ୱରଣ ଏହା ତୁମ୍ଭେ ବୁଝ ତ ଆପଣ ।
ଯୁଧିଷ୍ଠି ବୋଇଲେ ଆମ୍ଭେ କଥ ଏ କହିବା
ଆମ୍ଭ କଥା ଭୂଶହସ୍ତ ଯେବେହି ଘେନବା ।
ସେ କୁମର କୁମାରୀଙ୍କୁ ଏଥେ ଘେନଆସ
ତାହାଙ୍କୁ ପଚ୍ଛର ଆମ୍ଭେ ବୁଝିବା ସନ୍ଦେଶ ।
ବ୍ରହ୍ମାଏ ବୋଇଲେ ଧର୍ମସୁତ ଯା ଭଣ୍ଡିଲେ
ଯୁଧିଷ୍ଠିଙ୍କ ବଚନକୁ ସମସ୍ତେ ଘେନିଲେ ।
ଈଶ୍ୱର ବୋଇଲେ ତହୁଁ ଇନ୍ଦ୍ରମୁଖ ଚାହିଁ
କୁମର କୁମାରୀ ଘେନ ଆସ ତୁମ୍ଭେ ଯାଇ ।
ଇନ୍ଦ୍ରର ବଚନେ ଚିତ୍ରସେନ ଯେ ଧାଇଁଲା
ଅମର ମଣ୍ଡଳେ ଯାଇ ଉଭୟଙ୍କ ମିଳିଲା ।
କୁମର କୁମାରୀ ଦୁହେଁ ଯେଉଁପୁରେ ଥିଲେ
ତାହାଙ୍କୁ ଘେନାଇ ଚିତ୍ରସେନ ଯେ ଆଇଲେ ।
ସଭାର ମଧ୍ୟରେ ଆଣି ତାଙ୍କୁ ଉଭାକରି
ବ୍ରହ୍ମାଙ୍କୁ ଦେଖି କୁମର ଶିରେ କରଯୋଡ଼ି ।
ବ୍ରହ୍ମା ପଚାରିଲେ ପୁଣି ଶାମ୍ବମୁଖ ଚାହିଁ
କେବଣ ଚରିତ କହ କୃଷ୍ଣର ତନୟ ।
ଶାମ୍ବ ବୋଲେ କୁମାରୀକୁ ଏ କଥା ପଚାର
କାହାର ହୋଇଛି ଦୋଷ ବୁଝ ଦେବବର ।
ବ୍ରହ୍ମା ଯେ ବୋଲନ୍ତି କୁମାରୀର ମୁଖ ଚାହିଁ
ଏଥିର ଚରିତ ତୁମ୍ଭେ କହ ତ ବୁଝାଇ ।
କୁମାରୀ ବୋଇଲା ଦେବ ଶୁଣ ସାବଧାନେ
ତୋଠା ବୁଲିବାକୁ ମୁହିଁ ଆସିଥିଲି ବନେ ।
ସଖିଗଣମାନଙ୍କୁ ମୁଁ ଘେନନ୍ତି ଯେ ସଙ୍ଗେ
ନାନା କଉତୁକେ ବୁଲୁଥିଲି ତହିଁ ରଙ୍ଗେ ।
ଦୈବବଶେ ଏ କୁମର ଏଥି ଆସିଥିଲା
ବଶେଷେ କନକଚମ୍ପା ଗୁଡ଼ାଏ ତୋଳିଲି ।
ନାନାବର୍ଣ୍ଣ ଫୁଲଗୁଡ଼ା ଘେନି ରଥେ ଉଠି
ବସିବାମାତ୍ରକେ ମୋର ପଡ଼ିଗଲା ଦୃଷ୍ଟି ।
ମନ ନୟନ ରହିଲା ଯାଙ୍କପାରେ ମୋର
କାମଦେବ ଯାସ୍ତେ ମୋତେ ଡସିଲେ ସୁନ୍ଦର ।

ଏକେ ଯୁବା ଭାଷା ମୁହିଁ ଅଳପ ବୟସ
ଦିଶନ୍ତେ ଅଟଇ ପୁଣି ବସନ୍ତର ମାସ ।
ଏହାଙ୍କୁ ଦେଖିଣ ମନ ଉତ୍କଣ୍ଠ ହୋଇଲା
ଦୃଢପଣେ ମୋର ଏତ ଲାଳସା ଯେ ହେଲା ।
ଅବିବାହୀ କନ୍ୟା ମୁହିଁ ତଥା ଯେ ନ ଦେଲେ
ଯାହାକୁ ତାହାକୁ କେଉଁ ବଶ ଦେବ ଭଲେ ।
ଏତେକ ବିଚାରି ମୁହିଁ ଗ୍ରନ୍ଧ'ଶକ କଲି
ଏହାଙ୍କର ରୂପଗୁଣ ଦେଖି ମୁଁ ଜାଣିଲି ।
କଶ୍ୟପ ବଡ଼କୁଳରେ ଜାତ ହୋଇଅଛି
ବଡ଼ ଜନଙ୍କର ଏହି ଅଟଇ ଯେ ନହି ।
ଏଥିରୁ ଦୁର୍ଲ୍ଲଭ ବର ନେଡ଼ାଲି ନ ପାଇ
ମାଳାଦେଇ ତହୁଁ ଯାଙ୍କୁ ବରିଲି ଯେ ମୁହିଁ ।
ମାଳାଦେଲି ଏହାଙ୍କର ଗଳାରେ ତୁରିତ
ଦୁହିଙ୍କର ମନ ତହୁଁ ହୋଇଲା ଏକତ ।
ରଥରେ ବସାଇ ଏହୁ ନେଉଥିଲେ ମୋତେ
ସାବଧାନ ଚିତ୍ତେ ଶୁଣ ଆହେ କୁଶନାଥେ ।
ବ୍ରହ୍ମାଏ ବୋଇଲେ ଯୁଧିଷ୍ଠିଙ୍କ ମୁଖ ଚାହିଁ
କାହାର ଯେ ଦୋଷ ଏଥି କହ ଧର୍ମସାଇଁ ।
କୁମର କୁଣ୍ଡରେ କେଷ୍ଟେଁ ନ ଆସିବ ମିଛ
ଆମ୍ଭମାନେ ସଭାରେ ଯେ ହେବେ ପକ୍ଷାପକ୍ଷ ।
ଯୁଧିଷ୍ଠି ବୋଇଲେ ଏହି କଥା ତ ଯୋଗାଇ
ନ ପଚାର କନ୍ୟାକୁ ଯେ ଯୁଝ କାହିଁପାଇଁ ।
ତାହା ଶୁଣି ଶଙ୍କରସ୍ୱେ ଲଜ୍ଜାକୁ ପାଇଲେ
ମଥା ପୋତିକରି ଇନ୍ଦ୍ର ସଭାରେ ବସିଲେ ।
ହର ବଳରାମ ମୁଖ ଦଶେ ପ୍ରଦ୍ୟୁମ୍ନେ
ଈଶ୍ୱର ଯେ ମୁଖ ତୋଳି ସଭାକୁ ନ ଚାହେଁ ।
ଦୁଇଦଣ୍ଡ ପର୍ଯ୍ୟନ୍ତେ ସଭା ମୌନ ହୋଇ
ରହିଲେ ଯେ କାହାରିକୁ କଥା ଯେ ନ କହି ।
କ୍ଷଣକ ଉତ୍ତାରେ ଚିନ୍ତି ବ୍ରହ୍ମାଏ ବୋଲନ୍ତି
କପାଇଁ ବସିଲ ମୌନ ହୋଇ ସୁରପତି ।
ଦୁଇଜଣେ କଳିକଲେ ଜଣେକ ହାରନ୍ତି
ଏଥକୁ କପାଇଁ ଚିନ୍ତା କର ସୁରପତି ।
ହେ ପଣ୍ଡିତ ଜନମାନେ କାରଣ ବୁଝ
ଆମ୍ଭେ ଯାହା କହୁଅଛୁଁ ଏଭମନେ ଘେନ ।
ଅବିବାହୀ ଯୁବାକନ୍ୟା ଘରେ ନ ରଖିବ
ସେ କନ୍ୟାକୁ ରଖିଲେହି ଆପଦ ପଡ଼ିବ ।

ଏହି କନ୍ୟା ଯେତେକ ଯୁବା ହୋଇଣ ନ ଥାନ୍ତି
ଏଡ଼େବଡ ଅନର୍ଥ ଯେ କପର ବୁଝନ୍ତା ।
ଭଗ୍ନ ନୋହୁଁ ଝିଅ ବାପଘରେ ଯୁବା ହେଲେ
ତାର ଉଜ ପିତୃଲୋକେ ଗାଆନ୍ତି ଭଲେ ।
କେବେହେଁ ସେ ବଂଶ ତାର ଉଦ୍ଧାର ନୁହଇ
ବେଦବାଣୀ ଏହା ନିଜେ ମୁଖରେ କହଇ ।
ସପ୍ତମ ବରଷେ କନ୍ୟା ଦାନ ଯେ ନ କରେ
ସେହି ଲୋକ ଦୋଷୀ ବୋଲି ଜାଣିବ ଏଥିରେ
ନବମ ବରଷେ କନ୍ୟା ନବଯୁବା ହୋଇ
ସପ୍ତମ ବରଷେ କନ୍ୟା ଦାନ ଯେ କରଇ ।
ଯୁବାକନ୍ୟା ଇନ୍ଦ୍ର ତୁମ୍ଭେ ଘରେ ଯେ ରଖିଲ
ଏତେବଡ ଅନର୍ଥ ତୁମ୍ଭେ ଅର୍ଜିଣ ବସିଲ ।
କୁମାରୀ ଏଥେ କିଛି ଦୋଷ ହେଉ ନାହିଁ
ପୁରୁଷ ହୋଇଲେ ଯୁବ ସ୍ତ୍ରୀ ସେ ନ ଛାଡଇ ।
ଯୁବକ ଭ୍ରମର ପ୍ରାୟେ ଲୋଭମତ ହୋଇ
ନୂଆ ପୁଷ୍ପ ଦେଖିଲେ କି ନ ଚୁମ୍ବଇ ସେହି ।
ଏତେ କହିଣ ବିଧାତା ଇନ୍ଦ୍ରେ ପଚାରନ୍ତି
ଏବେ ବାରୁଣୀ ତୁମ୍ଭର ଜନ୍ମ ଦୁଷ୍ଟମତି ।
ଲୋକାଗ୍ରରେ କନ୍ୟା ତୋର ଦୂଷିତା ହୋଇଲା
ଅନ୍ୟ ଲୋକେ ପ୍ରଦାନ ଟି କରି ତ ନୋହିଲା
ଏ କାରଣୁ ଆମ୍ଭେ ଶସ୍ତ୍ରେ ଏହି କନ୍ୟା ଦେବା
ସମସ୍ତେ ବର୍ଣ୍ଣିଣ ଏଥି ଦାନ କରାଇବା ।
ବୃହସ୍ପତିଙ୍କୁ ଯେ ଡାକ କରିଲେ ସତ୍ୱର
ଶୁଭଲଗ୍ନେ ବିବାହଟି ଅଟଇ କେବର ।
ବ୍ରହ୍ମାଙ୍କ କଥା ସମସ୍ତ ମନକୁ ଅଇଲା
ହେଉ ବୋଲିଣ ବାସବ ସନମତ ଭଲା ।
ଶୁଣ ଆହେ ମନୁଷ୍ୟେ ବଦନ୍ତି ଅତ୍ରି
ଶ୍ରୀମହାଭାରତ ଏହା ଶୁଣ ଶୁଦ୍ଧମତି
ଇନ୍ଦ୍ରେ ସନମତ କରାଇଣ ଦେବବର
ହରି ବଳରାମଙ୍କ ସେ ବର୍ଣ୍ଣରନ୍ତି ଧୀର ।
ବ୍ରହ୍ମାଙ୍କ ବଚନୁ କେହି ନୋହିଲେ ବାହାର
ଯାହା ସେ ଜଗତପିତା କରନ୍ତି ବିଚାର ।
ଚନ୍ଦ୍ରସେନ ସୁରସେନ ଆଦିଙ୍କୁ ଯେ ସୃଷ୍ଟି
ବ୍ରହ୍ମା ପଚାରନ୍ତି ଏହା ହେବ କିବା ନାହିଁ ।
ଯେଉଁ କଥା ଆମ୍ଭେ କହିଥିଲୁ ରେ କୁମର
ଯୋଗାଏ କି ନାହିଁ ତାହା ତୁମ୍ଭର ମନର ।
କ୍ରମରେ ବୋଇଲେ ଯାହା କରିବ ଘଟଣ
ଆମ୍ଭ ବୋଲେ କେବେହେଁ ସେ ନୁହଇଁ ଆନ
ବ୍ରହ୍ମା ବୋଇଲେ ଯେ ବୃହସ୍ପତି ଆଣ ଘେନ
ବିଭାକ ଚରିତ୍ର ବୁଝାଇବା ଏହିଠାଇଁ ।
ଆଜ୍ଞା ପ୍ରମାଣେ ଅନାଇ ପଇଗ ଯେ ଚଳି
ବୃହସ୍ପତି ଗୁରୁଙ୍କ ସେ ଡକାଇ ଆଣିଲା ।
ନନ୍ଦନବନେ ଅଇଲେ ଗୁରୁ ବୃହସ୍ପତି
ବ୍ରହ୍ମାଙ୍କ ସାକ୍ଷାତେ ଯାଇ ଆସନେ ବସନ୍ତି ।
ବ୍ରହ୍ମାଏ ବୋଇଲେ ଶୁଣ ଆହେ ଦେବଗୁରୁ
କେତେ ଅନର୍ଥ ହେଲା କି ଜାଣୁ ନ ପଚାରୁ ।
କେତେ ସେ ଦ୍ୱନ୍ଦ୍ୱହୋଇଲା ଶୋଭାବତୀ ଯେଣ
ତାର ଲଗ୍ନ ଦିନ ଖୋଜ କହ ଶୁଭମାଣି ।
ଖଡିଧରି ବୃହସ୍ପତି ସମସ୍ତ ଜାଣିଲେ
ଲଗ୍ନ ଅନୁକୂଳ ଆଦି ସବୁ ଠାବ କଲେ ।
ବୈଶାଖ ଶୁକ୍ଳ ତ୍ରୟୋଦଶୀ ସେ ଶନିବାରରେ
ନାଡ଼ି ନକ୍ଷତ୍ର ଯେ ଯୋଗ କରଣର ମୂଳେ ।
ତାର ବାରସବୁ ଗଣିକରି ଠାବ କଲେ
ଏହିଦିନ ଯୋଗ ହେଲା ବୋଲିଣ କହିଲେ ।
ବ୍ରହ୍ମାଏ ବୋଇଲେ ଅଛଇ ଯେ କେତେଦିନ
ବୃହସ୍ପତି ବୋଇଲେ ଯେ ଅଛି ତିନଦିନ ।
ଘଡ଼ି ଶେଷ ହେଲେ କାଲି ହେବ ମଙ୍ଗଳଦିନ
ଶନିବାର ଦିନ ଲଗ୍ନ ହୋଇବ ପ୍ରମାଣ ।
ବୃହସ୍ପତି କହନ୍ତେ ଯେ ବାସବ ଶୁଣିଲେ
ଏହିଦିନ ଲଗ୍ନ ହେବ ସନମତ ଭଲେ ।
ସୂର୍ଯ୍ୟସେନ ଚନ୍ଦ୍ରସେନ ଅଙ୍ଗାରପଇଗ
ଏମାନଙ୍କୁ ସୃଷ୍ଟି ଆଜ୍ଞା ଦେଲାକ ବାସବ ।
ଉତ୍ସବ ଉତ୍ସବ ପାଇଁ ଯେତେକ ବିଧାନ
ସମସ୍ତ ଭିଆଣ ତୁମ୍ଭେ କର ହେ ବହନ ।
ଦାନ କରିବାକୁ ଦ୍ରବ୍ୟ ଯେତେକ ଲୋଡ଼ଇ
ସମସ୍ତ ଭିଆଣ ତୁମ୍ଭେ କର ବେଗେ ଯାଇ ।
ଇନ୍ଦ୍ର ଆଜ୍ଞା ପରମାଣେ କ୍ରମରେ ଚଳିଲେ
ବିଭାର ବିଧାନ ସବୁ ଭିଆଣ ସେ କଲେ ।
ବେଦୀ ଛାମୁଣ୍ଡିଆ ଆଦି ସମସ୍ତ କରାଇ
ସେ ସମସ୍ତ ଦ୍ରବ୍ୟ ଅବା ସ୍ୱର୍ଗେ ନ ମିଳଇ ।
ଏସନ ନନ୍ଦନବନେ ସମସ୍ତେ ରହିଲେ
ଫଳମୂଳ ଖାଇ ସେହି ରଜନୀ ବଞ୍ଚିଲେ ।

ଇନ୍ଦ୍ର ବୃହସ୍ପତି ବ୍ରହ୍ମା ଈଶ୍ୱର ସହିତେ
ଯେ ଯାହାର ବାହନରେ ବସିଲେ ତୁରିତେ
ଗୋବିନ୍ଦ ବନିତାପ୍ରତି ଭଲେ ବଳେ କଲେ
ବଳରାମ ତାଳଧ୍ୱଜ ରଥ ଆରୋହିଲେ।
ଯୁଧିଷ୍ଠି ରଥ ଉପରେ ବିଜେ କଲେ ଯାଇ
ଆର ପାଣ୍ଡବେ ଯେ ଯାହାମାନେ ସଜ ହୋଇ
ଅର୍ଜୁନ ହସ୍ତ ଧରିଣ ତହୁଁ ଇନ୍ଦ୍ର ଦେବ
କୋଳରେ ବସାଇ ତାଙ୍କୁ ଚଳିଗଲେ ସବ।
ଉଗ୍ରସେନ ଦୁର୍ଯ୍ୟୋଧନ ରଥ ଆରୋହିଲେ
ସୈନ୍ୟବଳ ଯେତେ କୃଷ୍ଣ ପଛରେ ଚଳିଲେ।
ଦୁନ୍ଦୁଭି ଶବଦ ଶୁଣେ ବାଜେ ପାରିତୂର
ବାଦ୍ୟବାଦ ଶବଦରେ ମହୀ ଟଳମଳ।
ଅମର ମଣ୍ଡପେ ଯାଇ ପ୍ରବେଶ ହୋଇଲେ
ଉଗ୍ରସେନ ଦୁର୍ଯ୍ୟୋଧନ ମଣ୍ଡପେ ମିଳିଲେ।
ହର ବଳରାମ ବେନି ଯୁଧିଷ୍ଠିଙ୍କୁ ଘେନି
ଅମର ମଣ୍ଡପେ ବିଜେ ସୁରପତି ଜାଣି।
ବ୍ରହ୍ମା ବୃହସ୍ପତି ପୁଣ ଈଶ୍ୱର ସହିତେ
ସରବେ ଉଭସ୍ତ କଲେ ଦେବସଭା ଘରେ।
ସମସ୍ତ ଦ୍ୱନ୍ଦ୍ୱ ଆବର ନବରିଣ ଗଲା
ରାମଙ୍କ ସଙ୍ଗେ ଇନ୍ଦ୍ରର ପୀରତି ହୋଇଲା।
ଭିତରେ ବାରତା ପାଇ ଶଚୀ ଠାକୁରାଣୀ
ଭିତରକୁ ଡାକିନେଲେ ପାର୍ଥ ଫାଲଗୁନି।
ଶଚୀଙ୍କ ଚରଣ ତଳେ ପାର୍ଥ ପ୍ରଣମଇଁ
ବିନମ୍ର ଭାବ ହୋଇଣ ଶିରେ କରଦେଇ।
ଶଚୀ ବୋଇଲେ ରେ ବତ୍ସ ଶୁଣ ବୀରପାର୍ଥ
ତୁମ୍ଭ ପାଇଁ କନ୍ୟା ଏଡ଼େ ହୋଇଲା ଅନର୍ଥ।
ଅର୍ଜୁନ ବୋଇଲା ମାଏ ନ ଜାଣଇ କିଛି
ନାରଦ ମୁନି ସକଳ ଭିଆଇଣ ଅଛି।
ବାରତା ପାଇଣ ମୁହିଁ ବହନ ଅଇଲି
ଏଡ଼େ ବଡ଼ ଦ୍ୱନ୍ଦ୍ୱଘୋଟା ନିବାରାଇ ଦେଲି।
ଇନ୍ଦ୍ର ଶ୍ରୀକୃଷ୍ଣର ଏବେ ପୀରତି ହୋଇଲା
ଏକାଳେ ବିଭା ଘରର ପ୍ରସଙ୍ଗ ଚଳିଲା।
ସମସ୍ତେ ସୁଧର୍ମାସଭା ତଳେ ବସିଛନ୍ତି
ଅର୍ଜୁନ ମୁଖୁଁ ଶୁଣିଲେ ଏହା ମହାସତୀ।
ଆନନ୍ଦ ହୋଇଣ ଦେବୀ ଭିତରକୁ ଗଲେ
ଅର୍ଜୁନ ମଧ୍ୟ ତାହାଙ୍କ ସଙ୍ଗରେ ଚଳିଲେ।

ଭିତରପୁରେ ଅର୍ଜୁନ ରହିଲେକ ଯହୁଁ
ମଙ୍ଗଳ ବିଧି ଭିଆଣ କଲେକ ସେ ତହୁଁ।
ଛାନ୍ଦୋଳାରେ ବସାଇଣ କନ୍ୟାକୁ ଆଣିଲେ
ଶଚୀଦେବୀ ଛାନ୍ଦୋଳାରୁ ଭିତରକୁ ନେଲେ।
ସକଳ ମଙ୍ଗଳକୃତ୍ୟ ବିଧିମାନ ସାରି
ନାରୀମାନେ ମିଳିକରି ଦିଅନ୍ତି ହୁଳହୁଳି।
ହୁଳହୁଳି ଶବଦରେ ସ୍ୱର୍ଗ ଉଚ୍ଛୁଳଇ
ଏହି ମତେ ସେ ଲଗନ ପ୍ରାପତ ସେ ହୋଇ।
ତହୁଁ ବରବେଶ କଲେ ଶ୍ରୀକୃଷ୍ଣ ନନ୍ଦନ
ଶୋଭାବଶର ସେ କଲେ ବେଶର ବିଧାନ।
ବରଣି ପୂଜାର ବିଧି କରନ ସାରିଲେ
ବରକୁ ନେଇ ବେଦୀରେ ତହୁଁ ବସାଇଲେ।
ସୁବର୍ଣ୍ଣ ପିଢ଼ା ଉପରେ ବସିଲେ କୁମର
ବରଣ ବିଧାନମାନ ସାରି ତତପର।
ଲବଣ ଶୁମର ଆଣି କନ୍ୟା ପକାଇଲା
ବାଦ୍ୟ ନାଦରେ ସୁରଗ ଭୁବନ ଭରିଲା।
ତହୁଁ ସେ କନ୍ୟାକୁ ବେଶ ଭୂଷଣ କରାଇ
ବେଦୀର ଉପରେ ତାକୁ ବସାଇଲେ ନେଇ।
ପୂର୍ବମୁଖ ହୋଇକରି ବସିଲେ କୁମର
ବୋଲେ ସେହି କନ୍ୟା ବସିଲେକ ସୁନାରୀର
କୁମରକୁ ବସାଇଲେ ବୋଲେ ନାରାୟଣ
ତହୁଁ ହୁଳହୁଳି ଦେଉଛନ୍ତି ନାରୀଗଣ।
ବୃହସ୍ପତି ମଙ୍ଗଳ ଯେ ଉଚ୍ଚାରିଣ କଲେ
ବର କନ୍ୟାଙ୍କର ତହୁଁ ହସ୍ତଗ୍ରନ୍ଥି କଲେ।
ମନ୍ତ୍ର ଉଚ୍ଚାରିଣ କୁଶ ବନ୍ଧନ ଯେ କରି
ଆପେ ବୃହସ୍ପତି ଥାଇ ବଶ୍ରବିଧି ସାରି
ପାରିଜାତ ପୁଷ୍ପନେଇ ମଥାରେଣ ଦେଲେ
ଅମ୍ଳାନ ବସ୍ତ୍ର ବରଙ୍କୁ ନେଇ ପିନ୍ଧାଇଲେ।
ବର କନ୍ୟାଙ୍କର ହସ୍ତ ବନ୍ଧନ ସେ କରି
ଝଙ୍ଗେ ପ ଶିକେନ ବୃହସ୍ପତି ଯେ ଉଚ୍ଚରି।
କି କି ଯଉତୁକ ଦେବେ ଚିନ୍ତି ସୁରନାଥ
ଝଙ୍ଗରେ ପାଣି ତୋଳିଣ ଦିଅ ତୁ ତୁରିତ।
ତହୁଁ ସୁରଗଣ ପାଣି ଦେଲେଣ ଶଙ୍ଖରେ
ମନରେ ଅନେକ ଯଉତୁକ ବାଞ୍ଛାକଲେ।
ଲକ୍ଷେକ ସୁବର୍ଣ୍ଣ ଆଣି ଆଗରେ ସେ ଥୋଇ
ଐରାବତ ସମାନରେ ଲକ୍ଷେଗଜ ଦେଇ।

ତେଁ ଃଣିକା ସ୍ନାନରେ ଲକ୍ଷେ ଅଶ୍ୱ ଦେଲ
କର ଦ୍ରବ୍ୟଯାଚଙ୍କ କଉତା ବୋଲିଲ ।
ଲକ୍ଷ୍ମଣ ଦେଇ ଇନ୍ଦ୍ର ଆନନ୍ଦ ଯେ ହୋଇ
ବୃହସ୍ପତି ଜମ୍ବୁ ଭୂଷା ଚନ୍ଦନ ଯେ ଫେଇ ।
ଅପସର ବୃନ୍ଦ ନେଇ ଶଚୀ ଆଗେକଲେ
ହି ହୋଇଣ ଶାମ୍ବଙ୍କୁ ବନ୍ଦାପନା କଲେ ।
ଗୀତନ ମଣୋହି ବେଗେ ଭୋଜନ ସାରିଣ
ର୍ଗର ଭାନୁକ ସଙ୍ଗେ କରନ୍ତି ଭକ୍ଷଣ ।
ଗର ଉତ୍ସବମାନ ସମସ୍ତ ସରିଲା
ଇନ୍ଦ୍ରଙ୍କୁ ଆଦେଶ ଶ୍ରୀକୃଷ୍ଣଙ୍କର ହୋଇଲା ।
ର ଉଦ୍ୟାଙ୍କୁ କୁ ସଜକର ଯାଇଁ ବେଗେ
ପିତା ଦ୍ୱାରକାପୁର ଉଦାକର ଆଗେ ।
ଇନ୍ଦ୍ର ହୋଇଲା ଆଜକ ମୋର ପୁରେ ଉତ୍ସ
ପ୍ରସ୍ତତକୁ ବରକନ୍ୟା ସେନ ଚଳଯାଅ ।
ଇନ୍ଦ୍ରର ବଚନ ପ୍ରଭୁ ଶୁଣି ନ ଯାଉଲେ
ଭୋଜନ ସାରି ଯେ ଯାହା ମୁଖରେ ଶୋଇଲେ
ନଶିଶେଷେ ଶଯ୍ୟା ତେଜ ସକଳେ ଉଠିଲେ
ଯେ ଯାହା ଶକ୍ତ୍ୟେ ଯିବାକୁ ବାହାର ହୋଇଲେ
ଶଙ୍ଖ ମହୁରୀ ଶବଦ ଉଠେ ଘନ ଘନ
ଅଗତୂର ଶବଦରେ ଉଛୁଟଳ ଭୁବନ ।
ବର କନ୍ୟା ଦୁହିଙ୍କୁ ଯେ ବନ୍ଦାପନା କଲେ
କନ୍ୟାଙ୍କୁ ଖେଳଣ ଦାଣ୍ଡୋଳାରେ ବସାଇଲେ
କୁଶାସନର ଉପରେ ବସିଲା କୁମାର
ମାହେନ୍ଦ୍ର ସମସ୍ତ ଭେଟି ହୋଇଲା ବାହାର ।
ବ୍ରହ୍ମା ଇନ୍ଦ୍ର ଆଦି ଦେବେ ସଭେ ବସିଲେ
ଈଶ୍ୱର ଆସିଣ ତାଙ୍କ ସନ୍ନିଧେ ମିଳିଲେ ।
ସମସ୍ତଙ୍କୁ ନମସ୍କାର କରି ବୀର ପାର୍ଥ
ଇନ୍ଦ୍ରର ସମ୍ମୁଖରେ ସେହି ହେଲା ଉପଗତ ।
କୃଷ୍ଣ ବଳରାମ ତହୁଁ ଯୁଧିଷ୍ଠିରଙ୍କି ବେନି
ସଭାରେ ଆସି ବନ୍ଦନ କଲେ ଚକ୍ରପାଣି ।
ଉଗ୍ରସେନ ଦୁର୍ଯ୍ୟୋଧନ ସଙ୍ଗେ ତହିଁ ବସି
ବୋଇଲେ ବ୍ରହ୍ମା ହେ ଦେବ ଶୁଣ ବୃହସ୍ପତି
ଦଶ ଉତ୍ସବ ସମସ୍ତ ଏବେ ତ ସରିଲା
ଏବେ ତୁମ୍ଭର ମନ ଯେ ସାନନ୍ଦ ହୋଇଲା ।
ନାରଦପୁଣ ବୋଇଲେ ଯେ ଶୁଣ ଦେବବର
ପିତୃ ଦ୍ୱାରକାଣି ଚଉ ହେଲାଣି ଅସ୍ଥିର ।

ବ୍ରହ୍ମା ବୃହସ୍ପତି ଇନ୍ଦ୍ରଙ୍କସ୍ତେ ଯେ ଖଳିଲେ
ଅକ୍ଷତ ଦଧି ସାରିଣ ବହୁ ବସ୍ତ୍ର ଦେଲେ ।
ପାଟପଡ଼ନ୍ତି ଦେବାଙ୍ଗ ଝୀନବସ୍ତ୍ର ଶାଢ଼ୀ
ଗୌରବ କରି ଅନେକ ବସ୍ତ୍ର ବେଗେ କାଢ଼ି
ଶ୍ରୀକୃଷ୍ଣଙ୍କ ସଙ୍ଗେ ଯେତେ ଖଇ ଆସିଥିଲେ
ଜଣପ୍ରତି ଏକ ବସ୍ତ୍ର ପ୍ରଦାନ ସେ କଲେ ।
ବାଦ୍ୟବାଦ ଠାରୁ ଯେତେ ମଦ୍ରଳଆ ଯାଏ
ସମସ୍ତଙ୍କୁ ସୁରନାଥ ଅନେକ ଯେ ଦିଏ ।
କଳସ ଦଧି ବଧାଇ ସମସ୍ତ ସରିଲା
ଶଙ୍ଖ ମହୁରୀ ସେଠାରେ ଅନେକ ବାଜିଲା ।
ଢକଟାଳ ଶବଦରେ ବାଜଇ ବାଜଣା
ଶଙ୍ଖ ମହୁରୀମାନ କେ କରିବ ଗଣନା ।
ଯେ ଯାହାର ଯାନମାନ ସଙ୍ଗେ ଆରୋହିଲେ
ବର କନ୍ୟା ଦୁହିଁଙ୍କୁ ଯେ ଆଗେ ଚଳାଇଲେ
ସ୍ୱର୍ଗପୁରରୁ ସମସ୍ତେ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇଁ ଦ୍ୱାରକା ପୁର ।
ବାଦ୍ୟନାଦ ଶବଦରେ ପୃଥ୍ୱୀ ଚମକିଲା
ଦ୍ୱାରକା ପୁରେ ମହା କାହାଳ ପଡ଼ିଲା ।
ବାରତା ପାଇଣ ବାସୁଦେବଙ୍କ ଘରଣୀ
ଆଦର ଆସନ୍ତ ଉଗ୍ରସେନଙ୍କର ରାଣୀ ।
ରୁକ୍ମିଣୀ ସତ୍ୟା କାଳନ୍ଦୀ ତୁଳସୀଙ୍କୁ ଘେନ
ଜାମ୍ବବତୀ ସପ୍ତରେ ଅଷ୍ଟ ଯେ କାମିନୀ ।
ସମସ୍ତ କନ୍ୟାଏ ସଜ ହୋଇଣ ଆଇଲେ
ବର କନ୍ୟାଙ୍କର ପାଶେ ଯାଇଁଣ ମିଳିଲେ ।
ଦୁର୍ବାକ୍ଷତ ଚନ୍ଦନରେ ବନ୍ଦାପନା ସାରି
ବରକନ୍ୟା ନେଇଗଲେ ଭିତର ସେ ପୁରୀ ।
ନିଜ ମନ୍ଦିରେ ଯାଇଣ ହୋଇଲେ ପ୍ରବେଶ
ତାହା ଦେଖି ଚନ୍ଦ୍ରାବତୀ ମନରେ ହରଷ ।
ଶୋଳବଣି ରୁପକୁ ସେ ସମାନ ନୋହିଲେ
ଦ୍ୱାରୁଡ଼ି ଆଗରେ ଦୀପ ପ୍ରଜ୍ୱଳ ବଳିଲେ ।
ଉଗ୍ରସେନ ଚଳିଗଲେ ଆପଣା ମନ୍ଦିର
ନିଜ ମନ୍ଦିରକୁ ବେଗେ ଗଲେ ହଳଧର ।
ରେବତୀ ବଳଦେବଙ୍କ ସଙ୍ଗତରେ ଗଲେ
ବରକନ୍ୟା ବନ୍ଦାପନା କରି ଆସିଥିଲେ ।
ସାତବଂଶ ଯାଦବ ଯେ ଯାହା ପୁରେ ଗଲେ
ପୁରବାସୀ ଜନେ ମହା ଆନନ୍ଦ ହୋଇଲେ ।

ଉଦ୍ଧବ ଅକ୍ରୂର ପୁଣି ସାତ୍ୟକି ସହିତେ
ରାମ କୃଷ୍ଣ ମଥୁରାକୁ ଗଲେ ସେହିମତେ ।
ଦୁର୍ଯ୍ୟୋଧନ ରାଜାଙ୍କୁ ସେ ଗାଳି ଦାମୋଦର
କୋଇଲେ ହସ୍ତିନାପୁରେ ଚଳ ନୃପବର ।
ଆଜ୍ଞା ପରମାଣେ ନନ୍ଦଗୋବିନ୍ଦ ଚଳିଲ
ଯାଇଁଣ ହସ୍ତିନାପୁରେ ପ୍ରବେଶ ହୋଇଲ ।
ଏଣେ ରୁ ଯଜ୍ଞଶୀଳକ ଶତେକଥଇ ମୂଳେ
ଯେ ନାହାର ମଣ୍ଡଳକୁ ଗଲେ ତତକାଳେ ।
ଧୃତରାଷ୍ଟ୍ର ଏଥିରୁ ଯେ ବାରତା ପାଇଲେ
ନନ୍ଦଗୋବିନ୍ଦଙ୍କୁ ଯାଇ ବାରତା ପୁଛିଲେ ।
ସବୁ ବୁଝାଇ ଭଣିଲେ ନନ୍ଦଗୋବିନ୍ଦହାଇ
ଭଗ୍ନମତି ରାଣୀ କି ଯେ କହିଲେ ବୁଝାଇ ।
ଶ୍ରୀକୃଷ୍ଣ ବିଜୟ କଲେ ଅସ୍ତ୍ରାଦି ଉପରେ
ସଙ୍ଗତରେ ଛନ୍ତି ତାଙ୍କ ସମସ୍ତ କୁମରେ ।
ଯେତେ ଯେତେ ଯାଦବଙ୍କ ଇନ୍ଦ୍ର ଦେଇଥିଲେ
ଇନ୍ଦ୍ରାରେ ନେଇ ସମସ୍ତ ରଖାଇଣ ଦେଲେ
ପାଣ୍ଡବେ ଦ୍ୱାରକା ପୁରେ ରହି ଦିନ ସାତ
ଯୁଧିଷ୍ଠିରଙ୍କୁ ସ୍ତୁତି କହନ୍ତି ଜଗନ୍ନାଥ ।
ଦାରୁଣା ଯାଇଁ ରହିଲେ ଅପାର ଯେ ଧନ
ତହିଁ ତାହାଙ୍କୁ ଅଯୁତ ଦେଲେ ଜନାର୍ଦ୍ଦନ ।
ଆଦର ତାହାଙ୍କୁ ଦେବ କଲେ ନମସ୍କାର
ବୁଝାଇ ନମିଲେ ଯେ ଗୋବିନ୍ଦ ପୟର ।
ମେଲାଣି ହୋଇ ପାଣ୍ଡବେ ଗଲେ ନିଜପୁର
ପ୍ରବେଶ ହୋଇଲେ ଯାଇ ଦାରୁଣାବନର ।
କୋଇନ୍ତାଙ୍କୁ ପାଞ୍ଚଭାଇ କଲେ ନମସ୍କାର
ବହଳ ଚରିତ ଦେଖି ପୁଚ୍ଛିଲେ ସକଳ ।
ବଧିମତେ ତାହାଙ୍କୁ ସେ ସମସ୍ତେ କହନ୍ତି
ଶୁଣିଣ ପରମ ତୋଷ ସୁଭଦ୍ରା ଦ୍ରୌପଦୀ ।
ଶୁଣ ଆହେ ମନୁଷ୍ୟେ ଅଗସ୍ତି କହିଲେ
ଶୋଭାବତୀ ଦେହ ଶମ୍ବ ବହୁ ଭୋଗକଲେ ।
ତାହାର ଗର୍ଭରୁ ପାଞ୍ଚପୁତ୍ର ଜନମିଲେ
ଚନ୍ଦ୍ରାବତୀଠାରୁ ବହୁପୁତ୍ର ପ୍ରସବିଲେ ।
ପସ୍ତବିଲୁ ଶୋଭାବତୀ ହରଣ ଚରିତ
ଏକ ମନରେ ଶୁଣିଲୁଟି କି ନରନାଥ ।
ଏମନ୍ତ ଶାମ୍ବର ଦେହ ଅଟଇ ସରିଯା
କେବଣ ପୁତ୍ରର ଉନ ବା ସରି ଭରିଯା ।

ମନୁବନ ଶ୍ରାୟ କୃଷ୍ଣବଂଶ ଯେ ବଢ଼ିଲ
ଅଣନାଶ ପଣନାଶ ଅନେକ ସେ ହୋଇ ।
ଶ୍ରୀମହାଭାରତ ଏହି ସୁଧାମୟ ରସ
ଅମୃତ ପାନେ ଯେସନେ ଆଶା ହୁଏ ତୋଷ
ଶ୍ରୀମହାଭାରତ ଏହା କର୍ଣ୍ଣରେ ଶୁଣିଲେ
ଅମୃତପାନ ପ୍ରାପ୍ୟତ ଆତ୍ମା ତୋଷ ଭଲେ
ଭଣଇ ଶ୍ରୀଦାସଶୁଣି କମଳାର ପତି
ଯାହାର ହୃଦୟେ ସର୍ବ ପ୍ରାଣୀଙ୍କର ସ୍ଥିତ ।
ଅଲକ୍ଷର କର ଦେବ ଭବେଶ୍ୱର ଧନ
ଅଟନ୍ତି ଭକତଜନଙ୍କର ପ୍ରାଣପ୍ରାଣ ।
ଅଲକ୍ଷଭବନଙ୍କ ରକ୍ଷା ଭଣ୍ଡାର ପାଇଁ
ଶାରଦାଙ୍କ ଶ୍ରାବଣ ତେଣିଥାଅ ଭବତ୍ରାହି ।
ମୁଁ ଯେ ଅକ୍ଷର ଚିହ୍ନି ଅଟେ ଅପଣ୍ଡିତ
ଶାସ୍ତ୍ର ପୁରାଣରେ ମନ୍ଦୁଁ ବୁଦ୍ଧେଁ ଉନ୍ମତ ।
ତସ୍ମାତକଲେ ଶ୍ରୀଶାରଳା ଚଣ୍ଡୀଦେବୀ ମୋତେ
ନେତ୍ରକଳ ଶିର ମୋର ତବ ପଦାଗ୍ରତେ ।
ସେବା ଦେଖି ଯହିଁ ମୋର ଶୁଣ୍ଠ ଉଦେଲ
କେତେକଟ ଏଗ୍ରନ୍ଥ ମୋ ହୃଦୟେ ସ୍ଫୁରିଲ
ଶ୍ରୀଚଣ୍ଡୀ ଶାରଳା ଦେବୀ ଚରଣକୁ ଧ୍ୟାୟି
ଅନ୍ତଃଭାବେ କପିଳାସ ବେଢ଼େ ମହାମାୟୀ ।
ଜଳସୀକଳ୍ପର ଚରଣକୁ ମୋର ଆଶ
ଶାରଳା ଦାସକୁ ରଖ କମଳା ନିବାସ ।

---

## ପ୍ରୋଢ଼ାସୁରର ବରଲାଭ

ଏଥୁଅନ୍ତେ ସେ ହରଙ୍କ ବେଶ ଚୂଡ଼ାମଣି
ମୁନିଙ୍କ ଚରଣେ ପୁଣି ଭଜିଲ ତଇଲା ।
ମଧ୍ୟପର୍ବ କଥା ମୁନି କହୁଅଛ ମୋତେ
ତହିଁ ପରେ କସ ହେଲା କହ କୌତୁକେ ।
ମନୁ ପଞ୍ଚଇନ୍ତ ପୁଣି ଅଗସ୍ତି କହନ୍ତି
ଏକମନ ହୋଇ କୁଶ୍ମ ଶୁଣ ହେ ନୃପତି ।
କଇଳାସ କନ୍ଦରର ଉତ୍ତର ଦିଗରେ
ଚୂଡ଼ାସୁର ବୋଲି ରାଜା ଅଛଇ ତହିଁରେ ।
କଲେ ଅସୁର ଅନ୍ୟାୟ ପୁଣ ତହିଁ କଲା
ଦେବ ଦାନବ ତାହାକୁ ସେବି ନ ପାରିଲା ।
ଏହିମତେ ସେ ଅନେକ କାଳ ରାଜ୍ୟକରି
ରାଜାମାନଙ୍କର ସଙ୍ଗେ ଭରେ ଖଣ୍ଡି ଆଳି ।

ସହସ୍ର ବର୍ଷ ଛଷ୍ଟାଣୋଇ ରଜା
ତାମ୍ରସୁର ଭରନ୍ତି ସର୍ବେ ପାଦପୂଜା ।
ବୃଷାସୁର ଅଂଶରେ ଅସୁର ଜନ୍ମିଲା
ପୃଥ୍ୱୀରେ ତାହାକୁ କେ ହୋଇଲେ ସମାନ
ଗମ୍ୟବନ ଦେଖିଣ ନଗ୍ର ବସାଇଲା
ଜମୁଷା ବୋଲି ସେହି ନଗ୍ର ନାମ ଦେଲା ।
ଚଉଷଠି ଯୋଜନର ଗଡ଼ ବୃକ୍ଷପାଖ
ତହିଁ ମଧ୍ୟେ ନଗ୍ର କଲା ଅସୁର ପ୍ରତ୍ୟକ୍ଷ ।
ଏହିମତେ କେତେକାଳ ସେ ରାଜ୍ୟ କରଇ
ଅନ୍ୟାୟ ଆଚରି ସେହି ପୃଥ୍ୱୀରେ ବୁଲଇ ।
ଏତହିଁ ଅଧର୍ମପଣ କରି ଧନ ନେଲା
ଦେବତା ବ୍ରାହ୍ମଣଙ୍କୁ ସେ ବହୁକଷ୍ଟ ଦେଲା ।
ଅନ୍ୟାୟ ନାନା ତାହାର ପୃଥ୍ୱୀରେ ଉଠଇ
ଏମନ୍ତେ ଅଶୀ ଲକ୍ଷ ରାଜ୍ୟକୁ କରଇ ।
ତାହାର ନନ୍ଦନ ପ୍ରୋଢ଼ା ନାମେଣ ଅସୁର
ତେତେବଡ ରୁଦ୍ରାସୁର ଗଲା ଯମପୁର ।
ସେ ରାଜ୍ୟେ ପ୍ରୋଢ଼ା ଅସୁର ନୃପତି ହୋଇଲା
ଏକାଳେ ସେ ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଭ୍ରମିଲା ।
ଭ୍ରମି ଭ୍ରମି ଆସି କଇଳାସରେ ପଶଇ
ଉତ୍ତର ଦୁଆରେ ଯାହା କାର୍ତ୍ତିକ ଅଛଇ ।
ତାହାଙ୍କ ଚରଣ ତଳେ କଲା ନମସ୍କାର
ତପସ୍ୱୀ ହୋଇଣ ତାଙ୍କୁ କଥଇ ଉତ୍ତର ।
ଷଡ଼ମୁଖ ପଚାରନ୍ତି କାହିଁକି ଆଇଲୁ
ଏକାଙ୍ଗ ଚକ୍ରବର୍ତ୍ତୀ ତୁ ପୃଥ୍ୱୀରେ ହୋଇଲୁ ।
ତୋର ପିତା ରୁଦ୍ରାସୁର ଥିଲା ମହାବଳୀ
ପୃଥ୍ୱୀ ରାଜାଙ୍କୁ ସେହି ପଳାଇଲା ଦଳି ।
ସ୍ୱର୍ଗପୁରେ ପଶି ପୁରୁହୂତଙ୍କୁ ଜିଣିଲା
ସେହି ପୁଣି କାଳକ ଯେ ଜିଣି ନ ପାରିଲା ।
ଅନ୍ୟାୟ କଲେ ବହୁତ କାଳ ନ ବଞ୍ଚଇ
ଧର୍ମ ଥିଲେ କାଳେ ପୃଥ୍ୱୀ ଲୋକପ୍ରିୟା ହୋଇ
ତୋହର ଯେ ପିତା କେଉଁ ଧର୍ମ ନ ଥାପିଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଅନ୍ୟାୟ ସେ କଲା ।
ସେହୁ କାଳମୁଖେ ଗଲା ନ ରହିଲା ମହୀ
ଅପକୀର୍ତ୍ତି କଥା ଏବେ ତାର ଅଛି ରହି ।
ତୁହି ଏବେ ଧର୍ମମାର୍ଗେ ଆଚରାଇ ନୃପ
ଦେବ ବ୍ରାହ୍ମଣ ମାନଙ୍କ ମଧ୍ୟେ ପୂଜା ପାଅ ।

କାର୍ତ୍ତିକ କଥାକୁ ପ୍ରୋଢ଼ା ଅସୁର ଶୁଣଇ
ଭରସି ସେ ବିଶ୍ୱନାଥ ପ୍ରତେ ନ କହଇ ।
ଦୁଷ୍ଟଜନ ସନ୍ତଜନ ହୋଇବ କେମନ୍ତେ
ଧର୍ମ ଛାଡ଼ି ଅଧର୍ମକୁ ଗ୍ରହଇ ନିରତେ ।
ପ୍ରୋଢ଼ା ଅସୁର ବୋଇଲେ ଶୁଣିବା ଗୋସାଇଁ
ତୁମ୍ଭ ପାଖକୁ ଆଇଲି ମୁହିଁ ଯାଚିବା ପାଇଁ ।
ସାବଧାନ ହୋଇ ତୁମ୍ଭେ ଶୁଣ ଶୁଦ୍ଧମତେ
ତୁମ୍ଭର ଦୟା ହୋଇବ ସେବେ ହୃଦଗତେ
ଅମର ବରଟି ମୋତେ ଯେବେ ଦେଇପାର
ଜାଣିବି ଉଦ୍ଧବ ସ୍ୱର୍ଗପୁରେ ତୁମ୍ଭର ।
ଦେବ ଦାନବ ମାନବେ ହୋଇବି ବିନାଶ
ନାନା ଅସ୍ତ୍ର ଅଙ୍ଗେ ମୋର ପଡ଼ି ହେବ ଭସ୍ମ
ପ୍ରଳୟକାଳରେ ମୁଁ ହୋଇବି ନଷ୍ଟ ନ
ତନୁପୁରେ ହୋଇବଇଁ ମୁହିଁ ଯାଉ ପୁଣ ।
ଏମନ୍ତ ବର ମୋତେ ତ ଦିଅ ଦେବସ୍ୱାମୀ
ଶୁଣିଣ କାର୍ତ୍ତିକେଶ୍ୱର ମନେ ଭାବେ ପୁଣି ।
ପଞ୍ଚଭୂତ ଆତ୍ମାରେ ସେ ବିଚାର କରିଲେ
ଏକେତ ଅସୁର ଦୁଷ୍ଟ ଅଟଇ ସେ ଭଲେ ।
ବିନା ବରେ ଏ ଅସୁର ଭ୍ରମେ ତିନପୁର
ବର ପାଇଲେ ଏହି କ ରଖିବ ସଂସାର ।
ଏତେ ଦୁର୍ଗମ ବର ମୁଁ କେମନ୍ତେ ଦେବଇଁ
ବର ପାଇଲେ ପୃଥ୍ୱୀ ରଖିବ ନ ଏହି ।
କେମନ୍ତେ ଏହାକୁ ମୁହିଁ ଏ ବର ଦେବଇଁ
କପଟ କଥା କହିଣ ଦେବ ବାହୁଡ଼ାଇ ।
ଏତେକ ବିଚାରି ବୋଲେ ଈଶ୍ୱର କୁମର
ବୋଇଲେ ଶୁଣ ରେ ବାବୁ ତୁ ପ୍ରୋଢ଼ାଅସୁର
ଅମର ବର ମାଗିଲୁ ଯେବେ ତୁ ରେ ମୋତେ
ଜନ୍ମିଲା ହୋଇଣ କେହୁ ନ ରହେ ଜଗତେ
ଅମର ବର ରେ ବାବୁ ନୁହେ କିଛି ଭଲ
କାଳେ ଆପଣାର ହେବେ ହୁଅଇ ସେ ଶଳ ।
ଦେବ ମାନବ ଦାନବେ ନ ସହିବେ ତୋତେ
ଦୁଃଖମାନ ଉପୁଜିବ ସବୁରିଙ୍କ ଚିତ୍ତେ ।
ଧର୍ମକଥା କଲେ ବାବୁ ସବୁଦିନେ ଥିବୁ
ଅଧର୍ମ କଲେ ପୃଥ୍ୱୀରେ କ୍ଷଣେ ନ ବଞ୍ଚିବୁ ।
ତୁହି ଯେ ଅମର ବର ମାଗୁଅଛୁ ମୋତେ
ଅସୁର ଦୟା ଅଛଇ ନ ଦେବୁଁ ତ ତୋତେ

ଏ ମଞ୍ଚ ମଣ୍ଡଳେ ଜାଣ ଯେତେକ ଅନନ୍ତ
ସମସ୍ତେ ହୋ ରଜା ତୋର ପାଦେ ବଶବର୍ତ୍ତୀ
ପିତା ତୋହର ତାହାଙ୍କୁ ଜିଣିଛୁ ସଂଗ୍ରାମେ
କାହାକୁ ଆଉ ଜିଣିବୁ ବୋଲି ଭାବୁ ମନେ
ପାତାଳ ପୁରକୁ ତୋର ଯିବା ଶକ୍ତି ନାହିଁ
ଉପାରେ ପଡ଼ିବଟି ଜାଣ ଏହି ମତି ।
ଏଣୁ ପାତାଳପୁରକୁ ନ ଜାଅ ତୁ ମନ
ଆମ୍ଭର ଆଜ୍ଞାରେ ତୁହି ହୁଅ ସାବଧାନ ।
ଆବର କଥାଏ ତୁ ହୋ ଶୁଣ ମନଦେଇ
ଯମରାଜା ପୁରକୁ ନ ଯିବୁ ବାବୁ ତୁହି ।
ସବୁ ଜନ୍ତୁଙ୍କ ଉପରେ ଅଟେ ଅଧିକାର
ତାହାକୁ ସଂଗ୍ରାମେ ଜେତି ଜିଣି ତ ନ ପାର ।
ଅମ୍ଭର ଆଜ୍ଞାରେ ତୁହି ତାକୁ ନ ଜିଣିବୁ
ତାହା ତୁଲେ ଖଣ୍ଡି ଆଉ କେବେ ଯେ ନୋହିବୁ
ଆକାଶରେ ଚନ୍ଦ୍ର ସୂର୍ଯ୍ୟ ଦ୍ୱନ୍ଦ୍ୱ ଆଚଯାତ
ତାହାଙ୍କ ତୁଲେ ପୀରତି କରିଥିବୁ ତାତ ।
ସୂର୍ଯ୍ୟ ଯେବେ ଆକାଶରେ ଉଦୟ ନୋହିବ
ଏ ସଂସାର କେଉଁପରି ଅନ୍ଧାର ହେବ ।
ଚନ୍ଦ୍ର ଯେବେ ରାତ୍ରକାଳେ ଉଦୟ ନୋହିବ
ପୃଥ୍ୱୀରେ ଶସ୍ୟ ସବୁ କେମନ୍ତେ ହୋଇବ ।
ଜଗର ପଦାର୍ଥମାନ ଅମୃତ ହୁଅଇ
ସ ସୁସ୍ୱାଦୁ ଫଳମାନ ପୃଥ୍ୱୀରେ ଫଳଇ ।
ଏ କାରଣୁ ଚନ୍ଦ୍ର ସହ ବିବାଦ ନୋହିବୁ
ସବୁକଥା ତୋତେ କହିଦେଲୁ ଆରେ ବାବୁ
କାର୍ତ୍ତିକେଶ୍ୱର ମୁଖରୁ ଏସନକ ଶୁଣି
ଯୋଦ୍ଧା ଅସୁର ସେଠାରେ ଏ ବଚନ ଭଣି ।
ଯାହା ତୁ କହିଲୁ ପ୍ରଭୁ ସମସ୍ତ ପାଳିବି
ତୋହର ବଚନ ମୁହିଁ ଆନ ନ କରିବି ।
ଆବର କଥାଏ ବାବୁ କହିବି ତୁମ୍ଭର
ସାବଧାନେ ଶୁଣ ତୁମ୍ଭେ ଈଶ୍ୱର କୁମର ।
ତିନପୁର ଜିଣିବି ମୁଁ ବେଗ ବଳେ କରି
ଏହି ଆଜ୍ଞା ଦେବୁ ମୋତେ ତାରକ ବଇରି
କାର୍ତ୍ତିକେଶ୍ୱର ବୋଇଲେ ଅସ୍ତୁ ହେଉ ତୋତେ
ଜିଣି ନ ପାରିବୁ ବାବୁ ଏକା ସୁରନାଥେ ।
ଗୁପତ କଥାକୁ ତୁହି ଜାଣିଥିବୁ ପର
ତୋହର ମୃତ୍ୟୁ ଅଛଇ ଇନ୍ଦ୍ରର ହସ୍ତର ।

ଅବଶ୍ୟ ତୁ ଇନ୍ଦ୍ର ବଜ୍ରେ ହୋଇବୁ ବିନାଶ
ଏ ଗୁପତ କଥାରେ ତୁ କରିବୁ ବିଶ୍ୱାସ ।
ଏମନ୍ତ ବଚନ ସେ ତାସୁରକୁ କହିଲେ
କାର୍ତ୍ତିକେଶ୍ୱର ସେଠାରୁ ଅନ୍ତର ହୋଇଲେ
ତହୁ ଯୋଦ୍ଧାସୁର ଶୀଘ୍ର ହୋଇ ଚଳଗସ୍ତ
ଅଳମ୍ଭୁଷ ରାଜ୍ୟ ଯାଇଁ ପ୍ରବେଶ ହୋଇଲା ।
ମନ୍ତ୍ରୀକି ସଙ୍ଗରେ ଘେନି ଭଲଇ ଉତ୍ତର
କାର୍ତ୍ତିକେଶ୍ୱର ମୋତେ ତ ଦେଲେ ଏହି ବର
ତିନପୁର ଜିଣ ବୋଲି ମୋତେ ଆଜ୍ଞା ଦେଲେ
ଦେବ ତାରକରେ ମୋର ଭୟ ନ ରଖିଲେ
ଏବେ ମୋର ଥାଟ ତୁମ୍ଭେ ବେଗେ ସଜ କର
ବେଗବଳେ କର ମୁଁ ଜିଣିବି ନୃପବର ।
କୃପାକ୍ର ମନ୍ତ୍ରୀ ବୋଇଲା ଶୁଣ ମହାରାସ୍ତେ
ତୋହର ସ୍ୱାମ୍ୟରେ ମୁହିଁ କହିବ କଥାଏ ।
ମହା ମହା ବଳୀ ରଜା ଛନ୍ତି ମଞ୍ଚପୁର
ଏକକୁ ଏକ ଅଟନ୍ତି ମହା ବଳିଆର ।
କୃପାକ୍ର ମନ୍ତ୍ରୀ ମୁଖରୁ ଏସନକ ଶୁଣି
ଯୋଦ୍ଧାସୁର ପଚାରଇ ତାକୁ ପୁଣି ପୁଣି ।
କହ ଆହୋ ମହାବୀର ରାଜାଙ୍କର ନାମ
କେବଣ ଦେଶମାନଙ୍କେ କରନ୍ତି ବିଶ୍ରାମ ।
ଏହା ମୋତେ ସଂକ୍ଷେପେଣ କହ ମନ୍ତ୍ରୀବର
ତେବେ ଯିବା ମୁହିଁ ଶାନ୍ତ କରିବ ମନର ।
କୃପାକ୍ର ମନ୍ତ୍ରୀ ବୋଇଲା ଶୁଣ ସାବଧାନେ
କୁଞ୍ଜଗଳ ଦେଶରେ ଯେ ରଜା ଦୁର୍ଯ୍ୟୋଧନେ
ଏଗାର କ୍ଷଉଣୀ ତାର ଅଛି ଅଙ୍ଗବଳ
ତାହାର ମନ୍ତ୍ରୀ ଶକୁନି ଅଟେ ମନ୍ତ୍ରୀବର ।
ଆବର ଯେ ଭୀଷ୍ମ ଦ୍ରୋଣ କୃପ କର୍ଣ୍ଣ ଶଲ୍ୟେ
ଶତେଭାଇ ଅଛନ୍ତି ଯେ ଦୁଃଶାସନ ତୁଲେ ।
ମାନେ ମାନଯୋଧନ୍ଦ ତା ଜନ୍ମେ ଲକ୍ଷ୍ମୀ ଥାଇ
ପଦ୍ମନିଧି ଶଙ୍ଖନିଧି ହସ୍ତରେ ଅଛଇ ।
ଲକ୍ଷଣବନ୍ତ ପୁରୁଷ ଲକ୍ଷ୍ମୀ ନ ଛାଡ଼ଇ
ଲକ୍ଷେ ରଜାର ମଉଡ଼ମଣି ସେ ଅଟଇ ।
ମନ୍ତ୍ରୀର ମୁଖରୁ ଶୁଣି ଏସନକ ବାଣୀ
ମହାକୋପରେ ଅସୁରକୁଳ ନୃପମଣି ।
ବୋଇଲା ମୋହର ଥାଟ ବେଗେ ସଜ କର
ଅବଶ୍ୟ ଯିବଇଁ ମୁହିଁ ହସ୍ତିନା ନଗର ।

ମନ୍ତ୍ରୀ ଯେ ବୋଇଲା ରାଜେନ୍ଦ୍ର ନ କର ତୁ କୋପ
ଦୁର୍ଯ୍ୟୋଧନର ଭାଇ ଯେ ଯୁଧିଷ୍ଠିର ନୃପ ।
ତନୟ ଅଟଇ ସେ ଯେ ପାଣ୍ଡୁ ରାଜାଙ୍କର
ଭ୍ରାତୃଗୋଟି ଚାରି ପୁଣି ଅଛଇ ତାହାର ।
ଭୀମ ଅର୍ଜୁନ ନକୁଳ ସହଦେବ ବୀର
ଇନ୍ଦ୍ରର ପୁତ୍ର ଅର୍ଜୁନ ଅଟେ ଧନୁର୍ଦ୍ଧାରୀ ।
ହର ଉଦ୍ୟାନ ବନରେ ଶିବଙ୍କୁ ଜିଣିଲା
କଷ୍ଟିତ ସେବାରେ ପାର୍ବତୀଙ୍କୁ ମନାଇଲା ।
ଅକ୍ଷୟ ତୂଣୀର ପାଶୁପତ ନେଲା ମାଗି
ମହାଦେବୀ ବୋଇଲେ ଯେ ଈଶ୍ୱରଙ୍କୁ ରାଗି
କାଟିଏ ଈଶ୍ୱର ହେଲେ ନ ଜିଣିବେ ତୋତେ
ହିମବନ୍ତ ସୁତା ବର ଦେଇଲ ଏହିମତେ ।
ଇନ୍ଦ୍ରର ଖାଣ୍ଡବବନ ଅନଳକୁ ଦେଲା
ଇନ୍ଦ୍ରଦେବତା ଯୁଦ୍ଧରେ ତାହାଙ୍କୁ ହାରିଲା ।
ତୋଷେ ଦେବଗଣମାନ ଦେଲା ବୈଶ୍ୱାନର
ହରି ବଳରାମଙ୍କୁ ସେ ଜିଣିଲେ ଆବର ।
ଦେବ ଦାନବେ ମାନବେ ଅବଧ ଅଟନ୍ତି
ବନରେ ଜିଣିଣ ଦୁଷ୍ଟ ଦାନବ ମାରନ୍ତି ।
ସାକ୍ଷାତେ ଧର୍ମଦେବତା ଯୁଧିଷ୍ଠି ଜନକ
ଭୀମସେନ ଅଟଇ ଯେ ପବନ ନନ୍ଦନ ।
ପବନ ପ୍ରାପ୍ତ ବଳିଷ୍ଠ ଅଟଇ ସେ ବୀର
ଅପ୍ରମିତ ମହିମା ଯେ ଅଟେ ତାହାଙ୍କର ।
ମଗଧ ଦେଶର ରାଜା ଜରାସନ୍ଧ ରାଜେନ୍ଦ୍ର
ଏକଲକ୍ଷ ରାଜାଙ୍କୁ ସେ ବନ୍ଦ କରିଥାଏ ।
ରାମକୃଷ୍ଣ ବୋଲି ବସୁଦେବର ତନୟ
ମଥୁରାପୁରେ ଅଛଇ ଉଗ୍ରସେନ ରାୟ ।
ଉଗ୍ରସେନର ପୁତ୍ର ଯେ କଂସ ମହାରଣ
ଅତି ଉତ୍ପାତ ହେଇଣ ହେଇଲା ରାଜନ ।
ଜରାସନ୍ଧର ଦୁହିତା ହେତୁ ଯେ ସ୍ନେହେତ
ତାହାଙ୍କ ବଶ ହୋଇଲା କଂସ ନରପତି ।
ଉଗ୍ରସେନର ଦେବକୀ ନାମରେ କୁମାରୀ
ବସୁଦେବଙ୍କୁ ଯେ ଦତ୍ତ ହେଲା ଦଣ୍ଡଧାରୀ ।
କଂସକୁ ନାରଦ କହେ ଗୁପତ ବଚନ
ଭଣିଜାର ହସ୍ତେ ତୁହି ହୋଇବୁ ନିଧନ ।
ତାହା ଶୁଣି କଂସ ମନେ ବଡ଼ କୋପ କଲା
ଷଡ଼ଗୋଟି ଭଣିଜାଙ୍କୁ ହାତେ କଚାଡ଼ିଲା ।

ରାମକୃଷ୍ଣେ ବସୁଦେବ ଘେରାଇଣ ନେଲା
ଗୋପପୁରେ ନନ୍ଦଘରେ ଛାଡ଼ିଣ ଆଇଲା ।
ଆଠ ବରଷ ବଢ଼ିଲେ ତହିଁ ରାମହରି
ତାଙ୍କୁ ନେବାଇ ଅଇଲା କଂସ ଦଣ୍ଡଧାରୀ ।
ଧନୁ ଉତ୍ସବ ଯାତ୍ରା ସେ ଗୋଟିଏ ରଚାଇ
ଗୁପତେ ଅକ୍ରୂର ପଠା ଅଇଲା ନେବାଇ ।
ଦେଖିଲା ମାତ୍ରକେ କଂସ ହେଲା ପ୍ରାଣେ ନାଶ
ଝିଅ କାନ୍ଦି କହିଲେ ଯେ ଜରାସନ୍ଧ ପାଶ ।
କ୍ରୋଧରେ ଅଠରବେଳ ଧାଡ଼ ସେହୁ ଦେଲା
ମଥୁରାରୁ ରାମ ଘେନ କୃଷ୍ଣ ପଳାଇଲା ।
ଓଟର ଲୁଚି ଅଛନ୍ତି ଯେ ଦ୍ୱାରକା ପୁର
ଜରାସନ୍ଧ ରାଜଗୋଷ୍ଠୀ ଅଟେ ବଳୟାର ।
ତାହା ଶୁଣି ଯୋଦ୍ଧାସୁର ହସିଣ ଉଠିଲା
ମନ୍ତ୍ରୀମୁଖ ସ୍ପର୍ଶିକରି ବଚନ ଭଣିଲା ।
ଏହି ରୂପେ କଥାମାନ ଶୁଣିଲି ଶ୍ରବଣେ
ଆନ ରାଜାଙ୍କର କଥା କହ ଜଣେ ଜଣେ ।
କୃପାକ୍ରମନ୍ତ୍ରୀ କହଇ ତହୁଁ ଦିବ୍ୟବାଣୀ
ଗୋଟି ଗୋଟିକର ରାଜାମାନଙ୍କୁ ବଖାଣି ।
ଶୁଣି ଥରଥର ହୋଇ କମ୍ପିଲା ଅସୁର
ରାଜାଙ୍କର କଥା ଶୁଣି କୋପେ ଗୁରୁତର ।
ମନ୍ତ୍ରୀକୁ ବୋଇଲା ତୁହୋ ସବୁକଥା ଛାଡ଼
ମୋହର କଥାକୁ ତୁହି ମନେ କର ଦୃଢ଼ ।
ସୈନ୍ୟବଳ ମୋର ତୁହୋ ବେଗେ ସଜ କର
କରିବି ମୁଁ ବଗଡଜେ ମଞ୍ଚ ମଣ୍ଡଳର ।
ବାଣ୍ଡରେ ବାଜନ୍ତି ମୋର ବାଜୁ ଏହିକ୍ଷଣ
ଶଙ୍ଖ ଯେ ମହୁରୀ ଆଦ ବାଜୁ ଘନ ଘନ ।
ଏହା ଶୁଣିକରି ମନ୍ତ୍ରୀ ବେଗେ ଚଳିଗଲା
ଦାଉଣ୍ଡି ଦିଆଅ ବୋଲି ଡାଗରେ କହିଲା ।
ମନ୍ତ୍ରୀ ବଚନେ ଡାଗରମାନେ ଚଳିଗଲେ
ଦାଉଣ୍ଡି ଦେବାକୁ ଯାଇ ରାଜ୍ୟରେ କହିଲେ ।
ବନ୍ଦଇ ଶ୍ରୀ ଗଣନାଥ ଗଉରୀ ନନ୍ଦନ
ଶରୀରକୁ ଶୋଭା ପାଏ ଗଜର ବଦନ ।
ଉପାଧ୍ୟ ଛଟକେ ବିଘ୍ନନାଥକୁ ଭଣିଲୁ
ଅମୃତ ଲଡୁଗୋଟା ତୁ କୌଶଳରେ ନେଲୁ ।
ଉତ୍ସବ କାଳରେ ତୋତେ କରନ୍ତି ବନ୍ଦନା
ପ୍ରାସାଦ କାଳେ କରନ୍ତି ତୋତେ ସୁମରଣା ।

ବାଲ୍ୟବେଶୀ ସେହି ସର୍ବବିଦ୍ୟା ସାଧି କଲୁ
ତେଣୁ ଗଣନାଥ ନାମଗୋଟି ଯେ ପାଇଲୁ ।
ଶ୍ରୀଚଣ୍ଡେଶୀ ନନ୍ଦନର ଚରଣେ ମୋ ଆଶ
ବାଞ୍ଛା ନ ପୂରୁ ତୁମ୍ଭେ ଅଜ୍ଞା ଦିଅ ହରଷିଷ୍ୟ ।
ତେଣୁ ତାହାର ଚରଣ ତଳେ ଜଣାଉଛି
କବି ଶରଳା ଦାସଙ୍କୁ ରଖ ହରବଳି ।

## ପ୍ରୋଢ଼ାସୁରର ଦିଗ୍‌ବିଜୟ

ଶୁଣ ଆହେ ମନୁରାଜା କହନ୍ତି ଋଷପ୍ତି
ଏକ ମନେ ଶୁଣ ତୁମ୍ଭେ ମଧ୍ୟପର୍ବ ଗୀତ ।
ତୁମ୍ଭ ଯେବେ ପଚାରିଲ ପ୍ରୋଢ଼ାସୁର କଥା
ଏକ ମନେ ଶୁଣି ହୃଦେଁ ଦୂର କର ବ୍ୟଥା ।
ଦଉଣ୍ଡି ବାଜନ୍ତେ ଦୈତ୍ୟବଳ ଯେ ଶୁଣିଲେ
ଯେ ଯାହାର ମତେ ସୈନ୍ୟ ସକଳ ସାଜିଲେ
ହାତୀ ରଥ ଅଶ୍ୱ ଚଢ଼ି ହୋଇଲେ ବାହାର
ଉଲାଖ ଉଦଣ୍ଡମାନ ଉଡ଼େ ଫରହର ।
ଅଇଲେ ପୁଣି ପଦାତି ବଳ ସଜ ହୋଇ
ତାଙ୍କ ମୁଖ ଶବଦରେ ସିନ୍ଧୁ ଉଚ୍ଛୁଳଇ ।
ତେରଲକ୍ଷ ରଥୀ ତହିଁ ହୋଇଲେ ବାହାର
ଚଉଦ କୋଟି ଯେ ଗଜ ଅତି ଚମତ୍କାର ।
ଅଶ୍ୱ ଚଢ଼ିଲେ ଅଠରଲକ୍ଷ ଅସୁଆର
ଅଶ୍ୱ ଧୂଆଇଁଣ ଉଭା ହେଲେ ସିଂହଦ୍ୱାର ।
ବାଇଶଲକ୍ଷ ପଦାତି ବଳ ହେଲେ ସଜ
ଅଦୃଶ୍ୟ ହେଲେ ଅସୁର ଧୂଳିରେ ଯେ ସୂର୍ଯ୍ୟ
ଲକ୍ଷେ ବାଦ୍ୟକାର ତହିଁ ବଜାନ୍ତି ଯେ ବାଦ୍ୟ
ବାଦ୍ୟନାଦ ଗୀତରେ ଯେ ପୃଥିବୀ ସ୍ତବଧ ।
ସହସ୍ରେକ ଶଙ୍ଖ ଆଉ ସହସ୍ରେ ମହୁରୀ
ଏହାଙ୍କର ଶବଦରେ ପୃଥ୍ୱୀ ଅଛି ପୂରି ।
ଆପେ ମନ୍ତ୍ରୀବର ରଥ ଗୋଟିଏ ସାଜିଲା
ଦିବ୍ୟବେଶ ହୋଇ ରାଜା ଛାମୁରେ ମିଳିଲା ।
ନମସ୍କାର କରି ମନ୍ତ୍ରୀ କହଇ ବଚନ
ସଜ ହୋଇଣ ଅଇଲେ ଏ ତୋହର ସୈନ୍ୟ
ସମସ୍ତେ ସିଂହଦ୍ୱାରରେ ଅଛନ୍ତି ଉଭା ହୋଇ
ଦିବ୍ୟରଥ ସଜକରି ଅଛନ୍ତି ରଖାଇ ।
ଆପଣେ ଯେ ବେଶ ହୋଇ ତହିଁ ବିଜେ କର
ଯହିଁକି ମନ ତହିଁକି ଯାଅ ନୃପବର ।

ମନ୍ତ୍ରୀର ମୁଖରୁ ରାଜା ଏସନକ ଶୁଣି
ଆପେ ସଜ ହୋଇ ଆସେ ଦୈତ୍ୟକୁଳମଣି ।
କର୍ଣ୍ଣରେ କୁଣ୍ଡଳ କଣ୍ଠେ କଣ୍ଠମାଳ ଦେଇ
ପାଗ ପାଛୋଟା ଗନ୍ଧ ସେ ଦେହରେ ବୋଳାଇ
ହୃଦରେ ଘଣ୍ଟକ ସେହୁ ଲମ୍ବାଇ ନୃବର
ଚନ୍ଦନରେ ତିଳକ ସେ ଦେନଲା ଶରୀର ।
ଖାର ଉଲାଖ ଉଦଣ୍ଡ ଉଡଇ ଆଗରେ
ଅନୁକୂଳ କରି ରାଜା ବସିଲା ରଥରେ ।
ଆଠଅଶ୍ୱ ନେଇ ପୁଣି ଯୋଚିଲା ରଥରେ
ମନ୍ତ୍ରୀକୁ ଘେନି ଅସୁର ବସିଲା ତହିଁରେ ।
ରାଜାଙ୍କୁ ଚାହିଁଣ ମନ୍ତ୍ରୀ ବୋଲଇ ବଚନ
କେବଣ ଦିଗକୁ ଏବେ କରିବା ଗମନ ।
ମନ୍ତ୍ରୀର ବଚନେ କହୁଅଛି ପ୍ରୋଢ଼ାସୁର
ହସ୍ତିନା ରାଜ୍ୟ ଯିବାକୁ କରଇ ବିଚାର ।
ଶୁଣନକର ଯେ ତ ମନ୍ତ୍ରୀବର ଯେ କହଇ
ଦୋଷ କ୍ଷମା କର ମହିଁ ଛାମୁରେ ଜଣାଇଁ ।
ରାଜା ବୋଲେ ତୋର ଦୋଷ କଲୁ ମୁହିଁ କ୍ଷମା
ନିର୍ଭୟ ହୋଇଣ କହ ମନ୍ତ୍ରୀଙ୍କ ଉତ୍ତମା ।
କରପଦ୍ମ ଯୋଡ଼ି କହେ ରାଜାର ଛାମୁରେ
ସାବଧାନ ହୋଇ ତୁମ୍ଭେ ଶୁଣ ନୃପବରେ ।
କପିଳାସ କନ୍ଦରେ ଯେ ତୋତେ ଦେଲା ବର
ଏଥିର ଉତ୍ତର କହ ମୋହ ଅଗୋଚର ।
ମନ୍ତ୍ରୀର ବଚନେ ପୁଣ କହେ ନୃପଗଣ
ଈଶ୍ୱରଙ୍କ ପୁତ୍ରଙ୍କୁ ମୁଁ ସେବାରେ ତୋଷିଣ ।
ସେ ମୋତେ ପ୍ରସନ୍ନେ ବର ଦେଇଣ ଅଛନ୍ତି
ଦେବ ଦାନବ କେ ସରି ନୋହିବ ଏ ପୃଥ୍ୱୀ
ମନ୍ତ୍ରୀ ବୋଲେ ଯାହା ଏବେ କହଇ ଛାମୁରେ
ମୋହର କଥା ଏବେ ତୁ ଶୁଣ ନୃପବରେ ।
କଉରବ ବଳ ତୁମ୍ଭ ନ ପାରିବୁ ଜିଣି
ପାଣ୍ଡବ ଅର୍ଜୁନ ତହିଁ ଅଛି ବୀରମଣି ।
ଯାହାକୁ ଈଶ୍ୱର ଦେଇଁ ଅଛନ୍ତି ବର
ତାହାକୁ ଜିଣନ୍ତା ନାହିଁ କେହି ତିନିପୁର ।
ଆଉର କଥା ଏ ଦେବ ଅଛଇ ତହିଁରେ
ଅକ୍ଷୟ ତୂଣୀର ପାଶୁପତ ଅଛି କରେ ।
ଆଗରୁ ତୁମ୍ଭ ଛାମୁରେ କହୁଅଛି ମୁହିଁ
ମୋ ବଚନ ନ ପାଟେସାରୁ ତୁମ୍ଭେ ନୃପସାଇଁ ।

ସେ କାର୍ତ୍ତିକେଶ୍ୱର ସିନା ତାହାଙ୍କ କୁମର
ଯାହାକୁ ଏଡ଼େ ସୁବସ୍ଥା ଅଛୁ ପିତାଙ୍କର ।
ମୋହର ବୋଲ କୁ ଯେବେ ନ କରିବୁ ସତ୍ୟ
କାର୍ଯ୍ୟ କରୁ ନୋହିବଟି ହୋଇବ ଅଜସ୍ୱ ।
ପୁରୁଷାନୁକ୍ରମେ ଅଟେ ମୁଁ ସେବକ ତୋର
ବସ୍ତିନା ଯିବା ମନକୁ ନ ଯୋଗାଏ ମୋର ।
ମନ୍ତ୍ରୀର ବଚନ ରାଜା ମନରେ ସେନିଲେ
କୃତଜ୍ଞ ମଧ୍ୟରେ ତାର କଥାକୁ ଗଣିଲେ ।
ମନ୍ତ୍ରୀର ବୋଲଟି ଯେବେ ନ କରିବ ମୁହିଁ
କେମନ୍ତେ ମୁଁ ସୁଖେ ରାଜ୍ୟ ଭୋଗ କରିବଇଁ
କୁଞ୍ଜରଗଳ ବେଶକୁ ତ କଳ୍ପିଥିଲ ମନ
ପୁଣି ପଚାରେ ଅସୁର ମନ୍ତ୍ରୀକି ବହ୍ନିଣ ।
କେଉଁଠାକୁ ଏବେ ଆମ୍ଭେ କରିବା ପଳାଣି
ଏଥିର ଉପାୟ କୁହ କହ ମନ୍ତ୍ରୀମଣି ।
ମନ୍ତ୍ରୀ ଯେ ବୋଇଲା ଏବେ କଥା ଏ କରିବା
କଣ୍ଡ ସାହ୍ୟକରି ଆମ୍ଭେ ଚଳାଇଣ ଥିବା ।
ଆମ୍ଭକୁ ସନ୍ଧାନ ଆଣି ଯେଉଁଲୋକ ଦେବ
ତାହା ସଙ୍ଗେ ନ କରିବା କେବେ ଦ୍ୱନ୍ଦ୍ୱଭାବ ।
ଆମ୍ଭର ସଙ୍ଗତେ ଯେତୁ କରିବ ସମର
ଆମ୍ଭେ ଯେ କରିବା ଦ୍ୱନ୍ଦ୍ୱ ଗୋଳ ତା ସଙ୍ଗର
ଏମନ୍ତ ବୋଲିଣ ମନ୍ତ୍ରୀ କହିଲା ମଣାଇ
ଫାଷ୍ଟ ଚଳାଇଣ ରାଜା ଯାଏ ବେଗ ହୋଇ ।
ଅଳମୁଷା ରାଜ୍ୟରୁ ସେ ବାହାରିଣ ଗଲେ
କଇଳାସ କନ୍ଦରକୁ ପ୍ରଦକ୍ଷିଣ କଲେ ।
ବାଦ୍ୟ ନାଦ ଶବଦରେ କମ୍ପେ ମହୀସ୍ଥଳୀ
ସ୍ୱର୍ଗମଣ୍ଡଳରେ ପଡ଼ିଗଲା ହାଲହୋଳ ।
ସ୍ୱର୍ଗପୁରେ ଦେବତାଏ ମହାଭୟ କଲେ
ସପସ ସୈନ୍ୟ ବାହିଲା ବୋଲିଣ ଡରିଲେ ।
ନାରଦଙ୍କୁ ଡାକିକରି ବୋଲେ ପୁରନ୍ଦର
ଭଗବାନେ କଣ ବାହିଁ ଯେ ଅଛୁ ଅସୁର ।
ନ ପୁଣ ସ୍ୱର୍ଗପୁରକୁ ଯେ ଧାଡ଼ି ଦଅଇ
ତୁମ୍ଭେ ଯାଇଣ ତତ୍ତ୍ୱ ବୁଝ ମୁନସାଇଁ ।
ଇନ୍ଦ୍ର ବଚନେ ନାରଦ ମୁନ ଚଳିଗଲେ
ଘୋଡ଼ାସୁରର ଆଗରେ ଯାଇଣ ମିଳିଲେ ।
ନାରଦଙ୍କୁ ଦେଖି ଘୋଡ଼ା ରଥୁ ଓହ୍ଲାଇଲା
ଚରଣ ତଳରେ ପଡ଼ି ନମସ୍କାର କଲା ।
ବୋଇଲା ଗୋସାଇଁ ତୁମ୍ଭେ କେଉଁଠାରେ ଥିଲ
ମୋହର ଭାଗ୍ୟକୁ ସିନା ଆସି ଦେଖାଦେଲ ।
ନାରଦ ବୋଇଲେ ତୁମ୍ଭେ ଅନ୍ନ କଲ୍ୟାଣରେ
ଯୁଗେ ଯୁଗେ ରହିଥାଅ ଆରୋଗ୍ୟ ଶରୀରେ ।
କଲ୍ୟାଣ କରିଣ ତାକୁ ପଚାରନ୍ତି ମୁନ
ତୁ କିମନ୍ତେ ବିଜୟେ କରୁ ନୃପମଣି ।
ସ୍ୱର୍ଗକୁ ଯିବୁ କି ଅବା ପାତାଳକୁ ଯିବୁ
ମର୍ତ୍ତ୍ୟଭୁବନରେ କିବା ରହି ଭ୍ରମୁଥିବୁ ।
ଏଥିର ସନ୍ଦେଶ ବୁଝି କହ ମୋର ଆଗେ
ଆମ୍ଭେ ତହିଁ ଥାଇ କିବା ତୋହର ଯେ ସଙ୍ଗେ
ନାରଦଙ୍କ ବଚନରେ କହେ ଘୋଡ଼ାସୁର
ଅରେ ମାତ୍ର ଭ୍ରମିବି ମୁଁ ମର୍ତ୍ତ୍ୟମଣ୍ଡଳର ।
ଏତେ କହି ରାଜା ଯାଇଁ ରଥରେ ବସିଲା
ନାରଦଙ୍କ ହାତଧରି ପାଖେ ବସାଇଲା ।
ସମଦଣ୍ଡ ସେନ ରାଜା ଦକ୍ଷିଣେ ଚଳଇ
କୋଳାହଳ ହୋଇ ବାଦ୍ୟନାଦ ଯେ ଶୁଭଇ ।
କନାଉଜ ଦେଶ ରାଜା ନାମ କାମେଶ୍ୱର
ବାରତା ପାଇଣ ସେହି କରଇ ବିଚାର ।
ଘୋଡ଼ାସୁର ବାହୁବାର ଉପରେ କହିଲା
ମନ୍ତ୍ରୀର ପାଶେ ବସାଇ ରାଜା ପଚାରିଲା ।
ସମାଧାନ ହୋଇ ତାକୁ ଭକତ କରିବା
ତାହାର ସଙ୍ଗତେ ଦ୍ୱନ୍ଦ୍ୱ କଲେଟି ହାରିବା ।
ଧନ ଦେଇ ସନ୍ଧିକରି ବୋଧି ତାକୁ ଦେଇ
ନିଶ୍ଚିନ୍ତ ହୋଇ ରାଜ୍ୟରେ ଥିବା ଆମ୍ଭେ ରହି
ମନ୍ତ୍ରୀର ବଚନେ ରାଜା ସନମତ କଲା
ଏକଶତ ରଥ ପାଖି ଦ୍ରବ୍ୟ ପୁରାଇଲା ।
ଅନେକ କଲା ବିନତି ଭକତି ତାହାକୁ
ଧନ ଘେନିଣ ଅସୁର ଡରାଇ ପାଖକୁ ।
ଗଉରବ କରି ତତ୍ତ୍ୱ ଚଳାଇଲା ଫାଷ୍ଟ
ବଙ୍ଗ ଦେଶେ ମିଳିଲା ଅସୁର ମୁକୁଟ ।
ତଗର କହିଲା ଯାଇ ରାଜା ସନ୍ନିଧାନେ
ଘୋଡ଼ାଅସୁର ପଶିଲା ଆମ୍ଭର ଭୁବନେ ।
ଶୁଣିଣ କେଦାରେଶ୍ୱର ହୋଇଲା ଆରତ
କି ବୁଦ୍ଧି କରିବ ବୋଲି ବିଚାରିଲା ଚିତ୍ତ ।
ଏକାନ୍ତରେ ମନ୍ତ୍ରୀକି ସେ ପାଶକୁ ଡାକିଲା
ଘୋଡ଼ାଅସୁର ଅମ୍ଭର ରାଜ୍ୟକୁ ବାହିଲା ।

ନ ବୁଝ କହିବା ଏବେ କହ ତୁ ବିସ୍ତର
ରାଜା ବଚନେ କହଇ ମନ୍ତ୍ରୀ ସକଳକର ।
ଧନ ଦେଇଣ ତାହାକୁ ପ୍ରବୋଧ କରିବା
ଯୁଦ୍ଧରେ ତାହାକୁ ଆମ୍ଭେ ଜିଣି ନ ପାରିବା ।
ମନ୍ତ୍ରୀର ବଚନେ ରାଜା ପାଣିଦ୍ରବ୍ୟ ଘେନ
ଅସୁର ଛାମୁରେ ଥୋଇ ଦେଇ ନୃପମଣି ।
ମସ୍ତକରେ ହସ୍ତଦେଇ କରଇ ବିନୟ
ସବୁଦିନେ ମୋହଠାରେ ଦୟା ରଖିଥାଅ ।
କେଦାରେଶ୍ୱର ମୁଖରୁ ଏସନକ ଶୁଣି
ପ୍ରୋଢ଼ାପସୁର ତହୁଁ ତା ମନେ ମନେ ଗୁଣି ।
କେଦାରେଶ୍ୱର ଭକତ ହୋଇଲାକ ମୋତେ
ଏହାକୁ ଯେ କୋପ ମୁହିଁ କରିବି କେମନ୍ତେ ।
ଅନେକ ସମ୍ପତ୍ତି ରାଜା ପ୍ରୋଢ଼ାସୁରେ ଦେଲା
ସେଠାବରୁ ପ୍ରୋଢ଼ାସୁର ବାହୁଡ଼ିଣ ଗଲା ।
ସେଠାବରୁ ପ୍ରୋଢ଼ାସୁର ବାହୁଡ଼ି ବହନ
ମଣିପୁର ରାଜ୍ୟରେ ସେ କରଇ ପ୍ରୟାଣ ।
ବାରତା ପାଇଣ ମଣିପୁର ରାଜାଗଣେ
ସମାଧାନ ଦେଇଣ ସେ ଭେଟନ୍ତି ତତକ୍ଷଣେ ।
କେବଣଠାରେ ଅସୁର ଯୁଦ୍ଧ ନ ପାଇଲା
ସବୁଠାରେ ସମାଧାନ ଭକତି ପାଇଲା ।
ଏହିମତେ ଚୌରାଅଶୀ ସହସ୍ର ରାଜା ଜିଣି
କାହାରିଠାରୁ ସେ ନ ପାଇଲା ଯୁଦ୍ଧବାଣୀ ।
ମହୀ ମଣ୍ଡଳରେ ଛୟାଣୋଇ ସହସ୍ର ରାଜ୍ୟେ
ଆଉରାଜାମାନେକେତେବୋଲିକୋପେକହେ
ମନ୍ତ୍ରୀକି ବୋଲେ ଜିଣିଲି ଏତେ ନୃପବର
ଆବର କେତେ ଅଛନ୍ତି କହ ମୋତେ ଧୀର
ମନ୍ତ୍ରୀ ବୋଲେ ଛନ୍ତି ଆଉ ବାରସହସ୍ର ରାଜ୍ୟେ
ଆଉରାଜାମାନେକେତେବୋଲିକୋପେକହେ
ମନ୍ତ୍ରୀ ବୋଲେ ଛନ୍ତି ଯେଉଁ ବାରସହସ୍ର ରାଜ୍ୟେ
ଏହାକୁ ଜିଣିଲେ ତୋତେ ପୃଥ୍ୱୀ ହୋଇବଏ ।
ମନ୍ତ୍ରୀମୁଖୁଁ ଶୁଣି ବୋଲେ ଦୈତ୍ୟକୁଳ ବୀର
ତାହାଙ୍କ ରାଜ୍ୟ ତ ମୋତେ ନୁହଇ ଗୋଚର
ସେ ରାଜାମାନଙ୍କ ଘର କେବଣ ରାଜ୍ୟରେ
ନାମଧରି ମୋତେ କହିବନା ମନ୍ତ୍ରୀବରେ ।
ତୁହି ଯେ କୃପାଳୁ ମନ୍ତ୍ରୀ ଅଟୁ ଗୁଣମନ୍ତ
ତୋ ବଚନ ନ ଲଙ୍ଘଇ ମୁହିଁ କଦାଚିତ ।

ରାଜାର ବଚନେ ମନ୍ତ୍ରୀ କହେ କରଯୋଡ଼ି
ସାବଧାନ ହୋଇ ତୁମ୍ଭେ ଶୁଣ ଦଣ୍ଡଧାରୀ ।
ରାଜାମାନଙ୍କ କଥା ଯେ ପଚାରିଲୁ ମୋତେ
ଜଣ ଜଣ କରି କହେ ତୋହର ଅଗ୍ରତେ ।
ତାହାଙ୍କର ନାମ ଏବେ ଶୁଣ ଦୈତ୍ୟରାୟ
ଏକୁ ଏକ ବଳ ଏହି ଅଟନ୍ତି ଦୁର୍ଜ୍ଜୟ ।
ଦକ୍ଷିଣ ଦିଗରେ ମହୋଦଧିର ସେପାରି
ଲଙ୍କା ନାମରେ ଅଛଇ ଏକ ସେହି ପୁରୀ ।
ରାବଣ ନାମରେ ତହିଁ ରାଜା ଏକ ଥିଲା
ଦେବଙ୍କ ସହିତ ସେହି ବିବାଦୀ ହୋଇଲା ।
ତାହାର ଭୟରେ ଦେବେ ସ୍ୱର୍ଗେ ନ ରହନ୍ତି
ଭୃତ୍ୟଭାବେ ରହି ସର୍ବେ ରାବଣେ ଖଟନ୍ତି ।
ଚଉଦ କୋଟି ଯୁଗକୁ ଆୟୁଷ ତାହାର
ତୋଷେ ବୃଷଧର ତାକୁ ଦେଇଥିଲେ ବର ।
ତାର ଉପଦ୍ରବ ଦେବେ ସହି ନ ପାରିଲେ
ବିଷ୍ଣୁର ଛାମୁରେ ଯାଇ ଗୁହାରି କରିଲେ ।
ମର୍ତ୍ତ୍ୟପୁରେ ନାରାୟଣ ଶ୍ରୀରାମ ରୂପରେ
ଜନମ ହୋଇଲେ ଯାଇ ଦଶରଥ ଘରେ ।
ଭାଇ ଭରତକୁ ଘେନ ରାଜ୍ୟ ଛାଡ଼ିଗଲେ
ଦଣ୍ଡକାରଣ୍ୟେ କୁଡ଼ିଆ କରିଣ ରହିଲେ ।
ଶ୍ରୀରାମ ଭାରିଯା ସୀତା ଅଟେ ମହାସତୀ
ବାରତା ପାଇ ରାବଣ ନେଲା ହରି ତ ।
ଋକ୍ଷ କପିବଳ ଲୁଣ୍ଠି କରି ରାମ ଗଲେ
ବୃକ୍ଷ ପଥର ବୁହାଇ ସାଗର ପୋତିଲେ ।
ରାବଣର ଭାଇ ନାମ ଅଟେ ବିଭୀଷଣ
ସେ ଆସି ରାମର ପାଶେ ପଶିଲା ଶରଣ ।
ତାହାକୁ ଶ୍ରୀରାମ ଲଙ୍କାରାଜ୍ୟେ ରାଜା କଲେ
ରାବଣର ବଂଶଯାକ ମାରି ପକାଇଲେ ।
ବାଆସ୍ତରି କୁମର ଯେ ତେଇଶତ ନାତି
ଏକେ ଏକେ ତିନିପୁର ସାଧି ସେ ପାରନ୍ତି ।
କୁମ୍ଭକର୍ଣ୍ଣ ନାମେ ତାର ଥିଲା ଏକ ଭାଇ
ଚଉଦଭୁବନେ ବୀର ତା ସମାନେ ନାହିଁ ।
ଇନ୍ଦ୍ରଜିତ ବୋଲି ତାର ଏକଇ କୁମର
ମେଘରେ ଲୁଚି କରଇ ସେ ବୀର ସମର ।
ସେ ବୀର ଯୋଦ୍ଧା ଲକ୍ଷ୍ମଣ ହାତେ ପ୍ରାଣଦେଲା
ରାବଣର ଦଶମୁଣ୍ଡ ଶ୍ରୀରାମ ଛେଦିଲା ।

ବିଭୀଷଣଙ୍କୁ ଲଙ୍କାରେ କରିଣ ନୃପତି
ହୋଇଲେ ତୁ ଯୁଗେ ଯୁଗେ ଥିବୁ ଏହିମତି ।
ସେ ରାଜାକୁ ଜିତି କେହି ନ ପାରିବୁ ଭଲେ
ଶତ୍ରୁର ଉଚିତ ସେହି ଅଛି କାଳେ କାଳେ ।
ଆଉରି ରାଜାଙ୍କ ନାମ କହୁଅଛି ଶୁଣ
କିଷ୍କିନ୍ଧ୍ୟା ରାଜ୍ୟରେ ଥିଲା ବାଳି ମହାରଣ ।
ନାହିଁ ନୋହିବ ତା ତୁଲ୍ୟ ବଳବନ୍ତ କେହି
ସୁଗ୍ରୀବ ନାମେ ବାନର ତାର ସାନଭାଇ ।
ବାଳି ରାଜ୍ୟରୁ ବାହାର କରିଦେଲା ତାକୁ
ପଳାଇ ଗଲା ସେ ଋଷ୍ୟମୂକ ପର୍ବତକୁ ।
ଶ୍ରୀରାମ ସଙ୍ଗେ ମଇତ୍ର ହୋଇଲା ସେ ଯାଇ
ମିତ୍ରହିତେ ବାଳି ବଧ କଲେ ରଘୁସାଇ ।
ତାହାର ନନ୍ଦନ ନାମ ରାଜା ସସେବନ୍ତ
ଶ୍ରୀରାମର ବଳେ ସେହି ମହାବଳବନ୍ତ ।
ତାହା ତୁଲେ ଯୁଦ୍ଧ କଲେ ନାହିଁ ତୋର ଜୟ
ଜୟଦ୍ରଥ ନାମେ ଅଛି ସିନ୍ଧୁଦେଶ ରାୟ ।
ଦମଘୋଷ ନାମେ ଏକ ନୃପତି ଅଛଇ
ସପତ ସମୁଦ୍ର ରାଜା ବରୁଣ ଅଟଇ ।
ପାତାଳପୁରେ ବାସୁକି ନାମେ ନାଗରାଜା
ସ୍ୱର୍ଗପୁରେ ଦେବରାଜା ଅଟଇ ବିଡୌଜା ।
କାର୍ତ୍ତିକ ଈଶ୍ୱର ତୋତେ ମନା କରିଛନ୍ତି
ଯମରାଜା ସହିତରେ ନୋହିବୁ ଅପ୍ରୀତି ।
ମଥୁରା କଟକେ ଅଛି ଉଗ୍ରସେନ ରାୟେ
ହରି ବଳରାମଙ୍କର ଅଜା ସେହୁ ହୁଏ ।
ଆଉରି ରାଜାଏ ଅଛି ନାମ ମୃଗଃସେନ
ବେଦବ୍ୟାସ ଋଷିଙ୍କର ଅଟନ୍ତି ନନ୍ଦନ ।
ବ୍ୟାସ ଚରିତ ଶୁଣିଣ ଦୈତ୍ୟ କୋପ କଲା
ମନ୍ତ୍ରୀକୁ ସ୍ତୁହିଁଣ ସେହୁ ବଚନ ବୋଇଲା ।
ଅନ୍ୟ ରାଜାଙ୍କ ଚରିତ କହ ତୁହି ପଛେ
ମୃଗସେନ ରାଜା କଥା କହ ତୁ ପ୍ରତ୍ୟକ୍ଷେ ।
ଥାଉ ସୈନ୍ୟ ନାହିଁ ଏକା କରିବି ସମର
ଧନୁ ଏକ ନାରଚେକ ଥାଇ ତାର କର ।
ମନ୍ତ୍ରୀର କହନ୍ତେ ଘ୍ରୋଡ଼ା ହସିଣ ଉଠିଲା
ମୃଗସେନ ବୋଲି କର୍ଣ୍ଣା ନାମ ସେ ବହିଲା ।
ହସାନ୍ତୁ ମନ୍ତ୍ରୀ କହଇ ଶୁଣ ହୋ ରାଜନ
ମୃତ୍ୟୁଶୀଳ ହରିଲା ସେ ବ୍ୟାସ ତପୋଧନ ।

ସଇନ୍ଧୁ ପୁତ୍ର ଜନମ ତା ଗର୍ଭୁଁ ହୋଇଲା
ତେଣୁ ସେହୁ ମୃଗସେନ ନାମ ବୋଲାଇଲା ।
ବ୍ୟାସ ପ୍ରସାଦେ ତାହାକୁ ସେହୁ ନ ଡରଇ
ନିର୍ଭୟ ହୋଇଣ ଗିରିଶିଖେ ରହଥାଇ ।
ଘ୍ରୋଡ଼ା ବୋଇଲା ତା ସଙ୍ଗେ ଯୁଦ୍ଧ କି କରିବା
ବସ୍ତ୍ରସେନ ପର୍ବତକୁ ଆମ୍ଭେ କି ଯିବା ।
ମନ୍ତ୍ରୀ ବୋଇଲା ନୁହଇ ଏମନ୍ତ ବିସ୍ତର
ଋଷି ଅଂଶେ ଜାତ ହୋଇଅଛି ନୃପବର ।
ଘ୍ରୋଡ଼ାସୁର ମନ୍ତ୍ରୀ ସେନେ ବିଚାର କରନ୍ତି
ଏମନ୍ତବେଳେ ମିଳିଲେ ନାରଦ ଯେ ଯତି ।
ନାରଦଙ୍କୁ ଦେଖି ଘ୍ରୋଡ଼ା ଅସୁର ଉଠିଲା
ଗଉରବ କରି ତାଙ୍କୁ ପାଶେ ବସାଇଲା ।
ଦଣ୍ଡବତେ କଲି ମୁନି କଲ୍ୟାଣେ ତୁମ୍ଭର
ସବୁ ରାଜାଏ ଖଟିଲେ ଚରଣେ ମୋହର ।
ଏବେ ମୃଗସେନ ରାଜା ସଙ୍ଗେ ଯୁଝିବଇଁ
ନାରଦ ମୁନି ବୋଇଲେ ହୋଇଲୁ କି ବାଇ
ବୃଥା କର୍ପା ଅପମାନ ପା.ଇବୁ ତୁ ରାୟ
ସେହି ଯେ ବ୍ୟାସ ଋଷିଙ୍କ ଅଟଇ ତନୟ ।
ତାହାର ସଙ୍ଗରେ ତୋର ପ୍ରୀତି କରାଇବା
ଆମ୍ଭର ବଚନ ଘୋଟି ନ ଭାଙ୍ଗ ରେ ବାବା
ପ୍ରୀତପଣ ସିନା କାଳେ କାଳେ ରହିଥିବ
ତିନିଯୁଗ ପ୍ରଳୟନ୍ତେ ଏ କଥା ରହିବ ।
ନାରଦ ବଚନ ଶୁଣି ଅସୁର ହସିଲା
ହେଉ ବୋଲିଣ ଆଦର ସନମତ କଲା ।
ଘ୍ରୋଡ଼ାସୁର ସନମତେ ନାରଦ ଉଠିଲେ
ମୃଗସେନ ରାଜ୍ୟରେ ସେ ପ୍ରବେଶ ହୋଇଲେ
ନାରଦଙ୍କୁ ଦେଖିକରି ମୃଗସେନ ରାୟେ
ମୁନିଙ୍କ ଚରଣ ତଳେ କରଇ ବନ୍ଦନେ ।
କି କାର୍ଯ୍ୟେ ହେ ମୁନି ତବ ଏବେ ଆଗମନ
ସଙ୍ଘୋଳିବାକୁ କି ମୋତେ ଆସ ତପୋଧନ
ନାରଦ ବୋଇଲେ ଆମ୍ଭେ ଆସି ଯହିଁପାଇଁ
ତହିଁର ଚରିତ ତୁହି ଶୁଣ ମନଦେଇ ।
ଘ୍ରୋଡ଼ାସୁର ନାମେ ଅଛି ଦନୁଜ ଗୋଟିଏ
ଦିଗବିଜେ କରି ଜିଣିଲା ସେ ସବୁ ରାୟେ ।
ବଡ଼ାଇ ଦର୍ପିଷ୍ଟ ସେହି ଅଟଇ ଅସୁର
ଦୁଷ୍ଟପଣେ ଜିଣିଲା ସେ ସବୁ ନୃପବର ।

ଏବେ ସେ ଅସୁର ତୋର ଦ୍ୱାରେ ଆସୁଅଛି
ଏହା କହିବାକୁ ଆମ୍ଭେ ଆସି ବ୍ୟାସବଂଶ ।
ଶୁଣି ମୃଗସେନ ରାଜା କୋପଭର ହେଲା
କାହିଁ ସେହି ଅଛି ବୋଲି ମୁନିଙ୍କୁ ପୁଚ୍ଛିଲା ।
ମୁନି ବୋଇଲେ ସେ ଅଛି ବହୁତ ଦୂରରେ
ତୋତେ କହିବାକୁ ଆମ୍ଭେ ଆସିଲୁ ସତ୍ୱରେ ।
ଏବେ ସେହି ଆସି ତୋର ନିକଟେ ହେଲାଣି
କସ ବସ୍ତ୍ର କରିବୁ ତୁହି ନୃପମଣି ।
ମୃଗସେନ ବୋଲେ ସୈନ୍ୟବଳ ତା ନାଶିବ
ଏକା ବାଣକେ ତାହାର ହୃଦ ବିଦାରିବ ।
ସମସ୍ତ ସୈନ୍ୟ କରିବ ତାର ଧୂଳିପାଂଶୁ
କେତେବଳ ତାହାର ଯେ ଅଛି ସେହି ଆଶୁ ।
ମୃଗସେନ କୋପ ହେବା ଦେଖି ମୁନିବର
କୋମଳ କରି କହନ୍ତି ବଚନ ମଧୁର ।
ବାବୁ ସମସ୍ତ ରାଜାଏ ସମାଧାନ ହେଲେ
ଅନେକ ପ୍ରକାରେ ତାକୁ ବିନୟେ କହିଲେ ।
ତୁହି ଏବେ କଥା ଏକ କର ନୃପବର
ଆମ୍ଭର ବଚନ ରାଜା ତୁହି ପ୍ରତିପାଳ ।
ଦୁଷ୍ଟ ସଙ୍ଗରେ କରିବା କର୍ମ ବହୁକଳ
ବଚନେ କର୍ତ୍ତବ୍ୟରେ ସେ ଯିବେ ସିନା ବଳ
ତାହାର ସହିତେ ତୋତେ ପ୍ରୀତି କରାଇବା
ଦୁଇଜଣଙ୍କୁ ମଇତ୍ର କରାଇଣ ଦେବା ।
ଏମା କାରଣରେ ଏଥେ ନୋହୁ ଦ୍ୱନ୍ଦ୍ୱଗୋଳ
ଏଥକୁ ଦ୍ୱନ୍ଦ୍ୱ କପାଇଁ କରୁ ମହୀପାଳ ।
ମୁନିଙ୍କ ବଚନେ ମୃଗସେନ ଯେ ବୋଇଲା
ତାହାଙ୍କ ବଚନ ପ୍ରତିପାଳନ ସେ କଲା ।
ଏମନ୍ତ ସେ ପ୍ରୋଢ଼ାସୁର ଥାଟକୁ ଚଳାଇ
ପର୍ବତର ତଳଦେଶେ ମିଳିଲାକ ଯାଇ ।
ଟମକ ନିଶାଣମାନ ବାଜେ ଗଚ୍ଛିଟାଣ
ଶୁଣି ମହାକୋପ କଲା ରାଜା ମୃଗସେନ ।
ନାରଦ ବୋଇଲେ କୋପ ନ କର ତୁ ରାୟ
ଶାନ୍ତ ହୁଅ ଆମ୍ଭ ବାକ୍ୟେ ବ୍ୟାସର ତନୟ ।
ତୁମ୍ଭ ଦୁହିଙ୍କୁ ମଇତ୍ର କରାଇବା ଆମ୍ଭେ
ଏ କଳିଦ୍ୱନ୍ଦ୍ୱ ନ କର ଆମ୍ଭ ବୋଲେ ତୁମ୍ଭେ
ଏମନ୍ତ କହି ନାରଦ ଚଳନ୍ତି ଗଲେ ବେଗେ
ସକଳ କଥା କହିଲେ ପ୍ରୋଢ଼ାସୁର ଆଗେ ।

ଏମନ୍ତ କହି ନାରଦ ଚଳନ୍ତି ବେଗେ ଗଲେ
ପ୍ରୋଢ଼ାସୁର ନିକଟରେ ଯାଇଣ ମିଳିଲେ ।
ମୁନିଙ୍କୁ ଦେଖିଣ ଦୈତ୍ୟ ନମସ୍କାର କଲା
କସ ତସ୍କର ହୋ ମୁନି କରିଲ ବୋଇଲା ।
ନାରଦ କହିଲେ ତାହା କହିବା ତୋ ଆଗେ
ସର୍ବଶୁଭ କଥାମାନ ଶୁଣ ତୁ ସୁଆଗେ ।
ଦ୍ୱନ୍ଦ୍ୱ ବିବାଦ ସେ ନ କରିବ ତୋର ସଙ୍ଗେ
ପ୍ରୀତି କଥାମାନ ସେହି କହିବା ମୋ ଆଗେ ।
ବହୁତ ପ୍ରଶଂସା ସେହି ନାରଦଙ୍କୁ କଲା
ବିନୟ ହୋଇ ଚରଣେ ନମସ୍କାର କଲା ।
ମୁନି ବୋଇଲେ ହେ ବେନି ମଇତ୍ର ଯେ ହୁଅ
ଯୁଗେ ଯୁଗେ କଥା ପୁଣି ଚଳାଇଣ ଥାଅ ।
ଏତେ କହି ମୁନିବର ତକ୍ଷଣେ ଉଠିଲେ
ମୃଗସେନ ରାଜାପାଶେ ଯାଇଣ ମିଳିଲେ ।
ଦୁଇ ରାଜାଙ୍କୁ ଯେ ପ୍ରୀତି କରାଇବା ହେତେ
କଳିଦ୍ୱନ୍ଦ୍ୱ ନୋହୁ ଦୈତ୍ୟ ଯାଉ ଅପ୍ରମାଦେ ।
ମୁନିଙ୍କ ବଚନେ ରାଜା ସନମତ କଲା
ହେଉ ବୋଲିଣ ସେ ପୁଣି ମୁନିଙ୍କୁ ବୋଇଲା ।
ଅସୁରଙ୍କୁ ସଙ୍ଗେ ଘେନି ଗଲେ ମହାମୁନି
ସେ ଦୁଇରାଜାଙ୍କୁ ଭେଟ କରାଇଲେ ପୁଣି ।
ସୁକୃତ କରି ସେ ଦୁହେଁ ମଇତ୍ର ହୋଇଲେ
ସବଧିରେ ପ୍ରୋଢ଼ାସୁର ଚଳନ୍ତି ବାହୁଡ଼ିଲେ ।
କାମେଶ୍ୱର ବନେ ଯାଇଁ ମିଳିଲା ଅସୁର
ସେ ଦେଶର ରାଜା ନାମ ଅଟେ କାମେଶ୍ୱର
ବାରତା ପାଇଣ ସେହି ମନ୍ତ୍ରୀକୁ ପଚାରେ
ପ୍ରୋଢ଼ା ଅସୁର ପଶିଲା ଆମ୍ଭର ରାଜ୍ୟରେ ।
ଯୁଦ୍ଧ କରିବା କି ଆମ୍ଭେ ପ୍ରୀତି ଆଚରିବା
ତୁହେ ମନ୍ତ୍ରୀବର ମୋତେ ବିସ୍ତର କହିବା ।
ମନ୍ତ୍ରୀ ବୋଇଲା ରାଜନ ଶୁଣ ସାବଧାନେ
କରିଁକ ବରେ ଗନ୍ଧର୍ବ ଅଟେ ତ୍ରିଭୁବନେ ।
ଯୁଦ୍ଧ କଲେ ତାକୁ ଆମ୍ଭେ ନ ପାରିବା ଜିଣି
କପାଁ ଅକାରଣେ ଲୋକ ମରାଇବା ପୁଣି ।
କଳ ପରଜାମାନ ଯେ ହୋଇବେକ ଧ୍ୱଂସି
ଯୁଦ୍ଧ ଏବେ ନ କରିବା ଶୁଣ ନୃପଶିଖି ।
ସମାଧାନ କରୁ ଦେବା ବାହୁଡ଼ି ସେ ଯାଉ
ମୋହର ବସ୍ତୁରକୁ ଯେ ଯୋଗାଇଲା ଏହି ।

ରାମେଶ୍ୱର ରାଜା ଯହୁଁ ହୋଇଲା ଏମନ
ତୋହର ବଚନ ମନ୍ତ୍ରୀ ନ କରେ ମୁଁ ଆନ ।
ଏଣୁ ସମସ୍ତେ ଝମକ ଝଣାଣ ଶୁଭିଲା
ଜଗତଏ ଆସି ପୁଣ ବାଉତା କହିଲା ।
ହ୍ରୋଡ଼ାସୁର ବାହି ଆସେ କୁନ୍ତଳ ରାଜ୍ୟକୁ
ଉପାସ୍ତୁ ଭଉ ନୋହନ୍ତେ ଆସଇ ମଣ୍ଡଳୁ ।
ଜଗର ମୁଖରୁ ଶୁଣି ମନ୍ତ୍ରୀକି ସେ କହି
ସମାଧାନ ଯୋଗଯିବା ବେଗେ ତାର ତହିଁ ।
ଆଜ୍ଞା ପରମାଣେ ମନ୍ତ୍ରୀ ତତକ୍ଷଣେ ଗଲା
ଶତେକ ରଥରେ ପାଣିଦ୍ରବ୍ୟ ପୂରାଇଲା ।
ଅଳପ ସଇନ୍ୟ ସଜକରି ମହାବେଗେ
ଆପେ ଉଦ୍ୟବେଶ ହୋଇ ରଥରେ ବଇଗେ
ମନ୍ତ୍ରୀଙ୍କ ସଙ୍ଗରେ ସେନା ବେଗେ ଚଳିଗଲା
ହ୍ରୋଡ଼ା ଅସୁର ସମ୍ମୁଖରେ ଯାଇଣ ମିଳିଲା ।
ଶିରେ କରଯୋଡ଼ି ରାଜା ବିନୟୀ ହୋଇଲା
ଶତେ ରଥ ପାଣିଦ୍ରବ୍ୟ ସମ୍ମୁଖରେ ଥୋଇଲା ।
ଅନେକ ପ୍ରକାରେ ପୁଣ ବିନତି ସେ କଲା
ମୋର ଦୋଷ କ୍ଷମା କର ବୋଲି ସେ କହିଲା
ରାମେଶ୍ୱର ରାଜାର ଯେ ଭକ୍ତିଭାବ ଦେଖି
ହ୍ରୋଡ଼ାସୁର ରାଜା ହେଲା ମନେ ମହାସୁଖୀ ।
ଏମନ୍ତେ ସେ ବାହୁଡ଼ିଲା ସମାଧାନ ପାଇ
ଥାଟ ସୈନ୍ୟ ଯେତେ ତାର ବାହୁଡ଼ିଣ ଯାଇ
ଏମନ୍ତେ ଥୋକାଏ ଦୂର ଚଳିଯାନ୍ତେ ପୁଣ
ନଗରେକ ଦେଖିଲା ସେ ଅତି ବିଚକ୍ଷଣ ।
ଅମରାବତୀକି ଜିଣି ପଟାନ୍ତର ସେହି
ସେ ନଗର ଗୋଟି ଜାଣ ସୁଜାଣ ଅଟଇ ।
ତହିଁର ରାଜାର ନାମ ଅଟେ ଶୂରବର
ନଗରୀଟି ତାର ଅତି ସୁସଞ୍ଚ ସୁନ୍ଦର ।
ଅଟନ୍ତି ସେ ପ୍ରଜାମାନେ ତହିଁ ବଡ଼ସୁଖୀ
ଧନବନ୍ତେ କୁବେରର ସଙ୍ଗେ ତାକୁ ଲେଖି
ସେହି ଶୂରବର ରାଜା ଅଟେ ଭାଗ୍ୟବନ୍ତ
ତାହାର ସଙ୍ଗରେ ସେହି ନ କରେ ଅନର୍ଥ ।
ଆପଣାର ସୁଖେ ସେହୁ ରାଜ୍ୟ କରୁଥାଇ
ଶତ୍ରୁ ବୋଲି ସେ ରାଜ୍ୟରେ ରାଜା ନ ଜାଣଇ
ଦାନ ପଣରେ ସେ ରାଜା କର୍ଣ୍ଣର ସମାନ
ନିରନ୍ତରେ ବିଷ୍ଣୁ ପ୍ରାଦେ କରୁଥାଇ ଧ୍ୟାନ ।

ତାହାର ରାଜ୍ୟରେ ହ୍ରୋଡ଼ା ଅସୁର ପଶିଲା
ବାଉତା ପାଇ ଉପର ବେଗେ ଜଣାଇଲା ।
ସାବଧାନ ହୋଇ ଏବେ ଶୁଣିବା ଗୋସାଇଁ
ହ୍ରୋଡ଼ାସୁର ବଳି ଯେଣ ତୋ ରାଜ୍ୟେ ପଶଇ
ଶୁଣିଣ ସେ ଶୂର ଅତି ଭାବିତ ହୋଇଲା
ଗୋବିନ୍ଦ ଚରଣେ ରାଜା ଚିତ୍ତ ନିବେଶିଲା ।
ଜଗତର ନାଥ ତୁମ୍ଭେ କର ମୋତେ ତ୍ରାହି
ତୋହର ଚରଣ ବିନୁ ଅନ୍ୟଗତି ନାହିଁ ।
ଭକତବତ୍ସଳ ହରି କରୁଣାସାଗର
ନାମଘୋଷି ଥାଉ ଅଟେ ସଂସାରରେ ସାର ।
ସେ ପ୍ରଭୁ ସର୍ବଦା ମୋତେ ଦୟା କରିଥାଇ
ଘୋର ବିପଦରୁ ବାରେ ବାରେ ଉଦ୍ଧାରଇ ।
କରୁଣାସାଗର ପ୍ରଭୁ ଶୁଣ ଏକମନେ
ନିଶ୍ଚିନ୍ତ ହୋଇ ବସଇ ମୁହିଁ ସେ ଭୁବନେ ।
ଏବେ ଆସି ମୋତେ ପ୍ରଭୁ ପଡ଼ିଲା ବିପତ୍ତି
ବେଗେକ ଉଦ୍ଧାର ଧର ଆହେ ଶ୍ରୀପତି ।
ଏମନ୍ତେ ଅନେକ ସ୍ତୁତି କଲା ଯହୁଁ ରାଜା
ତାଙ୍କୁ ଅସି ବିଜେକଲେ ବ୍ରହ୍ମାର ତନୁଜା ।
ବୁଦ୍ଧି ଏକ ସ୍ଫୁରଇଲା ଆସି ତାର ମନେ
ସମାଧାନ କରିବ ମୁଁ ଯାଇ ତାକୁ ଧନେ ।
ଏତେକ ଚିନ୍ତିଣ ରାଜା ମନ୍ତ୍ରୀକି ବୁଝିଲା
ବେଗେ ଉପହାର ସଜ କର ହେ ବୋଇଲା ।
ଆଜ୍ଞା ପରମାଣେ ମନ୍ତ୍ରୀବର ଯେ ତକଇ
ପଞ୍ଚଶତ ରଥେ ପାଣିଦ୍ରବ୍ୟକୁ ପୂରାଇ ।
ଆପେ ମନ୍ତ୍ରୀବର ସଜ ହୋଇ ବେଗେ ଗଲା
ରାଜାର ସମ୍ମୁଖେ ଯାଇ ଦରଶନ କଲା ।
ରାଜା ବୋଲେ ଶୁଭ ଅନୁକୂଳେ ଯୋଗଯିବା
ସମାଧାନ ଦେଇ ତାକୁ ପ୍ରୀତ କରିବା ।
ରଥେକ ଚଢ଼ି ଶ୍ରୀରାଜା ବାହାର ହୁଅଇ
ଉଗସ କହିଲା ହ୍ରୋଡ଼ାସୁର ଆଗେ ଯାଇଁ ।
ସମାଧାନ କରିବାକୁ ଆସେ ଶୂରବର
ଶୁଣିଣ ଅତି ଆନନ୍ଦ ହୋଇଲା ଅସୁର ।
ଶୁଣ ଆହେ ମନୁ ରାଜା ଅଗସ୍ତି କହନ୍ତି
ଶୂରବର ରାଜା ଗଲା ହ୍ରୋଡ଼ାସୁର କତି ।
ଶିରେ କରଯୋଡ଼ି କହେ ବିନୟ ବଚନ
ଦୟା କର ମୋହ ରାଜ୍ୟେ ପଡ଼ୁଲା ଚରଣ ।

ପଞ୍ଚାଶତ ରଥ ବ୍ରହ୍ମା ଗ୍ରାମରେ ଥୋଇଲା
ଅନେକ ବନସ୍ତେ ପୁଣି ବଟନ ରଚିଲା ।
ସ୍ୱଭାବ ବନସ୍ତ ପୁଣି ଉଦ୍ୟାନ କେତେ
ତଣ୍ଡ ବାହୁଡ଼ାଇ ତହିଁ ଗଲା ସାରମଣି ।
ଏହିରୂପେ ବହୁ ରାଜ୍ୟ ଭ୍ରମଣ ସେ କଲା
ଲକ୍ଷଣପିଠାରେ ରାଜା ବନ୍ଦ୍ୱ ନ ପାଇଲା ।
ଶୂନ୍ୟଗିର ରାଜ୍ୟରୁ ସେ ଖଣ୍ଡେ ଦୂର ଯାଇ
ପୋଡ଼ା ଅସୁର ସେ ମନେ ମନେ ଭାବଇ
ମଣ୍ଡମଣ୍ଡଳକେ ରାଜା ଅସାଧ ହୋଇଲେ
ପୃଥ୍ୱୀରେ ଚକ୍ରବର୍ତ୍ତୀ ହେଲା ଏବେ ଭଲେ ।
ଏବେ ଆମ୍ଭ ଆପଣାର ରାଜ୍ୟେ ଫେରିଯିବା
ପ୍ରଜାଙ୍କ ପାଳି ସୁଖରେ ନୃପତି ହୋଇବା ।
ଏମନ୍ତେ ବିଚାରି ସେହି ଅସୁର ରାଜନ
ତଣ୍ଡି ସେକ୍ଷଣ ରାଜ୍ୟକୁ କରଇ ଗମନ ।
ଶୂନ୍ୟରୁ ଆସି ଭେଟିଲେ ବ୍ରହ୍ମାଙ୍କର ଶିଷ୍ୟ
ବିଭୂତି ଲେପନ ଅଙ୍ଗେ ପିନ୍ଧି କଷାବାସ ।
ଜଳ ଧୋଇଡ଼ି ମୁଣ୍ଡିକ ଜାଖେ ଯାଉଛନ୍ତି
ହରି ହରି ଶବ୍ଦକରି ଶୂନ୍ୟରେ ଗମନ୍ତି ।
ସେ କଳହପ୍ରିୟ ମୁନି ଯେ ଜୁଟନ୍ତି କଳି
ଦେଖିଣ ଅସୁରବର ଲୁଆଇଁ ମଉଳି ।
ରଥର ଉପରୁ ପୋଡ଼ାସୁର ଓହ୍ଲାଇଲା
ବନସ୍ତ ଭକତି କରି ମୁନିଙ୍କୁ ବନ୍ଦିଲା ।
ବୋଲଇ ଏ ପୃଥ୍ୱୀ ଯାକ ବୁଲି ସାଧିକଲି
କହ୍ନଚର ରାଜ୍ୟ ମୁହିଁ ଭ୍ରମିଣ ଅଇଲି ।
ଏଠାରେ ହସ୍ତ ନ ଆସି କରିଅଛୁ ଆଜ
ଏବେ ଲେଉଟିଣ ମୁହିଁ ଯିବି ନିଜ ରାଜ୍ୟ ।
ପୋଡ଼ା ଅସୁର ମୁଖରୁ ଏସନକ ଶୁଣି
ସେ କଳହପ୍ରିୟ ମୁନି ବଚନ ବଖାଣି ।
କଳି ନ ପାଇ ଭ୍ରମନ୍ତି ମୁନି ଦେଶ ଦେଶ
ଏବେ ଯେ ମିଳିଲେ ଆସି ପୋଡ଼ାସୁର ପାଶ
ହସିଣ ବୋଇଲେ ମୁନି ଶୁଣ ମହାରାଜେ
ଏବେ ତୋତେ କହିବି କ ଗୁପତ କଥାଏ ।
ସବୁନୃପ ଜିଣିଲୁ ଆଉ ଅଛି ଏକ ଜଣ
ତାହାକୁ ଜିଣିଲେ ଯିବା ଆଉ ବଡ଼ପଣ ।
କୁଡକେଶୀ ବୋଲି ଏକ ରାଜା ଯେ ଅଛଇ
ତାହାର ରାଜ୍ୟକୁ କେହି ପଶି ନ ପାରଇ ।

ତା ରାଜ୍ୟକୁ ବେଢ଼ିଅଛି ପର୍ବତର ମାଳ
ଆଡମ୍ବର ଲତାମାନେ ହୋଇଛି ଗହଳ ।
ଆବର କଥାଏ ତହିଁ ଶୁଣନ୍ତୁ ଉଆଣ
ଯତ୍ନ ଶୃଙ୍ଗପାଖେ ଖଣା ହୋଇଅଛି ଜାଣ ।
ସାତତାଳ ସେ ଗାଢ଼ର ଅଳକ୍ଷ ତାହିଁ
ସମୁଦ୍ର ଜଳର ଧାର ବହୁଅଛି ତହିଁ ।
କିଷ୍କିନ୍ଦ ହୋଇଣ ରାଜ୍ୟ ଥାଇଥାଇ ବସି
ଶତ୍ରୁ ଜଗତରେ ହେଲେ ନ ପାରନ୍ତି ପଶି ।
ନାନା କୃଷି ଉପୁଜଇ ତାହାର ରାଜ୍ୟର
ତା ଦେଶରେ ଧନଧାନ୍ୟ ଉପୁଜେ ବିସ୍ତାର ।
ଦଶସହସ୍ର ପଦାତି ରଥୀ ଦଶଲକ୍ଷ
ପଞ୍ଚାଶ ସହସ୍ର ହସ୍ତୀ ଅଛନ୍ତି ପ୍ରତ୍ୟକ୍ଷ ।
ଏକଲକ୍ଷ ଅଶ୍ୱ ଜାଣ ଅଛଇ ତାହାର
ପଦାତିକ ଜନ ଜଣେ ଜଣିକ ଗୋଚର ।
ଶୁଣଇ ହେ ପୋଡ଼ାସୁର କହେ ମହାମୁନି
ସେ ରାଜାଙ୍କୁ କେହି କେବେ ନ ପାରିବୁ ଜିଣି
ତାହାର ରାଜ୍ୟକୁ ଯିବାପାଇଁ ବାଟ ନାହିଁ
ଜୟ ପାଇ ହେବାପାଇଁ ଅଳକ୍ଷ ନାହିଁ ।
ମୁନିଙ୍କ ମୁଖରୁ ପୋଡ଼ା ଏସନ୍ତ ଶୁଣିଲା
କୋପଭର ହୋଇକରି ଗର୍ଜିଣ ଉଠିଲା ।
ମନ୍ତ୍ରୀଙ୍କ ସ୍ୱହିଣ ସେହି କହଇ ବଚନ
ବଣ୍ଡ ଯାଇ ଯିବା କୁଡକେଶୀର ଭୁବନ ।
ନାରଦଙ୍କ କଥା ଶୁଣି ନ ସହଇ ଦେଖ
ତାହାର ସଙ୍ଗରେ ଦ୍ୱନ୍ଦ୍ୱ କରିବଇଁ ମୁହିଁ ।
ଅଗସ୍ତିଙ୍କ ପଶ୍ଚରେ ମହାରାଜା ପୃଚ୍ଛି
କୁଡକେଶୀଠାରେ ବୋଧ କଲେ କଥା ମୁନି ।
ଏଥିର ତତ୍ତ୍ୱ ମୋତେ କହିବା ଗୋସାଇଁ
ତେବେ ସେ ମନରୁ ମୋର ଭ୍ରାନ୍ତି ଛୁଟିଯାଇ
ଅଗସ୍ତି କହନ୍ତି ଶୁଣ ଆହେ ନରଈଶ
ଯେବେ ସେ ନାରଦ ମୁନି ତା ପୁରେ ପ୍ରବେଶ
ନାରଦଙ୍କୁ ଦେଖି କୁଡକେଶୀ ନ ଉଠିଲା
ବସିଥିବ ମୁନିଙ୍କୁ ସେ ନମସ୍କାର କଲା ।
ତାହାର ଅମାନ୍ୟ ଦେଖି କୋପେ ତପସ୍ୱୀ
ମନେ ମନେ ଭାଳିଲେ ଏ ରାଜା ଅହଙ୍କାରୀ ।
ଗର୍ବିତ ସ୍ୱା ଗର୍ବ ହର୍ଷେ ଏମନ୍ତ ବିଚାରି
ପୋଡ଼ାସୁର ଆଗେ ଯାଇଁ କହିଲେ ଏସବୁ ।

ଅସୁରକୁ ପ୍ରବର୍ତ୍ତାଇ ଚଳେ ମୁନିବର
ମିଳିଲେ ସେ କୃତକେଶୀ ନୃପତି ପୁରର ।
କୃତକେଶୀ ପଚାରିଲା ମୁନି ଥିବ କାହିଁ
ମୁନିଏ ବୋଇଲେ ସ୍ୱର୍ଗୁଁ ଆସୁଛୁ ପଳାଇ ।
ତହୁଁ ନୃପତି କହଇ ଶୁଣିମା ଗୋସାଇଁ
ଯୋଦ୍ଧାଠାରୁ ବଳବନ୍ତ କେଉଁ ରାଜା ହୋଇ ।
ମୁନି ବୋଇଲେ ତୋଠାରୁ ବଳି ମହାରଥ
ବହୁତ ଅଛନ୍ତି ତୁ କି ଅଟୁ ସାମରଥ ।
ଏମନ୍ତ ଶୁଣିଣ ରାଜା ମନେ କୋପକଲା
କଳହପ୍ରିୟ ମୁନିଙ୍କି ବହୁଗାଳି ଦେଲା ।
କଳିର କମନ୍ତେ ମୁନି ବୁଲି ଦେଶ ଦେଶ
କଳି ପାଇଲେ ହୃଦର ମନରେ ଉଲ୍ଲାସ ।
ଏବେ ଦ୍ୱନ୍ଦ୍ୱ ଯେଉଁଅଛୁ ଆହେ ମୁନିବର
ସେ କଳହେ ବଡ଼ ମୂର୍ତ୍ତି ଅଛଇ ତାହାର ।
ତୁମ୍ଭେ ଏ ମନ୍ଦବୁଦ୍ଧି କେବେହେଁ ନ ଯିବ
କଳିଦ୍ୱନ୍ଦ୍ୱ କଥାକୁ ସେ ତୁମ୍ଭ ମନ ବଢ଼ ।
ଏମନ୍ତ ପ୍ରକାରେ ରାଜା ତାଙ୍କୁ ଗାଳି ଦେଲା
ମୁନିଙ୍କ ହୃଦରେ ମହାକୋପ ଯେ ବଢ଼ିଲା ।
କୋପେ ଥରହର ହୋଇ ଭଙ୍ଗ ମହାମୁନି
କୃତକେଶୀ ପୁରୁ ଗଲେ ତତକ୍ଷଣି ।
ଘୋରାସୁର ପୁରରେ ସେ ପ୍ରବେଶ ହୋଇଲେ
ଏଥିପରି ମୁନି ରାଜାଠ ରେ ବୋଇଲେ ।
ଯେମନ୍ତ ତାହାର ରାଜ୍ୟ କରିବଇଁ ନାଶ
ତେବେ ସେ ଇନ୍ଦ୍ରର ପିତା ମୋର ବଡ଼ଯଶ ।
ମୋହର ଆଗରେ ସର୍ବକଥା ସେ କହିଲା
ମୋତେ ଅପମାନ ଦେଇ ଗାଳି ପୁଣି ଦେଲା ।
ଗର୍ବ କଥାକୁ ତ ମୁହିଁ ସହି ନ ପାରଇ
ଅଭିଶାପ ଦେଲେ ଧର୍ମହାନି ଯେ ହୁଅଇ ।
ପରହାତେ ତାହାକୁ ମୁଁ ଦିଆଇବି ଦଣ୍ଡ
ଅନେକ ପ୍ରକାରେ ତାକୁ କରି ଲଣ୍ଡଭଣ୍ଡ ।
ଘୋରା ଅସୁରକୁ ଯାଇଁ କହନ୍ତେ ବଚନ
କୃତକେଶୀକୁ ଜିଣିଲେ ହେବୁ ବଡ଼ଜଣ ।
ପୃଥିବୀ ବୁଲିଲି ସମ ନୋହିଲେ କେ ଜଣେ
ଆବର କଥା ପୁଣି ସେ କହ ମହାମୁନେ ।
କୃତକେଶୀ ସମାଧାନ ଦେଇଅଛି ଥରେ
ଏବେ ସେହି କେମନ୍ତେ ସେ ହେଲା ବଳସ୍ଥାରେ

ମୁନି ବୋଇଲେ ସେ ସର୍ବ ରାଜାଙ୍କର ବୋଲେ
ସମାଧାନ ଦେଇ ପ୍ରୀତି କଲା ତୋର ବୁଲେ ।
ତାହାର ମହିମା ତୁମ୍ଭ ଶୁଣି ନାହଁ ରସେ
ପୃଥ୍ୱୀର ରାଜାଙ୍କ କରେ ନ ହିଁ ଗଣନାଏ ।
ତୁ ବା କେଉଁ ବଡ ତୋତେ ଗଣନା କରିବ
ଅବଶ୍ୟ ତୋର କୁଳେ ସେ ବାଦ ଆରମ୍ଭିବ
ତାହାର ରାଜ୍ୟକୁ ତୁମ୍ଭ ନ ପାରିବୁ ଯାଇଁ
ଥଳକୂଳ ନାହିଁ ଯିବୁ କେଉଁମତେ ତୁହି ।
ଘୋରାସୁର ବୋଲେ ଯେଉଁ ମତେ ପାରିବଇଁ
ଅବଶ୍ୟ ତାହାର କୁଳେ ଯୁଦ୍ଧ କରିବଇଁ ।
ମାୟାକୂଟ କପଟ ମୁଁ ଜାଣଇଁ ଅପାର
ପୃଥ୍ୱୀ ବୁଲି ନ ପାଇଲି ଦ୍ୱନ୍ଦ୍ୱ କେଉଁଠାର ।
ଏବେ ଆସି ଏଥେ ମୁନି ଦ୍ୱନ୍ଦ୍ୱ ଯେ ମିଳିଲା
ବଇବ ପୁଁରୁଷ ଆଣି ଭଲ ପୁଣ ଦେଲା ।
ନାରଦଙ୍କୁ ପରଶଂସା କଲା ସେ ବହୁତ
ଯେଠାରେ ତୁମ୍ଭର ବସ୍ତି ଅଛୁ ତପୋବନ ।
ଏଥି ଅନୁକୂଳେ ବେଗ କରିବା ଗମନ
ତୁମ୍ଭର ଯେତେକଟି ବସ୍ତି ଅଛି ତପୋଧନ ।
ମୁନି ବୋଇଲେ ହେ ତୁମ୍ଭ ବେଗେ ହୁଅ ସଜ
ଯାଇଁଣ ମିଳିବା ଆମ୍ଭେ କୃତକେଶୀ ରାଜ୍ୟ ।
ଟମକ ନିଶାଣ ଢୋଲ ବାଜଣ ଉଠିଲା
ମର୍ଦ୍ଦଳ କଂସାଳ ତହିଁ ଅନେକ ବାଜିଲା ।
ମୁଖବାଦ ଶବଦ ଯେ ବଢ଼ିଲି ଉହଳ
ମାର ମାର ଶବଦରେ ପୃଥିବୀ ଗହଳ ।
ପୃଥ୍ୱୀଦେବୀ ଟଳମଳ ହୋଇଣ କମ୍ପିଲା
ବାସୁକୀ ମହାନାଗ ଯେ ଶିର ନ ଟେକିଲା ।
ସ୍ୱର୍ଗେ ଦେବତାଏ ଶୁଣି ବଡ଼ଭୟ କଲେ
ଅସୁର ସ୍ୱର୍ଗେ ବାହୁଡ଼ି ବୋଲିଣ ଭଳିଲେ ।
କଟକ ରାଜମାନଙ୍କୁ ଶୁଭିଲା ଶବଦ
ଚକଟାଳ ହୋଇ ଯେଣୁ ବାଜୁଥିଲା ବାଦ୍ୟ ।
ବନ ଗହନରେ ପୁଣି ନାନା ଜୀବ ଥିଲେ
ଅଗମ୍ୟ ବନସ୍ତେ ଯାଇଁ ସମସ୍ତେ ଲୁଚିଲେ ।
ନାରଦ ମୁନି କଡ଼ାଇଛନ୍ତି ଆଗେ ବାଟ
ଏକେତ ଅସୁର ପୁଣ ଅଟଇ ପରସ୍ତ ।
ପୃଥିବୀ କେମାଇ ଭସ୍ମ କରି ନ ସହଇ
ସତେ କି ବାସୁକୀ ମସ୍ତ ଭାରକୁ ଛାଡ଼ଇ ।

ପାଦ ଘାତରେ ବାସୁକ କମ୍ପେ ଥରହର
ମୁଖ ବାଟେ ରୁଧିର ତା ବୁହଇ ବାହାର ।
ଉଦଣ୍ଡ ଯେ ପାଟଛନ୍ଦ ଉଡ଼ଇ ଚାମର
ସାରଦେଶ ହୋଇ ଦେତ୍ୟ ବସିଛୁ ଉଥର ।
କର୍ଣ୍ଣରେ କୁଣ୍ଡଳ ଘୂର୍ଣ୍ଣି ଲମ୍ବଟେ ମୁକୁଟ
ସୁବର୍ଣ୍ଣର ମାଳା ଏକ ଲମ୍ବେ କଣ୍ଠତଟ ।
ଶୁକଳ ପାଟେଳ ସେହୁ ମଥାରେ ବାନ୍ଧଣ
ଶୁକଳ ଛତ୍ରପ ଏକ ଅଛଇ ଚିକ୍କଣ ।
କସ୍ତୁରୀ ତିଳକ ସେହୁ ଲଲାଟେଣ ସେନ
ନିଃଶ୍ୱାସ ବାଉ ସେ ଅନୁକୂଳ ଜଳ ଘୂଣି ।
ମୁନଙ୍କୁ ଦେଖିଁ ବୋଇଲ ସେ ଘ୍ରୋଡ଼ାଅସୁର
କୃତକେଶୀ ସଙ୍ଗେ ଆସ୍ଥ ସଙ୍ଗେ ବଡ଼େ କର
ଘ୍ରୋଡ଼ାସୁର ସଜ ହେବା ଦେଖିଣ ନାରଦ
ଆନନ୍ଦ ହୋଇଣ ମୁନି କଲେ ବୀଣା ନାଦ ।
ବୀଣା ବଜାଇଣ ମୁନି ଗଲେ ଶୂନ୍ୟମାର୍ଗେ
ଶୂନ୍ୟପଥେ ଯାନ୍ତି ପାଦ ନାହିଁ ଭୂମିଭାଗେ ।
ପଛରେ ଘ୍ରୋଡ଼ାଅସୁର ଆଟ ସୈନ୍ୟ ସେନ
ଆପଣେ ଗମନ କରେ ଦୈତ୍ୟକୁଳମଣି ।
ପାଦଘାତେ ଧୂଳିମାନ ଉଡ଼ଇ ଗଗନେ
ଦେବତାମାନେ ଦେଖନ୍ତି ତାହା ରହି ଶୂନ୍ୟେ
ସୈନ୍ୟ ଚଳନ୍ତେଣ ଗିରି ଧୂଳି ଉଡୁଟଇ
ଯମୁନା ନଦୀର କୂଳେ ଯାଆନ୍ତି ଚଳାଇ ।
ତନ୍ଦନେ ଯାଇଁ କୃତକେଶୀ ସଜେ୍ୟ ହେଲେ
କୃତକେଶୀକୁ ଡାଗର ଯାଇ ଜଣାଇଲେ ।
ହେ ଦେବ ଶୁଣିମା ହେଉ ସାବଧାନ ହୋଇ
ବଣ୍ଡସେନ ଘ୍ରୋଡ଼ାସୁର ରାଜ୍ୟରେ ପଶଇ ।
ନାରଦମୁନି କଡ଼ାଉଛନ୍ତି ଆଗେ ବାଟ
ବନ ପର୍ବତ ପୂରିଛି ଅସୁରର ଥାଟ ।
ପୃଥିବୀ ଭ୍ରମିଲା ତାକୁ ନୋହିଲେ କେ ସମ
ବହୁତ ଜାଣଇ କୂଟ କପଟ ସଂଗ୍ରାମ ।
ନାରଦଙ୍କ କଥାରେ ସେ ଆସୁଅଛି ପେଲି
ତୋହର ରାଜ୍ୟକୁ ନାଶ କରିବ ସେ କାଲି ।
ବିସ୍ମରଣ କାର୍ଯ୍ୟ କର ଆହେ ନୃପବର
ପୃଥ୍ୱୀଦେବୀ ଭୟେ କମ୍ପେ ହୋଇ ଥରହର ।
ଉଦଣ୍ଡ ପାଟଛନ୍ଦ ଯେ ଉଡ଼େ ଫରଫର
ସଙ୍ଗତରେ ଘୋଡ଼ା ହାତୀ ଅଛନ୍ତି ଅପାର ।

ଡାଗର ମୁଖୁଁ ଏମନ୍ତ ଶୁଣି ନୃପମଣି
ପ୍ରତିଜ୍ଞାମାନ କରଇ ଡୋଟେପ ଶିରଟ୍ ଣ୍ଣି ।
ଆଜ ମୁହିଁ ଅସୁରର ଛେଦିବଇଁ ଶିର
ତ ଜାଣେ କ ସେ ଅମୃର ପ୍ରତିଜ୍ଞା ମୋହର ।
ଦେବ ଦାନବ ମାନବ ତାହାକୁ ନ ଡରେ
କଣ୍ଟସ୍ଥ ସେହି ଅସୁର ଯିବ ଯମପୁରେ ।
ନାରଦ ମୁନ କଥାରେ ଆସୁଅଛି ବାହି
କଣ୍ଟସ୍ଥ ମୋର ହସ୍ତରେ ପ୍ରାଣ ଦେବ ସେହି ।
ଘ୍ରୋଡ଼ାସୁର ଜୀବନ ମୁଁ ହରିବଇଁ ଆଜ
ସେ ନାରଦ ମୁନି ଆଜ ପାଇ ଯିବ ଲାଜ ।
ଘ୍ରୋଡ଼ାସୁରର ମହିମା ସେହି ନ ଜାଣିଛି
ବୃଦ୍ଧ ଅସୁର ପରାଏ ତାହାକୁ ମଣିଛି ।
ତେଣୁ କୃତକେଶୀ କରେ ପ୍ରତିଜ୍ଞା ଅପାର
ଏ ମହାଭାରତ ରସ ଅମୃତ ଭଣ୍ଡାର ।
ବନ୍ଦଇ ଶ୍ରୀ ନାରାୟଣ କମଳାର ପତି
ଭକ୍ତଜନମାନଙ୍କର ହୃଦୟେ ସମ୍ପତ୍ତି ।
ଏ ଜଗତ ଜନଙ୍କର ନିସ୍ତାରଣ ଅର୍ଥେ
ବେହବନ୍ତ ହୁଅନ୍ତି ସେ ଆପେ ଆସି ମର୍ତ୍ତ୍ୟେ ।
ଶଙ୍ଖ ଚକ୍ର ଗଦା ପଦ୍ମ ସାରଙ୍ଗକୁ ବହି
ଗରୁଡ଼ ପକ୍ଷୀ ଯାହାର ବାହନ ଅଟଇ ।
ଅସୁର ନିସୂଦନ ଯା ନାମ ବଳିତ୍ୟାଗ
ଲକ୍ଷ୍ମୀ ସରସ୍ୱତୀ ଯାର ଚରଣଡଙ୍କରୀ ।
ଶାରଳା ଦାସ କବିକୁ ରଖ ଚକ୍ରପାଣି
ଗଉରୀ ନନ୍ଦନ ପାଦେ କରଇ ବିନତୀ ।
ଲବଣି ଧର ହେ ଦେବ ବିଶ୍ୱନାଥ ସ୍ୱାମୀ
ମୂର୍ଖ ଶାରଳା ଦାସକୁ ରଖ ଅନ୍ତର୍ଯ୍ୟାମୀ ।

---

## କୃତକେଶୀ ସହିତ ଘ୍ରୋଡ଼ାସୁରର ଯୁଦ୍ଧ

ଏଥୁଅନ୍ତେ ଯେ ବଳଙ୍କ ଦେଶ ମହାଶୟ
ମୁନଙ୍କ ଚରଣେ ପଡ଼ି କରଇ ବିନୟ ।
ହେ ମୁନି କହିବା ଘ୍ରୋଡ଼ା ଅସୁର ଚରିତ
କୃତକେଶୀ ନରକ୍ଷତ କଲା କେଉଁ କୃତ୍ୟ ।
ତହିଁର ଚରିତ ମୋତେ କହ ତୋଷମନେ
ନାରଦ କଢ଼ାଇ ନେଲେ ଅସୁର ସଜନେ ।
ଘ୍ରୋଡ଼ାସୁର ଯାଇ କ୍ଷଣା ବେଢ଼ିଣ ରହିଲା
ଛତରକୁ ଡରେ ଆଉ ପଶି ନ ପାରିଲା ।

ଉପର ମୁଖରୁ କୁଡକେଶୀ ରାଜା ଶୁଣି
ମନ୍ତ୍ରୀକି ରାଇ ପାଖକୁ ପଚାରଇ ପୁଣି ।
ଥାଟ ବେଗେ ସଜକର ମନ୍ତ୍ରୀ ଯେ ଆମ୍ଭର
ଅସୁର ସଙ୍ଗତେ ମୁହିଁ କରିବି ସମର ।
ମନ୍ତ୍ରୀ ବୋଲେ ମନ୍ଦକୃତ୍ୟ କଲୁ ଭାବିଁ ପାଇଁ
ନାରଦଙ୍କୁ ଅପମାନ ଦେଲୁ ଗାଳିଦେଇ ।
ଆମ୍ଭଠାରୁ ଥରେ ଦୈତ୍ୟ ସମାଧାନ ପାଇ
ଥାଟ ସୈନ୍ୟ ତାର ନେଇଥିଲା ବାହୁଡ଼ାଇ ।
ଏବେ ନାରଦଙ୍କ ବୋଲେ ଆସିଛି ଅସୁର
ଆମ୍ଭର ତୁଲେ ସଂଗ୍ରାମ କରିବ ଅପାର ।
ତାହାକୁ ସଂଗ୍ରାମେ ଆମ୍ଭେ ନ ପାରିବା ଜିଣି
ଏ କଥାକୁ ମହାରାଜା ବୁଝ ପରମାଣି ।
ମନ୍ତ୍ରୀମୁଖୁଁ କୁଡକେଶୀ ଏମନ୍ତ ଶୁଣିଲା
କି ବୁଦ୍ଧି କରିବ ବୋଲି କଥାନ୍ତ କହିଲା ।
ସମାଧାନ ଦେବା କଥା ହନ୍ଦ୍ୱ ଆରମ୍ଭିବା
ଏ ଦେନ କଥାରୁ ମନ୍ତ୍ରୀ କଥାଏ କରିବା ।
ମନ୍ତ୍ରୀବୋଲେ ସମାଧାନ କେବେ ସେ ନନେବ
ଅବଶ୍ୟ ତୋହର ତୁଲେ ସଂଗ୍ରାମ କରିବ ।
ପୃଥ୍ୱୀରୀ ବୁଲି ସେ କାହିଁ ନ ପାଇଲା ରଣ
ରଣରଙ୍ଗା ହୋଇ ମହୀ କରଇ ଭ୍ରମଣ ।
ନାରଦମୁନି ତାହାକୁ ଭଆଣି ଅଛନ୍ତି
ତାର ସଙ୍ଗେ କରାଇବେ ତୋହର ଅପ୍ରୀତି ।
ଯୁଦ୍ଧ ନ କଲେଟି ତୋର ଗତି ଆଉ ନାହିଁ
ଅବଶ୍ୟଟି ହନ୍ଦ୍ୱ ଏକ ଉପୁଜିବ ତହିଁ ।
ଶୁଣିଣ ସେ କୁଡକେଶୀ ହରଷ ବିସ୍ମୟେ
ମନ୍ତ୍ରୀକି ବୋଇଲେ ପୁଣ କହୁଛୁ କଥାଏ ।
ପ୍ରୋଢ଼ାସୁର ଖଣା ସ୍ୱରପାଖ ଆବୋରିଛି
ଘଡ଼ି ଭିତରକୁ ସେହି ପଶି ନ ପାରୁଛି ।
ଆମ୍ଭର ଯେ ଥାଟ ସେନ୍ୟ ସେନ ସଜ ହୁଅ
ଖଣା ଆବୋରିଣ ଏହି ପାଖେ ରହିଥାଅ ।
ପର୍ବତ ଆଡ଼କୁ ସର୍ବେ କରିଥିବ ପିଠି
ସବୁଆଡ଼େ ଯେଉଁପରି ପଡ଼ୁଥିବ ଦୃଷ୍ଟି ।
ବଳବନ୍ତ ଅସୁରଟି ଖଣା ପାରହୋଇ
ପର୍ବତକୁ ପିଠିକରି ମାରିବ ଗୋଡ଼ାଇ ।
ତେବେ ସେ ଅସୁରବଳ ହୋଇବେକ ଧ୍ୱସ୍ତ
ଏହିପରି ଆଜ୍ଞାଦେଲା କୁଡକେଶୀ ଦସ୍ୟୁ ।

ଶୁଣ ଆହେ। ମନୁରାଜା ଦଇବର କୃତ୍ୟ
ଯହିଁ ବିପକ୍ଷ ନାରଦ ମୁନି ତପୋବନ୍ତ ।
ଖଣା ସ୍ୱରପାଖ ଘେରି ରହିଲେକ ଥାଟ
ନଗରରେ ପଶିବାକୁ ନ ପାଇଲେ ବାଟ ।
ନାରଦଙ୍କୁ ସ୍ୱହିଁ ପୁଣି ବୋଲନ୍ତି ଅସୁର
କି ବୁଦ୍ଧି କରିବା ଏବେ କହ ମୁନିବର ।
କେତେ ଗଭୀର ଭିତର ଜାଣି ନ ପାରିଲି
ଏ କୁଡକେଶୀ ରାଜ୍ୟରେ ପଶି ନ ପାରିଲି ।
ନାରଦ ବୋଇଲେ କିଛି ନ ଭାବ ହେ ବାପ
ମୋହର ଭିତରେ ଅଛି ଏକଇ ଉପାୟ ।
ଏହିକ୍ଷଣି ହରିବଇଁ ଏ ଗଭୀର ଜଳ
ଏ କଥାକୁ ଚିନ୍ତା ତୁ ନ କର ମହାବଳ ।
ଶୋଷକମନ୍ତ୍ର ଗୋଟି ଯେ ନାରଦ ପଢ଼ିଲେ
କ୍ଷଣେକ ମାତ୍ରକେ ସେହି ଜଳକୁ ଶୋଷିଲେ ।
ଶୁଖିଲା ସେ ଜଳଖଣା ହୋଇଲା ଯେ ଥଳ
କୁଡକେଶୀ ସୈନ୍ୟ ସବୁ ହୋଇଲେ ବିକଳ
ତାହା ଦେଖି ପ୍ରୋଢ଼ାସୁର ଉଷତ ହୋଇଲା
ନାରଦ ମୁନିଙ୍କ ବହୁପରିଶଂସା କଲା ।
ଆହେ ମୁନି ଏବେ ମୁହିଁ ତୁମ୍ଭର ପ୍ରସାଦେ
କୁଡକେଶୀ ଜିଣିବି ମୁଁ ନ ପଡ଼ି ପ୍ରମାଦେ ।
ଘୋଷଣା ଯେ ଦିଆଇଲା ଥାଟର ମଧ୍ୟରେ
ସଜହୁଅ ବୋଲି ବାଦ୍ୟ ବାଜେ ବିକସ୍ୱରେ ।
ହାତୀ ରଥୀ ପଦାତିକ ସର୍ବେ ସଜ ହେଲେ
ଯୁଦ୍ଧ କରିବା ନିମନ୍ତେ ଉତ୍ତୁଁ ବାହାରିଲେ ।
ପାଇକ ମାହୁନ୍ତ ବଳ ଅଶ୍ୱାରୋହୀ ଯେତେ
ସଜ ହୋଇ ଉଭାହେଲେ ରାଜାର ଅଗ୍ରତେ ।
ସେ ନାରଦ ମୁନି ଆଗ ହୋଇ ଚାଲିଗଲେ
ପଛରେ ଅସୁର ଥାଟ କୋପେ ଗୋଡ଼ାଇଲେ
ଖଣା ପାରହୋଇ ଆର ପାଖରେ ମିଳନ୍ତି
ମାର ମାର ଧର ଧର ଉଚ୍ଚେ ଡାକଦିଅନ୍ତି ।
ମୁଖରବ ଶବଦରେ କୂର୍ମ ଚମକିଲେ
ଯାଇଣ କୁଡକେଶୀର ସୈନ୍ୟଙ୍କୁ ବେଢ଼ିଲେ.
ପ୍ରୋଢ଼ା ଅସୁର ଡାକିଲା ସୈନ୍ୟଙ୍କୁ ରେ ମାର
ଯେ ପଳାଇ ଯିବେ ତାଙ୍କୁ ବନ୍ଧନରେ ଧର ।
ରାଜା ଆଜ୍ଞାରେ ଅସୁର ସୈନ୍ୟ ଗୋଡ଼ାଇଲେ
ନାରଦମାନ ପୁରାଇ ଧନୁରେ ବାନ୍ଧିଲେ ।

ଏକକୁ ଆରେକ ଚହିଁ ହେଲେ ମରାମର
ପର କେ ଆପଣା କେହୁ ବାରି ତ ନପାର ।
ଉଭୟ ଦଳ ସେଠାରେ ଏକମେଳ ହେଲେ
ଛଟକାଟ ହୋଇ ଭଲ ଯେ ଯାହାର କଲେ
ଅସୁର ସୈନ୍ୟ ଅଟନ୍ତ ବଳେ ବଳିଆର
ଆବର ଗରଷ୍ଟ ପୁଣି ଅଟନ୍ତ ଅସୁର ।
କୁଚକେଶୀ ସୈନ୍ୟ ତାଙ୍କୁ ନ ପାରଲେ ଜିଣି
ପାଦଭରେ ଟଳ ଟଳ କମ୍ପଇ ଧରଣୀ ।
ଅନେକ ସେନ୍ୟ ପଡ଼ିଲେ ମହୀପରେ ଲୋଟି
କଦଳୀବନ ଯେସନେ ବାତଘାତେ ଭୁଟି ।
ହାଗ ରଥୀ ପଦାତିକ ଲୋଟନ୍ତି ଭୂମିରେ
ଦଶଦଂଶ ପଡ଼ନ୍ତ ଯେ ଏକ ଏକ ଶରେ ।
ରକତେ କର୍ଦ୍ଦମ ହୋଇଗଲା ମହୀସ୍ଥଳ
ଅନେକ ଯେ ପାଦଘାତ ଘୋଡ଼ା ହାତୀଦଳ
ତେଡ଼େବଡ଼ ସୈନ୍ୟ ଯେ ଟା କଲବଲହେଲେ
ଷଣକଭିତରେ ମାରଖାର ହୋଇଗଲେ ।
କୁଚକେଶୀ ଆଗେ ସ୍ଵର ଜଣାଇଲା ଯାଇଁ
ଅନେକ ଯେ ହାତୀ ରଥୀ ପଡ଼ିଲେ ଗୋସାଇଁ
ଅନେକ ଅସୁର ପ୍ରାଣେ ନହତ ହୋଇଲେ
କେତେସୈନ୍ୟ ମଲେ ତାହା ନ ଜାଣିଲୁଭଲେ
ନାରଦଙ୍କେ ଉଡ଼ନ୍ତେ ଯେ ଦଶ ପଞ୍ଚ ବଂଶ
ବଢ଼ନ୍ତି ଗରଷ୍ଟ ତାର ବଢ଼ନ୍ତି ସାହସ ।
କୁଚକେଶୀ ପଚ୍ଚରଲେ କପଟ ଅଇଲେ
କେମନ୍ତ ପ୍ରକାରେ ସେହୁ ଖଣ୍ଡା ପାଖହେଲେ
ଭଗର କହିଲେ ସେ ତ ଅପୂର୍ବ ଚରିତ
ଉପାସ୍ଯେକ ଭିଆଇଲେ ତହିଁ ଉପୋବନ୍ତ ।
ଶୋଷକ ମନ୍ତ୍ରକୁ ମୁନ ଆପଣେ ପଢ଼ିଲେ
ତେଡ଼େ ଗଧର ଜଳକୁ ଷଣକେ ଶୋଷିଲେ ।
ଜଳ ଶୁଖନ୍ତେ ତହିଁର ଭୂମି ଯେ ଦିଶିଲା
ତେଣୁ ଯାଇ ପାଖହୋଇ ଏପାରି ଅଇଲା ।
ସେ ନାରଦ ମୁନ ଭୋଟେ ହୋଇଲେ ବିପକ୍ଷ
ଏଣୁ ବଳିଆର ହେଲ ସେହୁ ଦୁଷ୍ଟ ରକ୍ଷ ।
ତକ୍ଷଣେ ଆସି ତୋହର ସୈନ୍ୟଙ୍କୁ ବେଢ଼ିଲେ
ପର କି ଆପଣା କିଛି ସେହୁ ନ ମଣିଲେ ।
ଶୁଣି କୁଚକେଶୀ ହେଲ ମନରେ ବିକଳ
ବୋଲେ ମୋତେ ନାଶକଲେ ମୁନ ତପଶୀଳ

ମନ୍ତ୍ରୀଙ୍କ ବୃହିଁଣ ରାଜା ପଚ୍ଚରଇ ଧୀରେ
ଏଥିକୁ ଉପାୟ ମୋତେ କହ ମନ୍ତ୍ରୀବରେ ।
ମନ୍ତ୍ରୀ ଯେ ବୋଇଲା ଅଉ ଅଛୁ କି ଉପାୟ
ନସତ ହେବାର ବିଧି ନୁହଇଟି ରାୟ
ପାର ବା ନ ପାର ଯୁଦ୍ଧ କର ତାର ସଙ୍ଗେ
ଧନ.ରଣେ ସୈନ୍ୟ ନାଶ କେ.ହୁ ରଣରଙ୍ଗେ
ରଜା ବିଚ୍ଚରଇ ମନ୍ତ୍ରୀ ବୋଲ ମୁଁ ନ କଲେ
କାଳେ ମୋତେ ଅପକୀର୍ତ୍ତି ଉପୁଜିବ ଭଲେ ।
ଯେଉଁ ରାଜା ନ କରଇ ମନ୍ତ୍ରୀର ବଚନ
ସେହୁ ରାଜା ନ ପାଇଟି କାଳେ ଯଶ ପୁଣ ।
ମନ୍ତ୍ରୀର ବଚନ ଯେବେ ମୁହିଁ ନ ପାଳିବ
ତେବେ ଏଥୁ ଯଶ କୀର୍ତ୍ତି କିଛୁ ନ ପାଇବ ।
ମନ୍ତ୍ରୀକି ବୋଇଲା କହ ଏଥିର ବିଚାର
ନାରଦଙ୍କ ହେତୁ ନାଶ ଗଲା ରାଜ୍ୟ ମୋର ।
ମନ୍ତ୍ର କେ.ଲେ ତାଙ୍କ ସଙ୍ଗେ ପୀରତ କରିବା
ଚରଣେ ଭକତ କରି ତାହାଙ୍କୁ ତୋଷିବା ।
ରାଜା ମନ୍ତ୍ରୀ ଦୁହେଁ ଏହା ଭାବନ୍ତ ବସ୍ଥର
ଘୋଡ଼ା ଅସୁରର ସୈନ୍ୟ ବଳେ ବଳିଆର
ମ.ର ମ.ର ଶବଦରେ ପୃଥିବୀ କମ୍ପଇ
ଧର ଧର ଶବଦରେ କୂର୍ମ ଉଚ୍ଛୁଳଇ ।
କୁଚକେଶୀ ରାଜା ଶୁଣ ବଡ଼ ଭୟ କଲା
ଅଦ୍ଭୁତ ଆମ୍ଭଂର ସେ କଥାନ୍ତ ଘଟଲା ।
ବୋଇଲା ମରଣ ମୋର ହୋଇଲା ନିକଟ
ବିପାକ କର୍ମରୁ ବୁଦ୍ଧ ହୋଇଲା ମୋ ନଷ୍ଟ ।
କାହା ଆଗେ କହିବଇଁ କର୍ମର ଯେ ଦୋଷ
ଯାହାକ ଭିଆଇଅଛୁ ଦଇବ ପୁରୁଷ ।
ଆହେ ଜଗନ୍ନାଥ ତୁମ୍ଭେ ଭକ୍ତ ପ୍ରାଣନାଥ
ଅରକ୍ଷିତ ଉଦ୍ଧାରଣ କରୁଣା ଜଳଧି ।
ଅରକ୍ଷ ଜନ ନମନ୍ତେ ଶଙ୍ଖ ଚକ୍ରଧର
ଘୋର ଦୁର୍ଗତିରୁ ସନ୍ଥଜନଙ୍କୁ ଉଦ୍ଧାର
କୁଚକେଶୀ ଯହୁଁ ନାରାୟଣ ସୁମରଲା
ସଦବୁଦ୍ଧ ସନ୍ଦିଜ୍ଞାନ ହୃଦେ ପ୍ରକାଶିଲା ।
ବୋଇଲା ମରଣକାଳେ ନୋହିବ ନସତ
ତାହାର ସଙ୍ଗରେ ଯୁଦ୍ଧ କରିବା ଉଚିତ ।
ସଇନ୍ୟ ମୋର ସମସ୍ତ ଯୁଦ୍ଧରେ ପଡ଼ିଲେ
ମୋର ପ୍ରାଣ ରଖିବ ବା କମ୍ପା ମୁହିଁ ଭଲେ

ଏତେକ ବଚନ ତହୁଁ ସେ କୃତକେଶୀ
ମନ୍ତ୍ରୀକି ଘେନି ବାହାର ହେଲା ଦଣ୍ଡଧାରୀ ।
ସଇନ୍ୟଙ୍କ ନିକଟରେ ମିଳିଲେକ ଯାଇ
ଅନେକ ଅସ୍ତ୍ର ଶସ୍ତ୍ର ସେ ମାରଇ ନଠାଇ ।
ପ୍ରୋଢ଼ାସୁର ସୈନ୍ୟ ତହିଁ ପଡନ୍ତେ ଯେ ଯାଏ
ଦେଖି ମହାକୋପ କଲା ପ୍ରୋଢ଼ାସୁର ରାୟେ
ମାର ମାର ବୋଲି ରଥ ନେଉଠାଇ ଗଲା
କୃତକେଶୀ ଆଗରେ ଯାଇଣ କହିଲା ।
ବୋଇଲା ରେ ରାଜା ତୁହି ଅଟୁ ବଳଯାଇ
ମୋହର ସଙ୍ଗେ ଆଜ କରିବୁ ସମର ।
କହୁଁ କହୁଁ ନାରାଚ ସେ ଛାଡ଼ିଲା ଲକ୍ଷେ ଲକ୍ଷେ
ବାଜନ୍ତେ ରୁଧିର ଗଳି ପଡ଼ଇ ପ୍ରତ୍ୟକ୍ଷେ ।
ସେ ନାରଦ ତପୋଧନ ଶୂନ୍ୟରେ ରହିଲେ
କଳିଘୋଡ଼ରୁ ଧୂଳି ମୁଠାଏ ବୁଣିଲେ ।
ଲଗୁ ଲଗୁ ବୋଲି ଉଚ୍ଚେ ଶବ୍ଦବେକ ଦେଲେ
ବୀଣା ବଜାଇ ଖେମଟା ନାଟ ଆରମ୍ଭିଲେ ।
କଳିହନ୍ଦ୍ୱ ଲାଗିଲା ଯେ ସେଠାରେ ଅସଂଖ୍ୟ
ବଚନରେ ତାହା କିଏ କହିବ ପ୍ରତ୍ୟକ୍ଷ ।
ଦୁହେଁ ମହାକ୍ଷତ୍ରୀ କେହି ନ ଟୁଟନ୍ତି ଯାଏ
ଶସ୍ତ୍ରମାନ ମରମର ହୁଅନ୍ତି ଯେ ଦୁହେଁ ।
ଦେବ ଦାନବରେ ତାହା ଗୋଚର ନୋହଇ
ଦୁଇ ରାଜାଙ୍କର ତହିଁ ସମର ହୁଅଇ ।
ଅନେକ ନାରାଚ ପ୍ରୋଢ଼ାଅସୁର ବର୍ଷିଲା
କୃତକେଶୀ ସେ ନାରାଚ ଛେଦି ପକାଇଲା ।
କୋପେ ଅସୁର ବାଣରେ ଛେଦେ ଧନୁଶର
ଶୂନ୍ୟହସ୍ତ ହେଲା କୃତକେଶୀ ନୃପବର ।
ରଥୁଁ ଓହ୍ଲାଇ ଅସୁର ବେଗେ ଧାଇଁଗଲା
କୃତକେଶୀ ନୃପତିର କେଶକୁ ଧଇଲା ।
ରଥର ଉପରୁ ତାକୁ ତଳେ ପକାଇଲା
ହାଣିବାକୁ ମନେକରି ଖଡ଼୍ଗ ଉଠାଇଲା ।
ତାହା ଦେଖିଣ ନାରଦ ଶୂନ୍ୟ ଓହ୍ଲାଇଲେ
ଅସୁର ହସ୍ତକୁ ମୁନି ଯାଇଣ ଧଇଲେ ।
ଆମ୍ଭ ରାଣ ତୋତେ ତାକୁ ନ କର ନିଧନ
ଦୋଷକୁ ଦଣ୍ଡ ପାଇଲା ଏବେ ସେହି ଜାଣ ।
ଏହାକୁ ଏଠାରୁ ଆମ୍ଭେ ଧରି ନେଇଯିବା
ବନ୍ଦୀ ପ୍ରକାରେ ତାହାକୁ ବାନ୍ଧି ରଖିଥିବା ।

ନାରଦ ବଚନେ ପ୍ରୋଢ଼ା କ୍ରୋଧଶାନ୍ତ କଲା
ତାହାଙ୍କର ବଳେ କୃତକେଶୀ ଜୟ କଲା ।
ତାକୁ ଗ୍ରହିଲା ଅସୁର ନାରଦ ବଚନେ
ପାଟଡୋରି କରି ତାକୁ ରଖିଲା ବନ୍ଧନେ ।
ରଥର ବଣ୍ଡାରେ ନେଇ ତାହାକୁ ବାନ୍ଧିଲା
କୃତକେଶୀ ମନ୍ତ୍ରୀ ଦଣ୍ଡ ବଚନ ଦେଇଲା ।
ରଣ ଜୟକରି ପ୍ରୋଢ଼ାସୁର ବାହୁଡ଼ିଲ
ଶୁଣ ଉର୍ବଶୀଣ ତାହାର ରାଜ୍ୟ ବାହାରଇ ।
ନାରଦଙ୍କୁ ଦେଖି ସ୍ତୁତି କରଇ ଅସୁର
ତନ ଶ କାରଣେ ଯୁଦ୍ଧ କଲା ମୋ ସଙ୍ଗର ।
ଅକାରଣେ ମୋହର ଏ ସୈନ୍ୟଙ୍କୁ ନାଶିଲା
କେଉଁହୁଁ ଏ ମୋର ସଙ୍ଗେ ପ୍ରୀତି ନ କଲା
ସଇନ୍ୟ ନିହତ ହେବା ଦେଖି ପ୍ରୋଢ଼ାସୁର
ମନେ ମନେ ହୋଇଲା ସେ ବିକଳ ଅପାର ।
ପ୍ରୋଢ଼ାସୁର ମନକଥା ନାରଦ ଜାଣିଲେ
ଅସୁର ମୁଖକୁ ଚାହିଁ ବଚନ ଭାଷିଲେ ।
ତୁହି ରଣ ଜୟ କଲୁ ବୋଲି ସେ କହିଲେ
କୃତକେଶୀ ରାଜାକୁ ସେ ଦେଖିଣ ହସିଲେ ।
ନ ମାନବା ଫଳେ ଏହି କୃତକେଶୀ ଘର
ଏତେକ କର୍ମ ଭୁଞ୍ଜିଲା ଜାଣ ନୃପବର ।
ନାରଦଙ୍କ ମୁଖ ଚାହିଁ ବୋଲେ ପ୍ରୋଢ଼ାସୁର
ଏତେ ସୈନ୍ୟ ମୋର ଧ୍ୱଂସ କଲା ନାରଖାର
ଏ କୃତକେଶୀ ହେତୁ ମୋ ସୈନ୍ୟ ନାଶଗଲେ
ତାହାର ଜୀବନ ମୁହିଁ ହରିବଇଁ ଭଲେ ।
ପ୍ରୋଢ଼ାସୁର ବଚନରେ ନାରଦ କହନ୍ତି
ସଂଗ୍ରାମ କଲେ ଅବଶ୍ୟ ସଇନ୍ୟ ମରନ୍ତି ।
ଏଥିକୁ ଚିନ୍ତା ତୁ କିଛି ନ କର ହୋ ରାୟେ
ଗୁପ୍ତକଥା ତୋତେ ଆମ୍ଭେ କହିବା କଥାଏ ।
କୃତକେଶୀ ରାଜାକୁ ତୁ ସଂଗ୍ରାମେ ଜିଣିଲୁ
ଆମ୍ଭର କଲ୍ୟାଣେ ଯଶ ମହୀରେ ପାଇଲୁ ।
ଶୁଣି ପ୍ରୋଢ଼ାସୁର ମୁନି ଚରଣେ ନମିଲା
ବିନୟ କରି ବଚନମାନ ପ୍ରକାଶିଲା ।
ତୁମ୍ଭର ବଚନ ମୁନି ନ କରିବି ଯେବେ
ଏତେକ ସମ୍ପଦ ମୋର କାହା ସେନ ତେବେ
ବିନୟ ଭକତିଭାବ ଅସୁରର ଦେଖି
ନାରଦ ବୋଲନ୍ତି ଆମ୍ଭ ବୋଲେ ହୁଅ ସୁଖୀ ।

ଦୋଷକୁ ଯେ ଦଣ୍ଡ ଏହି ପାଇଲା ବହୁତ
ତୋର ହୋଇଥାଉ କୁଟକେଶୀ ନରନାଥ ।
ବନ୍ଧନ ଏହାର ବେଗେ ଛୁଟି ଫେଡ଼ିଦିଅ
ଆମ୍ଭର ବଚନ ଥିରେ ପ୍ରତିପାଳ ଥାଅ ।
ମୁନିଙ୍କର ବଚନ ସେ ଅନ୍ୟଥା ନ କଲା
କୁଟକେଶୀ ବନ୍ଧନକୁ ଶୀଘ୍ର ଫେଇଦେଲା ।
ନେଇ ବସାଇଲା ତାକୁ ଆପଣା ପାଶରେ
ନାରଦ ବୋଇଲେ ତୁ ହୋ ଶୁଣ ନୃପବର
ସମାଧାନ ଦିଅ ଏବେ ବାହୁଡ଼ିଣ ଯାଉ
କଳି ଦ୍ୱନ୍ଦ୍ୱ ବାଦ ସବୁ ଏଠାବରୁ ରହୁ ।
ଶୁଣି କୁଟକେଶୀ ତାର ମନ୍ତ୍ରୀଙ୍କୁ ଡାକିଲା
ସମାଧାନ ସଞ୍ଜମାନ ଭିଆଣ ବୋଇଲା ।
ଆଜ୍ଞା ପରମାଣେ ଚଳିଗଲା ମନ୍ତ୍ରୀବର
ଗନ୍ଧାସରେ ପଠା ଆସେ ସଜାଡ଼ି ସମ୍ଭାର ।
ସହସ୍ରେକ ରଥ ପାଣି ଦ୍ରବ୍ୟ ସଜ ଡ଼ାଲା
ଏକଶତ ହସ୍ତୀ ସେହି ବେଗେ ସଜକଲା ।
ଦୁଇସହସ୍ର ସୁନ୍ଦରୀ ରୂପ ବାଖଇ ସହିତେ
ସଜକରି ଆଣିଦେଲା ମନ୍ତ୍ରୀ ଯେ ତୁରିତେ ।
ଏକଲକ୍ଷ ଦେବ ଅଙ୍ଗ ବସନ ଭିଆଇ
ସେ ସମସ୍ତ ଘେନି ମନ୍ତ୍ରୀ ଆସଇ ତହାଇ ।
ରାଜ ର ସମ୍ମୁଖରେ ନେଇ ସଜାଇ ଥୋଇଲା
ଦେଖି ରାଜା ମନ୍ତ୍ରୀକି ସେ ବହୁ ପ୍ରଶଂସିଲା ।
ସେହି ସବୁ ଦ୍ରବ୍ୟ ଦେଖିକରି ପ୍ରୋଢ଼ାସୁର
ନାରଦଙ୍କ ମୁଖ ଚାହିଁ କରଇ ବିଚାର ।
ବହୁତ ଭକତି ମୋତେ ଏହୁ ରାଜା କଲା
ଅନେକ ପଦାର୍ଥ ସମାଧାନ କରିଦେଲା ।
ନାରଦ ବୋଇଲେ ତୁ ହୋ ସନ୍ତୋଷ ହେଲୁକି
ଏ କଥା ଫେଡ଼ିଣ ମୋତେ କହ ଉପଲବ୍ଧ୍ୟ ।
ପ୍ରୋଢ଼ାସୁର ବୋଇଲା ମୁଁ ସନ୍ତୋଷ ହୋଇଲି
ଏହାର ସଙ୍ଗତେ ଆଜ ପୀରତି ମୁଁ କଲି ।
ଆଜଠାରୁ ଏ ମୋହର ମିତ୍ର ହୋଇଲା
ପ୍ରୋଢ଼ାସୁର ଦୈତ୍ୟ ସତ୍ୟ ସତ୍ୟ ଉଚ୍ଚାରିଲା
କୁଟକେଶୀ ରାଜା ସତ୍ୟ ସତ୍ୟ ଉଚ୍ଚାରଇ
ନାରଦ ମୁନି ଯେ ସାକ୍ଷୀ ହେଲେ ତହିଁ ଥାଇ
ଦୁହେଁ ସତ୍ୟ ବାକ୍ୟେ ତହିଁ ମିତ୍ର ହୋଇଲେ
କୋଳାଗତ ହୋଇ ଦୁହେଁ ନିଷ୍ଠ ପ୍ରେ ବସିଲେ
ବହୁତ ପ୍ରୀତି ବଢ଼ିଲା ଦୁହିଙ୍କର ତହିଁ
ସିଦ୍ଧ ହୋଇ ପ୍ରୋଢ଼ାସୁର ମେଲାଣି ମାଗଇ ।
ପୁଣି କଥାଏକ ତାର ମନରେ ଭାଳିଲା
ଏତେ ସୈନ୍ୟ ଆଜ ମୋର ଅକାରଣେ ମଲା
ପ୍ରୋଢ଼ାସୁର ମନକଥା ନାରଦ ଜାଣିଲେ
ହସିଣ ଆପଣେ ତହିଁ ବଚନ ଭାଷିଲେ ।
ବୋଇଲେ ରେ ରାଜା ମନେ ନ ଭାବ ତୁ କିଛି
ତୋର ସୈନ୍ୟ ବଞ୍ଚିବାକୁ ଉପାୟେକ ଅଛି ।
ଏତେ ବୋଲି ମୁନି ପାଣି ମୁଠା ଏ ମନ୍ତ୍ରିଲେ
ସୈନ୍ୟଙ୍କ ଉପରେ ନେଇ ତାହାକୁ ସିଞ୍ଚିଲେ
ସଭିଁ ଶତେଗୁଣ ହୋଇ ସଇନ୍ୟ ଉଠନ୍ତି
ମାର ମାର ଧର ଧର ଶବଦ କରନ୍ତି ।
ପ୍ରୋଢ଼ାସୁର ବୋଲେ ତୁନି ହୁଅନ୍ତୁ ସମସ୍ତେ
ଏ ରାଜା ମିତ୍ର ହେଲା ଆମ୍ଭର ସହିତେ ।
ରାଜାର ବଚନେ ସୈନ୍ୟେ ମଉନ ହୋଇଲେ
ଯେ ଯାହାର ମତେ ତୁନି ହୋଇଣ ରହିଲେ
କୁଟକେଶୀ ନମିଲା ଯେ ମୁନିଙ୍କ ଚରଣ
ମୋର ସୈନ୍ୟ ବଞ୍ଚାଇଣ ଦିଅ ତପୋଧନ ।
ସେହିପରି ମନ୍ତ୍ର ପାଣି ମୁନି ଯେ ସିଞ୍ଚିଲେ
କୁଟକେଶୀର ସୈନ୍ୟଙ୍କୁ ଜୀଆଇଣ ଦେଲେ
ପୁଣି ଜଳ ଧରି ମନ୍ତ୍ର ପଢ଼ିଲେକ ମୁନି
ଖଣା ଯାହା ଶୁଖିଥିଲା ପୂରିଲାକ ପାଣି ।
ଦେଖିଣ ହରଷ ହେଲା ରାଜା କୁଟକେଶୀ
ନାରଦଙ୍କୁ ମନେ ମନେ ବହୁତ ପ୍ରଶଂସି ।
ତୁମ୍ଭ କରୁଣାରେ ମୁହିଁ ପାଇଲି ଏ କଷ୍ଟ
ଏବେ ଦୟାକର ମୋତେ ବ୍ରହ୍ମାଙ୍କର ସୃଷ୍ଟ ।
ଜୟ ତୁ କାଳିକା ମାଗୋ ଶଙ୍କର ଘରଣୀ
ଘୋର ଦୈତ୍ୟ ନାଶି ସ୍ୱର୍ଗ ରଖିଲୁ ତୁ ପୁଣି ।
ରକତବୀର୍ଯ୍ୟ ରୁଧିର ଜେଉ ମାଗୋ ବୃଷ୍ଟି
କ୍ଷଣକେ ଭିଆଇ ପାରୁ ତୁ ଗୋ ନବସୃଷ୍ଟି ।
କଟକ କାଳୀ ଚରଣେ ଶରଣ ମୋହର
ଶାରଳାଦାସ ଝଙ୍କଡ଼ପୁରେ ମୋର ଘର ।

---

## ପ୍ରୋଢ଼ାସୁର ବଧ

ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ଏସନକ ପ୍ରକାରେ ସେ ପ୍ରୋଢ଼ାସୁର ଗତ ।

ଏବେ ସାବଧାନେ ଶୁଣ ହୋଇ ଏକଚିତ୍ତ
ଯେମନ୍ତେ ପାତକ ତୋର ନ ରହିବ ଗାତ୍ର ।
କୃତକେଶୀକୁ ରାକ୍ଷସ ମେଲାଣି ମାଗିଲା
ଧାଇଁଯାଇ ରାଜା ତହୁଁ ବେଗେ ଚଳିଗଲା ।
କୃତକେଶୀ ଗଲା ଚଳି ଆପଣା ନଗର
ପୂର୍ବ ବିଧିରେ ପାଳିଲା ରାଜ୍ୟର ବେଭାର ।
ଏମନ୍ତ କଥାଣି ବାଇ ପ୍ରୋଡ଼ାସୁର ଭୟେ
ଶବଦରେ ମେଦିନୀକୁ ସେହି ଚମକାଏ ।
ପୃଥିବୀ ଯେ ଟଳମଳ ଜଗତ ଅନ୍ଧାର
ସ୍ୱର୍ଗେ ଦେବତାଏ କମ୍ପି ହେଲେ ଥର ଥର ।
ପ୍ରୋଡ଼ାସୁର ଦପଦପେ କରି ବାହୁଡ଼ିଲା
ଗ୍ରୀଷ୍ମାଶୋଳ ସହସ୍ର ଯେ ରାଜାଙ୍କୁ ଜିଣିଲା ।
ଏବେ ସ୍ୱର୍ଗକୁ ଅଇଲା ପ୍ରାପ୍ତେକ ଦଶଇ
ନ ପୁଣ ଆମ୍ଭର ସଙ୍ଗେ ଯୁଦ୍ଧ ଆରମ୍ଭଇ ।
ଇନ୍ଦ୍ର ବୃହସ୍ପତି ବ୍ରହ୍ମା ସଙ୍ଗେ ବସିଥିଲେ
ପ୍ରୋଡ଼ାସୁର ଦପଦପେ ଶୁଣିଣ ଭାବିଲେ ।
ଇନ୍ଦ୍ର ବଚନରେ ତହିଁ ବ୍ରହ୍ମା ମୁଖ ଚାହିଁ
ପ୍ରୋଡ଼ାସୁର ଭୟେ ସ୍ୱର୍ଗେ ନ ପାରିବ ରହି ।
ବଡ଼ଇ ଦୁର୍ବାର ସେହୁ ଅଟଇ ଅସୁର
କହ ହେ ଜଗତପିତା ଏଥିର ଉତ୍ତର ।
ପୃଥିବୀକୁ ନାନାବିଧ ହୋଇଲା ବରିଷ୍ଠ
ରାବଣର ତହୁଁ ଦୁଷ୍ଟ ହୋଇଲା ଗରିଷ୍ଠ ।
ମର୍ତ୍ତ୍ୟ ପାତାଳ ରାଜାନ୍ତ ଜିଣିଲା ଏ ଭଲେ
ଆଉ ସ୍ୱର୍ଗ ନ ରହିବ ତାର ଧାଡ଼ ଥିଲେ ।
ପୁଣ ଦେବରାଜ ତାଙ୍କୁ କହଇ ଉତ୍ତର
ତାହା ହସ୍ତେ ମରିବ ସେ କହ କୃପାଧାର ।
ବ୍ରହ୍ମାଏ ବୋଇଲେ ତାହା ଗୁରୁଙ୍କୁ ପଚାର
ତେବେ ଜାଣିବା ଉଦନ୍ତ କଥାର ବିଚାର ।
ଇନ୍ଦ୍ର ବ୍ରହ୍ମା ପଚାରନ୍ତେ ଗୁରୁ ଯେ କହନ୍ତି
...ଥି ପଚାରିଣ ସେହୁ ମନରେ ହସନ୍ତି ।
ଇନ୍ଦ୍ର ପଚାରନ୍ତି ଗୁରୁ କହିଲ ତ ଆହେ
...ଗେ ରହି ପାରିବା କି ଅସୁରର ଭୟେ ।
...ହସ୍ପତି ଭାଷିଲେ ମୁଁ ଜାଣିଲି କଥାନ୍ତ
...ସୁର ଭୟ ନ କର ଆହେ ସୁରନାଥ ।
...ଷ୍ଣୁର ହସ୍ତରେ ସେହୁ ପାଇବ ମରଣ
...ନର ଆଘାତେ ନଷ୍ଟେ ହେବ ନାରାୟଣ ।

ଏହି ଅନ୍ତ ଯେବେ ସେହୁ ସ୍ୱର୍ଗକୁ ଆସିବ
ତୋର ତନ୍ତ୍ରସାରେ ଜାଣ ନିଶ୍ଚେ ଖସିବ
ବୃହସ୍ପତି କହିଲେ ଯେ ବାସବ ଶୁଣିଲେ
ଆଦର ଦେବତାମାନେ ସମସ୍ତେ ଜାଣିଲେ ।
ଏଥି ଅନନ୍ତରେ ଦେବସଭା ମଞ୍ଜିଳା
ଦେବତାଙ୍କ ଗୋଷ୍ଠୀ ସହୁଁ ସେଠାରୁ ଭାଙ୍ଗିଲା
ବ୍ରହ୍ମା ବୃହସ୍ପତି ଦୁହେଁ ଗଲେ ନିଜପୁର
ଦେବତାଏ ଚଲେ ତହୁଁ ଯେ ଯାହା ମନ୍ଦିର ।
ଶଚୀଙ୍କ ପୁରରେ ଇନ୍ଦ୍ର ବସନ୍ତେ ଭଲେ ଯାଇଁ
କହିଲେ ଶଚୀ ଆଗରେ ସକଳ ବୁଝାଇ ।
ପ୍ରୋଡ଼ାସୁର ବୋଲି ହେତୁ ଅସୁର ଭରଷ୍ଟ
ତାହାର ଭୟେ ତମକ ସଢ଼େ ସ୍ୱର୍ଗଭ୍ରଷ୍ଟ ।
ଜିଣିଲୁଣି ବଢ଼େ ଜିଣି କରି ତିନପୁର
ଏବେ ସେ ଜିଣିବ ବୋଲି ଆସେ ଆମ୍ଭ ପୁର
ଶଚୀ ବୋଲେ ପ୍ରାଣନାଥ ତାଙ୍କୁ ବଧ କର
ଭିଶ୍ୱାସ ହୋଇବ ମନେ ଭୁବନର ସାର ।
ଇନ୍ଦ୍ର ବୋଲେ କହୁଅଛ ଅଛଇ ଆୟୁଷ
ଅବଶ୍ୟ ବଜ୍ରେ ତାହାକୁ କରିବ ବିନାଶ ।
ଏଥୁଅନ୍ତେ ଶୁଣିବା ସେ ସତ୍ୟେ ବଦ୍ୟାରସ
ଶ୍ରୀମହାଭାରତ ଅଟେ ଅମୃତ ସଦୃଶ ।
କୃତକେଶୀ ରାଜାଙ୍କୁ ସେ ଜିଣି ପ୍ରୋଡ଼ାସୁର
ସ୍ୱର୍ଗକୁ ବାହିବ ବୋଲି କରଇ ଉତ୍ସର ।
ପ୍ରୋଡ଼ାସୁର ନାରଦଙ୍କୁ ପୁଣ ପଚାରଇ
ମଣ୍ଡପୁର ରାଜାଙ୍କୁ ମୁଁ ହେଲେ ଜିଣିଲଇଁ ।
ମର୍ତ୍ତ୍ୟ ପାତାଳ ଏ ଦୁଇ ... ହୋଇଲା
ସ୍ୱର୍ଗପୁର କଥା ମୋତେ ଗୋଚର ନୋହିଲା
ଇନ୍ଦ୍ର ସଙ୍ଗରେ ମୁହିଁ କରିବଇଁ ରଣ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ଏକ ହେବ ଜାଣ ।
ନାରଦ ବୋଇଲେ ତୁହି ଭ୍ରମିଲୁ ମର୍ତ୍ତ୍ୟରେ
ଥୋକାଏକ ଦିନ ଥାଅ ତୋହର ନଗରେ ।
ଏବେ ଆସି ଚତୁର୍ମାସ୍ୟ ହେଲା ପରବେଶ
ଯୁଦ୍ଧର ସମୟ ନୁହେଁ ଏହି କୃଷ୍ଣମାସ ।
ନାରଦଙ୍କ ବାକ୍ୟେ ପ୍ରୋଡ଼ାସୁର ମାନିଲା
ଫାଟ କଟକ ଛାଡ଼ି ସେହୁ ନିଜ ପୁରେ ଗଲା ।
ନିଶ୍ଚିନ୍ତ ହୋଇଣ ତାର ମନରେ ରହିଲା
ଏହିମତେ ଚତୁର୍ମାସ୍ୟ ଆସି ଶେଷ ହେଲା ।

ନକ୍ଷତ୍ରରେ ପ୍ରୋଢ଼ାସୁର ରାଜ୍ୟରେ ଉଦଇ
ଜନପ୍ରଜାମାନଙ୍କୁ ସେ ସୁଖରେ ପାଳଇ ।
ନାରଦ ମେଲାଣି ପାଇ ସ୍ୱର୍ଗପୁର ଗଲେ
ପ୍ରୋଢ଼ାଅସୁର ଚରିତ ଦେବଙ୍କୁ କହିଲେ ।
ଶୁଣି ଦେବତାଏ ମହାଆନନ୍ଦ ହୋଇଣ
ନିଶ୍ଚିନ୍ତରେ ସ୍ୱର୍ଗପୁରେ ରହିଲେ ସେ ଜାଣ ।
ଚତୁର୍ମାସ୍ୟ ଅନ୍ତେ ମାର୍ଗଶିର ପ୍ରବେଶିଲା
ପ୍ରୋଢ଼ାସୁର ରାଜା ତାର ମନ୍ତ୍ରୀକୁ ପୁଛିଲା ।
ଥାଟ ସୈନ୍ୟ ମୋର ମନ୍ତ୍ରି ବେଗେ ସଜ କର
ଇନ୍ଦ୍ର ସଙ୍ଗେ ଆଜ ମୁହିଁ କରିବ ସମର ।
ତାହାକୁ ଜିଣିଲେ ତିନିପୁର ମୋର ହେବ
ଯୁଗଯୁଗାନ୍ତରେ ଏହି କଥା ରହିଥିବ ।
ରାଜାର ବଚନେ ମନ୍ତ୍ରୀବର ତା ଶୁଣିଲା
ରାଜା ଆଜ୍ଞାପାଇ ତାର ମନ୍ଦିରକୁ ଗଲା ।
ଡଗରକୁ ବୁଝିଁ ମନ୍ତ୍ରୀ କହିଲା ଏମନ୍ତ
ରାଜ୍ୟରେ ଯାଇଁ ଘୋଷଣା ଦିଆଅ ତୁରିତ ।
ସୈନ୍ୟ ସଜ ହୁଅନ୍ତୁ ସେ ରାଜା ଆଜ୍ଞା ଦେଲେ
ମନ୍ତ୍ରୀର ମୁଖରୁ ଏହା ଡଗର ଶୁଣିଲେ ।
ସିଂହଦ୍ୱାରେ ଏ ଘୋଷଣା ଯାଇ ଦିଆଇଲେ
ଥାଟ ସଜ ହୋଇ ଆସ ରାଜା ଆଜ୍ଞା ଦେଲେ
ମନ୍ତ୍ରୀ ମୁଖରୁ ଏମନ୍ତ ଶୁଣିଲେ ଡଗରେ
ଘୋଷଣା ଦିଆଇଲେ ସେ ଯାଇଁ ସିଂହଦ୍ୱାରେ
ଶୁଣି ତାହା ଥାଟସୈନ୍ୟ ହୋଇଲେକ ସଜ
ପଦାତି ଯେ ରଥୀ ଘୋଡ଼ା ମଦମତ୍ତ ଗଜ ।
ସମସ୍ତେ ସଜ ହୋଇଣ ହୋଇଲେ ବାହାର
ସବୁବଳ ମିଳିଲେକ ଆସି ସିଂହଦ୍ୱାର ।
ବିଂଶଲକ୍ଷ ପଦାତି ଯେ ଅଶ୍ୱ ଦୁଇଲକ୍ଷ
ପାଇକ ତିନି କ୍ଷଉଣୀ ଥଇଲେ ପ୍ରତ୍ୟକ୍ଷ ।
ପଞ୍ଚଲକ୍ଷ ଗଜ ପୁଣି ବାହାର ହୋଇଲେ
ଉଦଣ୍ଡ ଝଲ୍ଲିଖ ପାଟଛତ ଉଡ଼ାଇଲେ ।
ଏହିରୂପେ ସଇନ୍ୟ ଯେ ହୋଇଲେ ବାହାର
ଶଙ୍ଖ ମହୁରୀ ନିଶାଣ ଶବଦ ଯେ ଘୋର ।
ସ୍ୱର୍ଗେ ଥାଇ ଦେବତାଏ ବାରତା ପାଇଲେ
ପ୍ରୋଢ଼ା ଅସୁର ସ୍ୱର୍ଗକୁ ବାହିଲା ବୋଇଲେ
ଦିବ୍ୟବେଶ ହୋଇ ପ୍ରୋଢ଼ା ଅସୁର ବାହାର
ରଥ ଏକ ସଜ କରିଥିଲା ମନ୍ତ୍ରୀବର ।
ଅନୁକୂଳ ସେନ ତହିଁ ବସିଲାକ ଯାଇଁ
ମଙ୍ଗଳ ବନ୍ଦାପନା ଯେ ତହିଁରେ ସାରଇ ।
ବାହାର ହୋଇଣ ଥାଟ ଆଗେ ଆଗେ ଗଲେ
ପାଦରେଣୁରେ ତପନ ଅଦୃଶ୍ୟ ହୋଇଲେ ।
ରଥ ଚଳାଇଣ ରାଜା ପଛେ ପଛେ ଗଲା
ସ୍ୱର୍ଗପୁରକୁ ସେ ପୁଣି ଅନୁକୂଳ କଲା ।
ଦେବଙ୍କର ଡଗରେ ଯେ ବୁଲି ଯାଉଥିଲେ
ଅସୁରଙ୍କ ସଜ ଦେଖି ବେଗେ ବାହୁଡ଼ିଲେ ।
ସଭା ମଣ୍ଡାଇଣ ବସିଅଛୁ ସୁରପତି
ଦେବତାଏ ବସିଛନ୍ତି ଇନ୍ଦ୍ର ଛନ୍ତି ଯତି
ଅପସରାମାନେ ତହିଁ ନାଚନ୍ତି ହରଷେ
ସାବଧାନେ ଦେଖଇ ସେ ଭଣ୍ୟପର ଶିଷ୍ୟେ
ଏ ସମସ୍ତେ ଡଗର ଯେ ପ୍ରବେଶ ହୋଇଲେ
ଘାସ୍ତେ ଚଢ଼ିଳଣ ସେହି ଶିରେ କର ଦେଲେ
ସାବଧାନ ହୋଇ ଏବେ ଶୁଣିମା ଗୋସାଇଁ
ଦେବ ଆଜ ପ୍ରୋଢ଼ାସୁର ସ୍ୱର୍ଗକୁ ଧାମଇଁ ।
କି ବୁଦ୍ଧି କରିବା ଏବେ ଆହେ ସୁରଗଣ
ନିଶ୍ଚୟ ଦେବତାଙ୍କର ହୋଇଲା ମରଣ ।
ତାହା ଶୁଣି ସୁରପତି ପଚାରଇ ବମ୍ଭେ
କି ବାରତା ବୁଝି ଆସି କହୁଅଛ ତୁମ୍ଭେ ।
ସ୍ୱର୍ଗକୁ ଯେ ପ୍ରୋଢ଼ାସୁର ବାହିଲା ଗୋସାଇଁ
ଏଥକୁ ତତ୍ପର କର ସାବଧାନ ହୋଇ ।
ଶୁଣି ସୁରପତି ହୋଇ ଅତ୍ୟନ୍ତ ବିସ୍ମୟ
ଦେବତାଙ୍କୁ ଚାହିଁ ପୁଣ ବୋଲେ ସୁରରାୟ ।
ଅସୁର ସଙ୍ଗତେ ଆମ୍ଭେ କରିବା ସମର
ଯେ ଯାହାର ଅସ୍ତ୍ର ଶସ୍ତ୍ର ବେଗେ ଯାଇଁ ଧର ।
ଶୁଣି ଦେବଗଣେ ଯାନ ବାହନେ ଚଢ଼ିଲେ
ଯେ ଯାହା ଆୟୁଧମାନ ଭୁଜରେ ଧଇଲେ ।
ମୃଦଙ୍ଗ ଦୁନ୍ଦୁଭି ଆଦି ବାଜେ ଘାରତୁର
ଶଙ୍ଖ ବହୁସି ମଙ୍ଗଳ ବାଦ୍ୟ କୁତୁହଳ ।
ଐରାବତ ଚଢ଼ି ଇନ୍ଦ୍ର ବାହାର ହୋଇଲେ
ସଜ ହୋଇ ଦେବତାଏ ଆଗଭର ହେଲେ ।
ମଙ୍ଗଳ ଆରତି ପୁଣି ବନ୍ଦାପନା ହୋଇ
ଆପଣେ ଅଇଲା ସଜ ହୋଇ ସୁରସାଇଁ ।
ଚନ୍ଦ୍ରସେନ ସୁରସେନ ଆଦିଙ୍କର ମୂଳେ
ବେଗେ ଦେବଗଣ ସଜହେଲେ ଯେ ଯାହାରେ

ଥୋକାଏ ଦୂର ତହୁଁ ଗଲେ ମେଳହୋଇ
ଅସୁର ଆସିବା ପଥ ଜଗେଇଥିଲେ ଯାଇଁ ।
ପ୍ରୋଡ଼ାସୁର ଯେ ଅସୁରବଳ ସଙ୍ଗେ ଘେନ
ପାବନୀ ଗଙ୍ଗାକଳରେ ମିଳିଲା ତକ୍ଷଣି ।
ଦେବତାଏ ଆସି ସେହି ଠାବରେ ମିଳିଲେ
ବାଜଂର ଶବଦ ଶୁଲେ ତହିଁ କୁତୂହଳେ ।
ଦୁଇସୈନ୍ୟ ତହିଁ ଯହୁଁ ହୋଇଲେକ ଭେଟ
ଉଚ୍ଚବାଚ ହୋଇ ସର୍ବେ ଦେଖାଇ ମୁରାଟ ।
ଦେବାସୁର ସୈନ୍ୟ ଯହୁଁ ଏକମେଳ ହେଲେ
ଉଚ୍ଚବାଚ ହୋଇ ଶୋର କଦନ ସେ କଲେ
ମାର ମାର ଶବଦକରି ଡାକନ୍ତି ଅସୁରେ
ତାଙ୍କ ଶୁଣି ଦେବଗଣ ଧାଇଁଛନ୍ତି ଖରେ ।
ମାରନ୍ତି ଭଲ୍ଲ ଶଲଭ ଶଲ ତୀକ୍ଷ୍ଣ ଶର
ଯାଇଣ ଖଣ୍ଡଇ ତାହା ଅସୁରଙ୍କ ଶିର ।
ମର୍ଦ୍ଦିତ ହୋଇ ଆସି ଭୂମିରେ ପଡ଼ଇ
ଲଜ୍ଜାଏ ସେ ଅସୁରଙ୍କ ଅଙ୍ଗେ ନ ଭେଦଇ ।
ଶାର ପାଇଣ ଅସୁରେ ହୋଇ କୋପମୁଖ
ଦେବତାମାନଙ୍କୁ ଗାଳିଦିଅନ୍ତି ଅନେକ ।
ଭ୍ରମେ ଦେବତାଏ ଅଟ ଆମ୍ଭ ଭକ୍ଷ ପୁଣ
ତୁମ୍ଭ ମାଂସ ଖାଇ ତୋଷ ହୋଇବେ ଖଗଗଣ ।
ଜନ୍ତୁ ଜନ୍ତୁ ଶସ୍ତ୍ର ମଗାଳରେ ସେ ହୁଅନ୍ତି
ଭେଟନ୍ତି ତାହାକୁ ସଂଗ୍ରାମେ ମାତ ସେ କୁହନ୍ତି ।
ଦେବନ୍ତ ଦେଖ ଉଡ଼ିଲା ସେ ଯୁଦ୍ଧ ଅଗୋଚର
ଦେବତାଙ୍କ ଅସ୍ତ୍ରେ ଦୈତ୍ୟ ପଡ଼ିଲେ ଅପାର
ଯେସନେ କଦଳୀବନ ବାତାଘାତେ ଧ୍ୱଂସ
ଅସୁରବଳ ତେସନେ ପଡ଼ି ଗଲେ ନାଶ ।
ମଡ଼ାର ଉପରେ ମଡ଼ା କୁଢ଼ କୁଢ଼ ହୋଇ
ହାତୀ ଘୋଡ଼ା ପଦାତି ଯେ ଲକ୍ଷପାଇ ଯାଇ ।
ରକତେ କର୍ଦ୍ଦମ ହୋଇଗଲା ମହୀଆନୀ
ରକ୍ତ ବହେ ଯେଉଁପରି ନଦୀ ଯେ ଉଛୁଳି ।
ରକତ ନଦୀରେ ମଡ଼ା ଯାଉଛନ୍ତି ଭାସି
ଗୃଧ୍ର ଶୃଗାଳେ ବସିଣ ସୁଖେ ମାଂସ ଭକ୍ଷି ।
ଅସୁରଙ୍କ ହାତେ ଦେବଗଣ ଯେ ପଡ଼ିଲେ
ଆକାଶେ ଥାଇ ନାରଦ ମୁନି ଦେଖୁଥିଲେ ।
କଳି ଖୋଜୁଥିଲୁ ସେହି ମୁଠାଏ ବୁଣିଲେ
ଲଗୁ ଲଗୁ ବୋଲି ତହିଁ ନାଟ ଆରମ୍ଭିଲେ ।

ହରଷିତ ଭଇ ବୀଣା ନାଦ ସେ କରନ୍ତି
ମହାଆନନ୍ଦରେ ମୁନି ଯୁଦ୍ଧକୁ ଦେଖନ୍ତି ।
ଏହିପରି ଦ୍ୱନ୍ଦ୍ୱଭର ସଂଗ୍ରାମ ହୋଇଲା
ଅନେକ ଅସୁରବଳ ତହିଁ କ୍ଷୟ ଗଲା ।
ଅସୁରବଳ ବିନାଶ ଦେଖି ପ୍ରୋଡ଼ାସୁର
ବଳକଲି ଯଶ ମୋର ନୋହିବ ଏଥର ।
ମର୍ତ୍ତ୍ୟମଣ୍ଡଳରେ ମୁହିଁ ଜଗତରେ ଭଲ
କାହାର ହାତରେ ଅପଜୟ ନ ପାଇଲି ।
କୁଭକେଶୀ ସଙ୍ଗେ ମୁହିଁ କଲଇଁ ସମର
ଅନେକ ସୈନ୍ୟବଳ ସେ ମାଇଲା ମୋହର ।
ନାରଦ ଥାଇଣ ତାହା ଶୁଣାଇଣ ଦେଲେ
ଦେବତାଙ୍କ ହାତେ ଅପଜୟ ହେଲା ଭଲେ ।
ଏତେକ ବୋଲି ଅସୁର କୋପଭର ହୋଇ
ଧନୁରେ ନାଗଶରମାନ ପୂରାଇଲା ନେଇ ।
କୋପେ ଦେବତାମାନଙ୍କୁ ମାରି ଗୋଡ଼ାଇଲା
ଏକ ଏକ ନାଗର ସେ ଜଣକେ ବାନ୍ଧିଲା ।
କେତେ କୋଟି ମାରନ୍ତେ ସେ ଅସ୍ତ୍ର ଶସ୍ତ୍ରମାନ
ପଡ଼ିଲେକ କୁଢ଼ କୁଢ଼ ହୋଇ ଦେବଗଣ ।
ଦେଖି ତାହା ଶଙ୍ଖଗ୍ରୀବ କୋପେଣ ଧାଇଁଲା
ପ୍ରୋଡ଼ାଅସୁରକୁ ଯାଇଁ ଦାଟ ଓଗାଳିଲା ।
ବୋଇଲା ଅସୁର କହିଁ ସୈନ୍ୟ କୁହ ନାଶୁ
ଆଜ ଜଣାଇଁ ମୁହିଁ ତୋତେ ଧୂଳିପାଂଶୁ ।
ଏତେ ବୋଲି ଶଙ୍ଖଗ୍ରୀବ ନାରାଚ ପୂରାଇ
ଅସୁରର ଉପରକୁ ପଠାଇ ବାହଇ ।
ଅଙ୍ଗେ ବାଜନ୍ତେ ନାରାଚମାନ ନ ଭେଦିଲା
ପ୍ରଜ୍ୱଳିତ ଅଗ୍ନି ପରି ଜଳିଣ ଉଠିଲା ।
ଟହ ଟହ ହୋଇକରି ହସିଲା ଅସୁର
ସହସ୍ରେ ନାରାଚ ପୁଣି ବାହଇ ଟହର ।
ଇନ୍ଦ୍ରର ଅଙ୍ଗରେ ତାହା ବାଜିଲାକ ଯାଇଁ
ହାବୋଡ଼ା ଶରରେ ଶକ୍ର ଦେଲେକ ଉଡ଼ାଇ ।
କୋପେଣ ଅସୁର ତହୁଁ ଆପଣର ହେଲା
ଲକ୍ଷେକ ନାରାଚ ପୁଣି ଗୁଣେ ବସାଇଲା ।
ତାହା ସବୁ ସନ୍ଧାନିଣ ସହସ୍ରଲୋଚନ
ପଞ୍ଚାଶତ ନାରାଚ ସେ ଚଢ଼ାଇଲା ପୁଣ ।
ଅସୁରର ଉପରକୁ ମନ୍ତ୍ରଣ ବାନ୍ଧିଲା
ଅସୁର ଉପରେ ଯାଇଁ ସେ ଶର ପଡ଼ିଲା ।

ସେହ୍ଲା ଫୁଟି ସେ ଭାରତ ଝଞ୍ଜଣ ଘଇଁ
ଝଳ ଖଳ ହୋଇ ଉଲ୍କା ହୋଇଲା ବହ୍ନି ।
ରୁଧିର ବର୍ଷିବାରୁ ସେ ନ କରଇ ଶଙ୍କା
ବାୟୁବେଗେ ରଥ ଚାଳେ ହୋଇ ଉଣେଙ୍କା ।
ଦୁହେଁ ମହାକ୍ଷୀ ନେତ୍ର ନ ଧୁଞ୍ଚନ୍ତ ରଣେ
ନାଗର ସେ ମଣ୍ଡଳର ହାନ୍ତି ଚଣେ ଚଣେ ।
ଦୁଇଗଜ ଦୁଇବନ ସମାନ ହୋଇଲେ
ନାଗର ଘାଇରେ ସେହ୍ଲାମାନ ସେ ଛୁଟିଲେ ।
ନାଗର ତେଜେ ଆକାଶ ଧୂମମୟ ହୋଇ
ଦିବସ ଯେ ଅନ୍ଧକାର ପ୍ରାୟେକ ଦିଶଇ ।
ଦେହୁଁ ତେଜ ସମାନ ସେ ଅଧିକ ହୋଇଲ
ଦେଖି ତାହାଙ୍କୁହିଁ ଭତ୍ତି ଜଣନା ନୋହିଲ ।
ଯେତେକ ଅସୁରବଳ ତହିଁ ଆସିଥିଲେ
ଦେବତାଙ୍କ ଶରଘାତେ ସର୍ବେ ନାଶଗଲେ ।
ହାତି ରଥୀ ଘୋଡ଼ା ଯେତେ ସବୁ ଗଲେ କ୍ଷୟ
ମନ୍ତ୍ରୀକି ବେନି ରହିଛି ଏକା ଦୈତ୍ୟରାୟ ।
ଛୁଦ ଦିବସ ସମର କ୍ଷଣେ ନ ଭଦଇ
ରକତରେ କର୍ଦ୍ଦମ ସେ ହୋଇଅଛି ମହୀ ।
ଦେବ ଦାନବରେ ଯେଉଁ ଯୁଦ୍ଧ ଘୋରତର
ଶସ୍ତ୍ର ଭେଦେ ଅଙ୍ଗ ହେଲା ରକ୍ତ ଜରଜର ।
ନଜବଳ ହତ ଦେଖି ପ୍ରୋଡ଼ାସୁର ରାୟ
ମନେ ବିସ୍ମରଇ ଏଥି ହୋଇବ କି ଜୟ ।
ଏତେକ ଭାଳି ସେ କରେ ଗଦା ଏ ଧରଇ
ଶତ୍ରୁରାଜା ଅଙ୍ଗ ନେଇ ବୁଲାଇ ପିଟିଲ ।
ଗଦା ବାଜନ୍ତେଣ ଇନ୍ଦ୍ର ଅଙ୍ଗକୁ ଘାତିଲେ
ଭଙ୍ଗ ନ ହୋଇ ଠିକ ଠିକ ସେ ରହିଲେ ।
ରଥର ଉପରୁ ଦୈତ୍ୟ ବେଗଇଁଣ ଡେଇ
ମଥେ ନେଇ ଇନ୍ଦ୍ରରାଜା ଉପରେ ମାରଇ ।
କ୍ଷୁଧାଘାତ ପାଇ ଇନ୍ଦ୍ର ମନେ କୋପ କଲେ
ବଜ୍ର ସୂଚି ଶର ସେହୁ ହସ୍ତରେ ଘେନିଲେ ।
ଅସୁର ଉପରେ ତାହା ନେଇ କଷ୍ଟିଲେ
ସନ୍ଧାନରେ ପ୍ରୋଡ଼ାସୁର ମନେ ବୋଇଲେ ।
ବଜ୍ର ପଡ଼ନ୍ତେ ଅସୁର ଛେଡ଼େ ପ୍ରାଣହାର
ଦେଖିଣ ନାରଦ ତାହା ହରଧ୍ୱନି କର ।
ରଥେ ଥାଇଁ ଦେଖିଲ ସେ ତାହା ମନ୍ତ୍ରୀବର
ନକେ ନାଶ ହେବା ଭୟେ ହେଲ ଥରହର ।

ଏତେ ଭାଳ ମନରେ ସେ ମହାଭୟ କଲ
ତାର ଭୟ ଦେଖି ସୁରପତି ବଚ୍ଛରଙ୍କ ।
ଏହାକୁ ମାଇଲେ ଅବା ହୋଇବ କି ଯଶ
ଏହୁ ସେ ସେବକ ଜନ ଦୈତ୍ୟର ବିଶ୍ୱାସ ।
ଇନ୍ଦ୍ର ତାଙ୍କୁ ବୋଇଲେ ହେ ଶୁଣ ମନ୍ତ୍ରୀବର
କିମର୍ଥେ ଭୟରେ କମ୍ପ ଦେଉ ଥରହର ।
ତୋହର କି ଦୋଷ ଅବା ହୋଇଛି ଏଥିରେ
ତୁ ସେବକ ଲୋକ ଭୟ ନ କର ମନରେ ।
ଏଣୁ ଭୟେ ଛାଡ଼ି ତୁହି ତୋର ରାଜ୍ୟ ଯାଇ
ରାଜା ମନେ ବୋଲି ବଞ୍ଚି କର ସାନ୍ତ୍ୱ ସାନ୍ତ୍ୱ ।
ମନ୍ତ୍ରୀ ବୋଲେ ପ୍ରଭୁ ତୁମ୍ଭ ଆଜ୍ଞା ପରମାଣେ
ଦାରତା ଯାଇଁ କରିବି ରାଜ୍ୟ ଏହିକ୍ଷଣେ ।
ଅନୁକ୍ଷଣେ ମୁଁ ସେବକ ପୁତ୍ରର ଅଟଇ
ସବୁବେଳେ ତା ଚରଣେ ମୁହିଁ ଖଟିଥାଇ ।
ଶୁଣି ଦେବରାୟ ତାକୁ ହସି ପଚାରିଲେ
ସତ କହିବୁ ହେ ମନ୍ତ୍ରୀ ଏ ମୋହର ଭୁଲେ ।
ଏହାର ଯେ ବାପ ନାମ ଜାଣୁଛି କି ତୁହି
କି ନାମ ଅଟଇ ମୋତେ କହ ତୁ ବୁଝାଇ ।
ମନ୍ତ୍ରୀ ବୋଇଲା ଗୋସାଇଁ ସାବଧାନେ ଶୁଣ
ଏହାର ପିତାର ନାମ ରୁଦ୍ରାସୁର ଜାଣ ।
ବଡ଼ ଗରିଷ୍ଠ ଅଟଇ ସେ ଦୁଷ୍ଟ ଅସୁର
ଅପ୍ରୀତି ଅର୍ଜିଛି ସେହୁ ଦେବଙ୍କ ସଙ୍ଗର ।
ଇନ୍ଦ୍ର ବୋଲେ ସେ ଅସୁର କାହା ହସ୍ତେ ମଲା
ଏକଥା ଗୋଟାକ ମୋତେ ସନ୍ଦେହ ଲାଗିଲା ।
ଅର୍ଜ୍ଜୁନର ହସ୍ତେ ସେହି ଅସୁର ମରିଛି
ପ୍ରୋଡ଼ାସୁର ପୁଅ କଥା ଶୁଣ ମୁଁ କହୁଛି ।
ମନ୍ତ୍ରୀ ବୋଲଇ ଏହାର ପୁତ୍ର ଏକ ଅଛି
ତାର ନାମ କାମବୋଲି ଶତ୍ରୁରାୟ ପୁଚ୍ଛି ।
ମନ୍ତ୍ରୀ ବୋଲଇ ତା ନାମ ଅଟେ ମୂଢ଼ାସୁର
ଏହା ଶୁଣି ସହସ୍ରାକ୍ଷ ହସେ ଖଳଖଳ ।
ବାପ ନାମ ହୋଇଲାକ ପୁଣି ରୁଦ୍ରାସୁର
ତାର ପୁତ୍ର ନାମଟୋଟା ହେଲ ପ୍ରୋଡ଼ାସୁର
ନାତି ନାମ ସେହିପରି ମୂଢ଼ାସୁର ହେଲ
ଏହିପରି ନାମ କାହିଁ ଶୁଣା ତ ନ ଥିଲ ।
ଏ ଉତ୍ତମ ନାମ କହୁଁ ପାଇଲେ ସେ ହାବେ
ମନ୍ତ୍ରୀକି ବହୁ ପ୍ରଶଂସା କରି ସୁରଇନ୍ଦ୍ରେ ।

ଟ ବୋଇଲେ ବୃଦ୍ଧ ହୋଇବ ଯାଅ ନିଜ ଦେଶ
ମୃତ୍ତାସୁରକୁ ତୁ ଯାଇଁ କର ରାଜ୍ୟ ଈଶ ।
ଆଜ୍ଞା ପରମାଣେ ତହୁଁ ମନ୍ତ୍ରୀ ଚଳିଗଲା
ଆପଣା ରାଜ୍ୟରେ ଯାଇ ପ୍ରବେଶ ହୋଇଲା ।
ପ୍ରୋଢାସୁର ନାଶି ଇନ୍ଦ୍ରରାଜା ବାହୁଡ଼ିଲେ
ଅମର ପୁରରେ ଯାଇ ପ୍ରବେଶ ହୋଇଲେ ।
ବାଜଣା ପାଇ ଭୁବନେ ଶଚୀ ମହାଦେଇ
ଅର୍ଘ୍ୟଥାଳୀ ଘେନି ଆସି ଇନ୍ଦ୍ରଙ୍କୁ ବନ୍ଦାଇ ।
ବନ୍ଦାପନା କରି ଘେନି ଭିତରକୁ ଗଲେ
ସଖୀଙ୍କୁ ମଣ୍ଡାଣ ହୋଇ ଭୃତ୍ୟଙ୍କୁ ବୋଇଲେ ।
ସୁଧର୍ମା ସଭା ଯେ ତହୁଁ ମଣ୍ଡିଣି ହୋଇଲା
ଜୟ ଘଣ୍ଟାରେ ତାଙ୍କୁ ଦେବଙ୍କ ମୁଁଇଲା ।
ରଥରେ ଯେ ଇନ୍ଦ୍ର ରଙ୍ଗେ ମଣ୍ଡିଣ ପାଇଲେ
ଅମୃତ ପାନରେ ସେହି ଆତ୍ମା ତୋଷକଲେ ।
ସୁଧର୍ମା ସଭାରେ ସର୍ବେ ବିଜେକଲେ ଯାଇ
ଈଶ୍ୱର ଗଜନ ଦୁହେଁ ତହିଁ ସଙ୍ଗ ହୋଇ ।
ଦେବତାଏ ଯେ ଯାହାର ଆସନେ ବସିଲେ
ଇନ୍ଦ୍ରର ମୁଖରୁ ଯୁଦ୍ଧ ବାରତା ଶୁଣିଲେ ।
ଅସୁର ବିନାଶ ଶୁଣି ସମସ୍ତେ ହରଷ
ପୁଷ୍ପମାର ଝର ତହୁଁ ହୋଇଲା ଉଲ୍ଲାସ ।
ନାଚନ୍ତି ସ୍ୱର୍ଗର ଅପସରା ସୁଖ ପାଇ
ସ୍ୱର୍ଗ ଭୁବନ ଆନନ୍ଦ କହି ନ ହୁଅଇ ।
ଅଗସ୍ତି କହନ୍ତି ଆହେ ମନୁରାଜେ ଶୁଣ
ଏ ପ୍ରକାରେ ପ୍ରୋଢାସୁର ପାଇଲା ମରଣ ।
ତାହା ଶୁଣିଣ ବାଳଙ୍କ ଦେଶ ଦଣ୍ଡଧର
ମୁନଙ୍କୁ କରଇ ଶତବାର ନମସ୍କାର ।
ତାହାର ପୁତ୍ର ଯେ ସେହି ମୃତ୍ତସୁର ଥିଲା
ପିତାର ମରଣ ଶୁଣି କଷ ବସୁଭଲା ।
ରାଜା ଏଥିକେ କହନ୍ତି ତାଙ୍କୁ ମୁନିବର
ରାଜ୍ୟରେ ପ୍ରବେଶ ହେଲା ଯାଇ ମନ୍ତ୍ରୀବର ।
ସେ ରାଜ୍ୟର ଲୋକ ତାଙ୍କୁ ସମ୍ବରନ୍ତି କେହ୍ନେ
ବୃଦ୍ଧ ତ ଅଇଲୁ ରାଜା ଅଛନ୍ତି ତ କାହିଁ ।
ମନ୍ତ୍ରୀ କହିଲା ଯେ ରାଜା ସମରେ ପଡ଼ିଲା
ସହସ୍ର ସହିତ ଇନ୍ଦ୍ର ଦେବତା ମାରିଲ ।
ଏକାହୋଇ ପ୍ରାଣରକ୍ଷା ମୁହିଁ ଅଇଲଇଁ
ମୃତ୍ତା ଅସୁରକୁ ରାଜ କରିବାର ପାଇଁ ।

ପିତାର ମରଣ ଶୁଣି ସେହି ମୃତ୍ତାସୁର
ଅନେକ ରୋଦନ କଲା ମନ୍ତ୍ରୀର ଆଗର ।
ତହୁଁ ମନ୍ତ୍ରୀ ବୋଲେ ତାକୁ ବୋଧକରି ଶାନ୍ତ
ଶାନ୍ତ ମନ୍ତ୍ରୀ ଘେନି ବୃଦ୍ଧ ତୁଅସି ନୃପତ ।
ପିତାର କି ସ୍ୱାମୀମାନ ଯେ ସାରଣ ତତ୍ତ୍ୱ
ଅଳମୁଷ ରାଜ୍ୟରେ ସେ ହୋଇଲା ନୃପତ ।
ଧାଇମନ୍ତ୍ରୀ ସାମନ୍ତ ଯେ ଘେନି ରାଜ୍ୟକଲା
ବଡ଼ ଗର୍ବ କାହାକୁ ଡରେ ନ ଡରିଲା ।
ଅନେକ ସୁଖରେ ସେହୁ ରାଜ୍ୟ କରୁଥାଇ
ଦେବ ଦାନବେ ମାନବେ ଭଟେ ନ ଡରଇ
ଏବେ ଶୁଣିଲୁ ତ ଆହେ ମନୁ ନୃପବର
ଏ ମେ ମଧ୍ୟପର୍ବ ଦେବ ଭାରତ ଆଖ୍ୟାନ ।
ବନ୍ଦଇ ଶ୍ରୀ ନାରାୟଣ ଜଗତ କାରଣ
ଭକତବତ୍ସଳ ଯୋଗୀ ଜନଙ୍କର ଧ୍ୟାନ ।
ଦୟାନିଧି ନାମ ପୁଣି ଅଟଇ ଯାହାର
ଯେ ଦରିଦ୍ର ଜନଙ୍କର ଅଟଇ ସୋଦର ।
ଅରକ୍ଷିତ ଲୋକଙ୍କର ଅଟଇ ଯେ ବନ୍ଧୁ
ତେଣୁ ତାହାଙ୍କର ନାମ ଅଟେ କୃପାସିନ୍ଧୁ ।
ପତିତପାବନ ତାହା ପତିତ ତାରଣ
ଭବଭୟ ଦୁର୍ଗତିରୁ ରଖ ନାରାୟଣ ।
ତୁଳସୀବଲ୍ଲଭ ପାଦପଦ୍ମେ ମୋର ଆଶ
କର ଶାରଳାଦାସକୁ ଚରଣ ଛାଇବାସ ।
ବନ୍ଦଇ କମଳା ମା ଗୋ ବିଷ୍ଣୁ ପାଟରାଣୀ
ତୁ ଅଭୟ ବରଦାତ୍ରୀ ଦୁର୍ଗତି ତାରିଣୀ ।
ଦୁଃଖ ବିନାଶିନୀ ମାତୋ ସିନ୍ଧୁର ଦୁହିତା
ସର୍ବଜନଙ୍କର ମାତା ଅଟୁ ସର୍ବଦା ଗୋ ।
ନିତ୍ୟ ନିତ୍ୟ ଯେଉଁଜନ ତୋ ପାଦେ ବନ୍ଦନ୍ତି
ତୁ ସିନାକ ଲକ୍ଷ୍ମୀ ତାଙ୍କୁ ହୋଇ ମହାସଖୀ ।
ସମୁଦ୍ର ଜନ୍ମ ତାରୁ ସିନ୍ଧୁଜା ତୋ ନାମ
ଚଞ୍ଚଳା ବୋଲି ନାମ କହନ୍ତି ବଖାଣ ।
ସେହି ଲକ୍ଷ୍ମୀନାରାୟଣ ଚରଣ କମଳେ
ଶୂଦ୍ରମୁନି ଶାରଳାର ଶିର ସଦା ଲୁଚେ ।

---

## ଉଷା ହରଣ

ଏଥୁଅନ୍ତେ କର ବୃଦ୍ଧ କୃଷ୍ଣଭକ୍ତି ଶିଷ୍ୟ
ଶୁଣନ୍ତେ ମୋର ପାତକ ହୋଇପିବ ଧ୍ୱଂସ ।

ଅଗସ୍ତି ବୋଇଲେ କୁହୋ ଶୁଣ ନୃପଗଣ
ଏଥୁଅନନ୍ତରେ ହେବ ଉଷା ଯେ ହରଣ ।
ନମସ୍ତେ ଶାରଳା ଦେବୀ ଝଙ୍କଡବାସୀ
ଅଭୟ ବରଦାୟିନୀ ସର୍ବ ଦୁଃଖ ନାଶି ।
କଳିକାଳ ବିଧ୍ୱଂସିନୀ କରୁଣାବାରିଧି
କରିବା କରୁଣା ମୋତେ କୃପା ପୟୋନିଧି ।
ତୁ ଗୋ ସରସ୍ୱତୀ ହରହର ପାଟରାଣୀ
ହୋଇବ ସଦୟ ମୋତେ ହରିର ଘରଣୀ ।
ଅନାଦି ଅପର୍ଣ୍ଣା ମାଗୋ ଅଟୁ ମାହେଶ୍ୱରୀ
କୋଟି ପ୍ରଳୟ ନିମିଷ ମାତ୍ର ତୋତେ ସରି ।
ଶୁଦ୍ଧ ସ୍ଫଟିକ ବରନ ଅଭୟା ଶୃଙ୍ଖଳା
ଦୁର୍ଗତି ନାଶିନୀ ମାଗୋ ସରବ ମଙ୍ଗଳା
ସଜ୍ଜନ ଜନମାନଙ୍କ ହୃଦେ ତୋର ବାସ
ଶାରଳାଦାସର ତବ ପାଦେ ମାଗେ ଆଶ ।
ଯହୁଁ ପରସନ୍ନ ମୋତେ ଶ୍ରୀଚଣ୍ଡୀ ଶାରଳା
ତେଣୁ ମୁଁ ସପତ ସିନ୍ଧୁ କରି ଲେଉଡ଼େ ଗୋଳା ।
ବ୍ରହ୍ମାଙ୍କୁ ଅଗୋଚର ଯେ ଶ୍ରୀମହାଭାରତ
ସପତ ସମୁଦ୍ର ମୁହିଁ କରିବ ତରନ୍ତ ।
ବ୍ୟାସ ମହାମୁନି ସେ ଯେ ଏଥିର କାରଣ
କରିବାକୁ ସାମରଥ ସେ ଅଷ୍ଟ ପୁରାଣ ।
କୋଟିଯୁଗ ବସି ସେହୁ ଅନ୍ତ ନ ପାଇଲେ
ମହାଭାର ହେତୁ ସେ ଭାରତ ନାମ ଦେଲେ
ବଦନ୍ତି ଅଗସ୍ତି ମୁନି ଶୁଣ ମନୁରାୟେ
ସଂକ୍ଷେପି କହିବାକୁ ଯେ କାର ଶକ୍ୟ ହୁଏ ।
ତୁ ଯେ ପଚାରିଲୁ ଏବେ ଶୁଣ ନୃପଗଣ
ଉଷାହରଣ ହୋଇବ ଶୁଣିବାକ ପୁଣ ।
ଏ ଯେ ମହାଭାରତର ମଧ୍ୟପର୍ବ କଥା
ହରଇ ନାନା ଦୁଷ୍କୃତ ମୁଣି ମନୋବ୍ୟଥା ।
ଅନ୍ତେ ବଇକୁଣ୍ଠେ ବାସ ବ୍ୟନ୍ତ ଚକ୍ରପାଣି
ନାନାବିଧ ପାତକୁ ତରିଯାନ୍ତି ଭବେ ପ୍ରାଣୀ ।
ତୁ ଯେ ଧାର୍ମିକ ବଡ଼ଦକ୍ଷ ଆଉ ପୁଣ୍ୟବନ୍ତା
ଏକମନେ ଶୁଣ ଉଷା ହରଣର କଥା ।
ଶୋଣିତ ନାମରେ ପୁର ବୈତରଣୀ ତୀରେ
ବାଣାସୁର ନାମରେ ଯେ ଚନ୍ତି ନୃପବର ।
ବଳିସୁତ ଈଶ୍ୱରଙ୍କ ଠାରୁ ପାଇ ବର
ଯୁଗେ ଯୁଗେ ଅମର ସେ ସହସ୍ରେ ତା କର ।

ମହା ଶୈବବର ସେହୁ ଅଟେ ଭକ୍ତଣପ
ଶିବପ୍ରିୟ ଆବର ତା ଭୟଙ୍କର ରୂପ ।
ତାର କୋଳେ ଜାତହେଲା ଏକଇ ଦୁଲଣୀ
ପାର୍ବତୀଙ୍କ ରୂପକୁ ଯେ ପାଇଲା ସେ ଜାଣି
ଫାଲ୍‌ଗୁନ ଶୁକ୍ଳସପ୍ତମୀ ତିଥି ଚନ୍ଦ୍ରବାର
ରୋହିଣୀ ବୃଷଚନ୍ଦ୍ର ଯେ ଅଟେ ସେ ବଦର ।
ଗର ନାମେ କରଣ ଯେ ପ୍ରୀତି ନାମେ ଯୋଗ
କୁମ୍ଭ ସଂକ୍ରାନ୍ତିର ବାଇଶ ଦିନ ଭୋଗ ।
ଏମନ୍ତ ସମୟେ ଜନ୍ମ ହୋଇଲା କୁମାରୀ
ସକଳ ମଙ୍ଗଳ ତାର ପଣ୍ଡିତେ ଉଚାରି ।
ଦୁହିତାକୁ ଦେଖି ତାର ଉଲ୍ଲସିଲା କାୟେ
ତେଣୁ କରି ଉଷା ନାମ ତାହାର ସେ ଦିଏ ।
ଦିନକୁ ଦିନ ବାଳିକା ବଢ଼େ ଆନୁଆନ
ଶୁକ୍ଳ ପକ୍ଷରେ ଯେହ୍ନେ ଚନ୍ଦ୍ର ବର୍ଦ୍ଧମାନ ।
କେତେହେଁକ ଦିନେ କନ୍ୟା ହେଲା ନବଯୁବା
ଅତ୍ୟନ୍ତ ସୁନ୍ଦରୀ ଦିଶେ ତାର କୁଚଦ୍ୱୟ ।
ନୟନ ମୀନ ଉପମ ନାସା ତିଳଫୁଲ
ଦନ୍ତ ଗଜମୋତି ସମ ବନ୍ଧୁଲି ଅଧର ।
ରକତ କୁମୁଦ ଜିଣି ପାଦତଳ ରଙ୍ଗ
ଗଜହଂସ ଗମନା ସେ ଅତି ଶୋଭା ଅଙ୍ଗ ।
କୋକିଳ ବଚନେ ବାଳା ଭାଷେ ମୃଦୁବାଣୀ
ଅପାଙ୍ଗ ଦୃଷ୍ଟିରେ କାମଦେବ ପାରେ ଜିଣ ।
କର୍ଣ୍ଣରେ ତା ହେମସ୍ତପ ଗୁଚ୍ଛ ଶୁଦ୍ଧ ଗଞ୍ଜି
ତହିଁରେ ମୁକୁତା ଜ୍ୟୋତି ମନବପେ ଖଙ୍ଗେ ।
କଣ୍ଠତଟେ ଶୋଭାବନ ମୁକୁତାର ରୂପ
ବାହୁରେ ବାହୁଟି ତହିଁ ନାନା ଉହ ଆପ ।
-ସ୍ୱରେ ନୂପୁର ତାର ବାଜେ ଝୁମୁଝୁମ
ଅଙ୍ଗୁଷ୍ଠରେ ମୁଦ୍ରିକା ତା ସୂର୍ଯ୍ୟଜ୍ୟୋତି ସମ ।
ଦେବାଙ୍ଗ ବସନ ପରିଧାନ କରି ବାଳୀ
ନାନା କୁସୁମ ବେଇଣ କେଶ ତା ସମ୍ଭାଳି ।
ସଙ୍ଗେ ସହଚରୀ ତାର ଚିତ୍ରରେଖା ଘେନି
କୁସୁମ ବନର ମଧ୍ୟେ ଭ୍ରମଇ କାମିନୀ ।
ନାନା କୁସୁମମାନ ସେ ତୋଳେ ମନଇଛା
ପୂଜେ ସଦାଶିବ ପୂଜିବାକୁ ମନୋବାଞ୍ଛା ।
ମୃଦଧ୍ୱନି ଶୁଣିଣ ତା ଚମକଇ ତନୁ
ରତିଶାସ୍ତ୍ର ସୁମରଣ ବିକଳିତ ମନୁ ।

ପୁଣ ପୁଣ ତାର ବାସ ଫେଡ଼ାଇ ହସ୍ତେଗ
ଦେଖଇ ତା ସୀମନ୍ତସ୍ଥାନ ମନ ଲଗଦେଲେ ।
ଯେଣୁ ସେହୁ ଚୋପିନ ଯେ ଅଟଇ ମର୍ଦ୍ଦନ
ତେଣୁକରି ଫେଡ଼ଣ ସେ ପିନ୍ଧଇ ବସନ ।
ଚନ୍ଦ୍ରକଳା ସ୍ମରଣ ରତି ଇଚ୍ଛା କରି
ନାନା ପକ୍ଷିବନ୍ଧମାନ ମନରେ ସ୍ମରଇ ।
ମନଇରେ ଦେଖି ବସୁରଇ ଯେ ମନକୁ
ଶାନ୍ତି କରାଇ ତା'ର ବେଦନ ତନୁକୁ ।
ଖଟରେ ନିଃଶ୍ୱାସ ଯେ ଗୁଡ଼େ ଲମ୍ବନ
ତରଳତ ତନୁ ପୁଣି ବିରସ ବଦନ ।
ଚରଣ ଚଳାଇ ସେହୁ ନ ପାରଇ ଯାଇ
ଦେଖି ଚିତ୍ରରେଖା ତାକୁ ବେଗେ ସମ୍ଭାଳଇ ।
ଆଶ୍ୱାସନା କରି ତହୁଁ ନଜଯୁରେ ଗନ୍ଧ
ସୁବାସିତ ଜଳ ନେଇ ବଦନେ ସିଞ୍ଚିଲା ।
ସଖୀକୁ ନ ଲକ୍ଷେ କେବେ ପରମ ବଚନ
ନୁହଇ ସୁବେଶ ପୁଣ ନ ପିନ୍ଧେ ବସନ ।
ତଥିର ଚିତ୍ତ ତାହାର ଚିତ୍ରରେଖା ଜାଣି
ବହୁତମତେ ତାହାକୁ ବୋଧଇ ତରୁଣୀ ।
ନ ଘେନଇ ସଖୀର ସେ ହାସ ପରିହାସ
ଦିବସ ଅନ୍ତରେ ହେଲା ରଜନୀ ପ୍ରବେଶ ।
ଯେ ଯାହା ଘରେ ଶୋଇଲେ ଅଳସିତ ତନୁ
ପ୍ରଗାଢ଼ ଚେତ ମଣେ ସେହି ବଳି ଭନୁ ।
ଚନ୍ଦ୍ର ଶାଳାପୁରେ କୋଳ ନ ଜାଣିଲା ବାଳୀ
ନୟନରେ ନିଦ ନାହିଁ ହେବା ବିକଳା ।
ଅନେକ କଷ୍ଟେ ହୋଇଲା ନେତ୍ରଦୋଷ ଜାତି
ଅତକଷ୍ଟେ ବଞ୍ଚିଲା ସେ ଦିବସ ରଜନୀ ।
ପ୍ରଭାତ ସମୟେ ବାଳୀ ଦେଖିଲା ସ୍ୱପନ
ଦିବ୍ୟପୁରୁଷ ଏକ ତା ମିଳନ ସନ୍ନିଧାନ ।
ପଲ୍ୟଙ୍କ ପରେ ବସିଣ ଅନେକ ଆଶ୍ୱାସି
କୁଚରେ ହସ୍ତ ଦେଇଣ ନୟନରେ ଭାଷି ।
କୋଳେ ବସାଇଣ ତାର ଚୁମ୍ବଇ ବଦନ
ଏହି ସମୟରେ ତାର ହେଲା ନିଦ୍ରାଭଗ୍ନ ।
ହା ହା ନାଥ ବୋଲି ବାଳୀ ଉଠେ ଦେଲା ରଡ଼
ଶୁଣି ଚିତ୍ରରେଖା ଦାସୀ ବୋଲେ ସଦବଡ଼ ।
ଶୁଣ ଗୋ ସୁନ୍ଦରୀ ତୁମ୍ଭ ମୋହର ଯେ ବାଣୀ
ବସ୍ତପତ କଥା ଏବେ କହୁ ଗୋ ମିତଣି ।

ଚକଷିତ ପୁଷ୍ପପ୍ରାୟେ ଯେହୁ ହୋଇଅଛୁ
ଭୃଙ୍ଗ ଲଭିଲା ପରାୟେ ପୁଂସ ମନେ ଇଚ୍ଛି ।
ସଖୀର ବଚନ ଯେହୁ ଶୁଣି ମୃଦୁବାଣୀ
କହଇ ଯେ ଅଭିନବ ପୁରୁଷ ଲକ୍ଷଣି ।
ତାହାର ରୂପଗୁଣକୁ କହିବ ମୁଁ କସ
କୋଟି କନ୍ଦର୍ପ ଅଟଇ ତାହାର ଯେ ଦାସ ।
ସେହି ପୁରୁଷ ଆସି ମୋ ଶଯ୍ୟାରେ ବସିଲା
ଅଧର ଚୁମ୍ବଣ କଟୁବଚନ ଭାଷିଲା ।
ଏହିକ୍ଷଣେ ଥିଲା ଉଲା କେବଣ ଯେ କଥ
ଏତେ କହି ଭୂମିପରେ ପଡ଼ିଲା ଯୁବତୀ ।
ତୋଳିଧରି ଚିତ୍ରରେଖା କହଇ ଆଶ୍ୱାସ
ଅଦଭୁତ କାହିଁ ଏଥି ଅଇଲା ପୁରୁଷ ।
ସଚେତ ହୋଇଣ ସଖି କହ କଥା ମୋତେ
ତିନିପୁରେ ଥିଲେ ତାକୁ ଆଣିଦେବ ତୋତେ
ନୁହସି ଅଜ୍ଞାନ ତୁହି ସଙ୍କେତ ଯେ କହି
ସଖୀର ବଚନ ଶୁଣି ଚେତିଲା ସେ ମୋହ ।
ପାଦ ଧରିକରି କହେ ବହୁତ ବିନୟେ
ତୁ ମୋତେ ସଙ୍ଗାତ ଆଗେ ହୋଇସି ସଦୟେ
ତୁ ହେବେ ନିଷ୍ଠୁର ମୋର ଅଟୁ ଗୋ ମିତଣି
ଅବଳନେ ପଡ଼ ମୋତେ ନିଶ୍ଚେ ଦେବୁ ଆଣି
ସ୍ୱପନେ ଦେଖିଲି ମୂର୍ତ୍ତି ଯେସନ ମୂରତ
ସେ ମୋହର ଜାଣ ସଖି ନିଶ୍ଚେ ପ୍ରାଣପତି ।
ତାହାର ବିହୁନେ ମୋର ନ ଧରଇ ଜୀବ
ସେହି ରେ ସଖି ମୋହର ଜୀବର ଜୀବନ ।
ତାହାକୁ ତୁ ସଖି ଆଜ ଆଣଦେବୁ ମୋତେ
ଅନେକ କାକୁସ୍ତି ହୋଇ କହୁଅଛୁ ତୋତେ ।
ଏତେ ବୋଲିକରି ବାଳା ଧରଇ ଚରଣ
ମୁଁ ପ୍ରାଣଥାମାଗି ମୋତେ କରସି କାରଣ ।
ଚିତ୍ରରେଖା ବୋଇଲା ଗୋ ଶୁଣ ପ୍ରାଣସଖି
ମୋର ଅମ୍ବ ବାଇଚୁଲି ତୋର କଷ୍ଟ ଦେଖି ।
କେବଣ ପୁରୁଷକୁ ତୁ ଦେଖିଲୁ ସ୍ୱପନେ
ଚିତ୍ରପଟ ଲେଖୁଅଛି ଦେଖ ଗୋ ନୟନେ ।
ଯେ ତୋହର ଇଚ୍ଛା ମୁହିଁ ଆଣିଦେବି ତାହା
ଏହି ଚିତ୍ରପଟେ ସଖି ନିରେଖିଣ ଚାହାଁ ।
ଏତେ ବୋଲି ଚିତ୍ରରେଖା ଚିତ୍ରପଟ ଫେଇ
ଜଣ ଜଣ କରି ନାମ ଧରିଣ କହଇ ।

ଏ ଯେ ସଖି ଦେଖ ସ୍ୱରଗର ଦେବରାଜ
ଦେଖ ଚନ୍ଦ୍ରସେନ ଆଉ ତାହାର ଅନୁଜ ।
ଇନ୍ଦ୍ରାଦି ଲୋକ ଏହୁ ବରୁଣ କୁବେର
ତେତିଶକୋଟି ଦେବତା ଦେଖାଇ ଏଥର ।
ଗନ୍ଧର୍ବ କିନ୍ନର ବିଦ୍ୟାଧର ଯେ ମାନନ୍ତ
ଏକ ଏକ କରି ସେହୁ ଦେଖାଏ ସମସ୍ତ ।
ନାଗଲୋକ ଦେବଲୋକ ବ୍ରହ୍ମଲୋକ ଯାଏ
ଚିତ୍ରପଟରେ ଦେଖିଣ ସଖୀଙ୍କୁ ଦେଖାଏ ।
ମଧ୍ୟଭୁବନେ ଅନନ୍ତ ଲେଖିଲା ନୃପତି
ଜଣ ଜଣ କରି ସେ ଦେଖାଏ ଯୁବତୀ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଅନ୍ୟ ଜାତି
ଚିହ୍ନି ନ ଦେଖିଣ ବାଳୀ ହରଷ ନୋହେ ମତି ।
ଦ୍ୱାରକାପୁରର ରାଜା ନାମ ଉଗ୍ରସେନ
ସାତବଂଶ ଯାଦବଙ୍କୁ ଲେଖେ ଆନୁଆନ ।
ରାମକୃଷ୍ଣଙ୍କୁ ଦେଖିଣ ହରଷ ଚଉଷି
ପ୍ରଦ୍ୟୁମ୍ନେ ଦେଖି ଲଜକୁଁ ବାଳୀ ମୁଖକର ।
କୃଷ୍ଣର ଲକ୍ଷେ ଷାଠିଏ ସହସ୍ର ନନ୍ଦନ
ସମସ୍ତ ଅଟନ୍ତି ଶ୍ରୀକୃଷ୍ଣଙ୍କ ଚିହ୍ନ ବର୍ଣ୍ଣ ।
ପୁଣି ଦେଖିଲାକ ସେହୁ ଅନିରୁଦ୍ଧ ବୀର
ଅତି ସୁକୁମାର ତନୁ ନାହିଁ ଘଟାନ୍ତର ।
ଦେଖିଣ ତାକୁ ହରଷ ହୋଇଲାକ ବାଳୀ
ଦେଖିସାରି ଚିତ୍ରପଟ ରଖିଲାକ ତେଳି ।
ଆନନ୍ଦରେ ଅଶ୍ରୁଜଳ ବହେ ନେତ୍ର ବେନି
ଚିତ୍ରରେଖା ବୋଇଲା ତୁ ଶୁଣ ଗୋ ସଜନି ।
ଶ୍ରୀକୃଷ୍ଣର ନାତି ସେହୁ କନ୍ଦର୍ପର ସୁତ
ରତି ମହାସତୀ ଅଟେ ଏହାଙ୍କର ମାତ ।
ଶତେ ବେଳ ଯେହୁ ଗଙ୍ଗାଜଳେ ଝାସିଥାଇ
କୋଟି ଲିଙ୍ଗ ପୂଜିଥିଲେ ଏହାଙ୍କୁ ସେ ପାଇ ।
ଏ ଯେ ସଖି ଅଟନ୍ତି ଯେ ପୁରୁଷରେ ସାର
ଧନ୍ୟ ଜୀବନ ଅଟଇ ସଙ୍ଗରେ ତୋହର ।
ବୋଲଇ କୁମାରୀ ତୁରେ ଶୁଣ ଗୋ ମିତଣି
ମେ ଏଠେ ତୋର ବଶ୍ୟା ଅଛି ଯେବେ ସତି
ତେବେ ସଖି ମୋତେ ଆଣିଦିଅ ଏହି ପତି
ଏହା ବିନୁ ଆନେ ମୋର ନ ବଳଇ ମତି
ପ୍ରଣ ପ୍ରଣ ଦଣ୍ଡବତ ମୁଁ କରୁଅଛି ତୋତେ
ଏ ମହାକଷ୍ଟରୁ ସଖି ପାର କର ମୋତେ ।

ଉଠି ଉଷା ବୋଇଲାକ ଧରଇ ଚରଣ
ବହୁ ବିନତି କରିଣ କରଇ କାରୁଣ୍ୟ ।
ଚିତ୍ରରେଖା ବୋଇଲା ଗୋ ଶୁଣସି ବଚନ
ଆଜ ଆଣିଦେବି ତୋତେ ପ୍ରଦ୍ୟୁମ୍ନର ବାଳ
ମନେ ଧର ଆସିବାଯାଏ ଧୈର୍ଯ୍ୟଧର ଥାଅ
ଆଜ ଦେଖିବୁ ତୋତେ କନ୍ଦର୍ପର ପୁଅ ।
ନାରଦଙ୍କ ମନ୍ତ୍ର ସ୍ମରି ହୋଇଲା ବାହାର
ଅର୍ଦ୍ଧରାତ୍ରେ ମିଳିଲା ସେ ଦ୍ୱାରକା ପୁର ।
ଦେଖେ ଅନିରୁଦ୍ଧ ପଲଙ୍କରେ ଅଛି ବସି
ଦିବ୍ୟ ବିଳାସିନୀଗଣେ ନୃତ୍ୟରଙ୍ଗେ ଟେସି
ଦିବ୍ୟବେଶେ ହୋଇଅଛି ହରଷ ବଦନ
ଚଉ ଉଦବେଗ ତାର ମନ ଛନ୍ଦି ଛନ୍ଦ ।
ଆପଣା ସମ କଳ୍ପିଲା ନୁହେଁ ତାର ନାହିଁ
ଚଞ୍ଚଳ ଚଉ ତା ଚଞ୍ଚଳରେ ଭ୍ରମଇଁ ।
ଉଠଇ ବସଇ ପୁଣ ସ୍ମରଇ ତରଣୀ
କ୍ଷଣେ ଚେତା କ୍ଷଣେ ନିଦ୍ରାଇରେ ଅଚେତନ
ଚିତ୍ରରେଖା ଜାଣିଲା ଯେ ମଦନର ଗତି
ମନ୍ତ୍ର ସୁମରି ଲୋକଙ୍କ ଘେନିଲା ଚଇତ୍ତ ।
ଗଗନରୁ ବେଗହୋଇ କରଇ ଗମନ
ପ୍ରବେଶ ହୋଇଲା ଯାଇଁ ସଖୀ ସନ୍ନିଧାନ ।
ଦେଖିଲା ଯେ ଚନ୍ଦ୍ରଲତ ହୋଇଛି କୁମାରୀ
ଚିତ୍ରପଟକୁ ବୁହିଁଣ ବସିଛି ସୁନ୍ଦରୀ ।
ଏମନ୍ତ ସମୟେ ପରବେଶ ଚିତ୍ରରେଖା
ଲୋକଙ୍କ ରଖିଣ ଯାଇଁ ତାକୁ କଲା ଦେଖା ।
ସଖୀକୁ ଦେଖି କୁମାରୀ ଉଠିଲା ଆସନୁ
ଧାଇଁଯାଇଁ କୋଳ କଲା ଅସୁରର ସୁନୁ ।
ବହୁ ବିନମ୍ର ହୋଇଣ ଭଣେ ପ୍ରଭାବସର
ଆଜନ୍ତୁ ମୁଁ ସଖି ତୋର ହେଲି ପରବଶି ।
ଦେଖିଲା କୁମର ପଲଙ୍କରେ ଅଛି ଶୋଇ
ନିର୍ମଳ ଆକାଶରେ ଯେ ଚନ୍ଦ୍ର କଳା ଉଇଁ ।
ଲେପଇ ଯେ ଚତୁଃସମ ଗୋଳା ଚିତ୍ରଲେଖା
ନିଦ୍ରା ହୁଏ ପ୍ରେଷି କୁମର ଭଷ୍ଟ ପେଲ ଦେଖି ।
ଅପୂର୍ବ କାମିନୀ ଏକ ଅଛି ଉଭା ହୋଇ
ଚକିତରେ ସେ କୁମର ଚାରିଭିତେ ଚାହିଁ ।
ଚିତ୍ରରେଖା କହଇ ସେ ଯୋଡ଼ି ଦେଇକର
ଏ ସେ ଅଟଇ ଶୋଣିତ ନାରୀ ଦେବପୁର ।

ଏଥିର ନରପତି ଯେ ବାଣାସୁର ବଳେ
ଏହାର କନ୍ୟା ନାମ ଉଷା ଗ୍ରନ୍ଥରେ ଯେ ଥାଏ ।
ଅବିବାହିତା ଏ ବାର୍ତ୍ତା ଅଟେ ଜଗଦ୍ଭବା
ସଦୃଶ୍ୟ ବର ନ ପାଇ ଦୋଷ ଲକ୍ଷେ ଯେ ।
ବଜାର ଉପରେ ବୁଲୁଥିଲି ଚନ୍ଦ୍ରକଳା
କାହିଁ ଆସି ଏଥେ ତୁମ୍ଭେ ହେଲ ଉପସ୍ଥିତ ।
ଯେ ତୁମ୍ଭର ମାତା କିଏ ନାମ କୁହ ପିତା
ତୁମ୍ଭଙ୍କୁ ଦେଖିଣ ବଶ ଆମ୍ଭର ଦୁହିତା ।
କହ ନାମ ତୁମ୍ଭର ଯେ କେଉଁ କୁଳେ ଜାତ
କେଉଁ କାର୍ଯ୍ୟେ ତୁମ୍ଭେ ଏଥେ ହେଲ ଉପଗତ
କୁମର ବୋଇଲେ ଦ୍ୱାରକା ଅଟେ ଆମ୍ଭ ପୁର
ଶ୍ରୀକୃଷ୍ଣ ପୁତ୍ର ପ୍ରଦ୍ୟୁମ୍ନ, ଆମ୍ଭର ପିତାର ।
ଭ୍ରମନ୍ତେ ମୁଁ ବଣ ହୋଇ ଅଇଲି ଏଠାକୁ
ତୁମ୍ଭେ କପାଇଁ ଗୋ ଭୟ ପାଉଛ ମନକୁ ।
ଚନ୍ଦ୍ରରେଖା ବୋଲେ ବାବୁ ତୁମ୍ଭ ରୂପ ଦେଖି
ସଖୀର ତା କମ୍ପମାନ ହୋଇଲା ହେ ଦୁଃଖୀ ।
ଆମ୍ଭର ସଖୀକୁ ତୁମ୍ଭେ କରସି ସୁବସ୍ଥା
ଉଥାନ୍ତା ଯେ ଉତ୍ସୁକ କରିଛନ୍ତି ଏହା ।
କୁମର ବୋଇଲେ ଆନନ୍ଦରେ ମୋର ଧନ୍ୟ
କେବଣ ସ୍ଥଳରେ କରିଥିଲି କେଉଁ ପୁଣ୍ୟ ।
ଏ ଜନ୍ମ ଉଜରେ ଯାହା କରୁଥିଲି ଇଚ୍ଛା
ତାହାର ପୁରୁଷ ପୂର୍ଣ୍ଣ କଲ ମନୋବାଞ୍ଛା ।
ଉଭୟ ରସ ବିନୋଦେ ବେନି ଜଣେ ଭୋଗ
ଅକୁଣ ଜଳସ୍ଥ ହେଲା ରଜନୀ ହେ ଶେଷ ।
କୃତ୍ୟକର୍ମ ସାରି ଉଭଦେଶ ଶୁଭ କଲେ
ଏତେ ବୋଲିଣ ତୁମ୍ଭର ଉଠ ଧାତକା ର ।
କନ୍ୟା ଉଜରେ ତାକୁ ବସାଇଲା କେ ଟଳ
ତାହୁ ସୁନ୍ଦର ହୃଦୟ ଆଖି ତାର ଉଭେ ।
ବଦନକୁ ଦୃଷ୍ଟି ତାର ଦିଅଇ ଚୁମ୍ବନ
କୋଳାଗତ କରି ତାକୁ କଲା ଆଲିଙ୍ଗନ ।
ଏହି ବେଶ ପାତି ଗୋପ୍ୟ ହେଲା ଚନ୍ଦ୍ରରେଖା
ଉଭୟ କ୍ରୀଡ଼ା କରନ୍ତି ମନର ଯେ ଇଚ୍ଛା ।
ଉଭୟ କ୍ରୀଡ଼ା ବିନୋଦେ ବେନି ଜନ ତୋଷ
ନିର୍ଗୁଣ ଉଦୟ ଯାହ ଗତ ହେଲା ଶେଷ ।
କୃତ୍ୟକର୍ମ ସାରି ଉଭବେଶ ଶୁଭ୍ରକେଶୀ
ମୃଦୁ ଭୋଜନ ବେନି କରନ୍ତି ଯେ ବସି ।

ଗୁପତ ଚାରିତ ଏହା ନ ଜାଣନ୍ତି କେହି
କେବଳ ଜାଣଇ ଏକା ଚନ୍ଦ୍ରରେଖା ସହୀ ।
ଏମନ୍ତେ ପ୍ରୀତି କରନ୍ତି ଭବନ ଅନ୍ତରେ
ଉପର ଜଣାଇଲେ ସେ ନୃପତି ଛାମୁରେ ।
ଶୁଣ ସାବଧାନେ ତୁ ହୋ ଦୈତ୍ୟ କୁଳସାଇଁ
କନ୍ୟାପୁରେ କଳଙ୍କିତ କଥା ଦେଖିଲଇଁ ।
ଉପର କଣ୍ଠରେ ଯହୁଁ ଉପଗତ କଥା
ଗୋହ୍ମାପୁରେ ଦେଖିଲ ଯେ ପୁଂସଭାବ କଥା
ଚନ୍ଦ୍ରରେଖା ଗଣ ଦେଖିଲୁ ଯେ ଆନୁଆନ
ଏହି କଥାକୁ କେ ତେବେ ସାବଧାନେ ଶୁଣ ।
ରଜା ଶୁଣି ମୃଦୁସୁଲୀଗଣଙ୍କୁ ଯେ କହି
କନ୍ୟା ପୁର ତୁମ୍ଭେ ବେଗେ ଖୋଜ ଯାଇ
ଉପରେ କହିଲେ ମୋତେ ଉପଗତ କଥା
ତୁମ୍ଭେ ବୁଝିଆସି କହ ସତ୍ୟ ଯେ ବାରତା ।
ଆଜ୍ଞାର ଇ ମୃଦୁସୁଲୀ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ଗୋହ୍ମାପୁର ଦ୍ୱାର
ପ୍ରଥମ ଦ୍ୱାରେ ଦେଖିଲେ ଯାଇ ଚନ୍ଦ୍ରରେଖା
ତାହାର ସହିତ ସଙ୍ଗେ ହୋଇଲେ ଯେ ଦେଖ
କୁଶଳ ବାରତା ପଚାରିଲେ ଦୁଷ୍ଟଭାବ
ଯେଠାକୁ ଶୁଣିଲ ବେନିଜଣଙ୍କ ଉତ୍ତର ।
ଛଳକ୍ରୀଡ଼ା କରୁଛନ୍ତି ବେନିଜଣେ ବସି
ଦାନ ପଡ଼ିବା ବେଳରେ କରନ୍ତି ସମ୍ଭାଷି ।
ଶୁଣି ମୃଦୁସୁଲୀଗଣେ ଅଇଲେକ ଖରେ
ବେଗେ ଜଣାଇଲେ ଆସି ନୃପତି ଛାମୁରେ ।
ଉପର କହିବା କଥା ଅଟେ ଦେବ ସତ
ଶୁଣି ନରପତି ହେଲା କୋପେ ପ୍ରଜ୍ୱଳିତ ।
ଧନୁଶର କରେ ଧରି ଉଠିଲା ବହନ
କ୍ରୋଧରେ ଅସୁର ଗର୍ଜେ ଘନଘନ ।
ଧାଇଁ ପଶିଲା ଧରାଇ କୁମାରୀର ପୁରେ
ଚନ୍ଦ୍ରରେଖା ଅଗସର ଗଲା ଯେ ଉପରେ ।
ଉପର ପୁରକୁ ଦୈତ୍ୟ କରନ୍ତେ ଗମନ
ଦେଖିଲା ପଶା ଖେଳନ୍ତି ବସି ବେନିଜନ ।
ବୋଇଲେ ନୃପତି ତୁହି କାହାର କୁମର
ପୁରକୁ ଆସି ଭିତରେ ନାହିଁ କ ଡର ।
କ୍ରୋଧ ଅଗ୍ନିରେ ଡୁବି ପଶିଲୁ ପୁରାଇଁ
ଯମର ସଦନେ ଧାଇଁ ଦେଲୁ କାୟରଇଁ ।

କହୁଁ କହୁଁ ପ୍ରଜ୍ୱଳନ୍ତ ଦୈତ୍ୟକୁଳ ସ୍ୱାମୀ
ଦେଖି କୁମର ହସ୍ତରେ ସ୍ତବ୍ଧ ହୋଇ ରହେ
କୋପେଣ ତାଡନ୍ତ ପାଣିଙ୍କ ବଜ୍ରମଥେ
ଅଙ୍ଗନରେ କୁମର ତା କଷ୍ଟାଇ ଭୁଞ୍ଜନ୍ତେ ।
ତେକ୍ଷଣ ଅସୁର ଧନୁ ଆଧାନ ଯେ କରି
ଅନିରୁଦ୍ଧ କରେ ତାର ଧନୁଶର ଧରି ।
ଗର୍ଜ୍ଜିଲ ବାଣ ଅସୁର ଭାକମର୍ପ ଜାଣି
ହାଣେଢାଳା ଶର ଏକ ସେ ଲକ୍ଷଗଭ ଟାଣି ।
ତା ଦେଖି କୁମରମଣି ପେଷେ ତୀକ୍ଷ୍ଣ ଶର
ଦେଖ ଜନଙ୍କର ନେମେ ଲାଗିଲା ସମର ।
ମହାଘୋର ଯୁଦ୍ଧ ଦେକ୍ରିଟେ ଆକୁଆନ
ଅନର୍ଥୀସ୍ତ ଶର ଭଣ୍ଡେ ଅସୁର ଗଞ୍ଜନ ।
କ୍ରୋଧରେ ଝଣ୍ଡଅସ୍ତ୍ର ଭରେ ଅସୁରକୁ
ଦେଖି ନପକାଳ ମାରେ ବାଣ ଅସୁରକୁ ।
ହେଳାଯୁଦ୍ଧେ କୁମରକୁ ନ ପାଇଲା ଜିଣି
ଅଷ୍ଟଶର ବଧାଇଲା ଧନୁଁର ସେ ପୁଣି ।
ମନ୍ତ୍ର ସୁମରଣା କରି ଛେଷିଲା ନୃପତି
ତନ୍ତଗଲା ସେହି ଶସ୍ତ୍ର ପବନହିଁ ଅତି ।
ତଉଣୁ ଟେକଡ଼ାଇଲା ତା କଣୁ ପଞ୍ଝଣେ
ଅସ୍ତ୍ରଶରେ କୁମର ଯେ ପଡେ ମୋହଗତେ ।
ଦେଖି ନରପତି ବାହୁଦଣ୍ଡ ଘନ ଧାତି
ଆପଣା ନବରେ ଯାଇ ମିଳିଲା ତଡ଼ିତ ।
ଏଥି ଅନନ୍ତରେ ପୁଣି ନୃପତି ଦୁଲାଳୀ
ଅନିରୁଦ୍ଧ ସନ୍ନିଧିରେ ହୋଇଲାକ ବାଳୀ ।
ଆହା ପ୍ରାଣନାଥ ବୋଲି କରଇ ରୋଦନ
ନୟନରୁ ଅଶ୍ରୁଜଳ ବହେ ଘନ ଘନ ।
ମୁଖକୁ ଅନାଇ ତାର ବାହୁନଇଁ ବସି
କୋମଳ ଶରୀର ଭୋଟି ହୋଇଲାକ ଧର୍ଷେ
ଆହା ମୋର ପ୍ରାଣନାଥ କେଉଣେ ଗଲ ଛାଡି
ମୁହିଁ ଏବେ ମରୁଅଛୁ ଶୋକଜଳେ ବୁଡ଼ି ।
ମୋହର ବଚନେ କେହ୍ନେ ହୋଇଅଛ ମୌନ
କେମନ୍ତେ ଗୁଡ଼ିଲୁ ନାଥ ଏତେକ ସେନେହ
ଏବେ ମୂର୍ଚ୍ଛିଲୁ କେବଣ କାରଣରୁ ମୋତେ
ଅନେକ ବଚନ କହି କହୁଅଛୁ ତୋତେ ।
ପଲ୍ୟଙ୍କେ ଉଡ଼ି ତାର ମୋ ନ ସହଇ ଦେହ
କେମନ୍ତେ ଛାଡ଼ିଲ ନାଥ ଏତେକ ସେନେହ ।

ତନ୍ତ୍ରାଳ ପିଥର ମୋର କଲା ଏତେ କର୍ମ
କେମନ୍ତ ପ୍ରକାରେ ତାକୁ ସନ୍ତପଳ ଧର୍ମ ।
ମକୁମାର ସୁନ୍ଦର ସେ ରୂପ ଦେଖିକରି
କେମନ୍ତେ ମନ କଲା ପ୍ରାଣେ ଗଲ ମାରି ।
କ.କ୍ତ ଦଇବ ପରୁଷ ଭଲ ପୁଣ ଏହା
ଲାଞ୍ଛିଲ ଲାଖାଣଠାରୁ କଟିନ ତୋ ହିୟା
ଚିତ୍ରରେଖାକୁ ଶୁଣି କରଇ ଖେଦନ
ଅର୍ଗି ଆଲୋଚଣ ଚର ଉଦ୍ଧିଣ ବଦନ ।
ଚିତ୍ରରେଖା କହଇ ସେ କ୍ଷଣ ରେ ସଖୀ
କେବେହେଁ ନ ମରଇ ଯେ ତୋହର ଯେ ପତି
ଦ୍ୱାରକାପୁରେ ଅଛନ୍ତି ଏହାଙ୍କର ପିତା
ଦେବଗଣ ଆସିବେ ସେହୁ ଯାଉଣ ତା'ଉଳା ।
ଶ୍ରୀରାମ ଶ୍ରୀକୃଷ୍ଣ ଏଥେ କରିବେ ଉଦୟ
ତାହାଙ୍କ କ୍ରୋଧରେ ପରମତି ହେବ କ୍ଷୟ ।
ଉଷା ବୋଲେ ତାହାଙ୍କୁ ଦେ କହିବ ଯାଇ
ମନୁ ଛନ୍ଦଙ୍କ ପିଅର ଉଦ୍ଧ ମୋର ସାଇଁ ।
ଏଭି ସମୟରେ ପୁଣ ନାରଦ ମହର୍ଷି
ଅନ୍ତରୀକ୍ଷେ ଥାଇ ସେହୁ କଥଜ ସମାଷି ।
ନ ଭାଳ ସୁନ୍ଦରୀ ଏବେ ମୋର ବୋଲିକର
ଶ୍ରୀକୃଷ୍ଣ ଅଟନ୍ତି ଯାଙ୍କ ପିତାଙ୍କ ପିତର ।
ତାଙ୍କର ଆସିବାଯାଏ ରଖ ଯତ୍ନକରି
ଆମ୍ଭେ ଯାଉଅଛୁ ଏବେ ଦ୍ୱାରକା ପୁରୀ ।
ଏତେକ କହିଣ ମୁନି କଲେକ ଗମନ
ମନକଣ୍ଠରେ ପ୍ରବେଶ ଦ୍ୱାରକା ଭୁବନ ।
ଉଗ୍ରସେନ ନରପତି ସମସ୍ତ ଯାଦବ
ନନ୍ଦ ବସୁଦେବ ପୁଣି ଶ୍ରୀରାମ ମାଧବ ।
ମୁନିଙ୍କ ଚରଣତଳେ କଲେ ଦର୍ଘ୍ୟ ପୂଜା
ଆସନେ ବସାଇ ପଚାରନ୍ତି ଦେବରାଜା ।
ହେ ମୁନିବର ତୁମ୍ଭେ ଯେ ନ ହର ଗୁପତ
କେବଣ କାରଣେ ଭଦ୍ର ଏଥି ଉପଗତ ।
କେବଣ ସନ୍ଦେଶ ମୁନି ଅଛ ତୁମ୍ଭେ ଆଣି
ଆମ୍ଭ ସନ୍ଦେହ ଫିଟିବ ତୁମ୍ଭ ମୁଖୁଁ ଶୁଣି ।
ମୁନି ବୋଲେ ଶୁଣ ରାମ କୃଷ୍ଣ ଦେବରାଇ
ବାଣାସୁର ନୃପତିର ଉଷା ଯେ ତନୟୀ ।
ଅବିବାହୀ କନ୍ୟା ସେହୁ ପିତାଘରେ ଥାଇ
ଅନିରୁଦ୍ଧ ଭୁଲେ ତାର ଶୀରତ ହୋଇଲା ।

ବାଣାସୁର ଶୁଣିଶାର ସମର ଯେ ଭଲ
ଅନ୍ତଶର ପେଷି କୁମରକୁ ବନ୍ଦୀକଲ ।
ଆମ୍ଭେ ଭ୍ରମନ୍ତେ ଦେଖିଲୁ ତାହାକୁ ଯେ ଯାଇଁ
ଭରଇ ଗେଦନ ଉଷା କୁମରକୁ ସ୍ୱହିଁ ।
ଅଗ୍ନିରେ ପଶନ୍ତେ ନଜ ପତର ନିମନ୍ତେ
ସ୍ୱରୂପ କହିଲୁ ଆମ୍ଭେ ଭୃଗୁର ଅଗ୍ରତେ ।
ଶୁଣି ରାମକୃଷ୍ଣ ଦେନ ମୂର୍ଚ୍ଛାପାଇ ଶୋଇ
ପ୍ରଦ୍ୟୁମ୍ନର ଶଶାରରେ ଆଉ ଜ୍ଞାନ ନାହିଁ ।
ବସୁଦେବର ନନ୍ଦନ କରନ୍ତ ରୋଦନ
ଦେବକୀ ବସୁଦେବର ଚଳିଲ ମନ ।
ରୁକ୍ମିଣୀ ସତ୍ୟଭାମା ଯେ ପୁଣି ଜାମ୍ବବତୀ
କାଳନ୍ଦୀକୁ ଆଦିକରି ଯେତେକ ଯୁବତୀ ।
ଦ୍ୱାରକାପୁରେ ସମସ୍ତେ ପାଡ଼ିଲେ ବୋବାଳ
ସମସ୍ତଙ୍କ ନୟନରୁ ଅଶ୍ରୁଜଳ ଗଳ ।
ବେଳଦଣ୍ଡ ପରିଯନ୍ତେ ଉଠିଲାକ କୋହ
ସଚେତ ହୋଇଲେ ରାମକୃଷ୍ଣ ଭେଜ ମୋହ ।
ନାରଦ ବୋଇଲେ ଭୂପେ ପ୍ରଦ୍ୟୁମ୍ନକୁ ଦେଖ
ଦେହରେ ତ ଜ୍ଞାନ ନାହିଁ ବଦପାତ ମୁଖ ।
ଅନିରୁଦ୍ଧର ନିମନ୍ତେ କରନ୍ତେ ରୋଦନ
ପୁତ୍ରର ଶୋକରେ ମେ ହ ହୋଇଛୁ ପ୍ରଦ୍ୟୁମ୍ନ ।
ଦେଖି ନାରାୟଣ ବେଗେ ପୁତ୍ରେ କୋଳକରି
ମୁଖରେ ସିଞ୍ଚିଲେ ତାର ସୁବାସିତ ବାରି ।
ସଚେତ କରିବା ଲାଗି କୃଷ୍ଣ ପୁତ୍ରମାନେ
ଶାମ୍ବ ଫୁଙ୍କଇ ଯାଇଣ ପ୍ରଦ୍ୟୁମ୍ନର କର୍ଣ୍ଣେ ।
ବଳରାମ ଧରିକରି ଫୁଟାନ୍ତ ଅଙ୍ଗୁଷ୍ଠି
କେତେବେଳେ ସଚେତ ହୋଇ ପୁତ୍ର ଉଠି
କାନ୍ଦଇ ପ୍ରଦ୍ୟୁମ୍ନ ପୁତ୍ର ନାମ ଘୋଷି ଧରି
କେଣେ ଗଲୁ ବାବୁ ରେ ମୋତେ ଛାଡ଼ିକରି
ଦରିଦ୍ରର ଧନ ତୁହି ଅନ୍ଧର ଲଉଡ଼ି
ମୁହିଁ ମରୁଅଛି ଏବେ ଶୋକଜଳେ ପଡ଼ି ।
ହା ମୋର ପୁତ୍ର ସୁନ୍ଦର ଆରେ ଅନିରୁଦ୍ଧ
ଦାନବ ହାତରେ କୁହ ପ୍ରାଣେ ହେଲୁ ବଧ ।
ବଳରାମ ବୋଇଲେ ଯେ ଉଗ୍ରସେନେ ସ୍ୱହିଁ
ସାତବଂଶ ଯାଦବ ଯେ ଆସ ସଜହୋଇ ।
ପୁତ୍ରର ନିମନ୍ତେ ବାଣ ଅସୁରକୁ ମାରି
ତାଳଧ୍ୱଜ ରଥ ମୋର ଆଣ ସଜକରି ।

ଶ୍ରୀହରି ବୋଇଲେ ବେଗେ ଦାରୁକକୁ ଚାହି
ନନ୍ଦିଘୋଷ ରଥ ମୋର ଆଣ ଆରେ ତୁହି
ସାଜ ସାଜ ବୋଲିକରି ପଡ଼ିଲାକ ଡାକ
ଧ୍ୱଜଦେଲେ ରଥ ଗଜ ଚତୁରଙ୍ଗ ସେନ ।
କରେ ଶସ୍ତ୍ର ଧରି ଗରଜନ୍ତ ବୀରମାନେ
ନାରାୟଣ ସୁମରିଲେ ବିନତା ନନ୍ଦନେ ।
ଖଗବର ଆସି ତହିଁ ମିଳିଲେ ତକ୍ଷଣ
ତା ପୃଷ୍ଠରେ ବିଜେକଲେ ଦେବ ନାରାୟଣ ।
ତାଳଧ୍ୱଜ ରଥେ ବିଜେକଲେ ତ ମଶାଳ
ଆଦର କରେ ସେନଲେ ସୌନନ୍ଦ ମୁଷଳ ।
ନନ୍ଦୀଘୋଷ ରଥପରେ ବିଜୟ ପ୍ରଦ୍ୟୁମ୍ନ
ବାଜଇ ଶଙ୍ଖ ମୃଦଙ୍ଗ ନାନା ବାଦ୍ୟମାନ ।
ନିଶାଣ ପାଟଛତ୍ର ଯେ ଉଡ଼ନ୍ତ ଘନ୍ତ ଘନ୍ତ
ରଥ ଉପରେ ପତାକାମାନ ଝଟକନ୍ତି ।
ସମୁଦ୍ର ଗର୍ଘୋଷ ଜାଣି ମୁଖବାଦ ଘୋର
ଦ୍ୱାଦଶକ୍ଷୌଣୀ ଅନନ୍ତ ଯାଦବଙ୍କ ଦଳ ।
ଏକୁ ଏକ ଆଗହୋଇ ଧାଉଁଛନ୍ତି ଖରେ
ରଥ ଧୂଳି ଗମନ କରନ୍ତ ଯେ ପରେ ।
ଚଳଇ ଯେ ତାଳଧ୍ୱଜ ରଥ ଘନ ଘନ
ନନ୍ଦୀଘୋଷ ରଥ ଚକ୍ରଅସ୍ତ୍ର ବିଭୂଷଣ ।
ବିନତାପୁତ୍ର ଗମନ କରେ ଅତି ବେଗେ
ସରବେ ମିଳିଲେ ଯାଇଁ ବାଣାସୁର ଦେଶେ ।
ଗ୍ରାମ ପାଟଣା ନଗର ପୁଣ ପୁରମାନ
ଯେ ମୁଖେ ପଡ଼ଇ ତାହା କରନ୍ତ ଦଳନ ।
ବାଳ ବୃଦ୍ଧା ଯୁବା ଆଦି ରାଜ୍ୟ ପ୍ରଜାଗଣ
ପ୍ରଦ୍ୟୁମ୍ନର ଶରଘାତେ ସମସ୍ତେ ନିଧନ ।
ଜଣାଇଲେ ବାଣାସୁର ଆଗେ ଚର ଯାଇ
ତୋହର ରାଜ୍ୟସନ୍ତାନ ବେଗେ ହୋ ଗୋସାଇଁ
ରାମକୃଷ୍ଣ ବିଜେ କଲେ ଯଦୁବଳ ସେନ
ନରପତି ଆଜ୍ଞାଦେଲେ ସାଜ ହୋ ସଇନ ।
ଉତ୍ତରର ଆରୋହଣ ଦୈତ୍ୟ କୁଳସାଇଁ
ଦ୍ୱାଦଶ ଅକ୍ଷୌଣୀ ବଳ ସେନ ଉଭାଳଇ ।
ଦେଖି ପ୍ରଦ୍ୟୁମ୍ନ ମିଳିଲା ସୈନ୍ୟଙ୍କର ଆଗ
ଛେଳକ ଦେଖିଣ ଯେସନେ ପଳାଇ ବ୍ୟାଘ୍ର ।
କୋପେ ଉଳ୍‌ବର୍ଷି ନେଇ ଶ୍ରୀକୃଷ୍ଣର ସୂତ
ହାଦୋଣ୍ଡାଶର ଗୁଣରେ ବସାଏ ତୁରିତ ।

ଆଗଭର ହୋଇ ସେତକ ଶର ବେଳେ ଗୁଡ଼
ଜନଶଭ ଉଥେ ପଡ଼େ ସେ ଶର ହାଡୋଡ଼ ।
ଶାରଙ୍ଗ ଧନୁ ଧଇଣ ବେଗେ ଦାମୋଦର
ନେଇ ବାନ୍ଧିଲେ ଅସୁର ପରେ ତୀକ୍ଷ୍ଣ ଶର ।
ରେ ରେ ଭାର ଶବଦରେ ବେଦ କାମପାଳ
କରେ ବୁଲାଇଲେ ସେତକ ସୌନନ୍ଦ ମୂଷଳ ।
ଏକା ଏକା ପ୍ରହାରକେ କୋଟି କୋଟି ମାରି
ଶ୍ରୀକୃଷ୍ଣଙ୍କ ପୁତ୍ରମାନେ ରଣଘୋର କରି ।
ବାଣାସୁର ନରପତି କରଇ ସମର
କରେ ଧରିଅଛି ଶସ୍ତ୍ର ପୁଣି ଧନୁଶର ।
ଏକାବେଳକେ ନାଗର ପଞ୍ଚଶତ ମାରି
ନିମିଷକେ ଶତେବାର ଯେତେ ବଜ୍ରଧାରୀ ।
ଗରୁଡ଼ ଉପରେ ପଡ଼ ଉପୁଡ଼ଇ କାଣ୍ଡ
ଅସୁରର ଗର୍ଜନେ କମ୍ପଇ ବ୍ରହ୍ମାଣ୍ଡ ।
ନନ୍ଦୀଘୋଷ ରଥ ସେତକ ଟରେ ଲମ୍ବିଲା
କୋଟି କୋଟି କରି ପୁଣି ନାଗର ବାନ୍ଧିଲା ।
ସଦାଶିବଙ୍କୁ ସେ ସେବି ପାଇଅଛି ବର
କାହାରିକୁ ଭୟ କରେ ନାହିଁ ସେ ଅସୁର ।
ମହାଘୋର ଯୁଦ୍ଧ ହେଲା ତହିଁ ଅନ୍ୟୋନ୍ୟ
କାରଣ ନ ଗଲା କହା ଦିବସ ରଜନୀ ।
ଅନେକ ଯୁଦ୍ଧ କରନ୍ତି ତହିଁ ଯଦୁଭାରେ
କେହି କାହାରିକୁ ଜିଣି ନୁହଇ ସମରେ ।
ତାହାଦେଖି ନାରାୟଣ ମନରେ ବିଚାରି
ସୁଦର୍ଶନ ଚକ୍ର କରେ ଧଇଲେ ମୁରାରି ।
ଯେତେ ଯେତେ ଶର ଦୈତ୍ୟ ବିନ୍ଧୁଥିଲା ତହିଁ
ସୁଦରଶନ ତେଜରେ ହୋଇଲେକ ଦହି ।
ସୁଦର୍ଶନ ଚକ୍ର ଦେଖି ପଳାଏ ବଜ୍ୱର
ବୋଇଲା ସଦାଶିବଙ୍କୁ କହିବଇଁ ଆଜ ।
ଏତେ ବଜ୍ୱର ଅସୁର କରଇ ଗମନ
ନିମିଷକେ ମିଳିଲା ସେ କୈଳାସ ଭୁବନ ।
ସଦାଶିବ ପାଦେ ପଡ଼ି କହଇ ବିନୟୀ
ଶୁଣ ଦେବ ମହାପ୍ରଭୁ ଗଇଥିଲି ଯାଇଁ ।
ପ୍ରଦ୍ୟୁମ୍ନର ସୁତ ନାମ ଅନିରୁଦ୍ଧ ବୀର
କନ୍ୟେ ନେଇ ଦୁହିତାକୁ ହରିଲା ମୋହର ।
କୋପେ ତାକୁ ଅସ୍ତ୍ରଶରେ କଲିଇଁ ବନ୍ଧନ
ଆଇଲେ ଶ୍ରୀରାମକୃଷ୍ଣ ଘେନି ଯଦୁସୈନ୍ୟ ।

ଅଯୋଗେ ପକ୍ଷୀ କଣ୍ଠେ ମୋର କଲେ ନାଶ ।
ତେଣୁକରି ଆଇଲଇଁ ଦେବ ତୁମ୍ଭ ପାଶ ।
ଶଙ୍କର ବୋଇଲେ ଶୁଣ ଦୈତ୍ୟ କୁଳେଶ୍ୱର
ଆମ୍ଭର ବଚନେ ବୃଦ୍ଧ ହୋଇଲୁ ଅମର ।
ଅମରବର ପାଇ ତୁ ମରିବାକୁ ଡରୁ
ଶ୍ରୀକୃଷ୍ଣର କୁଳେ ତୁ ହୋ ସମର ନ କରୁ ।
ମୁଁ ଏବେ ବହେ କରିବି ବୃଷଭ ଆରୋହି
ଆଗେ ଯାଇଣ ସମର କର ବେଗେ ତୁହି ।
ଶୁଣି ଅସୁର ବହିମି ଅଇଲାକ ବେଗେ
ସମର କଲା ଆବର ହୋଇଣ ବୈରାଗେ
ଯେତେବେଳେ ବାଣାସୁର ଗଲା ଆଡହୋଇ
ସୈନ୍ୟଗଣ ପଳାଇଲେ ମହାଭୟ ପାଇ ।
ମନ୍ତ୍ରୀବର ଦେଖିଣ ତା ବଳଦୁର୍ଯ୍ୟ କେତୁ
ସୈନ୍ୟଙ୍କୁ ବୋଇଲା ପଳାଅରେ ଦେଖି ଶଙ୍କ
ଉଦ୍ଧୀ ହୋଇଛ ତୁମ୍ଭେ ମରିବାକୁ ଡର
ମୋହର କୁଳେ ଆସିଣ କରିବ ସମର ।
ଏତେ ବୋଲିଣ ଅସୁର ଉଠିଲାକ ଗର୍ଜି
ମେରୁ ଶୃଙ୍ଗ ଆବର କି ପଡ଼ିଲାକ ଭାଙ୍ଗି ।
କରେ ଶୂଳ ଘେନି ବେଗେ ହେଲା ଆଗୁସାର
ଆପଣାର ସୈନ୍ୟବଳ ଅଛଇ ସଙ୍ଗର ।
ସମର କରଇ ଦୈତ୍ୟ ଭୟ ଭ୍ରାନ୍ତି ଛାଡ଼ି
ଶୂଳ ଧରି ପିଟୁଅଛି ବଜ୍ରସମ ବାଢ଼ି ।
ତାହାଦେଖି କାମପାଳ ଉଗାଳିଲେ ଯାଇଁ
ବାନ୍ଧନ୍ତି ନାଗରମାନ କୋପଭର ହୋଇ ।
ମୁଣ୍ଡ ପାତିଣ ଦଇତ ସମ ଶର ମେଣ୍ଟି
ଦେଖିକାମପାଳ ତାକୁ ମୂଷଳରେ ପିଟି ।
ଯାଏ ଘୁମାଇ ଝଡ଼ିଲା ଦୈତ୍ୟ ମନ୍ତ୍ରୀବର
ଯୁଝନ୍ତି ବାଣ ଅସୁର ସଙ୍ଗେ ଚକ୍ରଧର ।
ବେଳକୁବେଳ ସମର ବଳେ ରଣରଙ୍ଗ
ଭକାରେ କର୍ଦ୍ଦମ ହେଲା ଦେଖନ୍ତଜନ ଅଙ୍ଗ ।
ଗଦା ଚେଲ ଶଭଳ ଯେ ଆବର ମୂଷଳ
ବରଷଣ ପ୍ରାୟ କରି ମାରଇ ଅସୁର ।
ଗରୁଡ଼ ଉପରେ ଯାଇ ପଡ଼େ ବାଣମାନ
କୃତୁଜୁଳା ପୋକ ଜଳା ଉଡ଼ନ୍ତି ଗଗନ ।
ଏମନ୍ତ ସମୟେ ତହିଁ ବଜେଇଲେ ହର
ଡ଼ିବ ଡିବ ଡମ୍ବରୁ ଯେ ବାଜଇ ଶୂନ୍ୟର ।

ଶ୍ରୀକୃଷ୍ଣ ଜାଣିଲେ ଏବେ ଭଜ୍ଜ କଲେ ହର
ବାଣାସୁରପାଇଁକ ସେ କରବେ ସମର ।
କ୍ରୋଧେ କମ୍ପମାନ ହେଲେ ଦେବକୀ ନନ୍ଦନ
ସୁଦର୍ଶନ ଚକ୍ରକୁ ସେ ସ୍ମରିଲେ ବଦନ ।
ତକ୍ଷଣେ ସେ ଚକ୍ର ଆସି ଶ୍ରୀକୃଷ୍ଣଙ୍କ କର
ଧାରକାରେ ପେଷିଲେ ତା ଦେବ ଦାମୋଦର
ଦୈତ୍ୟର ଭୁଜ ଉପରେ ପଡ଼ିଲାକ ଯାଇ
ଛିଡ଼ିଗଲେ କରମାନ ନ ରହିଲେ କେହି ।
ପୁଣ ତାର ବାମଭୁଜ ଉପରେଣ ପଡ଼ି
ତକ୍ଷଣେ ସେ ଭୁଜ ତାର ଭୂମିପରେ ଛିଡ଼ି ।
ମୁଣ୍ଡାବୃକ୍ଷ ପରାୟେକ ଦିଶଇ ଅସୁର
ପୁଣିହିଁ ଧଇଲେ ସୁଦର୍ଶନ ନେଇ କର ।
ଈଶ୍ୱର ଭାଳନ୍ତି ବାଣାସୁର ନ ବର୍ତ୍ତିବ
ଆମ୍ଭ ବର ଦେବାର ଯେ ବ୍ୟର୍ଥ ହୋଇବ ।
ଏତେ ଭାବିଣ ଶଙ୍କର କୃଷ୍ଣ ପାଶେ ମିଳି
କହୁଛନ୍ତି ପୁନଃସରି ଶୁଣ ବନମାଳୀ ।
ମୋହର ବରରେ ଏହି ଅସୁର ଅମର
ଭୁକ୍ତି ହେବ ଚକ୍ରପେଷି କାଟନ୍ତୁ ତା ଶିର ।
ତୋହର ମାରନ୍ତେ ଏହି ଅସୁର ମରିବ
ଆମ୍ଭଙ୍କୁ ଈଶ୍ୱର କାହିଁ ବୋଲୁ ବାସୁଦେବ ।
କ୍ରୋଧ ଶାନ୍ତ କର ଏବେ ଦେବ ଚକ୍ରଧର
ପ୍ରସନ୍ନ ହୋଇ ଏହାକୁ ଦିଅ ତୁମ୍ଭେ ବର ।
ସହସ୍ରେ ଭୁଜରୁ ଥାଉ ଦୁଇଭୁଜ ରହୁ
ଆମ୍ଭର ବର ଦେବାର ବ୍ୟର୍ଥ ଯେ ନୋହୁ ।
ଈଶ୍ୱର କହନ୍ତେ ବାସୁଦେବ ହେଲେ ତୋଷ
ବଳରାମ ମନରୁ ଯେ ଛାଡ଼ିଲେକ ରୋଷ ।
ଶିବ ବୋଇଲେ ପାଇଲା ଦୈତ୍ୟ ବରକର
ବେଢେ ରାମକୃଷ୍ଣ ହର ବାଣାସୁର ପୁର ।
ଜନ୍ତୁହିର ପକ୍ଷାସାତ ଶରେ ଅନ୍ଧକାର
ଉପୁରେ ପଳାଇ ଗଲେ ବହୁତ ଯେ ଦୂର ।
ଅନିରୁଦ୍ଧ ଦେହ ଏବେ ହୋଇଲାକ ଶୂନ୍ୟ
ମୋହ ଭେଳ ଉଠିଲା ସେ ପ୍ରଦ୍ୟୁମ୍ନ ନନ୍ଦନ ।
ଆସନ ପାଦାସନାଦି ବହୁତ ସମ୍ଭାର
ପୂଜଇ ଅସୁର ରାମ କୃଷ୍ଣଙ୍କ ପୟର ।
ଦିବ୍ୟ ଭୁବନ ମଣ୍ଡାଇ ଅସୁର ରାଜନ
ନେଲା ଚଉଳ ଆଦର ଉଦ୍ରେ କଉପନ ।

ରାମକୃଷ୍ଣ ବେଢେ ବଳେ ଯାଦବଂଶ ଯେଣ
ବ୍ୟାସ ମାର୍କଣ୍ଡ ପୁଣି ଜଡ଼ାନନ୍ଦ ମୁନି ।
ଭରଦ୍ୱାଜ ଋଷି ପୁଣି ଗଉତମ ଆସ୍ତେ
ଦୁର୍ବାସା ମହାମୁନି ଯେ ବଜସ୍ତ ସଭସ୍ତେ ।
ନଗ୍ରପୁର ମଣ୍ଡାଇଣ ଶୁଭଧ୍ୱନି କରି
ଦ୍ୱାରେ ପୂର୍ଣ୍ଣକୁମ୍ଭମାନ ଆଣି ଯେ ଉଭାରି ।
ନଗ୍ର ନରନାରୀ ଦେଖିବାମ ଯେ ସଜାଡ
ଚରଚନ୍ତି ସଦାଶିବ ଆପଣେ ସମସ୍ତ ।
ପଣ୍ଡିତେ କହିଲେ ଏବେ ଶୁଭ ଅନୁକୂଳ
ଆଷାଢ଼ ଶୁକ୍ଳଦଶମୀ ତିଥି ଗୁରୁବାର ।
ତକ୍ଷଣ ଯେ ଲଗ୍ନବେଳ ହୋଇଲାକ ଆସି
ସଙ୍କଳପ କରାବନ୍ତି ଭାର୍ଗବ ମହର୍ଷି ।
ବରୁଣ ପୂଜା କରିଣ ବର କନ୍ୟା ଆଣି
ମନ୍ତ୍ର ପଢ଼ିଣ ବନ୍ଧନ କଲେ କୁଶପାଣି ।
ତାହାଣାକର୍ଣ୍ଣିକ ଶଙ୍ଖ କଳକଳ ଦେଇ
ଆନନ୍ଦରେ ବାଣାସୁର ଯୌତୁକ ଦିଅଇ ।
କୋଟିଏକ ରଥ ପୁଣି କୋଟିଏକ ହସ୍ତୀ
ସୁରକୋଟି ଅଶ୍ୱ ଦଶକୋଟି ଯେ ପଦାତି ।
ଲକ୍ଷେକ ଦାସୀ ଦେଲେ ସେ ବସ୍ତ୍ରାର ସହିତେ
ଶତେ ପରିବାର ଦେଲେ ଅଳଙ୍କାର ଯୁକ୍ତେ ।
ପାଟଛନ୍ଦ ଆବଉହିଁ ଖଟ ଯେ ସୁପାତି
ବହୁ ସମ୍ଭାରେ ଯୌତୁକ ଦେଲା ନରପତି ।
କୋଟିଏକ ରତ୍ନ ବଳରାମ ପାଦେ ଦେଇ
ଶରଣଗତର ନାଥ ମୋତେ କର ତ୍ରାହି ।
ନ ଜାଣି ମୁଁ ଅପରାଧ କଲଇଁ ଯେତେକ
କ୍ଷମାକର ମୋର ଦୋଷ ନ କର ଯେ କୋପ
ଆନନ୍ଦ ଭାବେ କହନ୍ତି ସେ ନନ୍ଦନନ୍ଦନ
ଆମ୍ଭେ ତୋର ଦୁହିତା କରିଲୁ ପ୍ରଦାନ ।
କେଣୁହିଁ ଆମ୍ଭ ବାନ୍ଧବ ହୋଇଲୁ ସୁକଳେ
ସଦାଶିବଙ୍କର ବର ପ୍ରାପ୍ତ ହେଉ ତୋତେ ।
ଯୁଗେ ଯୁଗେ ତୁ ଅମର ହୋଇ ଥିବୁ ଠାରେ
ତେବେ ଏଠାରେ ଲଭିତ ଉତ୍ସବ ଆମ୍ଭର ।
ବର କନ୍ୟାଙ୍କୁ ଆଶିଷ ଦିଅନ୍ତି ମୁନିମାନେ
ଦେଖନ୍ତି ନଗର ନରନାରୀ ତୋଷ ମନେ ।
ବିସ୍ମରନ୍ତି ସୁନ୍ଦର ଯେ ପୁଷ୍ପ ରୂପବତୀ
ବରେ କନ୍ୟା କନ୍ୟା ବରେ ମିଳିଲା ସାବୁଣୀ ।

ବିଧାତାର ନିର୍ମାଣ ଯେ ନୁହଇଟି ଆନ
ଯେମନ୍ତ ଯାହାକୁ ଯେହ୍ନ କରଇ ହିଆଣ ।
ଏଥିଅନନ୍ତରେ ଅସୁରର ଯେତେ ରାଣୀ
ବନ୍ଦାନ୍ତି ବର କନ୍ୟାଙ୍କୁ କରେ ଅର୍ଘ୍ୟ ଘେନ ।
ଅନ୍ତଃପୁର ମଧ୍ୟକୁ ସେ ବର କନ୍ୟା ଗଲେ
ଧାଈ ମୃଦୁସୁଲୀ ଯେ ପଦଣ୍ଡି ମଣାଇଲେ ।
ଏକପାଖେ ବସି ଦେନ କରନ୍ତି ଭୋଜନ
ଦେଖି ରହିଛନ୍ତି ତାଙ୍କୁ ସର୍ବ ପରିଜନ ।
ଆଚମନ ସାରି ତହୁଁ ତାମ୍ବୁଳ ଯେ ଖାଇ
ପିବାଲଗି ଉଦବେଗ ହୋଇଲେକ ତହିଁ ।
ଆରୋହିଲେ ତାଳଧ୍ୱଜ ରଥେ କାମପାଳ
ନନ୍ଦଘୋଷେ ବିଜେ କଲେ ମଦନଗୋପାଳ
ଦ୍ୱାରକାପୁରକୁ ସାତବଂଶ ଘେନ ବିଜେ
ଟମକ ନିଶାଣ ପୁଣି ହକଘୋଷ ବାଜେ ।
ରତ୍ନମୟ ରଥପରେ ବରକନ୍ୟା ବସି
ଚନ୍ଦ୍ରମା ପୃଥିବୀ ପରେ ପଡ଼ିଲା କି ଖସି ।
ହୁଳହୁଳି ଦେଉଛନ୍ତି ଅନେକ ବନିତା
ଅମର ଅପ୍ସରାବୃନ୍ଦ ନୃତ୍ୟଗୀତେ ମତ୍ତା ।
ଆଲଟ ପାଟଛନ୍ଦ ଯେ ଉଡ଼େ ବିତପନ
ଉଗ୍ରସେନ ଚଳାବନ୍ତି ଯଦୁକୁଳମାନ ।
ବାଟକୁ ପାଛୋଟି ଆସୁଛନ୍ତି ସଦାଶିବ
ଦ୍ୱାରକା ନଗରଯାକ ବହୁତ ଉତ୍ସବ ।
ମଙ୍ଗଳ ଉଚ୍ଚାର ସର୍ବେ ଜୟ ଜୟ ଘୋଷି
ଅର୍ଘ୍ୟ ବନ୍ଦାନ୍ତି ସରବ ଦ୍ୱାରକାରବାସୀ ।
ବରକନ୍ୟା ଦେଖିକରି ନରଲୋକେ ହର୍ଷ
ଶୁଭଲଗନ ବେଳରେ ନବରେ ପ୍ରବେଶ ।
ଅଷ୍ଟପାଟବଂଶୀ ମୂଳେ ଶ୍ରୀକୃଷ୍ଣର ବାମା
ବରକନ୍ୟା ଦେଖି ସର୍ବେ ହରଷିତ ମନା ।
କନ୍ୟାକୁ ଯେ ପରଶଂସା କରନ୍ତି ବହୁତ
ଧନ୍ୟ ତୋହର ତାତ ଯେ ଧନ୍ୟ ତୋର ମାତ
ଧନ୍ୟ ଦ୍ୱାରକା ପୁରକୁ ଏହୁ ଶୋଭା ବସି
ଧନ୍ୟ ବିଧାତା ତୋତେ ଯେ ଗଢ଼ିଥିଲା ବସି ।
ଧନ୍ୟ ଆମ୍ଭେ ସର୍ବେ ଦେଖିଲୁ ଯେ ଦେନ ତୋତେ
ଧନ୍ୟ ଅନିରୁଦ୍ଧ ଧଇଲା ଏ କନ୍ୟା କୋଳେ ।
ଧନ୍ୟ ଯେବଣ ସର୍ଗରେ ହେଲୁ ଉତପତ୍ତି
ଧନ୍ୟ ଧନ୍ୟ ରେ ସୁନ୍ଦରୀ ଧନ୍ୟ ତୋର ମତି

ଧନ୍ୟ କବରୀ ଭ୍ରମର ନୁହେଁ ତାକୁ ସର
ଧନ୍ୟ ସୀମନ୍ତ ତାହାକୁ ଅଛଇ ଆବୋର ।
ଧନ୍ୟ ତୋହର ନାସିକା ତିଳଫୁଲ ଠାଣି
ଧନ୍ୟ ଦନ୍ତପନ୍ତି ଯେ ଡାଳିମ୍ବ ବୀଜଶ୍ରେଣୀ ।
ଧନ୍ୟ ଜାନୁ ସେ ଉଲଟ ରମ୍ଭାରେ ସଦୃଶ
ଧନ୍ୟ ସୁକୁମାରୀ ବୁଦ୍ଧି ଧନ୍ୟ ତୋ ବୟସ ।
କେ ବୋଲେ ସାବିତ୍ରୀ ଏହୁ ବ୍ରହ୍ମାଙ୍କ ବନିତା
କେ ବୋଲେ ଏ ହିମବନ୍ତ ପର୍ବତ ଦୁହିତା ।
କେ ବୋଲଇ ଶଚୀ ଏହୁ ଇନ୍ଦ୍ର ପାଟରାଣୀ
କେହୁ ବୋଲେ ଛାୟା ଏହୁ ସୂର୍ଯ୍ୟଙ୍କ ଘରଣୀ
କେ ବୋଲଇ ବୃହସ୍ପତି ପତ୍ନୀ ଏହୁ ତାରା
ରମ୍ଭା ମେନକା ଉର୍ବଶୀ ଏହୁ ଦେବ ପରା ।
କେ ବୋଲଇ ତୁମ୍ଭେମାନେ ନ ଜାଣହୋ କିଛୁ
ଏହାର ରୂପକୁ ଏକେ ସମ କାହିଁ ଅଛୁ ।
ଦେବକୀ ଯେ ବସୁଦେବ ବହୁତ ହରଷ
ଘେନ ନାତି ନାତୁଣୀଙ୍କୁ ଗୃହରେ ପ୍ରବେଶ ।
ଅର୍ଘ୍ୟ ବନ୍ଦାଇଲେ ଆସି ସକଳ କାମିନୀ
କଲ୍ୟାଣ କରୁଅଛନ୍ତି ସକଳ ଜନନୀ ।
ପୁରେ ପୁରେ ଚହଳ ଯେ କନ୍ଥ ତ କେ ପାର
ବରକନ୍ୟା ଦେଖି ଆସୁଛନ୍ତି ସର୍ବନାରୀ ।
ରାମକୃଷ୍ଣ ବିଜେ କଲେ ସନ୍ଥର୍ବ ଆସନେ
ଅଛନ୍ତି ଯେ ଦେବଋଷି ବ୍ରହ୍ମଋଷିମାନେ ।
ଅପସରା କଉଶାଏ ବାଦ୍ୟବେଶ ହୋଇ
ତାଳ ମୃଦଙ୍ଗ ଆବର ବେଣୁ ବୀଣା ବାଇ ।
ଚତୁର୍ଥୀ ଦିନର ବିଧିମାନ ବେଗେ ସାରି
ଗ୍ରାମୁଣ୍ଡି ଆରେ ବିଜୟ ସର୍ବ ଉପବ୍ରସୀ ।
ଯଥାବିଧି ସାରିକରି ବରକନ୍ୟା ଗଲେ
ଅନେକ ଯୁବତୀ ମିଳି ହୁଳହୁଳି ଦେଲେ ।
ବିଭାବିଧି ଶେଷକରି ମୁନିମାନେ ଗଲେ
ସେ ଯାହାର ଆଶ୍ରମରେ ପ୍ରବେଶ ହୋଇଲେ
ଶୁଣ ମନୁରଜା ବୃଦ୍ଧ ପୁଚ୍ଛା କଲୁ ଯାହା
ଥୋକାଏ କଥାନୁସାରେ ବଖାଣିଲୁ ତାହା ।
ଏ ମହାଭାରତ ମଧ୍ୟପର୍ବ ରସ ସାର
ପ୍ରାଣିମାନେ ଶୁଦ୍ଧଚିତ୍ତେ ଶ୍ରବଣ ଯେ କର ।
କଳିକାଳ ଘୋର ଏବେ ହୋଇଲାକ ଆସି
ରାମନାମ ଧର ନ ବାଧୁ ଯେ କାଳପାଶି ।

ରାମ ନାମ ବ୍ରହ୍ମ ଅଟେ ବେଦ ଯେ ଅକ୍ଷର
ସେହି ନାମ ଗୋଟି ମନୁ ନ କର ପାସୋର
ତୁଳସୀର କଳ୍ପତ ମୋ ହୃଦୟରେ ଥାଉ
ଶାରଳାଦାସେ ମୁକତ ତତ୍ତ୍ୱ ଜ ଯେ ଦେଉ ।
ବନ୍ଦଇ କମଳା ମାଗୋ ବଷ୍ଣୁ ପାଟରାଣୀ
ଦୁର୍ଗତି ଧ୍ୱଂସିନୀ ମାଗୋ ଦାରିଦ୍ର୍ୟଭଞ୍ଜନୀ ।
ପଦ୍ମଆସନୀ ଜଳଧି ରାଜାର ଦୁହିତା
ସର୍ବଜନଙ୍କର ମାତା ସଂସାର ରକ୍ଷିତା ।
ନିତ୍ୟ ନିତ୍ୟ ଯେତୁ ତୋର ଚରଣ ବନ୍ଦନ୍ତି
ଅପୂର୍ବ ସମ୍ପତ୍ତି ତାଙ୍କୁ ଦେଉ ମହାସତୀ ।
ପଦ୍ମପୁଷ୍ପରୁ ଜନମ ଉଦ୍ଭ ତୋର ନାମ
କମଳିନୀ ନାମେ ତୋତେ କରନ୍ତି ବଖାଣ ।
ଲକ୍ଷ୍ମୀ ନାରାୟଣଙ୍କର ଚରଣ କମଳେ
ଶୂଦ୍ରମୁନି ଶାରଳା ଯେ ରତେ ସର୍ବକାଳେ ।

---

## ମୂଢ଼ାସୁରର ବରଲାଭ, ଗଣେଶଙ୍କ ଜନ୍ମ

ବୈବସ୍ୱତ ମନୁ ପୁଣି ଅଗସ୍ତ୍ୟ ଚରଣେ
ସହସ୍ରେ ପ୍ରଣାମ କରି ଉଠେ କ୍ଷଣେ କ୍ଷଣେ ।
ଷଡ଼ଅର୍ଘ୍ୟେ ପୂଜାକରି କରଯୋଡ଼ି କହି
ମହାଭାରତ କହିଣ ମୋତେ କର ଥାହି ।
ଜନ୍ମେ ଜନ୍ମେ ମୁହିଁ ତୁମ୍ଭ ଦାସଙ୍କର ଦାସ
ମୂଢ଼ାସୁର ବଧ ମୋତେ କହ ବ୍ରହ୍ମଶିଷ୍ୟ ।
କେବଣ ଯୋଗରେ ସେହି ଦୈତ୍ୟ ଜନମିଲା
କେଉଁ କାରଣରୁ ଏଡ଼େ ଗରିଷ୍ଠ ହୋଇଲା ।
ଏହି ଚରିତ ବିସ୍ତାରି କହ ମୁନିବର
ତେବେ ସିନା ମନ ଶାନ୍ତି ହୋଇବ ମୋହର
ମନୁ ପୁଚ୍ଛନ୍ତେ ଅଗସ୍ତ୍ୟ ମୁନି ଯେ ହସନ୍ତି
ଆଦର ସେ ରାଜା ମୁଖ ବହୁଣ କହନ୍ତି ।
ରାଜାଙ୍କୁ ପ୍ରଶଂସା ସେହୁ କରନ୍ତି ବହୁତ
ଗୁଣବନ୍ତ ବୁଦ୍ଧିବନ୍ତ ଅଟୁ ତୁ ପଣ୍ଡିତ ।
ଏତେକ ସନ୍ଧର କଥା ପଚାରୁ ତୁ ରାଜେ
ସାବଧାନେ ଶୁଣ ତାହା କହିବା ଯୋଗାଏ ।
ଏକମନ ହୋଇକରି ଶୁଣ ନୃପଗଣ
ସ୍ଥିରଚିତ୍ତ ହୋଇକରି ଏକମନେ ଶୁଣ ।
ପୁରାଣ ପୁସ୍ତକ ଫେଡ଼ି କହନ୍ତି ଅଗସ୍ତି
ଏକମନେ ଶୁଣ ମୂଢ଼ାସୁରର ଯେ ରୀତ ।

କପିଳାସ କନ୍ଦରର ଉତ୍ତର କୋଣରେ
ଅଳମ୍ବୁଷା ନାମେ ଅଛି ଏକଇ ନଗରେ ।
ମୂଢ଼ାସୁର ରାଜା ତହିଁ ରାଜ୍ୟ କରୁଥିଲା
ଅତି ବଡ଼ ପଣରେ ସେ ଗରିଷ୍ଠ ହୋଇଲା ।
ଏହାର ନନ୍ଦନ ନାମ ଘୋଢ଼ାସୁର ବୀର
ସମସ୍ତ ରାଜାଙ୍କ ସଙ୍ଗେ ବିବାଦ ତାହାର ।
ସ୍ୱର୍ଗ ମର୍ତ୍ତ୍ୟପୁରେ ରାଜା ଭ୍ରମୁଥାଏ ନିତ
ସୁର ନର ସଙ୍ଗେ ଅନୁବ୍ରତେ ତା ଅପ୍ରୀତ ।
ନିରନ୍ତରେ ତାର ନାମେ ଚମକ ପଡ଼ଇ
ଦେବତାମାନେ ସ୍ୱରଗେ ନ ପାରନ୍ତି ରହି ।
ସମରେ ତାହାଙ୍କୁ ଇନ୍ଦ୍ର ଦେବତା ମାଇଲେ
ଚହ୍ନି ନିସ୍ତିନ୍ତ ହୋଇଣ ସମସ୍ତେ ରହିଲେ ।
ତାହାର ନନ୍ଦନ ନାମ ଅଟେ ମୂଢ଼ାସୁର
ଅତହିଁ ଗରିଷ୍ଠ ହେଲା ସେହି ନିଶାଚର ।
ମର୍ତ୍ତ୍ୟମଣ୍ଡଳରେ ଯେତେ ଯେତେ ରାଜାଥିଲେ
ଭୟେ ଅସୁରର ସର୍ବେ ଅଧୀନ ହୋଇଲେ ।
ଏମନ୍ତ ରାଜ୍ୟ କରଇ ସେହି ମହାବଳ
ତାହାର ମନ୍ତ୍ରୀର ନାମ ଅଟେ କୁମ୍ଭପାଳ ।
ଦିନେ ଆସ୍ଥାନେ ବସିଣ ଥିଲା ବୀରବର
ମନ୍ତ୍ରୀର ମୁଖକୁ ଚାହିଁ ପଚାରେ ଅସୁର ।
ମର୍ତ୍ତ୍ୟମଣ୍ଡଳ ଯାକ ତ ମୋହର ହୋଇଲା
କହ ଏବେ କେଉଁସ୍ଥାନେ କାଏ ସେ ରହିଲା ।
ମନ୍ତ୍ରୀ କୁମ୍ଭପାଳ ବୋଲେ ଶୁଣ ରକ୍ଷସାଇଁ
ତୋହ ଛାମୁରେ କଥାଏ ମୁହିଁ କହିବଇଁ ।
ସମସ୍ତ ରାଜାଙ୍କୁ ତୁହି ଜିଣିଲୁଟି ବଳେ
ଜିଣି ନ ପାରିବୁ ଏକା ସ୍ୱର୍ଗ ଆଖଣ୍ଡଳେ ।
ମନ୍ତ୍ରୀମୁଖୁଁ ଶୁଣି କୋପ କଲା ଦୁଷ୍ଟମତି
ମନ୍ତ୍ରୀର ବାଳ ଧଇଲା ଅସୁର ତଢ଼ତି ।
ଇନ୍ଦ୍ରକୁ ବଡ଼ ଗରିଷ୍ଠ ବୋଲୁ ମୋ ଛାମୁରେ
ପାଞ୍ଚ ସଜକର ଏବେ ଯିବା ସ୍ୱର୍ଗପୁରେ ।
ମନ୍ତ୍ରୀ ଯେ ବୋଇଲା ତୁହି ଛାଡ଼ ମୋର କେଶ
ଗୁପତ କଥାଏ ତୋତେ କହିବା ବିଶ୍ୱାସ ।
ତୋହର ଯେ ବାପ ରାଜା ଘୋଢ଼ାସୁର ଥିଲା
ଦେବତାଙ୍କ ସଙ୍ଗେ ସେହୁ ବାଦ ଆରମ୍ଭିଲା ।
ଇନ୍ଦ୍ରର ସଙ୍ଗେ ସ୍ୱର୍ଗରେ କଲା ସେ ସମର
ତୋ ପିତାକୁ ମାଇଲକ ବଜ୍ରେ ସୁନାସୀର ।

ଏହି କଥାପାଇଁ ମୁହିଁ ତଆରଇ ତୋତେ
ଏଥିର ବସ୍ତୁ ତୋର ଆସଇ କେମନ୍ତେ ।
ମନ୍ତ୍ରୀର ମୁଖରୁ ଏହିପର କଥାଶୁଣି
ପୁଣିହିଁ ପଚ୍ଛରେ ଧୀରେ ସେ ଅସୁରମଣି ।
ମୋ ବାପକୁ ମାରିଅଛି ଯେବେ ଇନ୍ଦ୍ରଗଣ
ନଷ୍ଟେ ମୋର ହାତେ ତାର ହୋଇବ ମରଣ
କୁହୁପାଳ ମନ୍ତ୍ରୀ ବୋଇଲ ଶୁଣ ଉଷ୍ଟସ୍ୟେ
ମୋହର ବୋଲକୁ ଯେବେ କରିବୁ ଥୋଡ଼ାଏ
ତୁ ମୋର ଠାକୁର ମୁହିଁ ତୋହର ସେବକ
ପୁରୁଷାନୁକ୍ରମେ ମୁହିଁ ଅଟେ ତୋର ଲୋକ ।
ତୁହର ଯେ ଭଲକଥା ମୋର ଶୁଭକର୍ମ
କେବେହେଁ ମୋର କଥାରେ ନୋହିବୁ ଭ୍ରମ
ମନ୍ତ୍ରୀ କହନ୍ତେ ଅସୁର ଭ୍ରମ ଛାଡ଼ିଗଲା
ତକ୍ଷଣେ ମନ୍ତ୍ରୀର ବାକ ସେହି ଦୃଢ଼ହେଲା ।
ବୋଲକର ବସାଇଲା ନେଇ ସନ୍ନିଧିର
କି ବୁଦ୍ଧି କରିବା ଏବେ କହ ମନ୍ତ୍ରୀବର ।
ମୋହର ପିତାକୁ ଇନ୍ଦ୍ର ପ୍ରାଣେ କଲା ହତ
ପିତୃକାର୍ଯ୍ୟ ନ କଲେ ଏ ଜୀବନ ବ୍ୟର୍ଥ ।
ଏତେକ ବଚନ ସେହି ଅସୁର କହନ୍ତେ
ମନ୍ତ୍ରୀ ବୋଲେ ଶୁଣ ପ୍ରଭୁ କଥାର ଉଦନ୍ତେ ।
କଇଳାସ କନ୍ଦରେ ଯେ ଛନ୍ତି ବିଶ୍ୱନାଥ
ଗଣେଶ୍ୱର ବୋଲି ଛନ୍ତି ଏକ ତାଙ୍କ ସୁତ ।
ପାର୍ବତୀଙ୍କ ଗର୍ଭରୁ ସେ ପୁତ୍ର ଜନ୍ମି ଛନ୍ତି
ଦକ୍ଷିଣ ଦ୍ୱାରପାଳ ସେ ଦ୍ୱାରେ ବସିଛନ୍ତି ।
ତାଙ୍କୁ ଯେବେ ସେବାକରି ତୁହି ମନାଇବୁ
ତାହାଙ୍କର ପ୍ରସାଦେ ତୁ ଇନ୍ଦ୍ରକୁ ମାରିବୁ ।
ଏସନ ବଚନ ମନ୍ତ୍ରୀବର ଯେ କହିଲା
ହୃଦପଦ୍ମ ମଧ୍ୟେ କଥା ଅସୁର ଘେନିଲା ।
ମନ୍ତ୍ରୀ ଯାହା କହିଲା ସେ ସ୍ୱରୂପ ବଚନ
ସେବାରେ ମୁଁ ମନାଇବି ଈଶ୍ୱର ନନ୍ଦନ ।
ପ୍ରଭାତରୁ ଯେ ଅସୁର ଉଠଇ ବହନ
ତତକ୍ଷଣେ ସାରିଲ ସେ ନିତ୍ୟ କର୍ମମାନ ।
ମନ୍ତ୍ରୀକି ବୋଇଲା ଚାଲ କଇଳାସ ଯିବା
ସେବାକରି ଗଣନାଥ ଦେବ ମନାଇବା ।
ଏତେକହି ମନ୍ତ୍ରୀସେନ ଗଲା ଯୋଦ୍ଧାଶିଷ୍ୟ
କଇଳାସର ଦକ୍ଷିଣ ଦୁଆରେ ପ୍ରବେଶ ।

ମନ୍ତ୍ରୀକି ଚାହିଁ ବୋଇଲା ଗଣନାଥ କାହିଁ
ହସ୍ତଠାରି ମନ୍ତ୍ରୀ ତାକୁ ଦେଲେକ ଦେଖାଇ ।
ବୋଇଲା ଏହି ଅଟନ୍ତି ଦେବ ଗଣପତି
ମନୁଷ୍ୟର ଶରୀର ଯେ ମୁଖ ଗଜମୂର୍ତ୍ତି ।
ଏମନ୍ତ ବଚନ ମନେ ଅସୁର ହସିଲା
ପୁଣି ସେ ମନ୍ତ୍ରୀଙ୍କି ଚାହିଁ ଏମନ୍ତ ପୁଚ୍ଛିଲା ।
ମନ୍ତ୍ରୀ ଯେ ବୋଇଲା ତୁହି ଶୁଣ ଏକମନେ
ବିସ୍ତାର କହିବ ମୁହିଁ ଏଥିର ବିଧାନେ ।
ଏକ ଦିନକରେ ପ୍ରଭୁ କାଶୀ ବିଶ୍ୱନାଥ
ବୃଷଭ ଚଢ଼ିଣ ବୁଲି ଗଲେ ଯେ ଜଗତ ।
ଭ୍ରମଣ କରି ମିଳଲେ ଯାଇ ସ୍ୱର୍ଗପୁରେ
ଦେଖିଲେ ସର୍ବଦେବତା ଅଛନ୍ତି ସେଠାରେ ।
ଈଶ୍ୱରଙ୍କୁ ଦେଖି ଦେବଗଣ ଯେ ଉଠିଲେ
କରପଦ୍ମ ଯୋଡ଼ି ଶିରେ ସର୍ବେ କରି ଦେଲେ
ଦେବତାଙ୍କଠାରୁ ଶିବ ପାଇଣ ସମ୍ମାନ
ସେହିଠାରୁ ମହାଦେବ ଚଳିଲେ ବହନ ।
ପ୍ରବେଶ ହୋଇଲେ ଯାଇ ସାବର୍ଣ୍ଣି ଭୁବନେ
ଦେଖିଲେ ଯେ ବସିଛନ୍ତି ବ୍ରହ୍ମା ଯୋଗଧ୍ୟାନେ
ସେହିଠାରେ ବିଶ୍ୱନାଥ ଦେଖି ଦେବବର
ତତକ୍ଷଣେ ଧ୍ୟାନ ଭଙ୍ଗ ଗଲା ତାହାଙ୍କର ।
ବୋଇଲେ ସେ କାହିଁଥିଲ ତୁମ୍ଭେ ବିଶ୍ୱେଶ୍ୱର
ଈଶ୍ୱର ବୋଇଲେ ଆମ୍ଭେ ଥିଲୁ ସ୍ୱର୍ଗପୁର ।
ତୁମ୍ଭଙ୍କୁ ସଂଗାଳ ଏବେ ଯିବୁ କଇଳାସ
କେବଣ ବେଦକୁ ତୁମ୍ଭେ କରୁଛ ଅଭ୍ୟାସ ।
ବ୍ରହ୍ମା ବୋଇଲେ ମୁଁ ଚାରି ବେଦକୁ ଘୋଷଇ
ଋକ ଯଜୁ ସାମ ଆଉ ଅଥର୍ବ ପଢ଼ଇ ।
ଈଶ୍ୱର ବୋଇଲେ ପଞ୍ଚବେଦ ମୁଁ ପଢ଼ଇ
ପାଞ୍ଚଗୋଟି ମୁଖେ ତାହା ଅଭ୍ୟାସ କରଇ ।
ବ୍ରହ୍ମା ବୋଇଲେ ସେ ବେଦ ମୁହିଁ କି ନ ପଢ଼ି
ଈଶ୍ୱର ବୋଇଲେ ମୁଖ କାହିଁଅଛି ବଢ଼ି ।
ଏହା ଶୁଣି ଦେବବର ଧ୍ୟାନରେ ବସିଲେ
ଶିରର ଉପରେ ଶିର ଏକ ଦେଖାଇଲେ ।
ପାଞ୍ଚମୁଖ ଦେଖି ଶିବ ମହାକୋପ କଲେ
ବ୍ରହ୍ମାଙ୍କର ମୁଖରେ ସେ ଚପୋଟେ ମାଇଲେ
ମୁଣ୍ଡ ଛିଡ଼ିଯାଇ ହସ୍ତେ ଲଗିଲା ତାଙ୍କର
ହସ୍ତ ଝାଡ଼ି ପକାନ୍ତେ ଦେବ ମହେଶ୍ୱର ।

ଛୁଆଡକେ ବ୍ରହ୍ମାମୁଣ୍ଡ ହସ୍ତୁ ନ ଛାଡ଼ିଲା
ଈଶ୍ୱରଙ୍କ ମନରେ ଯେ ବିମୁଖ ହୋଇଲା ।
ଯଶୋବନ୍ତୀପୁରୁଁ ହର ବାହାର ହୋଇଲେ
ସେ ଲଙ୍କାରେ କପିଳାସ କନ୍ଦରେ ନ ଗଲେ
ହଟକେଶ୍ୱର ତୀର୍ଥକୁ ଗଲେ ତପକର
ଧ୍ୟାନରେ ଯାଇ ବସିଲେ ତହିଁ ଦିଗମ୍ବର ।
ଏହାପରେ କେତେକାଳ ତହିଁ ବହିଗଲା
ପାର୍ବତୀଙ୍କ ମନ ଅତି ଚଞ୍ଚଳ ହୋଇଲା ।
ବୋଇଲେ ଈଶ୍ୱର ଅବା ମୋର ଗଲେ ଛାଡ଼ି
ଧ୍ୟାନ କରି ବସିଲେ ଯେ ତହିଁ ମହାମାୟୀ ।
ଧ୍ୟାନରେ ଜାଣିଲେ ହିମବନ୍ତର ଦୁଲଣୀ
ବୋଇଲେ ଯେ ବ୍ରହ୍ମହତ୍ୟା କଲେ ଶୂଳପାଣି
ତପ କରନ୍ତି ହଟକେଶ୍ୱର ଠାରେ ରହି
ପାର୍ବତୀ ଦେବୀଙ୍କ ଚିନ୍ତା କିଛି ନ ସରଇ ।
ଥୋଡ଼ାଏକ ଦିନ ଏହିମତେ ବହିଗଲା
ବସନ୍ତଋତୁ ଆସିଣ ପ୍ରବେଶ ହୋଇଲା ।
ସଖୀମାନଙ୍କୁ ସଙ୍ଗରେ ଘେନି ମହାସତୀ
ତବେ ଫୁଲବନେ ବିଜେ କଲେକ ପାର୍ବତୀ ।
ଆର୍ଦ୍ରା ନକ୍ଷତ୍ର ସେ ଦିନ ସାଧିକ ଯେ ତାର
ବୈଶାଖ ଶୁକ୍ଳଅଷ୍ଟମୀ ତିଥି ଗୁରୁବାର ।
ମେଷ ସଂକ୍ରାନ୍ତି ଉଦିତ ଦିନ ଯାଇ ଯୋଗ
ଦେବୀ ବସିଲେ କୈଳାସ ଗିରି ଶୃଙ୍ଗାଗ୍ର ।
ଦେଖିଲେ ଅନେକ ଶୋଭା ବନ ପାଉଅଛି
ନାନା ବୃକ୍ଷତଳେ କ୍ରୀଡ଼ା କରୁଛନ୍ତି ପକ୍ଷୀ ।
ପୁଷ୍ପରେ ବସି ଭ୍ରମରେ କେଶରେ ଭୁଲନ୍ତି
ମଉଳରେ ସର୍ବେ ରତିରଙ୍ଗରେ ଉଡ଼ନ୍ତି ।
ଏକେ ମଧୁମାସ ପୁଣି ମଳୟ ପବନ
ସୁଗନ୍ଧ ଘେନି ବହଇ ବାତ ଅନୁକ୍ଷଣ ।
ପକ୍ଷୀଙ୍କର କ୍ରୀଡ଼ା ଦେବୀ ନୟନେ ଦେଖିଲେ
ଶୋକଭରେ ଈଶ୍ୱରଙ୍କୁ ମନେ ସୁମରିଲେ ।
ଦେବୀଙ୍କର ଅଙ୍ଗେ କାମଜ୍ୱର ଯେ ଘୋଟିଲା
ତତ୍କ୍ଷଣ ତାଙ୍କ ରଜ ଭୂମିରେ ପଡ଼ିଲା ।
ଦେଖିଣ ପାର୍ବତୀ ତାହା ହସ୍ତରେ ଧରିଲେ
ଈଶ୍ୱରଙ୍କ ବୀର୍ଯ୍ୟ ଯେବେ ମିଶନ୍ତା ବୋଇଲେ
ସଇନ୍ଦ୍ର ପୁତ୍ର ଗୋଟିଏ ଜନମ ହୁଅନ୍ତା
ବଳବନ୍ତ ରୂପବନ୍ତ ସମରେ ଶକତା ।

ଏମନ୍ତ ଚିନ୍ତିଣ ଦେବୀ ମନେ ସୁମରିଲେ
ଈଶ୍ୱର ଅଦ୍ଭୁତ ନେଇ ଜଳରେ ଗୋଳିଲେ ।
ତତକ୍ଷଣ ଘଟଣା ଯେ ଶୁଣ ନୃପଗଣ
ପିଣ୍ଡା ଏକ ଗଢ଼ିଲେ ଦେବୀ ତତକ୍ଷଣ ।
ଅତି ସୁକୁମାର ସେହି ପ୍ରତିମାକୁ ଦେଖି
ମନ୍ତ୍ରପାଣି ସିଞ୍ଚିଲେ ଯେ ତହିଁ ଶଶୀମୁଖୀ ।
ଜୀବନ୍ୟାସ ପାଇ ବେଗେ ଉଠିଲେ କୁମର
ପାର୍ବତୀଙ୍କ ଚରଣେ ସେହି କଲେ ନମସ୍କାର ।
କୋଳେ ବସାଇଣ ପୁତ୍ର ସ୍ନେହେ ମାତେଶ୍ୱରୀ
ସ୍ତନରୁ କ୍ଷୀର ତା ମୁଖେ ଦେଲେ ପ୍ରୀତିକରି ।
ପାର୍ବତୀଙ୍କ ସ୍ତନୁ କ୍ଷୀର ଖାଇ ପ୍ରାଣମଣି
ଅଚିରକେ ବଳସାର ହେଲା ସେହିକ୍ଷଣି ।
ପାର୍ବତୀଙ୍କ ମୁଖ ଚାହିଁ ବୋଲଇ ବଚନ
କି କରିବି ମାତା ମୋତେ କର ଆଜ୍ଞାଦାନ ।
ପାର୍ବତୀ ବୋଲନ୍ତି ଶୁଣ ଶୁଣ ରେ କୁମର
ଦକ୍ଷିଣ ଦୁଆର ତାକୁ ବୋଇଲା ତୋହର ।
ଜଗିଲ ହୋଇଣ ତୁମ୍ଭ ଦ୍ୱାରେ ବସିଥିବୁ
ପୁରୁଷଙ୍କୁ ଭିତରକୁ ଛାଡ଼ି ତୁ ନ ଦେବୁ ।
ଏତେ କହି ଦେବୀ ତହୁଁ ଭିତରକୁ ଗଲେ
ଗଣନାଥ ସେ ଦକ୍ଷିଣ ଦ୍ୱାରେଣ ରହିଲେ ।
ହଟକେଶ୍ୱରେ ଈଶ୍ୱର କରୁଥିଲେ ତପ
ତହୁଁ କ୍ଷୟ ହେଲା ତାଙ୍କ ବ୍ରହ୍ମହତ୍ୟା ପାପ ।
ବିଭୂତି ଭୂଷଣ ଅଙ୍ଗ ଡମ୍ବରୁ ହସ୍ତରେ
କୁଠାର ଧରିଅଛନ୍ତି ଯେ ଦକ୍ଷିଣ କରେ ।
କଷା ବସନ ଖଣ୍ଡିଏ କଟୀରେ ଭୂଷଣ
ଦିଗମ୍ବର ବେଶ ହୋଇ ଅଇଲେ ତକ୍ଷଣ ।
ଦକ୍ଷିଣ ଦୁଆରେ ଆସି ମିଳିଲେ ବହନ
ଦେଖିଲେ ସେ ଦ୍ୱାରେ ଅଛି ଏକଇ ନନ୍ଦନ ।
ଈଶ୍ୱର ବୋଇଲେ ଆରେ ଦ୍ୱାର ଛାଡ଼ି ବାଳ
ଭିତରେ ଯିବୁ ନ ଥିଲୁ ବହୁତ ଯେ କାଳ ।
ଈଶ୍ୱର କଥା କୁମର ତିଳେ ନ ଘେନିଲେ
ବିଶ୍ୱନାଥ ଦେବଙ୍କୁ ସେ ଦ୍ୱାର ନ ଛାଡ଼ିଲେ ।
ଦ୍ୱାର ନ ଛାଡ଼ନ୍ତେ ହର ମହାକୋପ କଲେ
କୁଠାର ଘୋଟି ବାଳକ ଗଳେ ପ୍ରହାରିଲେ ।
ମୁଣ୍ଡ ଛିଡ଼ିଯାଇ ଶିଶୁ ପଡ଼ିଲେ ଭୂମିରେ
ତୁରିତେ ଈଶ୍ୱର ତହୁଁ ପଶିଲେ ଭିତରେ ।

କୁମର ମୁଣ୍ଡ ଯେ ତହିଁ ଛିଡ଼ି ପଡ଼ିଥିଲା
ଏକଇ ଅସୁର ତାହା ଗିଳି ପକାଇଲା ।

ଈଶ୍ୱରଙ୍କୁ ଦେଖି ଦେବୀ ପାର୍ବତୀ ଉଠିଲେ
ମହାଦେବଙ୍କ ଚରଣେ ନମସ୍କାର କଲେ ।

ବୋଇଲେ ଆଇଲ ଏତେକାଳେ ବିଶ୍ୱନାଥ
ଏତେ ବୋଲି ଦେବୀ ଦେଲେ ମନରେ ଉଦକ
ଚରଣ ଧୋଇଲେ ତହିଁ ବସିଲେ ଶଙ୍କର
ମଣୋହି କରନ୍ତି ଷଡ଼ରସେ ଶୂଳଧର ।

କୁଠାର ଦେଖିଣ ପଚାରନ୍ତି ମହାମାୟୀ
କୁଠାରେ ରୁଧିର ଲାଗିଅଛି କି ଗୋସାଇଁ ।

ଏହା ଶୁଣି ହସିଲେକ ଦେବ ଶୂଳହସ୍ତ
ବୋଇଲେ ଶୁଣ ତୁ ଆଗୋ ପ୍ରାଣର ସଙ୍ଗାତ
ଦକ୍ଷିଣ ଦୁଆରେ ଏକ ଶିଶୁ ବସିଥିଲା
ଆମ୍ଭଙ୍କୁ ସେ ଭୁବନକୁ ପୁରିବା ନ ଦେଲା ।

କୋପେ ଆମ୍ଭେ ତାର ବେକେ ମାଇଲୁ କୁଠାର
ବେକ ଛିଡ଼ିଯାଇ ଶିଶୁ ପଡ଼ିଲା ଭୂମିର ।

ତେଣୁ ତାହାର ରୁଧିର ଲାଗିଛି କୁଠାରେ
ପାର୍ବତୀ ଶୁଣିଲେ ଯହୁଁ ଏମନ୍ତ ପ୍ରକାରେ ।

କୁମରର ହତ ଶୁଣି ଦେବୀ ମହାମାୟୀ
ଶୋକାତୁର ହୋଇଣ ସେ ଉଠିଲେ ବୋବାଇ
ଗଉରୀଙ୍କ ଶୋକ ଯହୁଁ ଦେଖିଣ ଶଙ୍କର
ବୋଇଲେ କିସ ଚରିତ କହ ମୋ ଆଗର ।

ପଚାରନ୍ତେ ଶଙ୍କର ଯେ କହନ୍ତି ଗଉରୀ
ସେ ତୁମ୍ଭ କୁମର ଏବେ ଶୁଣ ଶୂଳଧାରୀ ।

ଈଶ୍ୱର ବୋଇଲେ କହ କେମନ୍ତ କୁମର
ସନ୍ତୋଷ ମନରେ ତାହା ଆମ୍ଭ ସନ୍ନିଧର ।

ଈଶ୍ୱର ଯେ ପଚାରନ୍ତି ପାର୍ବତୀ କହନ୍ତି
ସାବଧାନେ ଶୁଣ ଦେବ ଏଥିର ଯେ ଗତି ।

କାମଦେବ ପୀଡ଼ା ମୋର ହୋଇଲା ଅଙ୍ଗରେ
ତେଣୁ ତୁମ୍ଭେ ଥିଲ ପ୍ରଭୁ ହଟକେଶ ପୁରେ ।

ତକ୍ଷଣେ ମୋଠାରୁ ରଜ ସ୍ଖଳିତ ହୋଇଲା
ଆବର ତାହା ଯାଇଣ ଭୂମିରେ ପଡ଼ିଲା ।

ସେ ରଜରେ ମିଶାଇଲି ତୁମ୍ଭର ବିଭୂତି
ସଇନ୍ଦୁ ସେହି କୁମର ହେଲା ଉତପତ୍ତି ।

ଶୁଣି ତନ୍ମୟ ହୋଇଲେ ଦେବ ବିଶ୍ୱନାଥ
ଏହା ମନେ ଭବ ଦେବ ହେଲେ ଚିନ୍ତୀଭୂତ

ତତକ୍ଷଣେ ଦେବ ଉଠି ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ଦକ୍ଷିଣ ଦୁଆର ।

ଦେଖିଲେ ତହିଁ ପଡ଼ିଛି ପୁତ୍ର ଗଣ୍ଡିଗୋଟି
ମୁଣ୍ଡଗୋଟି ତହିଁ ନାହିଁ ବିସ୍ମୟ ଧୂର୍ଜଟି ।

ଏ ସମୟେ ପାର୍ବତୀ ଯେ ମିଳିଲେକ ଯାଇ
ଦେଖିଣ ଅତି ବିକଳ ହେଲେ ମହାମାୟୀ ।

ବୋଇଲେ ହେ ବିଶ୍ୱନାଥ ଏବେ କର୍ମ କଲ
ଏହା ପରି ପୁତ୍ର ଶିର କାଟି ପକାଇଲ ।

ସେ ମୁଣ୍ଡ ଭକ୍ଷି ଅସୁର ତହୁଁ ପଳାଇଲା
ଉତ୍ତରକୁ ମୁଣ୍ଡକରି ଗଜ ଶୋଇଥିଲା ।

ତାହା ମୁଣ୍ଡକୁ କୁଠାରେ ଶିବ ଛିଣ୍ଡାଇଲେ
କୁମର ବେକରେ ନେଇ ତାହା ଲଗାଇଲେ
ଗଣନାଥ ବୋଲି ନାମ ବିଶ୍ୱନାଥ ଦେଲେ
ତେଣୁ ସେହି ଗଣେଶ୍ୱର ନାମକୁ ବହିଲେ ।

କୁଳପାଳ ମନ୍ତ୍ରୀ ଏହା ବୃତ୍ତାନ୍ତ କହିଲା
ମୂଢ଼ାସୁର ଶୁଣି ଅତି ସନ୍ତୋଷ ହୋଇଲା ।

ଗଣନାଥ ସ୍ଥାନରେ ସେ ମିଳିଲାକ ଯାଇ
ଷଣ୍ଡେହୁରୁ ଦେଖି ତାଙ୍କ ଚରଣେ ପଡ଼ଇ ।

ଶିରେ କରବେଇ ଭକ୍ତ ହୋଇଣ ରହିଲା
ମନେ ମନେ ବହୁତର ସ୍ତୁତି ବଖାଣିଲା ।

ତାହାର ଭକତି ଦେଖି ଦେବ ଗଣନାଥ
ବୋଇଲେ ତୁ ବର ମାଗ ମୂଢ଼ାସୁର ସୁତ
ଏହା ଶୁଣି ମୂଢ଼ାସୁର ବୋଇଲା ବଚନ
ଯେବେ ଦୟା କଲୁ ମୋତେ ପାର୍ବତୀ ନନ୍ଦନ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ତିନି ଭୁବନରେ
ଜିଣନ୍ତା ନୋହିବ କେହି ମୋତେ ସଂଗ୍ରାମରେ
ଦେବ ଦାନବ ମାନବ ଜିଣନ୍ତା ନୋହିବ
ଏହି ଶରୀର ମୋହର ଅକ୍ଷୟ ହୋଇବ ।

କାହା ହସ୍ତେ ଶିରଚ୍ଛେଦ ନୋହିବ ମୋହର
ଗଣନାଥ ଦେବ ମୋତେ ଦିଅନ୍ତୁ ଏହି ବର ।

ଅସ୍ତୁ ହେଉ ବୋଇଲେ ସେ ଦେବ ଗଣେଶ୍ୱର
ମୂଢ଼ାସୁର ନମେ ଗଣନାଥଙ୍କ ପୟର ।

ଉଠି କରପତ୍ର ଯୋଡ଼ି ପୁଣି ବସ୍ତରଇଁ
କଥାଏ ମୁଁ କହିବଇଁ ଶୁଣ ହେ ଗୋସାଇଁ ।

ତୁମ୍ଭ ଅଙ୍ଗରେ ଅମର ବର ମୁଁ ପାଇଲି
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ କାରଣ ହୋଇଲି ।

ଏତେକ କଥାଏକ ଦେବ ସର୍ବଜ୍ଞ ମୂର୍ତ୍ତି
ଜନମ ହୋଇବେ ମୃତ୍ୟୁରସ୍ତ ତ ଅନ୍ତର ।
କେମନ୍ତ ପ୍ରକାରେ ମୋତେ ହୋଇବ ମରଣ
ସାବଧାନେ କହିବା ତା ଗଉରୀନନ୍ଦନ ।
ମୃଡାସୁର ବାକ୍ୟେ ଗଣନାଥ ସେ ହସିଲେ
ଭଲକଥା କହୁ ବୋଲି ସନ୍ତୋଷ ହୋଇଲେ
ଅସୁରକୁ ଚାହିଁ ଗଣନାଥ ସେ କହନ୍ତି
ଶୁଣ ତୁ ଅସୁର କପଟ ମହାମତି ।
ଯାହା ପଚାରିଲୁ ଏବେ କହିବା ତୋହର
ଜନ୍ମ ହେଲେ ମରଣଟି ଅଛଇ ଆବର ।
ଯେମନ୍ତେ ମରିବୁ ଶୁଣ ତୋତେ କହିଦେବା
ଦୃଢ଼କରି ମନେ ତାହା ଧରିଥିବୁ ବାବା ।
ଶିର ଯେ କାଟିଲେ ତୋର ନୋହିବ ମରଣ
କାଟୁଥିଲେ ଲାଗୁଥିବ ଶିର ପୁଣ ପୁଣ ।
କହୁଖୋଡ଼ ତୋର ଶିର କେବେ ନ ଛୁଟିବ
କୁଳ ଦ୍ରବ୍ୟରେ ତୋର ଅସ୍ତ୍ର ନ ଫୁଟିବ ।
ଏତେକ କଥାରେ ତୋହର ନୋହିବ ମରଣ
ଅଗ୍ନି ଶର ହେଲି ଯେବେ ଲଗିବ ବହନ ।
ଅଗ୍ନି ଶରେ ଦହ୍ୟ ନଷ୍ଟେ ହେବ ତୋର କାୟ
ଦୃଢ଼କରି ରଖିଥିବୁ ମନରେ ତୁ ସତ୍ୟ ।
ଯେ ଅଶ୍ୱିନୀକୁମାରଙ୍କ ହୋଇବ ତନୁଜ
ସେହି ତୋତେ ଅଗ୍ନି ଶରେ କରିବ ବଧ୍ୟ
ଅଶ୍ୱିନୀକୁମାର ସାନ୍ଦ୍ରେ ମାନବୀ ଗର୍ଭରେ
ଯେ ଜନମ ହୋଇଥିବ ତୋ ମୃତ୍ୟୁ ତା କରେ
ଏସନକ କରି ଯହୁଁ ଦେଲେ ଗଣେଶ୍ୱର
ଆନନ୍ଦେ ନିଜ ରାଜ୍ୟକୁ ଗଲାକ ଅସୁର
ଗର୍ବିଷ୍ଠ ହୋଇଣ ସେହୁ ରାଜ୍ୟ କରୁଥାଇ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ପାର ନ ଗଣଇ ।
ପ୍ରଭାତେ ନିଦ୍ରାରୁ ସେ ଉଠଇ ବହନ
ନିତ୍ୟକର୍ମ ବିଧିମାନ ସାରି ତତକ୍ଷଣ ।
ଗଣନାଥଙ୍କୁ ଯେ ସେହି ଦର୍ଶନ କରଇ
ଉଦକ ପ୍ରସାଦ ନିତ୍ୟ ହେତାରେ ଭୁଞ୍ଜଇ ।
ଶତ ଅଷ୍ଟୋତ୍ତର ବାର କରଇ ପ୍ରଣାମ
ନଗରକୁ ଆସଇ ସେ ପାଇଣ କଲ୍ୟାଣ ।
ଏରୂପେ ଗଣନାଥଙ୍କୁ କରୁଥାଇ ସେବା
ନ ଜାଣଇ ଗଣନାଥ ବିନୁ ଅନ୍ୟଦେବା ।

ନମସ୍ତେ କୌଶଲ୍ୟା ଦେବୀ ସୁତ ରଘୁବୀର
ଜାନକୀ ଚିତ୍ତ ଚୋରକ ସ୍ୱାମୀ ଦଶରଥିର ।
ଅସୁର ନିବାରଣେ ତୁ ବୀର ଚୂଡ଼ାମଣି
କରତେ ତୋହର ନାମ ବଖାଣନ୍ତି ମୁନି ।
ଦଶରଥ ନନ୍ଦନ ଯେ ନାମ ରାମଚନ୍ଦ୍ର
ଜନ ଶାରଳା ଦାସକୁ ରଖ ହେ ନରେନ୍ଦ୍ର ।
ତବ ତରୁଣାରବିନ୍ଦ ନିତ୍ୟ ମୂର୍ତ୍ତି ଧ୍ୟାୟି
ଭବସାଗର କଡ଼ର ଜାନକୀର ସାଇଁ ।

---

## ମୃଡାସୁରର ସ୍ୱର୍ଗ ଆକ୍ରମଣ

ଏଥୁଅନ୍ତେ ସେ ଶଲଙ୍କ ଦେଖ ମହାରାଜ
ଅଗସ୍ତିଙ୍କ ଚରଣେ କରଇ ନମସ୍ତୁ ।
ଗଣେଶଙ୍କ ଠାରୁ ବର ପାଇ କସ କଲ
ଏହା ସଂକ୍ଷେପିଣ ମୋତେ କହ ମୁନି ଭଲ ।
ଶୁଣ ଆହେ। ମନୁରାଜା କହନ୍ତି ଅଗସ୍ତି
ଏସନକ ହୋଇ ଶୁଣ ମଧ୍ୟପର୍ବ ଗୀତ ।
ତୁ ଭାଗ୍ୟବନ୍ତ ଆବର ଅଟୁ ପୁଣ୍ୟବେତ୍ତ୍ରୀ
ହେଣୁ କରୁଣରେ କୃଷ୍ଣପାଦ ଆଉ ଧ୍ୟାୟି ।
ଏହିପରି ଖୋଜାଏକ ଦିନ ବହୁପଲ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ପାର ନ ଗଣିଲ ।
ମାର୍ଗଶିର ମାସର ଯେ ଶୁକ୍ଳ ତ୍ରୟୋଦଶୀ
ଆରଦ୍ରା ନକ୍ଷତ୍ର ଚନ୍ଦ୍ର ମିଥୁନରେ ବସି ।
ତୈତିଳ ନାମେ କରଣ ଇନ୍ଦ୍ର ନାମେ ଯୋଗ
ଆସ୍ଥାନେ ବସି ପ୍ରତଜ୍ଞା କରେ ଦେଖ ଦେଖ ।
ମନ୍ତ୍ରୀକୁ ଚାହିଁ ଅସୁର କରଇ ଉତ୍ତର
ଆଠ ସଜନର ମୋର ତୁ ହୋ ମନ୍ତ୍ରିବର ।
ଏହିପର ସ୍ୱର୍ଗପୁରେ ପଶି ଯୁଝିବଇଁ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ମୋର ସମ ନାହିଁ ।
ଇନ୍ଦ୍ର ଦେବତାର କୁଳେ କରିବ ସମର
ତେବେ ସିନା ସିଦ୍ଧକାର୍ଯ୍ୟ ହୋଇବ ମୋହର
ସେ ଅସୁର ମୃଡାସୁର ଯହୁଁ ଆଜ୍ଞାଦେଲା
ଶୁଣି ଜରୁପାଇ ମନ୍ତ୍ରୀ ବହନ ଚଳିଲା ।
ଆଠ ସାଜ ସାଜ ବୋଲି ଦେଲା ସେ ଟମକ
ରାଜ୍ୟରେ ତାର ଉତ୍ସବ ହୋଇଲା ଅନେକ ।
ସାତପୁଣ ଉତ୍ସର୍ଗ ଯେ ସାଅପୁଣ ପ୍ରତି
ସେ ନଗରେ ବଂଶଲକ୍ଷ ଘର ଯେ ଅଛନ୍ତି ।

ଧନବନ୍ତ ପଣେ ଯେହ୍ନେ କୁବେର ସମାନ
ପ୍ରଜାମାନେ ସୁଖେ ଭର୍ତ୍ତି ନେଉଛନ୍ତି ଧନ ।
ଥାଟ ତାର କେତେ କେହ୍ନ ନ ପାଇ କଳନା
ନଗରରେ ବାଜୁଥାଇ ଅପୂର୍ବ ବାଜଣା ।
କୋଟିଲକ୍ଷ ହସ୍ତୀ ପାଞ୍ଚଲକ୍ଷ ଅଶ୍ୱ ଥାଇ
ଚଉଦକୋଟି ଯେ ବଳ ତାହାର ଅଛଇ ।
ରଥୀ ପଦାତି ତାହାର ଅଛଇ ଅପାର
ଏହିମତ ରାଜ୍ୟକରେ ପ୍ରତାପୀ ଅସୁର ।
ଆଜ୍ଞାପାଇ ବେଗେ ଉଠୁଁ ମନ୍ତ୍ରୀବର ଗଲା
ଅସୁର ରାଜା ସମ୍ମୁଖରେ ଯାଇଁ ଜଣାଇଲା ।
ବୋଇଲା ଶୁଣ ଅସୁରକୁଳ ନୃପସାଇଁ
ଆଜ୍ଞାଦେବେ ଥାଟ ତୋର ଯିବେ ଆଗହୋଇ
ରଜା ବୋଲେ କେତେ ସୈନ୍ୟସାଜିଲୁ ମୋହର
ହାତୀ ରଥୀ ସେନ୍ୟ କେତେ ସାଜିଲୁ ଆବର
ମନ୍ତ୍ରୀ ବୋଇଲା ଯେ ସାତ ସହସ୍ର ପଦାତି
ସଜ ହୋଇଲେ ଘୋଡ଼ାର ଦଶଲକ୍ଷ ହାତୀ ।
ବାରକୋଟି ସୈନ୍ୟ ସଜହୋଇ ବାହାରିଲେ
ଆଗହୋଇ ସୈନ୍ୟଯିବେ ତୋର ଆଜ୍ଞାହେଲେ
ମନ୍ତ୍ରୀର ବଚନେ ମୂଢ଼ାସୁର ଯେ ବୋଲଇ
ଆଗୁଆଣି ବସ୍ତ୍ର ଲୁହ ଧଅ ହୋ ଚଳାଇ ।
ଟମକ ନିଶାଣ ପୁଣି ଘମୁସ ବଜାଇ
ବାହାର ହୋଇଲେ ଥାଟ ଆଗଭର ହୋଇ
ବାଦ୍ୟ ଘୋର ନାଦେ ତାର କମ୍ପୁଛି ମେଦିନୀ
ଆକାଶ ଯେ ଉଚ୍ଛୁଳଇ ମୁଖଶବ୍ଦ ଧ୍ୱନି ।
ସ୍ଥଳସ୍ଥ ଜଳର ପ୍ରାପ୍ତ ସୈନ୍ୟ ଆସିବାର
ଉତ୍କଟର ବାସୁକ ଯେ ନ ଟେକଇ ଶିର ।
ଉପ୍ରେ ହସ୍ତ ନୋହିଲେ ଦେବ ଦିବାକର
ମୁଖ ଶବଦେ କମ୍ପଇ ମେରୁର କନ୍ଦର ।
ଆଗହୋଇ ମନ୍ତ୍ରୀଥାଟ ଚଳାଇଣ ଗଲା
ଖଣ୍ଡେଦୂର ଯାଇ ସେହୁ ଥାଟ ରୁହାଇଲା ।
ପଛେ ମୂଢ଼ାସୁର ରଥ ଚଢ଼ିଣ ବାହାର
ଶସ୍ତ୍ରମାନ ଥୋଇଅଛି ରଥର ଉପର ।
ଢୋଲ ଦମାଲୁ ଟମକ ନିଶାଣ ବଜାଇ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ନାଦେ ଉଚ୍ଛୁଳଇ ।
ଥାଟ ସୈନ୍ୟ ସଙ୍ଗେ ନେଇ ଚଳଇ ଅସୁର
ସ୍ୱର୍ଗପୁରଯାକ ଖୋଜି ନାଶିବଇଁ ସୁର ।

ଇନ୍ଦ୍ରର ଜାଣିବା ଆଜ କେତେ ବଡ଼ପଣ
ମୋହର ପିତାକୁ ସେହୁ ଦେଇଛି ମରଣ ।
ମୂଢ଼ାସୁର ଏହିମତେ ପ୍ରତିଜ୍ଞା କରଇ
ଦେବ ଗନ୍ଧର୍ବ ତାହାକୁ ଭଲେ ନ ଡରଇ ।
ଧୀର ଧୀର କରି ସେହୁ ଚଳାଇଲା ଥାଟ
ମାର ମାର ଶବଦରେ କମ୍ପୁଛି ସୃଷ୍ଟି ।
ଶୁଣ ଆହେ। ମନୁରାଜା ବଲଙ୍କାର ରାୟ
ପରମ ଆଖ୍ୟାନ ଏହି ସୁଧା ରସମୟ ।
ଯେତେବେଳେ ସେ ଅସୁର ସ୍ୱର୍ଗକୁ ବାହିଲା
ଅମର ମଣ୍ଡଳେ ମହା ଡମକ ପଡ଼ିଲା ।
ସଭା ମଣ୍ଡାଇଣ ବସିଥିଲେ ସୁରନାଥ
ଗନ୍ଧର୍ବଗଣ ଦେବତା ଅଛନ୍ତି ବହୁତ ।
ବ୍ରହ୍ମଋଷି ରାଜଋଷି ଅଛନ୍ତି ଆସ୍ଥାନେ
ଅଙ୍ଗାରପର୍ଣ୍ଣଗ ସୁରସେନ ଚିତ୍ରସେନେ ।
ଇନ୍ଦ୍ରବୃନ୍ଦମାନେ ସଙ୍ଗେ ଅଛନ୍ତି ଯେ ବସି
ଅପ୍ସରା କନ୍ୟାଗଣ ନୃତ୍ୟକରଙ୍ଗେ ରସି ।
ବିଶ୍ୱେଦେବା ଅଷ୍ଟାବସୁ ଅଶ୍ୱିମାନଙ୍କ ମୂଳେ
ପବନ ଯେ ଦିବାକର ଚନ୍ଦ୍ରଦେବ ମେଳେ ।
ବୃଷଭ ପିଠିରେ ଚଢ଼ି ଈଶ୍ୱର ମିଳିଲେ
ଆସ୍ଥାନ ଉପରେ ଯାଇ ସେହୁ ଉଭାକଲେ ।
ହଂସର ପିଠି ଉପରେ ଚଢ଼ି ବେଦବର
ସେ ଆସି ମିଳିଲେ ସେହି ଅମର ସଭାର ।
ବାମଦେବ ସଜ ହୋଇ ଭରଣ ଅଇଲେ
ବେଶ ଭୂଷଣ ହୋଇଣ ସଭାରେ ବସିଲେ ।
ସକଳ ଦେବତା ଯେଝାସ୍ଥାନେ ବସିକରି
ବାସବ ଦେବ ସଭାକୁ ଅଛନ୍ତି ଆବୋରି ।
ନାରଦ ଯେ ବୀଣାଯନ୍ତ୍ର ବଜାନ୍ତି ହରଷେ
ବୃହସ୍ପତି ବସିଛନ୍ତି ବାସବର ପାଶେ ।
ବ୍ରହ୍ମାଈଶ୍ୱର ଏ ଦୁଇ ହେଲେ ଏକସ୍ଥାନ
କୁବେର ଯେ ରହିଛନ୍ତି ତାଙ୍କ ସନ୍ନିଧାନ ।
ଶଙ୍ଖନିଧି ପଦ୍ମନିଧି ବରୁଣ ଅଛନ୍ତି
ଏ ସମୟେ ମିଳିଲେ ଯେ ଭର୍ତ୍ତି ବସୁମତୀ ।
ମୁଖରୁ ରୁଧିର ତାର ବହେ ଝରଝର
ଆସିଣ ମିଳିଲେ ଦେବ ପ୍ରଭା ସନ୍ନିଧିର ।
ପାଦେ ପଡ଼ି ଶୋଇଣ ଯେ ବହେ କରଯୋଡ଼ି
ସାବଧାନେ ଶୁଣ ତୁ ହୋ ଦେବ ବଜ୍ରଧାରୀ ।

ଅସୁରଙ୍କ ଭୟ ମୁହିଁ ନ ପାରଇ ସହି
ତୁମ୍ଭର ପୃଥିବୀ ତୁମ୍ଭେ ସମ୍ଭାଳ ହୋ ଯାଇ ।
ଏତେ କହି ବସୁମତୀ ମଉନ ହୋଇଲା
ବ୍ରହ୍ମାଙ୍କ ମୁଖରୁ ଇନ୍ଦ୍ର ଦେବତା ଶୁଣିଲା ।
ବୋଇଲା ହେ ଦେବବର ଅବଧାନ କର
ବସୁମତୀ କହଇକ ଶୁଣ କୁଶଧର ।
ନ ସହଇ ଅସୁରଙ୍କ ଭାର ମୋର ଶିର
ପ୍ରତିଦିନ ବହନ୍ତୁ ମୋ ବହଲ ରୁଧିର ।
ମୂଢ଼ାସୁର ବୋଲି ତହିଁ ଅସୁରେକ ଅଛି
ତା ପାଦ ପଡ଼ନ୍ତେ ମୁଖୁ ରୁଧିର ଗଳୁଛି ।
ବସୁମତୀ ମୁଖରୁ ଯେ ଏହାପରି ଶୁଣି
ପୁଚ୍ଛନ୍ତି ବୃହସ୍ପତିଙ୍କି ପ୍ରଭୁ କୁଶପାଣି ।
କହ ବା ହେ ଗୁରୁ ସେହି କାହିଁର ଅସୁର
କହିବାକୁ ତାତ ପୁଣି କାହାର କୁମର ।
ଦେବବ୍ରହ୍ମା ପୁଚ୍ଛଇନ୍ତେ ଗୁରୁ ଯେ କହନ୍ତି
ସାବଧାନ ହୋଇ ଶୁଣ ସାବର୍ଣ୍ଣୀର ପତି ।
କଇଳାସ କନ୍ଦରର ଉତ୍ତର ପାର୍ଶ୍ୱ
ଅଳମୁଖା ନାମେ ତହିଁ ଅଛି ଏକ ଦେଶ ।
ମୂଢ଼ାସୁର ବୋଲିଣ ସେ ରାଜ୍ୟକୁ ପାଳଇ
ତାହାର ଭୟରେ ପୃଥ୍ୱୀ ଥରହର ହୋଇ ।
ତାହାର ତନୟ ଅଟେ ବୀର ପ୍ରୌଢ଼ ସୁର
ତାହାକୁ ମାରିଲେ ସ୍ୱର୍ଗପୁରେ ବଜ୍ରଧର ।
ମୂଢ଼ାସୁର ନାମେ ହେଲା ତାହାର ନନ୍ଦନ
ଗଣନାଥ ବରେ ସେହୁ ପ୍ରତାପୀ ରାଜନ ।
ତାହାର ଧାଡ଼ରେ ଦେବେ ରହି ନ ପାରିବେ
ଗନ୍ଧର୍ବ ଦେବତାଗଣ ଅପସରି ଯିବେ ।
ତାହାର ହାତରେ ସେହୁ ନୋହିବ ବିନାଶ
ଦେବ ଦାନବ ସଂଗ୍ରାମେ ପାଇବ ସେ ଯଶ ।
ଇନ୍ଦ୍ର ବୋଲେ ତାହା କୁଳେ ଯୁଦ୍ଧ କରିବଇଁ
ଅମରକୁ କଷ୍ଟେ ଯେବେ ଆସିବ ସେ ବାହି ।
ବୃହସ୍ପତି ବୋଇଲେ ତୁ ଶୁଣ ସୁରଗଣ
ତୋହର ହସ୍ତରେ ତାର ନୋହିବ ମରଣ ।
ବୃହସ୍ପତି କହିବାର ବାସବ ଶୁଣିଲେ
ଯେ ଯାହାମତେ ମଉନ ହୋଇଣ ରହିଲେ ।
ବସୁଧାକୁ ଗୁହିଁ ବ୍ରହ୍ମା ତହୁଁ ଆଜ୍ଞା ଦେଲେ
ଖୋଜାଏ ବାଳକୁ ଥାପ ପୁଣି ମଥାତଳେ ।

ଉପାୟ କରିଣ ତା'ର କରିବା ବିନାଶ
ବର ଦେଇଛନ୍ତି ତାକୁ ପାର୍ବତୀଙ୍କ ଶିଷ୍ୟ ।
ବସୁମତୀକି ପ୍ରବୋଧ ଦେଇ ଦେବବର
ହଂସ ଚଢ଼ିଣ ସତ୍ୱରୁ ହୋଇଲେ ବାହାର ।
ଯଶୋବନ୍ତୀ ପୁରେ ଗଲେ ଚଳି କୁଶଧାସ
ଦେବତାଏ ଯେ ଯାହାର ପୁରେ ଯାଇ ମିଳି ।
ଈଶ୍ୱର ଯେ କଇଳାସ କନ୍ଦରକୁ ଗଲେ
ଦେବତାଙ୍କୁ ଘେନ ଇନ୍ଦ୍ରଦେବ ବସିଥିଲେ ।
ଏମନ୍ତ ସମୟେ ଆସି ଦେବଙ୍କ ଡଗର
ସୁଧର୍ମା ସଭାରେ ମିଳି ବାସବ ଛାମୁର ।
ବୋଇଲା ସେ ସାବଧାନେ ଶୁଣ ସୁରସାଇଁ
ମୂଢ଼ାସୁର ସ୍ୱର୍ଗପୁରେ ଆସୁଅଛି ବାହି ।
ଆଠ ସୈନ୍ୟ ତାର ଦେବ କଳନା ନ ଯାଇ
ହାତୀ ରଥୀ ପଦାତି ଯେ ଅନେକ ଅଛଇ ।
ଏହିକ୍ଷଣି ଦେବ ସେହୁ ଅମରେ ପଶିବ
ସ୍ୱର୍ଗପୁର ଯାକ ତୋର ଜର କରିଦେବ ।
ଡଗର ମୁଖରୁ ଇନ୍ଦ୍ର ଏସନକ ଶୁଣି
ମନେ ମନେ ବଡ଼ ଚିନ୍ତା କଲେ ବଜ୍ରପାଣି ।
ବୃହସ୍ପତି ବୋଲେ ସ୍ୱର୍ଗେ ରହି ନ ପାରିବା
ସ୍ୱର୍ଗ ଛାଡ଼ି ସ୍ୱଲ ଆମ୍ଭେ ପଳାଇଣ ଯିବା ।
ଗହୁଁ ଗହୁଁ ଆଉ ଏକ ଡଗର ଅଇଲା
ପାଏ ପଡ଼ ଖୋଇ ସେହୁ କଥାଏ କହିଲା ।
ଶୁଣି ଦେବତାଏ ମନେ ମହାଭୟ କଲେ
ସଇହାର ଛାଡ଼ି ସର୍ବେ ଡରେ ପଳାଇଲେ ।
ଯେ ଯହିଁ ପାଇଲେ ସେହି ତହିଁରେ ଲୁଚିଲେ
ଦେବ ଗନ୍ଧର୍ବଙ୍କୁ ଘେନ ଦେବଇନ୍ଦ୍ର ଗଲେ ।
ଶଚୀ ସଙ୍ଗତେ କୁସୁମ ବନରେ ପଶଇ
ଅମର ମଣ୍ଡଳ ଛୁଚ୍ଛା କରି ସୁରସାଇଁ ।
ଗୋପନ ହୋଇ ରହିଲେ ଯାଇଁ ଯେ ଯାହାରେ
ଅପସରାଏ ଲୁଚିଲେ ଜମ୍ବୁ ବନକାରେ ।
ସାବଧାନ ହୋଇ ଶୁଣ ବଳଙ୍କାର ସାଇଁ
ଅମରମଣ୍ଡଳରେ ଯେ ନ ରହିଲେ କେହି ।
ଆଠ ତଳାଇ ଅସୁରକୁଳ ମହାବୀର
ପ୍ରବେଶ ହୋଇଲା ଯାଇ ଅମର ନଗର ।
ଦେଖିଲା ସ୍ୱର୍ଗ ମଣ୍ଡଳେ କେହି ଲୋକ ନାହିଁ
ଘାର ଚୂର କରାଇଣ ସ୍ୱର୍ଗରେ ବୁଲଇ ।

ବୋଲଇ ସେ ସୂତଇନ୍ଦ୍ର, ତେବେ ପ୍ରଶ୍ନରେ
ପ୍ରାଣପାଆନ୍ତା କି ଆଜ ମୋହର ହାତରେ ।
ଅମର ସଭାରେ ଯାଇଁ ଅସୁର କଠିନ
ସ୍ୱର୍ଗର ମଣ୍ଡପମାନ ଭାଙ୍ଗି ପକାଇଲା ।
ବୋଇଲା ଇନ୍ଦ୍ର ଭୁବନ ହୋଇଲା ମୋହର
ଦେବତାଏ ପଳାଇଣ ଗଲେ ଯେ ଯହାର ।
ଅମର ସଭାରେ ବସି ପନ୍ଥଜ କରିଲା
ନଭେ ହାତ ଦେଇ ପୁଣି କ୍ରୋଧେ ଗରଜିଲା ।
କୃପାକ୍ଷ ମନ୍ତ୍ରୀକି ଚାହିଁ ବୋଲେ କି କରିବା
ଆଉ କେଉଁଠାଇ ଆମ୍ଭ ରାଜ୍ୟକୁ କି ଯିବା ।
ଭଲ ଭଲ ଦ୍ରବ୍ୟ ସ୍ୱର୍ଗେ ପାଇଲୁ ଯାହା
ସେହିଣ ବାହାର ହେଲା ଉଷକୂଳ ନାହା ।
ସ୍ୱରତୁର ବଜାଇଣ ସ୍ୱର୍ଗ ବାହୁଡ଼ିଲା
ଯାଇଣ ଅସୁର ଭାର ଉପରେ ବସିଲା ।
ସ୍ୱର୍ଗପୁର ଏବେ ମୋର ହୋଇଲାକ ଜୟ
ମନେ ଭାବିଣ ଅସୁରକୁଳ ମହାରାୟ ।
ଅଳମ୍ବୁଷା ରାଜ୍ୟେ ଯାଇ ପ୍ରବେଶ ହୋଇଲା
ଗଣନାଥ ଦେବଙ୍କୁ ସେ ବହୁ ସ୍ତୁତି କଲା ।
କୃପାକ୍ଷ ମନ୍ତ୍ରୀକି ଡାକ ଗଉରବ କରି
ଶାଢ଼ୀ ପ୍ରସାଦ ବହୁତ ଦେଇ ଦଣ୍ଡଧାରୀ ।
ସ୍ନାନ ନିତ୍ୟକର୍ମମାନ ସାରିଣ ଅସୁର
କଇଳାସ କନ୍ଦରକୁ ଗଲା ଖରତର ।
ଶତ ଅଷ୍ଟୋତ୍ତର ବାର ପ୍ରଣମି ହୋଇଲା
ଧୂପ ଦୀପ ଦେଇ ଗଣନାଥଙ୍କୁ ବନ୍ଦିଲା ।
ଶାଢ଼ୀ ପ୍ରସାଦ ପାଇ ସେ ହରଷ ଲଭଇ
ବହୁତ ସ୍ତୁତି କରିଣ ବାହୁଡ଼ି ଆସଇ ।
ଆପଣା ନଗରେ ଆସି ହୋଇଲା ପ୍ରବେଶ
ଖାଉଳା ବାସକୁ ରଖି କୁଳସୀ ବିଳାସ ।

---

## ମୁଢ଼ାସୁରର ଏକୋଇଶବାର ସ୍ୱର୍ଗ ଆକ୍ରମଣ ଓ ବିନାଶ

ଏଥୁଅନନ୍ତରେ ସେହି ବଳଙ୍କ ନୃପତି
ଅଗସ୍ତି ଙ୍କ ଚରଣରେ କରଇ ବିନତି ।
ସାବଧାନ ହୋଇ ଏବେ ଶୁଣମା ଗୋସାଇଁ
ଦେବତାଏ କିସ କଲେ କହିବା ବୁଝାଇ ।
ରାଜା । ଉଚିତ ଯେନକଥା ମହାମୁନି
ବୋଇଲେ ତୁ ଶୁଣ ମଧ୍ୟପର୍ବର କାହାଣୀ ।
ଯେତେଥର ମୁଢ଼ାସୁର ସ୍ୱର୍ଗକୁ ବାନ୍ଧିଲା
ଦେବଗଣ ସେଣ ଇନ୍ଦ୍ର ପଳାଇଣ ଗଲା ।
ଅସୁର ବାହୁଡ଼ ଯିବା ଦେବତା ଜାଣିଲେ
କ୍ରମେ କ୍ରମେ ଆସି ତହିଁ ସମସ୍ତେ ମିଳିଲେ ।
ଅମର ମଣ୍ଡଳୁ ଇନ୍ଦ୍ର ପଳାଇଣ ଥିଲେ
ଶଚୀକି ଘେନ କୁମ୍ଭଯବନୁ ବାହାରିଲେ ।
ଗନ୍ଧର୍ବ ଆଦି ଯେତେକ ସୁରଗଣ ଆସି
ସୁଧର୍ମା ସଭାରେ ସବୁ ଏକଠାବେ ବସି ।
ନଗର ଭିତର ପୁରେ ଶଚୀଦେବୀ ଗଲେ
ନମ୍ର ବଚନାରୁ ଅପସରାଏ ଆସିଲେ ।
ଇନ୍ଦ୍ର ବୃହସ୍ପତି ଆଦି ବସିଲେ ସଭାରେ
ନାରଖାର କରିଛନ୍ତି ପୁରକୁ ଅସୁରେ ।
ଭଲ ଭଲ ପଦାର୍ଥ ତ ନେଇଛନ୍ତି ହରି
ଦେଖି ମନେ ମହାଚିନ୍ତା କଲା ବଜ୍ରଧାରୀ ।
ଏଥୁଅନ୍ତେ ଦେବସଭା ଭଙ୍ଗ ମଉଳିଲା
ସୁରନାଥ ଦେବ ଅତି ବିକଳ ହୋଇଲା ।
ଯୋଜାଏ ଦିନ ଏମନ୍ତେ ତହିଁ ଗଲା ବହି
ନିଶ୍ଚିନ୍ତ ହୋଇ ଦେବତାମାନେ ତହିଁ ରହି ।
ଆସ୍ଥାନ ଉପରେ ଦିନେ ବସିଣ ଅସୁର
କୃପାକ୍ଷ ମନ୍ତ୍ରୀକି ଡାକ ବସାଇ କତର ।
ମନର ସଂକଳ୍ପ ସେ ଦିନ ହୋଇଅଛି
ଆଜ ସ୍ୱର୍ଗପୁର ଯିବା ମନ୍ତ୍ରୀକି ଯେ ପୁଛି ।
ବୋଇଲା ଅସୁର ଥାଉ ବେଗେ ଧଇକର
ବାନ୍ଧ ଆଣିବା ନିଶ୍ଚୟ ଆଜ ସୁନାସୀର ।
ମନ୍ତ୍ରୀ ବୋଇଲା ସେଦେବ କରୁଛନ ଯାଉ
ଅମରମଣ୍ଡଳେ ଇନ୍ଦ୍ର ନିଶ୍ଚିନ୍ତରେ ଥାଉ ।
ଗୋପନ ହୋଇ ଆମ୍ଭେ ଯେ ସ୍ୱର୍ଗପୁରେ ଯିବା
ଦେବଗଣଙ୍କୁ ଜିଣି ଇନ୍ଦ୍ରକୁ ବାନ୍ଧିବା ।
ମନ୍ତ୍ରୀର ବଚନେ ରାଜା ସନମତ କଲା
ଅମରମଣ୍ଡଳକୁ ସେ ସେହିକ୍ଷଣ ଗଲା ।
ମୃଗୟା ବନୋବେ ଦିନ ଯାଉଥାଏ ନିତି
ପାଦଘାତରେ ବସୁଧା କରେ ଉତ୍କ୍ରାନ୍ତ ।
ବଡ଼ଇ ଦୁର୍ଦ୍ଧର ହେଲା ପ୍ରତାପୀ ଅସୁର
ଋଷି ମୁନି ବ୍ରାହ୍ମଣଙ୍କୁ କଲା ନାରଖାର ।

ଗଣନାଥ ପ୍ରସାଦେ ସେ ତାହାକୁ ନ ଡରେ
ବାଦ ଆରମ୍ଭିଲ ସେହି ଦେବଙ୍କ ସଙ୍ଗରେ ।
ତାର ଭୟେ ଦେବେ ସ୍ୱର୍ଗେ ନ ପାଇନ୍ତି ରହି
ସ୍ୱର୍ଗକୁ ଆସନ୍ତି ପୁଣି ଯାଆନ୍ତି ପଳାଇ ।
ଏହିପରି ନିତ୍ୟେ ସ୍ୱର୍ଗେ ପଡ଼ୁଥାଇ ହୁରି
ପ୍ରତାପୀ ଗ୍ରାସସଙ୍କଟ ଆସେ ସ୍ୱର୍ଗପୁରୀ ।
ନମସ୍ତେ ଶ୍ରୀଦୁର୍ଗା ମାଗୋ ସଙ୍କଟତାରିଣୀ
ବିପଦ ପଡ଼ିଲେ ରଖୁ ଶିବଙ୍କ ଘରଣୀ ।
ମହିଷାସୁରମର୍ଦ୍ଦିନୀ ନାମ ତୋ ପାର୍ବତୀ
ସିଂହବାହିନୀ ଗୋ ତୁମ୍ଭ ଭବପୁରେ ନତ ।
କାତ ଖର୍ପର ଶୋହଇ ମାଗୋ ତୋର କର
ଶୁମ୍ଭ ନିଶୁମ୍ଭ ମାଇଲୁ ବନ୍ଦ୍ୟ ସର୍ବତର ।
କହିଲୁ ବିନ୍ଧ୍ୟବାସିନୀ ନାମ ମହାମାୟୀ
ମୁହିଁ ଅରକ୍ଷିତ ଜନ ଅଟେ ମୂର୍ଖଭାଇ ।
ଦୁର୍ଗତିତାରିଣୀ ବିନୁ ଅନ୍ୟ ନ ଜାଣଇ
କୃପାକର ମାଗୋ ମୋତେ ରକ୍ଷାକର ତୁହି ।
ତୋହର ଆଜ୍ଞାରେ ମୋତେ ହେଉଛି ଯା ଦୃଶ୍ୟ
ଜନ୍ମେ ଜନ୍ମ ମୁଁ ଶାରଳା ଶ୍ରୀଚଣ୍ଡୀଙ୍କଦାସ ।
ଏଥୁଅନ୍ତରେ ବଳଙ୍କଦେଶ ମହାରାଜା
ଅଗସ୍ତିଙ୍କ ଚରଣରେ କଲେ ଭବ୍ୟପୂଜା ।
ବ୍ରହ୍ମାରଣ କହ ମୁଢ଼ାସୁର ନାଶ କଲ୍ଲ
ଏହା ଶୁଣି ମନ ମୋର ତୃପ୍ତ ହେଉ ଭଲ ।
କାହାର ହାତରେ ତାର ହୋଇବ ମରଣ
ଅପେକ୍ଷେ ଶୁଣିଲେ ଆତ୍ମା ତୋଷ ହେବ ଜାଣ
ରାଜା ଉତ୍ତରରେ କହନ୍ତି ମହାମୁନି
ସାବଧାନ ହୋଇ ଶୁଣ ବଳଙ୍କ ନୃମଣି ।
ସମସ୍ତ ସନ୍ତାନ ଦେବଗଣେ ଯେ ରହିଲେ
ବୃହସ୍ପତି ସେନ ଇନ୍ଦ୍ର ଦେବତା ଗଲେ ।
ବୃହସ୍ପତି ବୋଇଲେ ହେ ଶୁଣ ସୁରଗଣ
ଅସୁରର ଭୟ ହେଲା ଅମର ପୁରେଣ ।
ଇନ୍ଦ୍ର ବୃହସ୍ପତି ବେନି ବିଚାରନ୍ତି ବସି
ଏହି ସମୟେ ମିଳିଲେ ଦେବବ୍ରହ୍ମା ଆସି ।
ତାଙ୍କୁ ଦେଖି ଗୁରୁ ଇନ୍ଦ୍ର ଉଭୟେ ଉଠିଲେ
ଶିରେ କର ଦେଇ ବେନି ଉଭା ଯେ ହୋଇଲେ
ଆଶିଷ ବଚନ ତାଙ୍କୁ କଲେ ଦେବବର
ତତକ୍ଷଣ ବସିଲେକ ଅମର ସଙ୍ଗର ।

ଇନ୍ଦ୍ର ବୋଇଲେକ ଶୁଣ ପିତାମହ ତୁହି
ଅସୁର ଭୟେ ଏ ପୁରେ ନ ପାରିଲୁ ରହି ।
ଅମରପୁରେ ବାହିଲା ବନେ ମୁଢ଼ାସୁର
ପଳାଇ ଲୁଚିଲୁ ମୁହିଁ କୁସୁମ ବନର ।
ଯେ ଯହିଁ ପାରିଲେ ତହିଁ ଯାଇଣ ଲୁଚିଲେ
ଅମର ଭୁବନେ ଆସି ଅସୁରେ ପଶିଲେ ।
ଭଲ ଭଲ ଦ୍ରବ୍ୟମାନ ନେଲେ ଜୂରକଣ
ଅମର ମଣ୍ଡନଯାତ କଲେ ହୁରଜୁର ।
ମନ୍ତ୍ରୀର ପ୍ରବୋଧ ସେନ ସେହୁ ବାହୁଡ଼ିଲା
ଅଳମ୍ବୁଷା ବାଳ୍ୟକୁ ସେ ବୋଲି ସେନ ଗଲା ।
ଏବେ ଅମରମଣ୍ଡଳେ ଅସୁର ଆସଇ
ଉପର ମୁଖୁ ବାରତା ପାଇଲଇଁ ମୁହିଁ ।
ବ୍ରହ୍ମା ଉଚ୍ଚରିଲେ ତୁମ୍ଭେ ଶୁଣ ସୁରଗୁରୁ
ଅସୁର ମରଣ କଥା ବିଚାର ନ କରୁ ।
ଉପଦ୍ରବ ଜାଣ ତୋର ଇନ୍ଦ୍ର ହୋଇଅଛି
ଅମରମଣ୍ଡଳେ ଜଣିପାରେ ସହସ୍ରାକ୍ଷି ।
ସ୍ୱରଗପୁରକୁ ଏକୋଇଶ ବେଳ ଯାଏ
ଅବଶ୍ୟ ଧାଡ଼ିଦେବ ସେ ଦୈତ୍ୟକୁଳ ସଙ୍ଗେ ।
ବୃହସ୍ପତିଙ୍କ ମୁଖରୁ ଏସନ ଶୁଣି
ଇନ୍ଦ୍ର ଦେବବର ବେନି ପଚାରନ୍ତି ପୁଣି ।
କାହାର ହସ୍ତରେ ତାର ହୋଇବ ମରଣ
ବିସ୍ତାର କରିଣ ଏହା କହ ଗୁରୁ ପୁଣ ।
ଇନ୍ଦ୍ର ପଚାରନ୍ତେ ସୁରଗୁରୁ ଯେ ହସିଲେ
ପୂର୍ବର ଭବିଷ୍ୟମାନ ଦେଖାଇ କହିଲେ ।
ବୋଇଲେ ହେ ସୁରପତେ କର ଅବଧାନ
ବୁଝାଇ କହଇ ତୋତେ ପୂର୍ବର ଆଖ୍ୟାନ ।
ମୁଢ଼ାସୁର ଦେବ ଗଣନାଥେ ସେବା କଲା
ମନାଇ ଅମରବର ତାହାଙ୍କୁ ମାଗିଲା ।
ପ୍ରସନ୍ନ ହୋଇଣ ଗଣନାଥ ବର ଦେଲେ
ଅମର ହେବୁ ତୁ ଧର ବୋଲିଣ ବୋଇଲେ ।
କାହାରି ହାତରେ ତୋର ନୋହିବ ମରଣ
ସମସ୍ତ ସୁର ଅସୁର ଜିଣିବୁ ରଣେଣ ।
ଆବର କଥାଏ ଶୁଣ ଦୈତ୍ୟ ଶିରୋମଣି
ମୁଣ୍ଡ କାଟିଲେ ତୁହି ଯେ ନ ମରିବୁ ପୁଣି ।
ବୁଲୁ ଫୁଟିଲେ ଆବର ନୋହିବ ବିନାଶ
ଏମନ୍ତ ପ୍ରକାରେ ବର ଦେଲେ ହରଷିତ ।

ବଜ୍ର ପ୍ରକାରେ ଘୋର ମୋଟି ତାର କଲେ
ଶୁଣ ଶଚୀଧବ ବୃହସ୍ପତି ଯେ କହିଲେ ।
ବର ପାଇଣ ଆବର ଦୈତ୍ୟ ମୂଢ଼ମତି
ଦଇବେ ଗଣନାଥଙ୍କୁ ପୁଚ୍ଛିଲ ବଚନ ।
ଅମର କରି ରଖିଲ ମୋହର ଯେ କାଯେ
କେମନ୍ତେ ମରିବ ତାର କହସି ଉପାଯେ ।
ଶୁଣିକରି ଗଣନାଥ ଆନନ୍ଦେ ହସିଲେ
ପଞ୍ଚଭୁଜ ଆସ୍ଥାରେ ଏ କଥା କହିଲେ ।
ବୋଇଲେ ରେ ଭଲକଥା ପଚ୍ଚରୁ ଅସୁର
ଜଗତ ଘାତ ଦେଖିଣ ଦେଲ ତୋତେ ବର
ମରଣ ତରିତ କୁ ଯେ ପଚାରିଲୁ ମୋତେ
ଏହିବେଳୁଁ କହିଥିବା ମରିବୁ କେମନ୍ତେ ।
ତହୁଁ ଅସୁରର ମୂର୍ଖ ଶୁଣି ଗଣପତି
ବୋଇଲେ ଶୁଣ ତୋହର ମରଣର ଗତି ।
ଅଶ୍ୱିନୀଙ୍କ ଗାର୍ଯ୍ୟେ ଯେଉଁ ପୁତ୍ର ଜନ୍ମିଥିବ
ଅଗ୍ନି ଶରରେ ସେ ତୋତେ ଦହ୍ୟ କରିବ ।
ଏସନ ପ୍ରକାରେ ତୋର ହୋଇବ ମରଣ
ନୋହିଲେ ଆନରେ ତୋର ନୋହିବ ନାଶନ
ଏମନ୍ତ କଥା ଅସୁର ହେବୁକର ମନେ
ସୁର ଅସୁରଙ୍କୁ ସେହୁ ନ ଗଣଇ ତୃଣେ ।
ବୃହସ୍ପତି କହିଲେକ ଯହୁଁ ଚକ୍ରପାଣୀ
ଇନ୍ଦ୍ରରାଜା ଗୁରୁଙ୍କୁ ଯେ ପଚାରନ୍ତି ପୁଣି ।
ଅଶ୍ୱିନୀକୁମାରଙ୍କର ପୁତ୍ର ଅଛୁ କାହିଁ
ବିସ୍ତର କରଣ ମୋତେ କହ ଗୁରୁ ତୁହି ।
ବୃହସ୍ପତି ବୋଇଲେକ ଅଛି ଏକ କଥା
ଏକମନେ ଶୁଣ ତୁହେ ବାସବ ଦେବତା ।
ଏ ମର୍ତ୍ତ୍ୟ ମଣ୍ଡଳେ ପୁଣ ହସ୍ତିନା ନଗରେ
ତହିଁରେ ରାଜା ଅଟଇ ପଣ୍ଡୁ ନୃପବରେ ।
ସେହି ରାଜା ମୃଗୟାକୁ ବନେ ଯାଇଥିଲା
ଋଷି ମୃଗୁଣୀ ଶୃଙ୍ଗାରେ ନାରାଚ ବିନ୍ଧିଲା ।
ଋଷି ବୋଇଲେ ଯେବେ ତୁ ମାଇଲୁ ରେ ଶର
ତୋ ଶୃଙ୍ଗାରବେଳେ ପଡ଼ୁ ମୃତ୍ୟୁ ଆସି ଶର
ଏହି ଶାପ ଯହୁଁ ତାକୁ ଦେଲେ ବ୍ରହ୍ମଋଷି
ସେ ଡରୁ ଶୃଙ୍ଗାର କରେ ନାହିଁ ନୃପବଂଶୀ ।
ତାହାଙ୍କ ପତ୍ନୀ ଅଟନ୍ତି କୁନ୍ତୀ ମହାଦେଇ
ବାଲ୍ୟକାଳେ ଦୁର୍ବାସାଙ୍କୁ ସେବା କରୁଥାଇ ।

ସେବାରେ ମଣାଇଲେ ସେ ଦୁର୍ବାସା ଋଷିଙ୍କି
ମାଳା ଏକ ଦେଲେ ସେହୁ କୋଇଲା ଦେବୀଙ୍କ
ବୋଇଲେ ଯିଏ ଇଚ୍ଛନ୍ତି ସୁନ୍ଦର ପୁରୁଷ
ଏ ମାଳା ଘେନି ଜପିଲେ ପାଇବୁ ଅବଶ୍ୟ ।
ସେହି ମାଳା ଘେନି କୁନ୍ତୀ ସୂର୍ଯ୍ୟଙ୍କୁ ପୂଜିଲେ
ସୁମରନ୍ତେ ଦିନକର ପ୍ରବେଶ ହୋଇଲେ ।
ମୁନିଙ୍କର ବର ପୁଣ ଅନ୍ୟଥା ନୋହିଲା
ଅନୂଢ଼ା ଥାଇଣ କୁନ୍ତୀ ଗର୍ଭବତୀ ହେଲା ।
ଲଜ୍ଜାରେ ସୁନ୍ଦରୀ ତହୁଁ ନ ଗଲା ଘରକୁ
କର୍ଣ୍ଣବାଟେ ଜନମ ସେ କଲା କୁମରକୁ ।
ସେ କୁମର ନାମ କର୍ଣ୍ଣରାଜ ଯେ ଅଟଇ
ହସ୍ତିନାରେ ଦୁର୍ଯ୍ୟୋଧନ ରାଜାକୁ ଖଟଇ ।
ପଣ୍ଡୁ ରାଜା କାଳେ ବୋଇନ୍ତାକୁ ହେଲେ ବଶ
ଥୋକାଏକ ଦିନେ ପୁଣି ହେଲେ ନବଯୁବା ।
ଋଷିଙ୍କର ଶାପେ ପଣ୍ଡୁ ରମଣ ନ କଲେ
ମାଳା ଜପନ୍ତେ ଧରମ ଦେବତା ଆଇଲେ ।
ତାହାଙ୍କ ଶୃଙ୍ଗାରେ ଏକ ପୁତ୍ର ପ୍ରସବିଲା
ଯୁଧିଷ୍ଠିର ବୋଲି ତାହାଙ୍କର ନାମ ହେଲା ।
ପୁଣି କୁନ୍ତୀ ସୁମରଣା କଲେକ ମରୁତ
ଆସିଣ ମିଳିଲେ ତହିଁ କଶ୍ୟପର ସୁତ ।
ତାହାଙ୍କ ଶୃଙ୍ଗାରେ ପୁତ୍ର ଜନମ ହୋଇଲା
ଭୀମସେନ ନାମଗୋଟି ତାହାର ରହିଲା ।
ପୁଣ ସୁରରାଜ ତୋତେ ସୁମରିଲେ ଦେବୀ
ତାହାଙ୍କ ସନ୍ନିଧେ ଯାଇ ହେଲୁ ଜୟବେଶି ।
ତୁମ୍ଭ ଶୃଙ୍ଗାରେ ଯେବଣ ପୁତ୍ର ଉପୁଜିଲା
ଅର୍ଜ୍ଜୁନ ବୋଲିଣ ନାମ ତାହାର ହୋଇଲା ।
ପଣ୍ଡୁ କନିଷ୍ଠ ଭାରିଯା ନାମ ମାଦ୍ରୀଦେବୀ
ତାହାକୁ ସେ ମାଳାଗୋଟି ଦେଲେ କୁନ୍ତୀ ଯାବ
ସେ ମାଳା ଘେନି ଅଶ୍ୱିନୀକୁମାରେ ସ୍ମରିଲା
ତାହାର ଗର୍ଭେ ପୁତ୍ରେକ ଜନମ ହୋଇଲା ।
ନକୁଳ ବୋଲିଣ ତାର ନାମଗୋଟି ଦେଲେ
ଇନ୍ଦ୍ରର ଆଗରେ ବୃହସ୍ପତି ଯେ କହିଲେ ।
ଦଇବ ବିଯୋଗରେ ସେ ପଣ୍ଡୁ ମହାରାଯେ
ମାଦ୍ରୀର ସଙ୍ଗେ ଶୃଙ୍ଗାର ସେହୁ ଇଚ୍ଛାଲଯେ
ବ୍ରହ୍ମ ଋଷିଙ୍କର ଶାପ ଅନ୍ୟଥା ନୋହିଲା
ଅକାଳକାଷ୍ଠ ତାହାର ଉପରେ ପଡ଼ିଲା ।

ବାଣ ପଡ଼ନ୍ତେଣ ମାନ୍ତ୍ରୀପଣ୍ଡ୍ର ନାଶଗଲେ
ଆବର ସଇନ୍ଦ ପୃଷ୍ଠ ଏକ ଉପୁଜଲେ ।
ଦେଖ କୁନ୍ତୀଦେବୀ ପୁତ୍ରେ ବୋଲକର ଧର
ସହଦେବ ବୋଲକର ଭୀମ ତା ଉତାର ।
ଏହିମତେ ପଣ୍ଡୁଙ୍କର ପାପପୃଷ୍ଠ ହେଲେ
ଇନ୍ଦ୍ର ଆଗେ ବୃହସ୍ପତି କଥନ କହିଲେ ।
ନବୁନ ନାମେ ଯେବଣ ପଣ୍ଡୁ ସ୍ତ୍ରୀ ବନା
ତାହାର ହାତେ ମରିବ ଦୈତ୍ୟ ମହାବଳା
ଏହା ଶୁଣି ଶଚୀପତେ ହରଷ ହୋଇଲେ
ବୃହସ୍ପତିଙ୍କୁ ଯେ ବେଗେ ବୋଲାଇତ କଲେ
ବ୍ରହ୍ମା ଶୁଣି ଗୁରୁଙ୍କୁ ଯେ ପ୍ରଣାମ କରନ୍ତି
ବୋଇଲେ ତୁମ୍ଭଙ୍କୁ ଦେବଗୁରୁ କି ବୋଲନ୍ତି
ଏଥୁ ଅନନ୍ତରେ ଯାହା ହେଲା ଶୁଣ ମୁନି
ବ୍ରହ୍ମା ବୋଇଲେ ହେ ଶକ୍ର ଶୁଣ ଆମ୍ଭ ବାଣୀ
ଦୂତ ପେଷିଣ ଅଣାଅ ସେ କୁମରମଣି
ଏତେକ କହିଣ ଚଳିଗଲେ କୁଶପାଣି ।
ଦେବସଭା ମଇଳିଲା ସର୍ବଦେବେ ଗଲେ
ନିଜପୁରେ ବୃହସ୍ପତି ପ୍ରବେଶ ହୋଇଲେ ।
ଇନ୍ଦ୍ରଦେବ ଶଚୀଦେବୀ ବଜେଜତ ଗଲେ
ସକଳ ଚରିତ ଶଚୀ ଆଗରେ କହିଲେ ।
ଏଥୁ ଅନନ୍ତରେ ଭୁହୋ ଶୁଣ ମହାଶୟେ
ଶ୍ରୀମହାଭାରତ ଶୁଣି ପାପ କର କ୍ଷୟେ ।
ନମସ୍ତେ ଶ୍ରୀନାରାୟଣ ଭକତବତ୍ସଳ
ନ ସହୁ ତୁ ଭୃତ୍ୟ ଅଭିମାନ ବାଦୋବର ।
ଚତୁର୍ଭୁଜରୂପ ଦେବଙ୍କ ଅଭିମାନଧାରୀ
ଶଙ୍ଖ ଚକ୍ର ଗଦା ପଦ୍ମ ଧନୁ ବଇଦ୍ୟାଭ ।
ଶ୍ରୀନୀଳକନ୍ଦରେ ପ୍ରଭୁ ବିଜେ କରିଅଛ
ଭକତ ଜନମାନଙ୍କୁ କରିବାକୁ ମୋକ୍ଷ ।
ଶ୍ରୀରଙ୍ଗାଅଧର ଦେବ ମନ୍ଦ ମନ୍ଦ ହସି
ଆରତଭଞ୍ଜନ ତୁମ୍ଭେ ଅଟ ବ୍ରହ୍ମସଖୀ ।
କରୁଣା ଜଳଧିମୟ କୃପାମୟ ସିନ୍ଧୁ
ଦୀନଜନ ବାନ୍ଧବ ତୋ ନାମ ଦୀନବନ୍ଧୁ ।
ଶ୍ରୀସାରଳା ଦାସ ଅରକ୍ଷିତ ଦୀନଜନ
ନିରନ୍ତର ଭାବୁଅଛି ଶ୍ରୀରଙ୍ଗଚରଣ ।
ମନୁ ପଣ୍ଡିତଇ ପୁଣ ଚୈତନ୍ୟ କହଇ
ଏକମନ ହୋଇ ତୁମ୍ଭେ ଶୁଣ ନରସାଇଁ ।

ଏଥୁ ଅନନ୍ତରେ ଶୁଣ ସେ ମୁଢ଼ା ଅସୁର
ଆବର ସେ ଜୟ ଜୟ ଦୈତ୍ୟ ଦୁରାସ୍ତର ।
ତାହା କଥା ମୋତେ କହ ଏବେ ମୁନିମଣି
ମୋର ମନ ସ୍ଥିର ହେବ ତବ ମୁଖୁଁ ଶୁଣି ।
ଅଗସ୍ତି କହିଅଛନ୍ତି ଶୁଣ ନାରାୟଣ
ମକର ସଙ୍କ୍ରାନ୍ତିରେ ବାହୁଡ଼ିଲ ସୈନ୍ୟ ।
ମନ୍ତ୍ରୀର ବଚନ ପଡ଼ାଇଲା ବାର୍ତ୍ତା ତନେ
ସେବା କରିଥିଲ ଗଣନାଥ ପାଦତଳେ ।
ମକର ମାଘର ଊନବିଂଶ ଦିନ ଗଲା
ସେଦିନ ଅସୁର ମନ୍ତ୍ରୀବରେ ବୋଲାଇଲା ।
ଇନ୍ଦ୍ରଦେବତା ତ ମୋତେ ଜାତ୍ରବ ବୋଇଲା
ଲୋ ପରା ମନ୍ତ୍ରୀ ଅ ଇଣ ଏମନ୍ତ ହେ ଇଲା ।
ଥାଟ ସଜ କର ଏବେ ଯିବା ସ୍ୱର୍ଗପୁର
ଇନ୍ଦ୍ରକୁ ନ ଜିଣିଲେ ମୁଁ ତ ଆସିବ ଘର ।
କରପଦ ଯୋଡ଼କରି ମନ୍ତ୍ରୀ ଯେ କହଇ
ସାବଧାନ ହୋଇ ଶୁଣ ଦୈତ୍ୟକୁଳସାଇଁ ।
ଯିବା ଏବେ ସ୍ୱର୍ଗପୁର କରିବା ସମର
ଅମର ମଣ୍ଡଳ ଭରିଦେବା ନାଶଖର ।
ମନ୍ତ୍ରୀର ବଚନେ ଦୈତ୍ୟ ହରଷ ହୋଇଲା
ତାହାକୁ ସ୍ୱର୍ଣ୍ଣ ବହୁତ ପରଶଂସା କଲା ।
ମନ୍ତ୍ରୀବର ନମସ୍କାର କରିଣ ଚଳଇ
ସୈନ୍ୟ ସାଜିବା ପାଇଁ ସେ ଟମକ ବଜାଇ ।
ହାତୀ ରଥୀ ପଦାତି ସେ ସଜ କରାଇଲା
ଅଗଣିତ ସେ ନ୍ୟ ତାହା ଗଣିତ ନୋହିଲା ।
ଥାଟ ସୈନ୍ୟସବୁ ସଜାଇଣ ମନ୍ତ୍ରୀବର
ରଥ ଚଢ଼ିଣ ଜବନ୍ତ ହୋଇଲା ବାହାର ।
ସୈନ୍ୟ ଆଗରେ ଚଳାଇ ପଛରେ ରହିଲା
ମୁଢ଼ାସୁର ରଜାକୁ ସେ ଭରଷନ କଲା ।
ବୋଇଲା ହେ ଦେବ ସେନ୍ୟଆଗେ ଚଳଗଲେ
ଏବେ ଜୟ ଲଭିବ ତୁ ଜର ନୃପବରେ ।
ମୁଢ଼ାସୁର ବୋଲଇ ମୁଁ ନ ରହଇ କ୍ଷଣେ
ରଥ ମୋର ସଜ କର ଯିବ ଏହିକ୍ଷଣେ ।
ଚିହ୍ନ ବଚନ କରିଣ ଆଣେ ରଥବର
ସେହି ରଥେ ଯାଇ ବିଜେ କଲା ମୁଢ଼ାସୁର ।
ପାଛେ ବଜାଇଣ ସୈନ୍ୟଶାଖା ନେନ
ଆପଣେ ବାହାର ହେଲା ଦୈତ୍ୟକୁଳମଣି ।

ସେବନ ଶ୍ରବଣା ନକ୍ଷତ୍ରରେ ଚନ୍ଦ୍ର ଭଦ୍ର
ବଶିସ୍ଥାନ ଯୋଗ ଯେ ଶକୁନ କରନ୍ତି ।
ସେହିଦିନ ଅସୁରକୁ ସାଧକ ଯେ ତାର
ଅମୃତ ଲଗନେ ଚଳିଯାଏ ମୃଡ଼ାସୁର ।
ଟମକର ଶବଦରେ ମେଦିନୀ କମ୍ପିଲା
ପାଦଭରେ ବସୁମତୀ ଟଳମଳ ହେଲା ।
ପାଦରେଣୁ ଉଡ଼ନ୍ତେଣ ବ୍ୟୋମ ନ ଦିଶଇ
ମୃଦଙ୍ଗ ଶବଦରେ କୂର୍ମ ଚମକଇ ।
ପୃଥ୍ୱୀଦେବୀ ଆକୁଳରେ ଚିନ୍ତନ କରଇ
ନ ପୁଣ ଅସୁର ମୋତେ ରସାତଳେ ଦେଇ
ଏବେ ବୋଲି ବସୁମତୀ ନ ଟେକଇ ଶିର
ଭୟରେ ଶରୀର ତାର କମ୍ପେ ଥରହର ।
ସ୍ୱର୍ଗପୁରେ ଦେବତାଏ ବାରତା ପାଇଲେ
ଏଥକୁ ମୃଡ଼ାଅସୁର ବାହୁଡ଼ି ବୋଇଲେ ।
ନାରଦଙ୍କୁ ହକାରିଣ ବୋଲେ ସୁରଗଣ
କେତେଦୂରେ ଦୈତ୍ୟ ଅଛି ଦେଖ ଯାଇ ପୁଣ
ଇନ୍ଦ୍ର ଦେବଙ୍କ ବଚନେ ମୁନି ଚଳିଗଲେ
ଖଣ୍ଡିଦୂରେ ଅସୁରର ସୈନ୍ୟଙ୍କୁ ଦେଖିଲେ ।
ବୀଣା ବଜାଇ ଶୀଘ୍ରରେ ନାରଦ ମହର୍ଷି
କରପଦ ଯୋଡ଼ି ଦୈତ୍ୟ ପଞ୍ଚରଇ ହସି ।
ଖଣ୍ଡିଦୂରେ ଥାଇ ତାଙ୍କୁ ଦେଖିଲା ଅସୁର
କୃପାକରି ମନ୍ତ୍ରୀକୁ କହେ ହକାରି ପାଖର ।
ବୀଣା ବଜାଇ ଆସଇ କେବଣ ଯେ ଋଷି
ତାହାଙ୍କର ନାମ କିସ କହ ତୁ ବିଶେଷି ।
ମନ୍ତ୍ରୀ ବୋଲେ ଅଟନ୍ତି ଏ ବ୍ରହ୍ମାଙ୍କ କୁମର
ସ୍ୱାଙ୍କୁ ଭକ୍ତି କଲେ ଯଶ ହୋଇବ କୁମର ।
ଉଠିଣ ଏହାଙ୍କୁ ତୁମ୍ଭେ ନମସ୍କାର କର
କଲ୍ୟାଣ କରନ୍ତୁ ତୋତେ ବ୍ରହ୍ମାଙ୍କ କୁମର ।
ମନ୍ତ୍ରୀ ବଚନେ ଅସୁର ରଥୁଁ ଓହ୍ଲାଇଲା
ନାରଦ ମୁନିଙ୍କ ପାଦେ ନମସ୍କାର କଲା ।
ନାରଦ ମୁନି ବୋଇଲେ ଉଠ ଉଠ ବାପେ
ଆରୋଗ୍ୟ କଲ୍ୟାଣ ହେଉ ତୁମ୍ଭର ଯେ କାୟେ
କଲ୍ୟାଣ ବାଞ୍ଛିଲେ ଯହୁଁ ନାରଦ ମହର୍ଷି
କର ଯୋଡ଼ିଣ ଅସୁର ପଚାରଇ ହସି ।
ମୋତେ କି ସଙ୍ଖୋଳି ଅଇଲ ହେ ବ୍ରହ୍ମଋଷି
ସ୍ନେହପ କହିଣ ମୋତେ କହ ହେ ବିଶେଷି ।

ନାରଦ ବୋଇଲେ ମୋତେ ନ ଲଭିବ ବାପେ
ଆମ୍ଭେ ଯେ କଲ୍ୟାଣ କରିଥାଉଁ ସର୍ବକାଳେ
ମୁନିଙ୍କ ହସ୍ତ ଧରିଣ ରଥପରେ ନେଲା
ରଥର ଉପରେ ଦୈତ୍ୟ ଯାଇଣ ବସିଲା ।
ମୁନି ବୋଇଲେ କି ଅଟ ସୈନ୍ୟଙ୍କୁ ଚଳାଇ
କେଉଁ ଆଡ଼କୁ ଯାଉଛ ଦୈତ୍ୟକୁଳସାଇଁ ।
ନାରଦଙ୍କ ବାକ୍ୟ ଶୁଣି କହେ ଦୈତ୍ୟବୀର
ଅଟ ଯେବେ ସ୍ୱର୍ଗପୁରେ ଯାଏ ମୁନିବର ।
ଇନ୍ଦ୍ର ଦେବତାଙ୍କୁ ମୁହିଁ ଆଣିବଇଁ ଧରି
ସେହି ଅଟଇ ମୋହର ପିତାର ବଇରୀ ।
ଆଜ ମୁଁ ସୁରପତିକୁ କରିବ ଯେ ନାଶ
ଯେଣୁ ସେ ମୋର ପିତାକୁ କରିଛି ବିନାଶ ।
ନାରଦ ବୋଇଲେ ତୋତେ କହିବା କଥାଏ
ଏକମନେ ଶୁଣ କୁହୋ ମୃଡ଼ାସୁର ବାପେ ।
ତୁମ୍ଭ ଯେ ଆମ୍ଭର ବାପୁ ଅଟୁ ହିତକାରୀ
ଗୁପତେ କହିବା ତୋତେ କଥା ଦୁଇଚାରି ।
ମୃଡ଼ାସୁର ବୋଲେ ମୁନି ସାବଧାନ ହୁଅ
ତୁମ୍ଭେ ଯେ ସର୍ବଜ୍ଞ ଅଟ ଆହେ ମୁନିଦେବ ।
ନାରଦ ବୋଇଲେ ରହ ଥୋଡ଼ାଏକ ଦିନ
ସମସ୍ତ ଦେଖିଣ ତୁମ୍ଭ କରିବୁ ସଂଗ୍ରାମ ।
ଏବେ ସମରେ ସୁରଙ୍କେ ତୋତେ ଯଶ ନାହିଁ
ଗୁପତେ ଏ କଥା ତୋତେ କହିଲି ବୁଝାଇ ।
ନାରଦ ମୁନିଙ୍କ ବାକ୍ୟେ ଦୈତ୍ୟ ତୋଷହେଲା
ମନ୍ତ୍ରୀମୁଖ ଚାହିଁ ସାର ବଚନ କହିଲା ।
ମନ୍ତ୍ରୀ ବୋଇଲା ନାରଦମୁନି ବୋଲି କର
ଥାଟ ଲେଉଟାଇ ଏବେ ଯାଅ ନିଜପୁର ।
ମନ୍ତ୍ରୀ ବୋଲେ ମୁନିଙ୍କର ବାକ୍ୟେ ପ୍ରତେ ଗଲା
ସେହିଠାରୁ ଥାଟସୈନ୍ୟ ଘେନି ବାହୁଡ଼ିଲା ।
ଆପଣା ନଗରେ ଯାଇ ହୋଇଲା ପ୍ରବେଶ
ନାରଦ ମୁନିଙ୍କ ବାକ୍ୟେ କଲାକ ବିଶ୍ୱାସ ।
ନାରଦ ବୋଇଲେ ଶୁଣ ଦୈତ୍ୟକୁଳସାଇଁ
ସ୍ୱର୍ଗପୁରେ ଯିବୁ ଏଥେ ନ ପାରବୁ ଜିଣି ।
ତଥିଲା ପ୍ରକୃତି ଏକ ଠାବରେ ନ ରହି
କରନ୍ତର ଦେଶ ବିଦେଶରେ ଭ୍ରମୁଥାଇ ।
ଏତେ କହି ମୁନି ଚଳିଗଲେ ସ୍ୱର୍ଗପୁର
ମନଦଣ୍ଡ ଚଢ଼ି ବେଗେ ଗଲେ ଆକାଶର ।

ଅମର ମଣ୍ଡଳେ ଚନ୍ଦ୍ରଁ ମିଳଲେକ ଯାଇ
ସଙ୍ଗ ମନ୍ତ୍ରୀଗଣ ବସିଅଛୁ ସୁରସାଇଁ ।
ଏମନ୍ତ ସମୟେ ମୁନି ସେଠାରେ ମିଳିଲେ
ନାରଦ ମୁନିଙ୍କୁ ଦେଖି ସମସ୍ତେ ଉଠିଲେ ।
ଶିରେ କରଦେଇ ତାଙ୍କୁ ବୋଲେ ସୁରଗଣ
କି ଭଗତ ଆଇଛ ବ୍ରହ୍ମାଙ୍କ ନନ୍ଦନ ।
ନାରଦ ବୋଇଲେ ଆମ୍ଭେ ଯେତେବେଳେ ଗଲୁ
ଖଣ୍ଡେନ୍ଦୁର ପଥ ଯାଇ ଅସୁର ଭେଟିଲୁ ।
ମନ୍ତ୍ରୀର ବଚନେ ଦୈତ୍ୟ ରଥୁଁ ଓହ୍ଲାଇଲା
ଆମ୍ଭର ଚରଣେ ଆସି ନମସ୍କାର କଲା ।
ଉକତସବ କରିଣ ବୋଲଇ ବଚନ
ବହୁ ପରକାରେ ଆମ୍ଭେ କରିଲୁ କଲ୍ୟାଣ ।
ଆମ୍ଭେ ପଚ୍ଛିଲୁ ତୁମ୍ଭେ କେଣେ ଯାଉଅଛ
ଅସୁର ବୋଲେ ଜିଣିବ ମୁହିଁ ସହସ୍ରାକ୍ଷ ।
ଏହା ଶୁଣିକରି ଆମ୍ଭେ କହିଲୁ ବଚନ
ଏହିକ୍ଷଣି ସ୍ୱରଗେ ତୁ ନ କର ଗମନ ।
ଇଷ୍ଟ ଗଣଙ୍କୁ ଅଟଇ ତୋହର ଯେ ନାସ୍ତ
ଏହିକ୍ଷଣି ସ୍ୱର୍ଗେ ଗଲେ ନାହିଁ ତୋତେ ଜସ୍ତ
ଥୋକାଏ ଦିନ ଏଠାରେ ଥାଅ ତୁହି ରହି
ପଛେ ସ୍ୱର୍ଗପୁର ଜିଣିବୁ ସୈନ୍ୟ ନେଇ ।
ଆମ୍ଭର ବଚନେ ମନ୍ତ୍ରୀ ତାକୁ ବୁଝାଇଲା
ପ୍ରବୋଧ ବଚନ ଶୁଣି ଦୈତ୍ୟ ବାହୁଡ଼ିଲା ।
ନାରଦମୁନି ବଚନ ଇନ୍ଦ୍ରସହେ ଶୁଣି
ଆଦର ସେ ଲେଉଟିବା ଶୁଣି ବଜ୍ରପାଣି ।
ସଙ୍ଗ ମନ୍ତ୍ରୀଇ ଆନନ୍ଦେ ବାହୁଡ଼ିଣ ଗଲେ
ଗନ୍ଧର୍ବ ଅପ୍ସରଗଣ ନୃତ୍ୟଗୀତ କଲେ ।
ଅଗସ୍ତିଙ୍କ ବଚନରେ ବଳିଙ୍କ ନୃପତ
ବୋଇଲେ ମୁନିଙ୍କ ପାଦେ କରିଣ ଭକତ ।
ଏଥୁ ଉତ୍ତାରେ ଅସୁର କସ ପାତ କଲା
ଅଗସ୍ତି ବୋଲନ୍ତି ଶୁଣ ସେହି ବ୍ୟାଖ୍ୟା ।
ମକର କୁମ୍ଭ ଏ ଦୁଇମାସ ବହିଗଲା
ଚଇତମାସ ଆସିଣ ପ୍ରବେଶ ହୋଇଲା ।
ଏକଦିନେ ମୂଢ଼ାସୁର ଥାଟ ସୈନ୍ୟ ସେନ
ମୃଗୟା ନିମନ୍ତେ ଗଲେ ବନରେ ଭ୍ରମନ୍ତି ।
ମୃଗ ଶମ୍ବର ହରିଣ ବଧିଲା ଅପାର
ଆନନ୍ଦ ହୋଇ ବାହୁଡ଼ି ଆସି ନିଜପୁର ।

ଆରଦନ କରି ପ୍ରସ୍ତରନ୍ତୁ ସେ ଉଠିଣ
ନିତ୍ୟକର୍ମ ବିଧାନ ସେ ସାରି ତତକ୍ଷଣ ।
ମନ୍ତ୍ରୀକି ଘେନି କୈଳାସ କନ୍ଦରକୁ ଗଲା
ଗଣେଶ୍ୱର ଦେବଙ୍କୁ ସେ ନମସ୍କାର କଲା ।
ଶତ ଅଷ୍ଟଉତ୍ତର ସେ କଲା ଦଣ୍ଡବତ
ପୁଣ ପୁଣ ଚରଣରେ କଲେ ପ୍ରଣମିତ ।
ପ୍ରସନ୍ନ ହୋଇଣ ଗଣନାଥ ଆଜ୍ଞାଦେଲେ
ଇଷ୍ଟ ବର ତୁମ୍ଭେ ମାଗ ବୋଲିଣ କହିଲେ ।
ଅସୁର ବୋଇଲା ଶୁଣ ଦେବ ଗଣପତି
କେମନ୍ତେ ଜିଣିବ ମୁହିଁ ସ୍ୱର୍ଗେ ସୁରପତି ।
ଏହା ଶୁଣି ବିଶ୍ୱନାଥ ତନୟ ହସିଲେ
ଇନ୍ଦ୍ରକୁ ଜିଣିବୁ ଏହି ଥର ସ୍ୱର୍ଗେ ଗଲେ ।
ପ୍ରସାଦ ଘେନି ବାହୁଡ଼ି ଆସିଲା ଅସୁର
ପ୍ରବେଶ ହୋଇଲା ଆସି ଆପଣା ମନ୍ଦର ।
ନାନାପ୍ରକାରେ ମଣୋହିମାନ ସେ ସାରିଲା
କୃପାଳୁ ମନ୍ତ୍ରୀକୁ ଏକାନ୍ତରେ ହକାରିଲା ।
ବୋଇଲା କରିବା ଏବେ କିସ ଯେ ଚରିତ
ଉଦ ମନ୍ତ୍ରୀବର ଏହି କଥା ଆଦ୍ୟପ୍ରାନ୍ତ ।
ରାଜା ପ୍ରଶ୍ନରେ ମନ୍ତ୍ରୀ ବଚନ କହଇ
ଥାଟ ଘେନ ସ୍ୱର୍ଗପୁରେ ଯିବାକ ଗୋସାଇଁ ।
ସ୍ୱର୍ଗପୁରେ ପଶି ତହିଁ କରିବା ଅନର୍ଥ
ସମ୍ମୁଖେ ପଡ଼ିଲେ ମାରିବାକ ଶଚୀନାଥ ।
ଅପ୍ସରସା କିନ୍ନରୀଙ୍କୁ ଆଣିବାକ ଧରି
ଗନ୍ଧର୍ବ ବିଦ୍ୟାଧରଙ୍କୁ ଘଡ଼ାଇବା ମାରି ।
ବନ୍ଧ ପଦାର୍ଥ ଜୁର କରିଣ ଆଣିବା
ଯେ ମୁଖେ ପଡ଼ିବ ଆମ୍ଭେ ତାହାକୁ ମାରିବା ।
ଏସନ ବାକ୍ୟ କହିଲା ଯହୁଁ ମନ୍ତ୍ରୀବର
ଅଙ୍ଗ ପୁଲକାଇଲା ସେ ଦୈତ୍ୟକୁଳସାର ।
ଏସନ ବାକ୍ୟ କହିଣ ଖାତ୍ରୀ ବଜା ଦେଲା
ବେଗେ ସୈନ୍ୟ ସଜ କର ବୋଲିଣ କହିଲା
ଶବଦ ଶୁଣି ସଇନ୍ୟ ହୋଇଲେ ବାହାର
ବୋଇଲେ ସ୍ୱର୍ଗକୁ ଚଢେ କରିବ ଅସୁର ।
ତିନକ୍ଷଉଣୀ ପାଇକ ବେଗେ ସଜ ହୋଇ
ତିନିଲକ୍ଷ ଗଜ ଘେନ ସିଂହଦ୍ୱାରେ ରହି ।
ରଥୀ ତିନିଶତ ପାଞ୍ଚଲକ୍ଷ ହସ୍ତିବର
ସହସ୍ରେକ ଢୋଲବାଦ୍ୟ ବାଜେ ନିରନ୍ତର ।

କଡ଼ା ଧୁମ୍ପସ ବାଜୁଛି ଚହଟି ଘନ ଘନ
ଉଦଯେ ନ ଦିଶେ ଦିନକରର କିରଣ ।
ମଦଗ ରସ ଖାଇଣ ଦୈତ୍ୟ ମଲ୍ଲଆଳି
ଦିବ୍ୟବସ୍ତ୍ର ଚଢ଼ି ସଜହେଲେ ମନ୍ତ୍ରୀବର ।
ବସ୍ତ୍ରୁ ଓହ୍ଲାଇ ମନ୍ତ୍ରୀ ନିକଟେ ପଶିଲା
ଅସୁର ରାଜାକୁ ଯାଇ ଜଉହାର କଲା ।
ବୋଇଲା ହେ ରଥେ ବସ ଯିବା ବେଗହୋଇ
ସଇନ୍ୟ ଅନନ୍ତ ସିଂହଦ୍ୱାରେ ଜୋର ରହି ।
ମନ୍ତ୍ରୀର ବଚନେ ମୂଢ଼ ଅସୁର ଉଠିଲା
ଶୁକ୍ଳବର୍ଣ୍ଣ ପାଗ ଘାଉ ମଥାରେ ବାନ୍ଧିଲା ।
ଘାରଦେଶ ହୋଇ ସେହି ରଥରେ ବସଇ
ଅନୁକୂଳ ଯେନ ପୁଣ ବାହାର ହୁଅଇ ।
ଆକାଶ ମାର୍ଗକୁ ଚାଉ ଶିଖା ଲାଗିଅଛି
ଝମକାଉଛି ଖଡ଼ଗ କରେ ଦୈତ୍ୟବରି ।
ଚଇତ୍ର ଶୁକ୍ଳ ଦଶମୀ ତିଥି ବୁଧବାର
ମଘା ନକ୍ଷତ୍ର ଯେ ସିଂହଚନ୍ଦ୍ର ସେ ଦିନର ।
ବାଣିଜ୍ୟ ନାମେ କରଣ ଶୂଳ ନାମେ ଯୋଗ
ମୀନ ସଂକ୍ରାନ୍ତିର ଯାଇ ତେରଦିନ ଭୋଗ ।
ମଙ୍ଗଳ ଅନୁକୂଳରେ ହୋଇଲେ ବାହାର
ସେ ଦିନ ତାହାକୁ ହୁଏ ସାଧକ ଯେ ଭାର ।
ଆଗରେ ବାହାର ହୋଇ ଗଲେକ ଅସୁରେ
ହାତୀ ଘୋଡ଼ାମାନେ ଚଲେ ତାହାଙ୍କ ପଛରେ
ଅଗୁଆଣୀ ବନ୍ତ ମନ୍ତ୍ରୀ ଗଲେକ ଚଳାଇ
ଟମକ ନିଶାଣ ଆଦି ଘୋଷଣା ବଜାଇ ।
ରଥ ରଥୀ ପଟୁଆଣି ମଧ୍ୟେ ରାଜା ଅଛି
ପତାକା ଚାମରମାନ ଶୂନ୍ୟରେ ଉଡ଼ୁଛି ।
ପାଦଘାତର ରେଣୁରେ ଗଗନ ନ ଦିଶି
ମେଘ ଉହାଡ଼ିଲା ପ୍ରାୟେ ଦିଶେ ରବି ଶଶୀ ।
ଥାଟ ଚଳାଇ ଅସୁର ବେଗେ ଚହୁଁ ଗଲା
ମେରୁ ବାୟବ୍ୟ କୋଣରେ ବାହାର ହୋଇଲା
ଡରେ ଥରହର ହୋଇ କମ୍ପଇ ମେଦିନୀ
ସ୍ଥିର ଟେକି ନ ପାରଇ ବାସୁକି ଯେ ଫଣି ।
ନିକଟ ହୋଇଲା ଯାଇଁ ଅମର ମଣ୍ଡଳ
ଐରାବତ ବେନି ଯୋଦ୍ଧ୍ୟହେଲେ ଆଖଣ୍ଡଳ ।
ଅଙ୍ଗାରପର୍ଣ୍ଣଗ ଚିତ୍ରସେନ ଦୁହେଁ ଥିଲେ
ଅସୁରବଳ ସ୍ୱର୍ଗରେ ଝସାଇ ପଶିଲେ ।

ଅସୁର ଆସିବା କଥା ନ ଜାଣନ୍ତି ସେହି
ଦେବଗଣ ବେନି ଇନ୍ଦ୍ର ଅଧାସ୍ୱର୍ଗେ ରହି ।
ଦକ୍ଷିଣ ସ୍ୱର୍ଗରେ ଲୁଚି ରହିଛି ଗୁପତେ
ଐରାବତ ହସ୍ତୀ ଅଛି ତାହାଙ୍କ ସଙ୍ଗତେ ।
ଏମନ୍ତକାଳେ ଅସୁରରାଜା ଧାଡ଼ିଦେଲା
ଅମରପୁର ମଣ୍ଡଳେ ଚମକ ପଡ଼ିଲା ।
ମାର ମାର ଧର ଧର ଶବଦ ଶୁଭଇ
ସପତସ୍ୱର୍ଗ ଉପରେ ହାଲହୋଳ ହୋଇ ।
ଯେ ଯହିଁ ପାଇଲେ ତହିଁ ଦେବତା ଲୁଚିଲେ
ଅପସରୀ କନ୍ୟାଏ ପଳାଇଣ ଗଲେ ।
ଅପ୍ସରୀ ବିଦ୍ୟାଧରୀ ବେନି ଶଚୀରାଣୀ
କୁଙ୍କୁମ ବନରେ ଯାଇ ଲୁଚିଲେ ତରୁଣୀ ।
ଅସୁରବଳ ପଶିଲେ ଯାଇ ସ୍ୱର୍ଗପୁରେ
ବାଟ ଓଗାଳିଲେ ଚିତ୍ରସେନ ଆଦି ବୀରେ ।
ଦେଖି ପଚାରିଲେ ତାଙ୍କୁ ସେ ଅସୁର ରାୟ
କୁମ୍ଭେ ପଗ ଅଟ ଆରେ ଇନ୍ଦ୍ରର ତନୟ ।
ଏମନ୍ତ ଶୁଣି କ୍ରୁମରେ ମନେ କୋପ କଲେ
ଅନେକ ଶର ଅସୁର ଉପରେ ବନ୍ଧିଲେ ।
ଅଙ୍ଗରେ ବାଜ ସମସ୍ତ ପଡ଼ଇ ଉପୁଡ଼ି
କୋପଇରେ ସେ ଅସୁର ଗୁଡ଼େ ସିଂହରଡ଼ି ।
ଅନେକ ଶସ୍ତ୍ର ସେ ଘାଉ ଅସୁର ବନ୍ଧିଲା
ଅଙ୍ଗାରପର୍ଣ୍ଣଗ ଏକ ଶରେ ତା ଛେଦିଲା ।
ମନ୍ତ୍ର ପଢ଼ି ଏକ କୁନ୍ତ ବନ୍ଧିଲା ଦୈତ୍ୟକୁ
ଉପୁଡ଼ି ପଡ଼ିଲା ମୂର୍ଖ କରଣ ତନକୁ ।
ଏମନ୍ତ ସମର ହେଲା ଜାଣି ଘଡ଼ିଏକ
ଦୁହେଁ ଦୁହିଙ୍କୁ ସେ ବାଣ ବନ୍ଧନ୍ତି ଅନେକ
ହେଳକୁହେଳ ସମର ହେଲା ଅଗୋଚର
ଅସୁରମାନେ ସ୍ୱର୍ଗକୁ କରୁଛନ୍ତି ଜୁର ।
ଯେ ଯାହା ଯହିଁ ପାଇଲେ ତାହା ସେ ଆଣିଲେ
ଅମର ମଣ୍ଡଳଯାକ ନାରଖାର କଲେ ।
ଅଙ୍ଗାରପର୍ଣ୍ଣଗ ସଙ୍ଗେ ସେହି ମୂଢ଼ାସୁର
ଘଡ଼ିଏକ ପରଯନ୍ତେ କଲେକ ସମର ।
ଚିତ୍ରସେନ ସଙ୍ଗତରେ ଯୁଝେ ମନ୍ତ୍ରୀବର
ଶସ୍ତ୍ରକୁ ପ୍ରତିଶସ୍ତ୍ର ସେ କରଇ ପ୍ରହାର ।
ବଜ ଲୁଳି ତେଜ ପରସ୍ପ ନାଗତ ଦିଶଇ
ଏମନ୍ତେ ଦୁଇପ୍ରହର ସମର ହୁଅଇ ।

କେହୁ ଯେ କାହାକୁ ଚିହ୍ନି ଜାଣନ୍ତା ନୋହିଲା
ବଡ଼ଇ ସମର ଦୁଇ ବୀରଙ୍କର ହେଲା ।
ଗଣପତିଙ୍କର ବରେ ବଳିଷ୍ଠ ଅସୁର
ମୂଢ଼ାସୁର ବସିଥିଲା ରଥର ଉପର ।
ଅଙ୍ଗାର ପର୍ଣ୍ଣଗ ପରେ ଡେଇଁଣ ପଡ଼ିଲା
ବାମହସ୍ତେ ତାର ବାଳ ବଗଣ୍ଡି ଧଇଲା ।
ବାଳକୁ ଧରି ରଥର ଉପରେ ଉଠଇ
ଅଖ ଦଣ୍ଡରେ ତାହାକୁ ନବଡ଼େ ବାନ୍ଧଇ ।
ସ୍ୱର୍ଗ ଜୟ ଟମକ ଯେ ବଅଇ ଅସୁର
ଚିତ୍ରସେନ ସଙ୍ଗେ ଯୁଦ୍ଧ କରେ ମନ୍ତ୍ରୀବର ।
ଟମକ ଶୁଣି ତକ୍ଷଣେ ସମର ଛାଡ଼ିଲା
ଅଗାର ଅସୁର ମଡା ବାଟରେ ଦେଖିଲା ।
ଅଙ୍ଗାରପର୍ଣ୍ଣଗବାଣେ ପଡ଼ିଲେ ଅସୁର
ରକ୍ତନଦୀ ଘୋଟା ବହେ ଆକାଶ ଉପର ।
ଗୋଡ଼ାଇଣ ଚିତ୍ରସେନ ଅସୁର ନବାର
ଶକ୍ତି ଶର ମୁଦ୍‌ଗର କୋଟି କୋଟି ମାର ।
ଅନେକ ଶିର ଭୂମିରେ ପଡ଼ିଲାକ ଛିଡ଼ି
ଅସୁର ମୁଣ୍ଡ ଭୂମିରେ ଯାଉଛନ୍ତି ଗଡ଼ି ।
ଦେଖିଣ ଅସୁରସପ୍ତ କ୍ରୋଧଭର ହେଲା
ଥାଟକୁ ଫେରାଅ ବୋଲି ମନ୍ତ୍ରୀକୁ କହିଲା ।
ରଥେ ଅଙ୍ଗାରପର୍ଣ୍ଣଗ ଦେଖି ମନ୍ତ୍ରୀବର
ଜୟ ହେଲା ବୋଲି ମନେ କରଇ ବର୍ବର ।
ତେଣୁ ଥାଟ ନ ଫେରାଇ ଗଲା ଧୀରେ ଧୀରେ
ବାରତା ଦେଲେ ତରତେ ଇନ୍ଦ୍ରର ଛାମୁରେ ।
ସ୍ୱର୍ଗପୁରଯାକ ଡୋର ହେଲା ହାଲହୋଳି
ଅଙ୍ଗାରପର୍ଣ୍ଣଗ ବାନ୍ଧିନେଲା ମହାବଳୀ ।
ଇନ୍ଦ୍ର ସ୍ୱୟେ ଏହା ଶୁଣି ବିକଳ ହୋଇଲେ
ବୃହସ୍ପତି ପାଶେ ଗଲେ ବଚନ କହିଲେ ।
କି ବୁଦ୍ଧି କରିବା ଏବେ କହ ଦେବଗୁରୁ
ଅଙ୍ଗାରପର୍ଣ୍ଣଗ ବାନ୍ଧିନେଲା କି ବସ୍ତୁରୁ ।
ବୃହସ୍ପତି ବୋଇଲେ ମୁଁ କହଇ କଥାଏ
ସାବଧାନ ହୋଇ ତୁମ୍ଭେ ଶୁଣ ଦେବରାୟେ
ଉପାୟ କର ଅଙ୍ଗାରପର୍ଣ୍ଣଗ ଆଣିବା
ଅସୁର ମାରିବା କଥା ପରେ ବିଚାରିବା ।
ଆଜ ଏତେ ଅପଚୟ ପାଇଲା ଅସୁର
ଏ ବନ ଯାଏ ଅଜେୟ ଥିଲାକ ସେ ପାର ।

ଏବେ ନାରଦ ମୁନିଙ୍କୁ ଆଣ ହକରାଇ
ଅଙ୍ଗାର ପର୍ଣ୍ଣଗକୁ ସେ ଆଣନ୍ତୁ ଫେରାଇ ।
ବୃହସ୍ପତିଙ୍କ ବଚନ ବାସବ ଶୁଣିଲେ
ମାତଳିକୁ ଚାହିଁ ଇନ୍ଦ୍ର ବେଗେ ଆଜ୍ଞା ଦେଲେ
ନାରଦ ମୁନିଙ୍କୁ ତୁମ୍ଭେ ଘେନି ଆସ ଯାଇ
ଏମନ୍ତ ଶୁଣି ମାତଳି ଗଲା ବେଗ ହୋଇ ।
ନାରଦଙ୍କ ଛାମୁରେ ସେ ମିଳିଲା ବହନ
ବୋଲେ ଇନ୍ଦ୍ର ଆଜ୍ଞା ଦେଲେ ଚାଲ ଏହିକ୍ଷଣ
ମାତଳି ବଚନେ ମୁନି ନାରଦ ହସିଲେ
ଦେବରାଜା ଛାମୁରେ ସେ ଯାଇଣ ମିଳିଲେ ।
ବୋଇଲେ କାହିଁକି ଡାକୁ କହ ବଜ୍ରଧର
ଇନ୍ଦ୍ର ବୋଇଲେ ପୁତ୍ରକୁ ନେଲାକ ଅସୁର ।
ତୁମ୍ଭେ ଯାଇ ତାକୁ ବେଗେ କହି ଘେନି ଆସ
ତେବେ ସେ ମୋହର ହୃଦେ ପଶିବ ସାହସ
ତତକ୍ଷଣେ ମହାଭକ୍ତ ନାରଦ ଚଳିଲେ
ବୀଣା ବଜାଇ ଅସୁର ସନ୍ନିଧେ ମିଳିଲେ ।
ଅଧବାଟରେ ଯାଇଣ ଭେଟିଲେ ଅସୁର
ମୁନିଙ୍କୁ ଦେଖି ଅସୁର କଲା ନମସ୍କାର ।
କଲ୍ୟାଣ ବାଞ୍ଛା କରିଲେ ତହୁଁ ମୁନିମଣି
ବୋଇଲେ ଆରୋଗ୍ୟ ତୁହି ହୁଅ ନୃପମଣି ।
ଆବର ବୋଇଲେ ଯାହା କଲୁ ନୃପନାହା
ପୂର୍ବେ ଏମନ୍ତ କେହୁ କରିନାହିଁ ଏହା ।
ଶୁଣିଣ ହସି ବୋଇଲା ଦୈତ୍ୟ ମହାଘୋର
ଇନ୍ଦ୍ରର ମୃତ୍ୟୁ ରହିଲା ଏବେ ମୋର କର ।
ନାରଦ ବୋଇଲେ ଆମ୍ଭେ କଥାଏ ମାଗିବୁ
ସତ୍ୟମନେ ଯେବେ ରାଜା ଆମ୍ଭଙ୍କୁ ତୁ ଦେବୁ ।
ସତ୍ୟକର ଯେବେ ତୁହି ନ କରିବୁ ନାହିଁ
ଆମ୍ଭର ଶପଥ ତୁଇଁ କହ ନୃପସାଇଁ ।
ମୁନି ଅଙ୍ଗ ଛୁଇଁ କଲା ଅସୁର ନୟମ
ମାଗ ମାଗ ମୁନିବର ଯାହା ତୁମ୍ଭ ମନ ।
ମୁନି ବୋଇଲେ ଅଙ୍ଗାର ପର୍ଣ୍ଣଗକୁ ଦେବୁ
ଏ ତୋର ପିତୃବଇରୀ ନୁହଇ ରେ ବାବୁ ।
ଏହାକୁ ମାରିଲେ ତୋର ହେବ କେଉଁ ଯଶ
ଆମ୍ଭ ବୋଲେ ଗନ୍ଧର୍ବ ଯାଉ ନିଜ ଦେଶ ।
ଶୁଣିଣ ଅସୁର ରାଜା ମଉନ ହୋଇଲା
ଗନ୍ଧର୍ବକୁ ଆସ୍ଥାରେ ସେ ବସି ବସାଇଲା ।

ନ ଦେଲେ କୋପ କରିବ ଏହି ମୁନିବର
ଏତେ ବୋଲି ପିଠାଇଲା ରଥରୁ ଭୂମର ।
ନାରଦ ମୁନିଙ୍କ କରେ ସମର୍ପିଲା ନେଇ
ବୋଇଲା ପ୍ରାଣ ଏହାର ରଖିଲୁ ଗୋସାଇଁ ।
ନାରଦ ବୋଇଲେ ବାବୁ ଯାଉଅଛୁ ମୁହିଁ
ମୋର କଲ୍ୟାଣେ ଆରୋଗ୍ୟ ହୋଇଥାଅ ତୁହି
କଲ୍ୟାଣ କରି ନାରଦ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ଅମର ନଗର ।
ଅଙ୍ଗାରପର୍ଣ୍ଣକୁ ସେ ଇନ୍ଦ୍ର କୋଳେ ଦେଲେ
ନାରଦ ମୁନି ହରଷେ ବୀଣା ବଜାଇଲେ ।
ଶୁଣ ହୋ କଳିଙ୍ଗ ରାଜା କହନ୍ତି ଅଗସ୍ତି
ସାବଧାନ ହୋଇ ଶୁଣ ମୁଦ୍ରାସୁର ସ୍ଥିତି ।
ଥାଟ ଚଳାଇ ଅସୁର ବୀର ଉଦ୍ଧ ଗଲା
ଆପଣା ନଗରେ ଯାଇ ପ୍ରବେଶ ହୋଇଲା ।
ଥାଟ ସୈନ୍ୟକୁ ମେଲାଣି ଦେଲା ଅବଧାନ
ଯେ ଯାହାର ପୁରେ ଚଳିଗଲେ ସର୍ବସୈନ୍ୟ
ମନ୍ତ୍ରୀ ମୁଖ ଚାହିଁ କହୁଅଛୁ ମୁଦ୍ରାସୁର
କହ ମନ୍ତ୍ରୀ କରିବାକ କେବଣ ବିଚାର ।
ଏମନ୍ତ ବୋଲିଣ ମନ୍ତ୍ରୀବର ସଙ୍ଗେ ଘେନ
କପିଳାସ କନ୍ଦରକୁ ଗଲାକ ବହନ ।
ଗଣନାଥଙ୍କ ଚରଣେ ପୂଜା ବିଧି କଲା
ଦରଶନ କରି ତହୁଁ ବେଗେ ବାହୁଡ଼ିଲା ।
ମନ୍ତ୍ରୀବରକୁ ମେଲାଣି ଦେଇ ନୃପବର
ପ୍ରବେଶ ହୋଇଲା ଯାଇ ନିଜ ଅନ୍ତଃପୁର ।
ଭୋଜନ ସାରିଣ ବେଗେ ଆଚମନ କଲା
ତାମ୍ବୂଳ ଲଗି ହୋଇଣ ପଲଙ୍କେ ବସିଲା ।
ଯେ ଯାହାର ନିଜପୁରେ ଥାନ୍ତି ସର୍ବଜନ
ଏହି ମତେ ବହିଗଲା ଥୋକାଏକ ଦିନ ।
ଏକ ଦିନେ ରାଜା ହକାରିଣ ମନ୍ତ୍ରୀବର
କି ବୁଦ୍ଧି କରିବା ବୋଲି କହେ ନୃପବର ।
ଏମନ୍ତ କହିଣ ମନ୍ତ୍ରୀବରେ ସଙ୍ଗେ ଘେନ
ରାଜା ବୋଲେ ମନ୍ତ୍ରୀବର ଶୁଣ ମୋର ବାଣୀ
ବଂଶବାର ପର୍ଯ୍ୟନ୍ତେ ସ୍ୱର୍ଗେ ଧାଡ଼ିଦେଲି
ଇନ୍ଦ୍ର ଦେବତାର ଭେଟ ମୁହିଁ ନ ପାଇଲି ।
କେଉଁମତେ ଇନ୍ଦ୍ରକୁ ଯେ ଭେଟିବଇଁ ମୁହିଁ
କେବେ ସିନା ତାହାକୁ ମୁଁ ବନ୍ଦୀ କରିବଇଁ ।

ଶୁଣିଣ ମନ୍ତ୍ରୀ ତାହାର ବୋଲଇ ବଚନ
ସଇନ୍ୟ ସଜ କରିଣ ଯିବା ଆମ୍ଭେ ପୁଣ ।
ରାତ୍ର ଥାଉଁ ଥାଟ ଆମ୍ଭେ ଥିବାକ ଯେ ସଜ୍ଜ
କେହି ତାହାଙ୍କୁ ପୁଣ ନ କହିବେ କିଛି ।
ଗୁପତ ହୋଇଣ ଆମ୍ଭେ ଏଠାରୁ ଯିବା
ରାତ୍ର ଥାଉଁ ସ୍ୱର୍ଗପୁରେ ଯାଇଣ ମିଳିବା ।
ଆସ୍ଥାନ ନବରତ୍ନ ବେଢ଼ିବାକ ଯାଇ
ନିଃଶବ୍ଦେ ରହିବା ବାଜଣା ନ ବଜାଇ ।
ଏହା ଶୁଣି ମୁଦ୍ରାସୁର ମନକୁ ଅଇଲା
ଏହି କଥା କର ବୋଲି ଭିତରକୁ ଗଲା ।
ଏହା ଶୁଣି ମନ୍ତ୍ରୀବର ଚଳିଲ ବହନ
ସିଂହଦ୍ୱାରେ ପ୍ରବେଶିଣ ବୋଇଲା ବଚନ ।
ଡଗରକୁ ପାଶକୁ ସେ ହକାରିଣ ନେଲା
ଗୁପତରେ ସୈନ୍ୟ ସଜ କର ଯା ବୋଇଲା ।
ଅମରମଣ୍ଡଳ ହୋଇବ ଯେ ଭଟକାଇ
ସଜହୋଇ ସିଂହଦ୍ୱାରେ ସର୍ବେ ଥିବେ ରହି ।
ଶୁଣି ଡଗର ସେଠାରୁ ବେଗେ ଚଳିଗଲା
ଦୋସାଧୂ ଆଗେ ବାରତା ଯାଇଣ କହିଲା ।
ସୈନ୍ୟ ସଜକର ତୁମ୍ଭେ ବେଗ ହୋଇ ଆସ
ଏମନ୍ତେଣ ନରପତି ଦେଇଛୁ ଆଦେଶ ।
ଦୋସାଧୂ ବଚନ ଶୁଣି ଅସୁରଙ୍କ ଦଳ
ସଜ ହୋଇଣ ବାହାର ହୋଇଲେ ସକଳ ।
ଅଶୀପଦ୍ମ ରଥ ବାବଂଶତ ପଦ୍ମ ହାସ୍ତି
ପାଞ୍ଚକୋଟି ଅଶ୍ୱ ତୌଦକୋଟି ଯେ ପଦାତି ।
ଦଶକୋଟି ଯୋଦ୍ଧା ତହୁଁ ହୋଇଲେକ ସଜ
ସିଂହଦ୍ୱାରେ ଉଛୁରିଲେ ହୋଇ ମହାତେଜ ।
ସୈନ୍ୟ ସଜାଇଣ ମନ୍ତ୍ରୀ ଭିତରକୁ ଗଲା
ମୁଦ୍ରାସୁର ରାଜା ଆଗେ ବାରତା କହିଲା ।
ରାଜା ଆଗେ କହେ ମନ୍ତ୍ରୀ କରଯୋଡ଼ି କରି
ସିଂହଦ୍ୱାରେ ଥାଟ ଆସି ରହିଲେ ଉଛୁରି ।
ମନ୍ତ୍ରୀର ବଚନେ ରାଜା ଆନନ୍ଦ ହୋଇଲା
ରଥ ମୋର ସଜକର ବୋଲି ଆଜ୍ଞା ଦେଲା ।
ବୈଶାଖ ଶୁକଳ ପକ୍ଷ ଦଶମୀର ତିଥି
ବୃହସ୍ପତି ବାର ରିକ୍ଷ ପୂର୍ବା ଫାଲଗୁନି ।
ନିଧନ ତାର ମକର ଲଗ୍ନ ଧ୍ରୁବ ବେଳ
ଏମନ୍ତ ସମୟେ ସ୍ୱର୍ଗେ ଚଳିଲେକ ଦଳ ।

ଅମୃତ ବେଳାରେ ଦୈତ୍ୟ ରଥରେ ବସିଲା
ଥାଟ ଚଳୟାଅ ବୋଲି ପୁଣ ଆଜ୍ଞାଦେଲା ।
ଆଗୁଆଣି ଥାଟ ଭାର ଗଲେ ତତପର
ପାଦଭରେ ବସୁନ୍ଧରା କମ୍ପେ ଥରହର ।
ଏହିମତେ ସୈନ୍ୟଗଣ ଚଳାଇଣ ଗଲେ
ଅଧା ସ୍ୱରଗେ ଯାଇଣ ପ୍ରବେଶ ହୋଇଲେ ।
ଦେବଙ୍କ ଭିତରେ ଏହା ଗୁପ୍ତେ ଦେଖୁଥିଲେ
ମୂଢ଼ାସୁର ବାହବାର ସନ୍ଧାନେ କହିଲେ ।
ଶୁଣ ସାବଧାନେ ପ୍ରଭୁ ଦେବ ପୁରନ୍ଦର
ଅମରପୁରେ ବାହିଲା ମୂଢ଼ାସୁର ସାର
ବାଜଣା ତ ନ ବାଜଇ ତୁଣ୍ଡ ନ ଶୁଭଇ
ଗୁପତେ ଅମରପୁରେ ଆସିଅଛି ବାହି ।
ଏହା ଶୁଣି ଇନ୍ଦ୍ରଦେବ ମହାଭୟ କଲା
ବ୍ରହ୍ମା ବୃହସ୍ପତିଙ୍କୁ ସେ ସ୍ମରିଣ ବୋଇଲା ।
ହେ ଗୁରୁ ହେ ପିତାମହ ଶୁଣ ସାବଧାନ
ଏବେ ନଷ୍ଟେ ନାଶଗଲା ଅମର ଭୁବନ ।
ଶୁଣି ପିତାମହ ଦେବ ଗୁରୁ ମୁଖ ଚାହିଁ
ମୂଢ଼ାସୁର ଚରିତ ତୁ ନ କହୁ କପାଇଁ ।
ଏହା ଶୁଣି ଦେବଗୁରୁ କହନ୍ତି ବଚନ
ଏହିପରି ମୂଢ଼ାସୁର ହୋଇବ ନିଧନ ।
ଏବେ ଦେବସୈନ୍ୟ ତୁମ୍ଭେ ବେଗେ ସଜକର
ଆବର ହସ୍ତିନା ନଗ୍ରେ ପଠାଅ ଚର ।
ନକୁଳ କୁମରକୁ ସେ ଘେନିଆସୁ ଯାଇ
ତେବେ ଅସୁର ମରିବ ମୁହିଁ କହିଲଇ ।
ଏହା ଶୁଣି ଇନ୍ଦ୍ର ରାୟେ ହରଷ ହୋଇଲା
ବଜ୍ର ଝମକାଇ ପରାକ୍ରମ ଦେଖାଇଲା ।
ବୋଇଲା ଦେବତାମାନେ ସାବଧାନେ ଶୁଣ
ଯେ ଯାହାର ସୈନ୍ୟ ଘେନି ଆସ ହୋ ବହନ
ଇନ୍ଦ୍ର ରାଜା ଆଜ୍ଞା ପାଇ ଦେବତା ସକଳ
ବିଳମ୍ବ ନ କରି ସର୍ବେ ସାଜିଲେକ ବଳ ।
ଚୌଷଠି କୋଟି ଗନ୍ଧର୍ବବଳ ସଙ୍ଗେ ଘେନି
ଅଳାରଖଳଗ ମୂଳେ ଅନେକ ସଇନ ।
ତେତିଶକୋଟି ଦେବତା ବଳ ଯେ ଅଇଲେ
ତାହା ହସ୍ତଙ୍କର ମୂଳେ ଦଶଦିଗପାଳେ ।
ଚୌଦକୋଟି ଶବରଗଣ ଘେନି ସେ ଯତନ
ଆସିଣ ହୋଇଲେ ଇନ୍ଦ୍ରଦେବ ସନ୍ନିଧାନ ।

ମାତଳି ହକାରି ଆଜ୍ଞା ଦେଲେ ପୁରନ୍ଦର
ବହନ ହୋଇଣ ଯାଅ ହସ୍ତିନା ନଗର ।
ଯୁଧିଷ୍ଠିରେ ଦେବେ କହିବୁ ଆମ୍ଭର ଆଦେଶ
ବୋଲିବୁ ସ୍ୱର୍ଗ ବାହିଲା ସେ ମୂଢ଼ା ରାକ୍ଷସ ।
ନକୁଳ କୁମର ଯେବେ ଆସିବ ଅମର
ତେବେ ଯେ ବଧ ହୋଇବ ସେ ମୂଢ଼ାସୁର
ଏତେ କହି ମାତଳିକି ପୁଷ୍ପଯାନ ଦେଇ
ହସ୍ତିନା ନଗରକୁ ସେ ମାତଳି ଚଳଇ ।
ଏଥୁଅନ୍ତେ ଶୁଣ ତୁ ହୋ କଲିଙ୍ଗେଶ ରାୟେ
ମୂଢ଼ାସୁର ଆସିକରି ଅଧାସ୍ୱର୍ଗେ ରହେ ।
ଗୁପତେ ଦେବ ସଭାକୁ ଚର ପଠାଇ
ଦେବତାଙ୍କର ଚରିତ ବୁଝିଆସ ଯାଇଁ ।
ଏମନ୍ତ ଚରର ସ୍ୱର୍ଗପୁରେ ଯାଇଥିଲା
ଦେବତାଙ୍କ ସଜ ଦେଖି ବାରତା କହିଲା ।
ଏହା ଶୁଣିଣ ଅସୁର ଅଙ୍ଗ ପୁଲକାଇ
ଆଜ ଜାଣିମା ଗାରିମା ତୋର ସୁରସାଇଁ ।
ଯେବେ ସେ ଆଜ ସଂଗ୍ରାମରେ ପଡ଼ିବାକ ଭେଟ
ତେବେ ଜାଣିବାକ ଆମ୍ଭେ ଇନ୍ଦ୍ରର ମୁରାଟ ।
ଏତେ ବୋଲିକରି ରାୟେ ପରମାଣ ଦେଲା
ଅମର ମଣ୍ଡଳେ ଥାଟ ବେଢ଼ ହୋ ବୋଇଲା ।
ଆଦେଶ ପାଇ ଅସୁର ସବଳନ୍ତୁ ବେଗେ
ଯାଇଁ ମିଳିଲେ ଅମର ସ୍ୱରଗର ଲାଗ ।
ଅମର ଆସ୍ଥାନେ ସର୍ବେ ମିଳିଲେକ ଯାଇଁ
ଏହା ଦେଖି ଶଚୀନାଥ ବସ୍ତର କରଇ ।
ମାର ମାର ଅସୁରଙ୍କୁ ଅକ୍ରୋଧ ନ କର
ଅମରପୁର ମୋହର କରେ ନାରଖାର ।
ଦେବଙ୍କୁ ଦେଇ ଅସୁର ଧାଡ଼ ହେଉଅଛି
ଅନେକ ଉପଦ୍ରବ ସେ ଅମରେ କରୁଛି ।
ଶୁଣିଣ ଦେବତାଗଣେ ଗରଜ ଉଠିଲେ
ବାରବାଦ୍ୟ ଦୁନ୍ଦୁଭି ଯେ ବେଗେ ବଜାଇଲେ
ଦେବଗଣେ ନାନା ଶର କଲେକ ପ୍ରହାର
ଦେଖିଣ ଧାଇଁଲେ ବେଗେ ସର୍ବ ନିଶାଚର ।
ଶେଲ କୁନ୍ତ ଗଦା ଶକ୍ତି ଘେନି ପ୍ରହାରିଲେ
କୁନ୍ତ ଯଷ୍ଟି ଅସିବର ଘେନିଣ ମାଇଲେ ।
ଚିତ୍ରସେନ ଗନ୍ଧର୍ବ ଯେ ଧାଏଁ କୋପକରି
ଅସୁର ସୈନ୍ୟ ଉପରେ ଶସ୍ତ୍ରକୁ ପ୍ରହାରି ।

ଧନୁରେ ନାରାଚ ଯୋଖି ପୂରାଇଣ ଖରେ
କୋପେ ପ୍ରହାର କରଇ ଅସୁରଙ୍କ ପରେ ।
ଦେବବଳ ସୈନ୍ୟସବୁ ପଡ଼ିଲେକ ମାଡ଼ି
କୋଟି କୋଟି ହୋଇ ଯୁଦ୍ଧେ ଦୈତ୍ୟବଳପଡ଼ି
କଣାକାଳରେ ସଂଗ୍ରାମ ହୋଇଲା ଅପାର
ରୁଧିର ନଦୀ ଗୋଟିଏ ବହେ ଖରତର ।
ଦେଖି ତାହା ମୂଢ଼ାସୁର କୋପଭର ହୋଇ
ତୀକ୍ଷ୍ଣମୁନା ନାରାଚେକ ଗୁଣରେ ବସାଇ ।
ଶୂରସେନ ଚଣ୍ଡସେନ ଉପରେ ପେଷିଲା
ଶର ଯାଇଁ ଚଣ୍ଡସେନ କଣ୍ଠେ ବାଜିଲା ।
ସଙ୍ଗେ ଥର ଥର ତାର କମ୍ପିଲା ଶରୀର
ମୋହେ ଚଣ୍ଡସେନ ଶିର ପଡ଼ିଲା ଭୂମିର ।
ଏହା ଦେଖି ସଦାଶିବ କୋପେଣ ଧାଇଁଲେ
ରେ ରେ କାର କର ତାର ଅଗେ ଉଭାଳିଲେ
ମହାଘୋର ସଂଗ୍ରାମ ଯେ ହୋଇଲା ଅପାର
ରୁଧିର ନଦୀ ବହିଲା ହୋଇ ଖରତର ।
ମନୁ ପଚାରଇ ଏବେ ଚଇତନ ଶୁଣ
ମାତଳି ଯେ ଗଲା ଶୁଣ ହସ୍ତିନା ଭୁବନ ।
ସେ ତହିଁ ଯାଇଣ ପୁଣ କିସ କୃତ୍ୟ କଲା
ଏ କଥା ମୋତେ ବଡ଼ହିଁ ସନ୍ଦେହ ଲାଗିଲା ।
ଏଥିର ତତ୍ତ୍ୱ ମୋତେ କହ ମୁନିବର
ତବମୁଖୁ ଶୁଣି ମୋର ଚିତ୍ତ ହେଉ ସ୍ଥିର ।
କହନ୍ତ ଅତ୍ରେ ତୁହୋ ମନୁସ୍ୱୟେ ଶୁଣ
ମାତଳି ପ୍ରବେଶ ହେଲା ହସ୍ତିନା ଭୁବନ ।
ଯୁଧିଷ୍ଠିରଙ୍କ ଆସନେ ପ୍ରବେଶ ହୋଇଲା
ଦେଖିଣ ଯୁଧିଷ୍ଠିରେକ ଶିରେ କର ଦେଲା ।
କେ ପିତା କହ ଏଠାକୁ କିପାଇଁ ଆଗତ
କି ନିମନ୍ତେ ଆଗମନ କହ ସେ ତତ୍ତ୍ୱତ ।
ଶୁଣିଣ ମାତଳି ତାଙ୍କୁ କହନ୍ତ ବଚନ
ସାବଧାନ ହୋଇ ଶୁଣ ଧର୍ମଙ୍କ ନନ୍ଦନ ।
ମୂଢ଼ାସୁର ଦୈତ୍ୟ ସ୍ୱର୍ଗପୁରେ ଧାଡ଼ିଦେଲ ।
ଏକବିଂଶବାର ସ୍ୱର୍ଗପୁର ଜୟ କଲା ।
ଗଜାନନ ପରସନ୍ନେ ଦେଇଛନ୍ତି ବର
କାହାର ହାତରେ ବଧ ନୋହିବ ଅସୁର ।
ଦେବଗୁରୁ କହିଥିଲେ ଏଥିର ସନ୍ଦେଶ
ଅଶ୍ୱିନୀଙ୍କ ପୁତ୍ରହସ୍ତେ ଛାଣେ ହେବ ନାଶ ।

ତେଣୁ ଏଥି ପଠାଇଲେ ମୋତେ ସୁରସାଇଁ
ବଜ୍ର ଉପଦ୍ରବ ସ୍ୱର୍ଗେ ଅସୁର କରଇ ।
ଶୁଣିଣ ଯୁଧିଷ୍ଠି ସହଦେବ ମୁଖ ଚାହିଁ
ଏଥିର ସନ୍ଦେଶ ବାବୁ କହ ମୋତେ ବୁଝି ।
ଏହାଶୁଣି ମାଦ୍ରୀସୁତ କହଇ ବଚନ
ଏ କଥା ସ୍ୱରୂପ ଅଟଇ ଧର୍ମଙ୍କ ନନ୍ଦନ ।
ଶୁଣିଣ ନୃପତି ନକୁଳର ମୁଖ ଚାହିଁ
ଅମର ସ୍ୱର୍ଗକୁ ତୁହି ଯାଅ ବେଗ ହୋଇ ।
ଶୁଣିଣ ନକୁଳ ତାର ଶିରେ ହସ୍ତ ଦେଲା
ମାତଳି ସଙ୍ଗେ ପୁଷ୍ପକ ରଥେ ଆରୋହିଲା ।
ମାତଳିର ମୁଖ ଚାହିଁ ବୋଲଇ ନକୁଳ
ମୂଢ଼ାସୁର ପାଶକୁ ତୁ ବେଗକରି ଚଳ ।
ମାତଳି ବୋଲଇ ଦେବ ଶୁଣିବା କୁମର
ଅମର ପୁରନାଶନ କରଇ ଅସୁର ।
ଶୁଣିଣ ନକୁଳବୀର କୋପରେ ହୋଇ
ଅସୁର ସନ୍ନିଧେ ରଥ ବାହ ବେଗ ହୋଇ ।
ଶୁଣିଣ ମାତଳି ରଥ ବାହେ ଘନ ଘନ
ପ୍ରବେଶ ହୋଇଲା ଯାଇ ସମରର ସ୍ଥାନ ।
ଦୈତ୍ୟଙ୍କୁ ଦେଖି କୁମର କୋପଭର ହୋଇ
ଧନୁ ଧରିଣ ନାରାଚ ତହିଁରେ ବନ୍ଧଇ ।
ନକୁଳର ଶରଘାତେ ଦୈତ୍ୟ ସୈନ୍ୟବଳ
ବିମୁଖ ହୋଇଣ ସର୍ବେ ହୋଇଲେ ବିକଳ ।
ଦେଖି ମୂଢ଼ାସୁର ତାର ମନେ ବିଚାରଇ
ଆଜଦିନ ବିପକ୍ଷତ ପରସ୍ତେ ଦିଶଇ ।
କୃପାକୃ ମନ୍ତ୍ରୀ ମୁଖକୁ ଚାହିଁଣ ବୋଇଲା ।
ଆଜଦିନ ଅପତସ୍ୟ ମୋତେ ତ ଦିଶିଲା ।
ଏହାଶୁଣି ମନ୍ତ୍ରୀବର କହଇ ବଚନ
ସାବଧାନେ ଶୁଣ ତୁମ୍ଭେ ଅସୁର ରାଜନ ।
ନିଶ୍ଚେ ଅପତସ୍ୟ ଆଜ ହୋଇବାକ ତୋତେ
ତୋହର ମୃତ୍ୟୁ ଅଛଇ ଏହାର ଯେ ହସ୍ତେ ।
ଶୁଣିଣ ସେ ମୂଢ଼ାସୁର ବୋଲଇ ବଚନ
ମୋର ଦେଖୁଁ ଦେଖୁଁ ହସ୍ତ ହେଉଅଛି ଶୂନ୍ୟ,
ଏତେ ବୋଲି ମୂଢ଼ାସୁର ଉଠିଲାକ ଗର୍ଜି
ଦେବବଳ ସୈନ୍ୟ ସବୁ ପଳାଇଲେ ଲାଜ ।
ଘୋର ସମର କରିଲା ମୂଢ଼ାସୁର ବୀର
ଦେବଗଣ ଗନ୍ଧର୍ବ ଯେ ପଡ଼ିଲେ ଅପାର ।

ଲୁଢ଼ ଲୁଢ଼ ହୋଇ ତହିଁ ପଡ଼ିଲେକ ମଡ଼ା
ପତାପାତେ କରଦମ ହେଲା ବସୁନ୍ଧରା ।
ଘୋରଯୁଦ୍ଧ ଦେଖିକରି ସୁରସୈନ୍ୟ ଉଠି
ବଜ୍ରଶକତ ଘେନିଣ ଦୈତ୍ୟ ଅଙ୍ଗେ ପିଟି ।
ବଜ୍ର ବାଜନ୍ତେ ତହୁଁ ନୋହିଲା ଯେ ତାର
ଚହଚହ ହୋଇଣ ଯେ ହସିଲା ଅସୁର ।
ତା ଦେଖି ଇନ୍ଦ୍ରଦେବର ନ ସ୍ଫୁରଇ କଥା
ଅବହେଳ ହୋଇକରି ଦୈତ୍ୟ ରହିଅଛି ।
ଏହି ସମୟରେ ବୀର ନକୁଳ ଦେଖିଲା
ଆରେ ଆରେ ଦୈତ୍ୟ ବୋଲିକରି ଡାକଦେଲା
ଶରଧାର ଶକତ ସେ ପ୍ରହାରିଲା ନେଇ
ଅସୁର ଅଙ୍ଗେ ପଡ଼ିଣ ଉପୁଡ଼ି ପଡ଼ଇ ।
ଦେଖି ଅସୁର ଭୂମୂର୍ତ୍ତି ଶକ୍ତି କରେ ଧରି
ନକୁଳ ଉପରକୁ ସେ ମାରେ କୋପକରି ।
ତା ଦେଖି ନକୁଳବୀର ମୁଦ୍‌ଗର ମାଇଲା
ଅସୁରର ଶରସବୁ ନବାଇଣ କଲା ।
ଏହିମତେ ପ୍ରହରେକ ଘୋର ଯୁଦ୍ଧ କଲେ
କେହି କାହାରିକୁ ତହିଁ ଜିଣି ନ ପାରିଲେ ।
ତା ଦେଖି ନକୁଳବୀର ମନେ ବିଚାରଇ
କେମନ୍ତେ ଏ ଅସୁରର ପ୍ରାଣ କ୍ଷୟ ହୋଇ ।
ନକୁଳ ବିଚାରିବାର ମାତଳି ଜାଣିଲା
ଅସୁର ମରଣ ଭେଦ ତା କର୍ଣ୍ଣେ କହିଲା ।
ଅଗ୍ନିଶର ଯେବେ ଫୋଡ଼ି ଦଇତ୍ୟର ବୁକୁ
ତେବେ ଏହି ଅସୁରର ହୋଇବ ଯେ ମୃତ୍ୟୁ ।
ଏହା ଶୁଣିଣ ନକୁଳ ଅଙ୍ଗ ପୁଲକାଇ
ଅଗ୍ନିଶର ଯେନ ବୀର ଗୁଣରେ ବସାଇ ।
ମନ୍ତ୍ର ପଢ଼ି ସେହି ଶରେ ବେଗେ ଉଚ୍ଚୁଡ଼ିଲେ
ଆକର୍ଣ୍ଣ ଟାଣି ସେହି ଶର ଛାଡ଼ିଦେଲେ ।
ବାଣ ଛାଡ଼ନ୍ତେ ଦିଶିଲା ସୂର୍ଯ୍ୟର କିରଣ
ଦଶଦିଶ ତାର ତେଜେ ହେଲା ଛଳି ଛଳି ।
ଏହା ଦେଖି ଦୈତ୍ୟମନ୍ତ୍ରୀ ରଥ ପଳାଇଲା
ନିଶ୍ଚୟ ଦୈତ୍ୟର ଏବେ ମରଣ ହୋଇଲା ।
ଗର୍ଜି ଉଠିଣ ନାରାଚ କଲା ଘୋର ରବ
ଯାଇଁ ପଡ଼ିଲା ଅସୁର କଟିର ଯେ ଭାଗ ।
କଟିଭାଗଠାରୁ ଦୈତ୍ୟ ଦେହଖଣ୍ଡ ହେଲା
ଶେଷରେ ଅସୁର ଦେହ ଦଗଧ ହୋଇଲା ।

ଏହା ଦେଖି ଇନ୍ଦ୍ର ଆଦ୍ୟ ହରଷ ହୋଇଲେ
ଦେବଗଣଙ୍କ ଶୁଣିଣ ବେଗେ ଆଜ୍ଞାଦେଲେ ।
ମାରରେ ଅସୁର ସୈନ୍ୟ ନିଃଶେଷ କରି
ଏମନ୍ତ ବୋଲିଣ ଆଜ୍ଞାଦେଲେ ବଜ୍ରଧାରୀ ।
ଶୁଣିଣ ଦେବତାଗଣ ଧାଇଁଣ ପଡ଼ିଲେ
ଅସୁରଗଣମାନଙ୍କୁ ଗୋଡ଼ାଇ ମାରିଲେ ।
ପଳାଇ ଗଲେ ଅସୁର ଛିନ୍ନଭିନ୍ନ ହୋଇ
ହେଣୁ ସେଠାରେ ଦେବଙ୍କୁ ଜିଣନ୍ତା କେ ନାହିଁ
ଅସୁର ସୈନ୍ୟ ନାଶିଲେ ସବୁ ଦେବତାଏ ।
ଅମର ସ୍ୱର୍ଗକୁ ଗଲେ ବାହୁଡ଼ା ବଜାଇ ।
ଶୁଣିଲଟି ରାଜା ମଡ଼ା ବଧର ଚରିତ
କର୍ଣ୍ଣେ ଶୁଣି ଏବେ ତୋଷହେଲା କି ତୋ ଚିତ
ଏହା ଯେ କର୍ଣ୍ଣେ ଶୁଣନ୍ତି ମୁଖେ ଭଣନ୍ତି
ସକଳ ପାପ ଉଦ୍ଧରୁ ସେହି ତରିଯାନ୍ତି ।
ଗୋହତ୍ୟା ସ୍ତ୍ରୀହତ୍ୟା ପୁଣ ବ୍ରହ୍ମହତ୍ୟାମାନ
ମାତୃହରଣର ଦୋଷ ପୁଣି ସୁରାପାନ ।
ଏସବୁ ପାତକମାନ ହୁଏ ବିମୋଚନ
ଏକମନେ ଶୁଣଇ ଯେ ଭାରତ ପୁରାଣ ।
ମୂର୍ଖ ଅପଣ୍ଡିତ ମୁଁ ଯେ ନ ଜାଣଇ କିଛୁ
ପ୍ରସନ୍ନେ ଅରଣ୍ୟବର ଦେଲେ ଯେ କାମାକ୍ଷୀ ।
ଶାରଳାଦାସ କାମାକ୍ଷୀ ଚରଣର ଭୃତ୍ୟ
ଭବସାଗରୁ ଉଦ୍ଧର ଜଗତର ମାତ ।
ଝଙ୍କଡ଼ପୁରବାସିନୀ ଶାରଳା ତୋ ନାମ
ଶୂଦ୍ରମୁନିର ତୋ ପାଦେ ସହସ୍ର ପ୍ରଣାମ ।
ନମୋ ନମୋ ନାରାୟଣ ଭକତବତ୍ସଳ
ଭୃତ୍ୟ ଅଭିମାନ ସର୍ବ ସହ ଆଦ୍ୟମୂଳ ।
ଶ୍ରୀନୀଳକନ୍ଦରେ ତୁମ୍ଭେ ବଜେ ବସିଅଛ
ମୋକ୍ଷ କରିବା ନିମନ୍ତେ ସେବେକ ମେଳଛ
ଚକ୍ର ନନ୍ଦାରଣେ ଶଙ୍ଖ ଚକ୍ର ଅଛ ଧରି
ଚତୁର୍ଦ୍ଧାରୂପ ଧରୁ ତୁ ଦେବ ଦଇତ୍ୟାରି ।
ଶ୍ରୀରଙ୍ଗ ଅଧର ତୁମ୍ଭେ ମନ୍ଦେ ମନ୍ଦେ ହସି
ଆରତଭଞ୍ଜନ ନାନା ବନ୍ଧ ବ୍ରହ୍ମରାଶି ।
କରୁଣା ଜଳଧି ତୁମ୍ଭ ନାମ କୃପାସିନ୍ଧୁ
ଦୀନଜନ ବାନ୍ଧବ ତୁ ଅଟୁ ଦୀନବନ୍ଧୁ ।
ଅରକ୍ଷିତ ଏ ଶାରଳାଦାସ ଦୀନଜନ
ନିରନ୍ତର ଭାବଇ ସେ ଶ୍ରୀରଙ୍ଗଚରଣ ।

---

## ନକୁଳ ଶରେ ପାଷ୍ଟ ବନ୍ଧନ

ଶୁଣ ହେ ବଳଙ୍କ ରାଜା ବଦନ୍ତ ଅଟନ୍ତି
ଏମନ୍ତେ ସେ ମୁଦ୍ରାସୁର ହେଲା ବନଶ୍ୟନ୍ତ ।
ଅସୁର ମରିବା ଦେଖି ନାରଦ ଫେରିଲେ
ସୁଧର୍ମା ସଭାରେ ଯାଇ ଦେବଙ୍କେ ମିଳିଲେ ।
ସଭା ମଣ୍ଡାଇ ବସିଛନ୍ତି ଅମରାଧିନାଥ
ଏମନ୍ତ ବେଳେ ମିଳିଲେ ଯାଇ ତପୋବନ୍ତ
ନାରଦ ମୁନିଙ୍କୁ ଦେଖି ଉଠି ସୁରରାଜ
କସ ତରତ କରଣ ଅଇଲ ମୁନି ହେ ।
ନାରଦ ବୋଇଲେ ବୀର ନକୁଳକୁମାରେ
ପାଷ୍ଟ ସଇନ ତାହାର ମାଇଲା ଅପାର ।
ଅଗ୍ନି ଶର ମାରି ପୁଣି ତାହାକୁ ଦହିଲା
ତତକ୍ଷଣେ ସେ ଅସୁର ବଳ ନାଶକଲା ।
ଶୁଣିଣ ସେ ଇନ୍ଦ୍ରରାଜେ ଉସତ ହୋଇଲେ
ନକୁଳକୁମାରକୁ ସେ ବହୁ ପ୍ରଶଂସିଲେ ।
ସ୍ୱର୍ଗପୁରେ ଜୟ ଜୟ ଶୁଭିଲା ଶବଦ
ଅପସରା କଇଲାଏ ବହୁତ ଆନନ୍ଦ ।
ପଦ୍ମସ୍ୱସ୍ଥ ପ୍ରାପ୍ତ ଇନ୍ଦ୍ର ମୁଖ ବିକାଶଇ
ଅବସରେ ଧୀରେ ଧୀରେ ବସନ୍ତ ବହଇ ।
ସଭା ମଣ୍ଡାଇଣ ଇନ୍ଦ୍ର ଦେବତା ବସିଲେ
ବୃହସ୍ପତିଙ୍କୁ ସେ ବେଗେ ହକାରି ଆଣିଲେ ।
ତେତିଶକୋଟି ଦେବତା ଅଇଲେ ସମସ୍ତେ
ସୁଧର୍ମା ସଭାରେ ସର୍ବେ ବସିଲେ ଉସତେ ।
ବୃଷଭ ବାହନେ ଶିବ ଡମ୍ବରୁ ବଜାଇ
କଇଳାସ କନ୍ଦରୁ ସେ ବିଜେକଲେ ତହିଁ ।
ଯେ ଯାହାର ବିଧିମତେ ସଭାରେ ବସିଲେ
ଏମନ୍ତ ସମୟେ ତହିଁ ବିଧାତା ମିଳିଲେ ।
ହଂସରୁ ଓହ୍ଲାଇ ଗଲେ ଆସ୍ଥାନ ଉପର
ଦେଖି ଦେବତାଏ ଦେଲେ ଶିରେ ନେଇ କର
ବ୍ରହ୍ମା ପଚାରଇ ଇନ୍ଦ୍ର ରାଜା ମୁଖ ଚାହିଁ
ଅସୁର ମଲା କି ସ୍ୱର୍ଗେ ତେଣୁ ଭୟ ନାହିଁ ।
ଦେବବର ମୁଖୁ ଶୁଣି ଏମନ୍ତ ବଚନ
ଆନନ୍ଦମନେ କହନ୍ତି ସହସ୍ର ଲୋଚନ ।
ଶ୍ରୀଦେବ ହେ ପିତାମହ ଶୁଣ ମୋର ବାଣୀ
ନାଶିଲା ତାକୁ ନକୁଳ ବୀର ଚୂଡ଼ାମଣି ।
ଏମନ୍ତ ବଚନ ଯହୁଁ ବିଧାତା ଶୁଣିଲେ
ଧନ୍ୟରେ ନକୁଳ ବୋଲି ପରଶଂସା କଲେ
ବୃହସ୍ପତି ବୋଇଲେ ହେ ଶୁଣ ଇନ୍ଦ୍ରରାଜ
ନକୁଳକୁମାରକୁ ତୁ ଡକାଇଣ ଆଣ ।
ଇନ୍ଦ୍ରରାଜା ବୋଇଲେ ସେ ସୁରସେନ ଯାଉ
ଆମ୍ଭର ଆଜ୍ଞା ବୋଲି ସେ ନକୁଳକୁ କହୁ ।
ଆଜ୍ଞା ପାଇ ସୁରସେନ ଗନ୍ଧର୍ବ ଚଳିଲା
ନକୁଳ ଛାମୁରେ ଯାଇ ପ୍ରବେଶ ହୋଇଲା ।
ବୋଇଲା ଇନ୍ଦ୍ରଙ୍କ ଆଜ୍ଞା ହୋଇଛି ତୁମ୍ଭଙ୍କୁ
ମୁହିଁ ଆସିଅଛି ନେଇଯିବାକୁ ସ୍ୱର୍ଗକୁ ।
ଏସନ ବାକ୍ୟ ସେ ସୁରସେନ ମୁଖୁ ଶୁଣି
ମାତଳି ମୁଖକୁ ଚାହିଁ କହେ ବୀରମଣି ।
ଭଲ ଆସନ୍ତ ଯିବା ଆଗେ ଅସୁରର ପୁର
ଶଚୀ ଠାକୁରାଣୀ ଛନ୍ତି ଦାନବର ଘର ।
ରଥେ ବସି ତତକ୍ଷଣ ଦୈତ୍ୟପୁରେ ଗଲେ
ଆକସ୍ମିକା ରାଜ୍ୟ ଯାଇ ପ୍ରବେଶ ହୋଇଲେ
ଆଗରେ ଯାଇଁ ଶଚୀଙ୍କି କହିଲା ଡଗର
ରଣେ ନକୁଳକୁମାର ମାଇଲେ ଅସୁର ।
ତୁମ୍ଭଙ୍କୁ ସଙ୍ଗରେ ଘେନି ଯିବେ ସ୍ୱର୍ଗପୁରେ
ଦର୍ଶନ କରିବେ ଦେବ ଇନ୍ଦ୍ରଙ୍କ ଛାମୁରେ ।
ଏହା ଶୁଣି ଇନ୍ଦ୍ରପତ୍ନୀ ଉସତ ହୋଇଲେ
ଧନ୍ୟରେ ନକୁଳ ବୋଲି ବହୁ ପ୍ରଶଂସିଲେ ।
ତୋର ହେତୁ ଆଜ ରକ୍ଷା ପାଇଲେ ଅମରେ
ମୋତେ ଉଦ୍ଧାରିଲୁ ଥିଲି ମୁଁ ଅସୁର ପୁରେ ।
ଏମନ୍ତ ବେଳେ ତହିଁହେଁ ପ୍ରବେଶ ହୋଇଲେ
ଶଚୀ ଠାକୁରାଣୀଙ୍କ ସେ ଦରଶନ କଲେ ।
ପାଦେ ପଡ଼ି ଶୋଇ ଶିରେ ଦୁଇକର ଦେଇ
ବୋଇଲେ ଗୋ ଅବଧାନ କର ମହାଦେଈ
ତୁମ୍ଭର ଯୋଗ୍ୟ ଅସୁର ଆଜ ନାଶଗଲା
ତୁମ୍ଭର ପ୍ରସାଦେ ମୋତେ ଯଶ ଉପୁଜିଲା ।
ଆସ ହୋ ମାତା ରଥରେ ବସ ବେଗହୋଇ
ଅମର ମଣ୍ଡଳେ ଭେଟ ହେବେ ସୁରସାଇଁ ।
ନକୁଳ ବୋଇଲେ ତୁମ୍ଭେ ସ୍ୱର୍ଗଠାକୁରାଣୀ
ତୋର ନ ଥିଲେ ଅଶୋଭ ସିନା ଗୋସାମଣି
ନକୁଳ ବାଣୀ ଶୁଣିଣ ଇନ୍ଦ୍ରାଦ ଉଠିଲେ
ଅପ୍ସରା କଇଲାସ ସେନ ରଥରେ ବସିଲେ ।

ଚମକାଇ ରଥ ବେଗେ ବାହଇ ମାତଳି
ଧୀର ଧୀର ହୋଇ ରଥ ଯାଉଅଛି ଚଳି ।
ସ୍ୱର୍ଗପୁରେ ଯାଇ ସର୍ବେ ପ୍ରବେଶ ହୋଇଲେ
ଅମରାବତୀ ପୁରକୁ ଦେବେ ଚଳିଗଲେ ।
ଇନ୍ଦ୍ର ଭୁବନରେ ଭଜେ କଲେ ଠାକୁରାଣୀ
ଅପସରୀଏ ଖଟିଲେ ନିଜ ସେବା ଘେନି ।
ନକୁଳକୁ ସଙ୍ଗେ ଘେନି ମାତଳି ଚଳିଲା
ସୁଧର୍ମା ସଭା ତଳରେ ଯାଇଣ ମିଳିଲା ।
ସାଷ୍ଟାଙ୍ଗେ ସ୍ତୁତିଲେ ତହିଁ ମାଦ୍ରୀର କୁମର
ଇନ୍ଦ୍ର ବୋଇଲେ ଉଠ ହୋ ପାଣ୍ଡବସୁନ୍ଦର ।
ଇନ୍ଦ୍ର ବୋଲେ ଚିତ୍ରସେନ ନକୁଳେ ତୋଳିଲା
ପ୍ରଣମି ନକୁଳ ସଭା ତଳରେ ରହିଲା ।
ଇନ୍ଦ୍ର ଆଜ୍ଞାଦେଲେ ନକୁଳକୁ ଘେନିଆସ
ଧନ୍ୟରେ ନକୁଳ ତୁମ୍ଭ ପଣ୍ଡୁରାଜା ଶିଷ୍ୟ ।
ଆସ୍ଥାନର ଉପରକୁ ନକୁଳ ଉଠିଲେ
ଧାଇଁ ଅଶ୍ୱିନୀକୁମାର ପୁଣେ କୋଳକଲେ ।
ମୁଖରେ ଚୁମ୍ବନ ସେହୁ ଦଅନ୍ତ ହରଷେ
ଶିର ଆଉଁଷିଣ ତାକୁ ବସାଇଣ ପାଶେ ।
କଲ୍ୟାଣ ବାଞ୍ଛା ସେ ବ୍ରହ୍ମା ବୃହସ୍ପତି କଲେ
ସ୍ୱର୍ଗେ ଅଧିକାରୀ ହୁଅ ବୋଲିଣ ବୋଇଲେ ।
ଦେବତା ଗନ୍ଧର୍ବଗଣ ଯେତେ ଥିଲେ ବସି
ଯେ ଯାହାମତେ ନକୁଳେ କଲ୍ୟାଣ ଯେ ଭାଷି
ଦେବ ସଭାରେ ନକୁଳ ପ୍ରଶଂସା ପାଇଲେ
ଉଠି ଇନ୍ଦ୍ରସ୍ନେହେ କୋଳ ନକୁଳକୁ କଲେ ।
ସ୍ୱର୍ଗପୁର ତୋରେ ରକ୍ଷା ହୋଇଲା ରେ ବାବୁ
ଏ ଅମର ପୁର ତୋର ଅଛଇଲା ସବୁ ।
ଇନ୍ଦ୍ର ନକୁଳକୁ ବହୁ ଗଉରବ କଲେ
ଆପଣା ଅଙ୍ଗ ଭୂଷଣ ନକୁଳକୁ ଦେଲେ ।
ଦେବାଙ୍ଗ ପାଟକୁ ଖଣ୍ଡେ ହସ୍ତରେ ଘେନିଲେ
ନକୁଳ ମଥାରେ ତାହା ସ୍ନେହରେ ବାନ୍ଧିଲେ
ଅଣାଇଲେ ଅଭିଷେକ ଦ୍ରବ୍ୟ ପୁରନ୍ଦର
ଅଭିଷେକ କରନ୍ତି ଯେ ନକୁଳକୁମାର ।
ଅତି ଉଲ୍ଲାସ ଚିତ୍ତରେ ଶଚୀ ଠାକୁରାଣୀ
ବେଗହୋଇ ଆଇଲେ ସେ ଅର୍ଘ୍ୟଥାଳି ଘେନି
ନକୁଳକୁ ପାପାବଳି ଘେନି ବନ୍ଦାଇଲେ
ସ୍ୱର୍ଗପୁରେ ପାଟ ହୋଇ ଉତ୍ସବ କଲେ ।

ଯେତେଦେବେ ବନ୍ଦାପନା କଲେ ଠାକୁରାଣୀ
କଲ୍ୟାଣ କଲେ ଗନ୍ଧର୍ବ ଦେବାସୁର ମୁନି ।
କଲ୍ୟାଣ କରି ଆଶିଷ ଦେଲେ ଦେବବର
ଅମରପୁରେ ତୋ ପାଟ ରହିଲା କୁମର ।
ଏମନ୍ତେ ସେ ଅଭିଷେକ ବିଧାନ ସାରିଲେ
ଅପସରୀ କିନ୍ନରୀଏ ଆନନ୍ଦେ ନାଚିଲେ ।
ନାରଦ ବୀଣା ବଜାଇ ହରିଧ୍ୱନି କଲେ
ଅଶ୍ୱିନୀକୁମାରେ ବହୁ କଲ୍ୟାଣ ବାଞ୍ଛିଲେ ।
ଶଚୀ ଠାକୁରାଣୀ ତହୁଁ ଗଲେ ଭିତରକୁ
ସ୍ୱର୍ଗପୁରେ ଗଉରବ କଲେ ନକୁଳକୁ ।
ଏଥୁଅନନ୍ତରେ ଦେବସଭା ମଣ୍ଡଳରେ
ହଂସ ଚଢ଼ି ବ୍ରହ୍ମା ନିଜପୁରକୁ ଚଳିଲେ ।
ଈଶ୍ୱର ସେଠାରୁ ଗଲେ କୈଳାସ କନ୍ଦର
ଗନ୍ଧର୍ବଗଣ ଦେବତା ଗଲେ ନିଜପୁର ।
ନକୁଳ ଘେନି ଅଶ୍ୱିନୀକୁମାର ଚଳିଲେ
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ଇନ୍ଦ୍ର ବିଜେକଲେ ଯାଇ ଅଳକା ପୁରକୁ
ଶଚୀ ମଥାପୋତି କଥା ନ କହେ ଇନ୍ଦ୍ରକୁ ।
ଇନ୍ଦ୍ର ବୋଇଲେ କ୍ରୋଧ ନ କର ମହାମାୟୀ
ଏହିରୂପେ କେତେ ଦୁଃଖ ସ୍ୱର୍ଗେ ନ ପଡ଼ଇ ।
ଇନ୍ଦ୍ର କହନ୍ତେ ଇନ୍ଦ୍ରାଣୀ ସନ୍ତୋଷ ହୋଇଲେ
କଷ୍ଟିକ ହୋଇଣ ସେହୁ ସ୍ୱର୍ଗରେ ରହିଲେ ।
କେତୁଦିନ ସ୍ୱର୍ଗପୁରେ ନକୁଳ ରହିଲା
ପିତାମାଇଁକ କୁମର ଉଦବେଗ ହେଲା ।
ଇନ୍ଦ୍ର ଦେବତାଙ୍କୁ ଯାଇ କଲା ବରଣନ
ପିତ ହସ୍ତିନାକୁ ଆଜ୍ଞା ଦିଅ ମଘବାନ ।
ଶୁଣି ସହସ୍ର ଲୋଚନ ହସିଣ ବୋଇଲେ
ଯାଅ ବୋଲି ନକୁଳକୁ କଲ୍ୟାଣ ବାଞ୍ଛିଲେ ।
ଚନ୍ଦ୍ରଶାଳା ପୁରକୁ ଯେ ନକୁଳ ଚଳଇ
ଶଚୀ ଦେବୀଙ୍କ ଯେ ଯାଇ ମେଲାଣି ମାଗଇ ।
ଇନ୍ଦ୍ରାଣୀ ବୋଇଲେ ତୁମ୍ଭ ଯାଅ ବାବୁ ବେଗେ
କଲ୍ୟାଣ ହେଉ ତୁମ୍ଭର ଆମ୍ଭ ଅନୁରାଗେ ।
ବାସବ ବୋଇଲେ ତୁମ୍ଭେ ମାତଳି ହୋ ଯାଅ
ନକୁଳକୁ ହସ୍ତିନାରେ ନେଇ ଛାଡ଼ିଦିଅ ।
ଅଶ୍ୱିନୀକୁମାର ପାଦ ବନ୍ଦି ବେଗକରି
ରଥ ଉପରେ ବସିଲା ଯାଇ ମହାବଳୀ ।

ଧୀର ଧୀର ହୋଇ ରଥ ସ୍ୱର୍ଗୁ ଓହ୍ଲାଇଲା
ହସ୍ତିନା ନଗରେ ଯାଇ ପ୍ରବେଶ ହୋଇଲା ।
ରଥୁ ଓହ୍ଲାଇ ନକୁଳ ବହନ ଚଳଲେ
ରଥ ସେକ୍ଷଣ ମାତଳି ସ୍ୱର୍ଗକୁ ଗମିଲେ ।
ନକୁଳ ବାହୁଣାବନ୍ତେ ମିଳିଲେକ ଯାଇ
ନମଇଁ ଯୁଧିଷ୍ଠି ଭୀମ ଅର୍ଜୁନଙ୍କୁ ସୁଦ୍ଧିଁ ।
ଯୁଧିଷ୍ଠି ବୋଇଲେ ଯାଅ ଆରେ ସହଦେବ
ନକୁଳକୁ ବହନ କୁ ତୋଳିଦିଅ ଜବ ।
ସହଦେବ ନକୁଳର ଚରଣେ ନମଇ
ବୋଲେ ଠାକୁରଙ୍କ ଆଜ୍ଞା ଉଠ ବେଗହୋଇ
ତକ୍ଷଣେ ନକୁଳ ଉଠିକରି ଜଗାହେଲେ
କରଯୋଡ଼ି ଯୁଧିଷ୍ଠିଙ୍କ ନକଟକୁ ଗଲେ ।
ବୋଇଲେ କେସ ସ୍ୱର୍ଗରେ ହେଲା ରେ ନକୁଳ
କର ଯୋଡ଼ିଣ କହଇ ମାଦ୍ରୀର ଦୁଲାଳ ।
ବୋଇଲା ଏଠାରୁ ମୁହିଁ ଯେତେବେଳେ ଗଲି
କହୁତ ଯୁଦ୍ଧ ଅସୁର ସଙ୍ଗତରେ ଚଳି
ବାରକୋଟି ସୈନ୍ୟ ତାର ପକାଇଲି ହାଣି
ଅସୁରକୁ ବଧିଲି ମୁଁ ଅଗ୍ନି ଶର ଘେନି ।
ମନ୍ତ୍ରୀ ସହିତ ତାହାର ସବୁ ନାଶଗଲେ
ଯୁଧିଷ୍ଠିରଦେବ ଶୁଣିଣ ଆନନ୍ଦିତ ହେଲେ ।
ଶଚୀଙ୍କୁ ଘେନିଣ ତହୁଁ ସ୍ୱର୍ଗକୁ ମୁଁ ଗଲି
ପୂଜାବିଧି ପାଇ ଶିରେ ପାଟେକ ବାନ୍ଧିଲି ।
ଇନ୍ଦ୍ର ଅଙ୍ଗରେ ଯେତେକ ଅଳଙ୍କାର ଥିଲା
ପଞ୍ଚରବ କରି ଇନ୍ଦ୍ର ମୋ ଅଙ୍ଗେ ଖଞ୍ଜିଲା ।
ପାପାବଳି ଘେନି ଶଚୀଦେବୀ ବନ୍ଦାଇଲେ
ବ୍ରହ୍ମା ଯେ ତହିଁ ଅନେକ କଲ୍ୟାଣ ବାଞ୍ଛିଲେ
ନକୁଳ କହନ୍ତେ ସର୍ବେ ସନ୍ତୋଷ ହୁଅନ୍ତି
ଶୁଣ ହେ ବଳିଙ୍କ ସଖା ଅଗସ୍ତି କହନ୍ତି ।
ବୋଇଲେ ଶୁଣିଲ ମୂଢ଼ା ଅସୁରର ବଧ
ଏହେ ନକୁଳ ବାନ୍ଧିଲା ପାଟ ସ୍ୱର୍ଗମଧ୍ୟ ।
ବନ୍ଦଇ ଶ୍ରୀ ଜଗନ୍ନାଥ ବଇକୁଣ୍ଠବାସୀ
ବୌଦ୍ଧରୂପେ ନୀଳଗିରି ଶିଖେ ଅଛ ବସି ।
ବଳଭଦ୍ର ସୁଦର୍ଶନ ସୁଭଦ୍ରା ସଙ୍ଗରେ
ସ୍ୱରୂପେ ବିଜେ ନୀଳସୁନ୍ଦର ପର୍ବତେ ।
ଅବସ୍ଥିର ପାଷଣା ଯେ ବସ୍ତୁରହିଁ ନାହିଁ
ସମସ୍ତେ ତ ଚତୁର୍ଭୁଜ ପ୍ରାପ୍ତ ଦେଖାଯାଇ ।
ସ୍ୱର୍ଗକୁ ନଶୁଣି ଯେଉଁ ସ୍ଥାନ ପଡ଼ିଛନ୍ତି
ଚତୁର୍ଭୁଜ ସ୍ୱରୂପରେ ସ୍ୱର୍ଗକୁ ଧାମନ୍ତି ।
ଅପୂର୍ବ ସିଂହାସନକୁ ପଟାନ୍ତର ନାହିଁ
ଅଣାକାର ବ୍ରହ୍ମ ବିଜେ କରିଛନ୍ତି ଯହିଁ ।
ତହିଁର ମହିମା ଅନ୍ୟ କେ କହି ପ ରିବ
ନାମ ସୁମରନ୍ତେ ଭାଇ ପାତକ ତୁଟିବ ।
ନିରନ୍ତରେ ସୁମରଇ ଶ୍ରୀରାମର ନାମ
ତବ ନାମେ ଭବରୋଗ୍ୟ ହୋଇବ ଖଣ୍ଡନ
କୁଳସୀର ବଲ୍ଲଭ ଶ୍ରୀଚରଣ ତଳରେ
ଶାରଳା ଦାସର ମଥା ଲୋଟେ ନିରନ୍ତରେ ।

---

## ଶାନ୍ତିପନି ମଠେ ହରି ବଳରାମଙ୍କର ବିଦ୍ୟା ପଠନ ଓ ଯମପୁରୁ ଗୁରୁପୁତ୍ର ଆନୟନ

ବୈବସ୍ୱତ ମନୁ ପୁଚ୍ଛାଇଲେ ଅଗସ୍ତିଙ୍କି
ଆହେ ମହାମୁନି ମୋତେ କହିବା ଏଥିକି ।
ଅଗସ୍ତି ବୋଇଲେ ହରି ଇଙ୍ଗା ଅବତାରେ
ଦ୍ୱାରକାରେ ଜନ୍ମିଲେ ସେ ଦେବକୀ ଉଦରେ
ରୋହିଣୀ ଉଦରେ ନୀଳାମ୍ବର ଉତପତ୍ତି
ବାଳୁତ ରୂପରେ କୃଷ୍ଣ ଗୋପୋଷ୍ଠେ ରହନ୍ତି
ପାଠ ପଢ଼ିବାର ପାଇଁ ପ୍ରଭୁ ଯୋଗେଶ୍ୱର
ପ୍ରବେଶିଲେ ମହାପ୍ରଭୁ ଅବନ୍ତୀ ନଗର ।
ବିଦ୍ୟାବନ୍ତ ବ୍ରାହ୍ମଣ ଯେ ନାମ ଶାନ୍ତିପନି
ପାଠ ପଢ଼ାନ୍ତି ସେ ଶିଷ୍ୟ ବାଳଶିଖା ଘେନି ।
ତାହାଙ୍କ ମଠରେ ପ୍ରବେଶିଲେ ବେନଭାଇ
ନିରେଖିଣ ଶାନ୍ତିପନି ବ୍ରାହ୍ମଣ ଯେ ସୁହିଁ ।
ପଚାରଇ ତୁମ୍ଭେମାନେ ଅଟ କେଉଁ ଦେଶୀ
ଦେବଙ୍କ କୁମାର ପ୍ରାୟ ଅବଶ୍ୟ ଦିଶି ।
ବିପ୍ରଙ୍କୁ ସମସ୍ୟା ତହୁଁ ଦେଲେ ନୀଳାମ୍ବର
ଆମ୍ଭ ଘର ଅଟେ ଦ୍ୱିଜ ଯେ ମଧୁବନର ।
ଆଦିଜନ୍ମ ଆମ୍ଭର ଯେ ଯଦୁବଂଶ ରୂପି
ଯଦୁର ନନ୍ଦନ ବୋଲି ସୁରଥ ଯେ ଶିଖ ।
ସୁରଥ ନନ୍ଦନ ବଇଷ୍ଣବ ଚକ୍ରବର୍ତ୍ତୀ
ଭାରଶାସ୍ତ୍ର ବୋଲି ଅଟେ ତାଙ୍କର ସନ୍ତତି ।
ଭାରଶାସ୍ତ୍ର ପୁତ୍ରନାମ ଅଟଇ ସୁଦେବ
ତାହାଙ୍କର ନନ୍ଦନ ଯେ ଅଟେ ବସୁଦେବ ।

ହେ ପଣ୍ଡିତ ତୁମ୍ଭେ ଏବେ ପଚାରିଲ ଯାହିଁ
ବସୁଦେବ ନନ୍ଦନ ଯେ ଆମ୍ଭେ ହେଉଥାଇ ।
କଂସକାର ବଂଶେ ଜାତ ଦେବକୀ ଗେହିଣୀ
ସତୀ ସାଦ୍ଧ୍ୱୀ ଅତ୍ୟନ୍ତ ସେ ହେନ ଭଉଣୀ ।
ଏହାଙ୍କର ଜନମ ଯେ କମଳା ପାବଂଶି
ତାହାଙ୍କ ଉଦରୁ ପୁଣ ଆମ୍ଭେ ଉତପତ୍ତି ।
ପୃଥିବୀର ଭାର ଆମ୍ଭେ ଉଦ୍ଧାରିବା ଅର୍ଥେ
ପୁନଃପୁନଃ ଉପୁଜୁଁ ଯେ ତାଙ୍କ ହୃଦଗତେ ।
ଗୋପାଳବେଶେ ଯେ ହା:ବେ ମଥୁରା ଦେଶର
ଶାସ୍ତ୍ର ଯେ ସଙ୍ଗୀତ ନାହିଁ ଅପାଠ ସେ ପୁର ।
ବୃନ୍ଦାବନ ଦେଶରେ ବାସ କରିଲୁ ବ୍ରଜନେ
ବେଦ ବିଦ୍ୟା ନ ଶୁଣିଲୁ ଆମ୍ଭେ ବେନକର୍ଣ୍ଣେ
ଧର ଧର ମାର ମାର ଛନ୍ଦ ମନ୍ଦ କଥା
କହ୍ନା ଧୁମୁସ ଖେଳରେ ନିରନ୍ତର ମତ୍ତ ।
ବ୍ରଜନ ହସ୍ତରେ ପଡ଼ିଲେଟି ପାଣିଦ୍ରବ୍ୟ
ମୂର୍ଖ ସ୍ୱଭାବରେ ନାହିଁ ପଣ୍ଡିତ ସ୍ୱଭାବ ।
ଜ୍ଞାନ ଥାଉଁ ଥାଉଁ ମୂର୍ଖ ହେବୁ କେଉଁ ମତେ
ଭୂଲ ଦେଶାନ୍ତରେ ପାଠ ପଢ଼ିବୁ ଆସ୍ୱତେ ।
ମାତା ପିତା ତେଜିଲୁ ଯେ ବ୍ରଜ ଗୋଷ୍ଠ ଗ୍ରାମ
ତୁମ୍ଭେ ଦୟା କଲେ ଆମ୍ଭେ ନେବୁ ବ୍ରତଧର୍ମ
ବିନୟ ବଚନରେ ବେଦ ବାକ୍ୟକୁ ଉଚ୍ଚାରୁ
ଶୁଣି ଶାନ୍ତ ହେଲେ ତହୁଁ ଶାନ୍ତପନ ଗୁରୁ ।
ପାଠ ପଢ଼ିବାକୁ ଯେବେ ଇଛାଟି ତୁମ୍ଭର
ଏଥିଠାରେ ପାଠପଢ଼ ଯେତେ ମନ ପାର ।
ପଣ୍ଡିତେ ଯେ ଦୁଃଖୀ ଥିଲେ ପୁତ୍ରଙ୍କୁ ହରାଇ
ପୁତ୍ରକଷ୍ଟ ପାସୋରିଲେ କୃଷ୍ଣ ମୁଖ ଚାହିଁ ।
ରହିଲେ ସେ ବେନଭ୍ରାତେ ଶାନ୍ତପନ ଘରେ
ବିଦ୍ୟା ଆରୋପଣ କଲେ ସେହି ଦ୍ୱିଜବରେ ।
ପ୍ରଥମରେ ଲେଖି ଦେଲେ ତାଙ୍କୁ ଯେ ଶ୍ରୀଫଳା
ନିଃଶ୍ୱାସକେ ଲେଖିଲେ ତା ଦେବକୀର ବଳା
ଲେଖନ୍ତେ ସେ ଜାଣିଲେ ଯେ କୃଷ୍ଣ ବଳେ ବର
ବାକ୍ୟଦେବୀ ପ୍ରାଣପ୍ରିୟା ଅତ୍ୟନ୍ତ ଯାହାର ।
ଦ୍ୱିତୀୟରେ ଲେଖି ଦେଲେ ସେହୁ ଏକଫଳା
ସହଜରେ ଶିଖିଲେ ତା ବାସୁଦେବ ବଳା ।
ଚଉତିଂଶ ଅକ୍ଷର ସେ ବାରଟି ମାତ୍ରସ
ଶିଖିଲେକ ସେହି ଦୁହେଁ ହୋଇ ଏକ ରସ ।

ସିଦ୍ଧିରସ୍ତୁ କ୍ୟ ଙ କ୍ତ କ୍ଷ ଆଦ ଜାଣ
ଆହେ ଗୁରୁଦେବ ଶିକ୍ଷା କରିଲୁ ପଠନ ।
ଅନୁସ୍ୱାର ବିସର୍ଗ ଯେ ଆଦ ସୁସଂଯୋଗ
ଏଥିରେ ଅକ୍ଷର ଯେ ହୋଇଲାଣି ଶେଷ ।
ଚଉତିଂଶ ଅକ୍ଷର ସେ ବାରଗୋଟି ଫଳା
ଏକଗୋଟି ଦିନରେ ସେ ମୁଖସ୍ଥ ହୋଇଲା ।
ମାତ୍ରା ଯୁକ୍ତିକରି ବେଦ ପକାଇଲେ ଚନ୍ଦ
ସାଧିଲେ ଶ୍ଳୋକ ସବୁକୁ କହୁଛନ୍ତି ନ ଜାଣି ।
ବେନ ଦିବସରେ ଏହା ସବୁ ସାଧିକଲେ
ଶାନ୍ତପନ ଦ୍ୱିଜ ଦେଖି ଆଶ୍ଚର୍ଯ୍ୟ ହୋଇଲେ ।
ଓଡ଼ିଆ ତେଲଙ୍ଗୀ ଆଉ ନାଗରୀ ବଙ୍ଗେଣୀ
କନାଡ଼ଜ ଦ୍ରାବିଡ଼ ଯେ ଆଦଭାଷା ଶେଷ ।
ଏଥିପର ଲେଖିଲେ ଯେ ଭାଷା ଚଉଷଠି
ନବଦିନେ ଲେଖିଲେ ସେ ତାଳପତ୍ର ଚଟି ।
ବିଂଶ ଦିବସେ ଏହା ସବୁ ସେ ପଢ଼ିଲେ
ଦରିଦ୍ର ବ୍ରାହ୍ମଣ କୁଳେ ପୀରତ ସେ କଲେ ।
ଶାନ୍ତପନ ବ୍ରାହ୍ମଣର ଅତ୍ୟନ୍ତ ସେ ଶିଷ୍ୟ
ତାଙ୍କ ସଙ୍ଗେ ବହୁପ୍ରୀତି କଲେ ହୃଷୀକେଶ ।
ଅଷ୍ଟର ବିଦ୍ୟାରେ ଭନ୍ତି ଯେତେ କଷ୍ଟ ଥିଲା
ବିଂଶ ସହସ୍ର ତାହା ସାଧ ଯେ ହୋଇଲା ।
ବେଦବାକ୍ୟ ବେଦାନ୍ତ ଯେ ତହୁଁ ଶାନ୍ତପନ
ଦେଲେ ଗୁରୁ ପଢ଼ିଲେ ତା ଦୁହେଁ ହୃଦେ ଘେନ ।
ଋକବେଦ ଯଜୁ ଆଉ ସାମ ଯେ ଅଥର୍ବ
ମହାମନ୍ତ୍ର ପଢ଼ିଲେ ସେ କୃଷ୍ଣ ବଳଦେବ ।
ନବଗ୍ରହ ମନ୍ତ୍ର ଫଳଗ୍ରନ୍ଥ ଜାଣି ପାଞ୍ଜି
ଏହା ସବୁ ଶିଖିଲେ ଯେ ଦୁହେ ତାହା ମଞ୍ଜି
ତିଥି ବାର ନକ୍ଷତ୍ର ଯେ ଗ୍ରହଙ୍କର କଳା
ରବି ଅଂଶ ଚନ୍ଦ୍ର ଆଉ ପବନର ମେଳା ।
କାମ ମୋହାଣ ଯେ ଆଉ ଭୂତଶାସ୍ତ୍ର ବିଦ୍ୟା
ସ୍ତମ୍ଭନ ମୋହନ ଆଦ କ କନ୍ଧ୍ରବ ଅବା ।
ଯୋଗବ୍ରହ୍ମା ତ୍ରିକାଳ ଭାରତ ମହାମନ୍ତ୍ରେ
ଏମାନ ସେ ସାଧି ଭଲେ ଏକଦିନ ଅନ୍ତେ ।
ଭୂତ ଭବିଷ୍ୟତ ବର୍ତ୍ତମାନ ଯେ ଅସ୍ତ୍ର ତ
ବାଦବିଦ୍ୟା ଆଦ ଶିଖିଲେ ସେ ନବରସ ।
ଅଇଶ୍ୱର୍ଯ୍ୟ ବିଦ୍ୟା ଆଦ ଯେ ଚଉଠି ଜାଣ
ଧନୁ ସାସ୍ତ୍ରକ ଯେ ଭୂକ ଫଳା ଆଦ ପୁଣ ।

ଛେଦ ଭେଦ ମନ୍ତ୍ର ଭେଦ ଆଦି ଦେବଶାର
ଇନ୍ଦ୍ରେକ ବିଦ୍ୟା ଯେ ସାଧି କଲେ ଦୁଇଗାର ।
ଏହିମତ ପାଞ୍ଚସହସ୍ର ବିଦ୍ୟା ଚଉଷଠି
ଦେଖି ସାଧି କରିଲେ ସେ ବିଦ୍ୟା ନବକୋଟି
ପୂଜାର ନିମିତ୍ତ ତପ ଧୃତିମାନ ଚଳି
ଜଟାଧାରଙ୍କର ଗୁରୁ ହେଲେ ଶାନ୍ତପନ ।
ବୈବସ୍ୱତ ପୃଚ୍ଛାକଲେ ହେ ଅଗସ୍ତି ମୁନି
ଏ ବିଦ୍ୟା କାହିଁ ପାଇଲେ ଦ୍ୱିଜ ଶାନ୍ତପନ ।
ସେ ମୁକୁନ୍ଦା ଦ୍ୱିଜବର ସବୁ ବିଦ୍ୟା ସାଧି
ମର୍ତ୍ତ୍ୟେ ଜନ୍ମହେଲେ ହୋଇ କାହା ସଙ୍ଗେବାସି
ତାହାଙ୍କ ମହିମା ମୋତେ କହିବା ମୁନି ହେ
ଈଶ୍ୱରଙ୍କର ଗୁରୁ ହେବା ଲାଗେ ସେ ସନ୍ଦେହେ
ଶୁଣ ତୁ ହେ ଯୋଗେଶ୍ୱର ବୋଲି ତପୋବନ୍ତ
ପୂର୍ବେ ଶାନ୍ତପନ ସନ୍ଥଁ ହୋଇଛନ୍ତି ଜାତ ।
ବୃନ୍ଦାବନେ ସତ୍ୟଯୁଗେ କଉଶିକ ବ୍ରହ୍ମା
ରୁଦ୍ରବେଦେ ବାସି ହୋଇଥିଲେ ମହାତମା ।
ଯୋଗେଣ ବ୍ରହ୍ମା ସେ ପୁରୁଷେକ ଜାଆଇଁଲା
ସେ ଦେବ ଗୋଲୋକ ବୋଲିନାମତାର ହେଲା
ପ୍ରଚଣ୍ଡ ବ୍ରହ୍ମବେଷ୍ଟି ସେ ହେଲା ମନ୍ତ୍ରକଳା
ବେଦଶାସ୍ତ୍ର ଜାଣିଣ ଯେ ଆକାଶକୁ ଗଲା ।
ଚନ୍ଦ୍ରଦେବତାର ଉପ୍ରେ ନ ରହି ଆକାଶେ
ସ୍ୱର୍ଗ ମର୍ତ୍ତ୍ୟ ତେଜିଣ ସେ ସ୍ୱର୍ଗପୁରେ ପଶେ ।
ଯେବେ କଇଳାସ ଈଶ ଗଲେ ସ୍ୱର୍ଗବାସେ
ଦେବଇନ୍ଦ୍ର ଗୋଲକ ଯେ ହୋଇଛି ଆକାଶେ
ଈଶ୍ୱରଙ୍କୁ ବସ ବୋଲି ସେହୁ ନ ବୋଇଲା
ପରପଞ୍ଚ ଯୋଗୀ ବୋଲି ସେହୁ ହିଙ୍ଗାସିଲା ।
ବ୍ରହ୍ମା ସେ ଅଟଇ ନବସୃଷ୍ଟିର କରତା
ଧାତା ଅର୍ଜିତ ପୁରୁଷ ବହିତ ବିଧାତା ।
ଏକ ବିଧାତାଏ ବ୍ରହ୍ମା ସେହୁ ଯେ ଜାଣଇ
ଅନେକମତେ ଈଶ୍ୱ ନା ହରଙ୍କୁ ସେ ଦେଇ ।
ଅସ୍ଥାନୁ ଉଠନ୍ତେ ହରେ ହେଲା ପୁଣି ସେଲ
କହୁଛି ତ ଈଶ୍ୱର ଯେ ନ କହିଲେ ବୋଲି ।
ଗଙ୍ଗାଧରଙ୍କା ହେଲା ସେହୁ ଭୂଜ ପଖଡାକେ
ପଡ଼ିଲେ ଈଶ୍ୱର ଉଡ଼ି ଯାଇକରି ଜଳେ ।
ଅସାଷ୍ଟମ ହୋଇନ୍ତେ ଇନ୍ଦ୍ରେ କୋପିଲେ ଯେ ଦେବ
ବ୍ରହ୍ମା ଦେବତାଙ୍କୁ କୋପକଲେ ସଦାଶିବ ।

ବ୍ରହ୍ମା ରୁଷି ନାହିଁ କଲେ ତାଙ୍କର କ ଦୋଷ
ଧାତାର ହେଉଛୁ ଆମ୍ଭେ ତେଜିଲୁ ଆକାଶ ।
ପିତାଙ୍କୁ ସେ ଶାପ ଦେଲେ ଗଉରବ ଲାଗେ
କେଣୁଁଟି ବ୍ରହ୍ମା ପୂଜା ନ ପାନ୍ତି ମର୍ତ୍ତ୍ୟ ସ୍ୱର୍ଗେ
ଆକାଶରେ ଗୋଲକକୁ କଲ୍ଲି ରୁଦ୍ର ରାଜା
ଦେବତାଏ କ୍ରୋଧ ହେତୁ ନ ପାଇଲେ ପୂଜା
ଏମନ୍ତ ପ୍ରକାରେ ତୁ ଯେ ସୋଦରଙ୍କୁ କଲ୍
ଦେବ ମାନବରେ ପୂଜ୍ୟ ନୋହିବୁ ବୋଇଲୁ
ମହାରାଗେ ଶାପ ତାକୁ ଦେଲେକ କପାଳୀ
କେଣୁ କରି ଅପୂଜ୍ୟ ସେ ହେଲା ନତ୍ୟସ୍ଥଳୀ ।
ରୁଦ୍ରଙ୍କର ଶାପ ପାଇ ଜଗତର ପିତା
ଦେବ ମାନବରେ ସେହୁ ନୋହିଲେ ପୂଜନ୍ତା
ମନୁ କଳ୍ପ ପରଯନ୍ତେ କାଳ ବହିଗଲା
ରୁଦ୍ରଙ୍କର ଶାପେ ବ୍ରହ୍ମା ଅପୂଜ୍ୟ ହୋଇଲା ।
ପୂଜା ପାଇବାର ନିମିତ୍ତରେ ବେଦପତି
ସୁଦେବଙ୍କ ଘରେ ସେହୁ ହେଲେ ଉତପତ୍ତି ।
ଶାନ୍ତ ନାମେ ତାହାର ଯେ ଅଟଇ ଜନନୀ
ତେଣୁକରି ନାମ ତାର ହେଲେ ଶାନ୍ତପନ ।
ବଲ୍ଲଭଇ ଧାତା ମୋତେ ଶିବ ଶାପ ଗୁରୁ
ଜଗନ୍ନାଥ ପୁରୁଷଙ୍କ ହୋଇବ ମୁଁ ଗୁରୁ ।
ତୋଷକର ମନାଇବ ମୂର୍ତ୍ତି ଦେବରାଜା
ଅନୁସରେ ମୋତେ ନାରାୟଣ କରୁ ପୂଜା ।
ଯାହା ପଚ୍ଚରିଲୁ ମହାତମା ତୁ ଯୁକତ
ଶାନ୍ତପନ ବ୍ରାହ୍ମଣର ଅଟଇ ଏ ସନ୍ତ ।
ବଲ୍ଲବଲେ ରୁଦ୍ର ବସ୍ତୁ ଅଟନ୍ତି ଏ ବେନ
ଅଂଶାବତାର ଅଟନ୍ତି ଏହି ଦେହ ବେନ ।
ରୁଦ୍ରାବତାର ଅଟନ୍ତି ପୁଣି ବଳରାମ
ଶାନ୍ତପନ ଶିଷ୍ୟ ଏହୁ ହେଲେ ଶାସ୍ତ୍ରଧର୍ମ ।
ପରମ ଆନନ୍ଦ ନାଥ ଭକ୍ତ ବାରନିଧି
ଚଉଷଠ ଜନ ମଧ୍ୟେ ସର୍ବେ କଲେ ସିଦ୍ଧି ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଦ୍ୱିଜ ଶାନ୍ତପନ
ବଲ୍ଲବଇ ରୁଦ୍ର ବସ୍ତୁ ଅଟନ୍ତି ଏ ବେନ ।
ଗୁରୁ ବୋଲି ଅହର୍ନିଶି କରନ୍ତି ଜୁହାର
ପିତାମହ ନୋହିଲେ କି ଆନ ହୁଏ ପାର ।
ମନୁ ପଦ୍ଧରନ୍ତି ଶୁଣ ଅଗସ୍ତି ମୁନି ହେ
କଥାଏକ ପଦ୍ଧରବ ମୂର୍ତ୍ତି କୁମ୍ଭଙ୍କୁ ହେ ।

କଥା ଗୋଟି ଆସି ମୋର ପଡ଼ିଲା ମନରେ
ଯେଣୁକରି କୃଷ୍ଣଙ୍କୁ ମୁଁ ପୁଛଇ ସ୍ମୁରେ ।
ଗୋପପୁରୁ ମଥୁରାରେ ଯାଇ ସେ ରହିଲେ
କଂସ ନାଶି ଉଗ୍ରସେନେ ରାଜା ସେହି କଲେ
ବରଜକୁଳରେ ବଢ଼ି ନ ପଢ଼ିଲେ ପାଠ
ଯଦୁକୁଳେ ବଡ଼ ପାଠେ ହେଲେ ସେ ଉଚାଟ
କଂସ ସୁନାସ ଯେ ଉଗ୍ରସେନ ପୁତ୍ର ଦୁଇ
ବଇବର ବସେ ସେହି ଦୁହେ ନାଶଯାଇ ।
କଂସର ତନୟ ଅଟେ ହଂସ ଡିମ୍ବ ଜାଣ
ସୁନାଥ ପୁତ୍ର ସୁରଥ ବୋଲଣ ପ୍ରମାଣ ।
ହଂସ ଡିମ୍ବକୁ ତ ଗଙ୍ଗାଗର୍ଭରେ ପୁରାଇ
ତାହାକୁ ସେ ମରାଇଲେ ଦେବ ଗଦାଗ୍ରାହି ।
ସୁନାସର ପୁତ୍ର ହେଲା ତାହାଙ୍କ ଭକତ
ତାହାଠାରେ ଦୟା କରିଥାଆନ୍ତି ଅଚ୍ୟୁତ ।
ପ୍ରାଣ ପଞ୍ଚଭୂତ ସେହି ତାହାଠାରେ ଦେଇ
ଅତ୍ୟନ୍ତ ବିଶ୍ୱାସ କରିଥାନ୍ତି ତାହାଠାଇଁ ।
ସଙ୍ଗେ ସେନିଯାନ୍ତି ତାକୁ ଯେଣେ ସେଯାଆନ୍ତି
ରଥରେ ବସାଇ ତାକୁ ନଗ୍ରରେ ବୁଲନ୍ତି ।
ପାଠ ପଢ଼ିବାର ପାଇ ଏବେ ସେହୁ ଗଲେ
ସୁରଥ ସେନାକୁ କାହିଁ ସଙ୍ଗତେ ନ ନେଲେ ।
ସେକାଳେ ଶୟନେ ତାକୁ ନ ଛାଡ଼ନ୍ତି କ୍ଷଣେ
ଇଛା ନ କରନ୍ତି ତାକୁ ପ୍ରଭୁ ଜନାର୍ଦ୍ଦନେ ।
ତାହାକୁ ସଙ୍ଗତେ ପ୍ରଭୁ କପାଇଁ ନ ନେଲେ
ଆପଣେ ପ୍ରଭୁ ବିଦ୍ୟା ସେ ପଢ଼ିବାକୁ ଗଲେ ।
ତାହାକୁ କପାଇଁ ବିଦ୍ୟା ସେ ନ ଶିଖାଇଲେ
ଏଥିର ଚରିତ ମୁନି କହ ମୋତେ ଭଲେ ।
ମନେ ମୋର ଏ ବିଷୟେ ସଂଶୟ ଅଛଇ
ତେଣୁକରି କୃଷ୍ଣଙ୍କୁ ମୁଁ ଭକ୍ତରେ ଗୋସାଇଁ ।
ଶୁଣିକରି ହସିଲେ ଯେ ସେ ଅଗସ୍ତ୍ୟ ମୁନି
ଏତେ ଯେ ଗୁପତକଥା ପୁଛୁ ପୁଣି ପୁଣି ।
ସାବଧାନେ ଶୁଣ ମୁହିଁ କହୁଅଛୁ ତୋତେ
ଏ ବଡ଼ ଗୁପତ କଥା ରଖିଥିବୁ ଚିତ୍ତେ ।
ଯେତେବେଳେ ରାମକୃଷ୍ଣ ପାଠପଢ଼ି ଗଲେ
ସୁନାସ ସୁତକୁ ସେହୁ ସଙ୍ଗତରେ ନେଲେ ।
ରାମକୃଷ୍ଣଙ୍କ ସଙ୍ଗତେ ବିଦ୍ୟା ସେ ପଢ଼ିଲେ
ଏକଇ ଅନେକ ବିଦ୍ୟା ସମସ୍ତେ ଶିଖିଲେ ।
ଖଡ଼୍ଗପାଠଠାରୁ ଧନୁର୍ବିଦ୍ୟା ଯେତେ ଥିଲା
ତାହାଙ୍କ ସଙ୍ଗତେ ଥାଇ ସବୁ ସେ ସାଧିଲା ।
ରାମକୃଷ୍ଣ ସଙ୍ଗେ ଥାଇ ହେଲା ମହାଯୋଧୀ
ଏଥିର କଥା ଯେ ମୁହିଁ କହିଲି ସମ୍ପାଦି ।
ତୁ ଯେ ପଚାରିଲୁ ମୋତେ ନୃପତିଶେଖର
ତାହା ଏବେ କହୁଅଛି ମନେ ଦୃଢ଼ ଧର ।
ଅଗସ୍ତି କହନ୍ତେ ମନୁ ରାଜା ଯେ ଶୁଣଇ ।
ଏଥୁ ଅନନ୍ତରେ ଯାହା କଲେ ଚକ୍ରପାଣି ।
ମକର ଶୁକ୍ଳ ଦ୍ୱାଦଶୀ ରଥକାଳେ
ସ୍ନାନ କରିବାକୁ ଗୁରୁ ଆସେ ସିନ୍ଧୁଜଳେ ।
ବାକ୍ରତ ନନ୍ଦନ ନାମ ସତ୍ତ୍ୱତଯଜାସି
ସେହି ପିତା ସଙ୍ଗତରେ ଗୋଡ଼ାଇଣ ଆସି ।
ବାକ୍ରତ ପୁତ୍ରକୁ ବସ୍ତ୍ର କୂଳରେ ରଖାଇ
ସମୁଦ୍ର ସ୍ନାହାନେ ବିଜପଶେ ଅବଗାହି ।
ଘୋର ନାଦେ ବାରିନିଧି ଲହଡ଼ି ଯେ ମାରି
ବାକ୍ରତ ପୁତ୍ର ଗୋଟିକୁ ସିନ୍ଧୁ ନେଲା ହରି ।
ବ୍ରାହ୍ମଣ ଦେଖନ୍ତେ ହେଁ ହେଲା ବୁଡ଼ାସୁତ
ସମୁଦ୍ରେ ପଡ଼ିଲା ଯାଇ ଲହରୀର ଘାତ ।
ଆହା ପୁତ୍ର ବୋଲି ବିପ୍ର ଡେଇଁପଡ଼େ ଜଳେ
ବ୍ରାହ୍ମଣକୁ ଲହରୀ ଯେ ପକାଇଲା କୂଳେ ।
ଅଗାଧ ସାଗରେ ପଡ଼ିଗଲା ପୁତ୍ରଗୋଟି
ଆରେ ପୁତ୍ର ବୋଲି ବିପ୍ର ଘଡ଼େ ମସ୍ତାକୁଟି ।
ସେବରି ସେ ବିପ୍ରବର ପୁତ୍ରନାମ ଧରି
ଅଚେତ ହୋଇଣ ପଡ଼ି ଗଡ଼େ ବସୁନ୍ଧରା ।
ଭୂତଳେ ପଡ଼ି କାନ୍ଦନ୍ତି ବ୍ରାହ୍ମଣ ବ୍ରାହ୍ମଣୀ
ଆରେ ପୁତ୍ର କେଣେ ଛାଡ଼ିଗଲୁ ଗୁଣମଣି ।
ଗୁରୁଙ୍କ ବିକଳ ଦେଖି କାହ୍ନୁ ସଙ୍କର୍ଷଣ
କୋଳକରି ଗୁରୁଙ୍କୁ ଯେ ଧଇଲେ ଯାଇଣ ।
କେଶବ ଯେ ସମାର୍ଜ୍ଜନ୍ତି ଶୋକଛାଡ଼ ଗୁରୁ
ନାଶଗଲା କୁମରକୁ କପାଁ ଶୋକକରୁ ।
ଦେଖୁ ଦେଖୁ ପୁତ୍ର ପଡ଼େ ଅଗାଧ ଜଳର
ଅବୋଧ ଲିଙ୍ଗ ଏବେ ସେ ହୋଇଲେ କୁମର ।
ବିଜବର ବୋଲେ ଶିଷ୍ୟ ମୁହିଁ ବଡ଼ ପାପୀ
ପାଞ୍ଚପୁତ୍ର ମୋର ନାଶଗଲେ ଯେ ଅଦ୍ୟାପି ।
ଅପୁତ୍ରିକ ଲକ୍ଷଣେ ମୁଁ ବଞ୍ଚିବି କେସନେ,
ଛାଡ଼ିବି ଜୀବନ ମମ ପୁତ୍ରଙ୍କ ବିହୂନେ ।

ସେ ବଚନ ବୋଇଲେ ତାହାଶାପେ ନାଶଗଲେ
ଯେ ଯାହାର କର୍ମ ଏଥି ଭୁଞ୍ଜିବାକୁ ଭଲେ ।
ଯେତେ ପୁଣ୍ୟ ଗୁରୁ ସେହୁ କରିଥିଲେ ପୂର୍ବେ
ତେତେଧନ ଭୋଗ ପୁଣି କରୁଛନ୍ତି ଏବେ ।
ସଂସାର ସାଗର ଏହା ଦେବର ରଚନା
ହିଂସା ଅପବାଦ ମୋତେ ଲୋକେ ଦେଇ ସିନା
ଜଗନ୍ନାଥ ଅଛନ୍ତି ଟି ସର୍ବ ଅଧିକ ସା
ପ୍ରବୋଧ ବାକ୍ୟରେ ସେହୁ ଗୁରୁଙ୍କୁ ତୁଆର ।
ଗୁରୁ ଗୁରୁପତ୍ନୀକ ଯେ ବେନ ଜଗନ୍ନାଥେ
ଚଳିଲେ ତାହାଙ୍କ ସଙ୍ଗ ଗୁରୁ ଗୃହପଥେ ।
ଗୁରୁଙ୍କୁ ମାର୍ଜନା କରି ପ୍ରଭୁ ଦେବରାଜ
ଏଗାର ଦିନରେ ତହିଁ କଲେ ପ୍ରେତକାର୍ଯ୍ୟ ।
ଶାନ୍ତପନ ବୋଲନ୍ତି ମୋ ଯେତେ ପାପ ଥିଲା
ତୁମ୍ଭଙ୍କୁ ଦେଖିଲା ମାତ୍ରେ ଦୂର ହୋଇଗଲା ।
ବସ ମୂର୍ତ୍ତି ଅପୂର୍ବ କି ଯିବ ବାରାଣସୀ
ପାତକ ମୁଁ ବିନାଶିବ ପ୍ରୟାଗରେ ଆସି ।
ରାମକୃଷ୍ଣ ବୋଇଲେ ଯେ ଶୁଣ ଗୁରୁଦେବ
ହୃଦୟରୁ ଚିନ୍ତା ଏବେ ତ୍ୟାଗକର ତବ ।
ଥୋକେ ଦିନ ଆଉ ତୁମ୍ଭେ ଏଥେ ଥାଅ ରହି
କଷ୍ଟ ବିଦ୍ୟା ପଢ଼ିବାକୁ ମନ ଯେ ବଳଇ ।
ତୁମ୍ଭର କୃପାରେ ଆମ୍ଭେ ହେଲୁ ଜ୍ଞାନବନ୍ତ
ଜାଣ ସ୍ୱାମୀ ଆମ୍ଭେ ଅଟୁ ତୁମ୍ଭ ଧର୍ମପୁତ୍ର ।
ଗୋବିନ୍ଦ କହନ୍ତେ ଶାନ୍ତପନ ତୋଷ ହେଲେ
ଷଣ୍ଡଭୂତ ଆମ୍ଭାରେ ଯେ ଏଥାକୁ ଆସିଲେ ।
ଏହାଙ୍କରେ ପୁତ୍ରକଷ୍ଟ ଯିବ ଅବା ମୋର
ଯେଣୁ ବଚନ ସ୍ୱାଙ୍କର ଚନ୍ଦନୁ ଶୀତଳ ।
ଶ୍ରୀକୃଷ୍ଣ କହନ୍ତେ ଗୁରୁପତ୍ନୀ ଯେ ଶୁଣିଲେ
ଶାନ୍ତପନ ବ୍ରାହ୍ମଣଙ୍କୁ ବ୍ରାହ୍ମଣୀ ବୋଇଲେ ।
ପୁତ୍ରମାନେ ଏବେ ଯାହା କହିଲେ ତୁମ୍ଭଙ୍କୁ
ବସ୍ତ୍ରଣ କାର୍ଯ୍ୟ ଦେବ କରି ଯେ ମନକୁ ।
ନ ଯିବା ତୀର୍ଥକୁ ଥିବା ଥୋକା ଏକ ଦିନ
ଯେବେ ନିବର୍ତ୍ତାଇଲେ ଏ ବାଳୁତ ନନ୍ଦନ ।
ଶାନ୍ତପନ ପତ୍ନୀଙ୍କର କହିବା ଘେନିଲେ
ପୁତ୍ରକଷ୍ଟ ପାସୋରିଣ ମନସ୍ଥିର କଲେ ।
ରାମକୃଷ୍ଣ ଘେନି ପାଠଶାଳାକୁ ଚଳିଲେ
ସବୁ ଶିଷ୍ୟ ଆସି ତାଙ୍କ ସନ୍ନିଧେ ମିଳିଲେ ।

ସହସ୍ରେ ଶିଷ୍ୟ ଯେ ସେହୁ ବଢ଼ାବନ୍ତି ନିତି
ଶିଷ୍ୟଙ୍କ ମଧ୍ୟେ ସରସ ହରି ହଳପତି ।
ଏହିମତେ କେତେହେଁକ ଦିନ ବହିଗଲା
ଗୁରୁଙ୍କର ମନରୁ ଯେ ଭ୍ରାନ୍ତି ନ ତୁଟିଲା ।
ଜଗତର ନାଥ ଯାର ଗୃହରେ ଅଛନ୍ତି
ତାହାର ମନେ ଆବର ଅଛି କିସ ଭ୍ରାନ୍ତି ।
ଆପଣ ଶ୍ରୀକୃଷ୍ଣ ଦିନେ ବିଚାରିଲେ ମନେ
ଆମ୍ଭଙ୍କୁ ଏ ଦେଖି ଚିନ୍ତା ଗୁଡ଼ିଲେ ବହନେ ।
ଏହାଙ୍କର ଭକ୍ତିରେ ମୁଁ ନ ପାରିଲି ଯାଇ
ଗୁରୁ ଦକ୍ଷିଣା ନ ଦେଇ ଯିବି କେମନ୍ତେହିଁ ।
ଏମନ୍ତ ବିଚାରିକରି ପ୍ରଭୁ ବ୍ରହ୍ମସାକ୍ଷୀ
ଗୁରୁପତ୍ନୀ ମନ ଭ୍ରମାଇଲେ ଗୋପଶିକ୍ଷି ।
ଏକଦିନେ ଶାନ୍ତପନ ପତ୍ନୀଙ୍କୁ ବ୍ରାହ୍ମଣ
ଘରିଯା କହନ୍ତି ତାଙ୍କୁ କର ଅବଧାନ ।
ଆଜ ଅନ୍ନ ରାନ୍ଧିବାକୁ ଘରେ କାଠ ନାହିଁ
ଏକଗୋଷ୍ଠି ଡାଳ ଆଣ ପୁତ୍ରକୁ ପଠାଇ ।
କାଷ୍ଠ ଅଣାଅ ଯେ ତୁମ୍ଭେ ହୋଇଣ ବହନ
ତେବେ ସିନା ଅନ୍ନ ମୁହିଁ କରିବି ରନ୍ଧନ ।
ପତ୍ନୀଙ୍କର କହନ୍ତେ ଯେ ପଣ୍ଡାଏ ଶୁଣିଲେ
ପାଠପଢ଼ା ଘରେ ବେଗେ ଯାଇଣ ମିଳିଲେ ।
ଅନ୍ତର୍ଯ୍ୟାମୀ ନାଥ ତାହା ଆଗରୁ ଜାଣିଣ
ଭ୍ରମ କରାଇଲେ ଗୁରୁ ଗୁରୁପତ୍ନୀ ମନ ।
ଶିଷ୍ୟଶାଳୀ ଗୃହମଧ୍ୟେ ଗୁରୁ ଉଭାହୋଇ
ସମସ୍ତ ପୁତ୍ରମାନଙ୍କୁ ବ୍ରାହ୍ମଣ ସେ କହି ।
ତୁମ୍ଭେ ସର୍ବେ ଯୋଏ ଏବେ ବହନ ହୋ ଯିବ
କାଠଗୁଡ଼ାଏ ବନସ୍ତୁ ଭାଙ୍ଗିଣ ଆଣିବ ।
ଆମ୍ଭର ଗୃହରେ ଆଜ କିଛି କାଷ୍ଠ ନାହିଁ
ଗୁରୁ କହନ୍ତେ ଜାଣିଲେ ପ୍ରଭୁ ସର୍ବସାକ୍ଷୀ ।
ଶୁଣି ଆଗ ଉଠନ୍ତି ଯେ ଦେବ ଦାମୋଦର
କାଷ୍ଠ ଆଣିବାକୁ ଆମ୍ଭେ ଯିବୁ ତତପର ।
ସମସ୍ତ ଶିଷ୍ୟଙ୍କୁ ଘେନି କୃଷ୍ଣ ବାହାରିଲେ
ଆବର ହଳଧର ଯେ ସୁରଥ ଚଳିଲେ ।
ଘୋର ବନସ୍ତରେ ଯାଇ ସକଳେ ମିଳିଲେ
ଯେ ଯାହାର ମତେ କାଷ୍ଠ ଭାଙ୍ଗିଣ ଲାଗିଲେ ।
ଭର ଭର ହୋଇକରି କାଷ୍ଠମାନ ଭାଙ୍ଗି
ଯେ ଯାହା ମତରେ ନିଜ ନିଜ ବୋଝ ସାଜି ।

ଗୁରୁଙ୍କର ଆଜ୍ଞା ଘେନ୍ତୁ ମେଣ୍ଢିଣ ପାରିବ
ଯାହାଙ୍କର ଶିଷ୍ୟ ସ୍ୱୟଂ ପ୍ରଭୁ ବାସୁଦେବ ।
ଏମନ୍ତେ ବେନି ହେଲେ କୃଷ୍ଣ ହଳଧର
ଗୁରୁ ଯେ କାଷ୍ଠ ଘେନିଣ ଗନ୍ତି ଖଣ୍ଡେ ଦୂର ।
ଏକାଳେ ମାୟା କଲେ ଦେବ ନାରାୟଣ
ହରଣ କରିଲେ ସଙ୍ଗବାଳକଙ୍କ ମନ ।
ଶ୍ରୀକୃଷ୍ଣ ମାୟାରେ ସର୍ବେ ମୋହିତ ହୋଇଲେ
ଦେବ ଋଷି ବ୍ରହ୍ମମାୟା ଜାଣି ନ ପାରିଲେ ।
ସ୍ୱରମେଘେ ଡକାଇଣ କୃଷ୍ଣ ସନ୍ନିଧାନ
ଗୁପତରେ କହନ୍ତି ସେ ତାହାଙ୍କୁ ବଚନ ।
ସ୍ୱରମେଘେ ସୋଟିକରି ବରଷିବ ପାଣି
ପବନକୁ କହନ୍ତି ସେ ଗୁପତରେ ବାଣୀ ।
ଅନେକ ଅନେକ ବୃକ୍ଷ କମ୍ପାଇବୁ ଧୀରେ
ଟୋପି ଟୋପି ହୋଇ ଜଳ ପଡ଼ିବ ଭୂମିରେ
ଦିଗମାନ ନ ଦିଶିବ ଅନ୍ଧକାର ହୋଇ
ମନରେ କୁହୁଡ଼ି ଯେଉଁପରି ଆଚ୍ଛାଦଇ ।
ଭୂମିକି ଧରିଣ ମେଘ ଗରଜୁଣ ଥିବ
ସ୍ୱଳବାଳୁ ପହନ୍ତି ଯେ ପଥ ନ ଦିଶିବ ।
ଏହିପରି ଆଜ୍ଞା ଦେଇକରି ଜଗନ୍ନାଥେ
ରହିଲେ ଯେ ହଳଧର ସୁବଳଙ୍କ ସାଥେ ।
ଯେ ଯାହାର ମତେ ଯୋଏ କାଷ୍ଠ ସଜାଡ଼ିଲେ
ଏକାଳେ ଗଗନରେ ମେଘ ଆଚ୍ଛାଦିଲେ ।
ଘୁ ଘୁ ଗରଜନ କରି ବରଷିଲେ ପାଣି
ସନସନ ବଜୁଳି ଯେ ଚମକଇ ପୁଣି ।
ଚଡ଼କ ପଡ଼ଇ ସଦା ମାନର ବଜ୍ରବାଣ
ସେ କାଳର କଷ୍ଟ କିଏ କରିବ ଗଣନ ।
ମହାଅନ୍ଧକାର ପୃଥ୍ୱୀ ତଳେ ନ ଦିଶିଲା
କିଏ କେଉଁଠାରେ ଆଉ ଜାଣି ନ ପାରିଲା ।
ରାମ କୃଷ୍ଣ ଦୁହେଁ ତହୁଁ ସୁବଳକୁ ଘେନ
ଡରତରେ ପଳାବନ୍ତି ଡାକହାକ ପୃଷ୍ଟି ।
ତାଙ୍କ ସଙ୍ଗେ ଏକଗୋଟି ଶିଷ୍ୟ ଗୋଡ଼ାଇଲା
ବ୍ରାହ୍ମଣର କୁଳେ ସେହୁ ଜାତ ହୋଇଥିଲା ।
ମାୟାଧର ସେ ବାଳକ ସଙ୍ଗେ ଘେନିଗଲେ
ଏକଗୋଟି ଗଛ ହୋଟ ଭିତରେ ରହିଲେ ।
ବିପ୍ର ବାଳକକୁ ଦେଖି କୃଷ୍ଣ ପଚାରନ୍ତି
ତୁମ୍ଭ ନାମ କିସ ଅଟେ ବୋଲି ସେ ବୋଲନ୍ତି

ଭକତବତ୍ସଳ ସେହି କରୁଣାସାଗର
ଭକତର ମନ କଥା ଜାଣନ୍ତି ଶ୍ରୀଧର ।
ଛଦ୍ମ କରି ମହାପ୍ରଭୁ ପଚାରନ୍ତି ହସି
ସେହି ବିପ୍ର ବାଳକକୁ ବହୁତ ପ୍ରଶଂସି ।
ତାର ପୂର୍ବଭାଗ୍ୟ ବଳେ ବୁଦ୍ଧି ପ୍ରସନ୍ନିଲା
ଏହିପରି କୃଷ୍ଣଙ୍କୁ ସେ ଉତ୍ତର କହିଲା ।
ମୋର ନାମଗୋଟି ପ୍ରଭୁ ଅଟେ ଦାମୋଦର
କୃଷ୍ଣ କହନ୍ତି ସେ ନାମ ଅଟଇ ଆମ୍ଭର ।
କୃଷ୍ଣଙ୍କୁ ଦେଖିଣ ମୋର ଶରଧା ବଳିଲା
ତେଣୁ ମିତ୍ରପଣେ ମୋର ମନ ଯେ ସ୍ଥିରିଲା ।
କୃତକୃତ୍ୟ ହୋଇକରି କହେ ବିପ୍ରମଣି
କେତେହେଁ କୃଷ୍ଣ ସଙ୍ଗେ ମିତ ହେବ ଚକ୍ରପାଣି ।
ମିତ୍ରର ଭକତଭାବ ଦେଖି ଯାଦବସ୍ୱାମୀ
ବଳାକାରେ ତାର କର ଧଇଲେକ ଯାଇ ।
ଯହୁଁ ସେହି ବେନିଜଣେ ମଇତ୍ର ହୋଇଲେ
ଭକତବତ୍ସଳ ବୋଲି ପ୍ରଭୁ ବୋଲାଇଲେ ।
କ୍ଷଣ ହେଁ ମନୁ ନ ପରତ ରହନ୍ତି ଅଗସ୍ତି
ଭକତଙ୍କ ହୃଦେ ପ୍ରଭୁ ସର୍ବସ୍ଥାନେ ସ୍ଥିତ ।
ବୃକ୍ଷ ହୋଟରରେ ସେହି ସକଳ ରହିଲେ
ଉଦ୍‌ଭାସ ପାହାନ୍ତେ ମେଘମାନଙ୍କୁ କହିଲେ ।
ଯେ ଯାହା ସ୍ଥାନକୁ ଏବେ ଯାଅ ମେଘମାନେ
ଶ୍ରୀକୃଷ୍ଣଙ୍କ ଆଜ୍ଞାରେ ସେ ଚଳିଲେ ଗଗନେ ।
ସୂର୍ଯ୍ୟଙ୍କର କିରଣ ଯେ ପ୍ରକାଶ ହୋଇଲା
ଅନ୍ଧାର ପଳାଇଲେ ତହୁଁ ଦିନ ପ୍ରକାଶିଲା ।
କାଷ୍ଠବୋଝ ଘେନ ବାଳେ ବାହାର ହୋଇଲେ
ଏକବୃକ୍ଷ ହୋଟରରେ କୃଷ୍ଣ ରହିଥିଲେ ।
ସୁବଳକୁ ସଙ୍ଗେ ଘେନି କାଷ୍ଠବୋଝ ଧରି
ହସି ହସି ଯାଆନ୍ତି ଯେ ଦେବ ଦଇତ୍ୟାରି ।
ଶିଷ୍ୟଙ୍କୁ ବାଟରେ ଶାନ୍ତିପନି ଯେ ଭେଟିଲେ
ହରି ହଳଧର ଯାଇ ଚରଣେ ନମିଲେ ।
ଭଲ ବୋଲି ଗୁରୁ ତାଙ୍କୁ ତକ୍ଷଣେ ବୋଲନ୍ତି
କାଷ୍ଠ ବୋଝମାନ ପୁଣ ଓହ୍ଲାଇ ପକାନ୍ତି ।
ଏହିପରି କାଷ୍ଠବନ ତହୁଁ ବଳିଗଲା
ପୁଣି ପୂର୍ବଙ୍କର କଷ୍ଟ ମନରେ ପଡ଼ିଲା ।
ଶ୍ରୀକୃଷ୍ଣଙ୍କୁ ସ୍ତୁତି ଗୁରୁ କହନ୍ତି ବଚନ
ଏବେ ଯିବୁ ଆମ୍ଭେ କରି ତୀର୍ଥ ପର୍ଯ୍ୟଟନ ।

ମଣି କର୍ଣ୍ଣିକାରେ ସ୍ନାନେ ପ୍ରାଣ ଛାଡ଼ିଦେବୁ
ତେବେ ଆମ୍ଭେମାନେ ପୁତ୍ରକଷ୍ଟ ପାସୋରିବୁ
ଏମନ୍ତ ବଚନ ଯହୁଁ ସେ ଦେନି କହିଲେ
ଦେବ ଶ୍ରୀପତି ମନେ ମନେ ବିଚାରିଲେ ।
ମୋକ୍ଷ ନ ମାଗିଣ ଗୁରୁ ପୁତ୍ରେ ମନ ଦେଲେ
ମୁହିଁ ସେ ପରମବ୍ରହ୍ମ ମୋତେ ନ ଚିହ୍ନିଲେ
ବଇଷ୍ଣ ମାୟାରେ ଏବେ ଗୁରୁ ମୋହ ହେଲେ
କୋଟିତୀର୍ଥ ଯାର ପାଦେ ତାଙ୍କୁ ନ ଚିହ୍ନିଲେ
ଆଉ ଏ କେଉଙ୍କୁ ମୁହିଁ କହିବ କାରଣ
ଗୁରୁଦକ୍ଷିଣା ସ୍ୱରୂପ ଦେବି ପୁତ୍ରଦାନ ।
ମାୟାରେ ଶ୍ରୀନାରାୟଣ ବୋଇଲେ ବଚନ
ଆମ୍ଭଙ୍କ ମେଲଣି ଏବେ ଦିଅ ଦେନିଜଣ ।
ଶ୍ରୀଧର କହିଲେ ଶାନ୍ତପନ ଗୁରୁ ଆଗ
ଏବେ ଦକ୍ଷିଣା ଆମ୍ଭଙ୍କ ଗୁରୁ ତୁମ୍ଭେ ମାଗ ।
ଦକ୍ଷିଣା ନ ଦେଲେ କେଉଁ ବିଦ୍ୟା ନୁହେଁ ସିଦ୍ଧି
କଳ୍ପନା ବିନା କି ପ୍ରାପ୍ତ ହୁଏ ଋଦ୍ଧିସିଦ୍ଧି
ଗୁରୁ ବୋଇଲେ ଦକ୍ଷିଣା ଅଟେ ତାନ ଧ୍ୟାନ
ତେବେ ମୋର କିସ ଅଛି ସ୍ୱାର୍ଥ ପ୍ରୟୋଜନ
କିସ ଧନ ସମ୍ପଦା ଯେ ପୁତ୍ର ଯେବେ ନାହିଁ
ଗୁରୁଙ୍କ ବଚନେ କହୁଛନ୍ତି ଦେନି ଭାଇ ।
ଦକ୍ଷିଣା ନ ଦେଲେ ବିଦ୍ୟା ପ୍ରାପତ ନୁହଇ
ଆଜ୍ଞା ଦେଲେ ମୁକ୍ତ ହେବୁ ଦକ୍ଷିଣା ଯେ ଦେଇ
କିସ ଦକ୍ଷିଣା ମାଗ ହେ ଆମ୍ଭେ ତାହା ଦେବୁ
ଧନରେ ମୋ ପ୍ରୟୋଜନ ନାହିଁ ଆରେ ବାବୁ
ଗୁରୁ ନ କହୁଣୁ ଗୁରୁପତ୍ନୀ ଯେ କହନ୍ତି
ଯାହା ମୁଁ ମାଗିବି ତାହା ଦେବ କି ଶ୍ରୀପତି ।
ପଞ୍ଚପୁତ୍ର ମୋର ଜଳେ ବୁଡ଼ିଣ ମରିଲେ
ଗୁରୁ ଦକ୍ଷିଣା ସ୍ୱରୂପ ଦିଅ ଆଣି ଭଲେ ।
କହୁଅଛି ଜଗଧାର ଏହା ଯେ ତୁମ୍ଭଙ୍କୁ
କହୁଁ କହୁଁ ଶୋକ କଲେ ବେହୁଁ ସେବେଳକୁ
ଯହୁଁ ଗୁରୁପତ୍ନୀ ଏହି ବଚନ କହନ୍ତି
ମନରେ ଭାବିଲେ ତାହା ବୈକୁଣ୍ଠର ପତି ।
ପୁଣି ଶାନ୍ତପନ ତାଙ୍କୁ ବଚନ ବୋଲନ୍ତି
ସାବଧାନ ହୋଇ ଶୁଣ କମଳାର ପତି ।
କହୁଅଛଇ ତୁମ୍ଭଙ୍କୁ ଜଗଧାର ବାବୁ
ଯେବେ ପାରୁ ପାଞ୍ଚପୁତ୍ର ଆଣି ମୋତେ ଦେବୁ

ଆନ ଦକ୍ଷିଣାରେ ମୋର ପ୍ରୟୋଜନ ନାହିଁ
ବୋଇଲେ ତୁମ୍ଭ ପୁତ୍ରଙ୍କୁ ଚଳ ଦେବା ଯାଇ ।
ଗୋବିନ୍ଦ ବୋଇଲେ ତୁମ୍ଭେ ପରମ ଯେ ଗୁରୁ
ଅମାନୁଷ କଥା ଏହା କିପାଁ ନ ବିଚାରୁ ।
ଅଶୀବର୍ଷ ହେଲା ପୁତ୍ରେ ଗଲେ ନାଶ ହୋଇ
ଏବେ ଲୋଡ଼ିଲେ ସେମାନେ ଥିବେ କେଉଁଠାଇଁ
ଶାନ୍ତପନ ବୋଲେ ଯେବେ ନୋହିବ ତୁମ୍ଭରେ
ତେବେ ବେନି ଭାଇ ଏବେ ଚଳ ନିଜ ପୁରେ
ଗୋବିନ୍ଦ ବୋଇଲେ ଏହା ମାଗିଲ ଯେ ଗୁରୁ
ଯତନେ ଲୋଡ଼ିବୁଁ ଆମ୍ଭେ ଯେତେ ଦୂର ପାରୁ
ଗୁରୁଙ୍କ ଆଜ୍ଞା ମାଗିଣ ଗଲେ ଭାଇ ବେନି
ମହୋଦଧି ତୀରେ ଯାଇ ମିଳିଲେ ତକ୍ଷଣି ।
ଗୋବିନ୍ଦ ବୋଇଲେ ଭାଇ ଶୁଣ ବଳରାମ
ତୁମ୍ଭେ ଚଳଯାଅ ଏବେ ମଧୁବନାଶ୍ରମ ।
ସମୁଦ୍ର ଭିତରେ ମୁହିଁ ଖୋଜେ ଗୁରୁପୁତ୍ର
ଆମ୍ଭେ ଥାଉଁ ରତ୍ନାକର କଲାକ ଅନର୍ଥ ।
ବଳରାମ ଭଲେ ଗଲେ ନିଜର ଭୁବନ
ସମୁଦ୍ରେ ପଶିଲେ ଯାଇ ଶ୍ରୀମଧୁସୂଦନ ।
ରତ୍ନାକର ପୁରେ ପଶି ଖୋଜନ୍ତି ଶ୍ରୀବତ୍ସ
ଘରେ ଘରେ ପଶିଣ ସେ ଖୋଜନ୍ତି ଉଦେଶି
ଭ୍ରମନ୍ତେ ଦେଖିଲା ରତ୍ନାକର ଜଳନିଧି
ଅନେକ ପୂଜା କରିଣ ବରୁଣ ଜଳଧି ।
ଅତି କଠୋରେ ବୋଲନ୍ତି ଦେବ ମଧୁହାସୀ
ଗୁରୁଙ୍କର ପାଞ୍ଚପୁତ୍ର ଆଣିଅଛୁ ହରି ।
ବରୁଣ ବୋଇଲେ ବୁଡ଼ିଲେ ସେହୁ ମହାଜଳେ
ଆଣେ ଅଖ୍ୟାତ ଦିଅଇ ଯମ ବୁଦ୍ଧିବଳେ ।
ଯେବଣଠାରୁଁ ମଲେ ନାଶଯାନ୍ତି ସର୍ବପ୍ରାଣୀ
ଯମର ବିନା ଆନ କେ ନ ପାରନ୍ତି ଜାଣି ।
ସଂଯମନୀପୁରେ ଲୋଡ଼ ଯାଇଣ ଅନନ୍ତ
ସମସ୍ତ ଜନ୍ତୁ ଉପରେ ଅଟଇ କୃତାନ୍ତ ।
ରତ୍ନାକର ବାକ୍ୟେ ଦେବ ଗରୁଡ଼େ ସୁମନ୍ତ
ଗରୁଡ଼ ପିଠିରେ ଦେବ ଯାଇ ବିଜେକଲ ।
ପାଞ୍ଚଜନ୍ୟ ଶଙ୍ଖ ଦେବ କରିଲେ ନିଃସ୍ୱନ
ସଂଯମନୀପୁରେ ଯାଇ ହେଲେ ନାରାୟଣ ।
ଅନେକ ପାପୀଙ୍କୁ ଯମ ଦେଉଥିଲା ଶାସ୍ତି
ଶ୍ରୀଜଗନ୍ନାଥ ଦର୍ଶନେ ସର୍ବେ ହେଲେ ମୁକ୍ତ ।

ଜଗନ୍ନାଥେ ଦେଖି ନାଶକର ଉଠନ୍ତ
ପାଦ୍ୟାର୍ଘ୍ୟ ଦେଇ ଚରଣେ ହେଲା ପ୍ରଣମିତ ।
ଚରଣ ପଖାଳି ତହୁଁ ଉଦକ ପିଇଲ
ଆସ୍ଥାନ ପରେ ବସାଇ ତାହାଙ୍କୁ ତୋଷଇ ।
ବହୁତ ଯତନେ ନାଶକର ପରଣାମି
ଅନେକ ସ୍ତୁତିଗ ଯତନ୍ତେ କଲ ଦେବସ୍ୱାମୀ ।
ତୋର କାରଣେ ଉଦ୍ଧରେ ବହୁତ ଯେ ପାପୀ
ସଂସାର ତାରଣ ନାଥ ଉଦ୍ଧାରି ଯଦ୍ୟପି ।
ସ୍ୱାମୀ କି କାର୍ଯ୍ୟେ ଯତନ୍ତ କଲା ଅନୁଗ୍ରହ
କହିବା ହେ ନାଥ ମୋରେ ବଡ଼ ଯେ ସନ୍ଦେହ
ଶୁଣ ହୋ କୃତାନ୍ତ କହନ୍ତ ଦାମୋଦର
ଅମାନ୍ଦ କଥା ତ ଏବେ ଶୁଣିଲୁ ତୋହର ।
ଆୟୁ ପୂରିଲେ ହରିବୁ ପ୍ରାଣୀଙ୍କି ଯୁକତେ
ବାହୁଡ଼ି କୁମର ହରି ଆଣିଲୁ କେମନ୍ତେ ।
ତୁ ସିନା ଜନ୍ତୁମାନଙ୍କ ଅଟୁ ସିନା ଧର୍ମ
ତୁହି ଦଣ୍ଡଧାରୀ କରୁ ଅମାନ୍ତ ଯେ କର୍ମ ।
ନାଶକର ବୋଲେ ସ୍ୱାମୀ ଶୁଣିମା ଶ୍ରୀପତି
ମୂର୍ଖଁ କପାଇଁ ଯେ ଦେବ କରିବ ଅଘାତ ।
ପିତା ବର୍ତ୍ତିଣ ଯେତେବେଳେ ବଏ ଭାର୍ଯ୍ୟ
ଆପଣେ ନାଶକରଇ ଆପଣା ତନୁଜ ।
ଅଯୋଗେ ଭାର୍ଯ୍ୟା ବଅଇ ଯେବଣ ପୁରୁଷ
ଆପଣେ ନାଶ କରଇ ତାର ବାଳଶିଷ୍ୟ
ନାଶକର ବୋଇଲା ଯେ ଶୁଣିମା ଶ୍ରୀପତି
ଯେତେବେଳେ ସ୍ତ୍ରୀମାନେ ହୁଅନ୍ତ ରଜୋବଶ
ସେ ସମସ୍ତେ ସଙ୍ଗକରେ ଯେବଣ ପୁରୁଷ
ତାହାର ସନ୍ତତ ନାଶ ହୁଅଇ ଅବଶ୍ୟ ।
ଦିବସରେ ସ୍ତ୍ରିରୀ ସଙ୍ଗ କରେ ନିଜ ଇଚ୍ଛା
ଅଳପ ଆୟୁଷ ତାର ଜନମଇ ବତ୍ସା ।
ଆବେ ସ୍ୱାମି ଶୁଣ ଅଟେ ଷୋଡ଼ଶ ଯେ ଘଡ଼ି
ସାତଦଣ୍ଡେ ଘଡ଼େ କାଳ ପୁରୁଷଙ୍କ ଧାଡ଼ି ।
ପ୍ରଥମ ଘଡ଼ିରେ ଯେବେ ସ୍ତ୍ରୀ ସଙ୍ଗ କରଇ
ଜନମ ହୋଇଲାକ୍ଷଣି କୁମର ମରଇ ।
ପଞ୍ଚଦଣ୍ଡଠାରେ ଯେବେ ହୁଏ ସ୍ତ୍ରୀସଙ୍ଗ
ବରଷକ ଶେଷେ ସେହି ମରେ ଭୋଗି ରୋଗ
ଷାଠିଦଣ୍ଡଠାରେ ସ୍ତ୍ରୀସଙ୍ଗ ଯେ କରଇ
ତିରିଶ ବର୍ଷରେ ପୁତ୍ର ମରଣ ଲଭଇ ।

ଛଅଦଣ୍ଡ ମଧ୍ୟରେଟି ଯେବେ ଗର୍ଭ ରହେ
ତରୁଣ ବୟସେ କାଳ ହରଇ ନିଶ୍ଚୟେ ।
ଯେଉଁ ଗର୍ଭ୍ୟରହଇଟି ସାତଦଣ୍ଡ ମଧ୍ୟେ
ପଚାଶ ବର୍ଷେ ସେ ପୁତ୍ର ନାଶଯାଇ ହାବେ ।
ଆଠଦଣ୍ଡ ମଧ୍ୟେ ଯେଉଁ ଉପୁଜଇ ବାଳ
ସେହି ପୁତ୍ର ପରମାୟୁ ସତୁରି ବତ୍ସର ।
ନବଦଣ୍ଡ ମଧ୍ୟରେ ଯେ ଉପୁଜେ ସନ୍ତତି
ସେ ସନ୍ତାନ ଅଶୀବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି ।
କୃଷ୍ଣ ଶୁକଳ ଯେ ଯୁଗ ଅବଧିତ ଲେଖା
ସପତାଙ୍କ ଭେଦକରି ତଥିବାର ଲେଖା ।
ପ୍ରଥମ ସପତ ଦଣ୍ଡେ ଯେ ହୁଏ ସନ୍ତତି
କଲ୍ପାୟୁଷ ହୋଇ ସେହୁ ବହୁକାଳ ବର୍ତ୍ତି ।
ମଧ୍ୟ ସପ୍ତଦଣ୍ଡେ ପୁଣ କାମ ଉଦ୍‌କଳା
ସେବେଳେ ଉପୁଜାଇବେ ପଣ୍ଡିତ ଯେ ବଳା
ପୁରୁଷର ବୋଲେ ନାଶଯାନ୍ତି ସିନା ପ୍ରାଣୀ
ମୋତେ ଦୋଷଦ୍ୟନ୍ତି ଦେବ ହୋ ଯେ ନ ଜାଣି
ସଂସାରକୁ ଦୋଷ ମୁହିଁ ଦେବଇଁ କେମନ୍ତେ
ସତ୍ୟରେ ଧରମ ଯୋଗ ଧର୍ମ ବେଦଅର୍ଥେ ।
ଧର୍ମ ଲଙ୍ଘି ଅଚଳିଲେ କଲ ପରଦାର
ଦ୍ୱାପରେ ହୋଇଣ ଦେବ ରଙ୍କା ଅବତାର ।
ତୁମ୍ଭ କର୍ମ କୃତ୍ୟ ମୁହିଁ କାହେ ଦୋଷ ଦେବ
ସତ ବଟା ନ ଗ୍ରହିଲ ମାନଙ୍କ ଗୌରବ ।
ଅନୁକ୍ଷଣ ରତ ତୁମ୍ଭେ କଲ ଯେ ଶ୍ରୀହରି
ଆପଣେ ଲଙ୍ଘିଲ ଦେବ ଦୋଷ ଯେ ନ ବାଛୁ
ନିସ୍ତାରଇ ପୁରୁଷ ଯେ ଭଣିଲ ଅମାନ୍ତ
ପରମ ବ୍ରହ୍ମ ସମସ୍ତ ବେଦେହେ ବେଦସ୍ତୁତ ।
ଆପଣେ ନ ବର୍ତ୍ତିଣ ଦୋଷ କର ମୁକୁ ।
ସମସ୍ତ ଭୋଗାଏ ଦେବ ତୋହର କଥାକୁ ।
ନାରାୟଣ ଯେବେ ଦେବ ହେଲେ ଅତ୍ୟାସୁଷ
କଳିଯୁଗ ଜନଙ୍କୁ କେ ପାରିବ ତଆର ।
କୃତାନ୍ତର ବଚନରେ ବୋଲନ୍ତି ଅନନ୍ତ
ଅଳପ ହିଲୁ କଲଇଁ ଏମନ୍ତ ଯେ କୃତ୍ୟ ।
କଳିଯୁଗ ଜନଙ୍କୁ କେ ପାରିବ ତଆର
କୃତାନ୍ତ ବଚନ ଶୁଣି କହନ୍ତି ଶ୍ରୀହରି ।
କାର୍ତ୍ତିକମାସଠାରୁ ରୁଦ୍ରନଷ୍ଟ ପରିଯନ୍ତେ
ନ ଲଗିବ ପରଦାର ଦୋଷ କଦାଚିତେ ।

ଏଥେଁ ପରଦାର ଆମ୍ଭେ ଅର୍ଜିଲୁ ପାପ
ଏତେ ଦୂରକୁ ଘୁଞ୍ଚ ନ କରିବୁ ଯେ କୋପ ।
ପରଦାର ହରଣ ଯେ ହେଲେ ଅନ୍ୟଠାର
ସେ ଦୋଷେ ଦଣ୍ଡିତ ହେବେ ପରାଣୀ ନିକର
ତହିଁର ଲେଖେ କୁ ଶାସ୍ତି ଦେବୁ ଯମଦେବେ
ଏଥିର ଅନ୍ୟଥା କିଛି ନ କରିବୁ କେବେ ।
ଚଉବିଂଶ କୋଶ ଅଟେ ଦକ୍ଷିଣ ଦ୍ୱାରକା
ପରଦାର ଦୋଷ ଶୁଣ ଏଥେଁ ନାହିଁ ଏକା ।
ଆହେ ବୁଧଜନେ ମୋତେ ନ କରିବେ କୋପ
ମଙ୍ଗଳା ଶାପେ ମୋହର ଏସନ ସ୍ୱରୂପ ।
ଯାହା ମୋତେ ପରସନ୍ନେ କହିଲେ ହିଙ୍ଗୁଳା
ଝଙ୍କଡ଼ପୁର ବାସିନୀ ଶ୍ରୀଚଣ୍ଡୀ ଶାରଳା ।
ସେ ଗ୍ରନ୍ଥେ କହନ୍ତି ମୁହିଁ ଲେଖଇ ଦିବସେ
ଯମର ସମ୍ବାଦ ମୁହିଁ କହିଲଇଁ ଶେଷେ ।
ମାନବ ଦେ ମେଣ୍ଟିବ ଯା ହର ଭଣଇଲେ
ଶୂଦ୍ରମୁନି କହିଲେ ଯେ ଶାରଳା ଆଜ୍ଞାରେ ।
କହନ୍ତି ଅଗସ୍ତ୍ୟ ପୁଣି କୁମ୍ଭଋଷି ବସି
ଭ୍ରାତାଏ ବାହିଁ ଅଛନ୍ତି ବୋଲିଣ ଶ୍ରୀବସି ।
ଅବନ୍ତୀପୁରର ଶାନ୍ତିଗଣ ଆମ୍ଭ ଗୁରୁ
ତାହାଙ୍କ କୁମର ଆମ୍ଭେ ନେବୁ ତୁମ୍ଭ ପୁରୁ ।
ଯମଦେବ ବୋଲେ ମୁହିଁ ଜାଣଇ ସମସ୍ତ
ଯହିଁପାଇଁ ଆସିଲଟି ଗୁରୁ ପାଦପୁତ୍ର
ସ୍ୱାମୀ କେତସ୍ନାରେ ଗଲା ସେ ଜଳତରଙ୍ଗ
ଚମ୍ପା ଘଣ୍ଟେ ଫୁରାଇଣ ଲାଗେ ତାର ଅଙ୍ଗ ।
ନବବର୍ଷ ପଞ୍ଚଯନ୍ତ୍ରେ ହେଲ ଏତେ ଶାସ୍ତି
ସ୍ତ୍ରୀ ସ୍ତ୍ରୀ ହତ୍ୟା କଲା ସେହି କୌଣପ ନୃପତି ।
ତୋହର ଦର୍ଶନେ ଏବେ ମୁକ୍ତ ହେବ ସ୍ୱୟେ
ତାହାପାଇଁ ଆସିଲି ମୁଁ ଗୁରୁଙ୍କ ତନୟେ ।
ଜଳତରଙ୍ଗ ନୟନେ ଦେଖିଣ ଅଚ୍ୟୁତ
ମୁକ୍ତହୋଇ ବଇକୁଣ୍ଠେ ଚଳିଲା ତୁରିତ ।
କରଯୁଗ ଯୋଡ଼ିକରି ବୋଲେ ନାଶକର
ଭାଇମାନେ ତୋର ଯାଇ ଅଛନ୍ତି କେଶର ।
ବାରାଣସୀ ପୁରେ ବସେ କାଶୀନାମେ ନଗ୍ର
ଗଙ୍ଗା ନଗରୁ ସେ ଅଇଶାନ୍ୟ ଭାଗେ ଲେଖ ।
ବଇଦୂର୍ଯ୍ୟ ପର୍ବତରୁ ବଡ଼ବା ଅନଳ
କାଶୀଶ୍ୱର ନାମେ ତହିଁ ଲିଙ୍ଗ ଯେ ସକଳ ।

ଗୁପତ ତୀର୍ଥ ତା ନାମ ଅଟେ ବାରାଣସୀ
ଅଉସ୍ତୁ ଲିଙ୍ଗ ତଳସ୍ତୁ ଦକ୍ଷିଣ ଯେ କାଶୀ ।
ସେ ତୀର୍ଥ ଉତରେ ପୁଣ ଜନ୍ମ ପଞ୍ଚଭ୍ରାତେ
ଚଉଦଶ୍ୟ ଜର୍ମରେ ସର୍ବେ କାଅନ୍ତି ନଗରେ ।
ଯେତକ ଦ୍ରବ୍ୟ ସେମାନେ ଜନ୍ମ ପ୍ରେତଗଣ
ବାଣ୍ଟନ୍ତି ସେହି ଧନକୁ ପଞ୍ଚଭାଗକରି ।
କାଶୀଶ୍ୱରଙ୍କୁ ଦିଅନ୍ତି ୯ କଳସ ସେନ
ଭାଇଅଳ ଗାଈଭାଗ ନିଅନ୍ତି ଯେ ପୁଣି ।
ଜଗତ୍ପତି ବୋଲିଣ ସେ ଦେଖ ସେନାପତି
ଗଲ ତାଙ୍କ ଆଜ୍ଞାବେନି କୃତାନ୍ତ ନୃପତି ।
ବ୍ୟାଘ୍ର ବାହନରେ ତୁମ୍ଭେ ଚଳ ଏହିକ୍ଷଣ
ଗୁରୁଙ୍କର ପଞ୍ଚପୁତ୍ର ଆଣ ହେ ବହନ ।
ଆଜ୍ଞା ପରମାଣେ ଚଳିଗଲେକ ତରଗେ
କୁମରଙ୍କୁ ଦେଖିଲେ ଯେ କାଶୀନଗ୍ରୀ ତୀରେ ।
ମାୟାରେ ସାଧୁରୂପ ହେଲେ ଯମଦୂତ
ବହୁ ଆଡ଼ମ୍ବର ସିନ୍ଧୁ ଯାଇଛନ୍ତି ପଥ ।
ତସକର ପାଞ୍ଚଭାଇ ଦେଖିଲେ ସେ ଦ୍ରବ୍ୟ
ଆବର ବଂଶହସ୍ତ ସେ ଦେବଙ୍କର ଲବ ।
ରହ ରହ ବୋଲି ଓଗାଳିଲେ ପାଞ୍ଚଭାଇ
ହସ୍ତରେ କୁଠାର ଧରି ବେଗେ ଗଲେ ଧାଇଁ ।
ବୋଲନ୍ତି ସେ ଯମଦୂତେ ଅଟୁ ଆମ୍ଭେ ସାଧୁ
ବଶେଷ ଦେବ ଆଜ୍ଞାରେ ଅଟୁ ଜମ୍ବୁ ସାଧୁ ।
ତସ୍କରେ ବୋଇଲେ ଯେବେ ତୁମ୍ଭେ ହେ ସଜ୍ଜନ
ଆମ୍ଭେ ତସକର ଭଟ୍ୟ ନେଲ ପରଧନ ।
କୋପେ ଯମଦୂତେ ପ୍ରହାରିଲେ ଜରପନେ
ବେଦଜନଙ୍କ ପ୍ରହାରେ ଛିଣ୍ଡି ପଞ୍ଚଭ୍ରାତେ ।
ଆକର୍ଷଣ କରିଣ ସେ ଧରି କୋପକରି
ସପାଦ ପିଟିରେ ବସାଇଲେ ନେଇ ଧରି ।
ମୋହ ଶରେ ଗୁରୁ ପଞ୍ଚପୁତ୍ର ବାନ୍ଧିକରି
ଆସି ପ୍ରବେଶ ହୋଇଲେ ସଂଯମନୀ ପୁରୀ ।
ନିର୍ଧୂମ ଅଗ୍ନି କି ଜଣି ପୁତ୍ରଙ୍କର କାୟେ
ଯମର ସମ୍ମୁଖରେ ଯାଇ ପ୍ରଣମିତ ଯୋଏ ।
କର ଧରି ନାରାୟଣ ଉଠାଇ ତନକୁ
ଦେଖିଲେ ତିନି ପାବକ ତଳରେ ପଣ୍ଡୁଙ୍କୁ ।
ଶମନକୁ ସ୍ୱହିଁ ପୁଣି ବୋଲନ୍ତି ଅଚ୍ୟୁତ
କେଉଁ ପାତକେ ଆସ୍ଥାନେ ନ ବସନ୍ତି ଏତ ।

କରପତ୍ର ଯୋଡ଼ି ତହିଁ କହୁଅଛନ୍ତି ଯମ
ବ୍ରହ୍ମହତ୍ୟା କଲେ ସ୍ୱାମି ନାଶି ଲୋମଧର୍ମ ।
ଅଗ୍ନି ନା ମହାଋଷିଙ୍କ ସଙ୍ଗମର ବେଳେ
ନାଗତ ମାଇଲ ଏତୁ ଋଷିଙ୍କ ଉପରେ ।
ସ୍ୱାମି ଈଶ୍ୱର ଦେବତା ବ୍ରହ୍ମହତ୍ୟା କଲ
ତାହାଙ୍କର ହତ୍ୟାଦୋଷ ମୋଷଣ ନ ଗଲ ।
ଗୋବିନ୍ଦ କହନ୍ତି ଆମ୍ଭ ଅଟନ୍ତି ଏ ତାତ
ଆମ୍ଭଙ୍କୁ ଦେଖନ୍ତେ ଖଣ୍ଡିଗଲା ସର୍ବଶାପ ।
ଯମ ବୋଇଲେ ଏବେ ଏ ହୋଇଗଲେ ମୋକ୍ଷ
କାରଣକୁ କଥା ଏକ କହିବା ଶ୍ରୀବତ୍ସ ।
କହନ୍ତି ଏ ଦୋଷେ ପ୍ରଭାକର ପାଣ୍ଡୁରାଜ
ଯୁଧିଷ୍ଠିରଙ୍କ ଅଗ୍ରତରେ ଜନ୍ମହେବେ ଯାଇଁ ।
ଶ୍ରୀକୃଷ୍ଣ ବୋଇଲେ ଯମ କେଉଁ ତୀର୍ଥ ଗଲେ
ପିତା ମୋକ୍ଷ ହୁଏ ପୁଣ କେଉଁ ପୁଣ୍ୟ କଲେ ।
ଯମ ବୋଲେ ପୁତ୍ର ଯେବେ ଧର୍ମ ତୀର୍ଥ କରେ
ବଂଶରେ ଜନକ ଥିଲେ ସେହି ଦୋଷହରେ
ନୋହିଲେ ସେ ବ୍ରହ୍ମହତ୍ୟା ଯେବେ ପାରେସାଧି
ଆବର ରାଜସୂୟରେ ସର୍ବ ହୁଏ ସିଦ୍ଧି ।
ପଣ୍ଡୁ ବୋଇଲେ ଯେ ସ୍ୱାମୀ ଅନୁଗ୍ରହ କର
ମୋହର ଅବସ୍ଥା ଜାଣ ଯୁଧିଷ୍ଠିର ଆଗର ।
ରାଜସୂୟ ଯଜ୍ଞକର ପଲବ ନ ହେଉ
ରାଜପଣେ ମୁନିଗଣେ ବଶବର୍ତ୍ତୀ ହେଉ ।
ହରି ବୋଇଲେ କହିବ ଯୁଧିଷ୍ଠିରଙ୍କ ଆଗେ
ସେହି ପାତକ ଧ୍ୱଂସିବ କରି ମହାଯୋଗେ ।
ଆଜେ ନାଶକର ଏ ଯେ ଯୁଧିଷ୍ଠିରଙ୍କ ପିତା
ଆମ୍ଭର ପରମଗୁରୁ ଅଟନ୍ତି ଦେବତା ।
ଆଜ ଦିନଠାରୁ ସ୍ୱାଙ୍କ ବସାଅ ଆସ୍ଥାନେ
ଭୃତ୍ୟ ପରାୟେ ତୁ ତାଙ୍କୁ ଖଟିବୁ ଆପଣେ ।
ଯମ ବୋଲେ ସ୍ୱାମି ବ୍ରହ୍ମା ମୋତେ ଶାପଦେଲ
ମୋହର ପାଦରେ ଯେଉଁ ବ୍ୟାଧି ଜାତହେଲ
ରାଜସୂୟ ଯାଗ କଲେ ପଣ୍ଡୁଙ୍କ ସନ୍ତାନ
ସେ ବ୍ୟାଧିରୁ ମୋକ୍ଷ ମୁହିଁ ହୋଇବଟି ଜାଣ
ଆସ୍ଥାନେ ବଇସି କଲେ ତତ୍ପର୍ଯ୍ୟ ପୁଣ
ପ୍ରତ୍ୟକ୍ଷରେ ଦିଶେ ସେହୁ ବିଶ୍ୱଇନ୍ଦ୍ର ସ୍ଥାୟୀ ।
ଗୁରୁଙ୍କର ପାଣ୍ଡୁପୁତ୍ର ସେନ ହୃଷୀକେଶ
ଅବନ୍ତୀ ନଗରେ ଯାଇଁ ହୋଇଲେ ପ୍ରବେଶ ।

ଫାଲ୍‌ଗୁନ ଶୁକ୍ଳ ଚତୁର୍‌ବାର ଯେ ତଇଠି
ରେବତୀ ନକ୍ଷତ୍ର ଅନ୍ତେ ଅଶ୍ୱିନୀ ଯେ ଭେଟି ।
ବାଣିଜ୍ୟ ନାମେ କରଣ ବ୍ରହ୍ମନାମେ ଯୋଗ
କୁମ୍ଭ ସଙ୍କ୍ରାନ୍ତି ତଇଦଂଶ ଦିନ ଭୋଗ ।
ଅଢ଼ାଇ ପ୍ରହର ବେଳ ପୁଣ ହୋଇଥିବ
ଗୁରୁଙ୍କର ପାଣ୍ଡୁପୁତ୍ର ଯେମନ ଶ୍ରାବନ୍ତି ।
ମିଳନ୍ତେ ଦେଖି ଆଶ୍ଚର୍ଯ୍ୟ ହେଲେ ଶାନ୍ତିପନ
ଉଠି ବ୍ରାହ୍ମଣ ପୁତ୍ରଙ୍କୁ କୋଳରେ ଯେ ଘେନ
ଗରୁଡ଼ ପୃଷ୍ଠରେ ତତକ୍ଷଣେ ଦଇତ୍ୟାରି
ଅନ୍ତର୍ଦ୍ଧାନେ ଚଳିଗଲେ ଗୁରୁଙ୍କ ସୁମରି ।
ବ୍ରାହ୍ମଣ ହୋଇଲ ବ୍ରାହ୍ମଣୀର ମୁଖ ଚୁମ୍ବି
ଏ କଥା ତ ଅଗୋଚର ଲାଗିଲା ମୋ ସନ୍ଧ ।
ମାୟାମୋହେ ପଡ଼ି ମୁହିଁ ଅନ୍ଧ ଯେ ହୋଇଲି
ଜଗନ୍ନାଥଙ୍କୁ ମୁହିଁ ଚିହ୍ନି ନ ପାରିଲି ।
କର୍ମକୁ ଆଦର ବିପ୍ର ହୋଇଲା ଯେ ବୃଦ୍ଧ
ଜଗନ୍ନାଥ ପ୍ରସାଦରେ ଦୁଃଖ ନାହିଁ ପୁଣି ।
ଆହେ ବୁଧେ ଜଗନ୍ନାଥ ବେଦେ ସଦା ସେବ
ସମର ଅର୍ଗଳ ଯାଙ୍କି ନାକୁ ବାସୁଦେବ ।
ସାବତ ଜୀବଙ୍କୁ ଜଗନ୍ନାଥହିଁ ରଖନ୍ତା
ନାମମନ୍ତ୍ର ମୂଳ ସେହି ଅଟେ ବରଦାତା ।
ନାନାତୀର୍ଥ କରିବାକୁ ଦୂରଦେଶେ ନ ଯା
ଜଗନ୍ନାଥ ନାମକୋଟି ହୃଦେ କର ପୂଜା ।
ଯଶୋଦା ନନ୍ଦନ ହରି ଯଦୁବଂଶ ନାଥା
ନୀଳଘନ ସୁନ୍ଦର ସେ ଶଙ୍ଖଚକ୍ରବାହା ।
ଦର୍ଶନେ ସ୍ପର୍ଶନେ ପାପ ହୁଅଇ ଯେ ଧ୍ୱଂସ
ବାଞ୍ଛା ସମ୍ପୂର୍ଣ୍ଣ କରନ୍ତି କମଳା ବିଳାସ ।
ଯାହାଙ୍କ ହେତୁରୁ ନାଶଗଲା ଯମଦର୍ପ
ମୃତ ପୁତ୍ର ଆଣିବାକୁ ଅଛୁ ଯାର ଧାପ ।
ସ୍ୱର୍ଗବାଟ ଦେଖାଇଲେ ସେହୁ ସତ୍ୟପଣେ
ସେବାକଲେ ଫଳ ଦ୍ୟନ୍ତି ଜାଣ ନାରାୟଣେ ।
ଜଗତକାରଣ ନାଥ କଥା କହନ୍ତେଟି
ହୃଦଗତେ ସମ୍ପାଦନ କର ନାମକୋଟି ।
କମଳାର ବଲ୍ଲଭ ଯେ କରୁଣାବତ୍ସଳ
କରୁଣା କରିବାପାଇଁ ସେହି ଆନନ୍ଦମୂଳ ।
ଶ୍ରୀମଧ୍ୟଖଣ୍ଡଟି ଏହା ଶାସ୍ତ୍ରର ସଙ୍ଗତେ
ଆହେ ଜନେ କହିଲି ମୁଁ ହଂସାବର ହିତେ ।

ତୁଳସୀ-ଚନ୍ଦନ ପଦ୍ମପାଦ ନିତ୍ୟ ସେବ
ତୁହିଁ କୃଷ୍ଣମ ମୂର୍ତ୍ତି ଶ୍ରୀଶାରଳା କବ ।
ଜଗନ୍ନାଥଙ୍କର ପଦ୍ମପାଦ କର ଲକ୍ଷ୍ୟେ
ଜଗନ୍ନାଥ ନାମ ମୂଳ ମହାମନ୍ତ୍ର ହୁଏ ।
ଜଗନ୍ନାଥ ଜପ କଲେ ଯାଇଟି ଦୁର୍ଗତି
ଜଗନ୍ନାଥ ପ୍ରାଣଙ୍କର ଅଟେ ମୋକ୍ଷଗତି ।
ଜଗନ୍ନାଥ ପ୍ରସାଦରେ ମଧ୍ୟପର୍ବ ଶେଷ
କଣନ୍ନ ଏଠାରେ ଆଣି ଶ୍ରୀଶାରଳା ଦାସ ।
ଶ୍ରୀଚଣ୍ଡୀ ଶାରଳା ନାମ ହୃଦୟରେ ଘୋଷି
ମହାଭାରତ ଲେଖଇ ଅହର୍ନିଶି ବସି ।

ଇତି ଶ୍ରୀ ମହାଭାରତ ମଧ୍ୟପର୍ବ

ସ ମା ପ୍ତ



ମୁଦ୍ରାକର—ଶ୍ରୀ କମଳଲୋଚନ ଗର୍ଗବଡୁ, ଶ୍ରୀରାଧାରମଣ ପ୍ରେସ, କଟକ—୧୯୮୧